ମନମୋହନ ଚୌଧୁରୀଙ୍କ ଆତ୍ମକଥା

# କସ୍ତୁରୀ ମୃଗ ସମ

ମନମୋହନ ଚୌଧୁରୀ



# କସ୍ତୁରୀ ମୃଗ ସମ

(ଶାରଳା ପୁରସ୍କାରପ୍ରାପ୍ତ ଆତ୍ମଚରିତ)

ମନମୋହନ ଚୌଧୁରୀ

ପ୍ରକାଶକ



**କସ୍ତୂରୀମୃଗ ସମ**

(ଆତ୍ମଜୀବନୀ)

ଲେଖକ — ମନମୋହନ ଚୌଧୁରୀ

ସର୍ବସ୍ୱତ୍ୱ ସଂରକ୍ଷିତ : ସୁମିତ୍ରା ଚୌଧୁରୀ

ପ୍ରକାଶକ — କବୀର, ବାଖରାବାଦ, କଟକ-୭୫୩୦୦୨
ଫୋନ୍,୦୬୭୧-୨୪୨୧୧୬୭

ଡି.ଟି.ପି. — ଶ୍ରୀ କମ୍ପ୍ୟୁଟରର୍ସ, ନିୟୁଏଲ୍.ଆଇ.ସି କଲୋନୀ,
ଲିଙ୍କ୍‌ରୋଡ୍, କଟକ-୧୨ ମୋବାଇଲ୍ : ୯୯୩୮୬୮୪୨୪୨

ମୁଦ୍ରଣ — ଶିବା ଡି.ଟି.ପି., ଚଣ୍ଡିଛକ, କଟକ-୧
ଫୋନ୍ -୦୬୭୧୨୩୬୧୩୨୮

ପ୍ରଥମ ସଂସ୍କରଣ — ୧୯୯୫, ଦ୍ୱିତୀୟ ସଂସ୍କରଣ - ୨୦୦୨

ତୃତୀୟ ପୁନଃମୁଦ୍ରଣ: ୨୦୧୦

ପ୍ରଚ୍ଛଦ : ଅସୀତ୍ ମୁଖାର୍ଜୀ

---

***Kasturimruga Sama***

(An Autobiography)

Author — **Manmohan Choudhury**

© — **Sumitra Choudhury**

Publisher — **KABEER**
Bakharabad, Cuttack-753002 (India)

DTP — **Shree Computers**,New L.I.C Colony,
Link Road, Cuttack-12

Printed at — **Siva D.T.P.**, Chandi Square, Cuttack-1

First Edition — **1995**, Second Edition: **2002**

Third Reprint — **2010**

(Biography, Indian History, Odissan Studies)

Pages : xvi + 528 b/w plates 32 pages



ପାଗଲ ହଇୟା ବନେ ବନେ ଫିରି
ଆପନ ଗନ୍ଧେ ମମ
କସ୍ତୂରୀମୃଗ ସମ ।

—ରବୀନ୍ଦ୍ରନାଥ ଠାକୁର

## ଉତ୍ସର୍ଗ

## ମାଳତୀ ଚୌଧୁରୀ

ମୋର ସ୍ନେହମୟୀ ଖୁଡ଼ୀଙ୍କ ହାତରେ

ଯାହାଙ୍କଠାରୁ ମୁଁ ଜୀବନରେ ସୌନ୍ଦର୍ଯ୍ୟ ଓ ସଂଗ୍ରାମର ସମନ୍ୱୟ କରି ଶିଖିଲି....

– ବୁଲୁ

# ଦ୍ୱିତୀୟ ପୁନଃମୁଦ୍ରଣ ସମ୍ପର୍କରେ

'କସ୍ତୁରୀ ମୃଗ ସମ' ର ଦୁଇଟି ସଂସ୍କରଣ ଶେଷ ହୋଇଯାଇଛି । ପାଠକମାନଙ୍କ ଭିତରେ ଏବେବି ବହିଟିର ଚାହିଦା ଥିବା ଲକ୍ଷ୍ୟ କରି ପୁନଃମୁଦ୍ରଣ କରାଯାଉଛି ।

କହିବା ବାହୁଲ୍ୟମାତ୍ର ଯେ 'କସ୍ତୁରୀ ମୃଗ ସମ' ନିଚ୍ଛକ ଆତ୍ମଜୀବନୀ ନୁହେଁ । ଏଥିରେ ଲେଖକଙ୍କର ନିଜ ସୁଖଦୁଃଖର ଅଭିଜ୍ଞତା ବା ଅନୁଭୂତିପ୍ରସୂତ ଜୀବନ ଶିକ୍ଷା ଯେପରି ଲିପିବଦ୍ଧ ହୋଇଛି ସେହିପରି ମଧ୍ୟ ସମସାମୟିକ ଓଡ଼ିଶାର ତଥା ଦେଶ ବିଦେଶର ବହୁ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣା ଏବଂ ସେସବୁର ସମୀକ୍ଷା ମଧ୍ୟ ଏଥିରେ ରହିଛି । ଆଶା, ପୂର୍ବସଂସ୍କରଣ ମାନଙ୍କପରି ଏହା ମଧ୍ୟ ପାଠକଙ୍କ ଦ୍ୱାରା ଆଦୃତ ହେବ ।

ଏହି ପୁନଃ ମୁଦ୍ରଣ କାର୍ଯ୍ୟରେ ମନମୋହନ ଚୌଧୁରୀ ରଚନା ସଂଗ୍ରହର ସଂପାଦକ ଶୈଳଜ ରବି, ଡି.ଟି.ପି. ସଂସ୍ଥା ଶ୍ରୀ କମ୍ପ୍ୟୁଟର୍ସ ଓ ମୁଦ୍ରଣ ସଂସ୍ଥା, ଶିବା ଡି.ଟି.ପି. ସହଯୋଗ କରିଥିବାରୁ ସେମାନଙ୍କ ପାଖରେ କୃତଜ୍ଞତା ଜଣାଉଛି । ଏହି ପୁସ୍ତକର ପୂର୍ବତନ ପ୍ରକାଶକ 'କାହାଣୀ' ସଂସ୍ଥା ଅତୀତ ସଂସ୍କରଣମାନଙ୍କର ସଫଳ ପ୍ରସାରଣ କରାଇଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ସୁମିତ୍ରା ଚୌଧୁରୀ

ଅଗଷ୍ଟ ୧୫,୨୦୧୦

ପ୍ରକାଶିକା

# କୈଫିୟତ

ଏ ଆତ୍ମକଥା ଲେଖିବାର ତିନୋଟି ଉଦ୍ଦେଶ୍ୟ । ଏକରେ, ଅତୀତର ଏକ ସମୀକ୍ଷା ଭବିଷ୍ୟତର ପଥକୁ ଆଲୋକିତ କରିବା ପାଇଁ । ମଣିଷ ଜୀବନ ପଥରେ ଗୋଟାଏ ସୋପାନରେ ପହଞ୍ଚି ପଛକୁ ଫେରି ଚାହେଁ ଓ ନିଜ ଜୀବନର ଏକ ସମଗ୍ର ରୂପର ସନ୍ଧାନ କରେ । ତା'ର ଏକ ଅର୍ଥ ଖୋଜେ । ତା'ର ଅତୀତର ସମସ୍ତ ସୁଖଦୁଃଖ, ଆଶା ଓ ନୈରାଶ୍ୟ, ସଫଳତା ଓ ବିଫଳତା ଆଦିର ପର୍ଯ୍ୟାଲୋଚନା ତାକୁ ଏଥିରେ ସାହାଯ୍ୟ କରେ ।

ଦୁଇରେ, ଋଣ ସ୍ୱୀକାର । ମଣିଷ ସ୍ୱୟଂଭୂ ନୁହେଁ । ସେ ଇତିହାସ ପ୍ରବାହର ଏକ ପରିଣତି । କେତେ ଆତ୍ମୀୟସ୍ୱଜନ, ଗୁରୁଜନ, ସାଙ୍ଗସାଥୀ, ପ୍ରତିବେଶୀ, ଏପରିକି ସ୍ୱଳ୍ପ ପରିଚିତ ବା ଅପରିଚିତ ବ୍ୟକ୍ତିଙ୍କ କ୍ଷଣିକ ସାନ୍ନିଧ, ସ୍ନେହ, ସେବା ଓ ସହଯୋଗ ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ରୂପ ଦେବାରେ ସାହାଯ୍ୟ କରେ । ଏସବୁ ଋଣ କୌଣସି ମଣିଷ କେବେ ସେହି ସେହି ବ୍ୟକ୍ତିଙ୍କୁ ପରିଶୋଧ କରିପାରେ ନାହିଁ । ଏହି ଋଣ ସ୍ୱୀକୃତି ଓ ତା'ର ସାମଗ୍ରିକ ପରିଶୋଧ ବ୍ୟକ୍ତିର ଆତ୍ମୋପଲବ୍ଧି, ତା'ର ମଣିଷପଣିଆର ବିକାଶର ଏକ ମହତ୍ତ୍ୱପୂର୍ଣ୍ଣ ଉପାଦାନ ।

ତିନିରେ, ପ୍ରତ୍ୟେକ ବ୍ୟକ୍ତିର ଜୀବନରୁ, ଅଭିଜ୍ଞତାରୁ, ସେ ଯେତେ ଅକିଞ୍ଚନ ହୋଇଥାଉ ପଛେ, ଅନ୍ୟମାନଙ୍କର କିଛି ଶିଖିବାର ଥାଏ । ଏ ପୃଥିବୀରେ ଆମେ ପ୍ରତ୍ୟେକେ ଅନନ୍ୟ ବ୍ୟକ୍ତିତ୍ୱ ନେଇ ଜନ୍ମ ନେଇଥାଉ । ପ୍ରତ୍ୟେକ ବ୍ୟକ୍ତିର କିଛି ବୈଶିଷ୍ଟ୍ୟ ଥାଏ । ପ୍ରତ୍ୟେକଠାରେ ସୃଷ୍ଟିକୁ ନୂଆ ଆଖିରେ ଦେଖିବାର, ତାହା ସହିତ ନୂଆ ଢଙ୍ଗରେ କାରବାର କରିବାର ଓ ତା'ର ନୂଆ ଅର୍ଥ କରିବାର ସାମର୍ଥ୍ୟ ରହିଛି– ଯଦିଓ ଆମେ ସମସ୍ତେ ତାହାର ଉପଯୋଗ କରି ନ ଥାଉ । ଏହିପରି ସମସ୍ତଙ୍କର ବିଶିଷ୍ଟ ଅନୁଭୂତିର ପରସ୍ପର ଆଦାନପ୍ରଦାନ ଓ ସମନ୍ୱୟରୁ ହିଁ ବିଶାଳ ମାନବ ସଂସ୍କୃତି ଗଢ଼ିଉଠୁଛି । ଏଥିରେ ବଡ଼ ସାନ ସମସ୍ତଙ୍କର ଅବଦାନ ରହିଛି ଓ ରହିବ । ଏହି ଦୃଷ୍ଟିରୁ ନିଜ ଜୀବନର କାହାଣୀ ଓ ସମୀକ୍ଷା ସର୍ବସାଧାରଣରେ ନମ୍ର ଭାବରେ ଉପସ୍ଥାପିତ କରିବା କର୍ତ୍ତବ୍ୟ ବୋଲି ମୁଁ ବିଚାରିଲି । ସ୍ୱଭାବତଃ ବ୍ୟକ୍ତିର ଜୀବନୀ ସହିତ ସମସାମୟିକ ଇତିହାସ ନିବିଡ଼ ଭାବରେ ଜଡ଼ିତ ଓ ତାହାର ଝଲକ ଏ ଆତ୍ମକଥାରେ ଦେଖିବାକୁ ମିଳିବ । ମାତ୍ର ସମସାମୟିକ ଇତିହାସର ବିଶଦ ଓ ପୂର୍ଣ୍ଣାଙ୍ଗ ବିବରଣୀ ଦେବାର ଚେଷ୍ଟା ଏଥିରେ କରାହୋଇ ନାହିଁ ।

କେହି କେହି ଆତ୍ମପ୍ରଚାର ଉଦ୍ଦେଶ୍ୟରେ, ନିଜେ ଯାହା, ତାହାଠାରୁ ନିଜକୁ ବଡ଼ କରି ଦେଖାଇବା ଉଦ୍ଦେଶ୍ୟରେ, ଆତ୍ମକଥା ଲେଖିଥାନ୍ତି । ଏଥିପାଇଁ ଐତିହାସିକ ତଥ୍ୟକୁ ସୁଦ୍ଧା ବିକୃତ କରିବାର ଉଦାହରଣ ଦେଖିବାକୁ ମିଳିଥାଏ । ଏହାର ପ୍ରତିକ୍ରିୟା ସ୍ୱରୂପ ଆଉ କେହି କେହି ନମ୍ରତା ଦୃଷ୍ଟିରୁ ଆତ୍ମକଥା ଲେଖିବାରୁ ବିରତ ହୋଇଥାନ୍ତି । ଏ ଉଭୟ ଆତିଶଯ୍ୟ ଏଡାଇବାର କଥା । ମାତ୍ର ଆତ୍ମପ୍ରଚାରର ଲାଳସା ମୋର ନାହିଁ ବୋଲି ମୁଁ ବିଚାରୁଥିଲେ ମଧ ମୋର ଅବଚେତନ ଭିତରେ ଯେ ତାହା ନାହିଁ, ସେ କଥା ମୁଁ ହଲପ କରି କହିପାରିବି ନାହିଁ । ତେଣୁ ମୋର ଲେଖାରେ ଏହାର ଦୁର୍ଗନ୍ଧ କେଉଁଠି କେଉଁଠି ମିଳିବ ତ ସେଥିପାଇଁ ପାଠକ ମୋର ପ୍ରାପ୍ୟ ନମ୍ବରରୁ କାଟିଦେବା ଚାହି । ଏହି ପ୍ରକାରେ ମୁଁ ପରୀକ୍ଷାରେ ପୂରା ଫେଲ୍ ହୋଇଯିବା ବି ଅସମ୍ଭବ ନୁହେଁ ।

ଆତ୍ମକଥା କେତେଦୂର ତଥ୍ୟ ଓ କେତେଦୂର ରମ୍ୟରଚନା ? ଏହା ଜାଣିବାର ଉପାୟ କ'ଣ ? ଏଥିରେ ଅନେକ ତଥ୍ୟ ଥାଏ, ଯାହା ବ୍ୟକ୍ତିନିରପେକ୍ଷ, ତାହାର ସତ୍ୟାସତ୍ୟ ନିରୂପଣ କରିବା କଠିନ ନୁହେଁ । ମାତ୍ର ଆଉ କେତେକ କଥା ଥାଏ, ଯାହା ଲେଖକଙ୍କର ନିତାନ୍ତ ବ୍ୟକ୍ତିଗତ ଅନୁଭୂତିଜନ୍ୟ । ସେ ସବୁର ସାକ୍ଷ୍ୟପ୍ରମାଣ ପାଇବା ସମ୍ଭବ ନୁହେଁ ଓ କେବେ ଥିଲେ ବି ହଜିଗଲାଣି । ଆଜିକାଲି ଜୀବନୀସବୁ ଗଳ୍ପ ବା ଉପନ୍ୟାସ ଆକାରରେ ଲେଖିବାର ଚଳନ ହୋଇଛି । ସେଥିରେ ଲେଖକ ଜୀବନୀର ପାତ୍ରଙ୍କର ଜୀବନରେ ଜଣା ତଥ୍ୟ ସାଙ୍ଗକୁ ତାହା ସହିତ ଖାପ ଖାଉଥିବା କାଳ୍ପନିକ ଘଟଣା, ସଂଳାପ ବା ବର୍ଣ୍ଣନା ଯୋଡ଼ି ଜୀବନକୁ ଏକ କଳାତ୍ମକ ପୂର୍ଣ୍ଣତା ଦେବାର ପ୍ରୟାସ କରିଥାନ୍ତି । ସେହିପରି ତଥ୍ୟ ଓ କଳ୍ପନାମିଶା ମୋର ଯେଉଁ ଏକ ଚିତ୍ର ମୋ ମନରେ ରହିଛି, ଏ ଆତ୍ମକଥା ତା'ରି ଅଭିବ୍ୟକ୍ତି ବୋଲି ଧରାଯାଇପାରେ । ଏ ପ୍ରସଙ୍ଗରେ ବିଶିଷ୍ଟ ନାଟ୍ୟକାର ଜର୍ଜ ବର୍ଣ୍ଣାର୍ଡ୍ ଶ'ଙ୍କର ଉକ୍ତି ମନେପଡ଼ୁଛି । ତାଙ୍କ ମତରେ - ଅନେକ ସମୟରେ ଇତିହାସ ଅପେକ୍ଷା ଗଳ୍ପ-ଉପନ୍ୟାସ-ନାଟକରୁ କୌଣସି ଏକ ଯୁଗର ପ୍ରକୃତ ରୂପର ଅଧିକ ଯଥାଯଥ ଆଭାସ ମିଳିଥାଏ ।

୧୯୭୫-୭୬ ରେ ଜରୁରୀକାଳୀନ ଏକଛତ୍ର ଶାସନବେଳେ ଅଟକବନ୍ଦୀ ଥିବାବେଳେ ଆତ୍ମଚିନ୍ତନର ସୁଯୋଗ ମିଳିଥିଲା ଓ ବହି ଲେଖିବା ପାଇଁ ପ୍ରେରଣା ଓ ସମୟ ମଧ । ସେକାଳରୁ ନାନା କାରଣରୁ ଏହାର ପାଣ୍ଡୁଲିପି ସେମିତି ପଡ଼ିରହିଥିଲା । ୧୯୯୦ ରେ ଏହାକୁ ସେ ସମୟ ଯାଏ ଆଗେଇ ନେବାର ସୁବିଧା ପାଇଲି । ଏବେ କାହାଣୀ ପ୍ରକାଶନୀ ଏହାକୁ ପୁସ୍ତକାକାରରେ ପ୍ରକାଶ କରୁଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞ ।

ମନମୋହନ ଚୌଧୁରୀ

# ସୂଚୀ

| କ୍ରୁ.ନଂ | ବିଷୟ | ପୃଷ୍ଠା |
|---|---|---|

# ଶୈଶବର ସ୍ମୃତି

ପିଲାଦିନର କେତେ ପଛକୁ ସ୍ମୃତି ଫେରି ପାରୁଛି ? ଯେଉଁସବୁ ଟୁକୁରା ଟୁକୁରା ଛବି ମନରେ ଭାସି ଉଠୁଛି, ସେ କୋଉ ବୟସର ? ମା, ଗୋପିଆମା ବା ନାଲିଆମା ମୋତେ କାଖେଇ ବୁଲଉଛନ୍ତି । ମୁଁ ଅଝଟ ହେଉଛି, କୁନ ଅପା ମତେ କାଖେଇ ବୁଝେଇବା ପାଇଁ ଚେଷ୍ଟା କରୁଛି । କହୁଛି, ଦେଖ୍ ଦେଖ୍ କେମିତି ଚଢ଼େଇ ଉଡ଼ି ଯାଉଛି । ମନେ ପଡୁଛି ଝରକାବାଟେ ଦିଶୁଛି ସନ୍ଧ୍ୟାର ଲାଲ ଆକାଶ । ମା ପାଖରେ ରାତିରେ ଶୋଇ ବିଛଣାରେ ପରିଶ୍ରା କରୁଛି । କଣ୍ଣ ଅଜା ଆମକୁ ବାଳଝାମ୍ପୁରି ଆଉ ଅନ୍ଧାର ଗୁଡ଼ଗୁଡ଼ି ଗପ କହୁଛନ୍ତି । ମୁଁ ଭୟମିଶ୍ରିତ ଆଗ୍ରହରେ ଶୁଣୁଛି । ବଡ଼ ଘରର ଭିତର ପାଖ ବାରଣ୍ଡାରେ ମା ବସି ନାଲିଆ ମା ହେରିକାଙ୍କ ସାଙ୍ଗରେ ତାସ ଖେଳୁଛି । ମୁଁ ତା' କୋଳରେ ବସିଛି । କେତେ ? ଦେଢ଼ବର୍ଷ, ଦୁଇବର୍ଷ ?

ମୁଁ କୁଆଡ଼େ ଆମର ସାନ ପିଉସୀ ବେଙ୍ଗଅପା ବାହାଘରବେଳେ ଖୁବ୍ କାନ୍ଦିଥିଲି ଓ ପଳାପଳା ବୋଲି ଅନବରତ ଖୁବ୍ ପାଟି କରିଥିଲି । ବେଙ୍ଗଅପା ଚାଲିଯିବ ବୋଲି ରାଗରେ ପ୍ରାୟ ମୁଣ୍ଡ ଖରାପ ହେବାର ଜୋଗାଡ଼ । ସେଥିପାଇଁ ସମସ୍ତେ ମତେ ଖୁବ୍ ଜଗିରଖି ଚଳୁଥିଲେ । କିନ୍ତୁ ସେକଥା ମୋର ମନେ ନାହିଁ । ମନେ ଅଛି ବେଙ୍ଗଅପା ପଟାମୁଣ୍ଡାଇ ପାଖ ଚୌଦକୁଲାଟରେ ତା'ର ଶାଶୁଘରୁ ଫେରିବ ବୋଲି ଆଉ କାହା କାହା ସାଙ୍ଗରେ ଘୋଡ଼ା ଗାଡ଼ିରେ ବସି ସଞ୍ଜବେଳେ ମହାନଦୀର ଯୋବ୍ରାଘାଟକୁ ଯାଉଛି । ସେତେବେଳେ କେନ୍ଦ୍ରପଡ଼ାରୁ କଟକ ନାଳବାଟେ ଷ୍ଟିମର ଚାଲୁଥିଲା । ସେହି ଥିଲା ଶୀଘ୍ର ଯାତାୟତର ଏକମାତ୍ର ପନ୍ଥା । ଘରକୁ ଫେରିଲାବେଳେ ଗାଡ଼ିରେ ବେଙ୍ଗଅପା କୋଳରେ ବସି ଫେରିଲି । ବେଙ୍ଗଅପା ନାଲି ଖଣ୍ଡୁଆ ଘୋଡ଼ି ହୋଇଥାଏ ।

ଦୋତାଲା ଘର ଦାଣ୍ଡପାଖ ହତାର ପୂର୍ବପଟକୁ ଗୋଟାଏ ଡେଙ୍ଗା ଧଡ଼ିଆ ଗଙ୍ଗଶିଉଳୀ ଗଛ । ଅଶିଣ ମାସରେ ଗଛ ମୂଳରେ ଚିତା ପଡ଼ିଲା ପରି ଫୁଲ ଝଡ଼ି ଜମା ହୋଇଥାଏ । ଗଙ୍ଗଶିଉଳୀକୁ ଗୁଲଅପା ହେରିକା କେତେ ଲୋକ କହନ୍ତି ସିଙ୍ଗଡାହାର । ଫୁଲ ଗୋଟେଇ ଆଣି ଖଡ଼ିକା କାଠିରେ ଗୋଟିକ ପରେ ଗୋଟିଏ ଖୋସି ଫୁଲର କାଠି ତିଆରି କରୁ । ଧଳା ପାଖୁଡ଼ା ଓ ନାରଙ୍ଗୀ ଡେମ୍ଫ ଗୋଟିକ ପରେ ଗୋଟିଏ ସଜ୍ଜା ହୋଇଥିବାର ଶୋଭା ସୁନ୍ଦର ଲାଗେ । ଆଉ ଭଲଲାଗେ ତା'ର ମୃଦୁ ସୁବାସ । ଗୋଟାଏ କାମିନୀ ଗଛ ବି ଥିଲା । ତା'ର ଫୁଲକୁ ଚୁଚୁମିଲେ ମିଠା ଲାଗେ । ବଗିଚାରେ ଗେଣ୍ଡୁ, ଛୋଟ ଛୋଟ ଲାଲ ହଳଦିଆ ମିଶା କୁସୁମଫୁଲ ବି ଫୁଟେ । ଫୁଲସବୁ ମାଳ ଗୁନ୍ଥା ହୁଏ ମା'ର ଠାକୁର ଘର ପାଇଁ । ଆଗ ହତାରେ ଦକ୍ଷିଣ-ପୂର୍ବ କଣରେ ଗୋଟାଏ 'ଗଙ୍ଗାକୂଳିଆ' ବରକୋଳି ଗଛ । ଶୀତ ଦିନେ କସି ଧରେ । ପାଚେ ଖୁବ୍ ଅଳ୍ପ । ଆଉ କେତେଟା ଆମ୍ବଗଛ ପାଚିରୀ କରେ କରେ । ସେଥିରୁ କୁଆଡ଼େ ଦୁଇଟା କଲମୀ ଗଛ ଥିଲା । ଆମ୍ବ କେବେ ବେଶି ଫଳିବାର ମନେନାହିଁ । ହତା ମଝିରେ କୂଅ । ତା' ଚାରିପଟେ ଗୋଲ ଚଉତରା ଓ ସେମିତି ଗୋଲ ପାଣି ହାଉଦା । ସେ ହାଉଦାରେ କୁଆଡ଼େ ଭେଳେଙ୍କ

ଅମଳରେ ନାଲି ମାଛ ଥିଲେ । ମୁଁ ଦେଖିନାହିଁ । ମା' ସେଥିରେ ଆମର ଆମୋଦ ପାଇଁ କଉ, ମାଗୁର ଏମିତିସବୁ କେତେଟା ମାଛ ଛାଡ଼ିଥାଏ । ଭିତର ଅଗଣା, ଆଉ ଏ ବାହାର ବଗିଚା ଆମର ପ୍ରଥମ ଚରାଭୂଇଁ । ତା' ପରେ ସେଇଟା ବିସ୍ତୃତ ହେଲା 'ଅନ୍ନପୂର୍ଣ୍ଣା ଦିଦିଙ୍କ ଦାଣ୍ଡ'କୁ । ଏକତାଲା ଘରର ସାମନା ହତା, ଏଥିରେ ଦକ୍ଷିଣ-ପୂର୍ବ କୋଣରେ କେବଳ ଗୋଟାଏ ବଉଳ ଗଛ । ପାଚିଲା ବଉଳଫଳ ଭାରି ଲୋଭନୀୟ ଦେଖାଯାଏ । ଅନ୍ୟ ପିଲାମାନେ ଖା'ନ୍ତି । ମା' ଆମକୁ ମନାକରେ, କହେ ଖାଇଲେ ଝାଡ଼ା କବଜ ହେବ । ତଥାପି ଆମେ ଖାଉ, କଷାଳିଆ ମିଠା । ହତାରେ ଠାଏ ଠାଏ ଚନ୍ଦା, ଅରାଏ ଅରାଏ ଘାସ ଥାଏ । ଅନ୍ନପୂର୍ଣ୍ଣା ଦିଦିଙ୍କ ପିଲାମାନେ ବଣି ପାଇଁ ଝିଣ୍ଟିକା ଧରନ୍ତି । ଘାସରେ ନାଲି, ଧଳା, ବାଇଗଣୀ କେତେ କିସମର ଟିକିଟିକି ଫୁଲ । ପିଲାଏ ମୁଥାମୂଳ ବି ଖୋଳନ୍ତି, ବାଟି ବାଳରେ ଲଗାହବା ପାଇଁ । ଦୋତାଲା ଘର ମଝି ଅଗଣା ସେପଟେ ଧାଡ଼ିଏ ଏକତାଲା ଘର, ଚାରିବଖରା । ଗୋଟିଏ ଦୁଧ ଘର, ସେଥିରେ ଦୁଧ ଗରମ, ଅଚ୍ଛିକିଆ ରନ୍ଧାରନ୍ଧି, ଜଳଖିଆ ତିଆରି ଆଦି ହୁଏ । ଗୋଟାଏ [illegible]ଘର, ସେଥିରେ ମା'ର ସବୁ ହାଣ୍ଡି କୁଣ୍ଡେଇ, ଆମ୍ବୁଲ, ଆଚାର ଭର୍ତ୍ତି ହୋଇଥାଏ । ପାଣିଘରେ ଜଳଖିଆ ସରଞ୍ଜାମ, ପରିବାପତ୍ର ଥାଏ । ପଛଆଡ଼େ ଆଉ ଧାଡ଼ିକରେ ରୋଷେଇ ଘର । ତା' ପଛକୁ ଗୋଟାଏ କଣରେ ଢିଙ୍କିଶାଳ । ରୋଷେଇ ଘର ପୂର୍ବପଟକୁ ଗୁହାଳ । ଦୋତାଲାର ତଳ ମହଲାର ମଝି ଘରେ ମା' ରହେ । 'ବଡ଼ଘର' ଟା ବୋଉର । ଆଉ ଗୋଟାଏ ବଖରା ଗମ୍ଭିରୀ ଘର, ସବୁବେଳେ ବନ୍ଦ ଥାଏ । ଏକ ରହସ୍ୟପୁରୀ । ଉପର ମହଲାରେ ବାପାହେରିକା ରହନ୍ତି । ଘରେ ସବୁ ବଡ଼ ବଡ଼ ଶିଶୁ କାଠର ଖଟ । ନଡ଼ିଆ କତାର ଗଦି । ଗୋଲ ଟେବୁଲ, ବୁଲା ଆଲମାରୀ, ବେତ ଚଉକି, ଅଫିସ୍ ଟେବୁଲ ଆଦି ଇେଙ୍ଗ୍ରେଜ ଅମଳର କେତେସବୁ ଆସବାବ । କେତେସବୁ କାମରେ ଲାଗୁଥାଏ, କେତେ ଏଠି ସେଠି ଥୁଆହୋଇଥାଏ କେବଳ ।

ଏସବୁ ଘର ଆଉ ସେ ପୁରୁଣା ଆସବାବପତ୍ର ଏବେ ଦେଖିଲେ ବହୁତ ସାନ ହୋଇଗଲା ପରି ଜଣା ପଡୁଛି । ସେସବୁକୁ ସାନବେଳେ ଯେଉଁ ଅନୁପାତରେ ଦେଖିଥିଲି ମନ ଭିତରେ ତାହାରି ଛାପ ରହିଯାଇଛି । ଗୋଲ ଟେବୁଲଟା ମୋର ବେକ ଉଚ୍ଚା । ବୁଲା ଆଲମାରୀ ଥାକରେ ମୋତେ ବସେଇ ଥରେ ବାମୀ ଦିଦିର ଝିଆରୀ ଚାରୁ ମୋତେ ବୁଲାଉଥିଲା ଯେ କାନ୍ଥ ସନ୍ଧିରେ ଅଟକି ଗଲି, ନା ଏ ପାଖକୁ ନା ସେ ପାଖକୁ ଚଳୁଛି । ବହି ଆଲମାରୀଗୁଡ଼ାକ କେତେ କେତେ ଡେଙ୍ଗା ଥିଲା । ମଝି ଘରଟା କେତେ ବିରାଟ ଦେଖାଯାଉଥିଲା । ଏବେ ସବୁ ଶୁକୁଟି ସାନ ହେଇଗଲାଣି । ଦୋତାଲା ସିଡ଼ିର କାଠର ଧାରଣା ଆଉ ପାହାଚ ବି ଆମର ଆଉ ଅନ୍ୟ ପିଲାମାନଙ୍କର ଖେଳର ସାମଗ୍ରୀ । କାଠ ଧାରଣା ଉପରେ ବସି ତଳକୁ ଖସିବା ଗୋଟାଏ ଭାରି ଉତ୍ତେଜନାପୂର୍ଣ୍ଣ ଖେଳ । ସେମିତି କିଏ କେତେ ବେଶୀ ପାହାଚ ଏକା ଥରକେ ଡେଇଁ ପାରିବାର ପ୍ରତିଯୋଗିତା । ସିଡ଼ିତଳ ଜାଗାଟିରେ ତାର ବାଡ଼ ଦିଆହେଇ ଦିନାକେତେ ଗିନିପିଗ୍ ରଖାହେଇଥିଲା ।

ମା' ଠାକୁରଘରେ ଭାଗବତ ଗାଦି, ଆଉ କେତେ ଦେବାଦେବୀଙ୍କ ଛବି । ମା'ର ସକାଳ ସନ୍ଧ୍ୟା ବହୁତ ସମୟ ସେଇଠି କଟେ । ସାଙ୍ଗର ଗଙ୍ଗାଧର ନନା ନାଲି କରିହିଆ ଖଣ୍ଡେ ପିନ୍ଧି କାନ୍ଧରେ ମସିଆ ନାଲି ଗାମୁଛା ପକେଇ ପୂଜା କରିଆସନ୍ତି । ତାଙ୍କର ଗୋଟାଏ ହାତ ପୋଡ଼ିଯାଇଥିଲା । ବାହୁଟା ଦେହ କଡ଼ରେ ପ୍ରାୟ ଲାଗିଯାଇ ଥାଏ । ସନ୍ଧ୍ୟା ଆଳତିବେଳେ ଘଣ୍ଟ ବଜାହୁଏ । ଆମକୁସବୁ ଡାକି ମା' ଆଳତିର ଧୂପ ସୁଙ୍ଘାଏ । ଛେନା, କଦଳୀଚକଟା, ସାନ ସାନ ହେଇ କଟା କାକୁଡ଼ି ଭୋଗ ଆମକୁ ଦିଏ ।

ମା'ର ଠାକୁରଘର ଦେଖାଦେଖି ମୁଁ ବି ଚାରିପାଞ୍ଚ ବର୍ଷ ବେଳେ ଗୋଟିଏ ସାନ ଖଟୁଲିରେ କ'ଣ ସବୁ ଠାକୁର ରଖି ପୂଜା କରୁଥିଲି । ଗୋଟାଏ ଛୋଟ ପିତଳ ହାତଘଣ୍ଟି ଥିଲା, ମନେ ଅଛି । ଠାକୁରଙ୍କ ଠିଁ ଫୁଲ ଚଢ଼େଇ ସେ ଘଣ୍ଟି ବଜେଇ ପୂଜା କରେ ।

ଏକଦମ୍ ପିଲାବେଳର ବୋଉ କଥା ଯେତେ ମନେ ନ ପଡୁଛି, ମା କଥା ମନେ ପଡୁଛି ଅନେକ ବେଶି । ମା ପାଖରେ ମୁଁ ବେଶି ରହୁଥିଲି । ସେ ମତେ କାଖେଇ ବୁଲେ, ଭାତ ଖୁଆଏ, ରାତିରେ ମୁଁ ତା' ପାଖରେ ଶୁଏ । ଜେଜେଙ୍କୁ ମୁଁ ଦେଖି ନାହିଁ । ମୁଁ ଜନ୍ମ ହେବା ପୂର୍ବରୁ ସେ ଗତ ହୋଇସାରିଥିଲେ । ଆମ ଘରକୁ ମଝିରେ ମଝିରେ ଆସନ୍ତି ବାଳକୃଷ୍ଣ ଜେଜେ । ଢେଙ୍କାନାଳରେ ଶିକ୍ଷା ବିଭାଗରେ ସେ ଚାକିରି କରୁଥିଲେ । ଗାଁକୁ ଯିବା ଆସିବା ବାଟରେ ସେ ଆମଘରେ ରହନ୍ତି, ଦୋତାଲା ମଝିଘରେ । ସକାଳେ ବହୁତ ପୂଜାପାଠ କରନ୍ତି । ବଡ଼ ବଡ଼ ନିଶ, ଯେମିତି ଆମ ଜେଜେଙ୍କର ଅଛି ଛବିରେ । ମୁଁ ବେଳେବେଳେ କଳ୍ପନା କରେ ଯେ ସେଇ ଆମର ଜେଜେ । ମା ଆମକୁ ବଂଶାବଳୀ ଶିଖାଏ- ଜେଜେଙ୍କ ନାଁ ନୋକୁଳାନନ୍ଦ ଚୌଧୁରୀ, ତାଙ୍କ ବାପାଙ୍କ ନାଁ ନରଇସୁନ୍ଦର ମଙ୍ଗରାଜ, ତାଙ୍କ ବାପା ନୋବରଧନ ମଙ୍ଗରାଜ । ସ୍ତ୍ରୀଲୋକମାନେ ସ୍ୱାମୀ ଓ ଅନ୍ୟ ଗୁରୁଜନଙ୍କର ନାମ ଧରିବା ମନା । ତେଣୁ ଏ ବିକୃତି ।

ଏକଦମ୍ ପିଲାବେଳର ବାପାଙ୍କ କଥା ମନେପଡ଼େ, ଉପର ମହଲା ବଡ଼ ଘରେ ଖଟ ଉପରେ ବସିଥା'ନ୍ତି, ଆମକୁ ଶିଖଉଥା'ନ୍ତି, 'କମଳ ଲୋଚନ ଶ୍ରୀହରି, ସିଲଟରେ ଅକ୍ଷର ଲେଖି ଦିଅନ୍ତି, ଛବି ଆଙ୍କି ଦିଅନ୍ତି । ମୋର ଗୋଟାଏ ଚାବିଦିଆ ଟିଣ ମଟର କୋଉଠୁ ଆସିଥିଲା । ସେଇଟା ଚାବି ଦେଇ ଚଳାନ୍ତି । ଗରମ ଦିନେ ଖରାବେଳେ ଆମେ ଉପର ମହଲା ବଡ଼ଘରେ ବାପାଙ୍କ ସାଙ୍ଗରେ ଶୋଉ । କବାଟ ଝରକାସବୁ ବନ୍ଦ ଥାଏ । ଝିଲିମିଲି ଫାଙ୍କ ଦେଇ ଯେଉଁ ଆଲୁଅ ଆସେ, ସେଥିରେ ବାହାରର ଝାପ୍‌ସା ଛବି ସାମନା କାନ୍ଥରେ ଓଲଟା ହୋଇ ପଡ଼େ । ରାସ୍ତାରେ ଯା' ଆସ କରୁଥିବା ମଣିଷ ଗାଡ଼ି ଆଦିର ଓଲଟା ଛବି ଦେଖିବାକୁ ଭାରି ମଜା ଲାଗେ । ବାପା ତା'ର କାରଣ ବୁଝାଇବା ପାଇଁ ଚେଷ୍ଟା କରନ୍ତି । ଖରାଦିନେ ରାତିରେ ନାଣ୍ଡି ଛାତ ଉପରେ ସପ ପାରି ବାପାଙ୍କ ସାଙ୍ଗରେ ମୁଁ ଶୁଏ । ଆକାଶର ରାଶି ନକ୍ଷତ୍ର ଆଦି ସେ ମତେ ଚିହ୍ନେଇବା ପାଇଁ ଚେଷ୍ଟା କରନ୍ତି । ହେଇ ବଡ଼ ବଡ଼ ତିନିଟା ତାରା ଧାଡ଼ି ହୋଇ ରହିଛି, ସେଇଟା କାଳପୁରୁଷର ଅଣ୍ଟାର କମରପଟୀ । ସେଇ ଯୋଉ ତିନିଟା ତାରା ତିନିକୋଣିଆ

ହୋଇ ରହିଛି, ତାକୁ କହନ୍ତି ମୃଗଶିରା, ରୋହିଣୀ ଶକଟାକାର, ଶଗଡ଼ଦଣ୍ଡା ପରି ଦେଖାଯାଉଛି । କେତେଗୁଡ଼ାକ ନାଁ ମନେ ରହି ଯାଉଥିଲା । ତାରା ଚିହ୍ନିଥିଲି କମ୍ । ବାପାଙ୍କର ଛିଙ୍କଟା ସାଇରେ ବିଖ୍ୟାତ ଥିଲା । ସେ ଯେତେବେଳେ ପ୍ରଚଣ୍ଡ "ହ୍ୟାଁ ଛୋ" ଶବ୍ଦ କରି ଛିଙ୍କିବେ, ତାହା ସାରାସାଇରେ ଶୁଣାଯିବ ଓ କବାଟ ଝରକାସବୁ ଥରିଉଠିବ । ଯାର ଓଲଟା ବୋଉ ଛିଙ୍କିଲାବେଳେ, ଅତି ଆସ୍ତେ ବିଲେଇ ପରି ଛିଙ୍କୁଥିବ ଯେ ସେ ମୋଟେ ଯେମିତି ସରିବ ନାହିଁ ।

ବୋଉ ଚେହେରା ମନେ ପଡୁଛି, ସେତେବେଳର । ଦିନାକେତେ ନାକରେ ଗୋଟାଏ ଦଣ୍ଡୀ ନାଉଥିଲା ଓ ବେକରେ ଗୋଟାଏ ସୁନାର ଚିକ୍ । ଇଞ୍ଚେ ଖଣ୍ଡେ ଓସାରର, ସରୁ ତାରରେ ତିଆରି, ହାତଘଣ୍ଟାର ପଟି ପରି । ହାତରେ କଣ୍ଟା କଣ୍ଟା ଖଡୁ । ବୋଉ ଆମକୁ ଶୁଆଇଲା ବେଳେ ଗପ କହେ, ପିଠି ସଲସଲ କରିଦିଏ । ପହଳୀ କହେ, "ହଳଧର ପଚାରିଲେ ଜଳଧରଙ୍କୁ ଚକ୍ରଧର କିମ୍ପା ମଲେ । ଉପରୁ ପଡ଼ିଲେ ପଞ୍ଚୁପାଣ୍ଡବ ମାରି ବନବାସ ଗଲେ ।" ବୋଉ ସିଲଟରେ ଅକ୍ଷର ଲେଖିଦିଏ । ବୋଉ ପାଖରେ ଚୁନୀ ଶୁଏ । ମୁଁ ଦିନେ ଦିନେ ଅଝଟ ହୁଏ ବୋଉ ପାଖରେ ଶୋଇବି ବୋଲି । ସେଦିନ ମୁଁ ବି ତା' ପାଖରେ ଶୁଏ ।

## ଆମ ଘରର ପରିଚୟ

ଆମ ଘରେ କେତେ ଲୋକ ଥା'ନ୍ତି । ବିନା ଗଉଡ଼, ଦିନା ଭଣ୍ଡାରୀ, ବାମୀ ଦିଦି, ସାଦିବି ଧାଈ, କଣ୍ଠ ଅଜା, ତାଙ୍କର ବୋଉ ଧୋବୀ ଅପା । ଦିନାକେତେ ସତ୍ୟଭାମାପୁରରୁ ଜଣେ ଲୋକ ଆସିଥିଲା । ତା' ନାଁ ଦରିଆ । ବିନା ଗଉଡ଼ ଗୋରା ଗେଦ୍‌କା ବୁଢ଼ା । ମୁଣ୍ଡରେ ଗୋଟାଏ ବେଣ୍ଟି ଥିଲା ନାଁ କ'ଣ । ଗାଈଙ୍କର ଯତ୍ନ ନିଏ । ସକାଳୁ ମତେ ଆଣି ଗାଟିଆଏ ଟଟକା ଦୁହାଁ କଞ୍ଚା ଦୁଧ ପିଇବାକୁ ଦିଏ । ସେଥିରେ ପୁଣି ପୁରୁଣିମୂଳ ବଟା ହୋଇ ପଡ଼ିଥାଏ । ଦିନା ଭଣ୍ଡାରୀ କଳା ଡେଙ୍ଗା ଧଡ଼ିଆ । ବାପାଙ୍କର କାମଧନ୍ଦା କରେ । ସାଦିବି ଧାଈ ମରିଯାଇଛି । ବାମୀ ଦିଦି ଘର କିଶନନଗର ଆଡ଼େ । ସେ ଆଉ ତାଙ୍କର ଭାଇ ବାହାର ପଟର ଗୋଟାଏ ଘରେ ଥା'ନ୍ତି, ଯେଉଁଟା ଆଗେ ଘୋଡ଼ାଶାଳ ଥିଲା । ନିରାଶ୍ରୟା ବିଧବା, ଆମ ଘରେ କାମଦାମ କରି ଚଳନ୍ତି । ବାମୀ ଦିଦିଙ୍କର ଝିଆରୀ ଚାରୁ, ସାତ ଆଠ ବର୍ଷର ହେବ । ସେ ଆମ ସାଙ୍ଗରେ ଖେଳେ ।

ଆଉ ମନେ ପଡୁଛି ଦୁଲୀ । ଆଠଗଡ଼ରୁ ମାମୁଁ ଘରକୁ ଆମଦାନୀ ହେଇଥିଲା । ତ୍ରିପଣ୍ଡ କାଳୀ, ଡେଙ୍ଗୀ, ମୁଣ୍ଡର ବାଳ ବାବୁରୀ ଢଙ୍ଗରେ ସାନ ସାନ କରି କଟା । ଚାଲିଚଳଣ ମର୍ଦ୍ଦଙ୍କ ପରି । ସେ ଅନେକ ପ୍ରକାରର କାମ କରିପାରୁଥିଲା । ଆମ ଦୋତାଲା ସିଡ଼ିର ପାହାଚର ଧାର ଗୁଡ଼ା ଭାଙ୍ଗି ଯାଇଥିଲା । ଏଇ ଦୁଲୀ ତାକୁସବୁ ସିମେଣ୍ଟ ଦେଇ ମରାମତି କରିଥିଲା ।

ସଞ୍ଜବେଳେ ପିଣ୍ଡାରେ ସପରେ ଶୋଇ ଗପ ଶୁଣୁ । ମା, ବାମୀ ଦିଦି ଆଉ କିଏ କିଏ ସବୁ ବସିଥା'ନ୍ତି । ବାଘ ଭାଲୁ ଗପ ଶୁଣିବାକୁ ଭଲଲାଗେ । ଗୋଟାଏ କରୁଣ କାହାଣୀ ଶୁଣି

ସେତେବେଳେ ମନ କ'ଣ ହୋଇ ଯାଉଥିଲା । ଏବେ ବି ମନେ ପଡ଼ିଲେ ଛାତି ଭିତରଟା କେମିତି ହୋଇଯାଏ । କେଉଁ ଗାଁର କାହାଘରର ସମସ୍ତେ ଖରାମାସ ରାତିରେ ପଦାରେ ଶୋଇଛନ୍ତି । ବାଘ ଆସି ସାନ ପୁଅଟିକୁ ନେଇଗଲା । ସେ ତା' ଭଉଣୀକୁ ଡାକୁଛି, କେତି ନାନୀ, କେତି ନାନୀ, ବାଘ ତା' ତଣ୍ଟିକୁ ଚିପିଦେଲା ବେଳକୁ ଶୁଭୁଛି କେଁ, କେତି ନାନୀ କେତି ନାନୀ କେଁ, ବାଘ ମୁହଁରେ ପଡ଼ିଥିବା ଅସହାୟ ଭାଇ, ତାକୁ ବଞ୍ଚେଇବାକୁ ଅସମର୍ଥ ତା'ର ବାପା ମା ଭଉଣୀ, ସେ କରୁଣ ଦୃଶ୍ୟ ଆଖି ଆଗରେ ଭାସି ଉଠେ ।

ଆମ ଘରକୁ ସାଇପଡ଼ିଶାଙ୍କର ସବୁବେଳେ ଅବାଧ ଯା ଆସ । 'ଅନ୍ନପୂର୍ଣ୍ଣା ଦିଦିଙ୍କ ଘର' ଆମର ସାନ ଏକତାଲା ଘରଟାରେ ଭଡା ଥାଆନ୍ତି । ଉମାକାନ୍ତବାବୁ ଥିଲେ କମିଶନର ଅଫିସ୍‌ରେ ଓଡ଼ିଆ ଅନୁବାଦକ । ତାଙ୍କ ଘର ଆମ ଘର ମଝିରେ ଗୋଟିଏ ବାଟ, ସବୁବେଳେ ଖୋଲା, ସବୁବେଳେ ଅବାଧ ଚଳପ୍ରଚଳ । ତାଙ୍କର ପିଲା ଅନେକ । କମଳାକାନ୍ତ ଦାଦା, ମୂଷା ଦାଦା, ସୁନ, କୁନ, ବାସ,ବାବୁଲି, କୁନିଆ, ମିନି । ବାସ ମୋର ସମବୟସୀ । ତା'ର ମୋର ଖୁବ୍ ସାଙ୍ଗ ଥିଲୁ । ସେ ପରେ ଶିକ୍ଷା ବିଭାଗରେ ବଡ଼ ହାକିମ ହୋଇ ଅବସର ନେଲାଣି । ନାଲିଆ ମା ଉମାକାନ୍ତ ବାବୁଙ୍କର ବିଧବା ଭଉଣୀ, ମତେ ଖୁବ୍ ଭଲ ପାଉଥିଲେ । ଘର ପଛ ଗଳିରେ ରଘୁଭାଇଙ୍କ ଘର । ତାଙ୍କ ବୋଉ ବରାବର ଆମଘରେ କାରବାର ହୁଅନ୍ତି । ତା' ପାଖକୁ ବିନା ମିସ୍ତ୍ରୀଙ୍କ ଘର, ବ୍ରାହ୍ମଣ ସାହି, ସହର କେବଳ ନାଁକୁ । ଗାଉଁଲି ହାୱା ପୂରା ଥାଏ । ଯିବା ଆସିବା, ଉଠାବସା, ସାଙ୍ଗ ସୁଖ ସବୁଥିରେ । ଆମର ବଡ଼ କୋଠା, ତାଙ୍କର ଚାଳଘର ବୋଲି ବ୍ୟବହାରରେ କେବେ  ସାନବଡ଼ ଭାବ ଦେଖି ନାହିଁ ।

ଆମର ମୂଳ ଗାଁ ତ ଜଗତ୍‌ସିଂହପୁର ପାଖ ଖେରସ । ସେଠିକା ସାଙ୍ଗରେ ପରିଚୟ ଅନେକ ପରେ ହେଲା । ସେଠୁ ଆସନ୍ତି ସନା ବଡ଼ା' ପା, ଗୋବିନ୍ଦ ଦାଦା, ଅଚ୍ୟୁତି ଦାଦା ହେରିକା । ସନା ବଡ଼ା'ପାଙ୍କର ଡିସ୍‌ପେପ୍‌ସିଆ ନା କ'ଣ ଥାଏ । ଭାରି ରୋଗିଣା, କିନ୍ତୁ ଭାରି ଟକଳା । ବଜାରରୁ ବାଦାମ୍, କିଶ୍‌ମିଶ୍  ହେରିକା ଆଣନ୍ତି, ଆମକୁ କିଛି କିଛି ଭାଗ ମିଳେ । ଆଲୁବୋଖାରା ନାଁଟା ତାଙ୍କରି ଠାରୁ ଶିଖିଥିଲି । ସେ ବୁଝାଇଥିଲେ ଯେ ଏବେ ଆଉ ପୃଥିବୀରେ ପ୍ରକୃତ ସିଂହ ନାହାନ୍ତି । ଯେଉଁଗୁଡ଼ାକ ଅଛନ୍ତି ସେଗୁଡ଼ାକ  'ଶେର୍ ବନ୍‌ବର' । ଗୋବିନ୍ଦ ଦାଦା ଦିନଯାକ ଖଟ ଉପରେ ବସି ପାଞ୍ଜି ଓଲଟାନ୍ତି । ମଧୁ ବଡ଼ା' ପା, ରାଞ୍ଚିରେ ଏ.ଜି. ନା କୋଉ ଅଫିସରେ ଚାକିରି କରୁଥିଲେ । ଛୁଟିରେ ଯିବା ଆସିବା ବେଳେ ଆମ ଘରେ ରହନ୍ତି । ଡେଙ୍ଗା, ଗୋରା, ସୁନ୍ଦର ଦେଖିବାକୁ । ସରକାରୀ ଅଫିସରୁ ରୁଲ୍‌ପକା କାଗଜ, ନାଲିନେଳି ପେନ୍‌ସିଲ ଆଦି ଆଣି ଦିଅନ୍ତି । ଭିକାରୀ ବଡ଼ା'ପା, ମଧ ବେଳେବେଳେ ଆସନ୍ତି । କଣ୍ଣ ଅଜା ପ୍ରକୃତିରେ ଅଜା ବୟସୀ ବୁଢ଼ା ନୁହନ୍ତି । ଦାଦା ହେରିକାଙ୍କ ବୟସର । କୋଉ ସଂପର୍କରେ ଅଜା, ଆମ ଘରେ ରହି ବୋଧେ ସ୍କୁଲରେ ପଢୁଥିଲେ । ମାତ୍ର ସେଥିରେ ବେଶି ଆଗେଇ ପାରି ନ ଥିଲେ । ତାଙ୍କରି ବୋଉ ଧୋବୀ ଅପା, ତାଙ୍କର ଖୁବ୍ ପେଟକୁ ମାରେ । ବିକଳ ହୋଇ ଗଡ଼ନ୍ତି ।

# ଆମ ଘରର ଚଳଣି

୧୯୧୮ ହେଇଥିବ ନିଶ୍ଚୟ । ଇଂରେଜମାନେ ଯୁଦ୍ଧରେ ଜିତିବା ଯୋଗୁଁ କଟକରେ ଗୋଟାଏ ଶୋଭାଯାତ୍ରା ବାହାରିଲା । ବାଉଁଶ ବତା ଓ କାଗଜରେ ତିଆରି ନାନା ଜୀବଜନ୍ତୁ, ଷଣ୍ଢ ଗରୁଡ଼, ସଖୀ କଣ୍ଢେଇ ମୂର୍ତ୍ତି । ଆମେ ସବୁ ବାଲୁବଜାର ଛକ ଉପରେ କାହାଘର ଦୋତାଲାରୁ ଦେଖିଲୁ । ୧୯୨୦ ରେ ବାପା ଯାଜପୁରରେ ସେକେଣ୍ଡ ଅଫିସର୍ ଥିଲେ । ଆମେ ଯେଉଁ କ୍ୱାର୍ଟର୍‌ରେ ରହୁଥିଲୁ ସେଇଟା ଏବେ ବି ଥିବ । ସେଠିକା କଥା ମନେ ପଡ଼େ ଯେ ନାଳରେ ଯେଉଁଠି ଦୁମୁଦୁମୁ ହୋଇ ପାଣି ପଡୁଛି ସେଠିକି ଦାଦା ହେରିକାଙ୍କ ସାଙ୍ଗରେ କେତେଥର ଗାଧୋଇ ଯାଇଛି । ନାଳରେ ଗୋଟିଏ 'ଜଲୀ ବୋଟ୍' ଥାଏ । ସେଥିରେ ବି କେତେଥର ବୁଲିଛୁ । ଖୁବ୍ ମଜା ଲାଗେ । ଯାଜପୁର ଯିବାଆସିବା ପାଇଁ 'ଡୋଲିପୁର' ଷ୍ଟେସନରୁ ବଳଦଗାଡ଼ିରେ ଯିବାକୁ ହେଉଥାଏ । ଥରେ କଟକ ଫେରିବା ବେଳେ ଷ୍ଟେସନ୍‌ରେ ରେଲ୍‌ଲାଇନ୍ ସେପଟେ କାହାଘରକୁ ଖାଇବାକୁ ଗଲୁ । ଲାଇନ୍ ପାରିହେବାବେଳେ ଦୂରରେ ରେଲ୍ ଇଞ୍ଜିନ୍ ପରି ଦିଶିଲା । ମତେ ଭାରି ଡର ମାଡ଼ିଲା । ପ୍ରକୃତରେ କିନ୍ତୁ ସେଇଟା ଲେଭଲ୍ କ୍ରସିଂର ଗୁମୁଟି ଘର । ଗାଡ଼ିରେ ଚଢ଼ିବାବେଳେ ମତେ କିଏ ଜଣେ କାଖେଇ ତଳେ ଠିଆ ହୋଇଥାଏ । ଅନ୍ୟ ସମସ୍ତେ ଚଢ଼ି ସାରିଥା'ନ୍ତି । ଗାଡ଼ି ଛାଡ଼ିଦେବ, ମୁଁ ରହିଯିବି, ଏ ଭୟଟା ମୋର ଖୁବ୍ ହେଉଥାଏ । ଅନେକ ଦିନଯାଏ ରେଲ୍‌ରେ ଯିବାବେଳେ ଓ ଅନ୍ୟ ସମୟରେ ଏ ଉଦ୍‌ବେଗଟା ଘୋଟି ଆସୁଥିଲା । ଏବେ ବି କିଛି ବଳିଥାଇପାରେ ।

ଢେଙ୍କେଙ୍କ ଯିବା ପରେ ଆମ ଘରର ଅବସ୍ଥା ଖରାପ ହୋଇଯାଇଛି । ବାପାଙ୍କ ଚାକିରି ଛାଡ଼ିବା ପରେ ଆହୁରି । ଏକତାଲା ଘର ଓ ପଛପାଖରେ ଥିବା 'ଦଧିବାବୁଙ୍କ କୋଠା'-ଯେଉଁଠି ଏବେ ଗ୍ରାମସେବକ ପ୍ରେସ୍ ଅଛି - ଭଡା ଦେଇ କିଛି ମିଳୁଥିଲା । ଏକତାଲାର ଭଡା କୋଡ଼ିଏ ଟଙ୍କା କି ଆହୁରି କମ୍ ଥିଲା । କଳନ୍ତିରା ଓ ତରିକୁନ୍ଦରେ ଜମି ଥିଲା କିଛି । ସେଠୁ ଧାନ, ଚାଉଳ, ମୁଗହେରିକା କ'ଣ ସବୁ ଆସେ । ଅଗଣାର ପଶ୍ଚିମ ପାଖ ପିଣ୍ଡାରେ ଓଳିଆ ବନ୍ଧା ହୋଇ ଥୁଆ ହୋଇଥାଏ । ଘୁମ ବି ଗୋଟାଏ ଦୁଇଟା ଥାଏ । ତରିକୁନ୍ଦଆଡୁ ଆମ୍ବ ଆସି ଦୁଆରେ ଗଦା ହୁଏ । ପ୍ରାୟ ଖଟା ଆମ୍ବ । ମା', ବୋଉ, ବାମୀ ଦିଦି ହେରିକା ସମସ୍ତେ ଲାଗିପଡ଼ନ୍ତି ଆମ୍ବ ବଛା, ଧୁଆ, କଟାକଟିରେ, ଆଚାର, ଆମ୍ବୁଲ ଆଦି କରିବା ପାଇଁ । ଥରେ ଥରେ ବୋଉଠୁ ପାଣିକଖାରୁ ଆସେ । ବଡ଼ିପରା, ମୋରବ୍‌ବା ତିଆରି ଧୁମ୍ ଲାଗିଯାଏ । ମୋରବ୍‌ବା ପାଇଁ ପାଣିକଖାରୁ ଖଣ୍ଡମାନଙ୍କୁ କୁରୁଶ କଣ୍ଟାରେ ଟପ୍ ଟପ୍ କରି ଅନେକ ଲୋକ ବସି ବସି ଫୋଡ଼ନ୍ତି । ବୋଉ ଚିଠି ଲେଖେ "ତରିକୁନ୍ଦ ଖମାରେଇ ଜାଣିବା । ମାଆଙ୍କ କହିବା ମତେ... ଇତ୍ୟାଦି ଇତ୍ୟାଦି (ଲି) ସାମନ୍ତାଣୀ । "ଆମର ଜମିବାଡ଼ି ସବୁ ବୁଝାସୁଝା କରିବା ପାଇଁ ଥାନ୍ତି ବୁଦ୍ଧିଶ୍ୟାମବାବୁ ଗୁମାସ୍ତା । ସେ ମଝିରେ ମଝିରେ ଆସନ୍ତି । ଅଧାବୟସୀ, ଥାକୁଲା,

ଚକ୍ଷମାଦିଆ । ଭାରି ପୂଜାପାଠ ବାଲା । ଅନେକ ପରେ ଜାଣିଲି ତାଙ୍କର ବୁଦ୍ଧିଟା ପ୍ରକୃତରେ ଶ୍ୟାମ । କ'ଣ ସବୁ ଗୋଳମାଳ କରି କ'ଣ ସବୁ ସେ ବାଗେଇଛନ୍ତି ।

ଜେଜେଙ୍କର ଗାଡ଼ି ଘୋଡ଼ା ସବୁ ବିକ୍ରି ହୋଇଯାଇଥିଲା । କେବଳ ପଡ଼ିଥିଲା ଗାଡ଼ିର କଚ୍‌ୱାନ୍‌ର ପାଦାନରେ ଲାଗୁଥିବା ଘଣ୍ଟିଟାଏ । କେମିତି ଘୋଡ଼ା ଥିଲା ତାର ଗପ ଶୁଣୁ । ବେଳେବେଳେ ମୁଁ କଳ୍ପନା କରେ ଯେ ସେ ଘୋଡ଼ାଶାଳରୁ ଘୋଡ଼ା ବାହାରିବ ।

ମୋର ଯେବଠୁଁ ମନେ ପଡୁଛି ଆମ ଘରେ ଚଳାଚଳରେ ସୌଖିନିଆ କଥା କିଛି ନଥିଲା । ଲୁଗାପଟା ବେଶଭୂଷାରେ ସେ କାଳରେ ଯେମିତି ଜରି, ମଖମଲ୍ ଆଦି ଲାଗିଥିବା କୁର୍ତ୍ତା ପାଇଜାମା ଅବସ୍ଥାପନ୍ନ ଘର ପିଲାଏ ପିନ୍ଧୁଥିଲେ ଆମେ ସବୁ ସେମିତି ପିନ୍ଧିବାର ମନେ ପଡୁନାହିଁ । ଖାଇବା ପିଇବା ବି ସାଧାରଣ ଥିଲା । ମାଛ ସମସ୍ତେ ଖାଉଥିଲେ । ରାନ୍ଧିବା ପାଇଁ ପୂଜାରୀ ଥା'ନ୍ତି, ମାତ୍ର ମା' ତତ୍ତ୍ୱାବଧାନରେ ସବୁ ହୁଏ । ତା' ହାତର ରାନ୍ଧଣା ନିଆରା ଥିଲା । ତା' ହାତ ରନ୍ଧା କୋଶଳା ଶାଗ ଖାଇ ମୋର ଶାଗ ଖାଇବା ରୁଚିଟା ସୃଷ୍ଟି ହେଲା । ତା' କାଞ୍ଜିପାଣି ପରି ସ୍ୱଚ୍ଛ କାଞ୍ଜିପାଣି ମୁଁ ଆଉ କାହାରି ଦେଖି ନାହିଁ । ସେ ପୁଣି ସୂର୍ଯ୍ୟ-କାଞ୍ଜି କରେ, ଛାତ ଉପରେ ଖରା କାଚରରେ ରଖି । ତେବେ ସେ ମୋତେ ଭଲ ଲାଗୁନଥିବା ଜିନିଷ ନ ଜଣାଇ ଖୁଆଇ ଦେବା ଚେଷ୍ଟା ବି କରେ । ଥରେ ଆଳୁ ବୋଲି ଓଲୁଅ ଚକଟା ଖୁଆଇ ଦେଲା । ସେଦିନ ଏକାବେଳକେ ଲଙ୍କାକାଣ୍ଡ ।

ସବୁ ପର୍ବପର୍ବାଣୀରେ ଆମ ଘରେ ପିଠାପଣା ହୁଏ । ସମ୍ବର ଦଶମୀ, ଜନ୍ମାଷ୍ଟମୀ, ସୁଦଶାବ୍ରତ, ପ୍ରଥମାଷ୍ଟମୀ ଏମିତି ଆଉସବୁ କ'ଣ । କାଞ୍ଜିଅଁଳା ଓଷା କି କ'ଣ ଗୋଟାଏ ଓଷାରେ ଶୁଖୁଆରେ ଟିକିଟିକି ରଙ୍ଗ କନା ଗୁଡ଼େଇ ଚଉରା ପାଖରେ ରଖି ପୂଜା କରାଯାଏ । କୋଉ ଗୋଟାଏ ଉପଲକ୍ଷରେ 'ବାଳଲୀଳା' ହୁଏ । ଗୋଟାଏ ଡାଲାରେ ଖଇ ଉଖୁଡ଼ା ଆଦି ଭୋଗ ପୂରେଇ ମୋ ମୁଣ୍ଡ ଉପରେ ମା' ରଖେ, ସାହି ପିଲାମାନେ ଆସି ସେଥିରୁ ମୁଠା ମୁଠା ନେଇ ଖା'ନ୍ତି । ପ୍ରଥମାଷ୍ଟମୀଟା ମୋ ପାଇଁ ସବୁଠୁଁ ଗୁରୁତ୍ୱପୂର୍ଣ୍ଣ । ମୁଁ ସେଦିନ ପୋଢୁଆଁ ହୁଏ । ସମ୍ବର ଦଶମୀ ଦିନ ସମସ୍ତଙ୍କ ପାଇଁ ଗୋଟାଏ ଗୋଟାଏ ପିଠା ବଡ଼ା ହୁଏ । ମୋ ପାଇଁ ମାଣ୍ଡୁଅ ବଡ଼ା ହୁଏ । ଭାରି ବଢ଼ିଆ ପିଠା । ଆଜିକାଲି ଆଉ କାହିଁ କୋଉଠି ଦେଖୁ ନାହିଁ । ଦାଦା ପାଇଁ ବରା, ବାପାଙ୍କର କୁଣ୍ଡା ଚକୁଳି । ତାଙ୍କ ଉପରୁ କେତେ ପୁଅ ମରିଥିବାରୁ ତାଙ୍କ ପାଇଁ ଏ ବ୍ୟବସ୍ଥା । ପିଠା ତିଆରି ଧୂମ୍ ତା'ର ପୂର୍ବ ଦିନଠୁଁ ଲାଗେ । ବଟାବଟି, ଜନ୍ତାଜନ୍ତି ।

ଥରେ ମା' କହିଥିଲା ଯେ ସମ୍ବର ଦଶମୀ ଦିନ ସମ୍ବର ଅସୁର ଆସେ । ସେଦିନ ମୁଁ ବାରମ୍ବାର କୋଠା ଉପରକୁ ଚାହିଁଥିଲି କୁଆଡୁ ଆକାଶରୁ ଆସି ସେଇବାଟେ ଓହ୍ଲେଇବ ବୋଲି ଆଶା କରି । ମଗୁଶିର ମାସରେ ଗୁରୁବାର ମାଣ ବସେ ଗମ୍ଭିରୀ ଘରେ । ଘରଯାକ ଚାଉଳ ବଟା ପିଠଉରେ ଲକ୍ଷ୍ମୀଚିତା ପଡ଼େ, ଦାଣ୍ଡରୁ ପାଦ ଆସି ସବୁ ଘରକୁ ଯାଇଛି । ମଝିରେ ମଝିରେ ପଦ୍ମଫୁଲ, ଲତାପତ୍ର । ମା' ଚିତା ପକେଇବାରେ ଓସ୍ତାଦ୍ । ଆଉମାନେ ବି ସବୁ

ଲାଗିପଡ଼ନ୍ତି । ବୁଧବାର ରାତିରୁ ଚିତା ପକାଯାଏ । ମାଣବସାରେ ବି କ'ଣ ସବୁ ପିଠାପଣା ହୁଏ । ଏ ଗମ୍ଭିରୀ ଘରଟା ଗୋଟାଏ ରହସ୍ୟପୁରୀ । ସବୁଦିନେ ବନ୍ଦ ଥାଏ । ମାଣବସାବେଳେ ଓ ଅନ୍ୟ ସମୟରେ କେବେ କେମିତି ଖୋଲା ହୁଏ । ଭାଦ୍ରମାସରେ ପାଟ ମଠା, କମ୍ବଳ ଆଦି ଖରାରେ ଦେବାପାଇଁ ଖୋଲାହୁଏ । ଅନେକ ବାକ୍ସ ସିନ୍ଧୁକ । ସେଥିରେ ସବୁ ପାଟଲୁଗା, ପୁରୁଣା ପୋଷାକ । ଜେଜେଙ୍କର ଚପକନ୍ ପିନ୍ଧି ଆମେ ପିଲାଏ 'ପକ୍ଷୀଚଟା' ହେଉ ଲମ୍ବଲମ୍ବ ଆସ୍ତିନ୍‌କୁ ଝୁଲାଇ ଝୁଲାଇ । ଗନ୍ଧ କର୍ପୂରର ବାସ ଏ ଘରର ସନ୍ତକ ।

ଗୋଟାଏ ଲୁହା ଆଲମାରୀ ଏ ଘରେ ଥାଏ । ସେଥିରେ ସବୁ କେତେକଣ ଥାଏ ଦେଖିବାକୁ ଆମର ବେଜାଏ କୌତୂହଳ । ଜେଜେଙ୍କର ରାୟବାହାଦୂର ପଦକ, ବାପା ଆଉ ଦାଦାଙ୍କର ପରୀକ୍ଷା ପାସ୍ ସାର୍ଟିଫିକେଟ୍, ଗୋଟାଏ ମୁହଁବନ୍ଦ ସୁନାଘଣ୍ଟା, ଡେକାଏ ହାତୀ ଦାନ୍ତ କିଏ ବାପାଙ୍କୁ ଉପହାର ଦେଇଥିଲା । ଏମିତି ସବୁ କେତେ କ'ଣ । କାନ୍ଥରେ ଥିବା ଥାକରେ ଅନେକ ବୋତଲ । ପରେ ପଢ଼ି ଶିଖିବାରୁ ଦେଖିଲି "ହ୍ୱାଇଟ୍ ହର୍ସ" 'ବ୍ଲାକ୍ ଆଣ୍ଡ୍ ହ୍ୱାଇଟ୍' ଏମିତି ସବୁ ନାଁ । ଖାଲି ମଦ ବୋତଲ, ଜେଜେଙ୍କର ସ୍ମୃତି । ମାଣବସାବେଳେ ମାମୁଁଘର ଗାଁ ସତ୍ୟଭାମାପୁରରୁ ଚମ୍ପା କଦଳୀକାନ୍ଦି ଆସେ । ଏଇ ଗମ୍ଭିରୀ ଘରେ ଟଙ୍ଗା ହୋଇ ରହେ । ବାପା, ଦାଦା ହେରିକା ସେଥିରୁ ଛିଡ଼େଇ ଛିଡ଼େଇ ଖାଆନ୍ତି ।

ମା' ବଡ଼ି ଓ ଆଚାର ତିଆରିରେ ସିଦ୍ଧହସ୍ତ ଥିଲା । ଶୀତଦିନେ ବଡ଼ିପରା ଧୂମ୍‌ଲାଗେ । ବିରି ବଡ଼ି, ପାଣିକଖାରୁ ବଡ଼ି, ଆଖୁ ବଡ଼ି, କେତେ କଣ । ବଡ଼ି ପାଇଁ ପାଣିକଖାରୁ କୋରାର ଗୋଟାଏ ରୀତିମତ ଧନ୍ଦା ଲାଗିଯାଏ । ଆଖୁ ବଡ଼ି ଜିଲିପି ପରି ପରାହୁଏ କନା ଉପରେ ଖସା ବିଛେଇ ତା ଉପରେ । ଭଜା ହେଲେ ଭାରି ସୁଆଦ । ବଡ଼ି ନାଣ୍ଡି ଛାତ ଉପରେ ଖରାରେ ଶୁଖା ହୁଏ । ନାଣ୍ଡି ଛାତରେ ବାଡ଼ ନାହିଁ । ସେଥିପାଇଁ ସାନପିଲା ତା' ଉପରକୁ ଏକୁଟିଆ ଯିବା ମନା, କିନ୍ତୁ ଟିକିଏ ବଡ଼ ହେବାପରେ ଆମକୁ ଅନୁମତି ମିଳିଯାଇଥିଲା । କାଉ ହୁରୁଡ଼େଇବାରେ ଆମେ ସାହାଯ୍ୟ କରୁ । କାଲୁଆ ପବନରେ ନାଣ୍ଡି ଛାତ ଉପରେ ଖରାରେ ବସି ମୁଢ଼ି ସାଙ୍ଗରେ କନ୍ଦମୂଳ ପୋଡ଼ା ଖାଇବାର ମଉଜଟା ଏବେ ବି ମନେ ପଡୁଛି । ମା'ର ତିଆରି କୋଳି ଆଚାର ମୋର ସବୁଠାରୁ ପ୍ରିୟ ଥିଲା । ଆଉ ଥିଲା କୋଳି ଗୁଣ୍ଡ କରି କରାଯାଇଥିବା କୋଳି ଚକି । ମା' ବରାବର କାର୍ତ୍ତିକ ମାସରେ ହବିଷ୍ୟ କରେ । ସେ ସମୟରେ ଧୂଆ ମୁଗ ଡାଲିରେ କଦଳୀ, ଅଗସ୍ତି ଛୁଇଁ, ଉଆଉ ହେରିକା ପଡ଼ି ମସଲା ନ ଥିବା ଯେଉଁ ଡାଲି ହୁଏ ହବିଷ ଭାତ ସାଙ୍ଗରେ ଆମେ ବି ତା' ଖାଉ । ସେମିତି ଡାଲି ଆଉ କେଉଁଠି ହୁଏ ନାହିଁ । ମା'ର ହବିଷ ଖାଇବା କଳା ମୁଗୁନି ପଥର ବାସନରେ ହୁଏ ।

ଦିଆଲୀବେଳେ ବାଡ଼ିରେ ଆକାଶ ବାଉଁଶ ପୋତି ଦୀପ ଦିଆଯାଇଥାଏ ଯେ କାର୍ତ୍ତିକ ପୂନେଇ ଯାଏ ପ୍ରତିଦିନ ଜଳେ । ମା' ବିଛଣା ତଳେ ବିଡାଏ ଛଣ ରଖି ଶୁଏ । ହବିଷ୍ୟ ବେଳେ କୁଆଡ଼େ କୁଶାସନରେ ଶୋଇବା ନିୟମ । କାର୍ତ୍ତିକ ପୂନେଇ ଦିନ ଭୋରରୁ କାର୍ତ୍ତିକ

ସ୍ନାନ ଓ ଡଙ୍ଗାଭସା । ପିଲାଙ୍କ ପାଇଁ ଗୋଟିଏ ଭାରି ଆନନ୍ଦ ଓ ଆକର୍ଷଣର ଉପଲକ୍ଷ୍ୟ । ପୂର୍ବଦିନରୁ ସେଥିପାଇଁ ଆୟୋଜନ ଚାଲେ । ମା'ର ଡଙ୍ଗା କଦଳୀ ଖୋଳପାରେ ତିଆରି ହୁଏ - ଫୁଟେ ଖଣ୍ଡ ଲମ୍ବର ଖଣ୍ଡେ ଖଣ୍ଡେ ଖୋଳପା । ସେଥିରେ ଖଡ଼ିକା କାଠିରେ ବଳା ହୋଇଥିବା ଘିଅ ସଳିତା ଦୁଇ ତିନିଟା ଲେଖା ପୋତା ହୋଇଥାଏ । ଆମ ପାଇଁ ସୋଲ ଆଉ କାଗଜରେ ତିଆରି ଡଙ୍ଗା କିଣା ହୋଇ ଆସେ । ସେଥିରେ ବି ଖଡ଼ିକା କାଠି ସଳିତା ପୋତା ହୁଏ । ରାତିରୁ ଏସବୁ ତିଆରି ସରିଥାଏ । ଶୀତରେ ରାତି ଥାଉଁ ଉଠିବା ଏକ ସମସ୍ୟା । ଏଣେ ପ୍ରବଳ ଆଗ୍ରହ, ତେଣେ ଶୀତରେ ଶେଯ ଭିତରୁ ବାହାରିବାର ଅନିଚ୍ଛା । ଶେଷକୁ ଆଗ୍ରହର ହିଁ ଜୟ ହୁଏ । ଡଙ୍ଗା ହେରିକା ସବୁ ନେଇ ନଈକୂଳରେ ପହଞ୍ଚି ପାଣିକୁ ଓହ୍ଲାଇବାବେଳେ ମନର ଜୋର୍‌ର ଆଉ ଏକ ପରୀକ୍ଷା । ଡଙ୍ଗା ଭସାଇବାବେଳେ ଗୋଟିଏ ଓଡ଼ିଆ ପଦ ବୋଲା ହୁଏ ।

ଅ କା ମା ବୈ ପାନ ଗୁଆ ଖାଇ
ପାନ ଗୁଆ ତୋର ମାସକ ଧର୍ମ ମୋର ।

ମା' ଯା ସାଙ୍ଗରେ ନଈରେ ପାନଗୁଆ ବି ପକାଏ । ନଈ କୂଳେ କୂଳେ ଚାହୁଁ ଚାହୁଁ ଫୁଟି ଉଠେ ଟିକି ଟିକି ଆଲୁଅର ରୋଷଣୀ ଆଉ ନଈର ହଲିଲା ପାଣିରେ ତା'ର ଲୀଳାୟିତ ପ୍ରତିବିମ୍ବ । ପଶ୍ଚିମ ଦିଗକୁ ଢଳୁଥିବା ପୂନେଇ ଜହ୍ନର ଆଲୁଅ, ହାଲୁକା କୁହୁଡ଼ି ଭିତର ଦେଇ ଗଛ ବୁଚ୍ଛ, ନଈବାଲି, ନଈର ସେପାରି କୂଳ, ସବୁଥିରେ ଗୋଟାଏ ରହସ୍ୟର ପ୍ରଲେପ ବୋଳିହୋଇଯାଏ । କୂଳେ କୂଳେ ପିଲାଙ୍କର ଉତ୍ତେଜିତ ଓ ଆନନ୍ଦମୟ କୋଳାହଳ କାହା ଡଙ୍ଗା କେତେ ବାଟଗଲା । ପାଣିରେ ପଶି ଗାଧୋଉଥିବା ବଡ଼ମାନଙ୍କୁ କାକୁତି ମିନତି- "ହେ, ମୋର ଡଙ୍ଗାଟା ଟିକିଏ ଭିତରକୁ ନେଇ ଭସେଇ ଦିଅ", ବଡ଼ମାନଙ୍କର ସ୍ତୋତ୍ର ପାଠ, ନଈକୂଳ କାଳୀ ଓ ହନୁମାନ ମନ୍ଦିରର ଘଣ୍ଟାଧ୍ୱନି, ସବୁ ମିଶି ଗୋଟାଏ ଅଦ୍‌ଭୁତ ଅନୁଭୂତି ।

ଏ ସବୁ ସାରି ମା' ମନ୍ଦିର ପରିକ୍ରମାରେ ବାହାରେ । ପାଖ ଆଖରେ ସବୁ ମଠ, ମନ୍ଦିର, ନୃସିଂହନାଥ ମନ୍ଦିର, ଗୋପାଳଜୀ ମଠ, ବିଶ୍ୱନାଥ ମନ୍ଦିର, ହନୁମାନ ମନ୍ଦିର ଓ ଏମିତି ଆଉସବୁ କେତେ । ପୁନେଇ ପର୍ବର ପଞ୍ଚକ ପାଞ୍ଚଦିନ ଯାକ ଭୋରରୁ ଭକ୍ତିମାର୍ଗୀ ଲୋକ କୀର୍ତ୍ତନ କରି ନଗର ପରିକ୍ରମା କରନ୍ତି । ଝାଞ୍ଜ, ଖୋଳ, କରତାଳ ବାଜେ, ନାଲି, ହଳଦିଆ, ଧଳା ତିନିକୋଣିଆ ପତାକା ଉଡ଼େ । ପୂନେଇ ଦିନ କୀର୍ତ୍ତନ ଦଳ ବେଶୀ ସଂଖ୍ୟାରେ ବାହାରନ୍ତି । ମନ୍ଦିର ପରିକ୍ରମାରେ ମା' ସାଙ୍ଗରେ ଆଉ ବି ସବୁ ସାହିର ସ୍ତ୍ରୀ ଲୋକମାନେ ଥା'ନ୍ତି । ମୁଁ ବି କେଇଥର ଯାଇଛି । ସମସ୍ତେ କାର୍ତ୍ତିକ ମାସର ଭଜନ ବି ଗାଆନ୍ତି ତାଳି ମାରି ମାରି । ଗୋଟାଏ ପଦ ମନେ ପଡୁଛି -

ଭାତ ହେଲେ ନକେଇ ଦହି ଦେଇ ଖାଇବା
ମହାକାର୍ତ୍ତିକ ସରି ଯାଉଛି, ଆଉ କାହୁଁ ପାଇବା ।

ହବିଷ୍ୟ କରିବା ପାଇଁ ମା' ଥରେ ଥରେ ପୁରୀ ଯାଏ । ମୁଁ ବି କେତେଥର ତା ସାଙ୍ଗରେ

ଯାଉଥିବାର ମନେ ପଡୁଛି । ସେଠି ଆମେ ସାଧାରଣତଃ ଦୁର୍ଗାଚରଣ ମଉସାଙ୍କ ଘରେ ରହୁ । ତାଙ୍କୁ ଆମେ କହୁଥିଲୁ ଦାଦା ବାପା । ସେଠି ଆଉ ଥା'ନ୍ତି ଖୋକା ଦାଦା ଶରତ ଚନ୍ଦ୍ର ଦାସ, ତାଙ୍କ ସାଙ୍ଗରେ ମୋର ଭଲ ବନୁଥିଲା । ପୁରୀରେ ଆଉ ଥା'ନ୍ତି ପୁରୀ ଜେଜେ ଓ ପୁରୀ ମା' । ପୁରୀ ଜେଜେ-ବାଳମୁକୁନ୍ଦ କାନୁନ୍‌ଗୋ - ପୁରୀ ମନ୍ଦିରର ମ୍ୟାନେଜର କି କ'ଣ ଥିଲେ, ତାଙ୍କ ସାଙ୍ଗରେ ମୋର ସେମିତି କିଛି ବନୁ ନ ଥିଲା - କିନ୍ତୁ ମୁଁ ପୁରୀ ମା'ଙ୍କୁ ଖୁବ୍ ଭଲ ପାଉଥିଲି । ତା'ର ମୁଖ୍ୟ ଭିତ୍ତି ବୋଧହୁଏ ଉତ୍କୃଷ୍ଟ କିସମର ଜଗନ୍ନାଥବଲ୍ଲଭ, ଲକ୍ଷ୍ମୀବିଳାସ ଓ ମଗଜଲଡୁ ।

ଅନ୍ନପୂର୍ଣ୍ଣା ଦିଦିଙ୍କର ମା'ଙ୍କ ସାଙ୍ଗରେ ମା'ର ବରାବର କିଏ କେତେ ଅଧିକ ପୁଣ୍ୟ କରିପାରିବ ଏଇ ନେଇ ପ୍ରତିଯୋଗିତା ଲାଗିଥାଏ । ପୁଣ୍ୟ ଅର୍ଜନର ଗୋଟାଏ ପନ୍ଥା ହେଲା ସମୁଦ୍ରରେ ଶୀଘ୍ର ସ୍ନାନ କରିପାରିବା । ଏମିତି ଜିଦାଜିଦିରେ ଯେ ତାଠୁଁ ସେ ତାଠୁଁ ଆଗେ ସ୍ନାନ କରିବା ଚେଷ୍ଟା କରନ୍ତି । ଦିନେ ମା, ଖୁବ୍ ଚଞ୍ଚଳ ଉଠି ଗାଧୋଇସାରି ଆସି ଅପେକ୍ଷା କରି ବସିଛି ଯେ ଟିକିଏ ଫରଚା ହେଲେ ମନ୍ଦିରକୁ ଦର୍ଶନ କରିଯିବ । ଫରଚା କିନ୍ତୁ ହେଉ ନାହିଁ । ବୁଝୁବୁଝୁ ଏକାବେଳେ ରାତି ସାଢ଼େ ବାରଟାରୁ ଉଠି ଗାଧୋଇ ପଡ଼ିଛି ।

ଅନ୍ନପୂର୍ଣ୍ଣା ଦିଦିଙ୍କର ବାପା ଶିବବାବୁ ବଡ଼ ମଜାର ଲୋକଥିଲେ । ଧଡ଼ିଆ ସିଡ଼ିଙ୍ଗା ବୁଢ଼ା, ଲମ୍ବାଳିଆ ମୁହଁ । ତାଙ୍କର କବିତା ଲେଖିବାର କୋହର ଉଠିଥିଲା ଓ ସାନ ସାନ ଚୁଟକି କବିତା ସବୁ ଲେଖି ଯାହାକୁ ପାଇଲେ ଧରି ଶୁଣାଉଥିଲେ । ସେଥିରୁ ଧାଡ଼ିଏ ଧାଡ଼ିଏ ମନେ ଅଛି । ଗୋଟାଏ –

ଆରେ ଆମ୍ବକସି ସୁଗନ୍ଧ ତୋ ନସି
ପଖାଳ ସାଙ୍ଗରେ ହେଉ ପରଶଂସି ।

ଆଉ ଗୋଟାଏ –

ଭେଟକୀ ମାଛର ଚଟକ
କେଉଟ ଦେଖାଏ ଛଟକ
ଅଜବ ସହର କଟକ ।

ରମାକାନ୍ତ ବାବୁଙ୍କର ବାପା କଳାହାଣ୍ଡିରେ କ'ଣ ଚାକିରୀ କରୁଥିଲେ । ମଝିରେ ମଝିରେ ଆସନ୍ତି । ସେତେବେଳେ କଳାହାଣ୍ଡିରୁ ବଳଦ ଗାଡ଼ିରେ ପାର୍ବତୀପୁରମ୍ ଆସି ରେଳ ଧରିବାକୁ ପଡୁଥିଲା । ବଳଦ ଗାଡ଼ି ବାଟ ଚାରିଦିନ କି ବେଶି ସମୟର । ସେ ଓ ତାଙ୍କ ସ୍ତ୍ରୀ ଆସିଲେ କଳାହାଣ୍ଡିର ବାଘଗପ ଖୁବ୍ ଶୁଣିବାକୁ ମିଳେ । ଖରାଦିନେ ନାଣ୍ଡିଛାତ ଉପରେ ମା', ଅନ୍ନପୂର୍ଣ୍ଣା ଦିଦି ହେରିକା ବସନ୍ତି, ସେଇଠି ସବୁ ଗପ ପଡ଼େ ।

ବୟସ ଟିକିଏ ବଢ଼ିବା ସଙ୍ଗେ ସଙ୍ଗେ ଆମର ଚରାଭୂଇଁର ବିସ୍ତୃତି ବଢ଼ିଲା । ନଈକୂଳ, ଖେଳପଡ଼ିଆ, ସେତେବେଳକୁ 'ସନ୍‌ସାଇନ୍' ପଡ଼ିଆ ନାମକରଣ ହୋଇ ନ ଥାଏ, ପାଚେରୀ ବି ନ ଥାଏ । ବାରି ଚାକୁଣ୍ଡା, ଅଗରା, ଅଙ୍କରାନ୍ତି, ଦୁଦୁରା, ଅରଖ, ଏଇ ସବୁରେ ପଡ଼ିଆ ଭରତି ।

ମଝିରେ ଠାଏ ଠାଏ ଚନ୍ଦା । କେଡ଼େ ନାଗଫେଣିଆ ବୁଦା, କଣ୍ଟା ସିନା, କିନ୍ତୁ ତା'ର ହଳଦିଆ ଫୁଲ ଭାରି ସୁନ୍ଦର । ବାରି ଚାକୁଣ୍ଡାରେ ବି ହଳଦିଆ ଫୁଲ ଛାଇ ହୋଇଥାଏ । ଅରଖ କଢ଼କୁ ଚିପିଦେଲେ ଫଟ୍‌କରି ଫାଟିଯାଏ । ଭେଣ୍ଡି ବାଇଗଣ ପାଚିଲେ ଭାରି ସୁନ୍ଦର ଦେଖାଯାଏ । ତୋଳି ଦେଖୁ ଭିତରେ ଖାଲି ମଞ୍ଜି ଭର୍ତ୍ତି । ବିଛୁଆତି ବି ଅରାଏ ଅରାଏ ଥାଏ ।

ପଢ଼ିଆ ଅପେକ୍ଷା ନଣ୍ଡବାଲିଟା ଖେଳ ପାଇଁ ବେଶି ପ୍ରଶସ୍ତ ଥିଲା । ଡୁଡୁ, ଧାପ୍‌ସା, ବୋହୂଚୋରୀ – ଏଇସବୁ ଖେଳ । ଏବ ଭଳିଆ କଟକର ଲୋକସଂଖ୍ୟା ଏତେ ବେଶି ନ ଥିଲା । ନଣବାଲି ବି ସେତେ ବେଶି ମଇଳା ହେଉ ନ ଥିଲା ।

ଘର ହାତରୁ ଦୂରକୁ ଏକୁଟିଆ ଯିବାର ବୋଧହୁଏ ପ୍ରଥମ ଅନୁଭୂତି ମନେ ପଡୁଛି । ଦାଦା ମତେ ସାଇକେଲରେ ବସେଇ କୁଆଡ଼େ ନେଇ ଯାଉଥିଲା । ଫେରି ମୋତେ ପଢ଼ିଆ ଅଧାରେ ଛାଡ଼ିଦେଇ ଘର ଦେଖେଇ କହିଲା, "ଏକୁଟିଆ ଚାଲିଯାଇ ପାରିବୁ ତ ।" କହି ଆଉ କୁଆଡ଼େ ଚାଲିଗଲା । ମୁଁ ସେତକ ବାଟ ଦକଦକ ଛାତିରେ ଏକୁଟିଆ ଚାଲି ଆସିଲି ।

## ମାଗଅପା ଘର

ମାଗଅପା ଘର ଆଉ ମାମୁଁ ଘର ବି ଆମର ପିଲାଦିନର ଚରାଭୂଇଁ ଥିଲା । ମାଗଅପା ଘରକୁ ଗଲେ ବିସ୍କୁଟ ଖାଇବାକୁ ମିଳେ, ଆଉ ମିଳେ ସରକାରେ ପଡ଼ିଥିବା କୋବି ଓ ପିଆଜ ଆଚାର । ବଡ଼ ପି'ସା ମସ୍ତ ଡେଙ୍ଗା ମଣିଷ, ଗମ୍ଭୀର ସ୍ୱଭାବ, ଅଳ୍ପ କଥା କହନ୍ତି । ତାଙ୍କ ସାନଭାଇ ନଗୁ ପି'ସା ମୁନ୍‌ସଫ୍ ହୋଇଥାନ୍ତି । ତାଙ୍କ ପୁଅ ମୃଷି ସାଙ୍ଗରେ ଖେଳୁ ଆଉ ମାଗଅପାଠୁଁ ବିସ୍କୁଟ ହେରିକା ଖାଉ । ଚୂନାଅପା ଶ୍ରୀକୃଷ୍ଣ ମହାପାତ୍ରଙ୍କ ଝିଅ । ପି'ସାଙ୍କ ବାପା ବଳରାମ ଦାସ ଉପରମହଲା ପଶ୍ଚିମର କୋଣ ଘରେ ରହୁଥା'ନ୍ତି । ଶୁକୁଟା ଲମ୍ବାଳିଆ ବୁଢ଼ା । ତାଙ୍କ ସାଙ୍ଗରେ ଆମର କିଛି କାରବାର ନ ଥାଏ । ତାଙ୍କର ଗୋଟାଏ ଟଣା ରିକ୍‌ସା ଥାଏ, କଟକରେ ପ୍ରଥମ । ସେ ସେଇଥିରେ ବସି ନଈକୂଳକୁ ହାଓ୍ୱା ଖାଇ ଆସନ୍ତି । ସେ ଗୋଟାଏ କ'ଣ ରାମାୟଣ ଲେଖିଥିଲେ ତା'ର ବହୁତ ଗୁଡ଼ାଏ ଛାପା ବହି ମାଗଅପା ଘରେ ଗୋଟାଏ ସିନ୍ଦୁକ ଭିତରେ ଥାଏ ।

ବଡ଼ ପି'ସା ଭାରି ବ୍ୟବସ୍ଥିତ ଲୋକ । ତାଙ୍କର ସବୁ ଜିନିଷ ଠିକ୍ ଯେଉଁଠି ଯେମିତି ସଜାହୋଇ ରହିଥିବ । ବଡ଼ ଆଲମାରୀର ଉପର ଥାକ ବାଁ କଣରେ ବାକ୍ସ କ୍ୟାମେରା, ତା' ପାଖକୁ ତା'ର ସରଞ୍ଜାମ, ଏମିତି ସବୁ ଆଉ କେଉଁଠି କ'ଣ ମତେ ଜଳଜଳ ଦେଖାଯାଉଛି । ପି'ସା ଥରେ ଆମର ଫଟୋ ଉଠେଇଥିଲେ । ମୃଷି, ଚୂନୀ ଓ ମୁଁ ଅଗଣା ପାହାଚରେ ବସିଲୁ । ପି'ସା ଗଜରେ ଦୂରତ୍ୱକୁ ନିର୍ଭୁଲ କରି ମାପି ଟୁଲ୍ ଥୋଇଲେ ଓ ସେଥି ଉପରେ କ୍ୟାମେରା ରଖି ଫଟୋ ଉଠେଇଲେ । ତାଙ୍କ ପାଖକୁ କଲିକତାର ବଡ଼ବଡ଼ ଦୋକାନ, ହ୍ୱାଇଟ୍‌ଓ୍ୱେ ଲେଡ଼୍‌ଲ, ଆର୍ମୀ ଏଣ୍ଡ ନେଭୀ ଷ୍ଟୋର୍ସର ସବୁ ସଚିତ୍ର ମୂଲ୍ୟ ତାଲିକା ଆସେ । ସେଥିରେ ଛବି ଦେଖୁଁ । ଆଉ ଥାଏ ରେଳବାଇ ସମୟ ସାରିଣୀ, ସେତେବେଳର ଇଷ୍ଟ ଇଣ୍ଡିଆନ୍ ରେଲ୍‌ୱାଇର । ମୁଁ ସେସବୁ

ସମୟ ସାରଣୀ ଓଲଟାଏ । କେତେ ସହର ନାଁ, ପଞ୍ଜାବ ମେଲ୍, ବମ୍ବେ ମେଲ୍ ଭଳି କେତେ ସବୁ ନାମଦାଦା ଗାଡ଼ି । ଶୁଣିଥାଉ ଯେ ସେଆଡ଼େ ଗାଡ଼ିସବୁ କୁଆଡ଼େ ଘଣ୍ଟାକେ ଷାଠିଏ ମାଇଲ୍ ବେଗରେ ଯାଏ । ଇସ୍, ବାବାରେ କି ସ୍ପିଡ୍ । ତେଣେ ପୁଣି କୁଆଡ଼େ ଡବଲ୍ ଲାଇନ୍ । ଯାଡ଼ୁ ଗୋଟାଏ ମେଲ୍ ଟ୍ରେନ୍ ଯାଉଥିବ, ସିଆଡ଼ୁ ଗୋଟାଏ ଆସୁଥିବ । ଦୁଇଟା ପରସ୍ପରକୁ ପାରିହେବା ବେଳେ କେମିତି ଲାଗୁଥିବ ? କଳ୍ପନାରେ ମୁଁ ଦେଖେ ହାଓଡ଼ା, ଏଲାହାବାଦ, ଦିଲ୍ଲୀ, ଆଗ୍ରା... ।

ପି'ସା ମଝିରେ ମଝିରେ କଲିକତା ଆଡ଼େ ଯା'ନ୍ତି । ତେଣୁ ଆଣନ୍ତି ଲିଚୁ, ଅଙ୍ଗୁର । ଅଙ୍ଗୁର ପତଳା କାଠର ସାନସାନ ପେଡ଼ିରେ ତୁଳା ଦିଆ ହୋଇ ଦଶ ଗୋଡ଼ିଏଟି ଲେଖା ରଖା ହୋଇଥାଏ ।

ମା' ସହିତ ପୁରୀ ଯିବା କି ବାପା ସେଠି ଥିବାବେଳେ ଯାଜପୁର ଯିବା ରେଳଗାଡ଼ି ଚଢ଼ାର ପ୍ରଥମ ଅଭିଜ୍ଞତା । 'କୁ ଝୁକ୍‌ଝୁକ୍', 'ଛ ଛ ପଇସା ଛ ଛ ପଇସା' କହି କହି ରେଳ ଚାଲୁଛି । ମିଛରେ ଠାଏ ଠାଏ ଷ୍ଟେସନ୍ । 'ପାନ୍ ବିଡ଼ି ସିଗ୍ରେଟ୍, ଗରମ ଚା...' ଡାକ, ଗାର୍ଡ଼ର ନାଲି ସବୁଜ ପତାକା ହଲାଇ ସିଟି ବଜା, ଯାତ୍ରୀ ଓ କୁଲିଙ୍କର ପାଟିତୁଣ୍ଡ ସବୁ କିଛି ଗୋଟାଏ ବିଚିତ୍ର ଆକର୍ଷଣମୟ ଅନୁଭୂତି । ପିଲାଏ ସବୁ ମିଶି ରେଳଗାଡ଼ି ଖେଳୁ । ବିଶି ଓ ବୁଢ଼ା ଆଙ୍ଗୁଠି ସନ୍ଧିକୁ ଫରଚା କରି ଓଠରେ ଦେଇ 'କୁ' କରି ରେଲ୍‌ଇଞ୍ଜିନ୍‌ର ଅନୁରଣିତ ସିଟିର ଅନୁକରଣ କରି ଜଣେ ଆଗରେ ଥିବ, ତା ପଛରେ ଆଗବାଲାର ଅଣ୍ଟା କି କାନ୍ଧ ଧରି ଜଣକୁ ଜଣ ହୋଇ ଧାଡ଼ିଏ, ଗାଡ଼ି ଚାଲିବ ଛ ଛ ପଇସା ଛ ଛ ପଇସା ।

ଆଗ ଅପା ଘରେ ଆମ ଜୀବନ ସହିତ ଜଡ଼ିତ ଆଉ ଦୁଇଜଣ ଥା'ନ୍ତି, ନରୁ ପି'ସା ଓ ପାଣୁ ପି'ସା । ନରୁ ପି'ସା ବଡ଼ ପି'ସାଙ୍କର ଗାଁ ସଂପର୍କରେ ଭାଇ । ସେ ସେଠି ଥାଇ ଏଇଟା ସେଇଟା ନାନା କାମ କରନ୍ତି । ଆମକୁ ଦେବୀ ଓ କାଳୀ ମେଢ ଦେଖେଇବାକୁ ନେବାବେଳେ ତାଙ୍କୁ ସ୍ମରଣ କରାଯାଏ । ସେତେବେଳେ ତ କଟକରେ ଏତେ ବେଶି ମେଢ଼ ହେଉନଥାଏ । ବିନୋଦ ବିହାରୀ, ଚଉଧୁରୀ ବଜାର, ଚାନ୍ଦିନୀଚୌକ ଏତକ ଦେଖିଦେଲେ ହେଲା । ଆଉ ଥିଲା ନିମ୍‌ଚଉଡ଼ି ପାଖରେ ଫକୀର ମହମ୍ମଦଙ୍କର ପିତୁଳା ନାଚ -ମଣିଷ ମାପର ମୂର୍ତ୍ତି- ପଛରୁ ଡୋରି ଟାଣିଲେ ହାତମୁଣ୍ଡ ହଲେଇବେ । "ମାଛ ହେଲା କଟା, ବେସର ହେଲା ବଟା, ଆଇ ନାତିକୁ କଲା ଥଟା, ଶାଶୁ ବୋହୂକୁ କଲା ହଟହଟା ।" ଶେଷକୁ "ଗାଡ଼ିବାଲା ବାଟ କଟା" । ଗାଡ଼ିରେ ବସି ଦେଖୁଥିବା ଲୋକଙ୍କ ଗାଡ଼ି ସେଠୁ ଆଗକୁ ବଢ଼ିବ । ଫକୀର ମହମ୍ମଦ, ଯେତେଦୂର ମନେପଡ଼େ, ଜିଲ୍ଲା ଅଫିସ୍ କି କେଉଁଠି ଦପ୍ତରୀ ଥିଲେ । ସେ ପ୍ରତିବର୍ଷ ଚାନ୍ଦା ଭେଦା କରି ଏ ପ୍ରଦର୍ଶନର ଆୟୋଜନ କରନ୍ତି ।

ସେତେବେଳେ ବିଜୁଳି ବତି ନ ଥାଏ । ଗ୍ୟାସ୍ ବତି ଆଉ ପଞ୍ଚ ଲାଇଟ୍ । ଉପରେ ଟଙ୍ଗା ମ୍ୟାଣ୍ଟାଲ୍‌ଲଗା ଆଲୁଅ, ତା'ର କିରାସିନି ଟାଙ୍କି ତଳେ । ସେଇ ଆଲୁଅରେ ଦେବୀଙ୍କ ମେଢ଼ର ଅଭ୍ରକ ଚକ୍‌ଚକ୍ କରେ, ଆଉ ଚକ୍‌ଚକ୍ ଦିଶେ ତାଙ୍କ ହାତର ଜରିକାଗଜମଡ଼ା ଖଣ୍ଡା,

ଦେବୀଙ୍କର ଆଉ ଲକ୍ଷ୍ମୀ ସରସ୍ୱତୀ ହେରିକାଙ୍କର ଦେହରେ ଜରି ପୋଷାକ । ବଜାରରେ ଭିଡ଼, ଆଲୁଅ, ପେଁକାଳି ଶବ୍ଦ, ବେଙ୍ଗବାଜଦର କେଁ କେଁ, ଦେବୀଙ୍କ ପାଖରେ ବାଜୁଥିବା ତେଲିଙ୍ଗିବାଜା, ସବୁ ମିଶି ସେ ଗୋଟାଏ ଦୁନିଆ । ଥରେ ବିନୋଦ ବିହାରୀଙ୍କୁ ଅନ୍ନପୂର୍ଣ୍ଣା ଦିଦିଙ୍କ ପିଲାଙ୍କ ସାଙ୍ଗରେ ସକାଳ ଓଳି ଯାଇଥିଲି । ପୂଜା ଚାଲିଥାଏ । ଛେଳିସବୁ ବଳି ଦିଆଯିବ ବୋଲି ଅଣା ହୋଇଥା'ନ୍ତି । ବାସ କୁନ ହେରିକା କହିଲେ ରହ ବଳି ଦିଆଯିବ ଦେଖିବା ମୁଁ ରହି ପାରିଲି ନାହିଁ । ପଳେଇ ଆସିଲି ।

ଦଶହରା ବାସି ସକାଳୁ ପୁରୀଘାଟ ଠେଇଁ ଦେବୀ ପାଣିରେ ପଡ଼ନ୍ତି, ଏବ ଭଳି । ତେବେ ଦିନ ନଅ ଦଶଟା ସୁଦ୍ଧା ବିସର୍ଜନ ସରିଯାଏ । ସେଇ ନରୁ ପି'ସା କି କାହାକୁ ଆଶ୍ରା କରି ଦେଖି ଯାଉ । ଗଣେଶ ପୂଜା ବା ସରସ୍ୱତୀ ପୂଜାରେ ମୂର୍ତ୍ତି କିଣିବାର ଦାୟିତ୍ୱ ଅନେକ ସମୟରେ ସେଇ ତୁଲାନ୍ତି । ମୋର ବିଶେଷ ଅଝଟରେ ବି ଅନେକ ସମୟରେ ତାଙ୍କର ସାହାଯ୍ୟ ଲୋଡ଼ାହୁଏ ।

ଆ୯. ହେଉଥିଲା ମହରମ, ବାଘନାଚ । ବାଜା ବାଜିବ – ଡାରେଡ଼ା ଡିମ୍‌ଡିମ୍ ଡାରେଡ଼ା ଡିମ୍‌ଡିମ୍ । ଡାରେଡା ଡିମ୍‌ଡିମ୍ ବାଜା ଶୁଣିଲେ ସାଇର ପିଲାଛୁଆ, ଟୋକା, ବୁଢ଼ା ସବୁ ଗୁଣ୍ଡ ହୋଇଯିବେ ନାଚ ଦେଖିବାକୁ । କେତେବେଳେ ଗୋଟିକିଆ ବାଘ, କେତେବେଳେ ବା ଦୁଇଟିକିଆ । ଦେହଯାକ ହଳଦିଆ ଉପରେ ପଟାପଟା କଳାରଙ୍ଗ, ଲମ୍ବ ଜିଭ, ଛେଳିର କି ମେଣ୍ଢାର, ମୁହଁରୁ ଓହଳିଥିବ, ଦୁଇ ହାତରେ ହରିଣ ସିଙ୍ଗରେ ତିଆରି ଦୋମୁନିଆ ଅସ୍ତ୍ର । ଲେଙ୍ଗୁଟି ପିନ୍ଧା ବାଘ ସାଜିଥିବା ମଣିଷ ସାଇ ସାଇ ବୁଲି ନାଚିବ । ଏମିତି କେତେଦିନ ଯାଏ ବାଘନାଚ ଚାଲିବ । ପରେ ତାଜିଆ ବାହାରିବ । ବାଉଁଶ କାଠି, ରଙ୍ଗକାଗଜ, ସୁନେଲୀ ରୂପେଲୀ କାଗଜରେ ତିଆରି ଗୋଟାଏ ମସଜିଦ୍ ବା ମକ୍‌ବରାର ପ୍ରତିମୂର୍ତ୍ତି, ପାଞ୍ଚହାତ ଖଣ୍ଡେ ଉଚ୍ଚ । ଏହାକୁ କାନ୍ଧେଇ ସାଇ ସାଇ ବୁଲିବେ । ଏହା ସାଙ୍ଗରେ ବି ବାଜା ବାଜିବ । ଘରୁ ଘରୁ ସିରିଣୀ ପାଇଁ ଚାନ୍ଦା ମାଗିବେ । ଆମ ଘରକୁ ଆସି ଦାଣ୍ଡ ଦୁଆରେ ଛିଡ଼ା ହେଲେ ମା ପଇସା ଦିଏ ଆଉ ତାଜିଆର ଫୁଲ କି କ'ଣ ଆଣି ଆମ ପିଲାମାନଙ୍କ ମୁଣ୍ଡରେ ଛୁଆଁଇ ଦିଏ । ମହରମରେ ଏ ବାଘନାଚ, ଏ ତାଜିଆରେ ହିନ୍ଦୁ ମୁସଲମାନ ଭେଦ ନ ଥିଲା । ସମସ୍ତେ ଏହା ଭିତରେ ଯାହା କିଛି ଆନନ୍ଦ, ଯାହା କିଛି ପୁଣ୍ୟର ପ୍ରତ୍ୟାଶା, ସବୁଥିରେ ଭାଗୀ ହେଉଥିଲେ ।

ଅଗିରା ପୂନେଇରେ ଅଗି ଜଳାହୁଏ । ନିଆଁ ଦେଖିଲେ ସାନପିଲାଙ୍କର ଆନନ୍ଦ ଓ ଉତ୍ତେଜନା କହିଲେ ନ ସରେ । ଅଗିରେ ନଡ଼ିଆ, ବାଇଗଣ ପକାହୁଏ । ନଡ଼ିଆଗୁଡ଼ା ଠୋ ଠୋ ହୋଇ ଫାଟେ । ସେ ବି ଗୋଟିଏ ମଜା । ଆଉ ମଜା ସେ ଦରପୋଡ଼ା ନଡ଼ିଆ ଖାଇବା ।

ପାଣୁ ପି'ସା, ରାଜ କିଶୋର ଦାସ, ଏବେ ଅବସରପ୍ରାପ୍ତ ହାଇକୋର୍ଟ ଜଜ୍ । ବଡ଼ ପି'ସାଙ୍କ ଘରେ ଥାଇ ପଢ଼ାପଢ଼ି କରୁଥା'ନ୍ତି । ସେ ଆମକୁ ବହୁତ ମଜାର ମଜାର ଗପ କହନ୍ତି । ତାଙ୍କର କେତେଗୁଡାଏ ଗପର ନାୟକ ଥିଲା ଥଡ଼୍‌ପଡ଼୍ ସିଂ– ତା'ର ନିଶ ଏ ପାଖରେ ହାତେ- ସେ ପାଖରେ ହାତେ ।

# ମାମୁଁଘର

ମାମୁଁଘରର ପ୍ରଥମ ସ୍ମୃତି ହେଲା ସେଠାରେ ବହୁ ଲୋକଙ୍କର ଭିଡ଼, କୋଳାହଳ । ମାମୁଁଘର ଅର୍ଥ ବୋଉର ମାମୁଁଘର । ବୋଉର ତ ନିଜର ସହୋଦର ଭାଇ ନ ଥିଲେ । ଉପ ମାମୁଁଙ୍କୁ ପୁଅ କରି ନିଆହୋଇଥିଲା । ସେ କିନ୍ତୁ ସେଇ ବାଙ୍କାବଜାର ଘରେ ଥା'ନ୍ତି । ବୋଉର ତିନି ମାମୁଁ, ରାଜ କିଶୋର ଦାସ, ନବ କିଶୋର ଦାସ, ବୀର କିଶୋର ଦାସ । ମଝିଆଁ ଜେଜେ ଆମ ଦେଖନ୍ତା ପୂର୍ବରୁ ମରିସାରିଥା'ନ୍ତି । ବଡ଼ ଜେଜେ ଦୋପଟି ହେଇ ଅବସର ନେଇଥା'ନ୍ତି । ସାନ ଜେଜେ ଆଠଗଡ଼ରେ ମେନେଜର କି ଦେୱାନ ଥା'ନ୍ତି ।

ମାମୁଁଘର ଆଗପଛ ଦୁଇଧାଡ଼ି ଦୋତାଲା ଘର । ଦୁଇ ପାଖରେ ଫାଙ୍କା ବାରଣ୍ଡା ଦ୍ୱାରା ଯୋଡ଼ିହୋଇ ଖଣ୍ଡା ବୁଲିଛି । ହତା ବହୁତ ବଡ଼ । ତା' ଭିତରେ ଆହୁରି କେତେ ଘର ରୋଷେଇ ଖଣ୍ଡା, ଚାକରବାକରଙ୍କ ଘର, ଦାଣ୍ଡଘର । ସାମନାରେ ବୈଠକଖାନା ଘର ଗୋଟାଏ ଅଲଗା, ସେଇଠି ଜେଜେମାଙ୍କର ଆସ୍ଥାନ । ବହୁତ ଲୋକ ଜୁଟି ଆଡ୍ଡା ଚାଲିଥାଏ । ମୁଁ ତ ଅତି ଲାଜକୁଳା ଥିଲି, ସେଥିପାଇଁ ଜେଜେମାନଙ୍କ ସାଙ୍ଗରେ ଘଷାଘଷି ହେଉ ନ ଥାଏ । ବୋଧହୁଏ ସେତେବେଳେ ନଗିମାମୁଁଙ୍କ ସାଙ୍ଗରେ ମୋର ସବୁଠୁଁ ବେଶି ପଡୁଥିଲା । ମାଉସୀ ପୁଅ ଭାଇଭଉଣୀ ସବୁ ପ୍ରାୟ ଅଧିକାଂଶ ସମୟ ସେଠି ଥା'ନ୍ତି । ମଙ୍ଗୁ ଓ ମଣ୍ଟୁ ମାମୁଁ ବି ପ୍ରାୟ ଆମରି ବୟସର । କୁନା, ଟୁଆଁ, ଗଉ, ପଟୁଆ ଆଉ ମାମୁଁମାନେ ମିଶି ଗୋଟାଏ ଦଙ୍ଗଲ । ସବୁବେଳେ ହୋ ହା ଚାଲିଥାଏ । ମୁଁ କିନ୍ତୁ ଏ ଭିତରୁ ଟିକିଏ ଏକୁଟିଆ ରହୁଥାଏ ବୋଧହୁଏ ।

ବଡ଼ମା ମାମୁଁଘରେ ଅଧିକାଂଶ ସମୟ ରହୁଥା'ନ୍ତି । ପିଲାମାନଙ୍କର ତଦାରଖ ସେଇ କରୁଥା'ନ୍ତି । ବୋଉ ସାଙ୍ଗରେ ତାଙ୍କ ଚେହେରାର ବହୁତ ସାଦୃଶ୍ୟ ଥିଲା । ଅନେକ ବର୍ଷ ପରେ ଏବେ ଦାଦା ଧର୍ମାଧିକାରୀ ସତ୍ୟଭାମାପୁରରେ ବଡ଼ମାଙ୍କର ଛବି ଦେଖି ବୋଉର ଛବି ବୋଲି ପ୍ରଥମେ ଭାବିଲେ । ମାଉସୀ ବୋଉଠୁ ବଡ଼ ହେଲେ ବି ମାଉସୀ ପୁଅ ଭାଇ ଭଉଣୀମାନେ ସବୁ ମୋଠୁଁ ସାନ । ବଡ଼ ନାତି ହିସାବରେ ବଡ଼ମା'ଙ୍କର ମୋ ଉପରେ ଟିକିଏ ବେଶୀ ଅନୁରାଗ ଥାଏ । ମାମୁଁଘରକୁ ଗଲେ ମୋ ପାଇଁ ବାଞ୍ଛା ଦୋକାନରୁ କ୍ଷୀରମୋହନ ଆସେ । ବଡ଼ ମା' ଖୁବ୍ ଧୀରସ୍ଥିର ଶାନ୍ତ । ମା' ତ ରାଗିଲେ ବେଳେବେଳେ ନିଆଁବାଣ ହୁଏ । ମୋର ମନେ ହୁଏ ବଡ଼ମା' ଚୌଧୁରାଆଣୀ କୁ ଟିକେ ଡରୁଥିଲେ ବି ।

ଦିଆଲୀବେଳେ ମୁଁ ମାମୁଁଘରକୁ କୌଣସି ଚାକର ସାଙ୍ଗରେ ଯାଇ ଧାରଣା ଦେଇବସେ । କାହାକୁ କିଛି କହେ ନାହିଁ । ବଡ଼ମା' ମୋର ମତଲବ୍ ଜାଣିଥା'ନ୍ତି । କ୍ଷୀରମୋହନ ମାଗଣା ପରେ ଦୁଇ ଚାରିଟଙ୍କା ବାଣ ପାଇଁ ଦିଅନ୍ତି । ମାଗଅପା ବି ଦିଆଲୀବେଳେ ବାଣ କିଣି ପଠାଇ ଦିଏ । ଦୋତାଲା ଛାତ ଉପରେ ଦୀପାଳି ଜଳାହେବା ପାଇଁ ସକାଳୁ ଆୟୋଜନ ଚାଲେ । ପୁରୁଣା ଦୀପାଳିସବୁ ସରଘରେ ପାଚିଆରେ ରଖାହୋଇଥାଏ । ସେ ସବୁ ବାହାରେ, ନୂଆ କିଛି କିଣା ହୋଇ ପାଣିରେ ଭିଜା ହୁଏ । ମା' ବାମୀଦିଦି, ବୋଉ ହେରିକା ସବୁ ସଳିତା ବଳିବାରେ

ଲାଗନ୍ତି । ଛାତ ଉପରେ ଦୀପାଳିର ବୈଠକୀ ପାଇଁ ମେଞ୍ଚି ମେଞ୍ଚି ମାଟି ଗୋବର ସନ୍ଧ୍ୟା ପୂର୍ବରୁ ଥୁଆ ହୁଏ । ସନ୍ଧ୍ୟା ହେଲେ ଆମ ଘରେ ଓ ସାରା ସହରରେ ଧାଡ଼ି ଧାଡ଼ି ଦୀପ ଜଳିଉଠେ । ରାସ୍ତାଘାଟରେ ଓ ଘରମାନଙ୍କରେ ବିଜୁଳି ଆଲୁଅ ତ ନ ଥିଲା । ଅମାରାତିର ଅନ୍ଧାରରେ ଲକ୍ଷ ଦୀପାଳିର ଧାଡ଼ିଧାଡ଼ି କମ୍ପିତ ଶିଖା ହିଁ ଆକାଶର ତାରାମାନଙ୍କୁ ଆହ୍ୱାନ ଜଣାନ୍ତି । ଆରମ୍ଭ ହୁଏ ବାଣର ଠୋ, ଠା, ହୁସ୍‌ହାସ୍, ଫରଫାଟ୍ । ଏହାରି କାରୁକାର୍ଯ୍ୟ ଆକାଶକୁ ଭରିଦିଏ ତାରା ସବୁକୁ ଦୂରକୁ ଠେଲିଦେଇ ।

ମୁଁ ଦଶ ଏଗାର ବର୍ଷର ହେବାଯାଏ ତାଳଫୋଟକା ନିଜେ ଫୁଟାଇବାକୁ ଡରୁଥିଲି । ଥରେ ମୋହିନୀବାବୁଙ୍କ ଛାତ ଉପରେ ବାଣଫୁଟା ଚାଲିଥିଲା । ତାଙ୍କର ଝିଅ ମନା, ବିନା ହେଗିକା ତାଳଫୋଟକାକୁ ହାତରେ ଧରିରଖି ଫୁଟେଇବାର ଦେଖିଲି । ସେଠୁ ମୋର ଲଜ୍ଜା ବି ହେଲା ଓ ଡର ଭାଙ୍ଗିଲା । ଦିଆଲୀ ଦିନ ଆକାଶ ବାଉଁଶ ପୋତାହୁଏ, ଆଉ ଗୋଟିଏ କ'ଣ ପୂଜା ହୋଇ ବଡ଼ବଡୁଆଙ୍କୁ ଡକାହୁଏ । "ବଡ଼ବଡୁଆ ହୋ ! ଅନ୍ଧାରରେ ଆସ, ଆଲୁଅରେ ଯାଅ ।"

ମାମୁଁଘର କଥାରେ ଜେଜେଙ୍କର ବୋଉ ବଡ଼ ଆଈଙ୍କ କଥା ମନେ ପଡୁଛି । ଖୁବ୍ ବୁଢ଼ୀ, ପାତଳୀ, ଗୋରୀ । ବାରଣ୍ଡାରେ ବିଛଣା ଉପରେ ତକିଆକୁ ଆଉଜି ବସିଥା'ନ୍ତି । ଦେହ ଖରାପ ଥାଏ । ତଥାପି ଏ ବୃହତ୍ ପରିବାରର କର୍ତ୍ତ୍ରୀର ଦାୟିତ୍ୱ ଛାଡ଼ି ନ ଥାନ୍ତି । ତାଙ୍କୁ ପଚାରି ସବୁକାମ ହେଉଥାଏ । ଥରେ ମନେପଡୁଛି ତାଙ୍କ ପାଖରେ ମାମୁଁମାନେ ବସି ଘରର ଚାକର ବାକରମାନଙ୍କର ଗୋଟାଏ ଡ୍ୟୁଟି ଚାର୍ଟ ତିଆରି ହେଲା । ସେଇଟା ଗୋଟାଏ ବଡ଼ କାଗଜ ଫର୍ଦରେ ଲେଖାହୋଇ କାନ୍ଥରେ ମରାହେଲା । ସାଆନ୍ତିଆ ପରିବାରକୁ ଆଧୁନିକ ଢାଞ୍ଚାରେ ସଂଗଠିତ କରିବାର ଏକ ଅଭିନବ ଉଦ୍ୟମ ।

ମାମୁଁଘରେ ଅନେକ ପ୍ରକାରର ଜନ୍ତୁଜନ୍ତା ପୋଷା ହେଉଥା'ନ୍ତି । ବହୁତ ଗୁଡ଼ାଏ ପାରା- ଆମ ଘରେ ବି ପଲେ ପରା ଥିଲେ- ମୟୂର, ଖୁରାଣ୍ଟି, ହରିଣ, ଥରେ ଚିତାବାଘ ଛୁଆ ବି ଗୋଟାଏ ଆସିଥିଲା । ଏ ସବୁ ଗଡ଼ଜାତମାନଙ୍କରୁ, ଖାସ୍‌କରି ଆଠଗଡ଼ରୁ, ସଂଗୃହୀତ ହୋଇ ଆସନ୍ତି । ବେଙ୍ଗମାମୁଁଙ୍କର କୁକୁର ସୌକ ଥିଲା । କେତେ କେତେ ପ୍ରକାରର କୁକୁର କୋଉଠୁ ଅଣାହୁଅନ୍ତି । ଗୋଟିଏ ଗ୍ରେହାଉଣ୍ଡ ଥିଲା, ତା ନାଁ ଟାଇଗର୍ । ବେଙ୍ଗମାମୁଁ କୁକୁର ବିଷୟରେ ଆହୁରି ବହିପତ୍ର ବେଶ୍ ସଂଗ୍ରହ କରିଥିଲେ । ମାମୁଁଘରେ କେତେପ୍ରକାର ଆକର୍ଷକ ଜିନିଷ ଥାଏ । ଦୁଇଟା ପୁରୁଣା ଭଙ୍ଗା ବନ୍ଧୁକ, ଗୋଟିଏ କାନ୍ଥରେ ଦୁଇ ଚାରିଟା କଳିଙ୍କିଲଗା ଖଣ୍ଡା ଓ ଫାରସା ଟଙ୍ଗା ହୋଇଥାଏ । ଗୋଟିଏ ଭଙ୍ଗା ଗ୍ରାମୋଫୋନ୍- ସେଇ ସେ କାଳର ବିରାଟ ଚୁଙ୍ଗାବାଲା । ଏସବୁ ନେଇ ଆମେ ଖେଳୁ । ଗ୍ରାମୋଫୋନ୍‌ର କଳକବ୍‌ଜା ଦେଖି ତାହା କେମିତି ଚାଲେ ସେ ବିଷୟରେ ମୁଁ ବେଶ୍ ୱାକିବ୍‌ହାଲ ହୋଇଥାଏ ।

ଭଲ ଗ୍ରାମୋଫାନ୍ ବି ଥିଲା । ମାମୁଁଘରେ ହିଁ ପ୍ରଥମ ଗ୍ରାମୋଫୋନ୍ ଦେଖିଲି । ରେକର୍ଡ଼ ଭିତରେ ମୋହନ ଗୋସେଇଁଙ୍କର ଗୀତ ମନେପଡୁଛି । ମୋହନ ସୁନ୍ଦର ଦେବ ଗୋସ୍ୱାମୀ ଏକ

"ଥେଟ୍ର ପାର୍ଟି" କରିଥା'ନ୍ତି । କୃଷ୍ଣ ଚରିତ ବିଷୟକ ନାଟକସବୁ ଅଭିନୟ କରୁଥା'ନ୍ତି । ମାମୁଁଘରେ ମଝିରେ ମଝିରେ ନାଟକ ହୁଏ । ବୈଠକଖାନା ଓ ବଡ଼ଘର ମଝି ଫାଙ୍କା ଜାଗାରେ ପଶ୍ଚିମ ପାଖରେ ଷ୍ଟେଜ୍ ବନ୍ଧାହୁଏ । ବନ୍ଧୁବାନ୍ଧବଙ୍କ ଛଡ଼ା ସାଇପଡ଼ିଶା ଲୋକଙ୍କର ବି ଭିଡ଼ ହୁଏ । "ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକାୟା..." ବୋଲା ହୋଇ ନାଟକ ଆରମ୍ଭ ହୁଏ । ରାଧା, କୃଷ୍ଣ, ଲଳିତା, ବିଶାଖା ହେରିକା ସବୁ ବାହାରନ୍ତି ।

ବଡ଼ଜେଜେ ଭକ୍ତିମାର୍ଗୀ ଥିଲେ । ଜଗନ୍ନାଥ ଦାସଙ୍କର ଭାଗବତର ଗୋଟିଏ ସଂଶୋଧିତ ସଂସ୍କରଣ ବି ବହୁତ ପରିଶ୍ରମ କରି ବାହାର କରିଥିଲେ । ମାମୁଁଘରେ ମଝିରେ ମଝିରେ ଅଷ୍ଟପ୍ରହରୀ, ଚବିଶ ପ୍ରହରୀ କୀର୍ତ୍ତନ ହୁଏ । ନବଦ୍ୱୀପଆଡୁ ରାମଦାସ ବାବାଜୀ ଆସନ୍ତି । କୀର୍ତ୍ତନରେ ପିଲାଏ ବି ମଝିରେ ମଝିରେ ଖୁବ୍ ନାଚନ୍ତି । ମୋର ଲାଜକୁଳା ସ୍ୱଭାବ ଯୋଗୁଁ ମୁଁ ସେଥିରେ କ୍ୱଚିତ୍ ଯୋଗଦିଏ । କୀର୍ତ୍ତନ ବେଳେ ମଝିରେ ମଝିରେ ବାତାସା ବଣ୍ଟାହୁଏ । ସେଇଟାରେ ହିଁ ବେଶୀ ମଜା । ଥରେ ସଂକୀର୍ତ୍ତନବେଳେ ଭୋର୍‌ରୁ ସଂକୀର୍ତ୍ତନର ଖୁବ୍ ଜୋର୍ ଉନ୍ମାଦ ଉଠିଲା । ପ୍ରବଳ ଆଓ୍ୱାଜରେ ନିଦ ଭାଙ୍ଗିଗଲା । ଝରକା ବାଟେ ଦେଖେ ତ ରାମଦାସ ବାବାଜୀଙ୍କୁ ମୁଣ୍ଡ ଓ ଗୋଡ଼ୁ ଆଡୁ ଦୁଇ ଚାରିଜଣ ଧରି ପଦାକୁ ନେଇ ଯାଉଛନ୍ତି । ମୋର ଭାରି ଉଦ୍‌ବେଗ ହେଲା । ଲୋକଟା ମରିଗଲା ନା କ'ଣ, କାହାରିକୁ ପଚାରିବାର ସାହସ ହେଲାନାହିଁ । ତେବେ ଅନୁମାନ କଲି ଯେ ଯେତେବେଳେ କେହି ଆଦୌ ବିଚଳିତ ହେଉ ନାହାନ୍ତି ଲୋକଟା ମରି ନ ଥିବ । ଅନେକ ପରେ ବୁଝିଲି ଯେ ସେ ଭାବାବେଶରେ ମୂର୍ଚ୍ଛା ଯାଇଥିଲେ ।

ବୋଉ ମଝିଆଁ ମାଈଁ ବୋଉର ମାଈଁମାନଙ୍କ ଭିତରେ ସବୁଠାରୁ ବେଶିଦିନ ବଞ୍ଚିଥିଲେ । ସେ ଭାରି ଡରକୁଳୀ ଥିଲେ । ଦଉଡ଼ିଲେ ପଡ଼ିଯିବେ, ଡେଇଁଲେ ପଡ଼ିଯିବେ, କୋଉଠି କ'ଣ ବାଜିଯିବ, କାହାର ଦୃଷ୍ଟି ପଡ଼ିଯିବ, ଏମିତିସବୁ ତାଙ୍କର ଗୋଛାଗୋଛା ଡର । ପିଲାମାନେ ମଜା ଦେଖିବା ପାଇଁ ତାଙ୍କୁ ଡରାନ୍ତି । ସାନ ଜେଜେଙ୍କୁ ମୁଁ ପ୍ରଥମ ପ୍ରଥମ, ଡରୁଥିଲି । ସେ ମତେ ଭାରି ଚିଡ଼ାନ୍ତି । ଆମ ଘରେ ୧୯୨୧ କି ୨୨ ରେ ଖଦଡ଼ ପିନ୍ଧା ଆରମ୍ଭ ହେବା ଦିନୁ ମୁଁ କଟ୍ଟର ଖଦୀ ପିନ୍ଧାଳୀ ହୋଇ ଯାଇଥିଲି । ମାମୁଁଘରକୁ ଗଲେ ସାନ ଜେଜେ କହିବେ "ଆରେ ଅନ୍ତ ! ଯିବୁଟି ସେ ମାରୁଅଡ଼ି ଦୋକାନରୁ ମହନ ପାଇଁ ଗୋଟାଏ ଧୋତି କିଣି ଆଣିବୁ ।" ମୁଁ ଫୁରକୁଟି ପରି ଡେଇଁବି । ତେବେ ବି ଜେଜେମାନେ ମୋ କ୍ରୋଧକୁ ଡରୁଥିଲେ । ଥରେ ମାମୁଁ ଘର ସମସ୍ତଙ୍କ ସାଙ୍ଗରେ ଆମେ ସବୁ ବୋଟରେ ଧବଳେଶ୍ୱର ଯାଇଥିଲୁ । ଫେରିବାବେଳେ ମୋତେ ବଡ଼ ଜେଜେ କ'ଣ ଗୋଟାଏ କହିଲେ । ମୁଁ ରାଗରେ ଗୋଟିଏ କଂସା ଥାଳି ଆଉ ଗୋଟିଏ କଂସା ତାଟିଆ କି ଗିଲାସ ପାଣିକୁ ପକେଇଦେଲି । ମତେ କିନ୍ତୁ କେହି ଗାଳିମନ୍ଦ କରି ନ ଥିଲେ ।

ଆମ ଘରେ କଣ୍ଠଅଜା, ମାଗଅପା ଘରେ ନଗୁପି'ସାଙ୍କ ପରି ମାମୁଁଘରେ ଥିଲେ ଜଗୁମାମୁଁ । ତାଙ୍କୁ ସବୁ ପ୍ରକାରର କାମ କରିବାର ଦେଖାଯାଉଥିଲା । ପିଲାମାନଙ୍କୁ ପାଠ ବି ପଢ଼ାଉଥିଲେ ।

ଭଣ୍ଡାରଘରର ମେନେଜରୀ ବି କରୁଥିଲେ । ପୁଣି ପିଲାଙ୍କୁ ନେଇ ଦେବୀ ଦେଖାଇବା ଭଳି ନାନା ପ୍ରକାରର ଫରମାସ ବି  ଖଟୁଥିଲେ । ଥରେ ସରସ୍ୱତୀ ପୂଜାରେ ଆମର ସାନ ସାନ ମାଉସୀ ଭାଇଭଉଣୀମାନଙ୍କୁ ସାଙ୍ଗରେ ଧରି ସରସ୍ୱତୀ ମୂର୍ତ୍ତି ନେଇ ଆମ ଘରକୁ :

'ବନ୍ଦଇ ହରି' ଦେବ ମୁରାରୀ, ଲକ୍ଷ୍ମୀଦେବୀଙ୍କର କାନ୍ତ,

ଅଭୟବର, ଦ୍ୟନ୍ତୁ କୁମର, ସେ ବର ଦେଲେ ଅନନ୍ତ –

ଗାଇ ସରସ୍ୱତୀ ପୂଜାଭେଟି ମାଗି ଆସିଥିଲେ । ସେତେବେଳେ ଚାହାଳୀ ପିଲାମାନେ ଏମିତି ତାଙ୍କର ଅବଧାନଙ୍କ ସାଙ୍ଗରେ ଘର ଘର ବୁଲି ଗୀତ ଗାଇ ଭେଟି ମାଗୁଥିଲେ । ଜଗୁମାମୁଁଙ୍କୁ ଆମେ ଚିଡ଼େଇବା ଶିଖିଯାଉଥିଲୁ :

"ଜଗୁ, ପାଳଗଦା ତଳେ ହଗୁ ।

ପିଲାଏ ମାଇଲେ ଟେକା,

ଜଗୁ ପଳେଇଲେ ଏକା ।"

ଆଉ ସତ୍ୟାଭାମାପୁରରୁ ଆସୁଥିଲେ ନାରଣ ସାମଲ ଖମାରେଇ । ଉଜ୍ଜ୍ୱଳ ତମ୍ବାବର୍ଣ୍ଣ । ପେଟଟି ଦହିକଉଡି ପରି । ତା' ସାଙ୍ଗରେ ମେଳ ଖାଇବା ଭଳି ପୁଟୁକା ଗାଲ । ଦାନ୍ତ ପ୍ରାୟ ସବୁ ଗାଏବ୍, ମୁଣ୍ଡରୁ ବାଳଯାକ ବି । ତା' ବଦଳରେ ଏକ ଚକ୍‌ଚକ୍ ପାଲିଶ ଚନ୍ଦା । ନାରଣ ସାମଲ ବସି ବଟୁଆ ବାହାରକରି ପାନ ଭାଙ୍ଗନ୍ତି ଆଉ ତାକୁ ପାନକୁଟା ନଳି ଭିତରେ ପୂରେଇ କୁଟନ୍ତି । ଗାଁର ସବୁ ଗପ ଶୁଣାନ୍ତି । ନାରଣ ସାମଲଙ୍କୁ ଆମେ ଚିଡ଼ଉ "ନାରଣା- ତିନିଟଙ୍କା ବାରଣା - ତିନିଟଙ୍କା ଦେଇ ଯା - ନାରଣାକୁ ନେଇ ଯା ।"

## ସ୍ୱରାଜ୍ୟ ଆନ୍ଦୋଳନର ଝଲକ

୧୯୨୧-୨୨ ର କଥା ମନେପଡୁଛି । ବାପା ଚାକିରି ଛାଡ଼ିଲେ । କାଠଯୋଡ଼ି ବାଲିରେ ସଭା, ନଈକୂଳ ରାସ୍ତାପାଖରେ ବିଲାତି ଲୁଗା ଜଳା, ଆମଘରକୁ ଗଦାଗଦା ବିଲାତି ଲୁଗା ବାହାରକରି ଦିଆଯିବ । ୧୯୨୧ କି ୨୨ ରେ ଦିନେ ଆମ ଘର ଦୋତାଲାରେ ସିଡ଼ିଘର ଉପରେ ତ୍ରିରଙ୍ଗା ଜାତୀୟ ପତାକା ପ୍ରଥମକରି ଦାଦା ଯାଇ ଉଡ଼େଇଲା ଗୋଟିଏ ଲମ୍ବ ବାଉଁଶ ଅଗରେ । ସେତେବେଳେ ପତାକାର ରଙ୍ଗ ଉପରେ ଧଳା, ମଝିରେ ସବୁଜ ଓ ତଳେ ଲାଲ ଥାଏ । ତା' ଉପରେ ଥାଏ ଚରଖା । ନାଣ୍ଡି ଛାତ ଉପରେ ଆମେ ସବୁ କିଏ କିଏ ଥାଉ । ତଳେ ଉମାକାନ୍ତ ବାବୁଙ୍କ ଘରଲୋକେ ବି ଦେଖୁଥା'ନ୍ତି । ଶୁଣିଲି ଉମାକାନ୍ତ ବାବୁ କି କମଳାକାନ୍ତ ଦାଦା କିଏ ଜଣେ କହିଲେ ଯେ ଏ ପତାକା ଉଡାଇବା ସିଡ଼ିଶନ୍ । ଏଥିପାଇଁ ଛଅ ବର୍ଷ ଜେଲ ହୋଇପାରେ । ସିଡ଼ିଶନ୍ ଅର୍ଥ ତ ବୁଝି ନ ଥିଲି, ମାତ୍ର ଜେଲ୍ କଥାଟା ବୁଝିଲି । କେମିତି ଗୋଟାଏ ଗର୍ବ ଅନୁଭବ କଲି ଯେ ଆମ ଘରେ ଏପରି ସାହସର କାର୍ଯ୍ୟ କରାହେଉଛି । ଉମାକାନ୍ତବାବୁ ହେରିକା ଯେ ଏ ଘଟଣାକୁ ଭୟ କରୁଥାନ୍ତି, ଏ କଥା ମୁଁ ସ୍ପଷ୍ଟ ଅନୁଭବ କଲି ।

ଯା ଭିତରେ ୧୯୨୧ ରେ ଗାନ୍ଧିଜୀ କଟକ ଆସିଲେ । ନଈବାଲିରେ ସଭା ହେଲା । ସଭାର କଥା ମନେନାହିଁ । ସଭାକୁ ମୁଁ ଯାଇ ନ ଥିଲି ବୋଧହୁଏ, କିନ୍ତୁ ଦାଦା ହେରିକା ପଞ୍ଚାଏ ଛାତ୍ରଯୁବକ ନଈକୂଳ ଓ ରାସ୍ତା ସଫାସୁତୁରା କରିବା ପାଇଁ ସକାଳୁ କୋଡ଼ି କୋଦାଳ ଧରି ଗଲେ । ସେମାନେ ହାତୀଗଡ଼ା ଘାଟ ପାଖରେ କ'ଣ ସବୁ କରୁଥା'ନ୍ତି ଦେଖିଲି । ହାୱାରେ ଥିବା ଉତ୍ତେଜନା ବି ଟିକେ ଟିକେ ଅନୁଭବ କରୁଥିଲି । ସେଇ ସମୟରେ ଗାନ୍ଧିଜୀଙ୍କ ବିଷୟରେ ସବୁ ବିଚିତ୍ର କାହାଣୀ ଶୁଣିବାକୁ ମିଳୁଥାଏ । ଗାନ୍ଧୀଙ୍କୁ ସରକାର ଧରି ନେଇ ଜେଲ୍‌ରେ ତାଲା ପକେଇ ରଖିଲା, କିନ୍ତୁ ଦେଖିଲାବେଳକୁ ଗାନ୍ଧୀ ଆସି ବାହାରେ । ଗାନ୍ଧୀ ରେଲ୍‌ରେ ଯାଉଥିଲେ । ପୁଲିସ୍ ଧରିବାକୁ ଗଲେ । କିନ୍ତୁ ଦେଖିଲେ ଯେ ପ୍ରତି ଡବାରେ ଗୋଟାଏ ଗୋଟାଏ ଗାନ୍ଧୀ । କାହାକୁ ଧରିବେ ? କେତେଥର ହୋ ଉଠିଲା ଯେ ବୁଢ଼ିଆଣୀ ଜାଲରେ ମହାତ୍ମାଗାନ୍ଧୀଜୀ ଜୟ ଲେଖା ହୋଇଛି, ବୁଢ଼ିଆଣୀ ବୁଣିଛି । ଥରେ କଣ୍ଡୁଅଳା ହେରିକାଙ୍କ ସାଙ୍ଗରେ ବାଙ୍କାବଜାର ନା କେଉଁଠି ଗୋଟାଏ ଅରମା ଜାଗାରେ ଏହା ଦେଖିବାକୁ ଗଲି । ଜାଲ ଦେଖିଲି । କେତେ ଲୋକ ହଁ ହଁ କଲେ, ମତେ କିନ୍ତୁ କିଛି ଲେଖା ଦିଶିଲା ନାହିଁ । ଟିକିଏ ନିରାଶ ହେଲି । ଆମ ଘରକୁ ସବୁ କୋଉଠୁ ପଥର କୁଣ୍ଡୀବସା ପୁରୁଣା ପଖିଆ ଅରଟ ଆସିଥାଏ । ମୁଁ ଦିନେ ସେଥିରେ ବୋରିକ୍ ତୁଳାରୁ ଟାଣି ଟାଣି ଜୋଡ଼ି ଜୋଡ଼ି ସୁତୁଳି ଭଳିଆ ସୂତା ଦୁଇହାତ ଖଣ୍ଡେ କାଟି ଦେଲି ।

୧୯୨୨ ରେ ଗୟାରେ କଂଗ୍ରେସ ହେଲା । ଆମ ବଅଁଶଟାଯାକ ଗଲୁ ଖଡ଼ଗପୁରରୁ ଗୋମୋ ଦେଇ । ଗୋମୋ ରେଲ ଷ୍ଟେସନରେ ଗାଡ଼ି ବଦଳାଇବା ପାଇଁ ଅନେକ ସମୟ ଅପେକ୍ଷା କରିବାକୁ ହେଲା । ମୁଁ କୋଉଠି ଆଗରୁ ଶୁଣିଥିଲି କି ପଢ଼ିଥିଲି ଯେ ଦାର୍ଜିଲିଙ୍ଗ୍ ପୂର୍ବରୁ ଘୁମ୍ ବୋଲି ଗୋଟିଏ ଷ୍ଟେସନ ପଡ଼େ । ମୁଁ କଳ୍ପନା କରୁଥାଏ ଯେ ଗୋମୋ ଟା ଘୁମ୍ । ସେଠି ପାହାଡ଼ ତ ସବୁ ଥାଏ । ବରଫ ପାହାଡ଼ ତା' ସେପାଖରେ ଦିଶିବ ବୋଲି ମୁଁ ଆଶାକରି ଚାହୁଁଥାଏ । ଦାଦା ସାବରମତୀ ଗାନ୍ଧୀଜୀଙ୍କର ଆଶ୍ରମକୁ ଯାଇଥିଲା ସୂତାକଟା ଲୁଗାବୁଣା ଶିଖିବ ବୋଲି । ସେଠୁ ଫେରି ଗୟାରେ ପହଞ୍ଚିଲା ଲମ୍ବା ଦାଢ଼ିନିଶ ବଢ଼େଇ । ସେତେବେଳେ ଗାନ୍ଧୀଜୀ ଜେଲରେ । ମୁଁ ସେକଥା ଜାଣି ନ ଥାଏ, କିନ୍ତୁ ନୋ-ଚେଞ୍ଜର୍ ପ୍ରୋ-ଚେଞ୍ଜର ହାୱା ପାଇଁ ମାମୁଁମାନେ ମତେ ଥଟ୍ଟା କରନ୍ତି- "ତୋ ବାପା ନନ୍‌କୋ' । ଗୟାରେ ବୋଧଗୟା ମନ୍ଦିର, ଫଲ୍‌ଗୁ ନଈ ହେରିକା ବୁଲି ଦେଖିବା କଥା ମନେ ପଡୁଛି । କଂଗ୍ରେସରେ କ'ଣ ହେଲା ସେ ବିଷୟରେ ମୁଁ କିଛି ଜାଣି ନ ଥିଲି । ମନେଅଛି ଆମେସବୁ ତମ୍ବୁରେ ଥାଉ, ଆଉ ପ୍ରଚଣ୍ଡ ଶୀତ ହେଉଥାଏ । ଆଉଦିନେ ସକାଳୁ ମା' ପାଣିକଳଆଡୁ ଆସି କହିଲା – "ଦେଖମ ସେଠି ମାଇପିଗୁଡ଼ାକ ନଙ୍ଗଳା ହୋଇ ଗାଧୋଉଛନ୍ତି ।" ପ୍ରକୃତରେ ପଞ୍ଜାବ ପ୍ରଭୃତିରେ ସେପରି ରୀତି ଥିଲା ଓ ଏବେ ଠାଏ ଠାଏ ଅଛି ।

୧୯୨୨ ରେ ବିଜି ଚାଲିଗଲା । ସେ ଆମର ସବା ସାନ ଭାଇ । ବୋଧହୁଏ ୧୯୨୦ ରେ ଜନ୍ମ । ଯାଜପୁର ବିରଜାଙ୍କ ଅନୁସାରେ ନାଁ ଦିଆ ହୋଇଥିଲା ବିରଜାପ୍ରସାଦ । ମୋର ଜନ୍ମ

ଅକ୍ଟୋବର ୧୧. ୧୯୧୫, ଚୁନୀର ନଭେମ୍ବର ୧୩, ୧୯୧୭ । ୧୯୨୨ ରେ ବିଜିର ଆମାଶୟ ହେଲା । ମୋର ଏତିକି ମନେଅଛି ଯେ, ବୋଉ ତଳମହଲା ବଡ଼ଘରେ ତାକୁ କାନ୍ଧରେ ପକାଇ ବୁଲୁଥାଏ । ବାପା ଅଳକାଶ୍ରମ, ଜଗତ୍‌ସିଂହପୁରରେ ଥା'ନ୍ତି । ଦିନେ ଭୋର୍‌ରୁ ନଗୁପି'ସା ଆସି ଚୁନୀକୁ ଓ ମୋତେ ମାମୁଁଘରେ ନେଇ ଛାଡ଼ିଆସିଲେ । ମୁଁ କିଛି ସନ୍ଦେହ କଲି ନାହିଁ । ଚୁନୀ କିନ୍ତୁ ଠିକ୍ ସଂଦେହ କରିଥିଲା ଯେ ବିଜି ଚାଲିଗଲା । ଅନେକ ଦିନ ପରେ ବିଶ୍ୱଦା'ଙ୍କ ଠାରୁ ଶୁଣିଥିଲି ଯେ ଅଳକାଶ୍ରମରେ ବାପା ବିଜି ଚାଲିଯିବା ଖବର ପାଇ ଗୋଟିଏ ଆରାମଚୌକିରେ ନୀରବରେ ଗୀତା ପଢ଼ିବାକୁ ଲାଗିଲେ ।

ବିଜିର ସ୍ମୃତି ସହିତ ଗୋଟିଏ ଘଟଣା ହୃଦୟରେ ଦାଗ କାଟି ବସିଯାଇଛି । ସେ ବର୍ଷ ଗଣେଶ ପୂଜାରେ ମୁଁ ଗଙ୍ଗାଧର ନନାଙ୍କ ସାଙ୍ଗରେ ଅନେକ ବୁଲି ବୁଲି କେଉଁଠୁ ଗୋଟାଏ ବଡ଼ ଗଣେଶ କିଣିଥିଲି । ମୂର୍ତ୍ତିଟା ସେତେବେଳେ ତ ମତେ ବେଶ୍ ବଡ଼ ଦେଖାଯାଉଥିଲା । ସେ ମୂର୍ତ୍ତିର ଚାରି ହାତ । ବିଜି, ତା'ର ଗୋଟାଏ ହାତ ଟିକିଏ ଭାଙ୍ଗି ଦେଲା । ମୁଁ ରାଗିଯାଇ ଜିଦ୍ ଧରିଲି ଯେ ସେ ଗଣେଶ ପାଣିରେ ପକାଯିବ । ବୋଉ କେତେ ନେହୁରା ହେଲା ଯେ ପକେଇ ଦେବୁ କାହିଁକି, ବିଜିକି ଦେ ସେ ଖେଳିବ । ମୁଁ ମୋଟେ ଶୁଣିଲି ନାହିଁ । ମୂର୍ତ୍ତି କାଠଯୋଡ଼ି ପାଣିରେ ପଡ଼ିଲା । ତା'ର କିଛିଦିନ ପରେ ବିଜି ଚାଲିଗଲା । ତା' ପରେ କେତେଥର ରାତିରେ ଶୋଇଲାବେଳେ ଏ କଥା ମନେ ପକେଇ ମୁଁ କାନ୍ଦିଛି, ଏବେ ବି କାନ୍ଦମାଡ଼େ ।

ତା'ର ଅନେକ ପୂର୍ବରୁ ଆଉ ଗୋଟିଏ କରୁଣ ପ୍ରସଙ୍ଗ ବି ମନରେ ବସି ଯାଇଛି । ୧୯୧୯ କି ୨୦ ହେବ । କେଉଁଆଡ଼େ ସବୁ ପ୍ଲେଗ୍ ରୋଗ ଆରମ୍ଭ ହୋଇଥାଏ ବୋଲି ମୂଷାମରା ଧୂମ୍ ଚାଲିଥାଏ । ଓଳିଆ ସନ୍ଧିରୁ ଆମର ପୂଜାରୀ ପୂନାନନ୍ଦ ନନା ଗୋଟିଏ ମୂଷା ଧରି ତା'ର ତଣ୍ଟିକୁ ହାତରେ ଚିପି ମାରିଦେଲେ । ସେ ମୂଷା ଚେଁ ଚେଁ କରି ବିକଟ ଆର୍ତ୍ତନାଦ କଲା । ତାର ମୁହଁ, ଆଖି, ଦାନ୍ତ ନିକୁଟାର ଦୃଶ୍ୟ ମତେ ପ୍ରବଳ ଭାବରେ ଆଘାତ କଲା । ମୁଁ ଖୁବ୍ ଜୋର୍‌ରେ କାନ୍ଦି ଉଠିଲି । ପୂନାନନ୍ଦ ନନା ମା' ଠୁଁ ଖୁବ୍ ଗାଳି ଖାଇଲେ । ମୋର ପୁଅକୁ ପରେ ଜଣେ କିଏ ଉପଦେଶ ଦେଉଥିଲେ ଯେ ମଣିଷ ହେବାକୁ ହେଲେ କ୍ରୂରତା ଶିଖିବାକୁ ହେବ । ସେ ସେହି ଉପଦେଶ ଗ୍ରହଣ କଲା ନାହିଁ ଅବଶ୍ୟ । ମୋର ବିଶ୍ୱାସ ଯେ ସାନ ପିଲାର ସହଜାତ ସଂବେଦନଶୀଳତାକୁ ବିଧିବଦ୍ଧ ଭାବରେ ମାଡ଼ି ମକଚି ନଷ୍ଟ କରି ହିଁ ତାକୁ ବର୍ତ୍ତମାନର ଅମାନୁଷିକ ସଭ୍ୟତା ପାଇଁ ଯୋଗ୍ୟ କରାଯାଏ ।

ଆଉ ସେମିତି ମନେଅଛି ସେ ବୁଢ଼ା ଝଳେଇବାଲା କଥା । ସେଇ ତିନି ଚାରିବର୍ଷ ବେଳେ ମୋର ଗୋଟାଏ ଖେଳନା ହାତ ବନ୍ଧା ଘଣ୍ଟା ମଝିରୁ ଜୋଡ଼ ଖୋଲିଯାଇ ଦୁଇଫାଳ ହୋଇଗଲା । ଜଣେ ବୁଢ଼ା ଝଳେଇବାଲା ସେତେବେଳେ ଆସୁଥାଏ, ଲଣ୍ଠନ, ଡିବି ବାସନକୁସନ ମରାମତି କରିବାକୁ । ତା'ର କପାଳରେ ଗୋଟାଏ ବଡ଼ ଆବୁ ହୋଇ ଗୋଟାଏ ଆଖି ଢାଙ୍କି ହୋଇଯାଇଥାଏ । ବଉଳଗଛ ମୂଳେ ବସେ ସେ ଲଣ୍ଠନ ହେରିକା ମରାମତି କରିବାକୁ । ସେ

ଘଣ୍ଟାରେ ସେ ଗୋଟାଏ ବଡ଼ ଟୋପା ରଙ୍ଗ ଲଗେଇ ତାକୁ କଦାକାର କରିଦେଲା । ମୁଁ ଭୀଷଣ ରାଗିଯାଇ ସେ ଘଣ୍ଟାଟାକୁ ଫିଙ୍ଗି ଦେଲି । ସେ ବିଚରା ଝଲେଇବାଲାର ମୁହଁର ଭାବ ଯେମିତି ଅପ୍ରତିଭ ଓ କରୁଣ ଦେଖାଗଲା ତାହା କିନ୍ତୁ ମୋ ମନରେ ସେତେବେଳେ ଟିକେ ଧକ୍କା ଦେଇଥିଲା ଓ ଅନୁଶୋଚନା ଜଗେଇଥିଲା ।

## ଅଳକାଶ୍ରମ

ବାପା ଚାକିରି ଛାଡ଼ିବା ପରେ ଆମ ଘରେ ସ୍ୱରାଜର ହାୱା ଖେଳିଲା । ୧୯୨୨ କି ୨୩ ରେ ଜଗତ୍‌ସିଂହପୁର ଆଖରେ ଅଳକାଶ୍ରମ ନାଁ ଦେଇ ଏକ ଜାତୀୟ ବିଦ୍ୟାଳୟ ଆରମ୍ଭ କରାଗଲା । ବାପା, ଦାଦା, ଗୋକୁଳିବାବୁ, ପଣ୍ଡିତ ପଡ଼ିହାରୀ ପ୍ରଭୃତି ସେଥିରେ ମୁଖ୍ୟ ଉଦ୍ୟୋକ୍ତା ଥିଲେ । ନାଳ ସେପାରି ସୋମନାଥ ହାଟ ସାମନାରେ ଚାଟରାର ଭାଗୁଭାଇ ହେରିକାଙ୍କର ଏକ ଆମ୍ବତୋଟାରେ ଏହା ଆରମ୍ଭ ହେଲା । ଅନେକଆଡ଼ୁ ଅନେକ ପିଲା ଆସିଲେ । ପଢ଼ାପଢ଼ି ସାଙ୍ଗକୁ ସୂତାକଟା, ଲୁଗାବୁଣା ବି ଶିଖାଯାଉଥାଏ । ଗାଁମାନଙ୍କରୁ ମୁଠି ଚାଉଳ ଭିକ୍ଷାକରି ଆଶ୍ରମର ଖର୍ଚ୍ଚ ମୁଖ୍ୟତଃ ଚଳୁଥାଏ । ଅଳକାଶ୍ରମକୁ ଯିବା ଆସିବା କରୁଥିବା କର୍ମୀମାନେ ଆମଘରେ ଆସି ରହନ୍ତି । ପଡ଼ିହାରୀ ମହାଶୟ ଓ ଗୋକୁଳିବାବୁ ତ ଆମର ଘରଲୋକ ହୋଇଯାଇଥିଲେ ।

ବାପାଙ୍କ ସାଙ୍ଗରେ ଥରେ ଆମେ ଟଣାବୋଟ୍‌ରେ ଅଳକାଶ୍ରମ ଗଲୁ । ମୋ ଆଗରୁ ଚୂନୀ ଦାଦା ହେରିକାଙ୍କ ସାଙ୍ଗରେ ସେଠୁ ବୁଲି ଆସିଥିଲା । ମୁଁ ବୋଧହୁଏ ମା'କୁ ଛାଡ଼ିଯିବାକୁ ପ୍ରସ୍ତୁତ ହୋଇ ନ ଥିଲି । ସେତେବେଳେ ଟଣାବୋଟ୍ ହିଁ ଜଗତ୍‌ସିଂହପୁରକୁ ଆରାମରେ ଯିବାର ପନ୍ଥା ଥିଲା । ବୋଟ୍‌କୁ ତିନି ଚାରିଜଣ ଲୋକ ଲମ୍ବ ରସିଦ୍ୱାରା ଟାଣି ଟାଣି କୂଳରେ ଚାଲନ୍ତି । ବରଡାଠାରୁ ବୋଟ୍ ବଦଳାଇବାକୁ ହୁଏ । ସକାଳୁ ବାହାରି ଉପରଓଳି ପାଞ୍ଚଟା ଖଣ୍ଡେରେ ପହଞ୍ଚିଲୁ । ସେଠାର ଆମ୍ବତୋଟା ଆଉ ଅଳକାଶ୍ରମର ଦୃଶ୍ୟ ମତେ ଭଲ ଲାଗିଥିଲା । ପିଲାମାନଙ୍କ ଗହଳି ଆଉ ସୂତାକଟା ଲୁଗାବୁଣାର ଧୂମ୍ ବି ।

କଟକରେ କଂଗ୍ରେସର ସଭାସମିତି ହେଲେ ଘରକୁ କର୍ମୀମାନେ ସବୁ ଆସନ୍ତି । ମଙ୍ଗରାଜ ମତେ ଖୁବ୍ ସ୍ନେହ କରୁଥିଲେ । କେତେଥର ସେ ମୋର ସବୁ ଅଦ୍‌ଭୂତ ଅଦ୍‌ଭୂତ ଚାହିଦା ପୂରଣ କରିବା ଚେଷ୍ଟାରେ ମୋତେ ନେଇ କଟକ ସହରର ଦୋକାନ ବଜାର ଗଳିକନ୍ଦି ବୁଲିଛନ୍ତି । ଥରେ ମୋର ମୁଣ୍ଡରେ ପଶିଲା ଯେ ଦୂରବୀକ୍ଷଣ ତିଆରି ପାଇଁ ଲେନ୍‌ସ ଦରକାର । ସେତେବେଳେ ତ କଟକର ଲେନ୍‌ସ ବୋଲନ୍ତେ ଚଷମାର ଲେନ୍ସ, ଓ ତା'ର ଦୋକାନ ବି ଗୋଟିଏ । ଖୋଜି ଖୋଜି ନିରାଶ ହୋଇ ଫେରିଲୁ । ଆଉ ଖୁବ୍-ସ୍ନେହୀ ଥିଲେ ପୁରୀର ମୁରାରୀ ଭାଇନା । ଯେତେଦୂର ମନେପଡ଼େ ସେଇ ମତେ ଖଣ୍ଡେ ଛୋଟ ପକେଟ୍ ସାଇଜ୍ ବଙ୍ଗଳା ବହି ଦେଇଥିଲେ । ନାମ 'ସ୍ୱରାଜ ଗୀତା' । ସେଥିରେ ସବୁ ନାନା ପ୍ରସିଦ୍ଧ ନେତା ଓ ଲେଖକଙ୍କର ଉଦ୍ଧୃତି ଥାଏ । ବହିଟା ମୋର ଖୁବ୍ ପ୍ରିୟ ଥିଲା । କେତେଗୁଡ଼ାଏ ଗୀତ ବି ଥିଲା । ସେ ସବୁ ପ୍ରାୟ ମୁଖସ୍ଥ

ହୋଇ ଯାଇଥିଲା । କେତେଟା କଥା ମନେ ଅଛି; ଯଥା : ଦକ୍ଷିଣ ଆଫ୍ରିକାର ରାଷ୍ଟ୍ରପତି କ୍ରୁଗାରଙ୍କର ଉକ୍ତି ଯେ ଯଦି ଚନ୍ଦ୍ରରେ ସୁନା ଅଛି ବୋଲି ଜଣାପଡ଼ିବ ତେବେ ସେଠି ବି ଇଂରେଜମାନେ ପହଞ୍ଚି ଯିବେ । ରବୀନ୍ଦ୍ରନାଥଙ୍କର :

"ବାଘେର ବାଚ୍ଚାରେ

ବାଘ ନା କରିନୁ ଯଦି କି ଶିଖାନୁ ତାରେ ।"

ଦ୍ୱିଜେନ୍ଦ୍ରଲାଲ ରାୟଙ୍କର 'ଯେଦିନ ସୁନୀଲ ଜଲଧି ହଇତେ ଉଠିଲେ ଜନନୀ ଭାରତବର୍ଷ, ଉଠିଲ ବିଶ୍ୱେ ସେ କି କଲରବ ସେ କି ମା ଭକ୍ତି ସେ କି ମା ହର୍ଷ...." ଗାନ୍ଧିଜୀଙ୍କର କଥା ଥିଲା, କିନ୍ତୁ ମନରେ ଲାଖି ନାହିଁ । ତିଲକଙ୍କର "ସ୍ୱରାଜ୍ୟ ଆମର ଜନ୍ମଗତ ଅଧିକାର" ବି ସେଇଥିରୁ ପ୍ରଥମେ ଶିଖିଲି ।

ସେତେବେଳେ ଆମର ଦୋତାଲା ମଝିଘରେ କଂଗ୍ରେସ କର୍ମୀଙ୍କର ବୈଠକ ମଝିରେ ମଝିରେ ବସେ । ଗୋଦାବରୀଶ ବାବୁ, ନୀଳକଣ୍ଠ ବାବୁ, ନିରଞ୍ଜନ ପଟ୍ଟନାୟକ, ରାଜକୃଷ୍ଣ ବୋଷ ପ୍ରଭୃତି ଆସନ୍ତି । ରାଜୁଦା, ନିରଞ୍ଜନ ବାବୁ ବେଶୀ ଘରୁଆ ଥିଲେ । ରାଜୁଦାଙ୍କ ସାଙ୍ଗରେ ପରେ ତ ଖୁବ୍ ଘନିଷ୍ଠତା ହେଲା । ଗୋଦାବରୀଶ ବାବୁ, ନୀଳକଣ୍ଠ ବାବୁ ପ୍ରଭୃତି ଆମ ପିଲାଙ୍କ ବିଷୟରେ ବିଶେଷ ରୁଚି ଦେଖାନ୍ତି ନାହିଁ । ଥରେ ଗୋଟାଏ କ'ଣ ଦେଶମିଶ୍ରଣ କି କି କଥା ନେଇ ଖୁବ୍ ଗରମାଗରମ ଆଲୋଚନା ଚାଲିଥାଏ । ନୀଳକଣ୍ଠ ବାବୁ ଉଠି ଖୁବ୍ ଗୁରୁଗମ୍ଭୀର ଓ ଛନ୍ଦୋମୟ ଶୈଳୀରେ ବକ୍ତୃତା ଦେଲେ – ତା'ର ଅଧାଧାଡ଼ିଏ ମନେ ଅଛି - " ଯେଉଁ ଉତ୍କଳର ବେଳାଭୂମିରେ ବଙ୍ଗୋପସାଗରର ଉତ୍ତାଳ ତରଙ୍ଗମାଳା ତରଙ୍ଗାୟିତ -"ଆମେ ପିଲାମାନେ ଏଭଳି ଭାଷା ପ୍ରୟୋଗରେ ଖୁବ୍ ଆମୋଦ ଅନୁଭବ କରୁଥିଲେ ।

ଏ ସବୁ ସଭାରେ ଜେଜେଙ୍କ ଅମଳର ଯେଉଁ ଇଟାରଙ୍ଗ ଓ ନେଳିର ପଟିପଟିକା ସତରଞ୍ଜିଟା ବିଛା ହେଉଥିଲା, ସେଇଟା ଏବେ ବି ଅଛି । ଜେଜେଙ୍କ ଅମଳର ଉତ୍କଳ ସମ୍ମିଳନୀ ଆଲୋଚନା ବି ଏହାରି ଉପରେ ହୋଇଥିବ । ଲବଣ ସତ୍ୟାଗ୍ରହ, କଂଗ୍ରେସ ସମାଜବାଦୀ ଦଳ ଗଠନ, କୃଷକ ଆନ୍ଦୋଳନର ମୂଳପତ୍ତନ ବେଳେ ବି ଏଇ ଥିଲା । ଭୂଦାନ ଆନ୍ଦୋଳନ ଓ ସର୍ବୋଦୟ ସଭାସମିତି ମଧ୍ୟ ଏହାରି ଉପରେ ହୋଇଥିଲା । ଏବେ ୧୯୭୫ ଜୁନ୍ ୨୬ ଜରୁରୀ ପରିସ୍ଥିତି ଘୋଷଣା ପରେ ଦେଶର ସ୍ୱାଧୀନତା ପ୍ରତି ଏ ଆହ୍ୱାନର ବିରୋଧ କରିବାର ନିଷ୍ପତ୍ତି ମଧ୍ୟ କାଠଯୋଡ଼ି କୂଳ ଘର ବାରଣ୍ଡାରେ ଏହାରି ଉପରେ ବସି ନିଆଗଲା ।

୧୯୨୩ ରେ ହିଁ କଟକରେ ସାରା ଓଡ଼ିଶା ରାଜନୈତିକ ସମ୍ମିଳନୀ ହେଲା । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ସଭାପତି ହୋଇ ଆସିଲେ । ମ୍ୟୁନିସିପାଲଟି ଅଫିସ୍ ପାଖ ପଡ଼ିଆରେ ପ୍ୟାଣ୍ଡାଲ୍ ତିଆରି ହୋଇ ସମ୍ମିଳନୀ ହେଲା । ଏଥିରେ ମନେଅଛି ଯେ ସରୋଜିନୀ ଚୌଧୁରୀ ଉଠି ଗୋଟାଏ ବକ୍ତୃତା ଦେଲେ ଓ ଖାନୁ ମିଆଁ ଓସ୍ତାଦ ଜଳତରଙ୍ଗ ବଜାଇଲେ ।

"ଭାରତ ମୋ ମା, ଭାରତ ମୋ ମା
ସେ ଜ୍ଞାନ, ସେ ଧ୍ୟାନ, ସେ ମୋ ଗରିମା... ।"

ବୋଲି ଗୀତ ବି ବୋଲା ହେଲା । ସେହି ସମୟରେ ହିଁ ଦିଲୀପ କୁମାର ରାୟ ବି କଟକ ଆସିଥିଲେ । ସ୍ୱରାଜ ଆଶ୍ରମରେ ଚଉତରା ଉପରେ ବସି ହାରମୋନିୟମ୍ ସହିତ "ଯେ ଦିନ୍ ସୁନୀଳ ଜଲ୍‌ଧି ହଇତେ" ର ଇଂରାଜୀ ଅନୁବାଦ ଗାଇଥିଲେ । ଆହୁରି ବି କ'ଣ ସବୁ ଗାଇଥିଲେ ମୋର ମନେ ନାହିଁ । ଆଶ୍ରମର ସେ ଚଉତରାଟା ଏବେ ନାହିଁ ।

ଦାସେ ଆପଣେ ଓ ଭାଗୁଭାଇ ସେହି ସମୟରେ ଜେଲ୍‌ରୁ ଖଲାସ ହୋଇ ଆସିଲେ । ଯେତେଦୂର ମନେପଡ଼େ ଷ୍ଟେସନରୁ ସମ୍ବର୍ଦ୍ଧନା କରି ଆମରି ଘରକୁ ସେମାନଙ୍କୁ ଅଣାଗଲା । ତଳ ମଝିଘରେ ଭାଗୁଭାଇଙ୍କ ସାଙ୍ଗରେ ଦୁଃଖୀଅପାର ଜେଲ୍‌ରୁ ଫେରିବା ପରେ ପ୍ରଥମ ଭେଟ ମୋର ମନେଅଛି ।

କନିକାରେ ପ୍ରଜାଆନ୍ଦୋଳନ ତ ଏଇ ସମୟରେ ଚାଲିଥାଏ । କନିକା ରାଜାଙ୍କର ଅତ୍ୟାଚାର, ସେ ବସେଇଥିବା ଚଉଷଠି ପ୍ରକାର କରର କାହାଣୀ, ଆମେସବୁ ଆମଘରକୁ ଯିବା ଆସିବା କରୁଥିବା କର୍ମୀଙ୍କଠାରୁ ଶୁଣୁଥାଉ । ଏ ସବୁ ଶୁଣି ଆମ ମନରେ କନିକା ରାଜାଙ୍କ ବିରୋଧରେ ଖୁବ୍ ରାଗହେଲା । 'ପଞ୍ଚାମୃତ' କି 'ଉତ୍କଳ ସାହିତ୍ୟ'ରେ କନିକା ରାଜାଙ୍କର ଗୋଟିଏ ଛବି ବାହାରିଥିଲା । ମୁଁ ସେ ଛବିଟି କାଟି ନେଇ ତା' ବେକରେ ସୁତୁଲି ବାନ୍ଧି ଗୋଡ଼ରେ ଗୋଟିଏ ଟେକା ବାନ୍ଧି ଦାଣପାଖ ବରକୋଳି ଗଛରେ ଦାଣ ଦରଜା ସାମନାରେ, ଫାଶୀ ଝୁଲେଇ ଦେଇଥିଲି । ଆମ ଘରକୁ ଯିବାଆସିବା କରୁଥିବା ସମସ୍ତଙ୍କ ଦୃଷ୍ଟିରେ ତାହା ପଡୁଥିଲା ।

## ଆମ ଘରେ ଆଶ୍ରମ

୧୯୧୪ ରେ ବାପା କଟକ ଜିଲ୍ଲା ବୋର୍ଡ଼ ଚେୟାରମ୍ୟାନ ହେଲେ । ତା' ପରେ ସେ କଟକରେ ବେଶି ସମୟ ରହିଲେ । ପୂର୍ବରୁ ଅଳକାଶ୍ରମରେ ଅଧିକାଂଶ ସମୟ ରହୁଥିଲେ । ଅବଶ୍ୟ ଚେୟାରମ୍ୟାନ ହେବା ପରେ ଜିଲ୍ଲାସାରା ବୁଲାବୁଲିରେ ବି ତାଙ୍କର ବହୁତ ସମୟ ଯାଉଥାଏ । ବାପା କଟକରେ ରହିବାରୁ ଆମଘରେ ଗୋଟାଏ ଛୋଟକାଟିଆ ଆଶ୍ରମ ଆରମ୍ଭ ହେଲା । ବିଶ୍ୱଦା, ଅକ୍ରୂରର ସାନଭାଇ ଅଦିଆ, ନଟ ବୋଲି ଚାଟରାର ଗୋଟିଏ ପିଲା - ଏମାନେ ଆସି ଆମ ଘରେ ରହିଲେ । ଅଦିଆର ବୟସ ସାତ ଆଠ ହେବ । ଆଖିଯୋଡ଼ିକ ଡିମାଡିମା । ପେଟଟି ପିଳେହି ଯୋଗୁଁ ଟମ୍ବୁରି ହୋଇଥାଏ । ଅଦିଆର ଗୀତ ଗାଇବାରେ ଭାରୀ ସଉକ । ସେ ଗାଏ -

"ରଜପାଗ ସଜବାଜ ମଉଜକୁ ଝିପିଝିପି
ବର୍ଷା ସାରିଦେଲାରେ ।
ଝିପିଝିପି ବରଷା ଦେଖି ଭାଇଙ୍କର ଲାଗିଲା ପକ୍ଷୀ
ଶୂନ୍ୟମାର୍ଗେ ଉଡିଲେ ଶିକ୍ଷି
କାଳ ତାକୁ ଥାଉ ମାରିନେଲାରେ ।"
ପୁଣି ଗାଇବ : "ଅପ୍ରାକୃତ ପ୍ରେମ ମୂରି ଆହେ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କଲ ଅବତରି ।"

ଆମ ବଡ଼ ଘର ଦାଣ୍ଡପିଣ୍ଡାରେ ଗୋଟିଏ ତନ୍ତ ପଡ଼ିଲା । ସେଥିରେ ବିଶ୍ୱଦା ଅକୁର ହେରିକା ବୁଣନ୍ତି । ଆମେ ପିଲାଏ ବି ବେଳେବେଳେ ପାଞ୍ଚ ଦଶ ଖିଅ ବାଡ଼େଇ ଦେଉ । ଅନ୍ନପୂର୍ଣ୍ଣା ଦିଦିଙ୍କ ଦାଣ୍ଡରେ ତାନି କଢ଼ାହୁଏ । ସୂତାକଟା ପାଇଁ ପଥରଦିଆ ପକ୍ଷୀ ଅରଟ ତ ଆସି ସାରିଥିଲା ଅନେକ ପୂର୍ବରୁ । ଦାଦା ସାବରମତୀରୁ ଫେରି ଉପର ମହଲାର ପଢ଼ାଘରେ କଡ଼ିରୁ ଭିଣା ଝୁଲେଇ ଦୁଳାରିଣା ଆରମ୍ଭ କରିଥିଲା ଓ ସାବରମତୀର ପଥର ନ ଥିବା ଅରଟର ନମୁନା ବି ପହଞ୍ଚି ଥିଲା । କିଛିଦିନ ଭିତରେ, ଚୂନୀ ଓ ମୁଁ ସୂତାକଟାରେ ଦକ୍ଷ ହୋଇଗଲୁ । ବାପା ଚେୟାରମ୍ୟାନ୍ ଥିବାଭିତରେ ଥରେ ଜାତୀୟ ସପ୍ତାହ ଉପଲକ୍ଷେ ଟାଉନ୍‌ହଲରେ ସୂତାକଟା ପ୍ରତିଯୋଗିତା ହେଲା । ସେତେବେଳେ ତ ଜିଲ୍ଲାବୋର୍ଡ଼ ପକ୍ଷରୁ ପ୍ରାଥମିକ ସ୍କୁଲମାନଙ୍କରେ ସୂତାକଟାର ପ୍ରଚଳନ କରାହୋଇଥାଏ । କଟକ ଆଖପାଖରେ କେତେକ ପ୍ରାଥମିକ ସ୍କୁଲରୁ ବି ପିଲାମାନେ ପ୍ରତିଯୋଗିତାକୁ ଆସିଥା'ନ୍ତି । ଏ ପ୍ରତିଯୋଗିତାରେ ମୁଁ ଓ ଚୂନୀ ପ୍ରଥମ ଓ ଦ୍ୱିତୀୟ ହେଲୁ । କିନ୍ତୁ ବାପା ପୁରସ୍କାରକୁ ବନ୍ଧୁକୁନ୍ଦରୁ ଓ ଆଉ କେଉଁଠୁ ଆସିଥିବା ପିଲାଙ୍କ ଭିତରେ ଆମକୁ ନ ପଚାରି ବାଣ୍ଟିଦେଲେ । ଏଥିରେ ମୋର ଭୀଷଣ ରାଗ ହେଲା । ମୁଁ କାନ୍ଦି କାନ୍ଦି ଘରକୁ ପଳେଇ ଆସିଲି । ଘଟଣାଟା କ'ଣ ଜାଣିବା ପରେ ବେଙ୍ଗଅପା ମତେ ବୁଝେଇବା ପାଇଁ ଯାଚିଲା ଯେ ହଉ ମୁଁ ଦଉଛି ଦଶଟଙ୍କା ନେ । କିନ୍ତୁ କଥାଟା କ'ଣ ଟଙ୍କାରେ ଥିଲା ।

ସରକାରଙ୍କ ଶିଳ୍ପ ବିଭାଗରେ ଜଣେ କର୍ମଚାରୀ ରଙ୍ଗାଧରବାବୁଙ୍କ ସାହାଯ୍ୟରେ ଆମ ଘରେ ସୂତାରଙ୍ଗ କାମ ବି ଚାଲିଥିଲା । ଏ ରଙ୍ଗକାମ ଦେଖିବାକୁ ଖୁବ୍ ମଜା ଲାଗେ । ଗୋଟିଏ ପ୍ରକାର ପାଣିରେ ବୁଡ଼େଇଲେ ସୂତାର ରଙ୍ଗ ଅତି ଅବରଜିଆ ହଳଦିଆ ହୋଇଯାଏ । ତା' ପରେ ପବନ ବାଜିଲେ ଧୀରେ ଧୀରେ ହୋଇଯାଏ ଅତି ଚମତ୍କାର ନୀଳ । ପୁଣି ଦୁଇଟା ରଙ୍ଗ ନ ଥିବା ଫିକା ପାଣିରେ ପରପର ବୁଡ଼େଇଲେ ଅତି ଚମତ୍କାର ଲାଲ ରଙ୍ଗ ହୋଇଯାଏ । ଖଇର, ହୀରାକଷ ଆଦି ବ୍ୟବହାର କରି ମାଟିଆ, କଳା ଆଦି ରଙ୍ଗ ବି କରାଯାଉଥିଲା । ସତୀଶଚନ୍ଦ୍ର ଦାସଗୁପ୍ତ ଦେଶୀ ରଙ୍ଗ ବିଷୟରେ ଗବେଷଣା ବହୁତ କରିଥିଲେ ଓ ଖଣ୍ଡେ ବହି ବି ଲେଖିଥିଲେ । ସତୀଶବାବୁଙ୍କର ଉଦ୍‌ଭାଷିତ ବାକ୍‌ସରେ ଭାଙ୍ଗି ଭୁଙ୍ଗି ବନ୍ଦ ହୋଇ ଯାଉଥିବା ପକ୍ଷୀ ଅରଟ ବି ଏଇ ସମୟରେ ଆସିଲା ।

ବିଶ୍ୱଦା ଲୁଗାବୁଣନ୍ତି, ବାଉଁ ବି କାଟି ଶିଖୁଥା'ନ୍ତି, ବଢ଼େଇ କାମ ବି କରୁଥା'ନ୍ତି । ଜିଲ୍ଲାବୋର୍ଡ଼ ପାଇଁ ବାଉଁଶର ଲଟେଇ ତିଆରି କରି ଯୋଗାଇ ସେ କିଛି ପଇସା ରୋଜଗାର କଲେ । ଲଟେଇ ଗୋଟା ଦୁଇ ଅଣା, ଶହ ବାର ଟଙ୍କା ଆଠ ଅଣା । ସେଥିରେ ସେ ଗୋଟାଏ ସାର ବଢ଼େଇ ହତିଆର କିଣିଲେ । ବାପା ବି ଗୋଟାଏ ସାର ହତିଆର ଆଣିଲେ । ସେ ସବୁକୁ ନେଇ ମୁଁ କଟାକଟି ଆରମ୍ଭ କଲି । ଯା ପୂର୍ବରୁ ବି ମୁଁ କୋଉଠୁ ଛବି ଦେଖି କାଠର ସାନ ଗାଡ଼ି ଓ ସେମିତିସବୁ ଆଉ କ'ଣ ତିଆରି କରିବା ପାଇଁ ଉତ୍ସାହିତ ହୋଇଥିଲି । ବଡ଼ ପି'ସାଙ୍କ ଠାରୁ ଗୋଟିଏ କରତ ଓ ଆଉ କ'ଣ ତିଆରି କରିବା ପାଇଁ ଉତ୍ସାହିତ ହୋଇଥିଲି । ବଡ଼ ପି'ସାଙ୍କ ଠାରୁ ଗୋଟିଏ କରତ ଓ ଆଉ କ'ଣ ଖଣ୍ଡେ ଦୁଇଖଣ୍ଡ ହତିଆର ମଗାହୋଇ ଆସିଥିଲା । ସେଥିରେ ସବୁ କିଛି ଆଦୌ ଧାର ନ ଥାଏ । କରତ ଏକବାରେ ଦନ୍ତୁଡ଼ା । ବହୁତ ଘଷର ଘଷର କଲେ ଟିକିଏ କାଟେ । ବିଶ୍ୱଦାଙ୍କ ସାହାଯ୍ୟରେ ଏ ନୂଆ ହତିଆରସବୁ ଅପେକ୍ଷାକୃତ ଧାରୁଆ ହେଲା । ବଟାଲୀ ବ୍ୟବହାର କରୁ କରୁ ଗୋଡ଼ ଆଙ୍ଗୁଠି କଟିଯିବା ବାରମ୍ବାର ଘଟିବାକୁ ଲାଗିଲା । ତେବେ ଏସବୁ ବ୍ୟବହାର କରିବାରେ ମୋ ଅପେକ୍ଷା ଅଧିକ କୁଶଳତା ରବି ହେରିକା ମୋର ସାଙ୍ଗମାନଙ୍କର ଥାଏ । ସେତେବେଳେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପ୍ରାକ୍‌ଟିକାଲ୍ କାମ ରୂପେ ବଢ଼େଇ କାମ ଶିଖା ହେଉଥାଏ । ବୋଧହୁଏ ଯା ପୂର୍ବରୁ ମୁଁ ଗୋଟିଏ 'ମେକ୍କାନୋ' ସେଟ୍ ମଗେଇ ନେଇଥାଏ । ବଡ଼ ପି'ସାଙ୍କ ଘରେ ଥିବା କ୍ୟାଟଲଗ୍‌ରୁ ଦେଖି ଦେଖି କଲିକତା ହ୍ୱାଇଟ୍‌ୱେ ଲେଡ୍‌ଲ୍ ଦୋକାନରୁ ଲେଖି ଭି.ପି.ରେ ମଗେଇ ଦେଲି । ବାପା ବିରକ୍ତ ହେଲେ, କିନ୍ତୁ ଭି.ପି. ରଖାହେଲା ଓ ସେଥିରେ ପାତିଆ, ଚକ, ଅଖ ଆଦି ଉପକରଣ ଦ୍ୱାରା ନାନା ପ୍ରକାର ଖେଳନା ତିଆରିରେ ବାପା ବି ଅନେକ ସମୟରେ ଲାଗିଗଲେ ।

ଇତି ମଧ୍ୟରେ ଆମ ଘରେ ଏଣ୍ଡିଚାଷ ଆରମ୍ଭ ହେଲା । ବଡ଼ ବଡ଼ ଡାଲାରେ ପଲପଲ ଏଣ୍ଡିପୋକ ରଖାହେଲେ । ଡାଲା ରଖିବା ପାଇଁ ସବୁ ର୍‍ୟାକ୍ ତିଆରି ହେଲା । ଗଦା ଗଦା ଗବପତ୍ର ଏଥିପାଇଁ ପ୍ରତିଦିନ ଦରକାର ହୁଏ । ପୋକସବୁ ବଢ଼ି ବଢ଼ି ପାକଳ ହୋଇଗଲେ ସେମାନଙ୍କୁ ଆମ୍ବ ପତ୍ର ଭିତରେ ରଖାଯାଏ । ସେଥିରେ ସେ ଗୋଟି ବାନ୍ଧନ୍ତି ଓ ପ୍ରଜାପତି ଗୋଟାଏ ଧନ୍ଦାରେ ଆମେ ଦିନାକେତେ ମହାଉତ୍ସାହରେ ଲାଗିଲୁ । ଏ ସବୁ କାମରେ ବାପାଙ୍କର ଉତ୍ସାହୀ ସହଯୋଗୀ ଥା'ନ୍ତି ଭିକାରୀଚରଣ ପଟ୍ଟନାୟକ । ଭିକାରୀବାବୁ କଂଗ୍ରେସର ଲଢୁଆ କାର୍ଯ୍ୟକ୍ରମରେ ଉତ୍ସାହୀ ନ ଥିଲେ, ମାତ୍ର କୁଟୀର ଶିଳ୍ପରେ ତାଙ୍କର ବହୁତ ସ୍ପୃହା ଥିଲା । ତାଙ୍କ ଘରେ ଅନେକ ପ୍ରକାରର କୁଟୀର ଶିଳ୍ପର ପରଖ ଚାଲୁଥିଲା । ତାଙ୍କର ଅଭଙ୍ଗା କଣ୍ଢେଇ ପରେ ବହୁତ ଚଳୁଥିଲା ।

ବାପାଙ୍କର ବେଳେବେଳେ ପଦ ମିଳେଇବାକୁ ଝୁଙ୍କ ଉଠେ । ଦିନେ ସନ୍ଧ୍ୟାବେଳେ ବିଶ୍ୱଦାଙ୍କୁ ଚିଠି ଲେଖି ବସି ପଦ ମିଳେଇବା କୌତୁକ ଆରମ୍ଭ କଲେ । ଚୁନୀ ଓ ମୁଁ ବି ସେଥିରେ ଯୋଗ ଦେଲୁ । ଶେଷକୁ ସେ ଚିଠିଟା ଏଇ ରୂପ ଧରିଲା;

ବିଶ୍ୱଦାଦା ବିରିଡାଲି
ତୁମି ଗାଧା ଖାଅ ଖାଲି
ଖାଅ କାଦା ଧୋୟା ବାଲି
ଶୁଅ ସଦା ବାଟ ଚାଲି
ବାହାରଣା, ବାଟବଣା, ଅଛି ଜଣା ତୁମେ କଣା
ଇତି ଅଜଣା ।

## ପାଠପଢ଼ା

ଆମକୁ ତ ଅସହଯୋଗ ଯୋଗୁଁ ଇସ୍କୁଲରେ ଦିଆହେଲା ନାହିଁ । ଘରେ ପଢ଼ିବା ବ୍ୟବସ୍ଥା କରାହେଲା । ଅବଶ୍ୟ ଅନ୍ନପୂର୍ଣ୍ଣା ଦିଦିଙ୍କ ପିଲାମାନେ ବହି ବସ୍ତାନି ଧରି ଇସ୍କୁଲକୁ ଯିବାର ଦେଖି ମୋର ବି ଯିବାର ଇଚ୍ଛା ହେଉଥିଲା । ମୁଁ ଅଝଟ ହେବାରୁ ମତେ ଦିନେ କାଠଯୋଡ଼ି କୂଳର ଟ୍ରେନିଂ ସ୍କୁଲ ସହିତ ଥିବା ସେତେବେଳର 'ମିଡ଼ିଲ୍' ସ୍କୁଲର ତଳ ଶ୍ରେଣୀରେ ନେଇ ବସେଇ ଦେଇଥିଲେ । ନାଁ ଅବଶ୍ୟ ଲେଖା ହୋଇ ନ ଥିଲା । ଘରେ ପଢ଼େଇବା ପାଇଁ ଆମର ମାଷ୍ଟର ରହୁଥିଲେ । ଏକଦମ୍ ପ୍ରଥମରେ ଜଣେ ଦରବୁଢ଼ା ଗୋଦଡ଼ା ମାଷ୍ଟର ଥିବାର ମନେ ପଡୁଛି । ତା' ପରେ ବାମୀଦିଦିଙ୍କ ଗାଁର ଜଣେ ଯୁବକ ଆସିଲେ । ସେ ଆମକୁ ପଢ଼େଇଲେ ହେୟାର (Hare) ମାନେ ଇରତିଆ ପକ୍ଷୀ । ଅଳ୍ପଦିନରେ ସେ ବିଦା ହେଲେ ।

ଅବଶ୍ୟ ଶିକ୍ଷକ ରହିବା ପୂର୍ବରୁ ଆମେ ଲେଖାପଢ଼ା ଶିଖି ଯାଉଥିଲୁ । ବୋଉଠାରୁ ଓଡ଼ିଆ ଶିଖିଥିଲୁ । ବଙ୍ଗଳା ବି ବୋଉ ହେରିକାଙ୍କର ଅଳ୍ପ ଅଳ୍ପ ସାହାଯ୍ୟରେ ଶିଖି ଯାଉଥିଲୁ । କେହି ବିଧିବଦ୍ଧ ଭାବରେ ପଢ଼ାଇ ନାହିଁ । ଓଡ଼ିଆରେ ପିଲାଙ୍କର ଗପ ବହି ପ୍ରାୟ ନ ଥିଲା । ବଙ୍ଗଳା ବହିସବୁ ପ୍ରଥମେ ଦାଦା ମଗେଇ ଦେଲା କି ଆଉ କିଏ, ମନେ ନାହିଁ । ଯୋଗୀନ୍ଦ୍ରନାଥ ସରକାରଙ୍କର ହାସି ଖୁସି, ହାସିରାଶି, ଖୁକୁମନିର ଛଡ଼ା ଇତ୍ୟାଦି ବହିରୁ ବଙ୍ଗଳା ଭଲରକମ ପଢ଼ି ଶିଖିଥିଲୁ । ଖୋକନ୍ ହେରିକାଙ୍କ ସାଙ୍ଗରେ ମିଶି କଥାବାର୍ତ୍ତାଟା ଅଭ୍ୟାସ ହୋଇଗଲା । ତେବେ ଏକଦମ୍ ୧୯୨୨ ରେ କି କେବେ ଦାଦା ପିଲାଙ୍କର ବଙ୍ଗଳା ମାସିକ ପତ୍ରିକା 'ମୌଚାକ' ବର୍ଷକର ମଗେଇ ଦେଇଥିଲା । ସେତେବେଳେ ସେଗୁଡ଼ାକର କଦର କରି ପାରି ନ ଥିଲି । ବଙ୍ଗଳା ବହି ତାଲିକା ଦେଖି କ୍ରମେ ଭି.ପି. ରେ ବହି ମଗେଇ ମଧ ଶିଖିଲି । ସେତେବେଳେ ଅସମିୟା ଶିଖିବାର ଚେଷ୍ଟା ମଧ କରିଥିଲି । ଯୋଗୀନ୍ ସରକାରଙ୍କର ଅସମିୟା ବହି 'ନାହିଁ ଧେମାଲି' ପିଲାଙ୍କ ବହି ବି ଏମିତି ମଗେଇ ନେଲି । ଲିପି ତ ବଙ୍ଗଳା ପରି କେବଳ 'ର'ଟା ଭିନେ ଓ ଗୋଟାଏ ୱ ଅଧିକା । ଅବଶ୍ୟ ଛ, ଚ ଓ ସ୍ମିର ଉଚ୍ଚାରଣ ଯେ 'ସ' ଏବଂ 'ସ ଶ ଷ' ଉଚ୍ଚାରଣ ଯେ 'ହ' ହବ ସେ କଥା ଜଣା ନ ଥାଏ । ପ୍ରକାଶକଙ୍କର ନାମ 'ଚିଟି ବୁକ୍ ଚୋଟାଇଟି' ଲେଖା ହୋଇଥିଲେ ବି ଧରି ହେଉ ନ ଥିଲା । ତଥାପି ପଢ଼ିଗଲି । କେତେ ପଦ ମନେଅଛି ।

"ଅଜଗର ଆହେ ଲଭି- ଆମ୍‌ଟି ମଯ ଖାମ୍ ପାରି", "ମଯନା ସୋନାଇ, ମଯନା ସୋନାଇ, କରା ବହି କି ? ଏୟା ଚୋଓ୍ଁ କେନ ବାରୁ ଆଁକିଲୋ ଛବିଟି ।"

ଇଂରାଜୀ ଶିଖିବା ପାଇଁ ଅବଶ୍ୟ ଅନ୍ୟମାନଙ୍କର ସାହାଯ୍ୟ ଲୋଡ଼ା ହୋଇଥିଲା । କଣ୍ଢଅଜା ହେରିକା ପ୍ରଥମ ପ୍ରଥମ ସାହାଯ୍ୟ କରୁଥିଲେ । ଆମଘରେ ଦାଦା ହେରିକା ମୋଟା ମୋଟା ଇଂରାଜୀ ବହି ପଢୁଥା'ନ୍ତି । ଘନ ପି'ସା ବି ଦିନାକେତେ ଥିଲେ । ତାଙ୍କର ସବୁ ବଡ଼ ବଡ଼ ବହିରେ ମଣିଷର ହାଡ଼ପଞ୍ଜରାର ଛବି ଥାଏ । ସେ ସବୁ ଡାକ୍ତରୀ ବହି ବୋଲି କିଏ କହିଥିଲେ । ଏ ସବୁ ବହି ଦେଖି ସେପରି ବହି କେବେ ପଢ଼ିବାର ଶକ୍ତି ହେବ କି ନାହିଁ ମନରେ ଏକା ସାଙ୍ଗରେ କୌତୂହଳ ଓ ଉଦ୍‌ବେଗ ସୃଷ୍ଟି ହେଉଥାଏ । ବହିର ଲେଖକ ସବୁ ଅସାଧାରଣ ଜୀବ ବୋଲି ଧାରଣା ଥାଏ । ଥରେ ଈଶପ୍‌ଙ୍କ କାହାଣୀର ଓଡ଼ିଆ ଅନୁବାଦ 'କଥା ଶତକ' ପଢୁଥାଉ । ଅନୁବାଦ କରିଥାନ୍ତି ବାଙ୍କନିଧି ପଟ୍ଟନାୟକ । ରଘୁମାଷ୍ଟ୍ରେ ମନ୍ତବ୍ୟ କଲେ "ଇଏ ଆମର ବାଙ୍କନିଧିଟି, ଖୋର୍ଦ୍ଧା ସ୍କୁଲରେ ମାଷ୍ଟର ଅଛି ।" ସେଠୁ କେମିତି ମନେହେଲା ଯେ ଆଖର ଲେଖକମାନେ ବି ଆମର ହାତପାହାନ୍ତାର ଲୋକ ହୋଇଥିବେ । ତା' ପରେ ଦାଦା ତ 'ଚିଡ଼ିଆଖାନା' ବହି ଲେଖି ଉତ୍କଳ ସାହିତ୍ୟ ପ୍ରେସକୁ ବିକି ପଚିଶ ଟଙ୍କା ପାଇଲା ।

ରଘୁମାଷ୍ଟ୍ରେ ଖୁବ୍ ବିଚିତ୍ର ଓ ରସିକ ଲୋକ ଥିଲେ । ଆମ ପୂର୍ବରୁ ଓ ପରେ ସେ ଯେ କେତେ ଲୋକଙ୍କୁ ପଢ଼ାଇଛନ୍ତି ତା'ର ଇୟତ୍ତା ନାହିଁ । ଚେହେରାଟି ହିପୋପୋଟେମସ୍ ଛୁଆ ବା ସୁକୁମାର ରାୟଙ୍କର କୁମ୍ଡୋପଟାସ୍ ପରି ଅବିକଳ । ନିଜେ ଖୁବ୍ ଗମ୍ଭୀର ରହି ଲୋକଙ୍କୁ ହସେଇବାରେ ଧୂରନ୍ଧର । ବାଲୁଦାଦା, ଭଗଦାଦା ହେରିକାଙ୍କୁ ପଢ଼ାଇଥିଲେ । ପରେ ପୁଣି ଟୁଙ୍କୁ ମାମୁଁଙ୍କ ଘରେ ରହି ତାଙ୍କ ପିଲାଙ୍କୁ ପଢ଼ାଇଲେ । ପ୍ରତିଦିନ ଆମ ଘରବାଟେ ନଈକୁ ଗାଧୋଇ ଯା'ନ୍ତି ଓ ଦାଦା ଖୁଡ଼ୀ ହେରିକାଙ୍କୁ ବାରଣ୍ଡାରେ ଥିବାର ଦେଖିଲେ "ଚାହାଁ ଗୋ ରାଇକିଶୋରୀ" ବା ସେମିତିକା ଗୋଟିଏ କିଛି ଗୀତର ପଦ ଗାଇ ନାଚର ଭଙ୍ଗୀ କରି ସମସ୍ତଙ୍କୁ ହସାନ୍ତି ।

୧୯୨୨ ବେଳକୁ କବି ବୀରକିଶୋର ଦାସ ଦିନାକେତେ ଆମର ଶିକ୍ଷକ ଥିଲେ । ସେତେବେଳକୁ ସେ ଅସହଯୋଗୀ, ଜାତୀୟ ସଙ୍ଗୀତ ଲେଖିବା ଆରମ୍ଭ କରିସାରିଲେଣି । ତାଙ୍କ ଗୀତର ଗୋଟିଏ ସଂଗ୍ରହ 'ମୋହନ ବଂଶୀ' ନାଁରେ ବାହାରିଥାଏ । ଏ ବହିଖଣ୍ଡି ମୋର ପ୍ରିୟ ଥିଲା । ବହିଟିରେ କାହିଁକି କେଜାଣି ବୀରବାବୁଙ୍କର ନାମ ଲେଖକ ଭାବରେ ଦିଆ ନ ଯାଇ ତାଙ୍କ ସାନଭାଇ ବାନାମ୍ବର ଦାସଙ୍କ ନାମ ଦିଆଯାଇଥାଏ । ବୀରବାବୁ ଆମକୁ ପ୍ରବନ୍ଧ ଲେଖିବାକୁ ଦିଅନ୍ତି । ମୁଁ ସେ ବିଷୟରେ ସିଲଟରେ ଛବି ଆଙ୍କି ଦେଖାଏ । ଶିକ୍ଷକଙ୍କୁ ଆମେ ମୋଟେ ଡରୁ ନ ଥାଉ । ଯେଉଁମାନେ ଥିଲେ ସେମାନେ ବି କେବେ ଆମମାନଙ୍କୁ ମାରଧର ବା ଗାଳିମନ୍ଦ କରିନାହାନ୍ତି । ଆମର ଶିକ୍ଷକମାନେ ସମସ୍ତେ ଅତି ଉଚ୍ଚକୋଟୀର ଲୋକ ଥିଲେ । ସେମାନଙ୍କର ସାନ୍ନିଧ୍ୟ ଆମକୁ ବହୁତ ଲାଭବାନ୍ କରିଛି ।

ବୀରବାବୁଙ୍କ ପରେ ଥିଲେ ପ୍ରହ୍ଲାଦ ସାହୁ । ଘର କଟକ ଜିଲ୍ଲାର କୁସୁପୁର । ଦାଦାର ଇସ୍କୁଲବେଳର ବନ୍ଧୁ । ଅତି ଅମାୟିକ ଓ ଉଦାର ଦୃଷ୍ଟିର ଲୋକ । ଆମକୁ ନାନା ପ୍ରକାରର ଗପ ଶୁଣାନ୍ତି । ସେ ଗପସବୁ ମନେନାହିଁ, କିନ୍ତୁ ସର୍ବଧର୍ମସମଭାବର ଦୃଷ୍ଟି ତାଙ୍କରି ଗପ ଜରିଆରେ ଆମକୁ ପ୍ରଥମେ ମିଳିଥିଲା । ସେ ନିଜେ କେମିତି ଯାଇ ଦିନେ ଦିନେ ଗିର୍ଜାରେ ବସି ସେଠା ପ୍ରାର୍ଥନାରେ ଯୋଗଦିଅନ୍ତି; ଏମିତିସବୁ ଗପ ଜରିଆରେ ଆମକୁ ଏ ଦୃଷ୍ଟି ସହଜରେ ମିଳି ଯାଇଥିଲା । ତାଙ୍କ ସାଙ୍ଗରେ ଆମେ ସବୁଠୁ ମୁକ୍ତ ବ୍ୟବହାର କରୁଥିଲୁ । ତାଙ୍କୁ ଚଉକିରେ କନାଧଡ଼ି ଦେଇ ବାନ୍ଧିଦେଉ । ସେ କିଛି କହନ୍ତି ନାହିଁ । କେତେଦିନ ଖଣ୍ଡସାହିର ବଂଶୀଧର ମିଶ୍ର ବି ଆମର ଶିକ୍ଷକତା କରିଥିଲେ । ସେ କଂଗ୍ରେସ କମିଟିର ଅଫିସ୍ ସଂପାଦକ ନା କ'ଣ ଥା'ନ୍ତି । ଦିନେ ହଠାତ୍ ବର୍ମା ଚାଲିଗଲେ । ତେଣୁ ଅନେକଆଡ଼େ ବୁଲାବୁଲି କରି ବିଲାତରେ ପହଞ୍ଚି ମ୍ୟାଞ୍ଚେଷ୍ଟର ନା କୋଉଠି ଗୋଟିଏ ଶ୍ରମିକ ସଂଘର କର୍ମକର୍ତ୍ତା ହେଲେ । ସେଠି ତାଙ୍କର ନାମ ହେଲା କି ଗୋଟାଏ ଅଲୀ ।

ଆମର ଶେଷ ଶିକ୍ଷକ ଚନ୍ଦ୍ରଶେଖର ମିଶ୍ର । ତେଜସ୍ୱୀ ଚେହେରା, ଖୁବ୍ ତୀକ୍ଷ୍ଣ ବୁଦ୍ଧି । ଦଧିବାବୁ କୋଠାରେ ଗୋଟିଏ ମେସ୍ ହୋଇଥାଏ । ସେଠି ରହୁଥା'ନ୍ତି । ଦିନା କେତେ ପଣ୍ଡିତ ନୀଳକଣ୍ଠଙ୍କର ସହକାରୀ ଥିଲେ, ନୀଳକଣ୍ଠବାବୁ ଦିଲ୍ଲୀ ବଡ଼ଲାଟସଭାର ସଦସ୍ୟ ଥିବାବେଳେ । ଚନ୍ଦ୍ରଶେଖରବାବୁ ମହାକ୍ରୋଧୀ ଥିଲେ । କିନ୍ତୁ ଆମ ଉପରେ କେବେ ରାଗିବାର ମନେନାହିଁ । ଓଲଟା ମୋର ବହୁତ କ୍ରୋଧ ସହିଛନ୍ତି । ମୋର ଗୋଟିଏ ସାନ ଗ୍ଲୋବ ଥିଲା । ସେଇଟି ସେ ଥରେ ମାଗି ନେଇଥିଲେ । କେମିତି କେଜାଣି ସେଟା ଫେରେଇବା ବେଳକୁ ତା'ର ମୁଣ୍ଡପାଖ ଟିକିଏ ଚେପା ହୋଇଯାଇଥିଲା । ମୁଁ ଭୀଷଣ ରାଗିଯାଇ ସେଇଟା ନେବାକୁ ମନାକରି ଥିଲି । ସେ ଖୁବ୍ ବିବ୍ରତ ହେଲେ । ମନେ ମନେ ରାଗିଥାଇ ପାରନ୍ତି, କିନ୍ତୁ ମୁହଁରେ କିଛି କହି ନାହାନ୍ତି ।

ତାଙ୍କର କ୍ରୋଧର ଏକ ଶରବ୍ୟ ଥିଲା ଅଶୋକ ଦାସ, ନୀଳକଣ୍ଠବାବୁଙ୍କ ପୁଅ । ତାଙ୍କୁ ନୀଳକଣ୍ଠବାବୁ ଚନ୍ଦ୍ରଶେଖରବାବୁଙ୍କ ଜିମାରେ ଦିନାକେତେ ଛାଡ଼ିଥିଲେ । ଅଶୋକ ଆମର ଖୁବ୍ ସାଙ୍ଗ ହୋଇଥାଏ । ଦଧିବାବୁ କୋଠା ମେସ୍‌ରେ ଥାଏ । ତାଙ୍କୁ ଚନ୍ଦ୍ରଶେଖର ବାବୁ କଥା କଥାକେ ନିର୍ଧୂମ ଛେଚନ୍ତି । ଥରେ ମୁଁ ଆବିଷ୍କାର କଲି ଅଶୋକ ତାର ବାପାଙ୍କ ପାଖକୁ ଚିଠି ଲେଖିଛି- " ବାପା ତମେ ମତେ ବାଘ ମୁହଁରେ ଛାଡ଼ି ଦେଇଗଲ...." ଏ ଚିଠି ଚନ୍ଦ୍ରଶେଖରବାବୁଙ୍କ ଦୃଷ୍ଟିରେ ପଡ଼ିବାରେ ମୋର ବି ଟିକିଏ ଅବଦାନ ଥିଲା ଓ ଫଳରେ ବିଚାରା ଅଶୋକ ଉପରେ ବର୍ଷିଲା ଆଉ ପାନେ । ମୁଁ ଏବେ ଭାବୁଛି ଚନ୍ଦ୍ରଶେଖରବାବୁ ଆମ ଉପରେ ଯେଉଁ କ୍ରୋଧଗୁଡ଼ାକ ପ୍ରକାଶ କରି ପାରୁ ନ ଥିଲେ ସେଗୁଡ଼ା ସ୍ଥାନଚ୍ୟୁତ ହୋଇ ଅଶୋକ ମୁଣ୍ଡରେ ପଡୁଥିଲା ।

# ସାଙ୍ଗସାଥୀ

ଆମ ଦୁଇ ଭାଇ ଭଉଣୀଙ୍କ ଭିତରେ ସବୁବେଳେ କଳି ଲାଗିଥାଏ ଓ ସେଥିରେ ଚୁନୀର ଅସ୍ତ୍ର ଥାଏ ତାର ନଖ । ସେ ମୋ ହାତକୁ ଆମ୍ପୁଡ଼ି ଦିଏ ଓ ମୋର ଦୁଇଟାଯାକ ହାତ ସବୁବେଳେ ଆମ୍ପୁଡ଼ା ଦାଗରେ ଭରି ରହିଥାଏ । ଯେତେବେଳେ ଖୋକନ ସାଙ୍ଗରେ ଭାବ ହେଲା ଓ ତାଙ୍କ ଘରକୁ ଯିବାଆସିବା କଲି, ଜେଠିମା ମୋର ହାତର ଅବସ୍ଥା ଦେଖି କାରଣ ପଚାରିଲେ ଓ ତାଙ୍କୁ ବୁଝାଇବାକୁ ମୋର ସଙ୍କୋଚ ହେଲା । ଆମେ ସାଙ୍ଗ ହୋଇ ଖେଳୁ, କଳିଆ ବି କରୁ । ତା ଭିତରେ ବାସ ଓ ମୁଁ ବିଶେଷ ସାଙ୍ଗ । ଆମର ଖେଳସବୁ ଥାଏ ନଈବାଲିରେ ଧାପ୍‌ସା, ଡୁଡୁ, ବୋହୂଚୋରୀ । ଛୋଟ ରବର  ବଲ୍ ନେଇ ବି ଦଉଡ଼ା ଦଉଡ଼ି କରୁ । ଗୁଚିଡାଣ୍ଡୁ ବି ସେତେବେଳେ ବେଶ୍ ପ୍ରିୟ ଖେଳ ଥିଲା । ରାଜାଭାଇଙ୍କର ଗୋଟାଏ ଆଖି ଗୁଚି ବାଜି ନଷ୍ଟ ହୋଇ ଯାଇଥିଲା । ସେଥିପାଇଁ ମା ଗୁଚିଡାଣ୍ଡୁ ଖେଳିବାକୁ ମନା କରେ । ମାତ୍ର ତାକୁ ମାନୁଚି କିଏ ?

ଜୟୀ ବି ସେତେବେଳେ ମୋର ଖୁବ୍ ସାଙ୍ଗ ଥିଲା । ଥରେ ଖେଳବେଳେ କଳିଆ ହେବାରୁ ମୁଁ ଜୟୀକୁ ଗୋଟିଏ କ'ଣ ଗାଳିଦେଲି ଯେଉଁଥିରେ ସେମାନଙ୍କର ଦାରିଦ୍ର୍ୟ ପ୍ରତି ତାଚ୍ଛଲ୍ୟ ଥିଲା । ଏ କଥା ମା' କାନକୁ ଗଲା । ସେ ମତେ ସେମିତି କଥା ନ କହିବା ପାଇଁ ବୁଝାଇଲା ଓ ଜୟୀକୁ ଆମଘରେ ଖାଇବାକୁ ନିମନ୍ତ୍ରଣ କଲା । ଆମର ଏମିତି ମିଳାମିଶା ହୋଇଗଲା ଓ ତା'ପରେ ମୋର ଖାସ୍ ବନ୍ଧୁ ହେଲା ଖୋକନ୍ । ତା'ର ବାପା କିଶୋରୀମୋହନ ଜୋଆରଦାର ଭିକ୍ଟୋରିଆ ହାଇସ୍କୁଲ- ଏବେ ଭକ୍ତମଧୁ ବିଦ୍ୟାପୀଠରେ ପ୍ରଧାନ ଶିକ୍ଷକ ଥିଲେ । ତା' ପରେ ଓକିଲାତି କଲେ । ନଈକୂଳେ ଆମଘରୁ ଗୋଟିଏ ଛାଡ଼ି ପାଖ ଘରେ ଥା'ନ୍ତି । ଜୋଆରଦାର ବାବୁ ବାଙ୍ଗୁରା, ଶ୍ୟାମଳ ବର୍ଣ୍ଣ, ଝୁଲା ନିଶ, ତଳ ଓଠର ଠିକ୍ ତଳେ ଟିକିଏ ଦାଢ଼ି, ବୁଝିଲି ଯେ ଏପରି ଦାଢ଼ିକୁ "ଇଂପିରିୟାଲ୍" ଦାଢ଼ି କହନ୍ତି । ଜେଠିମା ଉପରଓଳି ଜଳଖିଆରେ ଭଲ ଭଲ ଜିନିଷସବୁ ତିଆରି କରନ୍ତି ପାଟିସାପ୍‌ଟା, ପୁଲିପିଠା, କନ୍ଦମୂଳ ପିଠା । ଏ ସବୁ ବଙ୍ଗାଳୀ ପିଠା ଜଳଖିଆ ଆମକୁ ନୂଆ ।

ଖୋକନ୍ ସାଙ୍ଗରେ ପରିଚୟଟା ନଈବାଲିରେ ଖେଳିବାବେଳେ ବା ନଈକୂଳରେ ବୁଲିବାବେଳେ ହୋଇଥିବ । ୧୯୨୨-୨୩ ରୁ ଆମେ ସାଙ୍ଗ ହେଲୁ । ସାଙ୍ଗ ହୋଇ ବୁଲିବା ଆମର ଖୁବ୍ ସଉକ ଥିଲା । ଉପରଓଳି ସାଙ୍ଗ ହୋଇ ଖେଳୁ, ସାଙ୍ଗ ହୋଇ ବୁଲିଯାଉ । ଚାରିଟା ବେଳକୁ ପଦାକୁ ଯିବାବେଳେ । ମୁଁ ଆମ ଅଗଣାର ଖରାକୁ ଚାହିଁଥାଏ । ଖରାଟା ହଟି ହଟି ଯେତେବେଳେ ଉତ୍ତର ପଶ୍ଚିମ କୋଣ କାନ୍ଥରେ ତିନିକଣିଆ ହୋଇ ଖଣ୍ଡିଏ ରହେ ସେଠୁ ମୁଁ ବୋଉ ପିଛା ଧରେ - "ବୋଉ ଜଳଖିଆ ଖାଇବି ।" ତାପରେ ସିଧା ଖୋକନ୍ ଘରକୁ । ସେଠି କିଛି ପରିପୂରକ ଜଳଖିଆ ପରେ ପୁଣି ନଈକୂଳେ ବୁଲିଯାଉ । ଆମେ ତ ଖୁବ୍ ଭୋରରୁ ଉଠୁଥାଉ । ଜଣେ ମାରୱାଡ଼ୀ ଭଦ୍ରଲୋକ ପ୍ରତିଦିନ ଭୋରରୁ ନଈକୁ ଗାଧୋଇ ଯିବାବେଳେ

'ରାମ ଭଜ' ବୋଲି ଡାକି ଡାକି ଯା'ନ୍ତି । ବାପା ତାଙ୍କରି ଅନୁକରଣରେ ଆମକୁ ଉଠେଇବା ପାଇଁ 'ରାମ ଭଜ' ବୋଲି 'ରାମ ଭଜ' ପାଟି କରିବାକୁ ଆରମ୍ଭ କରିବେ । ସମସ୍ତଙ୍କ ନିଦ ଭାଙ୍ଗିବ । ସେତେବେଳେ ଆମ ଘରେ ଜଳଚିକିତ୍ସାର ଧୂମ୍ ଚାଲିଥାଏ । ଲୁଇ କୁନେଙ୍କର ପଦ୍ଧତି ଅନୁସରଣ କରି ଜଣେ କିଏ ବଙ୍ଗଳାରେ ବହି ଲେଖଥା'ନ୍ତି ଏ ବିଷୟରେ । ଗିରିଧାରୀ ଜଗତି ଓକିଲ ଓ ବାପା ମିଶି ଏହାର ଅନୁଶୀଳନୀ କରୁଥା'ନ୍ତି । ସକାଳ ସନ୍ଧ୍ୟା ବାପା ଓ ଆମେ ଭାଇଭଉଣୀ ପାଣି ଟବ୍‌ରେ ବସି କଟି ସ୍ନାନକରୁ । ତଉଲିଆରେ ତଳିପେଟକୁ ଦଶ ପନ୍ଦର ମିନିଟ୍ ଲେଖା ଘଷୁ । ସକାଳୁ ଗାଧୁଆସାରି ପ୍ରସ୍ତୁତ ହେବାବେଳେ ଖୋକନ୍ ନଣକୂଳେ ଡାକ ମାରେ । ଶୀତ, ଖରା, ବର୍ଷା କେବେ ହେଳା ନ ଥାଏ, କେବଳ ପ୍ରବଳ ବର୍ଷା ପାଗ ଛଡ଼ା । ନଣକୂଳରେ କେବେ ମଲାଚଣ୍ଡିଆ ଯାଏ କେବେ ନଣ ସେପାରି କାଜୀପାଟଣା ଏମିତି ସବୁ ବୁଲିଯାଉ । ବୁଲି ବୁଲି ଆମର ନାନା ଗବେଷଣା ଚାଲେ । ବଙ୍ଗଳା ମାସିକ ପତ୍ର 'ପ୍ରବାସୀ' ରେ ନାନା ପ୍ରକାରର ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନର ଖବର ବାହାରୁଥାଏ । ଆମେ ବି ସେ ସବୁକୁ ପଢୁ ଓ ଆମେ ବି କିଛି ଉଭାବନ କରିବାର ଯୋଜନା କରୁଁ । ଦିନେ ବିଚାର ହେଲା ଯେ ରେଲ୍ ଇଞ୍ଜିନ୍ ମୁହଁଟା ଗୋଜିଆ ହେଲେ ଭଲ ପବନ କାଟିବ । ଏବେ ତ ପାସେଞ୍ଜର ଇଞ୍ଜିନ୍ ସେମିତି ହେଲାଣି । ଆଉ ଦିନେ ଖୋକନ୍ ମସ୍ତିଷ୍କରୁ ବାହାରିଲା ଯେ ମଟର ଗାଡ଼ି ବାଙ୍କ ବୁଲିଲା ବେଳେ ଚକସାଙ୍ଗକୁ ହେଡ୍‌ଲାଇଟ୍ ଆଲୁଅ ବି ବାଙ୍କିବା ବ୍ୟବସ୍ଥା ହେଲେ ଆଗକୁ ରାସ୍ତା ଭଲ ଦିଶିବ ଓ ଗାଡ଼ି ଚଳାଇବା ଅଧିକ ନିରାପଦ ହେବ । ବେଳେବେଳେ ପ୍ରତ୍ନତାତ୍ତ୍ୱିକ ଆବିଷ୍କାରର ଆକାଶ କୁସୁମ ତୋଳୁ । ଦିନେ ନଣ ସେପାରି ବନ୍ଧ ଅତଡ଼ିରେ କେତେଟା ବଡ଼ ବଡ଼ ଲୁହାର ପେଚ ଭଳି କଣ ଜିନିଷ ମାଟି ଧୋଇଯିବାରୁ ଅଧା ବାହାରି ପଡ଼ିଥିବାର ଦେଖି ଖୁବ୍ ଉତ୍ତେଜିତ ହୋଇଥିଲୁ । ପରେ ଉଭୟଙ୍କୁ ସାଇକେଲ ମିଳିଯିବାରୁ ବୁଲିଯିବାର ବିସ୍ତୃତିଟା ବହୁତ ବଢ଼ିଗଲା ।

ଖୋକନ୍ ମୋ ଅପେକ୍ଷା ବେଶୀ ସାହସୀ । ସେ ପାଚିରୀ ଉପରେ ଚଢ଼ି ଏ ପାଖରୁ ସେପାଖକୁ ଡିଏଁ । କୂଅ ପନ୍ଦ ଉପରେ ସେମିତି ଏପଟ ସେପଟ ହୁଏ । ମତେ ଡର ମାଡ଼େ । ରାସ୍ତାରେ ଘୋଡ଼ାଗାଡ଼ି ଆସୁଥିବାର ଦେଖିଲେ ଅନ୍ୟ ପିଲାମାନେ ତା ଆଗରେ ଦଉଡ଼ି ରାସ୍ତା ପାରିହେବା ଖେଳ ଖେଳନ୍ତି । ମୁଁ ପାରେ ନାହିଁ । ଖେଳରେ ଟିକିଏ ବାଜିଲେ ଦଉଡ଼ି ଘରକୁ ପଳେଇ ଆସେ । ଏହା ପଛରେ ମା' କ'ଣ କହିବ ଏହି ଉଦ୍‌ବେଗ ବୋଧହୁଏ ପ୍ରଧାନ ଥିଲା । କିନ୍ତୁ ସବୁ ବୀରତ୍ୱ ସତ୍ତ୍ୱେ ଖୋକନ୍ ଠେକୁକୁ ଡରୁଥାଏ । ତାଙ୍କ ସେପାଖ ଘରେ କିଏ ଜଣେ ସବ୍‌ଜଜ୍ ଥା'ନ୍ତି, ବୋଧହୁଏ ବିହାରୀ । ତାଙ୍କର ଏକ ବିହାରୀ ଦରୱାନ୍ ଥାଏ । ତା ନାଁ ଠେକୁ । ସେ ଦଣ୍ଡବୈଠକ କରି ପହିଲିମାନୀ ଚେହେରା କରିଥାଏ । ମୁଣ୍ଡରେ ଗୋଟିଏ ଠେକା । ଖୋକନ୍‌କୁ ଦେଖିଲେ ସେ ଧରିବାକୁ ଗୋଡାଏ ଓ ଖୋକନ୍ ତାକୁ ଦେଖିଲେ ଏକବାରେ ପଗାରପାର । ଥରେ ଆମେ ବୁଲିଯାଉଛୁ । ପୁରୀଘାଟ ପାଖରେ ଦେଖିଲୁ ଯେ ଠେକୁ ତେଣୁ ଆସୁଛି । ଦୁହେଁ ତ ଏକଦମ୍ ଦେ ଦୌଡ଼ । ଠେକୁ କିନ୍ତୁ ଖୋକନ୍‌କୁ ଗୋଡ଼େଇ ଧରି ପକେଇଲା । ପରେ ମୁଁ ପଚାରିଲି - କ'ଣ ହେଲା ? ଜବାବ ପାଇଲି- କିଛି ନାହିଁ, କ'ଣ କରିବ ?

ଆମେ ଏକାଠି ଗପ ବହି ପଢୁ । ଅଙ୍କ, ଇତିହାସ, ଭୂଗୋଳ ଆଦି ପାଠରେ ବି ପରସ୍ପରକୁ ସାହାଯ୍ୟ କରୁ । ଛାତ ଉପରେ ବସି ବସି ଚିଲ, ଶାଗୁଣାଙ୍କର ଉଡ଼ିବା ଦେଖୁ ଓ ସେମାନେ କିପରି ଡେଣା ନ ହଲାଇ ଏତେବେଳଯାଏ ନିଶ୍ଚଳ ହୋଇ ଉଡ଼ିପାରୁଛନ୍ତି ତା'ର କାରଣ ଗବେଷଣା କରିବା ଚେଷ୍ଟା କରୁ । ମେଘର ଆକୃତିରେ ଜୀବଜନ୍ତୁଙ୍କର ରୂପ କଳ୍ପନା କରୁ । ଆକାଶରେ ରଙ୍ଗର ଛଟା ଦେଖୁ ଓ ତା'ର କାରଣ ଆଲୋଚନା କରୁ । ଷ୍ଟେସନ୍‌ରେ ଛିଡ଼ା ହୋଇ ମୁଗ୍ଧ ଦୃଷ୍ଟିରେ ରେଲ୍ ଇଞ୍ଜିନ୍‌ର ଗତିବିଧି ଦେଖୁ । ମୋ ଦେଖାଦେଖି ଖୋକନ୍ ବି ଏ କ୍ୟାମେରା କିଣିଲା ଓ ଦୁହିଁଙ୍କର ଫଟୋ ଉଠାଇବା ଶୌକ ଦିନାକେତେ ଏକାଠି ଚାଲିଲା । ଥରେ ଢେଲା ମାରିବା କୋହର ଉଠିଲା, କେତେ ଦୂରକୁ ମାରିହେବ । ମୋର ପ୍ରଥମେ ଭଲ ହେଉ ନଥିଲା । ଟେକ୍‌ନିକ୍ ଶିଖିଯିବାରୁ ବହୁତ ଦୂରକୁ ମାରିବା ସମ୍ଭବ ହେଲା । 'ନିହିଲିଷ୍ଟ' ଶବ୍ଦର ଅନୁକରଣରେ ଆମେ ଏ ଦୁଇ ଜଣିଆ ଦଳର ନାମ ଦେଇଥିଲୁ 'ଢ଼ିହିଲିଷ୍ଟ'- ବଙ୍ଗଳା 'ଢିଲ୍' ରୁ ।

ଖୋକନ୍ ଘରେ ଜିନିଷପତ୍ର ଖୁବ୍ ବ୍ୟବସ୍ଥିତ ଭାବରେ ସଜା ହୋଇଥାଏ । ଜେଠିମା'ଙ୍କ ଭଣ୍ଡାର ଘରେ ସବୁ ଜିନିଷ ଟିଣରେ, ବୋତଲରେ ପଣି ସଜଡ଼ା ହୋଇ ରହିଥାଏ, ଜୋଆର୍‌ଦାର୍ ମହାଶୟଙ୍କର ବହି, କାଗଜପତ୍ର ସବୁ । ଆମଘରେ ବହିପତ୍ରସବୁ ଏଣେତେଣେ ପଡ଼େ । ତାଙ୍କ ଘରୁ ବାପା ହେରିକା ଇଂରେଜୀ ଖବରକାଗଜ ପଢ଼ିବା ପାଇଁ ମାଗି ଆଣନ୍ତି । ମୋ ହାତରେ ଥରେ ଫେରସ୍ତ ପଠେଇଲେ । ମୁଁ ଆଲୁରୁ ବାଲୁରୁ କରି ପୂଳାକ ଧରିନେଇ ଜୋଆରଦାର ମହାଶୟଙ୍କୁ ଦେଲି । ସେ ମତେ କାଗଜଗୁଡ଼ିକ ଠିକ୍‌କରି ଭାଙ୍ଗି ସଜାଡ଼ି ରଖିବାକୁ କହିଲେ । ମୋତେ ଗୋଟାଏ ନୂଆ ଦୃଷ୍ଟି ମିଳିଲା ।

ଖୋକନ୍ ଘର ପାଖରେ କଲିଜିଏଟ୍ ସ୍କୁଲର ଅଙ୍କଶିକ୍ଷକ, ବଙ୍ଗାଳୀ ଭଦ୍ରଲୋକ, ସୁରେନ୍‌ବାବୁ ଆସି ରହିଥିଲେ । ତାଙ୍କର ବଡ଼ପୁଅ କଲେଜରେ ନାଁ ଲେଖେଇ ଥାଏ । ସେ ଆମମାନଙ୍କୁ ଖାତିର କରେ ନାହିଁ । ତା'ର ଖୁବ୍ ଗୁରୁଗମ୍ଭୀର ଚାଲି । ଦୁଇ ମଝିଆ ପୁଅ ବ୍ୟାଙ୍ଗ୍ ଓ ଟ୍ୟାଙ୍ଗ୍ ଆମର ଖେଳସାଥୀ ଥିଲେ । ଟ୍ୟାଙ୍ଗ୍ ହଇଜାରେ ମରିଗଲା । ସେ ବର୍ଷ କଟକରେ ପ୍ରବଳ ହଇଜା ଲାଗିଥିଲା । ଦିନଯାକ 'ରାମନାମ ସତ୍ୟ ହେ' କହି ନଣକୁଳବାଟେ ମୁର୍ଦ୍ଦାର ନିଆଯାଉଥା'ନ୍ତି । ମା' ଆମକୁ ବାହାରକୁ ଖେଳିବାକୁ ଯିବାକୁ ମନାକରି ଥାଏ ଓ କାଗିଜିଲେମ୍ବୁ ସୁଙ୍ଘିବା ପାଇଁ ଦେଇଥାଏ । ସେଥିରୁ ହଇଜା ଓ ମୃତ୍ୟୁର ଭୟ ମୋ ମନକୁ ରୀତିମତ ଗ୍ରାସ କରିଥିଲା ।

ପିଲାଙ୍କର ବଙ୍ଗଳା ମାସିକ-ପତ୍ର 'ସନ୍ଦେଶ' ରେ ୧୯୨୪ ରେ ସୁକୁମାର ରାୟଙ୍କର ହାସ୍ୟରସାତ୍ମକ ନାଟକ 'ଝାଲାପାଲା' ଓ 'ଲକ୍ଷ୍ମଣେର ଶକ୍ତିଶେଲ' ବାହାରିଲା । ଶେଷୋକ୍ତିଟି ଆମର ଖୁବ୍ ମନକୁ ପାଇଲା । ଆମେ ଠିକ୍ କଲୁ ଅଭିନୟ କରିବୁ । ଅଭିନେତା ଶେଷପର୍ଯ୍ୟନ୍ତ ମୋଟେ ଚାରି ପାଞ୍ଚଜଣ ଜୁଟିଲେ । ଖୋକନ୍, ମୃଷି, ରବି ଦାସ, ମୁଁ ଓ ଆଉ ଜଣେ ଅଧେ

କିଏ । ଝିଅମାନଙ୍କର ସେତେବେଳକୁ ଅଲଗା ଦଳ ସୃଷ୍ଟି ହେଲାଣି । ଚୁନୀ ଯା ଭିତରେ ନ ଥାଏ । ଏତିକିଙ୍କ ଭିତରେ ସବୁ ପାର୍ଟ ବଣ୍ଟା ହେଇଗଲା, ଜଣଜଣକା ଦୁଇତିନିଟା ଲେଖାଁ । ଖୋକନ୍ ରାମ ଓ ରାବଣ ଉଭୟ ପାର୍ଟ ନେଲା । ମୁଁ ନେଲି ଲକ୍ଷ୍ମଣ ଓ ଜାମ୍ବବାନ କି ହନୁମାନ, ରବି ଦାସ ବିଭୀଷଣ ଓ ଯମ, ଏମିତି ସବୁ । ଖୋକନ୍ ଓ ମୋ ଛଡ଼ା ଆଉ କେହି ପାର୍ଟ ମୁଖସ୍ଥ କରିବା ବିଷୟରେ ମୋର ଏବେ ସନ୍ଦେହ । ରିହର୍ସେଲ୍‌ର ନାମ ନାହିଁ । ଦିନେ ଠିକ୍ କରାହେଲା ଅମୁକଦିନ ଅଭିନୟ ହେବ । ମଞ୍ଚ ଅନ୍ନପୂର୍ଣ୍ଣା ଦିଦିଙ୍କ ପିଣ୍ଡା । ଦୃଶ୍ୟପଟ, ପୋଷାକପତ୍ର ଆଦିର ପ୍ରଶ୍ନ ହିଁ ଉଠି ନାହିଁ । ଦର୍ଶକ ବି ନଦାରଦ । ଚାରିଟାବେଳକୁ ସବୁ ଅଭିନେତାଙ୍କୁ ଏକାଠି କରିବାକୁ ଚେଷ୍ଟା କଲୁ । ମୂଷିର ଦେଖା ନାହିଁ । ରବି ଦାସ ଗୋଟାଏ ହକି ଷ୍ଟିକ୍ ଧରି ଆସି ସନ୍‌ସାଇନ୍ ପଡ଼ିଆ ପାଚିରୀ ଉପରେ ଦେଖାଦେଲା । ତାକୁ ଅଭିନୟ କଥା ମନେପକେଇବାରୁ ସେ ଅତି ବାସ୍ତବବାଦୀ ଭାବରେ କହିଲା - "ହାତ୍ ! ରିହର୍ସେଲ୍ ନାହିଁ, ଷ୍ଟେଜ୍ ନାହିଁ, ନାଟକ କେମିତି ହେବ ?" କହି ହକି ଖେଳି ଚାଲିଗଲା । ଆମେସବୁ ଅର୍ଥାତ୍ ଖୋକନ୍ ଓ ମୁଁ କିଛି ସମୟ ପାଇଁ ଦବିଗଲୁ । କିନ୍ତୁ ପୁଣି ଉତ୍ସାହ ଆସିଲା ଓ ଆମେ ଦୁହେଁ ହିଁ ତାହା ଭିତରୁ ସବୁଠୁ ମଜାର ଦୃଶ୍ୟ କେତେଟା ଗୋଟାକୁ ଗୋଟା ଅଭିନୟ କଲୁ । ତା' ପରେ ଏଇଟା ଆମର ଅନେକ ଦିନଯାଏ ନିୟମିତ ଖେଳ ହେଇଗଲା ।

କ୍ରମେ ଆମର କଳ୍ପନାଶକ୍ତି ସାଙ୍ଗରେ କାର୍ଯ୍ୟ-ଶକ୍ତି ବି ମିଶିଲା । ଗୋଟାଏ ସମୟରେ ବ୍ୟାଡ଼ମିଣ୍ଟନ୍ ଖେଳ ଆରମ୍ଭ ହେଲା । ଆମକୁ ର୍‌ୟାକେଟ୍ ତ କିଣି ଦିଆହେଲା, କିନ୍ତୁ ନେଟ୍ କିଣିବା ପାଇଁ ପଇସା ନିଅଣ୍ଟ । ସେଉଠୁ ଖଣ୍ଡେ ହାତେ ଓସାରର ପୁରୁଣା ଲୁଗା ଟାଙ୍ଗି କାମ ଚଳାଇବା ଚେଷ୍ଟା କଲୁ । ଶଟଲ୍‌କକ୍‌ଗୁଡ଼ାକ ଭାଙ୍ଗିଗଲେ ନୂଆ ପର ଯୋଡ଼ି ମରାମତି କରି ଆଉ କିଛିଦିନ ଚଳଉ । ଦିଆସିଲି ଖୋଳର ଟେଲିଫୋନ୍ ତ ସେତେବେଳେ ପିଲାଙ୍କର ସାଧାରଣ ଖେଳ । ମାତ୍ର 'ସଂଦେଶ' କି ମୌଚାକ' ରେ ତାହାର ଏକ ଉନ୍ନତ ସଂସ୍କରଣର ବର୍ଣ୍ଣନା ବାହାରିଲା । ସେଠୁ ଆମଘରୁ ଖୋକନ୍ ଘରଯାଏ ସୂତାର ଟେଲିଫୋନ୍ ଖଞ୍ଜା ହେଲା । ସେଥିରେ ପୁଣି କେତେ ପ୍ରାକୃତିକ ଦୁର୍ବିପାକ । ଦୁଇ ଘର ମଝିରେ କଟକ ବ୍ୟାଙ୍କର କୋଠା ତିଆରି ହେଉଥାଏ । ତା'ର ଭାରା ବାଉଁଶରେ କେତେବେଳେ ସୂତା ଛନ୍ଦି ହେଇଗଲା ତ କେତେବେଳେ ପବନରେ ଛିଣ୍ଡିଯାଏ । ମାତ୍ର ଅସୀମ ଧୈର୍ଯ୍ୟ ସହକାରେ ଲାଇନ୍‌କୁ ସଜାଡ଼ି ଚାଲୁ ରଖା ହେଉଥାଏ । ଦୁଇ ମୁଣ୍ଡରେ ଘୁଙ୍ଗୁର ଲାଗିଥାଏ । ସୂତାକୁ ଏ ମୁଣ୍ଡରୁ ଆଙ୍ଗୁଠିରେ ପିଡ଼ିଂ ପିଡ଼ିଂ କଲେ ସେ ମୁଣ୍ଡରେ ଘୁଙ୍ଗୁର ବାଜି ଧ୍ୟାନ ଆକର୍ଷଣ କରିବ । ତଥାପି ଫୋନ୍ କରିବା ପୂର୍ବରୁ 'ବେତାର' ରେ ପ୍ରଥମେ ଚିତ୍କାର କରି ଡାକିବାକୁ ହୁଏ ଓ ତା'ପରେ ଫୋନ୍‌ରେ କଥା ଚାଲେ ।

'ମେନ୍‌ସୁରେସନ୍' ଅଙ୍କ କି ଆଉ କେଉଁଠୁ କୋଣ ମାପିବା ଯନ୍ତ୍ର 'ଥିଓଡୋଲାଇଟ୍' କଥା ପଢ଼ି ବାଉଁଶ ନଳ ଓ କଂପାସ୍ ବାକ୍ସର କୋଣ ମାପିବା ପ୍ରୋଟ୍ରାକ୍ଟର ଜୋଡ଼ିଜାଡ଼ି ଗୋଟାଏ 'ଥିଓଡୋଲାଇଟ୍' ତିଆରି ହେଲା ଓ କୋଠାମାନଙ୍କର ଉଚ୍ଚତା, ବିଭିନ୍ନ ସ୍ଥାନର ଦୂରତ୍ୱ ଆଦି ମପାଗଲା । ଏଥିରେ ଶତକଡ଼ା କୋଡ଼ିଏ ପଚିଶ ଭାଗ ଭୁଲ୍ ହେଉଥିଲା । ତଥାପି ମାପ ତ

ହେଉଥିଲା । ଗୋଟାଏ କ୍ୟାମେରା ବି ତିଆରି ହେଲା - ଛବି ଉଠେଇବା ପାଇଁ ନୁହେଁ, ଦେଖିବା ପାଇଁ- ଗୋଟାଏ କାଠ ବାକ୍ସ ଆଗ ପାଖରେ ଗୋଟାଏ ଛୋଟ ଅତସୀ କାଚ ଓ ପଛପାଖରେ ତେଲବୋଳା କାଗଜ ଲଗେଇ ।

## ବାପାଙ୍କ ଅସୁସ୍ଥତା

ଏଇ ସମୟରେ ବାପା ଖୁବ୍ ଗୁରୁତର ବେମାର ପଡ଼ିଥିଲେ । ଟାଇଫଏଡ୍ ଭଳି ହେଇ ତାଙ୍କର ଅବସ୍ଥା ଖୁବ୍ ଖରାପ ହେଇଥିଲା । ଔଷଧ ନ ଖାଇବା ପାଇଁ ଜିଦ୍ ଧରିଥାନ୍ତି । ମାମୁଁମାନେ, ବଡ଼ ପି'ସା, ସମସ୍ତେ ଆସି ଜଗି ବସିଥା'ନ୍ତି । ନାନା ପ୍ରକାରର ଚିକିତ୍ସା ବା ଚିକିତ୍ସାର ଚେଷ୍ଟା ଚାଲିଥାଏ । ତା' ଭିତରେ ଜଣେ ବଙ୍ଗାଳୀ ହୋମିଓପାଥ୍ କୋଉଠୁ ଆସି ଜୁଟିଲେ । ତାଙ୍କର ନାମ ଭୂତନାଥ ବାବୁ । କଟକକୁ ନୂଆ ଆସିଥାନ୍ତି । ସେ ଆସି ଚିକିତ୍ସା ଆରମ୍ଭ କଲେ । ବାପା ତାଙ୍କ ଦେହରେ ଡାକ୍ତରଙ୍କୁ ହାତ ବି ଦେବାକୁ ଦେଉ ନ ଥା'ନ୍ତି । ଭୂତନାଥବାବୁ ଦିନେ ବର୍ଣ୍ଣନା କରୁଥାନ୍ତି - "ଆମି ଏମ୍ନି କରେ ନବବାବୁର ହାତେର୍ ନୀଚେ ଆମାର୍ ହାତଟା ଦିୟେ ନାଡ଼ି ଦେଖେ ନିଲାମ୍ ।" ଯାହାହେଉ ଦୃଶ୍ୟତଃ ତାଙ୍କରି ଚିକିତ୍ସାରେ ବାପା ଭଲ ହେଲେ । ତା'ପରେ ସେ ଭଦ୍ରଲୋକ କଟକରୁ ପୁଣି କୁଆଡ଼େ ଉଭେଇ ଗଲେ ଆଉ ଜଣାଗଲା ନାହିଁ ।

ଯାର ପରବର୍ଷ ବୋଧହୁଏ, ବାପାଙ୍କର ଦାଢ଼ିରେ ନିଆଁ ଲାଗିଗଲା । ଗୋଟାଏ ଷ୍ଟୋଭ୍ କଲିକତାରୁ ଆସିଥିଲା । ସେଇଟାକୁ ଜଳେଇବାରେ କ'ଣ ଟିକିଏ ଅସୁବିଧା ହେବାରୁ ବୋଉ ବାପାଙ୍କୁ ଡାକିଲା । ବାପା ବାହାରକୁ ଯିବା ପାଇଁ ଚାଦର ଘୋଡ଼ି ହେଇ ବ୍ୟାଗ୍ ପକେଇ ବାହାରିଥିଲେ । ଷ୍ଟୋଭ୍ ସଜାଡ଼ି ବସିଲେ । ଷ୍ଟୋଭ୍ ଉପରେ ମୁହଁ ଅଛି, ହଠାତ୍ କିରାସିନ ଗୁଡ଼ା ଜଳି ଉଠିଲା । ବାପାଙ୍କର ଦାଢ଼ି ଓ ମୁହଁ ଜଳିଗଲା । ଭଲ ହେବାକୁ ଅନେକ ଦିନ ଲାଗିଲା । ଏଇଟା ମତେ ଚିଡ଼େଇବା ପାଇଁ ମାମୁଁମାନଙ୍କୁ ଓ ମଉସାମାନଙ୍କୁ ଭଲ ମସଲା ଯୋଗାଇଲା ।

ଜଳଚିକିତ୍ସାଟା ବାପା ଟାଇଫଏଡ୍‌ରୁ ଉଠିବା ପରେ ଆରମ୍ଭ କରିଥିଲେ । ସେଥିରେ କେବଳ ଯେ ସକାଳ ସନ୍ଧ୍ୟା ପେଟଘଷା ହୁଏ ସେତିକି ନୁହେଁ, କାଶ ହେଲେ ବେକରେ ଓଦାକନା ଗୁଡ଼ାହୁଏ । ପେଟରେ ମାଟି ପଟି ଦିଆହୁଏ । ଏମିତି ଆହୁରି କେତେ । ମୋର ମଝିରେ ମଝିରେ କାଶ ସର୍ଦ୍ଦି ହୁଏ । ସେଥିପାଇଁ ରାତି ଦଶଟାରେ ଉଠେଇ ତଳପେଟରେ ଥଣ୍ଡା ମାଟିର ପଲସ୍ତରା ଦେଇ ତା ଉପରେ ପଟି ବନ୍ଧାହୁଏ । ଏଇଟାକୁ ମୁଁ କି ଭୀଷଣ ଅତ୍ୟାଚାର ରୂପେ ଅନୁଭବ କରୁଥିବି ଅନୁମାନ କରନ୍ତୁ । ଏ ଚିକିତ୍ସାର ଗିନିପିଗ୍ କେବଳ ଚୁନୀ ଓ ମୁଁ ନୁହେଁ । ଆମର ପିଇସୀ ପୁଅ ଭାଇ ରବି ଓ ଟୁନା ବି ଥିଲେ । ରବୀନ୍ଦ୍ରନାଥ ମହାନ୍ତି ଆଇ.ଏ.ଏସ୍ ହାକିମ ହେଲେ । ଟୁନା- ସ୍ୱର୍ଗତଃ ସୁରେନ୍ଦ୍ରନାଥ ମହାନ୍ତି ଆକାଶବାଣୀର କର୍ମୀ ଓ ସାହିତ୍ୟିକ । ଏ ଦୁହେଁ ଅନେକ ଦିନ ଯାଏ ବାପାଙ୍କ ଜିମା ଥିଲେ । ରବି ଶୋଇ ଶୋଇ ଗୀତ ଗାଏ- "ସୀତା ଠାକୁରାଣୀ ବୀର ଲକ୍ଷ୍ମଣ ।" ଟୁନାର ଜିଦ୍ ସେ ସବୁଠୁଁ ବଡ଼ ତାଟିଆଟାରେ ଖାଇବ, ଖାଦ୍ୟର ପରିମାଣ ଯେତେ କମ୍ ହେଉ ପଛେ ।

ଆମ ଘରେ ଚିକିତ୍ସା ବିଷୟରେ ନାନା ପ୍ରକାରର ବିଚିତ୍ର ପନ୍ଥା ବରାବର ଥିଲା । ଯା' ପୂର୍ବରୁ ଜଣେ ଥିଲେ ପଣ୍ଡିତ ନାରାୟଣ ଦାସ, ପେଟଚିପା ବୈଦ୍ୟ । ସୌମ୍ୟ ଦର୍ଶନ ବୃଦ୍ଧ, ବିଶୁଦ୍ଧ ଧଳା ଦାଢ଼ୀ ଓ ବାଳ, ଗୋଟାଏ ବଡ଼ ନାକ, ଉଜ୍ଜ୍ୱଳ ଆଖି, କିଂଚିତ୍ ଅନ୍ତଲା ପେଟ । ଘର ମାମୁଁ ଘର ଗାଁ କୁମୁଡ଼ା ଜୟପୁର ପାଖରେ କେଉଁଠି । ସେ ଏକତାଲାର ପଶ୍ଚିମ ମୁଣ୍ଡ ଗଳିଘରେ ରହୁଥା'ନ୍ତି । ଘରର କବାଟ କିଳି ଅନେକ ସମୟଯାଏ ହୋମ କରନ୍ତି । ନିଜେ ରାନ୍ଧନ୍ତି । ଖାଇବାବେଳେ ମଧ୍ୟ କବାଟ କିଳି ଏକୁଟିଆ ଖାଆନ୍ତି । ସେ ସଂସ୍କୃତରେ ପଣ୍ଡିତ ଥିଲେ । ତାଙ୍କର ଲେଖା ଖଣ୍ଡେ ସଂସ୍କୃତଶିକ୍ଷା ବହି ଆମ ଘରେ ଥିଲା । ସେଥିରୁ ମୁଁ ଶିଖିଥିଲି ଯେ ଦୋପାଗି ଉଖୁଡ଼ାର ସଂସ୍କୃତ "ଦ୍ୱିପାକଃ ଉତ୍‌ଖୁଟକଃ" । ତାଙ୍କର ଚିକିତ୍ସାର ମୁଖ୍ୟ ପଦ୍ଧତି ଥିଲା ପେଟ ଚିପିବା । ରୋଗୀକୁ ଚିତ୍‌କରି ଶୁଆଇ ତା'ର ତଳିପେଟ ଓ ପେଟକୁ ନାନାଭାବରେ ଅନେକ ସମୟଯାଏ ଚିପନ୍ତି । ଏହାଦ୍ୱାରା କ୍ଷୁଦ୍ର ଓ ବୃହତ୍ ଅନ୍ତମାନଙ୍କର କିଛି ଉପକାର ହେଉଥିବ । ତେବେ ସେ ପୁରୁଣା ରୋଗ ଭଲ କରିପାରୁଥିଲେ । ସେ ନିଜେ ନାନା ପ୍ରକାରର ମୋଦକ ତିଆରି କରନ୍ତି ଓ ରୋଗୀକୁ ଦିଅନ୍ତି । ତାଙ୍କ ମୋଦକ ମଗଜଲଡୁ ଭଳି ସୁସ୍ୱାଦୁ । ସେ ବିଚିତ୍ର ପ୍ରକାରର ପଥ୍ୟର ନିର୍ଦ୍ଦେଶ ଦିଅନ୍ତି । ମୋ ପାଇଁ ବରାଦ ଥିଲା । ବିରି ବରା । ମୋର ତିନି ଚାରି ବର୍ଷ ବୟସରେ ସାରା କପାଳରେ ବିଗଁଚି ପରି ମାଡ଼ି ଯାଇଥିଲା । ତାଙ୍କରି ଚିକିତ୍ସାରେ ଭଲ ହୋଇଥିଲା ।

## ଛବି ଅଙ୍କା ଓ ମିସେସ୍ ଦାସ

ମୋର ପିଲାଦିନୁଁ ଛବି ଆଙ୍କିବା ସଉକ ଥିଲା । ଏଥିରେ ମା'ର ଅବଦାନ ନିଶ୍ଚୟ ଥିବ । ସେ ଖୁବ୍ ଭଲ ଚିତା ପକେଇ ପାରୁଥିଲା । ଛବି ବିଷୟରେ ବି ତା'ର ଗୋଟାଏ ଧାରଣା ଥିଲା । ମତେ କୋଳରେ ଧରି ବସିଥିବ, ଗଡ଼ି ଯାଇଥିବା ପାଣିରେ ଆଙ୍ଗୁଠି ଦେଇ ଫୁଲ, ହରିଣ, ମଣିଷ, କେତେ କ'ଣ ରୂପ ଆଙ୍କେ । ମୁଁ ବି ଖଡ଼ିରେ ଓ ତା'ପରେ କାଗଜ ପେନ୍‌ସିଲ୍‌ରେ ଆଙ୍କିବା ଆରମ୍ଭ କଲି । ରଙ୍ଗ ପେନ୍‌ସିଲ୍ ବି କୋଉଠୁ ମିଳିଥିଲା । ମୋର ଯେଉଁ ଛବିକୁ ପ୍ରଥମ କରି ଅନ୍ୟମାନେ ତାରିଫ୍ କରିବାର ମନେ ପଡୁଛି ସେ ଥିଲା ଗୋଟାଏ କୁକୁରର । ତା ତଳେ ଚିତ୍ର ପରିଚୟ ଲେଖିଥିଲି 'କୁ୨ର' । ସେ ଛବି ଦେଖି ମୂଷୁମାମୁଁ ତାରିଫ୍ କରିଥିଲେ ଓ ବୁଝାଇଥିଲେ ଯେ କୁକୁର ସେମିତି ଲେଖା ହୁଏ ନାହିଁ ।

ସେଇ ୧୯୨୨-୨୩ ବେଳକୁ ସାରଙ୍ଗଧର ଦାସ ଆମେରିକାରୁ ଫେରିଲେ । ତାଙ୍କ ସାଙ୍ଗରେ ଆସିଲେ ତାଙ୍କର ସ୍ତ୍ରୀ ଶ୍ରୀମତୀ ଫ୍ରିଡ଼ା ହାଉସ୍‌ୱିରଟ୍ ଦାସ । ଫ୍ରିଡ଼ା ଜର୍ମାନ୍‌ସ୍ୱିସ୍ ମହିଳା, ମାତ୍ର ଆମେରିକାର ନାଗରିକ । ସେ ଜଣେ ଦକ୍ଷ ଚିତ୍ରକର ଓ ଭାସ୍କର ଥିଲେ । ପରେ ପ୍ୟାରିସ୍ ଓ ଅନ୍ୟତ୍ର ତାଙ୍କର ଚିତ୍ରର ପ୍ରଦର୍ଶନୀ ହେଇଥିଲା । ଦାଦା, ମୂଷୁମାମୁଁ ପ୍ରଭୃତିଙ୍କ ସାଙ୍ଗରେ ତାଙ୍କର ଖୁବ୍ ବନ୍ଧୁତା ଥିଲା । ବରାବର ଆମ ଘରକୁ ଯିବା ଆସିବା କରୁଥିଲେ । ମୋର ମନେ ପଡୁଛି,

ମୋର ଅଙ୍କା ଦୁର୍ଗାଙ୍କର ଗୋଟାଏ ଛବି ଦାଦା ତାଙ୍କୁ ଦେଖାଇଲା । ସେ ତାରିଫ୍ କଲେ ଓ ଛବି ଅଙ୍କାରେ ମତେ ଉତ୍ସାହିତ କଲେ । ଦାଦା କେତେଥର ମତେ ସକାଳୁ ସାଇକେଲରେ ବସେଇ ତାଙ୍କ ଘରକୁ ନେଇଯାଏ । କ୍ୟାଟନ୍‌ମେଣ୍ଟ ରୋଡ୍‌ରେ ଗୋଟାଏ ବଙ୍ଗଳାରେ ସେମାନେ ଥା'ନ୍ତି । ଦାଦା ବସି ତାଙ୍କ ସାଙ୍ଗରେ ଗପ କରେ । ଥରେ ଫ୍ରିଡ଼ା ମତେ ପୁଳାଏ ପ୍ଲାଷ୍ଟିସିନ୍ ଧରେଇ ଦେଲେ । ମୁଁ ସେଥିରେ ନାନା ଜନ୍ତୁଜନ୍ତାଙ୍କର ମୂର୍ତ୍ତି ତିଆରି କଲି । ପରଦିନ ଯିବାବେଳକୁ ସେ ସେଗୁଡ଼ିକ ସବୁ ବେଶ୍ ବାଗେଇ ବୁଗେଇ ବଢ଼ିଆ କରି ରଖି ଦେଇଛନ୍ତି । ଦେଖିଲି, ଏଥିପାଇଁ ତାଙ୍କର ସବୁ ନାନା ପ୍ରକାର ସାନ ସାନ ହାତ ହତିଆର ଅଛି ।

ଘରର ଆସବାବ ଓ ସାଜସଜାରେ ଯେଉଁ ପାଶ୍ଚାତ୍ୟ ଢଙ୍ଗର ଅନୁକରଣ ସେତେବେଳେ ଆରମ୍ଭ ହୋଇଥାଏ, ସେ ତା'ର ଘୋର ବିରୋଧୀ ଥିଲେ । ଭାରତୀୟ କଳା ବିଷୟରେ ତାଙ୍କର ବହୁତ ଅଧ୍ୟୟନ ଥିଲା ଓ ସେ ତାର ପ୍ରଶଂସକ ଥିଲେ । ଆସବାବ ଓ ସାଜସଜାରେ ସେ ସୁରୁଚିପୂର୍ଣ୍ଣ ଭାରତୀୟ ଶୈଳୀର ପ୍ରବର୍ତ୍ତନର ଉଦ୍ୟମ କରୁଥିଲେ । ଦାଦା ଦିନେ ଆସି ଖବର ଦେଲା ଯେ ସେ ପରିଛା ସାହେବଙ୍କ ଘରର ସୋଫାସେଟ୍‌ର ଗୋଡ଼ସବୁ କରତ ଧରି କାଟି ଛୋଟ କରି ସେସବୁକୁ ଭାରତୀୟ ରୂପ ଦେଲେ । ସେ ଭାରତରେ ନିଜର ଅନୁଭୂତି ଉପରେ 'ମ୍ୟାରେଜ୍ ଟୁ ଇଣ୍ଡିଆ' ବୋଲି ଖଣ୍ଡେ ବହି ଲେଖିଥିଲେ । ୧୯୩୦ ଲବଣ ସତ୍ୟାଗ୍ରହରେ ଓଡ଼ିଶାର ମହିଳାମାନଙ୍କର ଅବଦାନ ଉପରେ 'ଇନ୍‌ଟୁ ଦି ସନ୍' (Into the Sun) ବୋଲି ଏକ ଚମତ୍କାର ଉପନ୍ୟାସ ଓ 'ଲିପ୍‌ହୋମ୍ ଏଡ୍ ଜେଣ୍ଟାଲବ୍ରନ୍' ବୋଲି ହନୁମାଙ୍କଡ଼ଙ୍କ ବିଷୟରେ ଏକ ଗପବହି ବି ଲେଖିଛନ୍ତି । ସେ ଶେଷଥର ପାଇଁ ଓଡ଼ିଶାକୁ ୧୯୬୦ କି ୬୨ ରେ ଆସିଥିଲେ ।

ବାପା ବି ବେଶ୍ ଭଲ ଛବି ଆଙ୍କି ପାରୁଥିଲେ । ସେ ମୋ ପାଇଁ କଲିକତାରୁ ଗୋଟାଏ ବଡ଼ ରଙ୍ଗ ବାକ୍ସ ମଗେଇ ଦେଲେ । ଗୁଡାଏ ସାଦା କାର୍ଡ଼ ବି କୋଉଠୁ ଆଣି ଦେଲେ । ମୋର ମନେ ପଡ଼େ ଯେ ସେ ବର୍ଷ ଖୁବ୍ ଝଡ଼ିବର୍ଷା ପାଗ ହୋଇଥାଏ । ଦିନଯାକ କୁଆଡ଼େ ପଦାକୁ ବାହାରିବାକୁ ନାହିଁ । ଉପର ମହଲା ମଝିଘରେ ତଳେ ବଡ଼କରି ବିଛା ହୋଇଥିବା ବିଛଣା ଉପରେ ବାପାଙ୍କ ସାଙ୍ଗରେ ବସି ଛବିଅଙ୍କାରେ ଲାଗି ଥାଏ । ୧୯୨୬ ରେ ମୁଁ ଗୋଟାଏ କ୍ୟାମେରା କିଣିଲି । ତାପରେ ମୋର ଫଟୋଉଠା ସଉକ୍ ଚାଲିଲା । ଛବି ଅଙ୍କା ଗୌଣ ହେଇଗଲା ।

## ପାଠାଗାର ପ୍ରଚେଷ୍ଟା

ଦାଦା, ଟୁଙ୍ଗୁମାମୁଁ, ମୁକ୍ଷୁମାମୁଁ ଓ ଆଉସବୁ କିଏ ମିଶି ୧୯୨୦-୨୧ ରେ ଭାରତୀ ମନ୍ଦିର ନାଁରେ ଗୋଟାଏ ଲାଇବ୍ରେରୀ ଆରମ୍ଭ କରିଥିଲେ । ଗୌଡ଼ସାହି ରାସ୍ତା ବାଖରାବାଦ ରାସ୍ତା ଯେଉଁଠି ମିଶିଛି, ତା'ରି ସାମନାରେ ଗୋଟାଏ ଘରେ ଏ ପାଠାଗାର ଥାଏ । ବାପା କଲିକତାରେ ଏମ୍.ଏ. ପଢ଼ିବା ବେଳେ ଗୋଟାଏ କ'ଣ ପୁରସ୍କାର ପାଇଥିଲେ ହଜାର ଟଙ୍କାର ।

ସେଥିରେ ସେ ସେତେବେଳେର ଇଂରେଜୀ ସାହିତ୍ୟର ଭଲ ଭଲ ବହି ସବୁ, ସେକ୍ସପିଅର, ଡିକେନ୍ସ, ଥ୍ୟାକରେ, ର୍‌ୟାଲେ ପ୍ରଭୃତିଙ୍କ ଗ୍ରନ୍ଥାବଳୀ ସହିତ, କିଣିଥିଲେ । ଜେଜେଙ୍କଠ ଏନ୍‌ସାଇକ୍ଳୋପିଡ଼ିଆ ବ୍ରିଟାନିକାର ଦଶମ ସଂସ୍କରଣ ଓ ଅନ୍ୟକେତେ ବହିଥାଏ । ଏଇସବୁ ହେଇଥିଲା ଏ ପାଠଗାରର ମୂଳପିଣ୍ଡ । ପୁଣି ଏ ପାଠାଗାର ହିଁ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନରେ ମୂଳ ଉତ୍ସ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୨୪ ରେ ଏ ପାଠାଗାର ଉଠିଗଲା । ବହିସବୁ ଆଲମାରୀ ସହିତେ ଘରକୁ ଫେରି ଆସିଲା । ୧୯୨୪-୨୫ ବେଳକୁ ଆମେସବୁ ପିଲାମାନେ ପୁଣି ଏକ ପାଠାଗାର ଆରମ୍ଭ କଲୁ । ତା'ର ନାଁ ଦେଲୁ 'ବାଣୀ ମନ୍ଦିର' । ସଦସ୍ୟ ଚାନ୍ଦା ମାସକୁ ତିନି ଅଣା ରଖା ହେଇଥାଏ । ବାର ଚଉଦ ଜଣ ସଦସ୍ୟ ଜୁଟିଥିଲେ । ଚାନ୍ଦା ନିୟମିତ ଆଦାୟ ହେଇ ମୋ ପାଖରେ ରହେ । ପଇସା କିଛି ଜମିଲେ ବହି କିଣାଯାଏ । ପିଲାଙ୍କର ବଙ୍ଗଳା ଗପ ଓ ଉପନ୍ୟାସ ବେଶି କିଣା ହେଇଥିଲା । ସେତେବେଳେ ଗୋଟାଏ ତିନି ଅଣିଆ ଜୀବନୀମାଳା ବଙ୍ଗଳାରେ ବାହାରୁଥାଏ । ତାକୁ ବି କିଣୁ ଥାଉ । ଏସବୁ ଜୀବନୀ ଭିତରେ ମୋର ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ଜୀବନୀଟା ବେଶି ମନେରହିଛି । ପଢ଼ିଲି ଯେ ପିଲାଦିନେ ସେ ତଳେ କାନ ପାରି ପିମ୍ପୁଡ଼ିଙ୍କ କଥା ଶୁଣିବାକୁ ଚେଷ୍ଟା କରୁଥିଲେ । ମୁଁ ବି ସେମିତି ଚେଷ୍ଟା କଲି । ତାଙ୍କର ଅନ୍ଧ ଜେଜେ ଖାଇବାବେଳେ ବିଲେଇ ଅଡ଼େଇବା ପାଇଁ ବାଳକ ଶିବନାଥଙ୍କୁ ତାଙ୍କର ବୋଉ ବସେଇ ଦେଇଥାନ୍ତି । ଦିନେ ଦେଖିବା ବେଳକୁ ଶିବନାଥ ନିଜେ ବିଲେଇ ପରି ଥାଳିରୁ ଗେଫା ମାରିବାରେ ଲାଗିଛନ୍ତି । ଏ ଗୁଣଟାର ଅନୁକରଣ କରିବାର ସୁବିଧା ମୁଁ ପାଇ ନାହିଁ । ଆଉ ଭଲ ଲାଗିଥିଲା ବିଦ୍ୟାସାଗର, ମ୍ୟାଟ୍‌ସିନୀ, ଗ୍ୟାରିବାଲ୍‌ଡ଼ିଙ୍କ ଜୀବନୀ । କର୍ଣ୍ଣେଲ୍ ସୁରେଶ୍ ବିଶ୍ୱାସ ବୋଲି ଜଣେ କରିତ୍‌କର୍ମାଙ୍କର ଜୀବନୀ ବି ମନେପଡୁଛି । ସେ ଘରୁ ପଳେଇଯାଇ ଦକ୍ଷିଣ ଆମେରିକାରେ କେଉଁ ଦେଶରେ ଏକ ସାମରିକ ଅଫିସର ହେଇଥିଲେ । ବଡ଼ମା' ବୋଉ ହେରିକା ସବୁ ସାଧୁସନ୍ଥଙ୍କ ଜୀବନୀ ପଢ଼ନ୍ତି । ରାମକୃଷ୍ଣ କଥାମୃତ ଆଦି । ବୋଉଠୁଁ ରାମକୃଷ୍ଣ, ତୈଲଙ୍ଗସ୍ୱାମୀ ଆଦିଙ୍କ କଥା ଶୁଣୁ ।

ଲାଇବ୍ରେରୀ ପାଇଁ ରବର ଷ୍ଟାମ୍ପ ମୁଁ ମଟର ଟାୟାରକୁ ଛୁରୀରେ କାଟି କାଟି ତିଆରି କରିଥିଲି । ପ୍ରଥମେ ଗୋଟାଏ ବଡ଼ ବଙ୍କାବଙ୍କା ଧେବଡ଼ା, ତା'ପରେ ସାନ ଓ ଅପେକ୍ଷାକୃତ ସୁଦୃଶ୍ୟ । ପୁରୁଣା ବହିଯାକ ବାଣୀ ମନ୍ଦିର ଛାପା ମାରି ପାଠାଗାରଭୁକ୍ତ କରିଦିଆଗଲା । ରାଗିଗଲେ ମୁଁ ପୂର୍ବେ ବହିପତ୍ର ଚିରି ଦେଉଥିଲି । ଥରେ ମୋ ହାତ ପାହାନ୍ତାରେ ଯେତେ ବହି ପଡ଼ିଲା ସେ ସବୁରେ ଥିବା ଛବିଯାକ ତିନି ଫାଳ କରି ଚିରି ରଖି ଦେଇଥିଲି । ଏବେ ସେଗୁଡ଼ାସବୁ ମରାମତି କରିବା ପାଳି ପଡ଼ିଲା । ବିଶ୍ୱଦାଙ୍କଠାରୁ ଜୁଜ୍ ସିଲେଇ ଶିଖିଥିଲି । ଏବେ ପୁରୁଣା ଛିଣ୍ଡା ବହିସବୁ ମରାମତି କରିବା ଚେଷ୍ଟାରେ ସେ ସବୁଥିରେ ନୂଆ ପ୍ରକାରର ଜୁଜ୍ ସିଲେଇ ସବୁ ଦେଖିଲି । ସେହି ଅନୁସାରେ ସେସବୁ ବହିକୁ ପୁଣି ସିଲେଇ କରି ମରାମତି କରିଦେଲି । ଏଇଠୁ ମୋର ବହି ବନ୍ଧେଇରେ ବେଶ୍ କିଛି ଜ୍ଞାନ ହେଇଗଲା ।

ଏ ପାଠାଗାର ଆମେସବୁ ଅଳକାଶ୍ରମ ଯିବାଯାଏ ଚାଲିଥିଲା । ଏଥିରୁ ଗୋଟିଏ ତିକ୍ତ ଅଭିଜ୍ଞତା ହେଲା ଯେ କେତେକ ବୟସ୍କ କଲେଜ ଛାତ୍ର ପାଠାଗାରର ସଦସ୍ୟ ହୋଇ ବାପାଙ୍କର ମୂଲ୍ୟବାନ୍ ଗଣିତ ବହି, ସେକସ୍‌ପିୟରଙ୍କର ରଚନାବଳୀ ଆଦି ନେଇଯାଇ ଆଉ ଫେରେଇଲେ ନାହିଁ । କିନ୍ତୁ ଆମର ସାଙ୍ଗ ପିଲାମାନେ କେହି ଏପରି କେବେ କରିନାହାନ୍ତି ।

ଏହି ସମୟର ଅଳ୍ପ ପୂର୍ବର ଗୋଟାଏ ଘଟଣା । ବାପା, ବୋଉ, ଦାଦା, ମା' ସମସ୍ତଙ୍କୁ ଆମେ ତୁ କହୁଥାଉ । ମାମୁଁ ଘରେ ଦେଖେ ଯେ ମାମୁଁମାନେ ଭେଇମାନଙ୍କୁ ରୀତିମତ ଆପଣ କହନ୍ତି । ତଳେ ମୁଣ୍ଡିଆ ମାରି ଦଣ୍ଡବତ ହୁଅନ୍ତି । ଆହୁରି କାହା କାହା ଘରେ ମଧ୍ୟ ବାପାମାନଙ୍କୁ ଆପଣ କହିବାର ଦେଖୁଁ । କିନ୍ତୁ ଆମ ଘରେ ଚଳଣୀଟା ଥିଲା ସାମ୍ୟବାଦୀ । ଘରେ ତ ବାପା, ବୋଉ ହେରିକାଙ୍କୁ ଓଳିକି ହେବାର ପ୍ରଶ୍ନ ହିଁ ଉଠୁ ନଥିଲା, ବାହାରେ ବି ମୁଁ କେବଳ ବାହାର ଭଦ୍ରଲୋକଙ୍କ ଛଡ଼ା ସୁପରିଚିତ ଲୋକ ଓ ଗୁରୁଜନମାନଙ୍କୁ ନମସ୍କାର ହେଉ ନ ଥିଲି । ଭେଜେ, ପିଉସା, ମଉସା, ମାମୁଁ, ବଡ଼ମାନଙ୍କୁ ତ ଆଦୌ ନୁହେଁ । ଏଇଟା ମୋର ଗୋଟାଏ ଜିଦି ଥିଲା । ବାପାଙ୍କର କ୍ରୋଧକୁ ଟିକିଏ ଭୟ ଥିଲେ ବି ତାଙ୍କ ସହିତ ସଂପର୍କଟା ମୋଟାମୋଟି ସଖ୍ୟମୂଳକ ଥିଲା । ବରଂ ବୋଧହୁଏ ସେ ମୋ କ୍ରୋଧଟାକୁ ଢେର ବେଶୀ ଭୟ କରୁଥିଲେ । ପିଲାଦିନେ ତାଙ୍କ ସାଙ୍ଗରେ ମିଶି ଛବି ଆଙ୍କିବା, ମେକାନୋ ନେଇ ଖେଳିବା, କାଗଜ କାଟିବା, ସାବୁନ୍ ଫେଣରେ ବୁଦ୍‌ବୁଦ୍ ଉଡ଼େଇବା ଏଇସବୁ କଥା ହିଁ ବେଶୀ ମନେ ପଡୁଛି, ଶୃଙ୍ଖଳା ରକ୍ଷାକାରୀ ଶାସନକର୍ତ୍ତା ଭାବରେ ଆଦୌ ନୁହେଁ । ଶୃଙ୍ଖଳା ରକ୍ଷା ବିଷୟରେ ଅବଶ୍ୟ ସେ ଦୃଷ୍ଟି ରଖୁଥିଲେ, ମାତ୍ର ଜୋରଜବରଦସ୍ତି ବା ଗାଳିମନ୍ଦର ପ୍ରଶ୍ନ ଆଦୌ ନ ଥିଲା ।

ତେବେ ବାପାଙ୍କ କ୍ରୋଧର ଭୟରେ ସତ୍ୟ ଗୋପନ କରିବାର ଦୁଇଟି ଘଟଣା ମନେ ପଡୁଛି । ଆମ ଘରେ ବୋଉର ଗୋଟାଏ ବେହେଲା ଥିଲା । ସେଟା ତାର ବାକ୍ସରେ ଚାବି ପଡ଼ି ରହିଥାଏ । ଥରେ ଧଡ଼ିଆ ଦାଦା ଓ ମୁଁ ମସୁଧା କଲୁ ଯେ, ସେ ବାକ୍ସଟାକୁ ଖୋଲିବା । ଧଡ଼ିଆ ଦାଦା ତା'ର ଆଲତ୍ରାପକୁ ଭାଙ୍ଗି ବାକ୍ସକୁ ଖୋଲିଲେ ଓ ଆମର ବେହେଲା ଦେଖିବାର କୌତୂହଳ ପୂର୍ଣ୍ଣ ହେଲା । ବାପା ଆସି ବାକ୍ସ ଅବସ୍ଥା ଦେଖି ଖୁବ୍ ରାଗିଲେ । ଧଡ଼ିଆ ଦାଦା ଏ କୀର୍ତ୍ତି କରିଛନ୍ତି ବୋଲି ଧରା ପଡ଼ିଲେ । ମାତ୍ର ତାଙ୍କ ସହିତ ମୋର ଯୋଗଦେବାଟା ଉହ୍ୟ ରହିଗଲା । ସେ ବିଷୟରେ ମୁଁ ଉଚ୍ଚବାଚ୍ୟ କଲି ନାହିଁ । ଆଉ ଥରେ ଡିଷ୍ଟ୍ରିକ୍ଟ ବୋର୍ଡ଼ର ଚପରାସୀ ଫଗୁଆ ସାଇକେଲ୍ ସଫା କରୁଥିଲା । ମୁଁ ତାକୁ ପରାମର୍ଶ ଦେଲି ଯେ ଚେନ୍‌କୁ କିରାସିନରେ ଧୋଇଲେ ବେଶି ସଫା ହେବ । ସେ ପ୍ରଚୁର କିରାସିନି ଢାଳିଲା ଓ ସେଥିରେ ଟାୟାର ବି ଭିଜିଗଲା । ବାପା ଦେଖି ଖୁବ୍ ରାଗିଲେ, କିରାସିନି ଲାଗି ଟାୟାର୍ ନଷ୍ଟ ହେବ ବୋଲି । ଫଗୁଆ ପ୍ରଚୁର ଗାଳି ଖାଇଲା । ମୁଁ କିନ୍ତୁ ପରାମର୍ଶଦାତାର ଭୂମିକା ସ୍ୱୀକାର କରିବାର ସାହସ ନ କରି ଚୁପ୍ ରହିବା ଶ୍ରେୟସ୍କର ମନେ କଲି ।

ଯାହାହେଉ, ଦିନେ ବାପା ଓ ମୁଁ ବସି ଗୋଟାଏ କ'ଣ ତିଆରି କରୁଥିଲୁ । ସେଥିରେ କ'ଣ ଗୋଟାଏ ଅସଜ ହେଇଗଲା । ମୁଁ ରାଗିକରି କହିଲି - "ତୁଇ ତ ଭାଙ୍ଗି ଦେଲୁ ।" ସେଠି ବୋଧହୁଏ ଜୟୀ ଥିଲା । ତା'ପରେ ଆମେସବୁ ଯାଇ ପଡ଼ିଆରେ ଖେଳିବା ବେଳେ ଜୟୀ ଅନ୍ୟ ପିଲାମାନଙ୍କୁ କହିଲା, "ଦେଖିଲଣି, ଯେ ତା ବାପାକୁ ତୁ କହୁଛି ।" ମୋ ମନରେ ଗୋଟାଏ ସଂକୋଚ ପଶିଗଲା । ସେଠୁ ଫେରି ଅନେକ ଚେଷ୍ଟା କରି ବାପାଙ୍କୁ ତେମେ କହିବା ଆରମ୍ଭ କଲି । ସେ ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହେଲେ । କିଏ ଶିଖେଇଲା ବୋଲି ପଚାରିଲେ ଓ ନିରସ୍ତ କରିବା ଚେଷ୍ଟା କଲେ; କିନ୍ତୁ ସେବଠୁଁ ତୁ ବଦଳରେ ତେମେ ଚାଲିଲା । ଦାଦା, ବୋଉ ଏମାନଙ୍କୁ ସବୁ ତୁ' ବରାବର ଚାଲିଛି । ଖୁଡ଼ୀ ଆସିବାରୁ ସେ ତେମେରେ ଅଟକି ରହିଗଲେ । ସେ କେତେଥର ଆମକୁ 'ତୁ' କହିବାକୁ ପ୍ରବର୍ତ୍ତାଇ ଥିଲେ । କିନ୍ତୁ ସେଟା ଚଳି ପାରିଲା ନାହିଁ ।

ଗୋରାଦାଦାଙ୍କର ବାହାଘର ବେଳେ ବୋଉ ଓ ମୁଁ ବେଷ୍ଟକାର ଯାଇଥିଲୁ । ସେଠି ଦିନେ ଦିନ ରତରତ ବେଳକୁ ସେଠାର ମନ୍ଦିର ଅଗଣାରେ ରାଧାରଞ୍ଜନ ପି'ସା ହେଗିକା ଅନେକେ ବସିଥାନ୍ତି । ମୁଁ ଆଉ ଅନ୍ୟ ସବୁ କିଏ ପିଲା ବି ଥାଉ । ମନ୍ଦିରରେ ସନ୍ଧ୍ୟା ଆରତି ଘଣ୍ଟା ବାଜିଲା । ରାଧାରଞ୍ଜନ ପି'ସା ମତେ କହିଲେ - "ଆରତି ବେଳେ ଦିଅଁକୁ ଦଣ୍ଡବତ ହେଉ ନାହୁଁ କାହିଁକି ?"

ତା' ପରେ ନାଁ ପଚାରିଲେ । ମୁଁ କହିଲି ।

ସେ ମନ୍ତବ୍ୟ କଲେ - "ମାଳି ପିନ୍ଧିନାହୁଁ କାହିଁକି ? କରଣ ସାମନ୍ତ ମାଳି ପିନ୍ଧିବା ଚାହିଁ । ଦିଅଁକୁ, ଗୁରୁଜନମାନଙ୍କୁ ଦଣ୍ଡବତ ହେବା ଚାହିଁ ।"

ଏକଥା ଜାଣିଲେ ହୁଏତ ସେ ଚିନ୍ତିତ ହୋଇଥାନ୍ତେ ଯେ ତାଙ୍କର ଏ ଉପଦେଶଗୁଡ଼ିକ ମୋ ମନରେ ଓଲଟା ପ୍ରତିକ୍ରିୟା ହିଁ ସୃଷ୍ଟି କଲା ।

## ଆତ୍ମୀୟସ୍ୱଜନ

ରାଧାରଞ୍ଜନ ପି'ସାଙ୍କ କଥାରୁ ମନେପଡୁଛି ହରିଅଜା ଆମ ଘରେ ବରାବର ଯାଉଣୁ ଆସୁଣୁ ଆସି ରହନ୍ତି । ସେ ମା'ର ସାନଭାଇ । ତାକୁ ପଦ୍ମାଁଅପା ବୋଲି ଡାକନ୍ତି । ସେତେବେଳେ ଡେପୁଟୀ ଥିଲେ । ସକାଳୁ ଗାଧୋଇ କୋଥଳି ପ୍ରଭୃତି ମେଲି ପୂଜାପାଠରେ ବସନ୍ତି । ତାପରେ ସେଇଠି ବସି ବିସ୍‌କୁଟ୍ ଯୋଗେ ଦୁଧ କି ଚାହା କ'ଣ ପିଅନ୍ତି । ସେତେବେଳେ ମୋର ନିର୍ଦ୍ଦିଷ୍ଟ ବରାଦ ଥାଏ ଟାଟିଆଏ ଦୁଧ ଓ ଦୁଇଖଣ୍ଡ ଥିନ୍ ଆରାରୁଟ୍ ବିସ୍କୁଟ୍ । ବୋଧହୁଏ ଏଇ ବିସ୍‌କୁଟ୍ ଦୁଇଖଣ୍ଡ ତାଙ୍କ ସହିତ ମୋତେ ପ୍ରେମ ଡୋରରେ ବାନ୍ଧି ରଖିଥାଏ । ସେ ବନ୍ଦୋବସ୍ତ ହାକିମ ଥିଲେ ଓ "ବନ୍ଦୋବସ୍ତ ଅମୀନ" ବୋଲି ଖଣ୍ଡେ ଛୋଟ ଉପନ୍ୟାସ ଲେଖିଥିଲେ । ସେଥିରୁ ଟାଡାଏ ଖଣ୍ଡେ ଆମ ଘରେ ପଡ଼ିଥିଲା ଅନେକ ଦିନଯାଏ ।

ହରିଅଜାଙ୍କର ବଡ଼ପୁଅ ଟିକାଦାଦା- ଶ୍ରୀକୃଷ୍ଣ ମହାନ୍ତି – ଏକ ବୈଚିତ୍ର୍ୟମୟ ଓ ଆକର୍ଷକ ବ୍ୟକ୍ତିତ୍ୱ ଥିଲେ । ମୋତେ ସେ ଖୁବ୍ ଭଲ ପାଉଥିଲେ ଓ ତାଙ୍କ ସାଙ୍ଗରେ ମୋର ଭଲ ବନୁଥିଲା । ତ୍ରିପଣ୍ଡ କଂଗୋମାର୍କା କଳାରଙ୍ଗ, କୁଞ୍ଚୁକୁଞ୍ଚିଆ ବାଳ, ମୋଟା ଓଠ, ଆଖି ଦୁଇଟା ସବୁବେଳେ ହସରେ ଚକ୍‌ଚକ୍ । ସେ ଜଣେ ବୁଦ୍ଧିଜୀବୀ ଥିଲେ । ବହୁ ବହୁ ବିଷୟରେ ତାଙ୍କର ରୁଚି ଥିଲା । ସେ ଆସିଲେ ନାନା ବିଚିତ୍ର ବିଷୟରେ ଆଲୋଚନା କରନ୍ତି । ଆମ ସୀମିତ ଜଗତର ବାହାରେ ଥିବା ରହସ୍ୟମୟ ସୃଷ୍ଟି ଆଡ଼କୁ ଗୋଟାଏ ଗୋଟାଏ ଝରକା ଖୋଲି ଦିଅନ୍ତି । ସେ ବହୁପ୍ରକାରର ତଥ୍ୟର ଗନ୍ତାଘର ଥିଲେ । ଆମର ମନର ଦିଗ୍‌ବଳୟକୁ ସୁଦୂର ପ୍ରସାରୀ କରିବାରେ ତାଙ୍କର ବହୁତ ଅବଦାନ ରହିଛି । ସେ ଥରେ ଆସି କହିଲେ- "ଯେ ଇଂରେଜୀ ଓ ଜର୍ମାନ୍ ଜାଣିଥିବ, ତାକୁ ଓଲନ୍ଦାଜ ଭାଷା ବୁଝିବାକୁ କଷ୍ଟ ହେବ ନାହିଁ । ଓଲନ୍ଦାଜଟା ଇଂରେଜୀ ଓ ଜର୍ମାନ୍‌ର ମଝିଆମଝି ଭାଷା ।" ଭାଷା କିପରି ଦେଶକୁ ଦେଶ ବଦଳେ ଅଥଚ ଏକା ବି ଥାଏ, ସେ କଥା ସେ ବୁଝାଇଲେ । ମୋର ଭାଷା ଶିଖିବାର ସୌକଟା ଏଇଥିରୁ ପ୍ରେରଣା ପାଇଥିବା ଆଶ୍ଚର୍ଯ୍ୟ ନୁହେଁ ।

ଗୋରାଦାଦାଙ୍କ ବାହାଘରକୁ ତାଙ୍କ ଗାଁ ବେଣ୍ଟକାରକୁ ବୋଉ ସୁଆରୀରେ ଗଲା । ଟିକାଦାଦା ମତେ ସାଇକେଲରେ ବସେଇ ନେଲେ । ବାଟଯାକ କେତେ ଗପ । କାଠଯୋଡ଼ି ରେଲ୍ ପୋଲ ସେପାଖରେ କେତେଟା ବଡ଼ ବଡ଼ ପକ୍‌କା ଚଉତରା ଅଛି । ପୂର୍ବେ କୁଆଡ଼େ ପୁରୀକୁ ଚାଲିକରି ଯାଉଥିବା ଯାତ୍ରୀଙ୍କ ଭିତରେ ହଇଜା ଲାଗିଲେ ରୋଗୀଙ୍କୁ ମେହେନ୍ତରମାନେ ଉଠେଇ ଆଣି ଏକ ଚଉତରା ଉପରେ ମଝିକୁ ମୁଣ୍ଡ କରି ଶୁଆଇ ଦିଅନ୍ତି । ଚଉତରାଗୁଡାକ ଧାର ଆଡ଼କୁ ଗଡାଣିଆ, ମଝିଟା ଉଚ୍ଚ । ଝାଡ଼ାବାନ୍ତି ସବୁ ତଳ ଆଡ଼କୁ ଗଡ଼ିଯାଏ । ଜଣେ ମେହେନ୍ତର ଗୋଟାଏ ଦେଢ଼ କି ଦୁଇହାତ ଲମ୍ବ ଚିମୁଟା ସାହାଯ୍ୟରେ ରୋଗୀର ପାଟି ମେଲା କରି ଧରେ ଓ ଜଣେ ଡାକ୍ତର ବା କମ୍ପାଉଣ୍ଡର ସେହିପରି ଲମ୍ବ ବେଣ୍ଟ ଲାଗିଥିବା ଏକ ଚାମଚ ସାହାଯ୍ୟରେ ସନ୍ତର୍ପଣରେ ଦୂରରେ ରହି ଛୁଆଁ ବଞ୍ଚେଇ ତା' ମୁହଁରେ ଔଷଧ ଢାଳି ଦିଅନ୍ତି । ତେଣିକି ଜଗନ୍ନାଥଙ୍କ ହାତରେ ଥାଏ । ନଈକୁ ଗଡ଼ିବା ଜାଗାରେ ବାଲିଗରଡ଼ା ଦେଖେଇ ସେ ବୁଝାଇଲେ ଯେ ଏଇଠି ମହାନଦୀର ଭୂଗୋଳ ଓ ଇତିହାସର କାହାଣୀ ରହିଛି । ଏଇସବୁ ବାଲିଗରଡ଼ାରୁ ମହାନଦୀ ଯେଉଁସବୁ ବାଟ ଦେଇ ଆସିଛି, ତାହା ଜାଣିହେବ ଓ ଏହା ବି ଜାଣିହେବ ଯେ ସେ ସବୁ ଅଞ୍ଚଳର ପାହାଡ଼ କେଉଁ ଯୁଗରେ ସୃଷ୍ଟି ହୋଇଥିଲା, ଇତ୍ୟାଦି ।

ତାଙ୍କ ଛଡ଼ା ତାଙ୍କର ଭାଇଭଉଣୀ ନଟଦାଦା, ବାଲୁଦାଦା ଓ ରୁକଅପା ସାଙ୍ଗରେ ବି ଖୁବ୍ ଜମୁଥିଲା । ରୁକଅପା ନାନା ପ୍ରକାରର ବିଚିତ୍ର ଗପ ଶୁଣାଏ । ଝରୁଦାଦା ଓ ଭବଦାଦାଙ୍କ ସାଙ୍ଗରେ ଘନିଷ୍ଠତା ପରେ ହେଲା ।

ଆମଘରେ ୧୯୨୬-୨୭ ବେଳେ ଧଡ଼ିଆଦାଦା ରହି କଲେଜ୍‌ରେ ପଢୁଥାନ୍ତି । ସେ ଓ ମୁଁ ଦୁହେଁ ମିଶି ନାନା ପ୍ରକାରର ପ୍ରପଞ୍ଚ କରୁ । ଉମାକାନ୍ତବାବୁଙ୍କ ଘରେ ଗୋଟାଏ ସାର 'ବୁକ୍

ଅଫ୍ ନଲେଜ୍' ଥାଏ । ତାକୁ ତାଙ୍କ ପିଲାମାନେ କେବେ ଦେଖନ୍ତି କି ନାହିଁ କେଜାଣି, ମୁଁ କିନ୍ତୁ ପ୍ରତିଦିନ ଅନେକ ସମୟଯାଏ ବସି ବସି ଦେଖେ । ସେଥିରେ ମୋଟର ଇଞ୍ଜିନ୍, ଅନ୍ୟାନ୍ୟ କଳକବ୍ଜା, ଦୂରବୀକ୍ଷଣ, ଗ୍ରହନକ୍ଷତ୍ର ଆଦି ବିଜ୍ଞାନ ସଂକ୍ରାନ୍ତ ବିଷୟରେ ଯାହାସବୁ ଥାଏ, ସେ ସବୁଥିରେ ମୋର ବେଶି ଆଗ୍ରହ । ଏସବୁ ଛଡ଼ା ସେଥିରେ 'ଥିଙ୍ଗ୍ସ୍ ଟୁ ମେକ୍ ଏଣ୍ଡ୍ ଥିଙ୍ଗ୍ସ୍ ଟୁ ଡୁ'- ଗଢ଼ିବାର ଓ କରିବାର କେତେ କଥା ବୋଲି ଗୋଟାଏ ବିଭାଗ ଥାଏ । ସେଥିରେ ନାନା ପ୍ରକାରର ଜିନିଷ, ଖେଳନା, ଛୋଟ ଛୋଟ ଯନ୍ତ୍ର, ମ୍ୟାଜିକ୍ ସାମଗ୍ରୀ ଆଦି ତିଆରିର ଓ ସହଜ ବୈଜ୍ଞାନିକ ପରଖର ବିଧି ବତା ହୋଇଥାଏ । ଏଥି ଭିତରୁ କୌଣସି ଜିନିଷ ପାଇଁ କାଚନଳି ଆଦି ବା ରାସାୟନିକ ପଦାର୍ଥ ଲୋଡ଼ା ହେଲେ ଧଡ଼ିଆଦାଦା କଲେଜ୍ ଲେବରେଟରୀରୁ ଯୋଗାଡ଼୍ କରି ଆଣନ୍ତି । ତାଛଡ଼ା ସିନେମାରେ ଦେଖିଥିବା ଡଗ୍‌ଲାସ୍ ଫେୟାରବ୍ୟାଙ୍କ୍, ମରିସ୍ ଶେଭାଲିୟର ଆଦିଙ୍କର ଲମ୍ଫଝମ୍ପର ମଧ୍ୟ ଅନୁକରଣ କରୁଁ । ଦୋତାଲାର କାର୍ଣ୍ଣିସ୍ ଉପରେ ଚାଲିବା, କାନ୍ଥ ଧରି ଧରି ଓ ଝରକା କବାଟ ଉପରେ ଥିବା ପାଣିଛାତକୁ ଆଶ୍ରାକରି ଛାତ ଉପରକୁ ଚଢ଼ିବା, ଆମର ଘରର ଛାତ (ଯେଉଁଟା ଟିକେ କମ୍ ଉଚ) ଉପରୁ ତଳକୁ ଡେଇଁବା ଏସବୁ ବୀରତ୍ୱର ସାଧନା ତାଙ୍କ ସାଙ୍ଗରେ ହୁଏ । ଅବଶ୍ୟ ଦୋତାଲାର କାର୍ଣ୍ଣିସ୍ ଉପରେ ଚାଲିବା ଆଦି କେତେକ କାମ ମୋଦ୍ୱାରା ହେଇ ନାହିଁ । ବରଂ ସେଥିରେ ଖୋକନ୍, କରୁଣା ପ୍ରଭୃତି ମୋ ଅପେକ୍ଷା ବେଶୀ ଦକ୍ଷ ଓ ନିର୍ଭୟ ଥିଲେ । ସବା ଉପର ଛାତ କାର୍ଣ୍ଣିସ୍ ଉପରେ ସେମାନେ ଚାଲୁଥିଲେ । ମା' ତଳ ପିଣ୍ଡାରେ ବସି ଏ ସବୁ କାରବାର ଦେଖି ଉଦ୍‌ବିଗ୍ନ ଓ ବିରକ୍ତ ହୋଇ ହାଉହାଉ ହେଉଥାଏ । ଏସବୁ ଛଡ଼ା ରୁଷିଆରେ ଯେମିତି ସାମ୍ୟବାଦ ହେଉଛି ଏଠି ସେମିତି ହେବା ଉଚିତ ବୋଲି ଧଡ଼ିଆଦାଦା ଯୁକ୍ତି କରନ୍ତି ଓ ତା' ଉପରେ ତର୍କ ହୁଏ ।

କରୁଣା ଗଗନବିହାରୀ ଚୌଧୁରୀ ଓ ସରୋଜିନୀ ଚୌଧୁରୀଙ୍କ ଝିଅ । ଗଗନବାବୁ ସବ୍‌ଜଜ୍ ନା କ'ଣ ଥିଲେ । ସରୋଜିନୀ ଦେବୀ ଫକୀରମୋହନ ସେନାପତିଙ୍କ ଝିଅ । ଏମାନେ ଆମ ପଡ଼ିଶା ଘରେ ଥା'ନ୍ତି । କରୁଣା ଓ ତାର ଭାଇ ଅଭୟ ମୋର ଖୁବ୍ ସାଙ୍ଗ ହେଇଥାନ୍ତି । ଶୈଳଭାଇ ବୟସରେ ବଡ଼, ତାଙ୍କ ସାଙ୍ଗରେ ସେତେ ଘନିଷ୍ଠତା ନଥାଏ । ମୂକବଧିର ଶିଳ୍ପୀ ବିପିନ୍‌ଦା' ବିଲାତ ଯାଇଥିଲେ ଚିତ୍ରବିଦ୍ୟାରେ ଉଚ୍ଚଶିକ୍ଷା ପାଇଁ । କେତେ ବର୍ଷ ପରେ ତେଣୁ ଫେରିଲେ । ମତେ ଛବିଅଙ୍କାରେ ସେ ସେତେବେଳେ ଓ ଏବେ ବି ଉତ୍ସାହିତ କରି ଆସିଛନ୍ତି ।

ଯା ଭିତରେ ଗୋଟାଏ ସମୟରେ ମୋର ଦୁଇଟି ଶୌକ ଆରମ୍ଭ ହେଲା, ଫଟୋ ଉଠାଇବା ଓ ଡାକଟିକଟ ସଂଗ୍ରହ କରିବା । ମୃତ୍ୟୁମାମୁଁ, ବଡ଼ପି'ସା, ଟିକାଦାଦା ଏମାନଙ୍କର ସବୁ କ୍ୟାମେରା ଥାଏ । ଏମାନଙ୍କର ଦେଖି ମୋର ମନ ସକସକ ହେଲା । ବୋଧହୁଏ ବଡ଼ପି'ସାଙ୍କ ଘରେ ହିଁ କଲିକତାର ଗୋଟାଏ କ୍ୟାମେରା ଦୋକାନର କ୍ୟାଟ୍‌ଲଗ୍ ଥିଲା । ସେଠିକି ଲେଖି ମୁଁ ବି କ୍ୟାଟ୍‌ଲଗ୍ ମଗାଇଲି ଓ ତାପରେ ଗୋଟାଏ ବାକ୍ସ କ୍ୟାମେରା ଓ ଅନ୍ୟାନ୍ୟ ସରଞ୍ଜାମ ଭି.ପି. ରେ ମଗାଇ ଦେଲି କାହାକୁ କିଛି ନ କହି । କ୍ୟାମେରା ଦାମ୍ ନଅ ଟଙ୍କା ଓ ଆଉ ସବୁ ସରଞ୍ଜାମ

ମିଶି ଷୋଳ ସତର ଟଙ୍କାର ଭି.ପି. ଆସି ପହଞ୍ଚିଗଲା । ବାପା ପ୍ରଥମେ ବିରକ୍ତ ହେଲେ କିନ୍ତୁ ପରେ ଭି.ପି. ରଖା ହେଲା ଓ ଫଟୋ ଉଠା ଆରମ୍ଭ କରିବାରେ ମତେ ବାପା ଉତ୍ସାହିତ ବି କଲେ । ପ୍ରଥମେ ତ ନିଜ ବୁଦ୍ଧିରେ ଫଟୋଉଠା, ଧୂଆଧୋଇ ସବୁ କରିବାର ବହୁତ ବିଭ୍ରାଟ ହେଉଥିଲା । ତା' ପରେ ଘନପି'ସା ଥରେ ଆସି ଏସବୁ ଦେଖି ମତେ ସବୁ ବତେଇ ଦେଲେ । ଯାପରେ ସବୁ ଠିକ୍ ଚାଲିଲା । ଘନପି'ସା କଲିକତାରେ ଡାକ୍ତରୀ ପଢୁଥିଲେ ଓ ଫଟୋ ମଧ ଭଲ ଉଠେଇପାରୁଥିଲେ । ଯା'ଛଡ଼ା ମାମୁଁଘରୁ ଖଣ୍ଡେ ଫଟୋଉଠା ବିଷୟରେ ପୁରୁଣା ବହି ମଧ ମିଳିଗଲା ।

## ଡାକଟିକଟ ସଂଗ୍ରହ ଓ ଏଣ୍ଡ୍ରୁଜ୍

ବିଦେଶୀ ଟିକଟ ପ୍ରଥମେ କେଉଁଠୁ ଦୁଇଚାରିଖଣ୍ଡ ପାଇ ତାହା ରଖିଲି । ତାପରେ ପ୍ରବାସୀ ଓ ବୟେଜ୍ ଓନ୍ ପେପର୍‌ରେ ଏ ବିଷୟରେ ଲେଖା ପଢ଼ି ଆଗ୍ରହ ବଢ଼ିଲା । ସେତେବେଳେ ବିଦେଶୀ ଟିକଟ କଟକରେ ମିଳିବା ସହଜ ନଥିଲା । ମୋର ବି ଲାଜକୁଳା ସ୍ୱଭାବ ସାଙ୍ଗକୁ ଆଉ କେମିତି ଗୋଟାଏ ସ୍ୱଭାବ ଥିଲା ଓ ଏବେ ବି କିଛିଟା ଥିବ ଯେ ମୁଁ ଯାହା କରେ ତାହା ଅନ୍ୟମାନଙ୍କୁ ଜଣାଇବା ପସନ୍ଦ କରେ ନାହିଁ । ମାଗିବାକୁ ବି ସଂକୋଚ ହୁଏ । ୧୯୨୬ ରେ ଥରେ ଦୀନବନ୍ଧୁ ଏଣ୍ଡ୍ରୁଜ୍ କଟକ ଆସି ସ୍ୱରାଜ୍ୟ ଆଶ୍ରମରେ ରହିଲେ । ଦାଦା ମତେ ତାଙ୍କ ପାଖକୁ ନେଇଗଲା । ତାଙ୍କ ଟେବୁଲ ଉପରେ ଦକ୍ଷିଣ ଆଫ୍ରିକାର ଟିକଟ୍ ମରା ଏକ ପୋଷ୍ଟକାର୍ଡ଼ ଥାଏ । ମୁଁ ଯେତେଦୂର ସମ୍ଭବ ସମସ୍ତଙ୍କ ଆଖି ଏଡ଼େଇ ଟିକଟଟି ସନ୍ତର୍ପଣରେ ଛଡ଼େଇବା ଚେଷ୍ଟା କଲି, କିନ୍ତୁ ପାରିଲି ନାହିଁ । ତା' ପରଦିନ ସକାଳେ ପୁଣି ଯିବା ବେଳକୁ ଏଣ୍ଡ୍ରୁଜ୍ ସାହେବ ସେ ଟିକଟଟି ମୋତେ ବଢ଼େଇ ଦେଇ କହିଲେ - "ଏଇ ନାଓ, ତୋମାର ଜନ୍ୟ ଏ ଟିକେଟ୍ ।" ମୋର ସନ୍ତର୍ପଣ ଚେଷ୍ଟା ତାଙ୍କର ଦୃଷ୍ଟି ଏଡ଼େଇ ନଥିଲା ।

ତାପରେ ୧୯୨୭ ରେ ବୈତରଣୀ ବନ୍ୟା ପରେ ସେ ଆସି ଆମ ଘରେ ଅନେକ ଦିନ ରହିଲେ । ଉପରତାଲାର ବଡ଼ ଘରେ । ତାଙ୍କ ପାଖକୁ ଆଫ୍ରିକା ଓ ୟୁରୋପର ବିଭିନ୍ନ ଦେଶରୁ, ଫିଜି, ମରିସସ୍ ଆଦିରୁ, ବହୁତ ଚିଠି ଆସୁଥାଏ । ମୁଁ ସେସବୁ ଟିକଟ୍‌ଯାକ ବାଗାଏ । ତାଙ୍କର ସୁଟ୍‌କେଶ୍ ଖଣ୍ଡକ ସବୁବେଳେ ଖୋଲା ପଡ଼ିଥାଏ । ତାକୁ ଚୁନୀ ଓ ମୁଁ ଘାଣ୍ଟୁ । ସେଥିରୁ ବି ପୁରୁଣା ଚିଠିପତ୍ରର ଟକଟ ମିଳେ । ତାଙ୍କର ପାସ୍‌ପୋର୍ଟ ବି ସେଥିରେ ପଡ଼ିଥାଏ । ସେଥିରେ ଲାଗିଥିବା ବିଭିନ୍ନ ଦେଶର ଶୁଳ୍କ ବିଭାଗର ଟିକେଟ ଗୁଡାକ ଯେ ମୁଁ କାଢ଼ି ନେଇ ନ ଥିଲି, ଏଇଟା ଏବେ ଅତି ଆଶ୍ଚର୍ଯ୍ୟଜନକ ବୋଧ ହେଉଛି । ଏହାପରେ ତାଙ୍କ ସାଙ୍ଗରେ ଖୁବ୍ ବନ୍ଧୁତା ହେଇଗଲା । ସେ ଶାନ୍ତିନିକେତନ ଫେରିଯିବା ପରେ ଅନେକ ଦିନଯାଏ ମତେ ପ୍ରାୟ ସପ୍ତାହରେ ଥରେ ମେଞ୍ଚାଏ ଲେଖାଁ ଟିକଟ ପଠାନ୍ତି । ମୁଁ ଧନ୍ୟବାଦ ଦେଇ ଚିଠି ଲେଖି ଆହୁରି ପଠେଇବାକୁ ଲେଖେ । ପୁଣି ଚୁନୀକୁ ଶିଖେଇଲି ସେ ବି ଟିକଟ ପାଇଁ ତାଙ୍କୁ ଲେଖିଲା । ସେ ତ ସଂଗ୍ରହ

କରେ ନାହିଁ, ମୁଁ ସବୁତକ ନିଏ । ଯାଛଡ଼ା ମୁଁ ଡାକଟିକଟ ବିକୁଥିବା କମ୍ପାନୀରୁ ଭି.ଭି.ପି. ରେ ଟିକଟ ମଗାଏ, ଷ୍ଟେଟ୍ସ୍‌ମ୍ୟାନ କାଗଜରୁ ବିଜ୍ଞାପନ ଦେଖି ଏଠୁ ସେଠୁ କିଛି ପଇସା ଜମେଇ ଦୁଇ ତିନିଟଙ୍କା ହୋଇଗଲେ ଟିକଟ ମଗାଏ । ବୋଉଠୁ କେତେଟା 'ଜଟିଆ' ଟଙ୍କା-ଇଷ୍ଟ କମ୍ପାନୀ ଅମଳର ଅଚଳ ଟଙ୍କା-ମାଗି ନେଇଥିଲି । ସେଗୁଡ଼ାକ ଟ୍ରେଜରୀରେ ବଦଳାଇ ଆଣି ଟିକଟ୍ କିଣିଲି ।

ଏଇ ସମୟରେ ମୁଁ ଗୋଟାଏ ଠକାମୀ କାମ କରିଛି । ବଏଜ୍ ଓନ୍ ପେପରରୁ ବିଜ୍ଞାପନ ଦେଖି ବିଲାତର ଡାକଟିକଟ୍ ବିକ୍ରେତାମାନଙ୍କୁ ଚିଠି ଲେଖେ । ସେମାନେ ପସନ୍ଦ କରିବା ପାଇଁ କୋଡ଼ିଏ ତିରିଶଟା ଲେଖାଁ ଟିକଟ- 'ଏପ୍ରୁଭାଲ୍ ସିଟ୍' - ପଠାଇ ଦିଅନ୍ତି । ଏଭଳି ଦୁଇ ତିନୋଟି ସିଟ୍‌ର ଟିକଟ୍‌ତକ ସେମାନଙ୍କୁ ଆଉ ନ ଫେରାଇ ଓ ଦାମ ବି ନ ଦେଇ ରଖି ଦେଇଥିଲି । ପରେ ଡାକଟିକଟ ସଂଗ୍ରହ କରୁଥିବା ଅନ୍ୟ ପିଲାମାନେ ବି ବାହାରିଲେ । ସେମାନଙ୍କ ସହିତ ପରିଚୟ ହେଲା ଓ ବେଶ୍ ଗୋଟାଏ ଦଳ ହେଲା । ଥରେ ମାରୁଆଡ଼ୀ ପଟିର କୌଣସି ଦୋକାନରୁ ବହୁତ ଗୁଡାଏ ପୁରୁଣା କାଗଜ ରାସ୍ତା ଉପରେ ଫିଙ୍ଗି ଦେଇଥା'ନ୍ତି । ସେଥିରେ ଭିକ୍ଟୋରିଆ ଅମଳର ବହୁତ ପୋଷ୍ଟକାର୍ଡ଼ ଓ ଟିକଟ ଚିଠି ଓ ଲଫାପାମାନଙ୍କରେ ଥାଏ । ପିଲାଏ ତା'ର ସଂଧାନ ପାଇ ମେଞ୍ଚା ମେଞ୍ଚା ଟିକଟ ସେଠୁ ଗୋଟେଇ ଆଣିଲେ । ଏପରି ପୁରୁଣା କାଗଜପତ୍ରରେ ଅନେକ ସମୟରେ ଦୁଷ୍ପ୍ରାପ୍ୟ ମୂଲ୍ୟବାନ୍ ଟିକଟ ଥାଏ । କିଛିଦିନ ତଳେ ଥରେ ଜଣେ ଜମିଦାରୀ ସିରସ୍ତାର ପୁରୁଣା କାଗଜ ଓଜନ ଦରରେ କିଣିନେଇ ସେଥିରୁ ମିଳିଥିବା ଟିକଟକୁ ଦଶ ପନ୍ଦର ହଜାର ଟଙ୍କାରେ ବିକିଲେ । ସେ କାଗଜ ଭିତରେ ସେମିତି କିଛି ହୁଏତ ଥିଲା । କିନ୍ତୁ ଟିକଟ ସଂଗ୍ରହର ଏ ଲାଭ ଦିଗ ପ୍ରତି ସେତେବେଳେ ଆମର ଦୃଷ୍ଟି ଯାଇ ନ ଥିଲା ।

ବଏଜ୍ ଓନ୍ ପେପର କଥା ଆଗରୁ ଉଲ୍ଲେଖ କରିଛି । ଲଣ୍ଡନରୁ ପ୍ରକାଶିତ ଏହି ମାସିକ ପତ୍ରର ଗୋଟାଏ ବର୍ଷକର ବନ୍ଧେଇ ପୁରୁଣା ସଂଖ୍ୟା ଆମ ଘରେ ପଡ଼ିଥିଲା । ମୁଁ ଭଲ ଇଂରାଜୀ ବୁଝିବା ପୂର୍ବରୁ ବି ସେଥିରେ ଥିବା ବଜାର ମଜାର ଛବି ଓ ନାନା ପ୍ରକାରର ଯନ୍ତ୍ର ପ୍ରଭୃତିର ବର୍ଣ୍ଣନା ଓ ଚିତ୍ର ପ୍ରତି ଆକୃଷ୍ଟ ହେଇଥିଲି । ପରେ ବାପା ଆଉ ଗୋଟାଏ ସେହିପରି ବର୍ଷକର ବନ୍ଧେଇ ଖଣ୍ଡ ଆଣିଦେଲେ ଓ ତା' ପରେ ତିନି ବର୍ଷ ମୁଁ ତାର ଗ୍ରାହକ ବି ହେଇଗଲି । ଏଥିରେ ବାହାରୁଥିବା ଗଳ୍ପ ଓ ଉପନ୍ୟାସରୁ ଇଂରେଜମାନଙ୍କର ପିଲାଙ୍କ ସାମନାରେ ଯେଉଁ ଆଦର୍ଶ ସବୁ ଏ ପତ୍ରିକା ମାଧ୍ୟମରେ ପ୍ରଚାର କରାହେଉଥିଲା, ସେ ସବୁକୁ ତାରିଫ କରି ଶିଖିଲି । ଏଠିକାର ସେତେବେଳେର ଖୋସାମତିଆ ଇଂରେଜୀୟାନା ଓ ସେ ପତ୍ରିକା ମାଧ୍ୟମରେ ଇଂରେଜୀ ସଂସ୍କୃତି ଓ ଚରିତ୍ରର ଯେଉଁ ଚିତ୍ର ହେଉଥାଏ, ତାହା ଭିତରେ ଆକାଶ ପାତାଳ ପ୍ରଭେଦ । ସେଥିରେ ଗୋଟାଏ ପ୍ରକାରର ଋଜୁତା, ସାହସିକତା ଓ ପରାକ୍ରମଶାଳୀତାର ଚିତ୍ର ମିଳୁଥାଏ । ଏଥିରେ ନାନା ବୈଜ୍ଞାନିକ ବିଷୟ ଓ ପିଲାଙ୍କର 'ହବି' ବା 'ସଉକ' ବିଷୟରେ ବି ବାହାରୁଥାଏ । ଏସବୁ ଦ୍ୱାରା ମୋର ରୁଚି ନାନା ବିଷୟରେ ପ୍ରସାରିତ ହେଇଥିଲା । ଏଇ ପତ୍ରିକାର ଫଟୋ ପ୍ରତିଯୋଗିତାକୁ

ଛବି ପଠେଇ ମୁଁ ଦୁଇଥର ଦୁଇଟି ସ୍ୱାନ୍ ଫାଉଣ୍ଟେନ୍ ପେନ୍ ଓ ଥରେ ଗୋଟାଏ କାଗଜର ଖେଳନା ଉଡ଼ାଜାହାଜ ପାଇଥିଲି । ଏ ଶେଷଥର ମୁଁ ଅବଶ୍ୟ ଲେଖିଥିଲି ଯେ ମତେ ପୁରସ୍କାର ମିଳିବ ତ ଉଡ଼ାଜାହାଜ ଦିଆଯାଉ ।

ଏଇ ପତ୍ରିକାର କଲମ ବନ୍ଧୁ ବିଭାଗ ମାଧ୍ୟମରେ ମୁଁ ଅନେକ ଦେଶର ପିଲାଙ୍କ ସାଙ୍ଗରେ ପତ୍ରବନ୍ଧୁତା ସ୍ଥାପନ କରିଥିଲି । ତା' ଭିତରେ ଜାପାନ୍, ନିଉଫାଉଣ୍ଡଲ୍ୟାଣ୍ଡ, ଜର୍ମାନୀ ଓ ଦକ୍ଷିଣ ଆଫ୍ରିକାର ପିଲା ଥିବାର ମନେପଡୁଛି । ୧୯୩୦ ବେଳକୁ ମୁଁ ସେମାନଙ୍କୁ ଏଠା ସତ୍ୟାଗ୍ରହ ଆନ୍ଦୋଳନ ଖବର ଲେଖିବାକୁ ଆରମ୍ଭ କଲି । ସେ ଚିଠି ପୁଲିସ ହାତରେ ପଡ଼ିଲା କି କ'ଣ, ତାପରେ ତେଣୁ ଆଉ ଚିଠିପତ୍ର ଆସିଲା ନାହିଁ ।

ମାମୁଁ ଘରକୁ ବି ଏଇ ସମୟରେ ଦୁଇଟା ଆମେରିକାନ୍ ମାସିକ ପତ୍ରିକା 'ପପୁଲାର ସାଏନ୍ସ ମନ୍ଥଲୀ' ଓ 'ସାଇଣ୍ଟିଫିକ୍ ଆମେରିକାନ' ଆସୁଥାଏ । ଶେଷୋକ୍ତଟି ସେ ସମୟରେ ମୋର ବୁଦ୍ଧିର ଅଗମ୍ୟ ଥିଲା । କିନ୍ତୁ ପ୍ରଥମୋକ୍ତିଟିକୁ ମୁଁ ଏକାବେଳକେ ପିଇ ଯାଉଥିଲି । ସେଥିରେ ଅଜସ୍ର ଛବି ଓ ବହୁତ ବ୍ୟାବହାରିକ କଥା ଥାଏ । ଛୁରୀ କିପରି ଧାର କରିବା ଠାରୁ ଆରମ୍ଭ କରି ମଟର କିପରି ମରାମତି କରିବ ସେ ଯାଏ। ସେଥିରେ ମୁଁ ଏତେ ତନ୍ମୟ ହେଇ ଯାଉଥିଲି ଓ ଏତେ ବିଷୟ ଶିଖିବାକୁ ପାଇଥିଲି  ଯେ କହି ହେବ ନାହିଁ । ଅବଶ୍ୟ ସେଥିରେ ଓ ବଏଜ୍ ଓନ୍ ପେପର୍‌ରେ ଯେଉଁସବୁ 'ସହଜ' ପରାମର୍ଶ ଥାଏ ଅମୁକ ଜିନିଷ ତିଆରି କରିବାକୁ ସେଥିପାଇଁ ଲୋଡ଼ା ହେଉଥିବା 'ସାଧାରଣ' ଜିନିଷ ସେତେବେଳେ ଆମ ଦେଶରେ ଓ ବିଶେଷ କରି ୧୯୨୬ ରେ କଟକରେ ମିଳିବା ଅସମ୍ଭବ ପ୍ରାୟ ଥିଲା । ଅମୁକ ପ୍ରକାରର ଅଠା, କାଠ ବା ଏପରିକି ପେଚକଣ୍ଟାଟିଏ ବି ଏଠି ପାଇବା କାଠିକର ପାଠ ଥିଲା । ତେଣୁ କେତେ ନା କେତେ ଜିନିଷ ତିଆରି ଚେଷ୍ଟା ଅଧବାଟ ଯାଇ ଅଟକି ଯାଇଥିଲା । ତଥାପି ଆମ ଦେଶର ସବୁ ପିଲାଙ୍କ ହାତରେ ଏ ପ୍ରକାରର ପତ୍ରପତ୍ରିକା ପଡ଼ନ୍ତା ତ କେତେ ଉପକାର ହୁଅନ୍ତା ।

ଆମ ମାମୁଁମାନେ ବୋଧହୁଏ ୧୯୨୫ ରେ ଦୁଇ ମାସରେ ଥରେ ବାହାରୁଥିବା ଖଣ୍ଡେ ପତ୍ରିକା ବାହାର କଲେ । ନାମ- ବାରୁଣୀ । ପତ୍ରିକାଟି ବେଶ୍ ମୋଟାସୋଟା ହେଉଥାଏ । ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା, ଛବି, ବୈଜ୍ଞାନିକ ପ୍ରସଙ୍ଗ ଆଦି ଭରପୂର ଥାଏ । ସମ୍ପାଦକ ହେଉଥା'ନ୍ତି ଉପମାମୁଁ । ମୋର ମନେଅଛି ବାରୁଣୀର ପ୍ରଥମ ସଂଖ୍ୟାରୁ ଖଣ୍ଡେ ନେଇ ଉପମାମୁଁ ଆମଘରକୁ ଆସିଲେ ଓ ଅନ୍ୟମାନଙ୍କ ଭିତରେ ମୋର ମତ ବି ଲୋଡ଼ିଲେ – "ମହନ କହିବ ଏ ପତ୍ରିକା କେମିତି ହୋଇଛି ।" ମୁଁ ସ୍ୱାଭାବତଃ ବେଶ୍ ଖୁସି ହେଲି । ପତ୍ରିକାଟି ବେଶ୍ ଉଚ୍ଚଦରର ହେଉଥିଲା, ମାତ୍ର ପାଞ୍ଚ କି ଛଅ ଖଣ୍ଡ ବାହାରିବା ପରେ ବିଲୟ ଭଜିଲା । ପତ୍ରିକାର ଛବି ପାଇଁ ମାମୁଁମାନେ ବ୍ଲକ୍ ତିଆରି ଧନ୍ଦା ବି ଆରମ୍ଭ କରିଥିଲେ ।

ସ୍କୁଲରେ ନ ପଢ଼ିବା ଯୋଗୁଁ ମୁଁ ଅନ୍ୟ କିଛି ଅଭାବ ଅନୁଭବ କରୁ ନ ଥାଏ, ମାତ୍ର ସ୍କୁଲ କଲେଜର ପିଲାମାନଙ୍କର ଯେଉଁ ଗୋଷ୍ଠୀଭାବ ଦେଖେ - ଆମେ ଅମୁକ ସ୍କୁଲର ପିଲା, ଆମ କଲେଜ୍ ଫୁଟବଲ୍ ସିଲ୍ଡ୍ ଜିତିଲା ଇତ୍ୟାଦି- ଏହି ଗୋଷ୍ଠୀଭାବର ଅଭାବ ମୁଁ ଅନୁଭବ କରୁଥାଏ ।

ମୁଁ କୋଉ ଦଳର ? କୋଉ ସ୍କୁଲ ଜିତିଲେ ମୁଁ ଗର୍ବିତ ହେବି ? ଆମ ପଡ଼ାର ଓ ମୋ ସାଙ୍ଗର ଅଧିକାଂଶ ପିଲା ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଢୁଥିଲେ । ତେଣୁ ମୁଁ ନିଜକୁ ସେହି ଗୋଷ୍ଠୀ ସହିତ ଏକୀଭୂତ କରିବାରେ ଲାଗିଲି । ତା' ଛଡ଼ା ଆମ ଘର ସାମନା ସନ୍‌ସାଇନ୍ ପଡ଼ିଆଟା କଲେଜିଏଟ୍ ସ୍କୁଲର ହୋଇଯାଇଥିଲା ଓ ସେଠା ପିଲାମାନେ ହିଁ ସେଠି ଖେଳୁଥା'ନ୍ତି । ସେମାନଙ୍କ ସାଙ୍ଗରେ ମୁଁ ଖେଳେ । ଅନେକ ପିଲାଙ୍କ ସହିତ ପରିଚୟ ଥିଲା, ଘନିଷ୍ଠତା ବହୁତ କମ୍‌ଙ୍କ ସହିତ । ସବୁଦିନେ ଯାହାଙ୍କ ସାଙ୍ଗରେ ଖେଳୁ, ପ୍ରତିଦିନ ଯାହାଙ୍କ ସହିତ ଦେଖାହୁଏ, ସେ ସମସ୍ତଙ୍କର ଘର ପରିଚୟ ମୁଁ ଜାଣିବାକୁ ଚେଷ୍ଟା କରିନାହିଁ । ଏଇଟା କେବଳ ମୋରି ଗୋଟାଏ ଦୁର୍ବଳତା କି ସବୁ ପିଲାଙ୍କର ଥାଏ କହିପାରିବି ନାହିଁ । ସେଥିପାଇଁ ପରବର୍ତ୍ତୀ ଜୀବନରେ କିଏ କୁଆଡ଼େ ଗଲେ ଆଉ ଖୋଜ ଖବର ରଖିବା ସମ୍ଭବ ହେଲାନାହିଁ । ହଠାତ୍ କିଏ କେଉଁଠି ଦେଖାହେଲେ ବିସ୍ମୟ ଓ ଆନନ୍ଦ ହୁଏ । ନ ହେଲେ ସେ ସବୁ ମୋ ଜୀବନରୁ ପୋଛି ହେଲା ପରି ଯାଇଛନ୍ତି ।

ବାମା (ଚରଣ ମିତ୍ର) ସନ୍‌ସାଇନ୍ ପଡ଼ିଆ ଆରପଟେ ରହୁଥିଲା । ଆମ ସାଙ୍ଗରେ ଖେଳାବୁଲା କରେ । ଖୋକନ୍‌ର ଘନିଷ୍ଠ ସାଙ୍ଗ । ବାମା ଆଉ ସେ ପହଁରିବାରେ ଓସ୍ତାଦ ଥିଲେ । ଥରେ ବଢ଼ିବେଳେ ପହଁରି କାଠଯୋଡ଼ି ପାରି ହୋଇଥିଲେ । ତା'ପରେ ଆମର ବାଟ ଭିନେ ହେଇଗଲା । ସେ ପଶିଲା ଡେପୁଟୀ କାମରେ, ମୁଁ ମୁହେଁଇଲି ଇଂଲଣ୍ଡେଶ୍ୱରଙ୍କ ଅତିଥିଶାଳା ଆଡ଼କୁ । ପରେ ଦେଖା ପଚିଶ ବର୍ଷ ପରେ କଳାହାଣ୍ଡିର ନୂଆପଡ଼ାରେ । ମଝିରେ ପତ୍ରପତ୍ରିକାରେ ପ୍ରକାଶିତ ତା'ର ଲେଖାରୁ ଯାହା ତାହା କଥା ଜାଣୁଥାଏ । ବିଜୁ (ପଟ୍ଟନାୟକ) ଓ ତା ସାନଭାଇ ସିଜୁ ଉପମାକାନ୍ତ ବାବୁଙ୍କ ଘରକୁ ବୁଲି ଆସନ୍ତି । ସେମାନଙ୍କ ସାଙ୍ଗରେ ମୁଷ୍ଟି ଯୁଦ୍ଧ ଓ ଆଉସବୁ ଖେଳ ହୁଏ । ସେମାନେ ସେସବୁ ଭଲ ଶିଖିଥା'ନ୍ତି ବୋଲି ମନେ ହେଉଥାଏ । ତାଙ୍କ ବାପା ଲକ୍ଷ୍ମୀନାରାୟଣ ବାବୁ ବି ସାଇକେଲ ଚଢ଼ି ଆସନ୍ତି । ବିରାଟ ମଣିଷ, ବଡ଼ବଡ଼ ଝୁଲା ନିଶ । ତା' ପରେ ବିଜୁ କୁଆଡ଼େ ପଳାଇଲା । ପୁଣି ଦେଖା ୧୯୪୪ କି' ୪୫ ରେ କଟକ ଜେଲ୍‌ରେ, ଯେତେବେଳେ ସେ ଲାହୋରରୁ ବଦଳି ହେଇ ଆସିଲା । ଭୂପେନ୍ ବସୁ ତ କଟକରେ ଓକିଲାତି କରେ । ତା ସାଙ୍ଗରେ ଆସୁଣୁ ଯାଉଣୁ ଦେଖା ହୁଏ । ପୁଣି ନିକଟରେ ଦେଖା ହେଲା କଟକ ଜେଲ୍‌ରେ ମିସା ଅଟକବନ୍ଦୀ ଭାବରେ ୧୯୭୫ ରେ । ନନ୍ଦଗୋପାଳ ବାନାର୍ଜି-କ୍ୟାଙ୍ଗାରୁ-ତ ପୁଲିସରେ ବଡ଼ ହାକିମ ହେଇ ରିଟାୟାର୍ କରିଛି । ସି.ଆଇ.ଡ଼ି. ଇନସ୍‌ପେକ୍ଟର ପ୍ରଫୁଲ୍ଲବାବୁଙ୍କ ପୁଅ ଅଶୋକ ତିରିଶ ବର୍ଷ ପରେ ଆସି ସସ୍ତୀକ ଚମ୍ପଉମୁଣ୍ଡା ଉଉର ବୁନିୟାଦୀ ବିଦ୍ୟାଳୟରେ ହାଜର- ଖ୍ୟାତିନାମା ଚିତ୍ରଶିଳ୍ପୀ ରୂପେ । ସେଠି ସେ ଚିତ୍ରକଳା ଶିକ୍ଷକ ହେଲା ଦିନା କେତେ । ଅଭୟ, ଶୈଳଭାଇ ତ କଟକରେ ଶିକ୍ଷକତା କଲେ । କୁନ ଓ ଜୟୀ ଯୁଦ୍ଧରେ ଡାକ୍ତର ହେଇ ଗଲେ । ଫେରିବା ପରେ କିନ୍ତୁ ଆଉ ଦେଖା ହୋଇନାହିଁ । ଦୁଲୁ ତ ଡେପୁଟୀ ହେଇଥିଲା, ଅଳ୍ପ ବୟସରେ ମରିଗଲା । ଲକ୍ଷ୍ମୀନାରାୟଣ (ଲକ୍ସ), ଶିବନାରାୟଣ, ଚନ୍ଦ୍ରହାସ, ଅନିଲ, ପରିମଳ, ନେଡ ଏମାନେ ଏସବୁ କୁଆଡ଼େ ଗଲେ ?

ମତେ ପିଲାମାନେ ପ୍ରଥମେ 'ଗାନ୍ଧୀ' 'ଗାନ୍ଧୀ' କହି ଚିଡଉଥିଲେ । କାରଣ ସମସ୍ତଙ୍କ ଭିତରେ ମୁହିଁ ଏକା ଖଦଡ଼ ପିନ୍ଧୁଥାଏ । ଖଦଡ଼ ପିନ୍ଧାରେ ମୁଁ ଘୋର କଟର ହେଇଯାଇଥାଏ । କେମିତି କେଜାଣି । ଉପମାମୁଁଙ୍କ ବାହାଘରେ ମୁଁ ମାର୍କୁଣ୍ଡି ହେଇଗଲି । ଅନ୍ୟ ଲୁଗା ବୋଧହୁଏ ବରାଦ ହେଇଥିଲା । ମାତ୍ର ଅନ୍ୟ ଲୁଗା ପିନ୍ଧିବାକୁ ମୁଁ ମନା କରିବାରୁ ମୋର ପାଇଁ ଖଦଡ଼ ଲୁଗା ଆସିଲା । ପିଲାମାନେ ଚିଡ଼ଉ ଚିଡ଼ଉ ସେ ମହଲରେ ମୋର ଡାକନାମ ହିଁ ଗାନ୍ଧୀ ହୋଇଗଲା, କିନ୍ତୁ ସେତେବେଳେ ମୁଁ ଗାନ୍ଧୀଙ୍କ ଖବର ବିଶେଷ ରଖୁ ନ ଥିଲି । ଯଥା ୧୯୨୮ ରେ ବର୍ଦ୍ଦୋଲୀ ସତ୍ୟାଗ୍ରହ ହେବା କଥା ମୁଁ ବହୁତ ପରେ ଜାଣିଲି । ମୋ ପୂର୍ବରୁ ବରଂ ଦୁଃଖୀଶ୍ୟାମ ମିତ୍ରଙ୍କର ପିଲାମାନେ ସେ ଖବର ବେଶି ରଖୁଥିଲେ । ସେହି ବର୍ଷ ସାଇମନ୍ କମିଶନ୍ ବର୍ଜନ କରିବା ଆହ୍ୱାନରେ ଅନେକ ପିଲା ଗୋଟାଏ ଦିନ ଇସ୍କୁଲକୁ ଯାଇ ନ ଥିଲେ, କିନ୍ତୁ ମୁଁ ସେକଥା ଆଗରୁ ଜାଣି ନ ଥିଲି । ପିଲାମାନଙ୍କଠାରୁ ଜାଣିଲି । ୧୯୨୮ କଲିକତା କଂଗ୍ରେସରୁ ଜାଣି ମୁଁ ରାଜନୀତିର କିଛି କିଛି ଖବର ରଖିବା ଆରମ୍ଭ କଲି ଓ ଦୁଇବର୍ଷ ପରେ ତା ଭିତରେ ପ୍ରବେଶ କଲି ।

ମୁଁ ଅନେକ ଥର ଲକ୍ଷ୍ୟ କରି ଦେଖିଛି ଯେ ମୋ ମନରେ କଳାଗୋରା ଭେଦ ବା ଇଂରେଜ ବିଦ୍ୱେଷ ନ ଥିଲା । ବଏଜ୍ ଓନ୍ ପେପର୍‌ର ପ୍ରଭାବ କଥା ଆଗରୁ କହିଛି । ମିସେସ୍ ଦାସ ଇଂରେଜ ନ ହେଲେ ହେଁ ଗୋରା ମହିଳା ତ ଥିଲେ । ଦୀନବନ୍ଧୁ ଏଣ୍ଡ୍ରୁଜ୍ ଓ ମିସେସ୍ ଦାସ୍‌ଙ୍କ ସହିତ ଖୁବ୍ ଅଳ୍ପ ବୟସରେ ସଂପର୍କର ଫଳରେ ସେମାନଙ୍କ ମାଧ୍ୟମରେ ପାଶ୍ଚାତ୍ୟ ସଭ୍ୟତାର ସର୍ବୋତ୍ତମ ଦିଗର ପରିଚୟ ଆମଘରେ ପାଇଥିଲୁ । ଏହିପରି ଭାବରେ ସେତିକି ବେଳୁ ମାନସିକ ଦିଗ୍‌ବଳୟଟା ବେଶ୍ ପ୍ରସାରିତ ହେଇଯାଇଥିଲା ।

## ଦାଦା ବାହାଘର

ଯେତେଦୂର ମନେପଡୁଛି, ଡଃ ତାରକନାଥ ଦାସ ଜଣେ ବିଶିଷ୍ଟ ବଙ୍ଗାଳୀ ଅର୍ଥନୀତିବିତ୍, ଆମେରିକାରୁ ଫେରି ଶାନ୍ତିନିକେତନ ଆସିଥା'ନ୍ତି । ଦାଦା ତାଙ୍କ ପାଖରେ ଗ୍ରାମ୍ୟ ଅର୍ଥନୀତି ଅଧ୍ୟୟନ ପାଇଁ ସେଠାକୁ ଗଲା । ସେଠୁ ସେ ଚୁନୀ ପାଖକୁ ଚିଠି ଲେଖିଲା ଯେ, ଏଠି ମୋର ଗୋଟିଏ ଝିଅ ସାଙ୍ଗ ଅଛି । ତୋଠୁଁ ଆଠଦଶ ବର୍ଷ ବଡ଼ । ତା ନାଁ ମିନୁ । ଚୁନୀ ଚଟ୍‌କରି ବ୍ୟାପାରଟା ବୁଝି ପାରିଲା । ତା' ପରେ ଦାଦା କଲିକତାରେ ରହି ସର୍ଟହ୍ୟାଣ୍ଡ୍ ଓ ଟାଇପ୍‌ରାଇଟିଂ ଶିଖିଲା, ରୋଜଗାରକ୍ଷମ ହେବ ବୋଲି । ଦାଦା ୩୭ ହ୍ୟାରିସନ୍ ରୋଡ୍‌ରେ ରହୁଥାଏ । ସେ ଜାଗାଟା ସେତେବେଳେ ଲଢୁଆ ରାଜନୀତିର ଗୋଟାଏ ଗରମାଗରମ କେନ୍ଦ୍ର ଥାଏ । ଆମର ଭାବୀ ଖୁଡ଼ୀଙ୍କ ପରିବାର ୧୦ ନ୍ୟୁ ପାର୍କ ଷ୍ଟ୍ରୀଟ୍‌ରେ ରହୁଥା'ନ୍ତି । କିଛିଦିନ ପରେ ଏକ ସମୟରେ ଯେତେବେଳେ ବାହାଘର ପ୍ରସ୍ତାବ ଉଠିଲା, ମା' ତାର ଘୋର ବିରୋଧ କଲା । ମୁଁ ଜାଣିବାରେ ଏଣେ କରଣ ଘରମାନଙ୍କର ଆଉ କେଉଁଠି ସବୁ ଦାଦା ପାଇଁ ସମ୍ବନ୍ଧ କଥା ଉଠୁଥାଏ । ମା'

ବାହାଘର ଭଙ୍ଗେଇବା ପାଇଁ ଖୁଡ଼ୀଙ୍କ ମା'ଙ୍କ ପାଖକୁ  ଦାଦାର ଖୁବ୍ ନିନ୍ଦା କରି ବେନାମୀ ଚିଠିସବୁ ଲେଖାଉ ଥାଏ, ନବ ଖୁବ୍ ଦୁଶ୍ଚରିତ୍ର, ମଦ ଖାଏ, ଇତ୍ୟାଦି ଇତ୍ୟାଦି । ପରେ ରଘୁ ମାଷ୍ଟ୍ରେ ଦାଦା ଖୁଡ଼ୀଙ୍କ ପାଖରେ ସ୍ୱୀକାର କରିଥିଲେ ଯେ ସେଇ ଏ ସବୁ ଚିଠିର ଲେଖକ ।

ବେଶ୍ କିଛିଦିନ ଏହିପରି ଚାଲିବା ପରେ ଶେଷକୁ ମା' ନଇଁଲା । ହରିଅଜା ତାକୁ ରାଜି କରାଇବା ଦିଗରେ ବହୁତ କରିଥିଲେ ବୋଲି ଶୁଣିଛି । ଶେଷରେ ୧୯୨୭ ଜୁଲାଇ ମାସରେ ବାହାଘର ହେଲା । ମୁଁ ମାର୍କୁଣୀ ହେଇ ଗଲି । ବାପା ତ ଥା'ନ୍ତି; ଉପମାମୁଁ; ଟୁଲୁମାମୁଁ; ନଗିମାମୁଁ ହେରିକା ଆହୁରି କେତେଜଣ ଯାଇଥା'ନ୍ତି । ସମସ୍ତଙ୍କର କଥା ମନେନାହିଁ; ତେବେ ବାପାଙ୍କର ବନ୍ଧୁ ଶ୍ରୀଧର ମହାନ୍ତି ଥା'ନ୍ତି । ଏଇ ମୋର ପ୍ରଥମ କଲିକତା ଯାତ୍ରା । ତାହା ପୂର୍ବରୁ ଗୟା କଂଗ୍ରେସରୁ ଫେରିବା ବେଳେ ହାଉଡା ଦେଇ ଫେରିଥିଲୁ, କିନ୍ତୁ  ସହର ଭିତରକୁ ଯାଇ ନ ଥିଲୁ । ସେଠାର ଚଉଡ଼ା ରାସ୍ତା, ଟ୍ରାମ୍‌ଗାଡ଼ି, ଦୋତାଲା, ତିନିତାଲା କୋଠା ଏସବୁ ଦେଖି ଚମତ୍କୃତ ହେଇଥିଲି । ଆମେ ରସା ରୋଡ଼ରେ ଗୋଟିଏ ଘରେ ରହିଥିଲୁ । ସେଠାରେ ଦୁଇଟି କଥା ମୋର ଖାସ୍ ମନେ ଅଛି । ଗୋଟିଏ କଥା ମତେ ସେତେବେଳେ ବହୁତ ଉଦ୍‌ବିଗ୍ନ କରିଥିଲା, ଏବେ ଭାବିଲେ ହସ ମାଡ଼େ । ଶ୍ରୀଧରବାବୁ ଦିନେ ସକାଳୁ ମତେ ତେଇଶଟି ଟଙ୍କା ଧରେଇ ଦେଇ କହିଲେ ଏତକ ତୋ ପାଖରେ ଏଇଷଣି ରଖିଥା । ମୁଁ ତାକୁ ପକେଟ୍‌ରେ ରଖି ସେଥିରେ ହାତ ପୂରେଇ ବାରମ୍ବାର ଗଣୁଛି, କେତେବେଳେ ବାଇଶ୍ ହେଉଛି ତ କେତେବେଳେ ଚବିଶ । ପଦାକୁ କାଢ଼ି ଗଣିବାକୁ ସଙ୍କୋଚ ହେଉଛି । ଅନେକ ସମୟ ପରେ ଶ୍ରୀଧରବାବୁ ସେ ଟଙ୍କାରୁ ମତେ ଉଦ୍ଧାର କରିବାରୁ ଯାଇ ଶାନ୍ତିରେ ନିଃଶ୍ୱାସ ମାରିଲି । ଆର କଥାଟା ହେଲା ଦିପହରେ ପଡ଼ିଶାର ଜଣେ ଭଦ୍ରଲୋକଙ୍କ ଘରେ ମୋର ଖାଇବା ବରାଦ ହେଇଥିଲା । ସେଠି ଯେପରି ସୁସ୍ୱାଦୁ ପୋଟଳ ଭଜା ଖାଇଥିଲି ସେପରି ଜୀବନରେ ଆଉ କେବେ ନ ଖାଇଥିବା ପରି ଲାଗୁଛି ।

ବାହାଘର ଲୋଅର ସର୍କୁଲାର ରୋଡ୍‌ର ଗୋଟାଏ ଘରେ (୨୨୭ ନଂ ?) ହେଲା । କନ୍ୟାପକ୍ଷର ଲୋକଙ୍କର ଭିଡ଼ ଥାଏ । କଲିକତା ପିଲାମାନେ ମୋହନ ବାଗାନ୍ ଓ ଇଷ୍ଟ୍ ବେଙ୍ଗଲ୍‌ର ମ୍ୟାଚ୍ କଥା ଆଲୋଚନା କରୁଥା'ନ୍ତି । ମୁଁ ସେଥିପ୍ରତି ଉତ୍‌କର୍ଣ୍ଣ ହେଇ ରହିଥାଏ । କଲିକତାରେ ନାମଜାଦା ଦଳମାନଙ୍କର ଫୁଟବଲ୍ ଖେଳ ଦେଖିବାର ତ ମୋର ବହୁତ ଇଚ୍ଛା ଥାଏ । ପିଲାଙ୍କ ଆଡ୍‌ଡାରେ ଯୋଗ ଦେବାର ହେମତ୍ ବି କାହୁଁ ଆସିବ ? ଚୁପ୍‌ଚାପ୍ ଥାଏ । ବୁଲୁମାସୀ, ଖୁଡ଼ୀଙ୍କର ପି'ସୀ ଝିଅ ଭଉଣୀ, ଆଦି ଡାକି ନେଇଗଲେ । ବୁଲୁମାସୀ ସେତେବେଳେ କଟକରେ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଥିଲେ ଓ ବାହାଘର ପୂର୍ବରୁ ଆମ ଘରକୁ ଥରେ ଅଧେ ଯିବା ଆସିବା କରିଥିଲେ । ସେ ମତେ ନେଇ ବେଶପଟା ହେଇ ସ୍ତ୍ରୀଲୋକମାନଙ୍କ ଭିଡ଼ ମଝିରେ ବସିଥିବା କାଳୀ କନ୍ୟା ସାମନାରେ ଛିଡ଼ାକରି ଦେଇ କହିଲେ - "ଏଇ ଦେଖୋ ତୋମାର କାକୀମା ।" ମୁଁ କନ୍ୟା ଦେଖୁଥାଏ । ମତେ ଅନ୍ୟ ସମସ୍ତଙ୍କର କୌତୂହଳୀ ଦୃଷ୍ଟି ବିଦ୍ଧ କରୁଥାଏ । ମୁଁ କିଛିକ୍ଷଣ ସଂକୋଚରେ ମୂକ ହେଇ ଛିଡ଼ାହେଇ ପଳେଇ ଆସିଲି ।

ଖୁଡ଼ୀ ଆସିବା ପରେ ଆମଘରର ବହୁତ ସାଂସ୍କୃତିକ ଉନ୍ନତି ହେଲା । ସେ ତ ଅତି ଉତ୍ତମ ବୀଣା ବଜେଇ ପାରନ୍ତି ଓ ଗୀତ ବି ଗାନ୍ତି ଚମତ୍କାର । ସେ ପ୍ରାୟ ଭୋରରୁ ଉଠି ବୀଣା ବଜେଇ ବସନ୍ତି । ପୁଣି ସନ୍ଧ୍ୟାବେଳେ ମଧ୍ୟ । ରବୀନ୍ଦ୍ର ସଙ୍ଗୀତର ଝରଣା ତ ଯେତେବେଳେ ସେତେବେଳେ ବହେ । ଚୁନୀ ସିତାର ଓ ଗୀତ ଶିଖୁଥିଲା । ମାମୁଁଘର ବା ବେଙ୍ଗଅପା ବସାକୁ ଗଲେ ଆମେ ଗ୍ରାମୋଫୋନ୍‌ରେ ରେକର୍ଡ଼ ବଜାଇ ଶୁଣିବା ପାଇଁ ଭଲ ପାଉଥିଲୁ । ସେଥିରେ ରବୀନ୍ଦ୍ରନାଥଙ୍କ ଗୀତ ଓ ନଜରୁଲ୍‌ଙ୍କ ଗଜଲ୍, ଆବୃତ୍ତି ଆଦି ବି ଥିଲା । ମାତ୍ର ଘରେ ସଙ୍ଗୀତ ଶୁଣିବାର ସୁଯୋଗ ପ୍ରାୟ ନ ଥିଲା । ସେଇଟାର ଯୋଗ ହେଲା । ଗଣେଶ ଓ ସରସ୍ୱତୀ ପୂଜା ଉପଲକ୍ଷ୍ୟରେ ଫୁଲପତ୍ର ଆଦି ଦେଇ ସଜାସଜି କରିବାର ଶୈଳୀ ଚାଲୁ ହେଲା । ଧଡ଼ିଆଦାଦା ହେରିକା କନିକା ରାଜବାଟୀ ଓ ଆଉ କେଉଁଠୁ ସବୁ ଗଦାଗଦା ତାଳପତ୍ର ସଂଗ୍ରହକରି ଆଣନ୍ତି । ପୂର୍ବରୁ ପୂଜାଗୁଡ଼ାକ କେବଳ ନମୋ ନମୋ କରି ସାରି ଦିଆଯାଉଥିଲା । ଚିତ୍ରକଳା ବିଷୟରେ ଆମର ରୁଚି ବଦଳିଲା । ପୂର୍ବେ ଚୁନୀ ଓ ମୁଁ ମାସିକ ବସୁମତୀରେ ବାହାରୁଥିବା ରଙ୍ଗିନ୍ ଫଟୋ ଭଳି ଦିଶୁଥିବା ଚିତ୍ରସବୁକୁ ପସନ୍ଦ କରୁଥିଲୁ । ଖୁଡ଼ୀଙ୍କ ପ୍ରଭାବର ଧକ୍କାରେ ଅବନୀନ୍ଦ୍ରନାଥ, ନନ୍ଦଲାଲ ବସୁ, ଗଗନେନ୍ଦ୍ରନାଥ ଠାକୁରଙ୍କ ଚିତ୍ରର କଦର କରି ଶିଖିଲୁ ।

ଏସବୁ ଛଡ଼ା ଆମ ପିଲାମାନଙ୍କର ଚାଲିଚଳଣରେ ବି ଅନେକ ଉନ୍ନତି ହେଲା । ରାତିରେ ଶୋଇବା ପୂର୍ବରୁ ଗୋଡ଼ ଧୋଇବା କଥାଟା ସେଇ ଚାଲୁ କଲେ । ସେଇ ଦିନେ ଆବିଷ୍କାର କଲେ ଯେ ମୋ ମୁଣ୍ଡରେ ରୁପୀ ଭର୍ତ୍ତି ହେଇଛି । ମୋର ସାମନା ବାଳଗୁଡ଼ାକ ସେ କଇଁଚିରେ କଚ୍‌କଚ୍ କରି କାଟିଦେଲେ । ମୋର ଖାଲି ଭୟ ହେଉଥାଏ ଯେ ସାଙ୍ଗପିଲାମାନେ ମୋର ବାଳର ଏ ଅବସ୍ଥା ଦେଖି ହସିବେ । କିନ୍ତୁ ସୌଭାଗ୍ୟକ୍ରମେ କେହି ତାହା ଲକ୍ଷ୍ୟ କଲେ ନାହିଁ ।

ଅଣଖିଆରେ ଆମର କିଛି ଜମି ଥିଲା । ଦାଦା ସେଇଠି ଚାଷବାସ ଆରମ୍ଭ କରିଥିଲା । ଦାଦା ଖୁଡ଼ୀ ପରେ ଯାଇ ସେଇଠି ରହିଲେ । ସେଠିକି ମୁଁ ଥରେ ଯାଇଥିବା ବେଳେ ବାସନ ମଜା ବି ଶିଖିଲି । ଖୁଡ଼ୀ ଦିନେ ଜଳଖିଆ ପରେ କହିଲେ, "ଏତେ ବଡ଼ ହେଲୁଣି ବାସନ ମାଜି ଆସୁନାହିଁ !" ମୁଁ ତୁରନ୍ତ ଥାଳିପଟକ ନେଇ ବାଲ୍‌ଟିଏ ପାଣିରେ ବୁଡ଼େଇ ଦେଲି । ସେଠି ଗୋବିନ୍ଦ ଛିଡ଼ା ହୋଇ ତାମସା ଦେଖୁଥିଲେ, ମତେ ବାସନ ମଜା କାଇଦା ବତେଇ ଦେଲେ । ଗୋବିନ୍ଦ ସରକାରୀ କୃଷି ବିଭାଗର କାମଦାର୍ ଥିଲେ । ବୋଧହୁଏ ଅବସର ନେବା ପରେ ଦାଦା ପାଖରେ ଥା'ନ୍ତି, ଚାଷବାସ କାମ ବୁଝିବା ପାଇଁ ।

୧୯୨୮ ଜୁନ୍‌ମାସରେ ବୁବୁ ଜନ୍ମ ହେଲା କଲିକତାର ଚିତ୍ତରଞ୍ଜନ ସେବାସଦନରେ । ସେଇଟା ସେତେବେଳେ ନୂଆହେଇ ଆରମ୍ଭ ହୋଇଥାଏ । କିଛିଦିନ ପରେ ସେମାନେ କଟକ ଆସିଲେ । ବୁବୁର ଲାଳନପାଳନ ଖୁବ୍ ଆଧୁନିକ ଓ ବୈଜ୍ଞାନିକ ଢଙ୍ଗରେ ଆରମ୍ଭ ହେଇଥାଏ । ସାର୍ ଟ୍ରୁବୀ କିଙ୍ଗ୍‌ଙ୍କର ଶିଶୁପାଳନ ବିଷୟରେ ଖଣ୍ଡେ ବହି ଏଥିରେ ପଥପ୍ରଦର୍ଶକ ହେଉଥାଏ । ପ୍ରତ୍ୟେକ ଖାଇବା ଜିନିଷ ସିଝେଇ ଫୁଟେଇ ଜୀବାଣୁରହିତ କରାଯାଏ । ପ୍ରତ୍ୟେକ ବାସନକୁ ବି

ଫୁଟନ୍ତା ପାଣିରେ ଶୋଧନ କରାଯାଏ । ଘଣ୍ଟା ଦେଖି ଠିକ୍ ସମୟ ମାପିକି ଖାଇବାକୁ ଦିଆଯାଏ । ଝାଡ଼ା ପରିସ୍ରା ପାଇଁ ପାତ୍ର ବ୍ୟବହାର କରାଯାଏ ଓ ନିର୍ଦ୍ଦିଷ୍ଟ ସମୟରେ ଅଭ୍ୟାସରେ ପକାଯାଏ । ବେଶି କୋଳକାଖ କରାଯାଏ ନାହିଁ, ଇତ୍ୟାଦି; ତେବେ ଏଥିରେ ସବୁଠାରୁ ନୂଆ କଥା ଥାଏ ଯେ ଦାଦା ଏସବୁ କାମରେ ସାହାଯ୍ୟ କରୁଥାଏ । ସେ ଯୁଗରେ ବାପାମାନେ ବା ମରଦମାନେ ଛୋଟ ପିଲାଙ୍କୁ କୋଳରେ ଧରିବା ବି ସଂକୋଚର ବିଷୟ ଓ କଳ୍ପନାର ଅତୀତ ଥିଲା, ପୁରୁଷୋଚିତ ଆତ୍ମସମ୍ମାନରେ ବାଧକ ଥିଲା । ଶିଶୁର ଲାଳନପାଳନ ମାଇପି କାମ । ସେଟା କରିବସିଲେ ମରଦଙ୍କୁ ଲାଜ ମାଡ଼ିବ । ପିଲା ଚାରିପାଞ୍ଚ ବର୍ଷର ହେଲେ ଯାଇ ବାପାଦାଦାଙ୍କର ଦୃଷ୍ଟିକୁ ଆସିବ । ସେମାନେ ତାକୁ ଧମକେଇବେ, ଆକଟ କରିବେ, ଲେଖାପଢ଼ା ଶିଖେଇବେ ।

ଏ ଅବସ୍ଥାରେ ଦାଦା ହେରିକାଙ୍କର ନୂଆ ପ୍ରକାରର କାରବାର ଏକଦମ୍ ବୈପ୍ଲବିକ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମେ ପିଲାମାନେ ବି ବୁବୁର କାମ ଦାମରେ ଟିକେ ଟିକେ ହାତ ଲଗାଉ । ଏ ନୂଆ ଶିଶୁପାଳନ ପଦ୍ଧତି ଆମକୁ ଖୁବ୍ ଭଲ ଲାଗୁଥାଏ । ବିଶ୍ୱଦା, ବଳିଆଦା ପ୍ରଭୃତି ଯେଉଁମାନେ ଆମ ଘରେ ବା ଅଣଖିଆରେ ରହୁଥିଲେ, ସେମାନେ ବି ଏଥିରେ ସାହାଯ୍ୟ କରୁଥିଲେ । କ୍ରମେ ଦାଦାର ବନ୍ଧୁମାନେ ଓ ଆଉ ଅନେକ ଏ ନୂଆ ପଦ୍ଧତି ଦ୍ୱାରା ଅନୁପ୍ରାଣିତ ହେଲେ ଓ ସେପରି ଆରମ୍ଭ କଲେ ।

ତେବେ ଏଥିରେ ଗୋଟିଏ କେଁ ଥିଲା । ସାନପିଲା ମୂଳରୁ ଅଲଗା ଶୋଇବା ଅଭ୍ୟାସରେ ପଡ଼ିବା ଉଚିତ୍ ଓ ଶୁଆଇବା ବେଳେ ବା ରାତିରେ ତାକୁ କୋଳରେ ଧରିବା ବା ଧାପୁଡ଼ା ଥାପୁଡ଼ି କରିବା ଉଚିତ ନୁହେଁ ବୋଲି ଟ୍ରୁବୀ କିଙ୍ଗଙ୍କର ପରାମର୍ଶ । ତେଣୁ ବୁବୁକୁ ଏକୁଟିଆ ଶୁଆଇ ଦେଇ ଖୁଡ଼ୀ ହେରିକା ଚାଲି ଆସନ୍ତି । ଦିନେ ଦିନେ ବିଛଣାରେ ପଡ଼ି ବୁବୁ ଚିତ୍କାର କରି କାନ୍ଦେ, କିନ୍ତୁ କେହି କୌଣସି ଧ୍ୟାନ ଦିଅନ୍ତି ନାହିଁ । ଦାଦା ଓ ଖୁଡ଼ୀ ଚୁପ୍‌ଚାପ୍ ହୋଇ ଏକପ୍ରକାର ଲୁଚି ରହନ୍ତି । ସେ କାନ୍ଦି କାନ୍ଦି ଶୋଇପଡ଼େ । ବାପା ଏଥିରେ ବିରକ୍ତ ହୁଅନ୍ତି । ତାଙ୍କୁ ଏ କଥାଟା ଭାରି ଖରାପ ଲାଗେ । ପରେ ମନୋବିଜ୍ଞାନବିତ୍‌ମାନେ ପିଲାଙ୍କୁ ଏଭଳି ଅଲଗା ଶୁଆଇବା, କନ୍ଦାକଟା କଲେ ନ ଧରିବା ଆଦି କଥାକୁ ନାକଚ୍ କରି ଦେଲେଣି । ଖାଇବା ସମୟ ମଧ୍ୟ ଏତେ ଘଣ୍ଟା ମିନିଟ୍ ଧରି କଡ଼ାକଡ଼ି ନ କରି ଭୋକ କଲେ ଖାଇବାକୁ ଦେବା ଉଚିତ୍ ବୋଲି ସୁପାରିଶ କଲେଣି । କିନ୍ତୁ ମୁଖ୍ୟ କଥାଟା ହେଲା ଯେ ପିଲା ମଣିଷ କରିବା ଗୋଟାଏ ଗୁରୁତ୍ୱପୂର୍ଣ୍ଣ କାମ ଓ ଆନନ୍ଦଦାୟକ ମଧ୍ୟ ଏବଂ ସେଥିରେ ପୁରୁଷମାନେ ମଧ୍ୟ ସହଯୋଗ କରିବା ଚାହି, ଗତାନୁଗତିକ କୁସଂସ୍କାରପୂର୍ଣ୍ଣ ଢଙ୍ଗ ବଦଳିବା ଚାହି । ଏ କଥାଟା ଆଜିକାଲି ସେବ ଅପେକ୍ଷା ଅଧିକ ବ୍ୟାପକ ଭାବରେ ଉପଲବ୍ଧ କରାଗଲାଣି ବୋଲି ମନେ ହେଉଛି ।

# ଦାସେ ଆପଣେ ଓ ଏଣ୍ଡ୍ରୁଜ୍

୧୯୨୭ ରେ ଦୀନବନ୍ଧୁ ଏଣ୍ଡ୍ରୁଜ୍ କଟକ ଆସି ଆମ ଘରେ ରହିବା କଥା ପୂର୍ବରୁ ଲେଖିଛି । ସେ ବର୍ଷ ବୈତରଣୀରେ ପ୍ରବଳ ବନ୍ୟା ଆସି ବହୁତ କ୍ଷତି କଲା । ରେଲ୍ ପୋଲର ଲୁହା ଗାର୍ଡ଼ର ସୁଦ୍ଧା ପେଲି ଫିଙ୍ଗି ଦେଲା । ଏଣ୍ଡ୍ରୁଜ୍ ବନ୍ୟା ସାହାଯ୍ୟ କାମରେ ଆସିଲେ ଓ ଆମ ଘରେ ତାଙ୍କର ଆସ୍ଥାନ ହେଲା । ବହୁତ ଲୋକ ତାଙ୍କ ପାଖକୁ ଯିବା ଆସିବା କରୁଥାନ୍ତି । ସେମାନଙ୍କ ଭିତରେ ଦାସେ ଆପଣେ ବି ଥାନ୍ତି । ସତ କହିବାକୁ ଗଲେ ଦାସେ ଆପଣେଙ୍କ ବିଷୟରେ ସେତେବେଳେ ମୁଁ ବେଶି କିଛି ଜାଣି ନ ଥାଏ । ବକୁଳ ବନର ଜାତୀୟ ବିଦ୍ୟାଳୟ କଥା ଅବଶ୍ୟ ଶୁଣିଥାଏ ଓ ତାହା ଆଉ ନାହିଁ ଶୁଣି ମନଟା ଖରାପ ବି ହେଉଥାଏ । ଯାହାହେଉ, ଦାସେ ଆପଣେଙ୍କୁ ମୁଁ ସେତେବେଳେ ଫଟୋ ଉଠାଇବା ଯୋଗ୍ୟ ବିଚାରୁ ନ ଥିଲି । ଦିନେ ଏଣ୍ଡ୍ରୁଜ୍‌ଙ୍କର ଫଟୋ ଉଠେଇବାକୁ ଚାହିଁଲି । ସେ ଧୋତି ପଞ୍ଜାବୀ ପିନ୍ଧି ଥା'ନ୍ତି । ସେ ଦାସେ ଆପଣେଙ୍କୁ ମଧ୍ୟ ଭିଡ଼ି ଆଣି କୁଣ୍ଢେଇ ଧରି ଛିଡ଼ା ହେଲେ । ମୁଁ ବିଶେଷ ସନ୍ତୁଷ୍ଟ ହେଇ ନ ଥିଲି । ପରେ ସେ ଅମୂଲ୍ୟ ଫଟୋ ଖଣ୍ଡକର ମହତ୍ତ୍ୱ ବୁଝିଲି । ୧୯୪୨ ରେ ଓଲଟ ପାଲଟରେ ସେ ଫଟୋ ଓ ତା'ର ନେଗେଟିଭ୍ ସୁଦ୍ଧା କୁଆଡ଼େ ହଜିଗଲା ।

ସେତେବେଳେ ଦୁଇଜଣ ଗୋରା ପାଦ୍ରୀ ଏଣ୍ଡ୍ରୁଜ୍‌ଙ୍କ ପାଖକୁ ନିୟମିତ ଆସୁଥା'ନ୍ତି । ଜଣେ ରେଭରେଣ୍ଡ୍ ଟକର, ଧାରୁଆ ନାକ ମୁହଁ, ବୋଧହୁଏ ଆମେରିକାନ୍ ଆଉ ଜଣେ ଗେଡ଼ା, ଚନ୍ଦାମୁଣ୍ଡିଆ, ରେଭରେଣ୍ଡ୍ ପପ୍‌ଲୀ । ଏ କଟକର କୌଣସି ଗିର୍ଜା ସହିତ ବା ୱାଇ.ଏମ୍.ସି.ଏ. ସହିତ ସଂପୃକ୍ତ ଥିଲେ ।

ଏଣ୍ଡ୍ରୁଜ୍ ଅତି ସାଦାସିଧା, ନିଷ୍କପଟ, ହୃଦୟବାନ୍ ମହାପୁରୁଷ । ଆମ ଘରେ ସେ ରହିବା ଦ୍ୱାରା କେହି ଜଣେ ବାହାରର ଲୋକ ରହିଛନ୍ତି ବୋଲି ମନେ ହେଉନଥାଏ । ତାଙ୍କ ବିଷୟରେ ଖୁଡ଼ୀ ଓ ଅନ୍ୟମାନଙ୍କଠାରୁ ଅନେକ କାହାଣୀ ଶୁଣିଥିଲୁ । କେମିତି ସେ ରାତିରେ ଟ୍ରେନ୍‌ରୁ ଓହ୍ଲାଇବାବେଳେ ମୋଜାର ଯୋଡ଼ି ଖୋଜି ନ ପାଇ ଦୁଇ ଗୋଡ଼ରେ ଦୁଇ ରଙ୍ଗର ମୋଜା ପିନ୍ଧି ବାହାରିଲେ । କେମିତି ଦିନେ ବର୍ଷାରେ ଯିବାକୁ ଛତା ନ ପାଇ ଗୋଡ଼ପୋଛା ଅଖାକୁ ମୁଣ୍ଡରେ ପକେଇ ବାହାରିଲେ, ଇତ୍ୟାଦି । ତାଙ୍କର ସରଳତା ଯୋଗୁଁ ସେ ଆମକୁ ଭାରି ଭଲ ଲାଗୁଥାନ୍ତି । ସେତେବେଳେ ଆମର ବିଲେଇର ଦୁଇଟା ଛୁଆ ହେଇଥାନ୍ତି । ସେ ଛୁଆକୁ ସେ କେମିତି ଦେଖି ପ୍ରଶଂସା କରିବେ ସେଥିପାଇଁ ଆମେ ଭାରି ହାଇଁପାଇଁ ହେଉଥାଉ ।

ଏଣ୍ଡ୍ରୁଜ୍ ଏହାପରେ ଅନେକ ଥର ଓଡ଼ିଶା ଆସିଥିଲେ । ଗଡ଼ଜାତ ଆନ୍ଦୋଳନ ବେଳେ ବି ଆସିଥିଲେ । ସେତେବେଳେ ଢେଙ୍କାନାଳର ଆନ୍ଦୋଳନକାରୀଙ୍କ ଦେହରେ ତତଲା ଲୁହାରେ "ନି.ହା." ନିମକହାରାମ - ବୋଲି ଦାଗି ଦିଆ ହୋଇଥିଲା । ସେସବୁ ଘା'କୁ ଦେଖି ଏଣ୍ଡ୍ରୁଜ୍ ଏତେ ଅଭିଭୂତ ହେଇ ପଡ଼ିଲେ ଯେ ତାଙ୍କୁ ପ୍ରବଳ ଜ୍ୱର ଆସିଗଲା । ତାଙ୍କ ସହିତ ଶେଷ ଦେଖା ୧୯୩୯, ପୁରୀରେ । ସେଠି ସେ କିଛିଦିନ ଆସି ସର୍କିଟ୍ ହାଉସ୍‌ରେ ରହିଥିଲେ ।

୧୯୨୮ ରେ କଲିକତାରେ କଂଗ୍ରେସ ହେଲା । ଆମେସବୁ ସଦଳବଳେ ଗଲୁ । ପାର୍କସର୍କସ୍ ଅଞ୍ଚଳରେ ଅଧିବେଶନର ବ୍ୟବସ୍ଥା ହେଇଥାଏ । ସେତେବେଳେ ସେଇଟା ଏକରକମ ସହର ବାହାରେ, ଏକ ଅପନ୍ତରା ଜାଗା । ପ୍ରତିନିଧିମାନଙ୍କ ପାଇଁ କରଗେଟ୍ ଟିଣ ଘର ତିଆରି ହେଇଥାଏ । ଅଧିବେଶନର ପ୍ୟାଣ୍ଡାଲ୍ ଖଦଡ଼ କନାର ତିଆରି । ମସ୍ତବଡ଼ । ସଭାପତି ହୋଇଥା'ନ୍ତି ପଣ୍ଡିତ ମୋତିଲାଲ ନେହେରୁ । ସୁଭାଷ ବାବୁ ସ୍ୱେଚ୍ଛାସେବକମାନଙ୍କର ପ୍ରଧାନ ସେନାପତି ହେଇଥା'ନ୍ତି । ରୀତିମତ ସାମରିକ ଅଫିସରଙ୍କ ପରି ପୋଷାକ । ଟୋପି, ପ୍ୟାଣ୍ଟ, ବେଲ୍ଟ, ବୁଟ ସବୁ । ଅନ୍ୟ କର୍ମକର୍ତ୍ତାମାନେ ବି ସେହିଭଳି ପୋଷାକ ପିନ୍ଧିଥା'ନ୍ତି । ସ୍ୱେଚ୍ଛାସେବକମାନେ ଖାକୀ ପୋଷାକରେ ଥା'ନ୍ତି । ସଭାପତିଙ୍କୁ ପାଛୋଟି ନେଇ ଯେଉଁ ଶୋଭାଯାତ୍ରା ହେଲା ସେଥିରେ ସାମରିକ ପୋଷାକରେ ଅଶ୍ୱାରୋହୀ, ମୋଟର ସାଇକେଲ ଆରୋହୀ, ପଦାତିକ, ମହିଳା ଓ ପୁରୁଷ ସ୍ୱେଚ୍ଛାସେବକମାନେ କୁଚ୍‌କାଓ୍ୱାଜ୍ ଆମ ପିଲାଙ୍କ ମନକୁ ଖୁବ୍ ପାଇଥିଲା । ସେଇ ଅଧିବେଶନରେ ଦର୍ଶକ ଭାବରେ ଯୋଗଦେଇ ଅଖିଳ ଭାରତୀୟ ନେତାମାନଙ୍କୁ ଦେଖିବାର ସୁଯୋଗ ମତେ ପ୍ରଥମ କରି ମିଳିଥିଲା ।

ଏଇଠି ମୋର ସୁଭାଷ ବାବୁଙ୍କ ସହିତ ପ୍ରଥମ ଓ ଶେଷ ସାକ୍ଷାତ । ବର୍ଷକ ଭିତରେ ଡୋମିନିୟନ୍ ଷ୍ଟାଟସ୍ ନ ମିଳିଲେ ପୂର୍ଣ୍ଣ ସ୍ୱରାଜ୍ୟର ଲକ୍ଷ୍ୟ ଘୋଷଣା କରାଯିବ ବୋଲି ଗାନ୍ଧୀଜୀଙ୍କ ସମର୍ଥନରେ ପ୍ରସ୍ତାବ ଆସିଲା । ଗୃହୀତ ବି ହେଲା । ମାତ୍ର ସୁଭାଷ ବାବୁ ଓ ଜଓ୍ୱାହରଲାଲ ହେଉଁଥିଲେ ଚାହୁଁଥାନ୍ତି ଏପରି ବର୍ଷେ ସମୟ ନ ଦେଇ ପୂର୍ଣ୍ଣ ସ୍ୱରାଜ୍ୟ ଲକ୍ଷ୍ୟର ଘୋଷଣା ତୁରନ୍ତ କରାଯାଉ । ଏଇ ମର୍ମରେ ଆସିଥିବା ସଂଶୋଧନ ପ୍ରସ୍ତାବ ସପକ୍ଷରେ ମତ ସଂଗ୍ରହ ପାଇଁ ସୁଭାଷ ବାବୁ ପ୍ରତିନିଧି ଶିବିରରେ ବୁଲୁଥାନ୍ତି । ଓଡ଼ିଶା ଶିବିରକୁ ଆସି ସେ ବାପାଙ୍କୁ ଖୋଜିଲେ । ବାପା କୁଆଡ଼େ ଯାଇଥାନ୍ତି । ଜଣେ କିଏ ମତେ ଚିହ୍ନେଇ ଦେଲେ । ସେ ମତେ ବେଶ୍ ଶୁଦ୍ଧ ଓଡ଼ିଆରେ ପଚାରିଲେ – "ତୁମ ବାପା କୁଆଡ଼େ ଯାଇଛନ୍ତି ?"

## ରାମଦାସ ବାବାଜୀ ଓ ମଧୁବାବୁ

ବାବାଜୀ ରାମଦାସଙ୍କ କଥା ଅନେକ ଆଗରୁ ଲେଖିବାର ଥିଲା । ତାଙ୍କର ଘର କେଉଁଠି ଥିଲା ମୁଁ ଜାଣି ନାହିଁ । ସେ କେମିତି ଆସି ଆଠଗଡ଼ ରାଜ୍ୟରେ ପହଞ୍ଚି ଥିଲେ ଓ ସେଇଠି ପିଲାଦିନ ବିତେଇ ଥିଲେ । ସେ ପିଲାଦିନୁଁ ବାବାଜୀ ହେଇ ଯାଇଥିଲେ । ୧୯୨୧ କି ୨୨ ରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସାଧାରଣ କ୍ଷେତ୍ରକୁ ଆସିଲେ । ସେ ଅଳକାଶ୍ରମରେ ମଧ ରହୁଥିଲେ । ତା' ପରେ ଆମ ଘରେ ରହିଲେ । ବାବାଜୀ ତ୍ରିପଣ୍ଡ କଳା, ଚେପ୍‌ଟା ନାକ, ଝାଂପୁରା କୁଞ୍ଚକୁଞ୍ଚିଆ ବାଳ ଓ ଅଯତ୍ନ ଲାଳିତ ଦାଢ଼ୀ । ସେ ଗେଡ଼ା ଥିଲେ ଓ ଗଢ଼ଣଟା ଖୁବ୍ ନିଦା ଓ ମଜବୁତିଆ ଥିଲା । ନାକ ଅଗରୁ କପାଳ ଯାଏ ଚଉଡା ଚନ୍ଦନ ଓ ସିନ୍ଦୁରର ଚିତା, ଗଳାରେ ରୁଦ୍ରାକ୍ଷ ମାଳା । ଆଖି ଦୁଇଟି ସାନ ସାନ ସବୁବେଳେ ହସହସ । ଲେଙ୍ଗୁଟି ପିନ୍ଧିଥାନ୍ତି । ପଦାକୁ

ବାହାରିବା ବେଳେ ଆଣ୍ଠୁ ତଳକୁ ଝୁଲିଥିବା ମୋଟ ଧଳା ଖଦଡ଼ ଆଲଖାଲ୍ଲା ଗଳେଇ ପକାନ୍ତି । ସକାଳୁ ସ୍ନାନାଦି ସାରି ଦୋତାଲାର ବାହାର ବାରଣ୍ଡାରେ ଆସନ ବିଛେଇ ବସି ଘଣ୍ଟାଏ କି ବେଶୀ ପୂଜାପାଠ କରନ୍ତି । ତା' ଭିତରେ ସେ ଖୁବ୍ ବଡ଼ ପାଟିରେ ଶିବ ସ୍ତୋତ୍ର ପାଠ କରନ୍ତି । "ଧଗଦ୍ଧଗଧଦ୍ଧଗଜ୍ଜ୍ୱଳେ ଲଲାଟପଟ ପାବକେ" ମତେ ଭାରି ମଜା ଲାଗେ ।

ତାଙ୍କର ଗୋଟାଏ ସ୍ମୃତି ମନେ ଅଛି । ୧୯୨୪ କି ୨୫ ରେ କଟକରେ କ'ଣ ପାଇଁ ହରତାଳ ହେଉଥାଏ । ୧୪୪ ଧାରା ବି ଜାରୀ ହେଉଥାଏ । ବାବାଜୀ ଦୁଇଟା ପଟାରେ ଲେଖା ହରତାଳ ପାଳନ ନିବେଦନ ଗୋଟାଏ ଆଗରେ ଗୋଟାଏ ପଛରେ କାନ୍ଧରେ ଝୁଲେଇ କଟକ ସହରଯାକ ବୁଲି ଅଭିଜ୍ଞତା ବର୍ଣ୍ଣନା କରୁଥାନ୍ତି । ବାଟଯାକ କିପରି ସେ ମୁହଁବନ୍ଦ ବୋଲି ଓଠ ଆଗରେ ବିଶି ଆଙ୍ଗୁଠି ଦେଇ ଲୋକଙ୍କୁ ସଂକେତ କରୁଥାନ୍ତି ଓ ଲୋକେ କିପରି ତାଙ୍କୁ ବୁଝି ପସନ୍ଦ କରି ସମର୍ଥନ ସୂଚକ ସଂକେତ କରିଥାନ୍ତି ତାହାର ବର୍ଣ୍ଣନା ସେ ଦେଇ ଚାଲିଥିଲେ । ତାଙ୍କୁ କୁଆଡ଼େ ସେତେବେଳେର ଇଂରେଜ ଜିଲ୍ଲା କଲେକ୍ଟର ଡାକି ନେଇ ଧମକେଇ ଥିଲେ ଯେ ତୁମେ ସରକାର ବିରୋଧରେ କାହିଁକି ଲାଗିଛ ? ଗୋଟାଏ ବାଘକୁ ମାରିବାକୁ ମୋର ଅଢ଼େଇ ଟଙ୍କାର ଗୁଳି ଲାଗିବ । ତୁମକୁ ମାରିବାକୁ ଚାରିଅଣା ବି ଲାଗିବ ନାହିଁ । ତୁମେ କି ସାହସରେ ଇଂରେଜ ସରକାର ସାମନାରେ ଛିଡ଼ା ହୋଇଛ ? ବାବାଜୀ ତାଙ୍କୁ କ'ଣ ସବୁ ଗାଳି ଗୁଲଜ ଶୁଣାଇ କହିଲେ – "ଆରେ ତୋର ହିମ୍ମତ ଅଛି ତ ମାର ଦେଖି କେମିତି ମାରିବୁ !" ଏହା କହି ସେ ଛାତି ଖୋଲି ଛିଡ଼ା ହେଇଗଲେ । ବିଚରା ସାହେବ ତାଙ୍କୁ ଭଗେଇ ଦେଲା ।

ବାବାଜୀ ଏକାବେଳକେ ଆମର ଘର ମଣିଷ ହେଇଯାଇଥିଲେ । ବାପାଙ୍କୁ 'ଭାଇ' ଡାକନ୍ତି, ବୋଉକୁ 'ଭାଉଜ' ଓ ଭାରି ମାନନ୍ତି । ସବୁପ୍ରକାର କାମରେ ସେ ଆଗୁଆ ଥିଲେ । ୧୯୨୮-୨୯ ବେଳକୁ ସେ ହୃଷିକେଶ ଚାଲିଯାଇ ସେଠି ଜପତପ କଲେ ଓ ଗୋଟିଏ 'ମନକାମନାସିଦ୍ଧ ହନୁମାନ' ମନ୍ଦିର ସ୍ଥାପନ କରି ତାରି ସେବାପୂଜାରେ ରହିଲେ । ତାପରେ ସେ ବରାବର ବର୍ଷେ ଦୁଇବର୍ଷରେ ଥରେ ଓଡ଼ିଶା ଆସନ୍ତି ଓ ସମସ୍ତଙ୍କୁ ସଂଖୋଳି ଯା'ନ୍ତି । ୧୯୬୦ ବେଳକୁ ତାଙ୍କର ସେଇ ହୃଷିକେଶରେ ଦେହାନ୍ତ ହେବା ସମାଚାର ମିଳିଲା ।

ମିଷ୍ଟର ଦାସ୍ ବା ମଧୁବାବୁ-ସେତେବେଳେ ସମସ୍ତେ ତାଙ୍କୁ ମିଷ୍ଟର ଦାସ କହୁଥିଲେ - ଆମ ଘରକୁ କେବେ କେମିତି ବୁଲି ଆସନ୍ତି । ଥରକର କଥା ମନେ ଅଛି, ଆସି ଦାଣ୍ଡପିଣ୍ଡାରେ ଆରାମ୍ କେଦାରାରେ ବସିଲେ । ଧୋତି କୁର୍ତ୍ତା ପିନ୍ଧିଥାନ୍ତି । ମତେ ନେଇ ତାଙ୍କ ପାଖରେ ଛିଡ଼ା କରାହେଲେ । ସେ ମତେ ଯାହାସବୁ ପଚାରିଲେ ମୁଁ ମୋର ସ୍ୱସିଂଭାବ ସୁଲଭ ଜିଦି ମିଶ୍ରିତ ଲାଜକୁଳା ପ୍ରକୃତି ଯୋଗୁ ସେ ସବୁର ଗୋଟାଏ ହେଲେ ଉତ୍ତର ଦେଲି ନାହିଁ । ସେ ଅନେକ ସମୟରେ ବଙ୍ଗଳା କହୁଥିଲେ । ସେ ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରୁ ନ ଥିବାରୁ କଂଗ୍ରେସ ମହଲରେ ତାଙ୍କ ପ୍ରତି ଅନାଦର ଭାବ ଥାଏ । ବିଶେଷ କରି ପଡ଼ିହାରୀ ମହାଶୟ ତାଙ୍କର 'ଦାମ୍ କମେଇବା' ଭଳି ବିଷୟରେ ବର୍ଣ୍ଣନା କରନ୍ତି । ସେ କିପରି ୧୯୨୧ ନା ୨୨

ରେ ବିହାର ଓଡ଼ିଶା ଲାଟଙ୍କର ପରାମର୍ଶଦାତା ମଣ୍ଡଳୀରେ ମନ୍ତ୍ରୀ ହେବା ପରେ ଆସି କଟକ ଷ୍ଟେସନରେ ଓହ୍ଲେଇ ଦେଖିଲେ ଯେ ତାଙ୍କୁ ସ୍ୱାଗତ କରିବା ପାଇଁ ସେଠି କେହି ନାହାନ୍ତି । ସେଠୁ ସେ ମନ୍ତବ୍ୟ କଲେ - "ମତେ ଷ୍ଟେସନରେ ଝାଡୁଦାରଟା ବି ସଲାମ କଲା ନାହିଁ ।" ଗଡ଼ଜାତ ରାଜାମାନଙ୍କୁ ଡରେଇ ଧମକେଇ ଟଙ୍କା ଆଦାୟ କରିବାର କାହାଣୀ ବି ଶୁଣୁ । ମହତାବବାବୁ, ଦାଦା ଓ ଟୁଙ୍ଗୁମାମୁଁ ହେରିକା କିପରି ତାଙ୍କର ଏକ ସାଧାରଣ ସଭା ଭଣ୍ଡୁର କରି ଦେଇଥିଲେ ତାର ବି କୌତୂହଳପ୍ରଦ ବର୍ଣ୍ଣନା ଟୁଙ୍ଗୁମାମୁଁଙ୍କ ଠାରୁ ଶୁଣିଥିଲି ।

ଅନ୍ୟଦିଗରେ ତାଙ୍କର ତୀକ୍ଷ୍ଣବୁଦ୍ଧି, ପ୍ରତିଭା ଓ କର୍ମନିପୁଣତାର କାହାଣୀ ସବୁ ବୋଉଠାରୁ ଶୁଣୁ । କଲିକତାରୁ କିଏ ଡାକ୍ତର ତାଙ୍କୁ ଦେଖିବା ପାଇଁ ଆସିଥିଲେ । ଡାକ୍ତର ଆସିବା ପୂର୍ବରୁ ସେ ରୋଗ ବିଷୟରେ ବହିପତ୍ର ପଢ଼ି ସେ ଡାକ୍ତରଙ୍କ ସଙ୍ଗେ ରୀତିମତ ବିଶେଷଜ୍ଞ ପରି ଆଲୋଚନା କଲେ । ବାପା କହୁଥିଲେ ଯେ ଭାଷାର ସ୍ୱଷ୍ଟତା ଓ ନିର୍ଭୁଲତା ଉପରେ ତାଙ୍କର ଭାରି ଜୋର ଥିଲା । ଶବ୍ଦର ସଂଜ୍ଞା ନିରୂପଣ ପ୍ରଥମେ ନିର୍ଭୁଲ ଭାବରେ କରିବା ଚାହି ବୋଲି ସେ କହୁଥିଲେ ଓ ଶିକ୍ଷିତ ଲୋକମାନଙ୍କୁ ଗୋଟାଏ ଗୋଟାଏ ସାଧାରଣ ଶବ୍ଦର ଯଥାର୍ଥ ସଂଜ୍ଞା କ'ଣ ବୋଲି ପଚାରି ଦେଇ ଅପ୍ରସ୍ତୁତ କରି ଦେଉଥିଲେ । ମିଷ୍ଟର ଦାସ୍ କିପରି ପକ୍‌କା କାମ ଚାହୁଁଥିଲେ ତାର ବର୍ଣ୍ଣନା ଶୁଣିଛୁ ଯେ ଉକ୍ରଳ ଟ୍ୟାନେରୀରେ ଥରେ କେତେ ଶହ ହଳ ଜୋତାର ତିଆରିରେ କ'ଣ ସାମାନ୍ୟ ତ୍ରୁଟି ରହିଗଲା । ଟ୍ୟାନେରୀର ସୁନାମ ଦୃଷ୍ଟିରୁ ସେସବୁ ଜୋତା ନଷ୍ଟ କରି ଦିଆ ହେଲା । ଏହିପରି ତାଙ୍କ ବିଷୟରେ ନାନା କଥା ଶୁଣି ତାଙ୍କ ପ୍ରତି ମୋର ଗୋଟାଏ ମିଶ୍ରିତ ଭାବ ହୋଇଥିଲା ।

ଆମ ପିଲାଦିନେ ତ ଟ୍ୟାନେରୀର ଅବସ୍ଥା ଖରାପ ହେଇଯାଇଥାଏ । ୧୯୨୫ ରେ ଗାନ୍ଧୀଜୀ ଥରେ ଓଡ଼ିଶା ଆସିଥିଲେ ଏଇ ଟ୍ୟାନେରୀର ପରିଚାଳନା ବିଷୟରେ ମଧୁବାବୁଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ । ଗାନ୍ଧୀଜୀଙ୍କର ଇଚ୍ଛା ଥିଲା ଏ ଟ୍ୟାନେରୀକୁ ବଞ୍ଚେଇ ରଖିବା ପାଇଁ ସେ ତାର ଦାୟିତ୍ୱ ନେବେ । ଗାନ୍ଧୀଜୀ ସେଥର ଆସି ମଧୁବାବୁଙ୍କ ଘରେ ହିଁ ରହିଥିଲେ । ତେବେ ଗାନ୍ଧୀଜୀ ଯେପରି ଚାହୁଁ ଥିଲେ ସେପରି ହେଇପାରିଲା ନାହିଁ ଓ ପରେ ଟ୍ୟାନେରୀ ଉଠିଗଲା ।

ଥରେ ୧୯୨୬ କି ୨୭ ରେ ବୋଉ ଓ ବଡ଼ମା'ଙ୍କ ସାଙ୍ଗରେ ତାଙ୍କ ଘରକୁ ଯାଇଥିଲି । ସେଠି ସେ ମତେ କ'ଣ ସବୁ ପଚାରିଲେ । ମୋତେ ସେ ମୋର ପଢ଼ାପଢ଼ି ବିଷୟରେ ପଚରା ପଚରି କରି ପ୍ରଶ୍ନ କଲେ - କଟକର ଲୋକସଂଖ୍ୟା କେତେ ? ମୁଁ ଅମ୍ଳାନ ବଦନରେ ଜବାବ ଦେଲି ସାତ ହଜାର । ପୁଣି ପ୍ରଶ୍ନ- କଲିକତାର କେତେ ? ଉତ୍ତର, ଦେଢ଼ ଲକ୍ଷ । ତାପରେ ଘରକୁ ଆସି ଭୂଗୋଳ ବହି ଖୋଲି ଦେଖେ ଯେ କଟକର ଲୋକସଂଖ୍ୟା ତେପନ ହଜାର, କଲିକତାର ତେର ଲକ୍ଷ । ନିଜକୁ ଭାରି ବୋକା ବୋକା ମନେ ହେଲା । ଅସଲ କଥା ତା ପୂର୍ବରୁ କଟକରେ ଗାନ୍ଧୀଜୀଙ୍କର ସଭା ମ୍ୟୁନିସିପାଲିଟି ପଡ଼ିଆରେ ହେଇ ଯାଇଥାଏ । ବିରାଟ

ସଭା । ସାରା କଟକର ଲୋକ ସଭାକୁ ଭାଙ୍ଗି ପଡ଼ିଛନ୍ତି ଓ ସଭାରେ ପାଞ୍ଚ ହଜାର ଲୋକ ହେଇଥିଲେ ବୋଲି ବାପା ହେରିକା କଥାବାର୍ତ୍ତା କରୁଥିବାର ମୁଁ ଶୁଣିଥିଲି । ଭୂଗୋଳର ସେ ସବୁ ଅଂଶ ପଢ଼ି ନଥିଲି ଏଇ କଥାଟା ମନେ ପଡ଼ିଲା ଓ ଅନୁମାନ କଲି ଯେ ସଭାକୁ ପାଞ୍ଚ ହଜାର ଆସିଥିଲେ ତ ସହରର ମୋଟ ଲୋକ ସାତହଜାର ହେଇଥିବେ । ଆଉ କେତେ ? ଯାହାହେଉ କଟକ ଓ କଲିକତାର ଅନୁପାତଟା ଠିକ୍ ଥିଲା । ଦାସେ ମୋର ଉତ୍ତର ଶୁଣି ମୋ ବିଷୟରେ କି ଧାରଣା କଲେ କେଜାଣି ?

## ଖାନୁ ମିଆଁ ଓ ମହାପାତ୍ର ସାହେବ

ସେଇ ସମୟରେ ଚୁନୀକୁ ଗୀତ ବାଦ୍ୟ ଶିଖେଇବା ବ୍ୟବସ୍ଥା ହେଲା । ଶିଖେଇବାକୁ ଉପରଓଳି ଖାନୁ ମିଆଁ ଓରଫ୍ ଖାନ୍ ମହମ୍ମଦ ଆସନ୍ତି । ତାଙ୍କର ବୟସ ସେତେବେଳେ ଷାଠିଏ ଖଣ୍ଡେ ହେବ । ବେଶ୍ ବଳିଷ୍ଠ ଗଢ଼ଣ, ଲମ୍ବା ପାଚିଲା ବାଳ ଓ ଦାଢ଼ୀରେ ଆବୃତ ସୌମ୍ୟ ମୁଖମଣ୍ଡଳ । ଗେରୁଆ ଲୁଙ୍ଗି ଓ ଫତେଇ ଭଳି କୁର୍ତ୍ତା ପିନ୍ଧନ୍ତି । ଚାଲି ଚଳଣରେ ଭକ୍ତର ଭାବ । ଖାନୁ ମିଆଁ ସେ ସମୟରେ କଟକର ପ୍ରସିଦ୍ଧ ସଂଗୀତ ଶିକ୍ଷୀଙ୍କ ଭିତରେ ଜଣେ ଥିଲେ । ଚୁନୀ ହାରମୋନିୟମ୍‌ରେ ଗୀତ ଓ ସୀତାର ଶିଖୁଥାଏ "ସାସା ଗାଗା ପାପା ନିନି ସାନିଧାରେ ସାନିଧା- ଓ "ଡା ଡିରି ଡା" କଲାବେଳେ ମୁଁ ବି ସେସବୁ ଯନ୍ତ୍ରରେ ଥରେ ଥରେ ହାତ ଲଗାଏ । "ଭାରତ ମୋ ମା" ଗୀତଟା ହାରମୋନିୟମ୍‌ରେ ଏକରକମ ବଜେଇ ଶିଖି ଯାଇଥିଲି । ଗୀତ ବାଦ୍ୟ ଶୁଣିବାକୁ ଭଲ ଲାଗୁଥିଲେ ବି ଶିଖିବାର ଖାସ୍ ଉତ୍ସାହ ନ ଥିଲା । ବୋଧହୁଏ ଏଇ ଧାରଣା ଯୋଗୁଁ ଯେ ସେସବୁ ଝିଅମାନଙ୍କର ଶିଖିବା ବିଷୟ । ଖାନୁ ମିଆଁ ଅନେକ ଭକ୍ତିମୂଳକ ଗୀତ ମଧ ଲେଖିଥିଲେ । ତାଙ୍କର ଶେଷ ସମୟ ଘୋର ଦାରିଦ୍ର୍ୟ ଭିତରେ ବିତିଲା । ତାଙ୍କର ପୁଅମାନେ ଗୁଡ଼ି ଉଡ଼େଇବା ଛଡ଼ା ଅନ୍ୟ ଯୋଗ୍ୟତା ହାସଲ କଲେ ନାହିଁ ବୋଲି ସେ ଦୁଃଖ କରୁଥିଲେ ।

ଗୁଡ଼ି କଥାରୁ ମହାପାତ୍ର ସାହେବଙ୍କ କଥା ମନେ ପଡୁଛି । ମ୍ୟୁନିସିପାଲିଟିରେ ଚେୟାରମ୍ୟାନ୍ ହେଇ ଲୋକପ୍ରିୟ ହେବା ପାଇଁ ସେ ଥରେ ସନ୍‌ସାଇନ୍ ପଡ଼ିଆରେ ଗୁଡ଼ି ଉଡ଼ା ଓ ପେଞ୍ଚକଟା ପ୍ରତିଯୋଗିତା କରାଇଥିଲେ । ଏଥିରେ ଖାନୁ ମିଆଁଙ୍କର ଜଣେ ପୁଅ ପ୍ରଥମ ହେଇଥିଲେ । ମହାପାତ୍ର ସାହେବ ଜମାଦାର୍ ନା କନ୍‌ଷ୍ଟବଲ୍‌ରୁ ଉଠି ଉଠି ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ହେଇଥିଲେ । ମହା ରାଜଭକ୍ତ । ତାଙ୍କର ବଡ଼ ପୁଅ ଶାରଦା କଲିକତାରେ ପାଠ ପଢୁଥିଲାବେଳେ ଆତ୍ମହତ୍ୟା କରିଥିଲେ । ଶୁଣାଯାଏ ଯେ ତାଙ୍କର ସନ୍ତ୍ରାସବାଦୀଙ୍କ ସହିତ ସଂପର୍କ ଥିଲା । ମହାପାତ୍ରଙ୍କର ତଥ୍ୟ ଅନୁସନ୍ଧାନର ଚାପ ଏଡ଼େଇବା ପାଇଁ ସେ ଆତ୍ମହତ୍ୟା କଲେ । ମହାପାତ୍ର ସାହେବଙ୍କର ଅକ୍ଷୟ କୀର୍ତ୍ତି ହେଲା ୧୯୨୨ ରେ କଟକ ଜିଲ୍ଲାରେ ଘରପୋଡ଼ିର ଧୂମ୍ । ଅସହଯୋଗୀ "କଂଗ୍ରେସିଆ"ଙ୍କୁ ବଦନାମ୍ କରିବା ପାଇଁ ସାଦା ପୋଷାକ ପୁଲିସଙ୍କ ଦ୍ୱାରା କଟକ ସହରରେ ଓ ମଫସଲରେ କେତେ ଆଡ଼େ ସାହିମାନଙ୍କରେ ନିଆଁ ଲଗାଇ ଦେଉଥାନ୍ତି ଓ କଂଗ୍ରେସିଆ

ଘର ପୋଡୁଛନ୍ତି ବୋଲି ପ୍ରଚାର କରାଉଥାନ୍ତି । କିନ୍ତୁ ତାଙ୍କରି ନାଆଁ ହେଇଗଲା ଘରପୋଡ଼ିଆ ମହାପାତ୍ର । ସେତେବେଳେ ଦେଖୁ ପ୍ରତିଦିନ କଟକର ଦୁଇ ତିନି ସାହିରେ ନିଆଁ ଲାଗିବ । ସାରା ଆକାଶ ଧୂଆଁରେ ଆଚ୍ଛନ୍ନ ହୋଇଯିବ । ଦାଦା ହେରିକା ନିଆଁ ଲିଭେଇବା ପାଇଁ ଧାଇଁବେ ଓ ତେଣୁ ଗୋଟିପଣେ ଝୁଲ ପାଉଁଶ ବୋଲି ହେଇ ଭୂତ ସାଜି ଫେରିବେ । କେତେଥର ନିଆଁ ଲଗାଉଥିବା ଅବସ୍ଥାରେ ଧରାପଡ଼ି ପୁଲିସବାଲା ମାଡ଼ ବି ଖାଇଲେ । କିନ୍ତୁ କ୍ରମେ ଏ ବ୍ୟର୍ଥ ଓ ଧ୍ୱଂସମୂଳକ ଉଦ୍ୟମ ବନ୍ଦ ହେଇଗଲା । ଶ୍ରୀକୃଷ୍ଣ ମହାପାତ୍ରଙ୍କ ପ୍ରତି ବାପାଙ୍କର କିନ୍ତୁ କୌଣସି ଅସୂୟାଭାବ ନ ଥିଲା । ତାଙ୍କ ସହିତ ବେଶ୍ ସହୃଦୟ ସଂପର୍କ ରଖିଥିଲେ । ମହାପାତ୍ର ସାହେବଙ୍କ ଗୁଡ଼ି ପ୍ରତିଯୋଗିତାରେ ଶେଷ ଦୁଇଜଣଙ୍କ ପେଁଚ ଦୁଇ ଦିନଯାଏ ଚାଲିଥିଲା । ସାହିବାଲାଙ୍କ ଭିତରେ ବହୁତ ଉତ୍ତେଜନା ସୃଷ୍ଟି ହେଇଥିଲା ।

କଟକରେ ଆଗେ ଯେତେ ଗୁଡ଼ିଉଡା ଥିଲା ଏବେ କେମିତି କମିଗଲା ପରି ଜଣାଯାଉଛି । ମୁଁ ନିଜେ ଗୁଡ଼ି ଉଡ଼େଇବାରେ ବେଶି ଆଗୁଆ ନ ଥିଲି । ମା ବୋଧହୁଏ ସେଟାକୁ ନିରୁତ୍ସାହିତ କରୁଥିଲା । କିନ୍ତୁ କଟିଥିବା ଗୁଡ଼ି ସଂଗ୍ରହ କରି ରଖିବାରେ ମୋର ବହୁତ ଉତ୍ସାହ ଥିଲା । ଥରେ ଥରେ ଆଠଦଶଟା ଲେଖାଏଁ ସଂଗ୍ରହ କରି ରଖିଥାଏ । କାହାରିକୁ ଦିଏ ନାହିଁ କି ନିଜେ ଉଡାଏ ନାହିଁ । ସେତେବେଳେ କାଠଯୋଡ଼ିରେ ବଡ଼ି ନଈରେ ପହଁରିବା ଆଦିର କେତେ ଧୁମ୍ ଥିଲା । ଏବେ ତାହା ସେତେ ଦେଖାଯାଉ ନାହିଁ । ସକାଳ ଓ ଖରାବେଳ ଯାକ ପଂଝା ପଂଝା ପିଲା ଓ ଯୁବକ ପାଣିକୁ କୁଦୁଥିବେ, ଗୋତା ଲଗଉ ଥିବେ, ପହଁରୁଥିବେ, ଦିନଯାକ ହୋହା ଲାଗିଥିବ । ଖୋକନ୍ ହେରିକା ତ କାଠଯୋଡ଼ି ପହଁରି ପାରି ହେଉଥିଲେ । ବାପା ତ ଆଦୌ ପହଁରି ଜାଣି ନ ଥିଲେ । ଦାଦା ଅଳ୍ପ ଚିତ୍ ପହଁରା ଦେଇ ପାରେ । ଆମଘରେ ଏହାର ଚର୍ଚ୍ଚା ନ ଥିବାରୁ ଏଥିରେ ମୁଁ ବହୁତ ପଛରେ ଥିଲି । ଖରାଦିନେ ଅଳ୍ପ ପାଣିରେ ପହଁରା ଅଭ୍ୟାସ କରେ । ଅଳକାଶ୍ରମରେ କେନାଲ୍‌ରେ ଆହୁରି ଅଭ୍ୟାସ ହେଲା । ସତ୍ୟଭାମାପୁର ମାମୁଁ ଘରକୁ ଗଲେ ସେଠି କନକଦଣ୍ଡା ପୋଖରୀରେ ପହଁରେ । ତା' ପରେ କ୍ରମେ ବଡ଼ି ନଈରେ ବି ପହଁରିଲି । ତଥାପି ଏଥିରେ ମୁଁ ଅନ୍ୟ ପିଲାଙ୍କଠୁ ବହୁତ ପଛରେ ରହିଲି । ଖୋକନ୍ ହେରିକାଙ୍କର ତ ମୋଟେ ପାସଙ୍ଗରେ ପଡ଼ିବ ନାହିଁ । ପହଁରା ବିଷୟରେ ଖଣ୍ଡେ ବହି ମଗେଇ ସେଥିରୁ ପହଁରିବାର ବିଭିନ୍ନ ଶୈଳୀ, ଗୋତା ମାରିବା ଓ ଅନ୍ୟାନ୍ୟ କୌଶଳ କିଛି କିଛି ଆୟତ୍ତ କରି ଚଳନୀୟ ରକମର ଦକ୍ଷ ହେଇଗଲି ।

## ପରୀକ୍ଷା ଅନୁଭୂତି

ସ୍କୁଲ୍‌ରେ ପାଠ ନ ପଢ଼ିଲେ ବି ମୋର ମ୍ୟାଟ୍ରିକ୍ ପରୀକ୍ଷା ଦେବା ଦରକାର ବୋଲି ବାପା ବିଚାରିଲେ । ସେଥିପାଇଁ ଚନ୍ଦ୍ରଶେଖର ମାଷ୍ଟ୍ରେ ପ୍ୟାରୀମୋହନ ଏକାଡେମୀର ପ୍ରଧାନ ଶିକ୍ଷକ କି କାହାପାଖକୁ ମୋତେ ଦିନେ ନେଇଗଲେ । ସେ ମୋତେ ପଚରା ଉଚରା କରି

ସାବ୍ୟସ୍ତ କଲେ ଯେ ପରୀକ୍ଷା ଦେବାଭଳି ଯୋଗ୍ୟତା ମୋର ଅଛି । ସେଠୁ ମୁଁ ଏକ ଘରୋଇ ପ୍ରାର୍ଥୀରୂପେ ପରୀକ୍ଷା ଦେବା ପାଇଁ ପ୍ରସ୍ତୁତି ଚାଲିଲା । କଲେଜିଏଟ୍ ସ୍କୁଲରେ ପ୍ରିଟେଷ୍ଟ ଓ ଟେଷ୍ଟ ପରୀକ୍ଷା ଦେଲି । ସେତେବେଳେ ଟେଷ୍ଟ ପରୀକ୍ଷା ପାଇଁ ଛାତ୍ରଙ୍କ ଯୋଗ୍ୟତା ଯାଁଚ କରିବା ପାଇଁ ପୁଣି ପ୍ରିଟେଷ୍ଟ ହେଉଥାଏ । ଏବେ ଏହା ଅଛି କି ନାହିଁ ଜାଣେ ନା । ମୋର ତ ପୂର୍ବରୁ ପରୀକ୍ଷାରେ ବସିବା ଅଭ୍ୟାସ ନ ଥିଲା, ଏ ପ୍ରିଟେଷ୍ଟ ଦ୍ୱାରା ପରୀକ୍ଷାର ପୂର୍ବସ୍ୱାଦ ମିଳିଗଲା । ଟେଷ୍ଟରେ ମୁଁ ପରୀକ୍ଷାର୍ଥୀଙ୍କ ଭିତରେ ଇଂରେଜୀରେ ସବୁଠାରୁ ବେଶୀ ନମ୍ବର ରଖିଥିଲି । ଏଇଟିକୁ ନେଇ ପିଲାଙ୍କ ଭିତରେ ଖୁବ୍ ଚହଳ ପଡ଼ି ଯାଇଥିଲା । ଅଙ୍କରେ ମୋର ଭଲ କରିବା କଥା, ମାତ୍ର ବହୁତ କମ୍ ନମ୍ବର ରହିଲା । କାରଣ ବୁଝିବାକୁ ଯାଇ ଦେଖିଲି ଯେ ଅଙ୍କଗୁଡ଼ାକ ଖୁବ୍ ସହଜ ହୋଇଥିବାରୁ ମୁଁ ସେଗୁଡ଼ାକ ମାନସାଙ୍କ ପରି କରି ଦେଇ କେବଳ ଫଳ ଲେଖି ଦେଇଛି । ଧାରା ଛାଡ଼ି ଦେଇଛି । ସେଥିପାଇଁ ସବୁ ଆଳୁ ମିଳିଛି ।

ପରୀକ୍ଷାଟାକୁ ଅତିବେଶୀ ଗୁରୁତ୍ୱ ନ ଦେବାପାଇଁ ବାପା ବରାବର ଚେତେଇ ଦେଉଥାନ୍ତି । ଏ ବିଷୟ ନେଇ ହାସ୍ୟପରିହାସ କରନ୍ତି । ସେ କେମିତି ପରୀକ୍ଷାର ମାସକ ପୂର୍ବରୁ ବହିପତ୍ରରେ ଡୋରୀ ବାନ୍ଧିଦେଇ କ୍ୟାରମ୍ ଓ ଚେସ୍ ଖେଳରେ ଲାଗି ପଡ଼ନ୍ତି, ସେସବୁ ବର୍ଣ୍ଣନା କରନ୍ତି । ଭବଦାଦା ବି ସେଇ ବର୍ଷ ମ୍ୟାଟ୍ରିକ୍ ଦେଲେ । ସେ ବରାବର ମୋ ପାଖକୁ ଆସନ୍ତି । ତାଙ୍କର ସେତେବେଳକୁ ଆଖି ଖରାପ ହେଇ ଚଷମା ପିନ୍ଧିଲେଣି । ତାଙ୍କୁ ଥଟ୍ଟା କରି ବାପା କହନ୍ତି - "ଚୋଖେର ମାଥାଟି ତ ଖେଲି, ଏତ ପଡ଼େ କର୍‌ବି କି ?"

ଯାହାହେଉ, ପରୀକ୍ଷାଟା ଶେଷ ପର୍ଯ୍ୟନ୍ତ ନିର୍ବିଘ୍ନରେ ସରିଲା । ତାପରେ ଆମେ ସବୁ ଅଳକାଶ୍ରମ ଗଲୁଁ । ସେଇଠି ଥିବାବେଳେ ଖବର ମିଳିଲା ଯେ ମୁଁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଇଛି । ପରୀକ୍ଷାର ମାର୍କସିଟ୍ ମଗା ହେଇ ନ ଥିଲା କି ପ୍ରମାଣପତ୍ର ବି ଆଣି ନ ଥିଲି । ସେତେବେଳକୁ ମନଟା ଅନ୍ୟ ଆଡ଼କୁ ଚାଲିଗଲାଣି । ଏଇ ପରୀକ୍ଷା ଦେବା ପ୍ରସଙ୍ଗରେ ମୁଁ ଆବିଷ୍କାର କଲି ଯେ ଲୋକର ପ୍ରକୃତ ବୟସ ଛଡ଼ା ଗୋଟାଏ ଶିକ୍ଷା ବିଭାଗୀୟ ବୟସ ବି ଥାଏ । ଦିନେ କଲେଜିଏଟ୍‌ର ସବୁ ପରୀକ୍ଷାର୍ଥୀଙ୍କୁ ଏକତ୍ର କରି ଜଣେ ଶିକ୍ଷକ ରେଜିଷ୍ଟରରୁ ସେମାନଙ୍କର ରୋଲ୍ ନମ୍ବର, ବୟସ ଆଦି ଲେଖେଇଲେ, ଦରଖାସ୍ତରେ ପୂରଣ କରିବା ପାଇଁ । ସେଠିକି ମୁଁ ବି ଚାଲିଯାଇଥାଏ । ସେଇଠି ମୁଁ ଦେଖିଲି ଯେ ମୋଠାରୁ ଜଣାଶୁଣାରେ ତିନି ଚାରିବର୍ଷ ବଡ଼ ପିଲାଙ୍କର ବୟସ ମୋଠୁଁ କମ୍ ଲେଖା ହେଉଛି । ପଚାରି ବୁଝିଲି ଯେ ଏଇଟା ହେଲା "ଏକାଡ଼େମିକ୍ ଏଜ୍" ।

## ଯୌବନର ଉନ୍‌ମେଷ

ଫ୍ରୟେଡ୍‌ପନ୍ଥୀମାନେ ଯେ କହନ୍ତି ମଣିଷର ଯୌନଚେତନା ଶୈଶବରୁ ହିଁ ଥାଏ, ତାହା ସତ ବୋଲି ମୋର ନିଜର ଅନୁଭୂତିରୁ ମନେ ହୁଏ । ଶୈଶବ କଥା ମନେ ନ ଥିଲେ ମଧ୍ୟ

ବେଶ୍ ଅଳ୍ପ ବୟସରୁ ଏସବୁ ବିଷୟରେ ଅନ୍ତତଃ କୌତୂହଳ ଥିବାର ମୋର ମନେ ପଡୁଛି । ତେବେ ତେର ଚଉଦ ବର୍ଷ ବୟସ ବେଳକୁ ମୋର ଯୌବନ ସୁଲଭ ଚେତନା ଜାଗ୍ରତ ହେବାକୁ ଆରମ୍ଭ କଲା । ସ୍ତ୍ରୀଲୋକ ଓ ଝିଅମାନଙ୍କ ବିଷୟରେ କୌତୂହଳ ବଢ଼ିବା ସାଙ୍ଗେ ସାଙ୍ଗେ କିନ୍ତୁ ମୋର ସଂକୋଚ ଓ ଲାଜକୁଳାପଣ ବଢ଼ି ଚାଲିଥାଏ । ପୁଣି ସେମାନଙ୍କ ପାଖରେ ଦେଖେଇ ହେବାକୁ ବି ମନ ହେଉଥାଏ, ବିଶେଷ କରି କେହି ନୂଆ ଲୋକ ହେଲେ । କଲିକତା କଂଗ୍ରେସକୁ ଯିବା ବେଳେ ଆମ ସାଙ୍ଗରେ ବାର ତେର ବର୍ଷର ଝିଅଟିଏ ଥିଲା । ପ୍ଲାଟ୍‌ଫର୍ମରେ ଗାଡ଼ି ପାଇଁ ଅପେକ୍ଷା କରିବାବେଳେ ମୁଁ ତା ପାଖ ଦେଇ ଖୁବ୍ ଗାମ୍ଭୀର୍ଯ୍ୟ ଓ ଗୁରୁତ୍ୱ ଦେଖେଇ ଯିବା ଆସିବା କରୁଥାଏ । ସ୍ତ୍ରୀପୁରୁଷ ସଂପର୍କ ସମ୍ବନ୍ଧରେ ବହିପତ୍ର ପାଇଲେ କୌତୂହଳୀ ହୋଇ ଦେଖେ । ତେବେ ଏ ବାବଦରେ ଅସ୍ୱାସ୍ଥ୍ୟକର ସାହିତ୍ୟ ପାଲରେ ପଡ଼ି ନ ଥିଲି । ସେପରି ସାହିତ୍ୟ ମିଳୁ ବି ନ ଥିଲା । ଆମ ଘରେ ସ୍ୱାସ୍ଥ୍ୟରକ୍ଷା ବିଷୟରେ କେତେଖଣ୍ଡ ବହିରେ ଏସବୁ ବିଷୟରେ ବେଶ୍ ସୁସ୍ଥ ସରଳ ଚର୍ଚ୍ଚା ଥିଲା । ସେଥିରୁ ଏ ବିଷୟରେ ମୋଟାମୋଟି ଜ୍ଞାନ ସଂଗ୍ରହ କରିଥିଲି । ମୋର ସାଙ୍ଗମାନେ ବି ବେଶ୍ ସୁସ୍ଥ ଓ ସଂଯତ ରୁଚିର ଥିଲେ । ମାତ୍ର ଅନ୍ୟ ପରିଚିତ ପିଲା ଓ ଖେଳ ସାଙ୍ଗମାନଙ୍କ ଭିତରେ ଏ ସବୁ ବିଷୟରେ ଅଶୋଭନୀୟ ଇଙ୍ଗିତ ଓ ଆଲୋଚନା ଚାଲେ । ସେସବୁରୁ କିଛି କିଛି କାନରେ ପଡ଼େ ମାତ୍ର ମୁଁ ସେଥିରୁ ଅଲଗା ରହେ । ଅନେକ ସମୟରେ ମୋର ପ୍ରକୃତି ଯୋଗୁଁ ମୋ ସାମନାରେ ଏଭଳି ଆଲୋଚନା କରିବାକୁ ଅନେକେ ସଂକୋଚ କରୁଥାନ୍ତି । ବାହାରୁ ମୁଁ ଖୁବ୍ ଭଲପିଲା ବୋଲି ଖ୍ୟାତି ହେଉଥାଏ । ମାତ୍ର ଏବେ ମନେ ହେଉଛି ଯେ ଅନ୍ୟମାନେ କ'ଣ ପ୍ରକୃତରେ ଖରାପ ପିଲା ? ସେମାନେ ମୋଭଳି ଚାପା ନ ହେଉଥିବାରୁ ନିଜର ମନୋଭାବ ଓ କୌତୂହଳ ଖୋଲିଖୋଲି ପ୍ରକାଶ କରୁଥାନ୍ତି ମାତ୍ର ।

ଆମ ମାମୁଁମାନେ ୧୯୨୫-୨୬ ରେ କଟକରେ ଗୋଟାଏ ସିନେମା ଆରମ୍ଭ କରିଥିଲେ । ବକ୍‌ସିବଜାରରେ ଏବେ ଯେଉଁଠି ଅନ୍ନପୂର୍ଣ୍ଣା ଥିଏଟର୍ ଅଛି, ସେଠି ଏକ୍‌ମୀ ଥିଏଟର ନାଁରେ ଥାଏ । ମାମୁଁମାନଙ୍କର ସିନେମା । ଚୁନୀ ଓ ମୁଁ ଯାଇ ବିନା ଟିକେଟ୍‌ରେ ଦେଖୁଁ । ସେତେବେଳେ ସବୁ ନିର୍ବାକ୍ ଚିତ୍ର । ବାପା ସିନେମା ଦେଖିବାରେ ବାଧା ଦିଅନ୍ତି ନାହିଁ । କିନ୍ତୁ ଆଜ୍ଞେବାଜେ ଫିଲ୍ମ ଯେପରି ନ ଦେଖୁ ସେଥିପ୍ରତି ଦୃଷ୍ଟି ରଖିଥାନ୍ତି । ସେତେବେଳେ ଆମେରିକାନ୍ ଫିଲମ୍‌ରେ ଡଗ୍‌ଲାସ୍ ଫେୟାର୍‌ବ୍ୟାଙ୍କ୍, ମରିସ୍ ଶେଭାଲିୟର୍, ହ୍ୟାରଲ୍ଡ୍ ଲଏଡ୍ ଆଦିଙ୍କର ରାଜତ୍ୱ । ହିନ୍ଦୀରେ ମାଷ୍ଟର ଭିଟଲ୍ ଲମ୍ବଝମ୍ପ ଆଦିରେ ପ୍ରଥମୋକ୍ତିଙ୍କର ଅନୁକରଣ କରୁଥାନ୍ତି । ସେତେବେଳେ ଖୁବ୍ ମନଇଚ୍ଛା ଛବି ଦେଖା ହେଉଛି । ପ୍ରଥମେ ତ ଆଜିକାଲି ଯାହାକୁ କହନ୍ତି "ଫାଇଟିଂ ପିକ୍‌ଚର୍" ସେହିପରି ଛବି ଓ ଛବିର ସେହି ସବୁ ଅଂଶ ପ୍ରତି ବେଶୀ ରୁଚି ଥିଲା । ପ୍ରେମମୂଳକ ଦୃଶ୍ୟସବୁ ବୋର୍ ଲାଗୁଥିଲା । କ୍ରମେ ଏ ସବୁ ଦୃଶ୍ୟ ପ୍ରତି ବି ଆକର୍ଷଣ ବଢ଼ିଲା ଓ ଅଭିନେତ୍ରୀମାନଙ୍କର ଅଙ୍ଗସୌଷ୍ଠବର ବି । ଆମେସବୁ ଅଳକାଶ୍ରମ ଯିବାରୁ

ଏ ଅସରନ୍ତି ସିନେମା ଦେଖାରେ ଛେଦ ପଡ଼ିଲା । ତା' ପରେ ମାମୁଁଘର ସିନେମା ବି ଉଠିଗଲା । ଏହାପରେ ବେଶ୍ କେତେବର୍ଷ ଖୁବ୍ କମ୍ ସିନେମା ଦେଖା ହେଇଛି । ୧୯୩୪ ରୁ ୧୯୩୬ ଯାଏ କଲିକତାରେ ଥିବାବେଳେ ଥରେ ହେଲେ ସିନେମା ଦେଖି ନ ଥିଲି । କଟକକୁ ସର୍କସ୍ ଆସିଲେ ବାପା ଦେଖିବାକୁ ଉତ୍ସାହିତ କରୁଥିଲେ । ସର୍କସ୍‌ର ଖେଳ ଯେତିକି ତାର ସାଜସରଞ୍ଜାମ ସଜେଇବା ଓ ପୁଣି ଖୋଲି ଉଠେଇ ନେବାରେ ତାର କର୍ମୀମାନଙ୍କର କୁଶଳତା ଓ କ୍ଷିପ୍ରତା ବି ଆମର ସେତିକି ବିସ୍ମୟ ଓ ଆକର୍ଷଣର ବସ୍ତୁ ହେଇଥାଏ ।

ସେମିତି ଡିଟେକ୍‌ଟିଭ୍ ଉପନ୍ୟାସ । ସେକ୍ସଟନ୍ ବ୍ଲେକ ଇଂରେଜୀ ସିରିଜ୍‌ର ଅନୁକରଣରେ ବଙ୍ଗଳାରେ ଦୀନେନ୍ଦ୍ର କୁମାର ରାୟ ଅଜସ୍ର ଡିଟେକ୍‌ଟିଭ୍ ଉପନ୍ୟାସ ଲେଖୁଥାନ୍ତି । ସେ ସବୁରୁ କିଛି କିଛି ବେଙ୍ଗଅପା ସଂଗ୍ରହ କରେ । ଆମେ ପଢୁ, ଖୁବ୍ ଭଲ ଲାଗେ । ଥରେ ଆମେ ସବୁ ଯାଇ ସତ୍ୟଭାମାପୁରରେ ଉପମାମୁଁଙ୍କ ପାଖରେ ବେଶ୍ କିଛିଦିନ ରହିଲୁ । ସେଠି ଦେଖିଲୁ ଏହି ରବାର୍ଟ ବ୍ଲେକ୍ ଉପନ୍ୟାସମାଳା ଆଲମାରୀ ବୋଝେଇ ହେଇ ରହିଛି । ବହୁତ ସଉକରେ ପଢ଼ିବା ଆରମ୍ଭ କଲି । ପନ୍ଦର ସତର ଖଣ୍ଡ ଏକାଦିକ୍ରମେ ପଢ଼ିବା ପରେ ମନେହେଲା ସବୁ କାହାଣୀଗୁଡ଼ିକ ସେଇ ଥୋଡ଼ ବଡ଼ି ଖଡ଼ା- ଖଡ଼ା ବଡ଼ି ଥୋଡ଼ । ଆରମ୍ଭଟା ଦେଖିଲେ ଶେଷଟା କହି ଦେଇ ହେବ । ସେଠୁ ଏଥିରେ ଏପରି ଅରୁଚି ହେଇଗଲା ଯେ ଡିଟେକ୍‌ଟିଭ୍ ଉପନ୍ୟାସ ନାଁ ଶୁଣିଲେ ବାନ୍ତି ମାଡ଼ିଲା ! ପରେ ଅବଶ୍ୟ ଇଂରେଜୀରେ ଶେରଲକ୍ ହୋମ୍‌ସ୍‌ର କେତେକ କାହାଣୀ ପଢ଼ି ଉପଭୋଗ କରିଥିଲି ।

ଆମ ଘରେ ଗୁଡ଼ିଏ ପୁରୁଣା ପତ୍ରିକା, 'ନାରୀ ଦର୍ପଣ' ଓ 'ପରିଚାରିକା', ପଢ଼ିଥିବାର ଚୁନୀ ଓ ମୁଁ ଆବିଷ୍କାର କରିଥିଲୁ । ସେତେବେଳକୁ ଦୁଇଟିଯାକର ପ୍ରକାଶନ ବନ୍ଦ ହେଇ ଯାଇଥାଏ । ଉଭୟଙ୍କର ସଂପାଦିକା ଭାବରେ ବଡ଼ମାଙ୍କ ନାଁ ଥାଏ, ବସନ୍ତ କୁମାରୀ ଦେବୀ । ବୋଉ କହୁଥିଲା ଯେ ମୃତ୍ୟୁମାମୁଁ, ଉପମାମୁଁ ହେରିକା ଏସବୁ ପତ୍ରିକା ବାହାର କରୁଥିଲେ । ସେଥିରେ ବେଶ୍ କିଛି ଭଲ ଗଳ୍ପ ବାହାରିଥିଲା । ଗୁଡ଼ିଏ ଭୂତକଥା ବି ବାହାରିଥିଲା । ଏ ସବୁଥିରେ ଭୂତ ମିଛ ବୋଲି ସାବ୍ୟସ୍ତ କରାହେଇ ଥାଏ । ଏସବୁ ଆମେ ଆଗ୍ରହରେ ପଢୁ । ପରେ ଆବିଷ୍କାର କଲୁ ଯେ ଏସବୁ ବଙ୍ଗଳା ଗପର ଅନୁବାଦ । ଯାହାହେଉ, ଭୂତପ୍ରେତ ବିଷୟରେ ଆମର ତ ସବୁ ପିଲାଙ୍କ ପରି କୌତୂହଳ ଥାଏ ଓ ସେପରି ଗପ କହିବା ଲୋକଙ୍କ ଅଭାବ ନ ଥାଏ । ଗୁଲଅପା ଆସି କଟକରେ ବହୁତ ଦିନ ରହେ ଓ ଖୁବ୍ ଆକର୍ଷକ ଢଙ୍ଗରେ ଭୂତଗପ ଶୁଣାଏ, କେମିତି ଭୂତ ଏ ତାଳଗଛରେ ବସି ସେ ତାଳଗଛକୁ ଗୋଡ଼ ଲମ୍ବେଇ ଥାଏ, ମାଛ ଧରିବା ବେଳେ ଆସି ମାଛ ମାଗେ, ଚାଷୀକୁ ରାତିରୁ ପାଣି ବୋହିବା ପାଇଁ ଡାକି ନେଇ ଯାଏ ଇତ୍ୟାଦି । ଏ ସବୁ ବିଷୟରେ ବାପାଦାଦା ହେରିକାଙ୍କର ତ ଅବିଶ୍ୱାସ ଥାଏ । ମୁଁ ବି ଅବିଶ୍ୱାସୀ ହେଇଗଲି ।

# ସାହିତ୍ୟ ଚର୍ଚ୍ଚା

ସେତେବେଳେ ଓଡ଼ିଆ ଖବର କାଗଜ ବୋଲନ୍ତେ ଉତ୍କଳ ଦୀପିକା । ସାପ୍ତାହିକ ସମାଜ ବୋଧହୁଏ ୧୯୨୫-୨୬ ବେଳକୁ କଟକରୁ ବାହାରିଲା । ମାସିକ ପତ୍ରିକା ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ ଉତ୍କଳ ସାହିତ୍ୟ । ବ୍ରଜସୁନ୍ଦର ଦାସଙ୍କ ମୁକୁର ସେତେବେଳକୁ ବନ୍ଦ ହେଇ ଯାଇଥିବା ପରି ମନେ ହେଉଛି । ଆମ ଘରେ ଗୁଡ଼ିଏ ପୁରୁଣା ସଂଖ୍ୟା ପଡ଼ିଥାଏ । ଉତ୍କଳ ସାହିତ୍ୟରେ ବାହାରୁଥିବା ଅନେକ ବିଷୟ ମୁଁ ଆଗ୍ରହର ସହିତ ପଢୁଥିଲି । ଡଃ ପ୍ରାଣକୃଷ୍ଣ ପରିଜାଙ୍କର ବିଲାତ ଅନୁଭୂତି ସେଥିରେ ଧାରାବାହିକ ବାହାରି ଥିଲା । ସେଥିରେ ଗୋଟାଏ ପ୍ରସଙ୍ଗରେ 'ସାତ ଖୁଣ ମାପ' କଥାଟାକୁ ଆକ୍ଷରିକ ଅର୍ଥରେ ନେଇ ବେଶ୍ ଧନ୍ଦି ହେବାର ମନେ ଅଛି । ଗୋଟାଏ ଇଂରେଜୀ ଉପନ୍ୟାସର ଅନୁବାଦ ବାହାରୁଥାଏ । ସେଥିରେ ଖ୍ରୀଷ୍ଟିୟାନ୍‌ମାନଙ୍କ ଉପରେ ରୋମର ଶାସକମାନଙ୍କ ଦ୍ୱାରା କରାଯାଉଥିବା ଅତ୍ୟାଚାର ଓ ନିର୍ଯ୍ୟାତନାର ଲୋମହର୍ଷଣକାରୀ ବର୍ଣ୍ଣନା ଥାଏ । ଶଶୀଭୂଷଣ ରାୟ 'ବିକ୍ଷିପ୍ତ ଚିନ୍ତା' ଲେଖୁଥାନ୍ତି । ସେଥିରେ 'ସିନା' ଗଣିବା ପାଇଁ ଅନ୍ନଦା ଦାଦା (ଅନ୍ନଦା ଶଙ୍କର ରାୟ) ଆମକୁ ଶିଖେଇଥିଲେ । ଶଶିବାବୁ ବହୁତ ସିନା ବ୍ୟବହାର କରୁଥିଲେ । ଅନ୍ନଦା ଦାଦା ବିଲାତ ଯିବା ପରେ ତାଙ୍କର ବି ବିଲାତ ଅନୁଭୂତି ସେଥିରେ ବାହାରିଲା । ପରେ ସେ ଓଡ଼ିଆରେ ଲେଖା ବନ୍ଦ କରି କେବଳ ବଙ୍ଗଳାରେ ଲେଖିବା ଠିକ୍ କରିବାରୁ ମୋର ଖୁବ୍ ଦୁଃଖ ହେଇଥିଲା । ଉତ୍କଳ ସାହିତ୍ୟରେ 'ବାସନ୍ତୀ' ନାଁରେ ଏକ ବାରଭାୟା ଉପନ୍ୟାସ ବାହାରିଲା । ତାର ଗୋଟାଏ ଗୋଟାଏ ଅଧ୍ୟାୟ ଜଣେ ଜଣେ ଲେଖିଥିଲେ । 'ପଞ୍ଚାମୃତ' ବୋଲି ପିଲାଙ୍କର ଏକ ମାସିକ ପତ୍ର ବି ଦିନାକେତେ ଓଡ଼ିଶାରେ ବାହାରିଥିଲା । ମାତ୍ର ଆମ ହାତରେ ପଡ଼ିବା ବେଳକୁ ତାହା ବନ୍ଦ ହେଇଯାଇଥିଲା ।

ପୂର୍ବରୁ ବଙ୍ଗଳା ସଂଦେଶ କଥା ଲେଖିଛି ଓ ସେଥିରେ ବାହାରିଥିବା ଲକ୍ଷ୍ମଣର ଶକ୍ତିଭେଦ ଆଦି ହାସ୍ୟରସର ନାଟକ କଥା । ଯା ଭିତରେ ସୁକୁମାର ରାୟଙ୍କ କବିତା ବହି ଆବୋଲ୍ ତାବୋଲ୍ ଆମ ହାତକୁ ଆସିଲା, ବୋଧହୁଏ ମୋହିନୀବାବୁଙ୍କ ଘରୁ ଖୋକନ୍ ମାର୍ଫତରେ । ଏଥିରେ ଥିବା ହସ ଓ ନନ୍‌ସେନ୍ସ (ବି-ଅର୍ଥ) କବିତା ସବୁ ପଢ଼ି ସାନବଡ଼ ସମସ୍ତେ ଖୁବ୍ ଉପଭୋଗ କଲୁ । କିନ୍ତୁ ଏଥିରେ କେବଳ ପିଲାଳିଆ ହସ ନ ଥିଲା । ଆଇନ୍ କାନୁନ୍, ପ୍ରାଚୀନ ପରମ୍ପରା, ଶୁଷ୍କ ପାଣ୍ଡିତ୍ୟ, ଗୁରୁଗମ୍ଭୀର ମୁରବୀଗିରି ଆଦିର ଯେଉଁ ବୋଝଗୁଡ଼ାକ ମଣିଷ ମୁଣ୍ଡରେ, ବିଶେଷ କରି ସାନ ପିଲାଙ୍କ ମୁଣ୍ଡରେ ଲଦି ଦେଇ ତାକୁ ନିର୍ଜନ କରିଦିଏ, ଭୂତପରି ମାଡ଼ିବସେ, ସେ ସବୁକୁ ଫିଙ୍ଗିଦେଇ ହାଲୁକା ହେବାର ବାଟ ଏସବୁ କବିତା ସମସ୍ତଙ୍କର ଅଜାଣତରେ ଫିଟେଇ ଦିଏ । 'ରାମ୍ ଗୁରୁଡ଼େର୍ ଛାନା, ହାସ୍‌ତେ ତାଦେର୍ ମାନା, - ଯେଉଁ ପରିବାରରେ ପିଲାଙ୍କ ପ୍ରାଣର ଉଚ୍ଛଳତାକୁ ଶାସନଦ୍ୱାରା ଦବେଇ ରଖାଯାଇଥାଏ ତାର ସଂସ୍କୃତିର ଅସାରତା ଏହାଠାରୁ ସହଜରେ ଅଳ୍ପରେ ଆଉ କିଏ ପ୍ରକାଶ କରି ପାରନ୍ତା ? 'ଶିବ୍ ଠାକୁରେର୍ ଆପନ୍ ଦେଶେ' ଯେ

ପିଲାଦିନେ ପଢ଼ିଥିବ ସେ ଏକଛତ୍ର କ୍ଷମତାକାଂକ୍ଷୀର ଅହଂମ୍ମନ୍ୟତାକୁ କଦାପି ଗୁରୁତ୍ୱ ଦେଇ ପାରିବ ନାହିଁ । 'ନୋଟ୍ ବଇ' ଓ 'କାଠବୁଢ଼ୋ' ପଢ଼ିବା ଲୋକକୁ ଶୁଷ୍କ ପାଣ୍ଡିତ୍ୟରେ ଓଜନ ଦବେଇ ପାରିବ ନାହିଁ । 'ସତ୍‌ପାତ୍ର' ଓ 'ବୁଢ଼ୀର ବାଡ଼ି' ରେ ତାର ସହାନୁଭୂତିଟା ଅଲକ୍ଷିତରେ ହସରୁ କାନ୍ଦର ସୀମାଯାଏ ପହଞ୍ଚିଯିବ । ତାଙ୍କର ଅନ୍ୟସବୁ ବହି ବି ପରେ ମିଳିଲା । ଏସବୁ ଭିତରେ ତାଙ୍କର ଗୋଟାଏ ଜୀବନ ଦୃଷ୍ଟି ଫୁଟି ଉଠିଛି ଯାହାର ମୂଲ୍ୟ ପିଲା ବୟସରେ ଗୀତା ଭାଗବତଠାରୁ ଅନେକ ବେଶୀ । ତାଙ୍କର ଏ ହସର ବିଦ୍ରୋହଟା ବୋମା ବିଦ୍ରୋହ ଅପେକ୍ଷା ଅଧିକ ମାରାତ୍ମକ, ପୁରୁଣା ମୂଲ୍ୟବୋଧ ପକ୍ଷରେ ।

ସୁକୁମାର ରାୟଙ୍କର ବାପା ଉପେନ୍ଦ୍ର କିଶୋର, ଭଉଣୀ ସୁଖଲତା ରାଓ ପ୍ରଭୃତି ମଧ୍ୟ ସନ୍ଦେଶ ପତ୍ରିକା ଓ ବହି ମାଧ୍ୟମରେ କମ୍ ଉପାଦେୟ ମାନସିକ ଖୋରାକ ପିଲାଙ୍କ ପାଇଁ ଯୋଗାଉ ନ ଥିଲେ । ଆମର ସୌଭାଗ୍ୟ ଯେ ଆମରି ପିଲାଦିନେ ଏ ରସବୃଷ୍ଟି ଘଟିଲା ଓ ଆମେ ତା'ର ଭାଗ ତୁରନ୍ତ ପାଇଲୁ ।

ସେହିପରି ପରଶୁରାମ । ଆଉ ଟିକିଏ ପରେ ବଙ୍ଗଳା ସାହିତ୍ୟରେ ପରଶୁରାମଙ୍କ ଆବିର୍ଭାବ ଏକ ବିରାଟ ଚହଳ ପକେଇ ଦେଲା । ତାଙ୍କର 'ଚିକିତ୍ସା ସଂକଟ', 'ଶ୍ରୀ ଶ୍ରୀ ସିଦ୍ଧେଶ୍ୱରୀ ଲିମିଟେଡ୍', 'କଚି ସଂସଦ୍' 'ବିରିଂଚି ବାବା' ଆଦି ବି ବିମଳ ହାସ୍ୟରସ ପରିବେଷଣ କରିବା ସାଙ୍ଗେ ସାଙ୍ଗେ ସମାଜର ଅନ୍ଧିସନ୍ଧିରେ ଜମିଥିବା ମଳିଧୂଳି ଓ ରୋଗ ଜୀବାଣୁକୁ ହସର ଖରାଧାସରେ ପକେଇ ବିଶୋଧନ କରିବାରେ କମ୍ ସାହାଯ୍ୟ କରି ନାହିଁ । ପରଶୁରାମଙ୍କ ଲେଖାରେ ବି ଆମ ଜୀବନକୁ ସମୃଦ୍ଧ କରିବାରେ ବହୁତ ଅବଦାନ ରହିଛି ।

ବୈକୁଣ୍ଠ ପଟ୍ଟନାୟକ, କାଳିନ୍ଦୀ ପାଣିଗ୍ରାହୀ, ଶରତ୍ ମୁଖାର୍ଜୀ, ଅନ୍ନଦାଶଙ୍କର ରାୟ ପ୍ରଭୃତି ମିଶି ସେତେବେଳେ ଗୋଟାଏ ସବୁଜ ସାହିତ୍ୟ ସଂଘ ଗଢ଼ିଥା'ନ୍ତି । ଦାଦାର ସାହିତ୍ୟିକ କୃତିତ୍ୱ କିଛି ନ ଥିଲେ ସୁଦ୍ଧା ସେ ବି ସେମାନଙ୍କ ଦଳରେ ଥାଏ । ଏମାନଙ୍କ ଭିତରୁ ବୈକୁଣ୍ଠ ବାବୁ ଓ ଅନ୍ନଦା ଦାଦା ଆମ ଘରକୁ ବରାବର ଆସୁଥିଲେ । ସେମାନଙ୍କ ମାର୍ଫତରେ ବି ଆମମାନଙ୍କର ସାହିତ୍ୟର ଓ ଜୀବନର ରୁଚି ପ୍ରତିଭାବିତ ହୋଇଛି । ଆମ ଘରକୁ ପ୍ରବାସୀ, ବଙ୍ଗଳା ମାସିକ ପତ୍ର ଆସୁଥାଏ । ପ୍ରବାସୀ ବି ମୁଁ ଅଳ୍ପ ବୟସରୁ କିଛି କିଛି ପଢୁଥାଏ । ସେଥିରେ ବାହାରୁଥିବା ଗଳ୍ପ ଉପନ୍ୟାସର ସବୁଟା ଭାବ ତ ହୃଦୟଙ୍ଗମ କରିପାରେ ନାହିଁ, କିନ୍ତୁ ସେ ସବୁ ମାଧ୍ୟମରେ ଗୋଟାଏ ବୃହତ୍ତର ଜଗତର, ଜୀବନର, ଆସ୍ୱାଦ ପାଏ । ଗୋଟାଏ ଗୋଟାଏ କଥା ବେଳେବେଳେ ମନରେ ଖୁବ୍ ଆଲୋଡ଼ନ ସୃଷ୍ଟି କରେ । ମୌରୀଫୁଲ ନାଁରେ ଖୁବ୍ ସମ୍ଭବ ବିଭୂତି ବନ୍ଦୋପାଧ୍ୟାୟଙ୍କର ଗୋଟାଏ ବଡ଼ ଗଳ୍ପରେ ଥିବା ଗୋଟିଏ ଗ୍ରାମ୍ୟ ବାଳିକାର କରୁଣ ପରିଣତି ମୋର ହୃଦୟକୁ ଖୁବ୍ ଆଲୋଡ଼ିତ କରିଥିଲା । ଏବେ ବି କଲିକତା ଯିବା ବାଟରେ ମୌରିଗ୍ରାମ ଷ୍ଟେସନ ପଡ଼ିଲେ ଏ ମୌରିଫୁଲର କାହାଣୀ ମନେପଡ଼େ । ପିଲା ଦିନେ ଗଳ୍ପ ଉପନ୍ୟାସ ନ ପଢ଼ିବା ଉଚିତ ବୋଲି ଗୋଟିଏ ମତ ଅଛି । କିନ୍ତୁ ମୋର ଅଭିଜ୍ଞତା ଯେ

ପିଲାମାନଙ୍କ ହାତରେ ଦଶବାର ବର୍ଷ ବୟସରୁ ଶ୍ରେଷ୍ଠ ଲେଖକମାନଙ୍କର କୃତି ଦିଆଯିବା ଉଚିତ । ସେ ସବୁ ସେତେବେଳେ ପୂରା ବୁଝି ନ ହେଲେ ବି ଜୀବନ ବୋଧକୁ ଯେପରି ପ୍ରସାରିତ କରେ ଓ ମନରେ ଦାଗ କାଟେ, ସେପରି ଆଉ ପରେ ନୁହେଁ ।

ପ୍ରବାସୀର ଗୁରୁତ୍ୱପୂର୍ଣ୍ଣ ଲେଖାସବୁ ପଢ଼ିବାର ସୌକ ମଧ୍ୟ ମୋର ହୋଇଗଲା । ବିଜ୍ଞାନର ସବୁ ଖବର ବାହାରେ । ସଂପାଦକ ରାମାନନ୍ଦ ଚଟ୍ଟୋପାଧ୍ୟାୟ ବିବିଧ ପ୍ରସଙ୍ଗ ଲେଖନ୍ତି । ଏଇ ବିବିଧ ପ୍ରସଙ୍ଗର ଭାଷା ଓ ଭାବ ମତେ ଭଲ ଲାଗୁଥିଲା । ତାହାରି ମାଧ୍ୟମରେ ମୁଁ ଦେଶବିଦେଶର ଘଟଣା ପ୍ରବାହର ବେଶ୍ କିଛି ଜ୍ଞାନ ପାଉଥିଲି । ସେଇଟା ହିଁ ବୋଧହୁଏ ମୋର ବାହାର ଦୁନିଆ ଆଡ଼କୁ ପ୍ରଥମ ଝରକା ଥିଲା । ସେଥିରେ ଅନ୍ୟାନ୍ୟ ଦେଶର ପତ୍ରିକାରେ ବାହାରିଥିବା ଭଲ ଭଲ ବ୍ୟଙ୍ଗଚିତ୍ର ବି ପୁନର୍ମୁଦ୍ରିତ କରାଯାଉଥିଲା । ସେ ସବୁରୁ ମୋର ବ୍ୟଙ୍ଗ ଚିତ୍ରର ରୁଚି ସୃଷ୍ଟି ହେଲା । ପରେ ୧୯୩୩ ରାମମୋହନ ଶତବାର୍ଷିକୀ ଉପଲକ୍ଷରେ ରାମାନନ୍ଦବାବୁ କଟକ ଆସିଥିଲେ । ଝାରପଡ଼ାରେ ଆମର ବନ୍ୟା ସାହାଯ୍ୟ କେନ୍ଦ୍ର ବି ଦେଖି ଯାଇଥିଲେ । ସେତେବେଳେ ତାଙ୍କ ସାଙ୍ଗରେ ପରିଚୟ ହୋଇଥିଲା । ଆମ ଘରେ ଖୁଡ଼ୀଙ୍କ ଯୋଗୁଁ ରବୀନ୍ଦ୍ର ସଙ୍ଗୀତର ଝରଣା ତ ବହୁଥାଏ । ପ୍ରବାସୀରେ ମଧ୍ୟ ରବୀନ୍ଦ୍ରନାଥଙ୍କର ନୂଆ ନୂଆ କବିତା ବାହାରେ । ସେଥିରୁ ଗୋଟା ଗୋଟାକର ଛନ୍ଦ ମନରେ ଲାଖିଯାଏ, ଯେମିତି "ବେଠିକ୍ ପଥେର୍ ପଥିକ୍ ଆମାର୍ ଅଚିନ୍ ସେ ଜନ୍‌ରେ"ର "ଚିକନ୍ କଚି ଅଶଥ୍ ପାତାୟ, ଆଲୋକ୍ ଝଲକ୍ ପରାନ୍ ମାତାୟ ଯେ ରୂପ୍ ଜାଗାୟ ଚୋଖେର୍ ଆଗୟ କିସେର୍ ସ୍ୱପନ୍ ସେ -" ମନ କୁ ବିସ୍ମୟବିମୁଗ୍ଧ କରୁଥିବା କଅଁଳିଆ ପତ୍ର ଦେଖିଲେ ମନେ ପଡ଼ିଯାଏ ।

ସାହିତ୍ୟ ପ୍ରସଙ୍ଗରେ ଆଉ ଏକ ସ୍ମୃତି । କେଉଁ ବର୍ଷ ମନେ ନାହିଁ, ୧୯୩୦ ହୋଇପାରେ । ଦଧିବାବୁ କୋଠାରେ ଜଣେ ବଙ୍ଗଳାର ଭଦ୍ର ଲୋକ ଭଡ଼ା ଥାନ୍ତି । ତାଙ୍କ ଘର ହାଓଡ଼ାରେ, ମାତ୍ର ସେ ଏଠି କ'ଣ କରୁଥିଲେ, ତାଙ୍କର ନାମ କ'ଣ, ମନେ ନାହିଁ । ତାଙ୍କର ଅନେକଗୁଡ଼ିଏ ପିଲା, ବଡ଼ ଝିଅ ମୋଠୁଁ ବୟସରେ ଅନେକ ବଡ଼, ଆମ ଘରୁ ବହିପତ୍ର ପଢ଼ିବାକୁ ନିଅନ୍ତି । ଆମେ ତାଙ୍କୁ କି ଦିଦି ବୋଲି ଡାକୁଥିଲୁ ମନେନାହିଁ । ତାଙ୍କ ପାଖରେ କବି ନଜରୁଲ୍‌ଙ୍କର 'ଅଗ୍ନିବୀଣା' ଥାଏ । ସେ ବହି ସେତେବେଳକୁ ବାଜ୍ୟାପ୍ତ ହୋଇସାରିଥାଏ । ସେ ଲୁଚେଇ ରଖିଥାନ୍ତି । ମୁଁ ସେ ବହିଖଣ୍ଡ ଆଣି ପଢ଼ିଥିଲି ଓ ନଜରୁଲ୍‌ଙ୍କର କବିତା ମତେ ସମ୍ମୋହିତ କରିଥିଲା । ମୁଁ ସେଥିରୁ 'କାମାଲ୍ ପାଶା', 'ବଲ ବୀର' ଚିର ଉନ୍ନତ ମମ ଶିର' ଆଦି ଲମ୍ବା ଲମ୍ବା କବିତାଗୁଡ଼ିକ ମୁଖସ୍ଥ ବି କରି ପକାଇଥିଲି । ଆମ ବାଣୀ ମନ୍ଦିର ପାଠାଗାରକୁ ଉପେନ୍ଦ୍ରନାଥ ମୁଖୋପାଧ୍ୟାୟ (?) ଙ୍କର ନିର୍ବାସିତର ଆତ୍ମକଥା ମଗେଇ ସେଥିରୁ ବିପ୍ଳବ ଆନ୍ଦୋଳନର ଓ ଆନ୍ଦାମାନର କାହାଣୀସବୁ ପଢ଼ିଥିଲୁ । ଯା ଛଡ଼ା କାନାଇଲାଲ ଓ ସ୍ୱାଧୀନତା ପ୍ରଚେଷ୍ଟା ସମ୍ବନ୍ଧରେ ଆଉସବୁ କି କି ବହି ବି ସେତେବେଳେ ହାତରେ ପଡ଼ିଥିଲା ।

# ମାଂସାହାର ତ୍ୟାଗ

ଆମଘରେ ଏକ ସମୟରେ ମାଛ ସମସ୍ତେ ଖାଉଥିଲେ ଖୁବ୍ ସୌକରେ । ବାପା ବରାବର କହୁଥିଲେ ମାଛମାଂସ ଖାଉ ଖାଉ ଅରୁଚି ଧରିଯିବାରୁ ସେ ତାହା ଖାଇବା ଛାଡ଼ି ଦେଲେ । ମୁଁ ଚିଙ୍ଗୁଡ଼ି ଖୁବ୍ ଭଲ ପାଉଥିଲି । ମତେ ଜ୍ୱର ବା ଆଉ କିଛି ହେଲେ ପଥ୍ୟ ବେଳକୁ କଉମାଛ ଝୋଳ ହୁଏ । ତେବେ ଆମ ଘରେ ମାଂସ ରନ୍ଧା ହେବାର ମନେ ପଡୁନାହିଁ । ଅସହଯୋଗ ପରେ ବାପା ହେରିକା ମାଂସ ଛାଡ଼ିଦେଲେ । ଆମ ଘରେ ମାଛ ରନ୍ଧା କମିଗଲା । କିନ୍ତୁ ଆମକୁ କେହି ମାଛ ଛାଡ଼ିବାକୁ ବାଧ୍ୟ କରି ନଥିଲେ । ଦାଦା ଓ ଖୁଡ଼ୀ ତ ମାଛମାଂସ ଖାଉଥିଲେ । ବରଂ ମତେ ୧୯୨୭-୨୮ ବେଳେ ଥରେ ମାମୁଁ ଘରେ ମାମୁଁମାନେ ଓ ଆଉଥରେ ଅଣଖୁଆରେ ଖୁଡ଼ୀ ମାଂସ ଖାଇବା ପାଇଁ ପ୍ରବର୍ତ୍ତେଇଥିଲେ । ମୁଁ ଖାଇଲି ବି, କିନ୍ତୁ ଭଲ ଲାଗି ନ ଥିଲା । ତା' ପରେ ଆଉ ମାଂସ ଖାଇ ନାହିଁ ।

ମାଛ ମୁଁ କିପରି ଛାଡ଼ିଲି ତା'ର କୌଣସି ପ୍ରସଙ୍ଗ ମୋର ମନେ ପଡୁନାହିଁ । ତେବେ ଗୋଟାଏ ଘଟଣାର ସ୍ମୃତି ଖୁବ୍ ସ୍ପଷ୍ଟ ଅଛି ଯାହାର ସଂପର୍କ ଆମିଷ ଛାଡ଼ିବା ସହିତ ଥାଇପାରେ । ୧୯୨୭ କି ୨୮ ହୋଇପାରେ । ଦିନେ ଉପରଓଳି ମାମୁଁଘର ପଛ ଆଡ଼ ବାଡ଼ିରେ ମୃତ୍ୟୁମାମୁଁ ହେରିକା ବସିଥାନ୍ତି । ଆମେ ପିଲାଏ ବି କିଏ କିଏ ଥାଉ । ଖୁସିଗପ ହେଉଥାଏ । ଗୋଟାଏ ଦୋନଳା ବନ୍ଧୁକ ବି ଥାଏ । ସେଟା ଥିବାରୁ ବ୍ୟବହାର କରିବାକୁ ହାତ ଖଇଖଇ ହେଉଥାଏ ମାମୁଁମାନଙ୍କର । ଜଣେ କିଏ ସୁଝେଇଲା ଯେ ହତା ପାଚେରୀ ପାଖରେ ଗୋଟିଏ ଗଛରେ ଲାଖ ବିନ୍ଧାଯାଉ । ମାତ୍ର ଗଳି ସେପଟ ରାସ୍ତାରେ ପଡ଼ିପାରେ ବୋଲି ଏ ପ୍ରସ୍ତାବ ନାକଚ ହେଲା । ଶେଷକୁ ଦୃଷ୍ଟି ପଡ଼ିଲା ସଜନା ଗଛ ଉପରେ ବସିଥିବା କାଉଟାଏ ଉପରେ । ସେଇ ବିଚାରାକୁ ହିଁ ଗୁଳି କରାହେଲା । ଗୁଳି ବାଜି ସେ ମଲାନାହିଁ, ତଳେ ଖସି ପଡ଼ିଲା । ଜଣେ ଚାକର ତାକୁ ଉଠାଇ ଆଣିବାରୁ ଦେଖାଗଲା ଯେ ତାର ଗୋଟାଏ ଡେଣା ଭାଙ୍ଗି ଯାଇଛି । ସେଥିରେ ଟିକିଏ ହଳଦି ଲଗାଇ ତା'କୁ ଛାଡ଼ିଦିଆ ହେଲା । ଏ ଘଟଣାରେ ଅକାରଣ କ୍ରୂରତା ମତେ ଖୁବ୍ ଖରାପ ଲାଗିଥିଲା । ମୁଁ ଘରକୁ ଆସି ପରେ ଅନେକ ବେଳଯାଏ ଏକୁଟିଆ ବସି ଏ ବିଷୟରେ ଭାବିଲି । ସେତେବେଳେ ଏହା ବିରୋଧରେ କୌଣସି ଉଚ୍ଚବାଚ୍ୟ ନ କରିବାଟା ମୋର କାପୁରୁଷତା ବୋଲି ଅନୁଭବ କଲି । ଜୀବଜନ୍ତୁଙ୍କ ପ୍ରତି ଏପରି ହିଂସା ଅନୁଚିତ ବୋଲି ମଧ୍ୟ ମନରେ ଧାରଣା ହେଲା ।

ଏଇ ୧୯୨୮-୩୦ ଭିତରେ କୌଣସି ଏକ ସମୟରେ ଗାନ୍ଧୀଜୀଙ୍କର ଆତ୍ମକଥା ଓ ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ ଆମେ ପଢ଼ିଥିଲୁ । ଆତ୍ମକଥାର ଓଡ଼ିଆ ଅନୁବାଦ ତ ବାହାରି ଥିଲା, ଅନ୍ୟ ବହିଟି ବାପା ପଢ଼ି ଶୁଣାଇଥିଲେ ବୋଲି ମନେପଡୁଛି । ଏଇ ସମୟରେ ଦୁଇଖଣ୍ଡ ବହି ଖୁବ୍ ଚହଳ ସୃଷ୍ଟି କରିଥିଲା । ଖଣ୍ଡେ ହେଲା ମିସ୍ ମେୟୋଙ୍କର କୁଖ୍ୟାତ 'ମଦର ଇଣ୍ଡିଆ' ।

ଏଥିରେ ସେ ଭାରତର ବହୁତ କୁତ୍ସା କରିଥିଲେ ଓ ଗାନ୍ଧୀଜୀ ଏହାକୁ "ନର୍ଦ୍ଦମା ନିରୀକ୍ଷକଙ୍କ ରିପୋଟ" ଆଖ୍ୟା ଦେଇଥିଲେ । ଅନ୍ୟ ଖଣ୍ଡକ ରେଭରେଣ୍ଡ ସଣ୍ଡରଲ୍ୟାଣ୍ଡଙ୍କର 'ଇଣ୍ଡିଆ ଇନ୍ ବଣ୍ଡେଜ୍' (ବନ୍ଦୀ ଭାରତ) । ଏଥିରେ ଲେଖକ ସ୍ୱାଧୀନତାର ଦୃଢ଼ ସମର୍ଥନ କରିଥିଲେ । ଏହି ବହି ସରକାର ବାଜ୍ୟାପ୍ତି ବି କରିଥିଲେ । ଏଇଟି ମୁଁ ପୂରା ପଢ଼ିଥିଲି । ଏହି ସମୟରେ ଆଉ ଖଣ୍ଡେ ପ୍ରସିଦ୍ଧ ବହି ଲାଲ୍ ଲଜପତ ରାୟଙ୍କର 'ଅନ୍‌ହ୍ୟାପି ଇଣ୍ଡିଆ' (ଅସୁଖୀ ଭାରତ) ବାହାରି ଥିଲା । ଏଇଟା ବିରାଟ ବହି । ପୂରା ପଢ଼ିବାର ଧୈର୍ଯ୍ୟ ନ ଥିଲା । ପୃଷ୍ଠା ଓଲଟାଇ ଦେଖିଛି । ଲାଲାଜୀଙ୍କର ଏ ବହି 'ମଦର ଇଣ୍ଡିଆ' ର ଜବାବରେ ଲେଖା ଯାଇଥିଲା ।

୧୯୨୮ ରେ ବର୍ଷାଦିନେ ଦିନକର ଦୁଇପହରବେଳେ ବାପା ଘରେ ବସିଛନ୍ତି, ଖଣ୍ଡେ ତାର ଆସି ପହଞ୍ଚିଲା । ବାପା ହଠାତ୍ ଉଠି ବାହାରିଗଲେ । ତାର ଖଣ୍ଡ ଉଠେଇ ନେଇ ମୁଁ ଦେଖିଲି ସେଥିରେ ସାକ୍ଷୀଗୋପାଳଠାରେ ଉତ୍କଳମଣି ଗୋପବନ୍ଧୁଙ୍କର ଦେହାବସାନର ଖବର ରହିଛି । ତା' ପରେ କଟକରେ ଶୋକ ସଭା, ଶୋକ ଶୋଭାଯାତ୍ରା ଓ କାଠଯୋଡ଼ିରେ ତିଳତର୍ପଣ ହେଲା । ଶୋଭାଯାତ୍ରାରେ ପ୍ଲାକାର୍ଡ଼ ଥିଲା - ଗୋପବନ୍ଧୁ ଇଜ୍ ଡେଡ୍ ଲଙ୍ଗ୍ ଲିଭ୍ ଗୋପବନ୍ଧୁ । ଏ ଶେଷୋକ୍ତ ଗୋପବନ୍ଧୁ ବୋଲଡେ ବାପାଙ୍କୁ ଲକ୍ଷ୍ୟ କରାଯାଇଥିଲା ।

ଏହାରି ପରେ ଲାଲାଜୀଙ୍କର ମଧ୍ୟ ଦେହାବସାନ ହେଲା । ସାଇମନ୍ କମିଶନ୍ ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କରିବା ବେଳେ ତାଙ୍କ ଉପରେ ପୁଲିସର ଲାଠିମାଡ଼ ହୋଇଥିଲା । ଏହାର କିଛିଦିନ ପରେ ତାଙ୍କର ମୃତ୍ୟୁ ହେଲା ଓ ଏହାହିଁ ତାର କାରଣ ବୋଲି ସେତେବେଳେ ଶୁଣିଲୁ । କଟକରେ ଲାଲାଜୀଙ୍କର ଶୋକ ସଭାରେ ସେତେବେଳର ଥଣ୍ଡା ଆବହାଓ୍ୱାକୁ ଚାହିଁ ଲୋକ ସମାଗମ ଖୁବ୍ ହୋଇଥିଲା । ଏହି ସମୟରେ ମୁଁ ରାଜନୀତିକ ସଭା ସମିତିରେ ଯୋଗ ଦେବା ଆରମ୍ଭ କଲି । ସଭାରେ ବାପା ତାଙ୍କ ବକ୍ତୃତାରେ 'ଲାୟନ୍ ଅଫ୍ ଦି ପଞ୍ଜାବ' ବଦଳରେ 'ପଞ୍ଜାବ ଅଫ୍ ଦି ଲାୟନ୍' କହିଥିଲେ ବୋଲି ଆମେ ତାଙ୍କୁ ଚିଡ଼ାଉଥିଲୁ ।

## ପୁଣି ଅଲକାଶ୍ରମ

୧୯୨୯ ରେ କୌଣସି ଏକ ସମୟରେ ଅଲକାଶ୍ରମ ଗଲୁ, ସେଇଠି ରହିବା ପାଇଁ, ବାପା, ବୋଉ, ଚୁନୀ ଓ ମୁଁ । ଆମେ ବସ୍‌ରେ ଯାଇ ଉପରଓଳି ପହଞ୍ଚିଲୁ । ପ୍ରଥମ କଥା ମନେ ପଡୁଛି, ବୋଉ ଆମକୁ ତାକିଦ୍ କରିଦେଲା ଯେ ସନ୍ଧ୍ୟାପରେ ଚାଳରେ ହାତ ଦେବ ନାହିଁ, ଜନ୍ତୁଜନ୍ତା ଥିବେ । ସେତେବେଳକୁ ସେଠାରେ ଜାତୀୟ ବିଦ୍ୟାଳୟ ଅନେକ ଦିନୁ ଭାଙ୍ଗି ଗଲାଣି । ବାପାହେରିକା କଟକ ଖଦୀ ଏସୋସିଏସନ୍ ବୋଲି ଗୋଟାଏ ସଂସ୍ଥା ଗଢ଼ିଥାନ୍ତି । ତା'ରି ଉତ୍ପାଦନ କେନ୍ଦ୍ର ସେଠି ଚାଲିଥାଏ । ବିଦ୍ୟାଳୟର ଘରସବୁ ଥାଏ ।

ମାଛଗାଁ କେନାଲର ଦକ୍ଷିଣକୁ ସୋମନାଥ ହାଟ, କେନାଲ୍‌ର ପ୍ରପାତଠାରୁ ଅଳ୍ପ ଦୂରରେ । ହାଟର ପୂର୍ବକୁ ଗୋଟାଏ ବେଶ୍ ବଡ଼ ଆମ୍ବତୋଟା, ତାରି ଭିତରେ ଆଶ୍ରମ । ହାଟ ଓ ତୋଟା

ମଝିରେ ଦକ୍ଷିଣକୁ ଚାଲି ଯାଇଛି ଜଗତ୍‌ସିଂହପୁରରୁ ନିଆଳୀ ମାଧବ ଆଡ଼କୁ ରାସ୍ତା । ତୋଟାର ଦକ୍ଷିଣକୁ ଅଳ୍ପଦୂରରେ ଅଳକା ନଈ ବହି ଯାଇଛି । ଅଳ୍ପ ପାଣି, ଦଳ ଶିଉଳିରେ ଭର୍ତ୍ତି । କେନାଲରୁ ପାଣି ଛାଡ଼ି ତାର ସ୍ରୋତକୁ ବଞ୍ଚେଇ ରଖା ହେଉଥାଏ । ଆଶ୍ରମର ପୂର୍ବକୁ କେନାଲ୍‌ର କୂଳେ ଏକ ଲମ୍ବ ବାଡ଼ି । ସେଥିରେ କିଛି କିଛି ପନିପରିବା ଚାଷ ହୁଏ । ତୋଟାର ପୂର୍ବ ମୁଣ୍ଡକୁ ଚାରି ମାହାଲା ମାଟି ଘର ଖଞ୍ଜା ବୁଲିଥାଏ । ତା'ର ଉତ୍ତର ପଟ ମାହାଲାରେ ଅଫିସ୍, ଖଦୀ କେନ୍ଦ୍ର ଇତ୍ୟାଦି । ପଶ୍ଚିମ ପଟେ ଆମେ ଥାଉ । ଦକ୍ଷିଣ ପଟେ ଅନ୍ୟାନ୍ୟ କର୍ମୀମାନେ ଥା'ନ୍ତି । ପୂର୍ବପଟରେ ରୋଷେଇ ଘର, ଗୁହାଳ ଆଦି ।

ସେଠି ବିଶ୍ୱଦା ଖଦୀ କାମ ଦାୟିତ୍ୱରେ ଥିବାପରି ମନେ ପଡୁଛି । ଅକ୍ରୁର ମଧ୍ୟ ଥା'ନ୍ତି । ପଣ୍ଡିତ ପଡ଼ିହାରୀଙ୍କ ଘର ସେଠୁ ଅଳ୍ପ ଦୂରରେ । ସେ ସେଇ ଆଶ୍ରମକୁ କେନ୍ଦ୍ର କରି ଗାଁମାନଙ୍କରେ କଂଗ୍ରେସର ପ୍ରଚାର ଓ ସଂଗଠନ କାମ କରୁଥା'ନ୍ତି । ନୀଳମଣି ପ୍ରଧାନ ମଧ୍ୟ ସେଠି ଥାଇ କାମ କରୁଥାନ୍ତି । ବ୍ରହ୍ମାନନ୍ଦ ଚୌଧୁରୀ ଚାଟରାର ବାସିନ୍ଦା । ସେ ତ ଆସି ଦିନାକେତେ ଥିଲେ । ପଟ୍ଟାଶୋଳର ଗିରିଧାରୀ ପଣ୍ଡା, ସେ ପରେ ପଣ୍ଡିତ ପଡ଼ିହାରୀଙ୍କ ଜ୍ୱାଇଁ ହେଲେ, ଗାଁରେ ସୂତାକଟା ପ୍ରସାର କାମରେ ସାହାଯ୍ୟ କରୁଥାନ୍ତି । ମହିଳା କର୍ମୀ ବି କିଏ ସବୁ ଆସି ରହିଥାନ୍ତି । ସେମାନଙ୍କ ଭିତରେ ବାଲେଶ୍ୱରର କର୍ମୀ ବିଶ୍ୱନାଥ ହୋତାଙ୍କ ସ୍ତ୍ରୀ ପ୍ରଫୁଲ୍ଲ ଅପାଙ୍କ କଥା ମନେ ପଡୁଛି । ଲବଣ ସତ୍ୟାଗ୍ରହ ଭିତରେ ବିଶ୍ୱନାଥ ବାବୁ ହଇଜାରେ ମରିଗଲେ ।

ପଣ୍ଡିତ ପଡ଼ିହାରୀ, ନୀଳକଣ୍ଠବାବୁ, ବିଶ୍ୱଦା, ଅକ୍ରୁର ଏମାନେ ସମସ୍ତେ ଅଳକାଶ୍ରମରେ ଜାତୀୟ ବିଦ୍ୟାଳୟ ଆରମ୍ଭ ବେଳୁ ତାହା ସହିତ ସଂପୃକ୍ତ ଥିଲେ । ପଣ୍ଡିତ ମହାଶୟ ବାଙ୍ଗରା, ଚେମେଡ଼ ମଣିଷଟିଏ । ମୁଣ୍ଡରେ କେଶ ବିରଳ । ଅନବରତ ପାନ ଚୋବାଉଥାନ୍ତି । ମନରେ କୌଣସି କଥା ନ ଲୁଚାଇ ସ୍ପଷ୍ଟ ଭାବରେ କହି ଦେବାରେ ଅଭ୍ୟସ୍ତ । କଥା କଥାକେ 'ଯାହା' କହିବାର ଆଳୁ ଦୋଷ ଥାଏ । ଟିକେ ଉତ୍ତେଜିତ ହୋଇଗଲେ ଏଇଟା ବଢ଼ିଯାଏ । ସେତେବେଳେ ତାଙ୍କର 'ଯାହା' ଟା ଅତି ଯାହା ହେଇଗଲାଣି, ଯେତେ ଯାହା କଲେ ବି ମୋଟେ ଯାହା କରୁନାହିଁ,' ଭଳି କଥା ଶୁଣି ଆମମାନଙ୍କର ହସ ଉଚ୍ଛୁଳେ । ପଣ୍ଡିତ ମହାଶୟ ଅକ୍ଳାନ୍ତ ପରିଶ୍ରମ କରିପାରୁଥିଲେ । ଗାଁରେ ବୁଲିବାବେଳେ ହିଡ଼ ବାଡ଼, ଡେଇଁ, କିଆରି ଲଘି ସିଧା ଗନ୍ତବ୍ୟ ସ୍ଥାନଆଡ଼କୁ ଯିବା ତାଙ୍କର ଅଭ୍ୟାସ ଥିଲା । ବୁଲାଣିଆ ଧରାବନ୍ଧା ବାଟ ପାଇଁ ତାଙ୍କର ଧୈର୍ଯ୍ୟ ନ ଥିଲା । ଜୀବନରେ ମଧ୍ୟ ସେହିପରି ଥିଲେ । ସେଇ ସମୟରେ ସେ ଦିନାକେତେ ଅଳକାଶ୍ରମରୁ ଛ ସାତ ମାଇଲ ଦୂର ରଣହଟା ଗାଁରେ ସୂତାକଟା ପ୍ରଚାର ପାଇଁ ଯାଇ ବସିଥିଲେ ।

ସେଠି ଆଉ ଜଣେ ପୁରୁଣା ବାସିନ୍ଦା ଥା'ନ୍ତି ମହତା । ଦରବୁଢ଼ା ଲୋକ, ଘର କେଉଁଠି ଥିଲା ମୋର ଧାରଣା ନାହିଁ । ତାଙ୍କର ବିଶେଷତ୍ୱ ଥିଲା ଯେ ସେ ଯୋଗସାଧନା କରୁଥା'ନ୍ତି । ରାତିରେ ଶୋଇବାବେଳେ ପଦ୍ମାସନ କରି ଚିତ୍‌ହୋଇ ଶୁଅନ୍ତି । ତେଣେ ଲୁଚେଇ କରି ଶୁଖୁଆ ବି ପୋଡ଼ିଥା'ନ୍ତି । ଦିନେ ସନ୍ଧ୍ୟାବେଳେ ଏଣେ ପ୍ରାର୍ଥନା ଚାଲିଛି, ତେଣେ ତୀବ୍ର ଶୁଖୁଆ ପୋଡ଼ା ଗନ୍ଧ ଆସିଲା । ବାପା ରାଗି ଅଗ୍ନିଶର୍ମା ହେଲେ ଓ ମହତା ବିଚାରି ସେଠୁ ବିଦାୟ ନେଲେ ।

ଆଶ୍ରମ ବାଡ଼ିରେ ଶୁକୁରୀ ବୋଲି ଜଣେ ବିଧବା ହରିଜନ ବୁଢ଼ୀ ଓ ତା'ର କେତେଟା ପିଲା ଥା'ନ୍ତି । ସେ କୁକୁଡ଼ା ପାଳିଥାଏ । ବିଶ୍ୱଦା ହେରିକା ଦିନେଦିନେ ତା'ରି ଘରେ ପାଟି ବଦଳାଇ ଆସନ୍ତି, କୁକୁଡ଼ା ଝୋଳ ଖାଇ । ଅଳକାଶ୍ରମର ମୁଖ୍ୟ କାମ ଥିଲା ଖଦୀ ଉତ୍ପାଦନ ଓ ବିକ୍ରି । ଆଉ ଗାଁମାନଙ୍କରେ ବୁଲି ଲୋକଙ୍କ ସାଙ୍ଗରେ ସଂପର୍କ ଓ କଂଗ୍ରେସ ବାର୍ତ୍ତା ପ୍ରଚାର । ଚୁନୀ ଓ ମୁଁ ସେଠି ମୁଖ୍ୟତଃ ଗାଁରେ ରହିବାର ଅନୁଭୂତି ଓ ଆସ୍ୱାଦଟା ହିଁ ପାଉଥାଉ । କୌଣସି 'ପାଠ୍ୟ ପୁସ୍ତକ' ପଢ଼ିବାର ଦାୟିତ୍ୱ ନ ଥାଏ । ପତ୍ରପତ୍ରିକା ଗାନ୍ଧୀଜୀଙ୍କର ଲେଖା, ଗପ ବହି ଏମିତି ସବୁ କିଛି କିଛି ପଢୁଥାଉ । ବାପା ଭୋରରୁ ଅନ୍ୟ କର୍ମୀମାନଙ୍କ ସାଙ୍ଗରେ ବସି ଗାନ୍ଧୀଜୀଙ୍କର ବହି ପଢ଼ି ଆଲୋଚନା କରନ୍ତି । ଆମେ ସେଥିରେ ଯୋଗ ଦେଉନାହିଁ । ଚୁନୀ ରୋଷେଇବାସରେ ବୋଉକୁ ଟିକିଏ ସାହାଯ୍ୟ କରେ । ବାକି  ବେଳ ଖେଳୁ ବୁଲୁ । ସକାଳ ସନ୍ଧ୍ୟା ତୋଟାରେ ଗଛରେ ଚଢୁ । ଗଛରେ କେତେ ଉପରୁ ତଳକୁ ଡେଇଁ ହେବ ସେଇଟାର ମୁଁ ଅନୁଶୀଳନ କରୁଥିଲି  ଓ ନଅଫୁଟ କେତେ ଯାଏ ପହଞ୍ଚୁଥିଲି । ସେଠି କେତେଟା ତେନ୍ତୁଳି ଗଛ ବି ଥାଏ । ସେଥିରୁ ଗୋଟାଏ ଦୁଇଟା ଗଛରେ ଅତି ଅସାଧାରଣ ପ୍ରକାର ମିଠା ତେନ୍ତୁଳି ଦେଉଥାଏ । ସେପରି ମିଠା ତେନ୍ତୁଳି ମୁଁ ପୂର୍ବରୁ ଦେଖି ନ ଥିଲି,  ପରେ ବି ଦେଖି ନାହିଁ । ସେ ଗଛରେ ଚଢ଼ି ମନଇଛା ତେନ୍ତୁଳି ଖାଉ । ଗୋଟିଏ ବଡ଼ ଲଟା ବରଗଛ ଥିଲା । ତାହାର ଡାଳଗୁଡ଼ାକ ଲମ୍ୱା, ଲମ୍ୱା ଲହକା, ଅଳ୍ପ ଉଚ୍ଚା । ସେଥିରେ ବସି ଝୁଲୁ । କର୍ମୀମାନେ ଗାଁକୁ ଖଦୀ ବିକ୍ରି ଓ ପ୍ରଚାର ପାଇଁ ଗଲେ ବେଳେବେଳେ ସେମାନଙ୍କର ସାଙ୍ଗରେ ବି ଯାଉ ।

ସେତେବେଳେ ଧଡ଼ିଆଦାଦା ବି ଗାଁରେ ଥା'ନ୍ତି । ଆମ ଗାଁ ଖେରସ, ଆଶ୍ରମ ଠାରୁ ପ୍ରାୟ ଦେଢ଼ମାଇଲ ଦୂର ହେବ । ସେ ବି ଅନେକ ସମୟରେ ଚୁଟନ୍ତି । ସର୍କସର ଅନୁକରଣରେ ସାଇକେଲ ଚଢ଼ାରେ ନାନା ପ୍ରକାରର କାରସାଦି ଅଭ୍ୟାସ କରିବା କଥା ମୁଣ୍ଡରେ ପଶିଲା । ଧଡ଼ିଆଦାଦା ଓ ମୁଁ ସେଇଥିରେ ଦିନାକେତେ ମାତିଲୁ । ଚଳନ୍ତା ସାଇକେଲରୁ ଓହ୍ଲାଇ ଓ ତାକୁ ଛାଡ଼ି ଦେଇ ପୁଣି ତାକୁ ଧରି ଚଢ଼ିବା, ପଛକୁ ମୁହଁ କରି ବସି ଚଳାଇବା, ସାଇକେଲକୁ ଛିଡ଼ା ଅବସ୍ଥାରେ ସ୍ଥିର ରଖିବା ଏମିତି ସବୁ ନାନା କୌଶଳ ସେତେବେଳେ ଆୟତ୍ତ ହେଲା । ପୁଣି ପୋଲ ଭଲଟ୍ (Pole Vault) ବା ଲଗିକୁଦ କି ଆୟତ୍ତ ହେଇଥିଲା । ଉଚ୍ଚ କୁଦା, ଲମ୍ୱ କୁଦା ଆଦି ବି ଅଭ୍ୟାସ କରୁଥାଉ ।

ପାଖ କେନାଲରେ ଦୁଇଓଳି ଗାଧୋଉ, ଦିନେ ଦିନେ ଅଳକା ନଈରେ । ସେଠି କେନାଲଟା ଗୋଟିଏ ସ୍ତରରୁ ତଳସ୍ତରକୁ ପ୍ରାପାତ ଆକାରରେ ଖସିଛି । ପାଣି କମ୍ ଥିବାବେଳେ ତା' ତଳେ ଛିଡ଼ା ହୋଇ ଗାଧୋଇବାକୁ ଖୁବ୍ ମଜା ଲାଗେ । କେନାଲରେ ମୁଁ ପହଁରିବା ବି ଅଭ୍ୟାସ କରୁଥାଏ । ଥରେ ଚୁନୀ ଓ ମୁଁ ଏକାଠି ସଲିଳସମାଧି ଲାଭ କରିବା ଉପରେ ଥିଲୁ । ସକାଳେ ଗାଧୋଇସାରି ଚୁନୀ ପାହାଚରେ ଛିଡ଼ା ହୋଇ କେନାଲଆଡ଼କୁ ପଛ କରି  ବାଳ ଝାଡୁଥିଲା । ଟାଳ ସମ୍ଭାଳି ନ ପାରି କେନାଲରେ ଓଲଟି ପଡ଼ିଲା । ମୁଁ ପାଖରେ ଥିଲି । ତା

ବାଳକୁ ଧରି ପକାଇଲି, କିନ୍ତୁ ନିଜେ ବି ପାଣିରେ ପଡ଼ିଗଲି । ଚୁନୀ ମତେ ଧରି ପକାଇଲା ଦୁହେଁ ବୁଡ଼ି ଯାଉ ଥାଉ ଓ କୂଳ ପାଖରେ ଓଲଟା ସୁଅରେ ପ୍ରପାତ ଆଡ଼କୁ ଟାଣି ହୋଇଯାଉଥାଉ । ସେଠି ନୀଳମଣିବାବୁ ବି ଗାଧୋଉ ଥିଲେ । ସେ ଚଟ୍ କରି ପାଣିରେ ବୁଡ଼ି ଯାଇ ଆମ ଦୁହିଁଙ୍କୁ ଟେକି ଧରିଲେ । ବୋଉ ହେରିକା ଅନ୍ୟମାନେ ବି ଥିଲେ । ଆମକୁ ଉଠେଇ ଆଣିଲେ ।

କେନାଲ ଆରପଟେ ଚାଟରା ଗାଁ, ସେଠି ଭାଗୁଭାଇଙ୍କର ଘର । ତାଙ୍କ ବାପା ଦୁର୍ଗାଚରଣ ଦାସ ଓ ବୋଉ ଖେତ ଅପା ବଞ୍ଚିଥା'ନ୍ତି । ତାଙ୍କ ଭାଇମାନଙ୍କ ଭିତରୁ ଚଇଁ ଭାଇଙ୍କୁ ମନେପଡ଼େ । ସେମାନେ ସମସ୍ତେ ତୁଳସୀମାଳିଆ ବୈଷ୍ଣବ । ଭାଗୁଭାଇ, ଦୁଃଖୀ ଅପା (ସରଳା ଦେବୀ), ଚଇଁ ଭାଇ ହେରିକା ବରାବର ଆଶ୍ରମକୁ ଆସନ୍ତି । ଅନ୍ୟମାନେ ବି ସମସ୍ତେ ମଝିରେ ମଝିରେ ଆସନ୍ତି । ଚାଟରାରେ ଗୋଟିଏ ଚନ୍ଦନ ପୋଖରୀ, ତା' ମଝିରେ ଗୋଟିଏ ଦୀପଦାଣ୍ଡି ବା ସାନ ମନ୍ଦିର ଥାଏ । ମୁଁ କେତେଥର ଯାଇ ସେ ପୋଖରୀରେ ପହଁରିବା ଓ ସେ ଦୀପଦାଣ୍ଡି ଉପରୁ ଡେଇଁବା ଅଭ୍ୟାସ କରିଛି । ସେ ବର୍ଷ ଜାତୀୟ ସପ୍ତାହ (ଏପ୍ରିଲ୍ ୬-୧୩) ଉପଲକ୍ଷେ ସକାଳୁ ଶୋଭାଯାତ୍ରା ବାହାରିଥିଲା । ସେତେବେଳକୁ ପ୍ରଭାତଫେରି କଥାଟା ଓଡ଼ିଶାରେ ପଶି ନ ଥାଏ । ଚାଟରାରୁ ଚଇଁ ଭାଇ ହେରିକା ଖୋଳ କରତାଳ ଧରି କୀର୍ତ୍ତନ ଦଳ ସହ ଆସିଲେ । ଗାନ୍ଧୀ ଜୟନ୍ତୀ ଓ ଆଉ କେଉଁ ଉପଲକ୍ଷରେ ବି ଶୋଭାଯାତ୍ରା ବାହାରି ଥିଲା । ଗୋଟିଏ ଗୀତ ବରାବର ବୋଲା ଯାଉଥିଲା । "ଭାଇରେ ଆଜି ଆସିଛି ଦିନ, ବିଦେଶୀ ବସନ କର ବର୍ଜନ" ଆଉ ଗୋଟିଏ ଗୀତ–

"ଆୟରେ, ଆୟରେ, ଆୟରେ ତୋରା,
ହିନ୍ଦୁ ମୁସଲମାନ ସକଲେ ଭାଇ ।
ଉଡ଼ିଛେ ନିଶାନ, ବାଜିଛେ ବିଷାଣ
ଆୟରେ ସକଲେ ମିଲିୟା ଯାଇ ।"

ଜଣେ ପତଳା ଗୋରା ଯୁବକ ମୂଳ ଗାହାଣ । କଳରେ ମସ୍ତବଡ଼ ପାନ ଖିଲ ଗୁଞ୍ଜା ହୋଇଥାଏ । ପିକ ବୋହିପଡ଼ିବ ବୋଲି ତଳ ଓଠଟା ଆଗକୁ ଠେଲି ଧରା ହୋଇଥାଏ । ଫଳରେ ଉଚ୍ଚାରଣ ଗୁଡାକ ଟେଢ଼ା ହୋଇଯାଉଥାଏ । ଜାତୀୟ ସପ୍ତାହ ସହିତ ସମ୍ପର୍କ ନ ଥିବା କୀର୍ତ୍ତନ ଗୀତ ବି ବୋଲିଥାଏ, "ଶୈଶବ କାଳେ, ବାଳକ ମେଳେ କଟାଇଲୁ କାଳ ତୁ ଅବହେଳେ "

ସେଠୁ କିଛି ଦୂରରେ କଣ୍ଟାପଡ଼ାରେ ସାଉଁଟି ବାବୁଙ୍କର ଘର । ତାଙ୍କ ଭାଇ ଗୁରୁ ଚରଣ ମହାନ୍ତି ବିଲାତକୁ କ'ଣ ପଢ଼ିବାକୁ ଯାଇଥିଲେ । ସେଠି ପ୍ରଗତିଶୀଳ ରାଜନୀତିରେ ମିଶି, ଶ୍ରମିକ ମେଳାରେ ଯୋଗ ଦେଇ, ସମାଜବାଦର ଦୀକ୍ଷା ନେଇ ଫେରିଲେ । ଓଡ଼ିଶାରେ ବୋଧହୁଏ ସେ ହିଁ ପ୍ରଥମ ସମାଜବାଦୀ । ଦାଦାର ଖୁବ୍ ବନ୍ଧୁ ଥିଲେ । ଦିନାକେତେ ତରିକୁନ୍ଦରେ କି ତା' ପାଖ କେଉଁ ଗାଁରେ ରହିଥିଲେ, ବୋଧହୁଏ ଗାଁ କାମ କରିବା ପାଇଁ । ଯକ୍ଷ୍ମା ରୋଗରେ ତାଙ୍କର ଅଳ୍ପ ବୟସରେ ମୃତ୍ୟୁ ହୋଇଗଲା ।

ଦିନେ ଆମେ ସବୁ ଖଦୀ ବିକ୍ରି ପାଇଁ କଣ୍ଟାପଡ଼ାକୁ ବାହାରିଲୁ । ଅଳ୍ପ ବାଟ ବୋଲି କୁହା ହୋଇଥାଏ । ଏଣେ ଯେତେ ଚାଲିଲେ ବି ଗାଁର ଦର୍ଶନ ନାହିଁ । ତେଣେ ଖରାରେ ମୁଣ୍ଡ ତାତିଲାଣି । ଯେତେଥର ପଚାରୁ ଯେ, ଆଉ କେତେବାଟ ? ଜବାବ ମିଳେ ଏଇ ହେଇଟି । ଆମେ ଶେଷକୁ ପରିହାସରେ ଗୋଟିଏ ଢଗ ବାନ୍ଧିଲୁ ।

"ହେଇଟି ଗାଁରେ ସାଉଁଟି ଘର !"

## ଅଳକା ଓ ସାହିତ୍ୟଚର୍ଚ୍ଚା

ସେଠି ଜାତୀୟ ବିଦ୍ୟାଳୟ ଚଳିବାବେଳେ 'ଅଳକା' ନାଁ ରେ ଗୋଟିଏ ହାତଲେଖା ମାସିକ ପତ୍ରିକା ବାହାରୁଥିଲା । ବିଦ୍ୟାଳୟ ବନ୍ଦ ହେବା ପରେ ମଧ୍ୟ ଦୁଃଖୀଅପା ହେରିକା ତାକୁ ଆଉ କିଛିଦିନ ଚାଲୁ ରଖିଥିଲେ । ତା'ର ପୁରୁଣା ସଂଖ୍ୟାସବୁ ସେଠି ଥାଏ । ସେ ସବୁ ଦେଖି ପୁଣି ତାକୁ ଚଳେଇବା ପ୍ରେରଣା ହେଲା । ଆମେସବୁ ତାକୁ ପୁଣି ଆରମ୍ଭ କଲୁ ଓ ଅଳକାଶ୍ରମରେ ଥିବାଯାକେ ଚଳେଇଲୁ । କବି ନବକିଶୋର ବି ସେଥିରେ ଜଣେ ଲେଖକ ଥିଲେ । ପୁରୁଣା 'ଅଳକା' ରେ ଅନେକ ଭଲ ଭଲ ପ୍ରବନ୍ଧ ଓ କବିତା ବାହାରି ଥିଲା । ଉଦୟନାଥ ଷଡ଼ଙ୍ଗୀ, ପରେ 'ସମାଜ'ର ସଂପାଦକ, ପିଲାଦିନେ ଅଳକାଶ୍ରମ ଜାତୀୟ ବିଦ୍ୟାଳୟର ଛାତ୍ର ଥିଲେ । ତାଙ୍କର ଗୋଟିଏ ଗୋଟିଏ ଚମତ୍କାର ଦୀର୍ଘ କବିତା ଅଳକାର ଗେଟିଏ ସଂଖ୍ୟାରେ ବାହାରି ଥିଲା । ତା'ର କେତେ ଧାଡ଼ି ମନେ ରହିଯାଇଛି ।

'ଅଳକା ବକ୍ଷେ ଇଂରାଜୀ ତରୀ ବଜାଇ ଭେରୀ ଆସିଲା ପଶି,
ଶୁଣିବା କଥା ସେହି ଦିନୁଁ ତା ସ୍ୱାଧୀନତା ଯାଇଛି ହଜି ।

x x x

ଅଳକା ଆଜି ଭିନ୍ନ ନୋହେ ଶୀର୍ଣ୍ଣ ଦେହେ କରିଛି ବ୍ରତ
ଧୈର୍ଯ୍ୟ ହରାଇ ଶୋଇବ ନାହିଁ ସେ ହୋଇବ ଘୋର ଧ୍ୟାନେ ରତ ।'

ଜଗତ୍‌ସିଂହପୁରର ଅଳ୍ପ ପୂର୍ବରୁ ଅଳକା ନଈ କୂଳରେ ଫିରିଙ୍ଗିକୁଦ ବୋଲି ଗୋଟିଏ ଜାଗା ଅଛି । ଶୁଣାଯାଏ ଯେ ଇଂରେଜମାନେ ଓଡ଼ିଶାକୁ ଜାହାଜରେ ଆସି ପ୍ରଥମେ ସେଇଠି ତାଙ୍କର ଘାଟି ଓ ବ୍ୟବସାୟ କେନ୍ଦ୍ର କରିଥିଲେ । ଏସବୁ ଘରର ଭଙ୍ଗାଟୁଟା ଇଟା ପଥର ବି ସେଠି ଥିଲା । ଅଳକା ଏକ ସମୟରେ ନୌଚାଳନା କରିବା ଭଳି ନଈ ଥିଲା । ମହାନଦୀର ଏକ ଶାଖା ନଈ, କେନାଲ ତିଆରିବେଳେ ତା'ର ମୁହଁ ବା ଉଦ୍‌ଗମ ସ୍ଥାନକୁ ବନ୍ଦ କରି ଦିଆହେଲା ଓ ତାପରେ ସେ ହୋଇଗଲା ଏକ ଦଳ ଓ ବୋରଝାଙ୍ଗିପୂର୍ଣ୍ଣ ସପେଇ ନାଳ । ତା'ର ସୁଅ ଚାଲୁ ରଖିବା ପାଇଁ ସେଥିରେ କେନାଲରୁ କିଛି ପାଣି ଛଡ଼ାଯାଏ ।

ଅଳକାରେ ଅନ୍ନଦା ଶଙ୍କର ରାୟଙ୍କର ବି ଗୋଟିଏ କବିତା ବାହାରିଥିଲା । ତା'ର ପ୍ରଥମ ଧାଡ଼ି ମନେ ଅଛି -

'ଅଗ୍ନି କଣା ଅଗ୍ନି କଣା ଦେହ ଦୀପେ ଜାଳ ଦୀପ୍ତ ଶିଖା' । ଏ କବିତାର ପ୍ରାଣବନ୍ତା ଓ ତେଜସ୍ୱୀତା ସେତେବେଳେ ମନକୁ ଖୁବ୍ ଛୁଉଁଥିଲା ।

ସେଠି ଥିବାବେଳେ ଆମେ ମଝିରେ ମଝିରେ ଖୋରସକୁ ଯାଉ । ତା ପୂର୍ବରୁ କଟକରେ ଥିବାବେଳେ ମା' ସାଙ୍ଗରେ ସେଠିକି ଥରେ ଯାଇଥିବାର ମନେ ପଡୁଛି । ଘରସବୁ ଭାଇଆଳି ବାଣ୍ଟ ହେଇ ତା' ଭିତରେ ଆମର ବଖୁରିଏ କି ଦେଢ଼ ବଖରା ଘର ଥାଏ । ମା' ଯାଇ ସେଇଠି ରହିଥିଲା । ସେଠି ଭିକାରୀ ବଡ଼ପା, ଦେଠେଇ, ସନାବଡ଼ପା, ଗୋବିନ୍ଦଦାଦା, ଅଚ୍ୟୁତିଦାଦା, ରାମଦାଦା ହେରିକା ଥା'ନ୍ତି । ଶୋଭୀଅପା ବୋଲି ଜଣେ ଧାଈ ଥାଏ । ନାକରେ ଏକ ମସ୍ତ ଫୁଲଗୁଣା, ମୁଣ୍ଡରେ ଗୋଳିଆ ଜୁଡ଼ା, କଚ୍ଛା ମାରି ଲୁଗା ପିନ୍ଧେ । ସେ ଆମକୁ ସବୁ ଦେଖିବା ପାଇଁ ଭାରି ଭଲ ପାଏ । ଆମେ ସବୁ ଅଳକାଶ୍ରମରେ ଥିବାବେଳେ ସନାବଡ଼ାପାଙ୍କର କାଳ ହୋଇଗଲା ।

## ଅଣଖିଆ ଫାର୍ମ

ଏଇ ସମୟରେ ଦାଦା ହେରିକା ଆସି ଅଣଖିଆରେ ରହିଲେ । ଜାଗାଟା ଅବଶ୍ୟ ଅଣଖିଆ ଡାକଘରଠୁଁ ବହେ ବାଟ । ତା'ର ପାଖ ଗାଁର ନାମ ଧନୀପୁର । ଏଇଟା କଟକରୁ ବାଇଶ ମାଇଲ । ଅଳକାଶ୍ରମରୁ ସାତ ମାଇଲ । ସେହି ମାଛଗାଁ କେନାଲର ଦକ୍ଷିଣ ପଟେ ନଓ୍ୱାଦା ଲକ ପାଖରେ । ସେଠି ଆମର ପାଞ୍ଚ ଛ' ଏକର ଏକଚକିଆ ଜମି ଥିଲା । ତା' ଉପରେ ଦାଦା ଚାଷବାସ ଆରମ୍ଭ କରିଥିଲା । ନୂଆ ଫାରମ କିସମର ବୋଲାଉଥିବା ଆଖୁର ଚାଷ ଓଡ଼ିଶାରେ ଯେଉଁମାନେ ଆରମ୍ଭ କରିଥିଲେ, ଦାଦା ତା' ଭିତରେ ଜଣେ । ଜମିରେ କେନାଲ ପାଣି ମାଡ଼େ । ଫାର୍ମର ଦକ୍ଷିଣକୁ ଅଳଙ୍କା ନଈ । ନଈ ସେପାରିରେ କେନ୍ଦାଳ ଗାଁ । ଅଞ୍ଚ ପଶ୍ଚିମକୁ ଗୋଟିଏ ଗଡ଼ାଣିଆ ପକ୍କା ନାଳ ବାଟେ କେନାଲରୁ ଅଳଙ୍କା ନଈକୁ ପାଣି ଛଡ଼ା ହୁଏ, ତା'ର ପ୍ରବାହ ଚାଲୁରଖି ତାକୁ ବନ୍ଦ ହେବାକୁ ନ ଦେବା ପାଇଁ । କେନାଲ ପାଖ ଧନୀପୁରରେ ବେଶ୍ ବଡ଼ ମୁସଲମାନ ବସ୍ତି । ଦାଦା ସେହି ଜମି ମଝିରେ ଗୋଟିଏ ନୂଆ ଢଙ୍ଗର ଘର ତିଆରି କରିଥାଏ । ଘରର କାନ୍ଥ ଓ ଚଟାଣ ପକ୍କା, ଉପର ଚାଳ, ଡାକବଙ୍ଗଳା ପରି । ଦୁଇବଖରା ରହିବା ଘର, ଗୋଟିଏ ଭଣ୍ଡାର ଘର ଓ ଫାଳେ ରୋଷେଇ ଘର । ଦୁଇଫାଳ ବାରଣ୍ଡା, ଘରର ଝରକାସବୁ ଓସାରିଆ- ଏହାକୁ ଫରାସୀ ଝରକା କୁହାଯାଏ ।

ଦାଦା ଏଠି ଘର କରିବା ପୂର୍ବରୁ ଜାଗାଟା ଅପନ୍ତରା ଥିଲା । ଗୋଟିଏ ପାଖରେ ମୁସଲମାନମାନଙ୍କର ଗୋରସ୍ଥାନ, ଆର ପାଖରେ ହିନ୍ଦୁଙ୍କର ମଶାଣୀ । ଲୋକଙ୍କର ବିଶ୍ୱାସ ଯେ ଯେତେ ଖବୀଶ ନାମଧାରୀ ମୁସଲମାନ ଭୁତ ଓ  ଡାହାଣୀ, ଚିରଗୁଣୀ, ଓଥରା, ବ୍ରହ୍ମଦୈତ୍ୟ ଆଦି ହରେକ କିସମର ହିନ୍ଦୁ ଭୁତ ସେଠିକାର ପ୍ରତି ଗଛ ଓ ବୁଦାରେ ବସା ବାନ୍ଧି ରହିଥିଲେ । ଖୁଡ଼ୀ ଆସିବା ପୂର୍ବରୁ ଦାଦା ସେଠି ଏକା ରହୁଥିଲା । ଅନେକ ସମୟରେ କଟକରୁ ଏକୁଟିଆ

ଅଧରାତିରେ ସାଇକେଲ୍‌ରେ ଆସି ପହଞ୍ଚେ । ଅନେକ ସମୟରେ ମଶାଣିରୁ କୁକୁର ମଣିଷଙ୍କର ହାତଗୋଡ଼ ଆଣି ଘର ପାଖରେ ପକାନ୍ତି । ଥରେ ଗୋଟିଏ ପୂରାହାତ ଆଣି ପକାଇଥିଲେ । ରାତିରେ ତ ବିଲୁଆ ଓ ହେଟାଙ୍କ କୀର୍ତ୍ତନ ପହରକୁ ପହର ଯେ ନବବାବୁଙ୍କର ବେତାଳସିଦ୍ଧି ହୋଇଯାଇଛି । ତାହା ନ ହେଲେ ସେଠି ଏତେ ଖବୀଶ ଓ ଭୂତଙ୍କ ଭିତରେ ତିଷ୍ଠି ରହିବା କ'ଣ ସୋଜା କଥା ?

ଆମେ ଅଳକାଶ୍ରମରେ ଥାଉ । ଦାଦା ଓ ଖୁଡ଼ୀ ସେଠି ଥା'ନ୍ତି । ମଝିରେ ମଝିରେ ଆମେ ସବୁ ଅଣଖିଆ ଯାଉ । ମୁଁ ବି ସାଇକେଲରେ ଏକା ଯିବା ଆସିବା କରେ । ଦୁଇ ଜାଗାରେ ଗାଁଉଲି ପରିବେଶରେ ଜୀବନ ଯାତ୍ରାର ଦୁଇ ପ୍ରକାରର ବୁଣେଇ । ଅଳକାଶ୍ରମରେ ଆମେ ସମସ୍ତେ ଗାନ୍ଧୀ ଆଶ୍ରମ ଢାଞ୍ଚାରେ ଚଳୁଥାଉ । ଗୋଟିଏ ପରିବାର ଭଳି ରୋଷେଇ, ନିରାମିଷ ଖାଦ୍ୟ, ଦୁଇଓଳି ପ୍ରାର୍ଥନା, ଭୋରରୁ ଉଠିବା । ଏମିତି ସବୁ ମିଶି ଗୋଟିଏ ପ୍ରକାରର ବୁଣାଟ । ଅଣଖିଆର ବୁଣାଟରେ ଶାନ୍ତିନିକେତନର ଛାପ । ଖୁଡ଼ୀ ଭୋରରୁ ଉଠି ବୀଣା ବଜାନ୍ତି । ଗଛବୁରୁଛ, ଫୁଲପତ୍ର ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ବିଷୟରେ ସଚେତନତା ବେଶି, ଧାନ ବିଲରେ ପବନ ଢେଉ ଖେଳେଇ ଗଲେ, ନଈ କଡ଼ରେ କାଶତଣ୍ଡି ଫୁଟିଲେ ବା ଆମ୍ବ ଗଛରେ ବଉଳ ଧରିଲେ ରବୀନ୍ଦ୍ର ସଙ୍ଗୀତର ଉତ୍ସ ଅବାରିତ ହୋଇଯାଏ । ସେଠୁ ଫେରିବାପରେ ଖୁଡ଼ୀଙ୍କର ହାତର ପୁଡ଼ିଙ୍ଗ୍‌ର ସ୍ୱାଦଟା ମନେ ପଡୁଥାଏ । ଶୀତଦିନେ ଆଖୁ ଖୋଲ୍ଲିଆ ପଡ଼େ । ମାଠିଆ ମାଠିଆ ଗୁଡ଼ ଥୁଆହୁଏ । ଆଖୁ ଚୋବାଇବା ଧୂମ ଚାଲେ । ଆଉ ଭଲ ଲାଗେ ଗୁଡ଼ କଡ଼େଇ ଉପରକୁ ଭାସି ଉଠିଥିବା ସନ୍ଦେଶ ପରି ଚିକ୍‌କଣ ସରଗୁଡ଼ ବା ଫୁଲଗୁଡ଼ ।

ଦାଦା ହେରିକାଙ୍କ ସାଙ୍ଗରେ ସେଠି ବଳିଆଦା' ଥାଏ । ଚାଷବାସ ତଦାରଖ କରିବାକୁ ଗୋବିନ୍ଦ ଥା'ନ୍ତି । ଦାମା ବୋଲି ଜଣେ ବାଉରୀ ମୂଲିଆ ଥାଏ । ତା'ର ମା' ବି ଆସି କାମଦାମ କରେ । ତା'ର ନାଁ ଦାମାମ' । ଦାମାର ପରିଚୟ ସେ ଦାମା ମା ପୁଅ । ଏହିପରି ଗୋଲାକାର ତର୍କ ଦ୍ୱାରା ଦାର୍ଶନିକମାନେ ଦୁନିଆରେ ଅନେକ ଜଟିଳ ପ୍ରଶ୍ନର ଉତ୍ତର ପାଇ ଯାଇଛନ୍ତି ବୋଲି ବିଚାରନ୍ତି । ମଣିଷ କାହିଁକି ପାପ କରେ ? ନା ତା' ଭିତରେ ପାପ ପ୍ରବୃତ୍ତି ଅଛି ବୋଲି, ପାପ ବୃତ୍ତିର ଅସ୍ତିତ୍ୱର ପ୍ରମାଣ କ'ଣ ? ମଣିଷ ପାପ କରେ- ଏହି ତା'ର ପ୍ରମାଣ ।

ଚାଷବାସ ଛଡ଼ା ଦାଦା ହେରିକା ସେଠି ପାଖଆଖର ଗାଁ ସହିତ ମଧ୍ୟ ସମ୍ପର୍କ ବଢ଼ାଉ ଥା'ନ୍ତି । ବାଗଲପୁର ସେଠୁ ଅଳ୍ପ ଦୂର, ବିଲୁଆଖାଇ ସେପାରିରେ । ସେ ଗାଁ ସହିତ ଖୁବ୍ ଗଭୀର ସମ୍ପର୍କ ହେଇଥିଲା । ସେ ଗାଁର ଗୌରାଙ୍ଗ ମାମୁଁ, ଶଶୀ ପ୍ରଭୃତି ସେତେବେଳେ ଦେଶକାମ କରିବାକୁ ବାହାରିଥିଲେ । ପରେ ସ୍ୱାଧୀନତା ଆନ୍ଦୋଳନରେ ଆହୁରି ଅନେକ ଲୋକ ବାହାରିଥିଲେ । ଏଇ ଗାଁର ବାମନବାବୁ, ପିତାମ୍ବର ହେରିକା କଟକରେ ଆମ ଦଧିବାବୁ କୋଠାରେ ମେସ୍ କରି ରହିଥିଲେ ଓ ତାହା ବି ସେ ଗାଁ ସହିତ ପରିଚୟର ସୂତ୍ର ଥିଲା । ସେଠି ହରିଜନମାନଙ୍କ

ଉପରେ କରଣମାନଙ୍କର ଜୁଲୁମ୍‌ର ପ୍ରତିକାରର ଉଦ୍ୟମ ଗୌରାଙ୍ଗ ମାମୁଁ ହେରିକା କରିଥିଲେ । ଅଣଖିଆ ଫାରମଠାରୁ ଅଳ୍ପ ଦୂରରେ ତିନିତିଅର ପାଖରେ ପଡ଼ିଆରେ ପଣାସଂକ୍ରାନ୍ତି ମେଳା ହୁଏ । ସେ ଉପଲକ୍ଷରେ ଥରେ ସେଠି ଗାଁ ଲୋକଙ୍କର ଖେଳକୁଦର ଆୟୋଜନ ବି କରା ହୋଇଥିଲା ।

## ଅଳକାଶ୍ରମ ସ୍ମୃତି

ଅଳକାଶ୍ରମକୁ ବାହାର ଲୋକଙ୍କ ଭିତରେ ସତୀଶଚନ୍ଦ୍ର ଦାସଗୁପ୍ତ ଆସିବା କଥା ମନେପଡୁଛି । ସତୀଶ ବାବୁଙ୍କ ସହିତ ୧୯୨୩-୨୪ ରୁ ଆମ ଘରର ପରିଚୟ ଓ ବନ୍ଧୁତା ହୋଇଥିଲା । ସେ ବେଙ୍ଗଲ କେମିକ୍ୟାଲ୍ ସଂସ୍ଥାର ସଂସ୍ଥାପକ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଓ ରାଜଶେଖର ବସୁଙ୍କର ସହକର୍ମୀ ଥିଲେ । ସେ ସଂସ୍ଥାର ଗୁରୁତ୍ୱପୂର୍ଣ୍ଣ ପଦରୁ ଇସ୍ତଫା ଦେଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ ଓ ନିଜର ବୈଜ୍ଞାନିକ ପ୍ରତିଭାକୁ ଖଦୀ ଓ ଗ୍ରାମ୍ୟ ଶିଳ୍ପର ବିକାଶରେ ଲଗାଇଲେ । ଏହି ସୂତ୍ରରେ ସେ ଅନେକଥର ଓଡ଼ିଶା ଯିବାଆସିବା କରୁଥିଲେ । ସେଥର ଅଳକାଶ୍ରମକୁ ଆସି ବାପାଙ୍କୁ ପଚାରିଲେ - "ଏଠିକା ଜିଲ୍ଲା ବୋର୍ଡ଼ ତ ଦେଖୁଛି ଖୁବ୍ ଦକ୍ଷ ? ଦେଖିଲି ଯେ କଟକରୁ ଏ ଯାଏ ବାଟଯାକ ରାସ୍ତା ଝାଡୁଦେଇ ସଫା କରିବାର ବ୍ୟବସ୍ଥା କରିଛି ?" ବାପା ତାଙ୍କର ଭ୍ରମ ଭଞ୍ଜନ କରି ବୁଝାଇଲେ ଯେ ବ୍ୟବସ୍ଥା ଜିଲ୍ଲା ବୋର୍ଡ଼ର ନୁହେଁ, ଗରୀବ ଲୋକ ଜାଳ ପାଇଁ ପତ୍ର ସାଉଁଟି ନେଇ ଯାଉଛନ୍ତି ।

ଅଳକାଶ୍ରମରେ ଗୋଟିଏ ଖାତ ପାଇଖାନା ବି ଚାଲୁ କରାହେଉଥିଲା । ମାତ୍ର ମଫସଲରେ ବିଲକୁ ଯିବାଟା ବେଶି ସ୍ୱାଭାବିକ ବୋଲି ଆମେ ଅନେକ ସମୟରେ ଭାବୁଥାଉଁ ।

ଆମେ ଥିବାବେଳେ ସେଠି ବନ୍ଦୋବସ୍ତ କ୍ୟାଂପ ପଡ଼ିଲା । ଅଗୌଢ଼ୀ ନାମକ ଜଣେ ବିହାରୀ ବନ୍ଦୋବସ୍ତ ହାକିମ ଆଶ୍ରମ ଡୋଟାରେ ତମ୍ବୁ ପକେଇ ରହିଲେ । ତାଙ୍କ ସ୍ତ୍ରୀ ବି ସାଙ୍ଗରେ ଆସିଥା'ନ୍ତି । ସେଇଠି ଆମେ ବିହାରୀ ପର୍ଦ୍ଦାର ଚରମ କଡ଼ାକଡ଼ିର ନମୁନା ଦେଖିଲୁ । ସେଠି ଥିବା ଭିତରେ ସେ ଭଦ୍ରମହିଳାଙ୍କର ଗୋଡ଼ର ନଖ ସୁଦ୍ଧା ଅନ୍ୟ କେହି ଦେଖି ନ ଥା'ନ୍ତି । ଏକଦମ ଖାଣ୍ଟି ଅସୂର୍ଯ୍ୟଂପଶ୍ୟା । ସେମାନଙ୍କ ସାଙ୍ଗରେ ବାପାବୋଉଙ୍କର ପରିଚୟ ଓ ହୃଦ୍ୟତା ହେଲା । ଥରେ ସେ ଭଦ୍ରମହିଳା ଆଶ୍ରମକୁ ଆସିଲେ । ଏ ଉପଲକ୍ଷରେ ମୋ ସମେତ ସବୁ ପୁରୁଷମାନଙ୍କୁ ଗୋଟିଏ ଘରେ କବାଟ ଝରକା କିଳି ରହିବାକୁ ପଡ଼ିଲା, ସେ ସେଠି ଥିବା ପର୍ଯ୍ୟନ୍ତ । ତେବେ ବ୍ରହ୍ମାନନ୍ଦ ବାବୁ କବାଟ ଫାଙ୍କବାଟେ ବାହାରକୁ ଦେଖିବା ଚେଷ୍ଟା କରୁଥା'ନ୍ତି ଓ ସେ ଭଦ୍ରମହିଳା ଫେରିଯିବା ବେଳେ ତାଙ୍କୁ ଦେଖିପାରିଛନ୍ତି ବୋଲି ଅନ୍ୟମାନଙ୍କ ଠାରେ ଘୋଷଣା କଲେ ।

# ଆନ୍ଦୋଳନର ପୂର୍ବାଭାଷ

ତେଣେ ରାଜନୀତିକ ହାୱା ଗରମ ହୋଇ ଆସୁଥାଏ । ଇଂରେଜ ସରକାର କଂଗ୍ରେସର କଲିକତା ପ୍ରସ୍ତାବ ପ୍ରତି କର୍ଣ୍ଣପାତ କରୁ ନ ଥା'ନ୍ତି । ଆନ୍ଦୋଳନର ମନୋଭାବ ବଢ଼ିଚାଲିଥାଏ । ଭଗତ ସିଂହ ହେରିକା ଦିଲ୍ଲୀ ବଡ଼ଲାଟ ସଭାରେ ବୋମା ପକାଇ ପ୍ରଚଣ୍ଡ ଚହଳ ସୃଷ୍ଟି କରିଥା'ନ୍ତି । ସ୍ୱରାଜ ପାର୍ଟିବାଲା ଭାରତ ସରକାରଙ୍କର ବଜେଟ୍ ଉପରେ କାଟ ପ୍ରସ୍ତାବ ପାସ୍ କରି ବିଜୟ ହାସଲ କରିଥା'ନ୍ତି । ତେଣେ ଯତୀନ ଦାସ ରେଙ୍ଗୁନ ନା ମାନ୍ଦାଲେ ଜେଲରେ ତେଷଠି ଦିନ ଅନଶନ କରି ଦେହତ୍ୟାଗ କରିଥା'ନ୍ତି । ତାହାର କିଛିଦିନ ପରେ ଭିକ୍ଷୁ ଉତ୍ତମ ମଧ୍ୟ ସେହିପରି ଜେଲରେ ଥାଇ ଅନଶନରେ ଦେହତ୍ୟାଗ କଲେ । ଏସବୁ ନେଇ ଦେଶରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥାଏ । ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱରାଜ ପ୍ରସ୍ତାବ ୩୧ ଡିସେମ୍ବର ରାତି ବାରଟାରେ ଗୃହୀତ ହେଲା । ପ୍ରସ୍ତାବ ପାସ୍ ପରେ ସଭାପତି ଜୱାହରଲାଲ ଗୋଟିଏ ଧ୍ୱନି ଚାରିପଟେ ଅନ୍ୟମାନଙ୍କ ସହିତ ବିପୁଳ ଉଲ୍ଲାସରେ ଉଦ୍ଦଣ୍ଡ ନୃତ୍ୟ କଲେ ବୋଲି ଶୁଣିଲୁ ।

ଏ କଂଗ୍ରେସକୁ ବାପା ଯାଇଥିଲେ, ଆମେ ଯାଇନଥିଲୁ । ସେଠି ପ୍ରଚଣ୍ଡ ଶୀତ ଯୋଗୁଁ ପ୍ରତ୍ୟେକ ପ୍ରତିନିଧିଙ୍କୁ ଗୋଟିଏ ଲେଖା ଉହ୍ନେଇ ଦିଆହୋଇଥାଏ । ବାବାଜୀ ରାମଦାସ ତାଙ୍କ ଉହ୍ନେଇଟି ଦଉଡ଼ିଆ ଖଟ ତଳେ ରଖି ଶୋଇଥିଲେ । ଅଧରାତିରେ ବାବାଜୀ ବିକଟ ଚିତ୍କାର କରି ଲମ୍ଫ ଦେଇ ଉଠିଲେ । ଗୋଟିଏ ହୁଲସ୍ଥୁଲ୍ ପଡ଼ିଗଲା, ଦେଖାଗଲା ଯେ ବାବାଜୀଙ୍କର ବିରାଟ ବପୁର ଭାରରେ ଖଟଟା ଝୁଲିପଡ଼ିଥିଲା ଓ ଉହ୍ନେଇରେ ଲାଗି ଯାଇଥିଲା । ତାଙ୍କ ବିଛଣା ଓ ଲୁଗାପଟା ତଳୁ ପୋଡ଼ି ପୋଡ଼ି ଆସି ତାଙ୍କର ପଶ୍ଚାତ୍‌ଭାଗରେ ନିଆଁ ଲାଗିଲାରୁ ଯାଇ ତାଙ୍କର ନିଦ ଭାଙ୍ଗିଗଲା ।

ଆମେ ସବୁ ୧୯୨୯ ଶେଷ ଆଡ଼କୁ ବେଶ୍ କିଛିଦିନ ପାଇଁ କଟକ ଫେରିଲୁ । ତେବେ ଅଳକାଶ୍ରମରୁ ଡେରା ଉଠି ନ ଥାଏ । ପରେ ଯାଇ ପୁଣି କେତେଦିନ ରହିଥିଲୁ । ଲବଣ ସତ୍ୟାଗ୍ରହ ଯୋରସୋର୍‌ରେ ଚାଲିବା ପରେ ସେଠୁ ଆସି କଟକରେ ରହିଲୁ ।

ଜାନୁୟାରୀ ଛବିଶ ତାରିଖରେ ସାରାଦେଶରେ ସ୍ୱାଧୀନତା ଦିବସ ପାଳନ କରାଯାଇ ସ୍ୱାଧୀନତାର ସଂକଳ୍ପ ଗ୍ରହଣ କରିବା ପାଇଁ ଲାହୋର କଂଗ୍ରେସରେ ସ୍ଥିର ହୋଇଥିଲା । ସ୍ୱାଧୀନତାର ସଂକଳ୍ପ ବାପା ଉମାକାନ୍ତ ବାବୁଙ୍କ ସାହାଯ୍ୟରେ ଓଡ଼ିଆରେ ଅନୁବାଦ କରିଥିଲେ । ଜାନୁୟାରୀ ଛବିଶ ପୂର୍ବରୁ କଟକରେ ୧୪୪ ଜାରି ହେଲା, ସାଧାରଣ ସ୍ଥାନରେ ସଭା ଶୋଭାଯାତ୍ରା ଆଦି ନିଷିଦ୍ଧ କରି । ଗାନ୍ଧୀଜୀ ନିର୍ଦ୍ଦେଶ ଦେଇଥା'ନ୍ତି ଯେ ସେଦିନ ଆଇନ ଅମାନ୍ୟ କରାଯିବ ନାହିଁ । ତାଙ୍କର ବିନା ନିର୍ଦ୍ଦେଶରେ ଆଇନ ଅମାନ୍ୟ ହେବ ନାହିଁ । ତେଣୁ ସେଦିନ ସକାଳ ଆଠଟାରେ ପତାକା ଉତ୍ତୋଳନ କାଠଗଡ଼ା ସାହିରେ ରାଜକୃଷ୍ଣ ବାବୁଙ୍କର ଲୋକସେବକ ପ୍ରେସ୍ ସାମନାରେ ଥିବା ସାନ ପଡ଼ିଆଟିରେ ହେଲା । ସେଥିରେ ଲୋକ ଖୁବ୍ ବେଶୀ ନ ଥିଲେ । ଉପରଓଳି

ଆମଘର ସାମନା ହତାରେ ସାଧାରଣ ସଭା ହେଲା । ଲୋକରେ ସେ ହତା ଭରପୂର ହୋଇ ସନ୍‌ସାଇନ୍ ପଡ଼ିଆ ପାଚିରୀ ଉପରେ, ଆମ ହତା ପାଚିରୀ ଉପରେ ଲୋକ ବସି ଯାଇଥିଲେ । ନଈ ବନ୍ଧରେ ବି ଭିଡ଼ ଜମି ଯାଇଥିଲା । ସଭାରେ ବାପା ସଂକଳ୍ପ ପତ୍ର ପଦପଦ କରି ପଢ଼ିଲେ ଓ ଅନ୍ୟମାନେ ଦୋହରେଇଲେ । ସଭାପରେ ଦାଦା, ଖୁଡ଼ୀ ଓ ମୁଁ ସାଇକେଲରେ ରେଭେନ୍ସା କଲେଜ ଗଲୁ । ସେଠି ବୃହତ୍ତର ଭାରତ ଉପରେ ଡଃ କାଳୀଦାସ ନାଗଙ୍କର ଏକ ବକ୍ତୃତା ସେଦିନ ଥାଏ, ତାହା ଶୁଣିବା ପାଇଁ ।

ତା'ପରେ ଆଇନ୍ ଅମାନ୍ୟର କଳ୍ପନା ଜଳ୍ପନା ଚାଲିଲା । ଆମେ ପିଲାମାନେ ଆଇନ୍ ଅମାନ୍ୟର ରୂପ କଳ୍ପନା କରୁଥାଉ; ବିନା ଆଲୁଅରେ ସାଇକେଲ ଚଲେଇବା, ପାଞ୍ଚ ଆଇନ୍ ଭାଙ୍ଗିବା, ଏମିତି ସବୁ । ବାପାଙ୍କ ସାଙ୍ଗରେ ଆଲୋଚନା ହୁଏ । ସେ ଆଇନ୍ ଅମାନ୍ୟର ତାତ୍ପର୍ଯ୍ୟ ବୁଝାନ୍ତି । ଗାନ୍ଧୀଜୀ ଲୁଣ ଆଇନର ଅନ୍ୟାଯ୍ୟତା ବିଷୟରେ ଲେଖାଲେଖି ଆରମ୍ଭ କଲେ । ତା' ପରେ ବଡ଼ଲାଟଙ୍କୁ ଚିଠି ଲେଖି ସ୍ୱରାଜ୍ୟର ସାରାଂଶ ଦେଇ ଦେବା ପାଇଁ ଅନୁରୋଧ କଲେ ଓ ତାହା ନ ମିଳିଲେ ଲବଣ ଆଇନ ଭଙ୍ଗ କରି ସତ୍ୟାଗ୍ରହ କରିବେ ବୋଲି ସୂଚନା ଦେଲେ । ଇଂରେଜ ସାମ୍ୟବାଦିକ ରେଜିନାଲ୍ଡ଼ ରେନାଲ୍ଡ଼୍‌ଙ୍କ ହାତରେ ଏ ଚିଠି ପଠା ହେଲା । ବଡ଼ଲାଟଙ୍କ ଠାରୁ ରୂଢ଼ ପ୍ରତ୍ୟୁତ୍ତର ମିଳିଲା । ଗାନ୍ଧୀଜୀ କହିଲେ 'ମୁଁ ରୁଟି ମାଗିଥିଲି, ମତେ ପଥର ମିଳିଲା ।' ତାପରେ ସେ ଅଣାଅଶୀ ଜଣ ଆଶ୍ରମବାସୀ ସାଥୀଙ୍କୁ ନେଇ ଡାଣ୍ଡୀ ଉଦ୍ଦେଶ୍ୟରେ ପଦଯାତ୍ରା ଆରମ୍ଭ କଲେ । ଏଣେ ଦେଶସାରା ସେତେବେଳକୁ ଉତ୍ତେଜନା ବଢ଼ି ଚାଲିଥାଏ । କଟକରେ କାଠଯୋଡ଼ି ବାଲିରେ ଘନ ଘନ ସାଧାରଣ ସଭା ହେଉଥାଏ । ସଭାରେ ହଜାର ହଜାର ଲୋକ ହେଉଥା'ନ୍ତି । ଏହା ପୂର୍ବରୁ ଆମେ ସବୁ ନଈବାଲିରେ ଖେଳିବାବେଳେ କେତେଥର ଦେଖୁଥିଲୁ ଯେ ସଭା ହେଉଛି । ମାତ୍ର ଦଶ ପନ୍ଦରରୁ ବେଶି ଲୋକ ନାହାନ୍ତି । ଡଃ ଅଟଳ ବିହାରୀ ଆଚାର୍ଯ୍ୟ ସେ ଯୁଗରେ କଟକ ଜିଲ୍ଲା କଂଗ୍ରେସ ସଭାପତି ଥିଲେ । ଗୋଟିଏ ସମୟରେ ନଈବାଲିରେ ସେ ପତାକା ପୋତି ସଭା କରନ୍ତି ଓ ଶ୍ରୋତା ଥା'ନ୍ତି ଏକମାତ୍ର ତାଙ୍କର ସ୍ତ୍ରୀ ବୋଲି ମଧ୍ୟ ମୁଁ ଶୁଣିଛି ।

ସଭାମାନଙ୍କରେ ସବୁଠୁଁ ଗରମାଗରମ୍ ବକ୍ତୃତାବାଲା ଥା'ନ୍ତି ରାଜୁଦା ଓ ଯଦୁମଣି ମଙ୍ଗରାଜ । ଏସବୁ ବକ୍ତୃତା ଆମକୁ ଭଲଲାଗେ । ପରେ ଅବଶ୍ୟ ଅନୁଭବ କଲି ଯେ ମଙ୍ଗରାଜଙ୍କ ବକ୍ତୃତାରେ ଆଲୋକ ଅପେକ୍ଷା ଉତ୍ତାପ ବେଶୀ ଥାଏ । କିନ୍ତୁ ଗୋଟିଏ ଗୋଟିଏ ସମୟରେ ଉତ୍ତାପର ଆବଶ୍ୟକତା ବି ବେଶି ହୁଏ । ବାପାଙ୍କ ବକ୍ତୃତା ସେଭଳି ଓଜସ୍ୱିନୀ ହୁଏ ନାହିଁ । ଆଉ ଜଣେ ବକ୍ତା ଥା'ନ୍ତି ଖୋକନ୍‌ର ବାପା, ଜୋଆରଦାର୍ ମହାଶୟ । ସେ ଇତିହାସର ଛାତ୍ର ଥିଲେ । ସେଥିପାଇଁ ତାଙ୍କ ବକ୍ତୃତାରେ ଇତିହାସର କାହାଣୀ ଓ ଉଦାହରଣ ଭରପୂର ଥାଏ । ତାଙ୍କର ବକ୍ତୃତା ସହଜରେ ସରେ ନାହିଁ । ଥରେ କହିବେ 'ଆର୍ ଆମି ଆପ୍‌ନାଦେର ଅଧିକ ସମୟ ନିତେ ଚାଇନା' । ପୁଣି ଚାଲିଲା ଦଶ ମିନିଟ୍ । 'ଏବାର ଶେଷ କରାର ଆଗେ ଶୁଧୁ

ଏକଟା କଥା ବଲତେ ଚାଇ' । ଆଉ ଦଶ ମିନିଟ୍ । ଏମିତି ତାଙ୍କର ବକ୍ତୃତା ଚାରି ପାଞ୍ଚ ଥର ଲେଖା ପୁନର୍ଜୀବନ ଲାଭ କରି କରି ଆଗେଇ ଚାଲେ । ସେତେବେଳେ କବି ବୀରକିଶୋର ଓ କବି ବାଞ୍ଛାନିଧି ମହାନ୍ତି ଜାତୀୟ ସଂଗୀତ ଲେଖୁଥା'ନ୍ତି । କଟକ ସଭାମାନଙ୍କରେ ଗାୟକ ଥା'ନ୍ତି ଗିରୀଶ ଘୋଷ, ଅଦ୍ୱୈତବଲ୍ଲଭ ରାୟ । ମନି ସେନ ବୋଲି ଖୁଡ଼ୀଙ୍କର ଜଣେ ଦୂର ସଂପର୍କୀୟ ଆତ୍ମୀୟ ବି ସେତେବେଳେ କଟକରେ ଥା'ନ୍ତି ଓ ସଭାମାନଙ୍କରେ କବି ନଜରୁଲ୍ ଇସ୍‌ଲାମଙ୍କର ଲେଖା ଗୀତ ଗାଇ ଖୁବ୍ ଉଦ୍ଦୀପନା ସୃଷ୍ଟି କରୁଥା'ନ୍ତି ।

## ଲବଣ ସତ୍ୟାଗ୍ରହ

ତେଣେ ଗାନ୍ଧୀଜୀ ଆଗେଇ ଚାଲିଥା'ନ୍ତି ଓ ସାରା ଭାରତରେ ଠା କୁ ଠା ଧରପଗଡ଼ ଆରମ୍ଭ ହୋଇଥାଏ । ଗାନ୍ଧୀଜୀ ମହିଳାମାନଙ୍କୁ ନିବେଦନ କରିଥା'ନ୍ତି ଗଞ୍ଜେଇ, ଅଫିମ ଓ ମଦ ଦୋକାନରେ ପିକେଟିଂର ନେତୃତ୍ୱ ନେବାକୁ । ସେତେବେଳେ ବୋଉ ଓ ଖୁଡ଼ୀ ଆନ୍ଦୋଳନରେ ଯୋଗ ଦେବାକୁ ସଜ ହେଲେଣି । ସତ୍ୟାଗ୍ରହୀ ସଂଗ୍ରହ ଆରମ୍ଭ ହେବାରୁ ଚୁନୀ ଓ ମୁଁ ସଂକଳ୍ପ ପତ୍ରରେ ଦସ୍ତଖତ କରି ପଠେଇ ଦେଲୁ । ବାପା ଜଣେଇଲେ ଯେ ଏତେ ସାନ ପିଲାଙ୍କୁ ସତ୍ୟାଗ୍ରହୀ ଭାବରେ ନିଆଯିବ ନାହିଁ । ପରେ କିନ୍ତୁ ଶହ ଶହ ସଂଖ୍ୟାରେ ଆମରି ଭଳି ପିଲା ଆସି ଆନ୍ଦୋଳନରେ ଯୋଗ ଦେଲେ ।

ଠିକ୍ ହେଲା ଯେ ଓଡ଼ିଶାର ପ୍ରଥମ ସତ୍ୟାଗ୍ରହୀ ଦଳ ବାପାଙ୍କ ନେତୃତ୍ୱରେ ଏପ୍ରିଲ ଛଅ ତାରିଖ ଦିନ କଟକରୁ ବାହାରିବେ ଓ ଚାଲି ଚାଲି ଯାଇ ବାଲେଶ୍ୱର ପାଖରେ ସମୁଦ୍ର କୂଳରେ ଲୁଣ ମାରିବେ । ବାପା ସତ୍ୟାଗ୍ରହୀ ଦଳର ସେନାପତି ଓ ଆଚାର୍ଯ୍ୟ ମହାଶୟ ଉପସେନାପତି ହେଲେ । ଏମାନଙ୍କୁ ମିଶେଇ ଥିଲେ (୧) ଗୁଣନିଧି ମହାନ୍ତି (କଟକ), (୨) ରଘୁନାଥ ମିଶ୍ର (ପୁରୀ), (୩) ରଘୁନାଥ ଦାସ (କଟକ), (୪) ଗୌରାଙ୍ଗ ଚରଣ ଦାସ (କଟକ), (୫) ବିଶ୍ୱନାଥ ହୋତା (ବାଲେଶ୍ୱର), (୬) ଗୋଲୋକ ଚନ୍ଦ୍ର ଦେ (ବାଲେଶ୍ୱର), (୭) ଗୋକୁଳାନନ୍ଦ ମହାନ୍ତି (ବାଲେଶ୍ୱର), (୮) ବିନୋଦ ଚୌଧୁରୀ (କଟକ), (୯) ବନମାଳୀ ପୃଷ୍ଟି (କଟକ), (୧୦) ଡଃ କୃପାସିନ୍ଧୁ ଭୋକ୍ତା (ଅନୁଗୁଳ), (୧୧) ସୁଦର୍ଶନ ପ୍ରହରାଜ (କଟକ), (୧୨) ଚକ୍ରପାଣି ରାଉଳ(ଗଞ୍ଜାମ), (୧୩) କୃପାସିନ୍ଧୁ ଖୁଣ୍ଟିଆ (କଟକ), (୧୪) ଘନଶ୍ୟାମ ପଟ୍ଟନାୟକ (ଗଞ୍ଜାମ), (୧୫) ମୁରାରୀ ତ୍ରିପାଠୀ (ପୁରୀ),(୧୬) ଦୁର୍ଗାପ୍ରସାଦ ଗୁରୁ (ସମ୍ବଲପୁର), (୧୭) ସୁଧାଂଶୁ ମୋହନ ଗୁପ୍ତ ଓ (୧୮) ରାମ ପ୍ରସାଦ ସାହୁ ।

ଏପ୍ରିଲ ପାଞ୍ଚ ତାରିଖ ସନ୍ଧ୍ୟାରେ ପ୍ରଥମ ଦଳ ସତ୍ୟାଗ୍ରହୀଙ୍କୁ ବିଦାୟ ଦେବା ପାଇଁ କାଠଯୋଡ଼ି ବାଲିରେ ସଭା ହେଲା । ସଭାରେ ସତ୍ୟାଗ୍ରହୀମାନଙ୍କୁ ଫୁଲ ଚନ୍ଦନ ଦେଇ ସମ୍ବର୍ଦ୍ଧନା କରାଗଲା । ତା' ପରଦିନ ଭୋର ପାଞ୍ଚଟା ବେଳେ ସତ୍ୟାଗ୍ରହୀମାନେ ଆମ ବଡ଼ଘର ଅଗଣାରେ ଧାଡ଼ି ବାନ୍ଧି ଛିଡ଼ା ହେଲେ ଓ ଜାତୀୟ ପତାକା ଧରି ଫୁଲମାଳରେ ଲଦି ହୋଇ ଯାତ୍ରା ଆରମ୍ଭ

କଲେ । ସତ୍ୟାଗ୍ରହୀ ଶିବିରଟା ଆମରି ଘରେ ହୋଇଥାଏ । ଯଦିଓ ସ୍ୱରାଜ ଆଶ୍ରମ ସେତେବେଳେ ଚାଲୁଥାଏ । ସତ୍ୟାଗ୍ରହୀ ଦଳ ଯୋବ୍ରାଠାରେ ବୋଟରେ ମହାନଦୀ ପାର ହୋଇ କେନ୍ଦ୍ରପଡ଼ା ବାଟ ଧରିଲେ, ସେଇବାଟ ଦେଇ ଆଳି କନିକା ବାଟେ ପଶି ଚାନ୍ଦବାଲି ଦେଇ ବାଲେଶ୍ୱର ଜିଲ୍ଲାରେ ପ୍ରବେଶ କରିବାକୁ । କଟକରେ ୧୪୪ ଥିଲା । ବାପା ସଭାରେ ବକ୍ତୃତା ଦେଇ ତାହା ଭଙ୍ଗ କରିଥିବାରୁ ଚାନ୍ଦୋଳଠାରେ ଗିରଫ ହେଲେ । ତାଙ୍କୁ ସାତଦିନ ଜେଲ ଦଣ୍ଡ ମିଳିଲା । ଇତି ମଧ୍ୟରେ ଜୀବରାମଜୀ କଲ୍ୟାଣଜୀ କୋଠାରୀ ଓ ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ଲୁଣ ତିଆରି କରି ଗିରଫ ହୋଇ ସାରିଥା'ନ୍ତି । ଏ ସତ୍ୟାଗ୍ରହୀ ଦଳ ଚାଲି ଚାଲି ଯାଇ ବାଲେଶ୍ୱରରେ ପହଞ୍ଚିଲାବେଳକୁ ଡେରି ହେଇଯିବ ବୋଲି ବିଚାର କରି ଶେଷକୁ ସମସ୍ତେ ଟ୍ରେନ୍‌ରେ ବାଲେଶ୍ୱର ଯିବା ସ୍ଥିର ହେଲା ଓ ସେମାନେ ସେହିପରି ଯାଇ ବାଲେଶ୍ୱରରେ ପହଞ୍ଚିଲେ ଓ ଇଞ୍ଚୁଡି ଚଟାଣଠାରେ ଏପ୍ରିଲ୍ ତେର ତାରିଖରେ ଲବଣ ଆଇନ ଭଙ୍ଗ କରାହେଲା ।

ଏଇ ସମୟରେ ମୁଁ ମୋର ପ୍ରଥମ ରାଜନୀତିକ ବକ୍ତୃତା ଦେଇଥିଲି । ପଦଯାତ୍ରା ଦଳ ବାହାରି ଯିବା ପରେ ଆମେସବୁ ଅଳକାଶ୍ରମ ଗଲୁ । ସେଠି ପାଖ ପଳାଶୋଳ ଗାଁରେ ଦିନେ ସନ୍ଧ୍ୟାରେ କଂଗ୍ରେସ ପ୍ରଚାର ହେଉଥିଲା । ଖୁବ୍ ଲୋକ ହୋଇଥାନ୍ତି । ମୋର ବି ଇଚ୍ଛା ହେଲା, ବକ୍ତୃତା ଦେବାକୁ ଛିଡ଼ା ହେଇଗଲି । ଗୀତାର "କ୍ରୋଧାତ୍ ଭବତି ସମ୍ମୋହଃ..." ଆଦି ପ୍ରାର୍ଥନାରେ ବୋଲା ହେଉଥିବା ଶ୍ଳୋକକୁ ଉଦ୍ଧୃତ କରି କହିଲି ଯେ ବର୍ତ୍ତମାନ ସରକାରର କ୍ରୋଧ ଯାଇ ବୁଦ୍ଧିନାଶ ଅବସ୍ଥାରେ ପହଞ୍ଚିଲାଣି, ୟାପରେ ବିନାଶ ଅବଶ୍ୟମ୍ଭାବୀ ।

ବାପାଙ୍କୁ ପଚାଶ ଟଙ୍କା ନା କେତେ ଜୋରିମାନା ମଧ୍ୟ କରାହେଇଥିଲା । ତାହା ଆଦାୟ ପାଇଁ ଅଳକାଶ୍ରମରେ ଥିବା ଦିଓଟି ଗାଈ ପୁଲିସ ଆସି କୋରଖ କଲେ । ସେ ଗାଈକୁ ଥାନାକୁ ନେଇ ନିଲାମ କରିବା ଉଦ୍ୟମ ହେଲା । କର୍ମୀମାନେ ସବୁ ଯାଇ ଲୋକଙ୍କୁ ନିଲାମ ନ ଧରିବା ପାଇଁ ବୁଝେଇଲେ । ସାଧାରଣ ଲୋକେ କେହି ନିଲାମ ଧରିଲେ ନାହିଁ । ଶେଷକୁ ସରକାରୀ ଲୋକ କାହାକୁ ଧରି ଲୋକ ଦେଖାଣିଆ ନିଲାମ କରିଦେଲେ ।

ସେତେବେଳେ ଜଗତ୍‌ସିଂହପୁର ଥାନାରେ ସଦାଶିବ ମିଶ୍ର ବୋଲି ଜଣେ ମୋଟାସୋଟା ବୁଢ଼ା ସବ୍‌ଇନିସ୍‌ପେକ୍ଟର ଥାନ୍ତି, କଂଗ୍ରେସର ସଭା ହେଲେ ଆସି ପହଞ୍ଚନ୍ତି । ସେ ବର୍ଷ ଏପ୍ରିଲ ପହିଲା ଦିନ ତାଙ୍କୁ ବୋକା ବନାଇବା ସ୍ଥିର ହେଲା । ଦୁଇ ଚାରିଖଣ୍ଡ କାଗଜ ସାଇକ୍ଲୋଷ୍ଟାଇଲ କରି ଛାପିଦେଲୁ ଯେ ଅଳକାଶ୍ରମ ତୋଟାରେ ସାଧାରଣ ସଭା ହେବ ଓ ଶ୍ରୀ ଲକ୍ଷ୍ମୀ ଦେବୀ ସରସ୍ୱତୀ ବକ୍ତୃତା ଦେବେ । ଲକ୍ଷ୍ମୀ ଗୋଟିଏ ଅନାଥ ଝିଅ । ଆମ ସାଙ୍ଗରେ ଆଶ୍ରମରେ ଥାଏ । ଏ କାଗଜ ଜଣେ ନେଇ ଥାନା ପାଖରେ ଖଣ୍ଡେ ଦେଇ ଆସିଲେ । ଚାରିଟା ବେଳକୁ ମିଶ୍ରେ ଆପଣେ ବେଶପଟା ପିନ୍ଧି ତୋଟାରେ ହାଜର । ଏ ଘଟଣା ଶୁଣି ବାପା ବିରକ୍ତ ହୋଇଥିଲେ ଓ ଏପରି କରିବା ଠିକ୍ ନୁହେଁ ବୋଲି ଚିଠି ଲେଖିଥିଲେ ।

ତେଣେ ବାଲେଶ୍ୱରରେ ଲବଣ ଆଇନ୍ ଭଙ୍ଗ ସାଙ୍ଗେ ସାଙ୍ଗେ ଜୋର୍‌ସୋର୍‌ରେ ଧରପଗଡ଼ ଆରମ୍ଭ ହୋଇଗଲା । ବାପା ସାତଦିନିଆ ଜେଲ୍‌ରୁ ଖଲାସ ହେଇ ବାଲେଶ୍ୱର ଗଲେ ଓ ସେଠି ଗିରଫ ହେଇ ବର୍ଷେ ସଜା ପାଇଲେ । ଆଚାର୍ଯ୍ୟ ମହାଶୟ, ନୀଳକଣ୍ଠବାବୁ, ମହତାବବାବୁ, ମଙ୍ଗରାଜ ପ୍ରଭୃତି ଓ ଶହଶହ ଅନ୍ୟ କର୍ମୀ ମଧ୍ୟ ଜେଲ୍ ବରଣ କଲେ । କଟକରେ ରାଜଦାଙ୍କର ବିଚାର ବେଳେ ଆମେ ସବୁ କୋର୍ଟକୁ ଯାଇଥିଲୁ । ଦୁଇ ବର୍ଷ ସଜା ହେଲା । ରାଜୁଦା ସମବେତ ଯୁବକମାନଙ୍କୁ "ଲଢ଼େଇ ଚଳେଇ ଯାଅ" ବୋଲି ବାଣୀ ଦେଲେ ।

ତେବେ ଲୁଣ ଆଇନ୍ ଭାଙ୍ଗୁଥିବା ସତ୍ୟାଗ୍ରହୀମାନଙ୍କୁ ହଠାତ୍ ଗିରଫ୍ ନ କରି ସେମାନଙ୍କ ଠାରୁ ବେଆଇନ୍ ଲୁଣ ଛଡ଼େଇ ନେବାର ନୀତି ପୁଲିସ୍ ଧରିଲେ । ଲୁଣବସ୍ତା ଆଣୁଥିବାବେଳେ ଛଡ଼େଇ ନେବା ଚେଷ୍ଟା ପୁଲିସ ଚଳେଇଲେ । ସତ୍ୟାଗ୍ରହୀମାନେ ଲୁଣ ନ ଛାଡ଼ିବା ପାଇଁ ବସ୍ତା ଉପରେ ପାଞ୍ଚ ସାତଜଣ ଲଦି ହୋଇ ଶୋଇପଡ଼ନ୍ତି । ହାତକୁ ଧରି ଯେତେ ମୋଡ଼ାମୋଡ଼ି କଲେ ବି ମୁଠା ଫିଟାନ୍ତି ନାହିଁ । ଏମିତି କେତେ ସତ୍ୟାଗ୍ରହୀଙ୍କର ହାତ ମୋଡ଼ାମୋଡ଼ି ହୋଇ ଅସଜ ହୋଇଯାଇଥିଲା । ପୁରୀ ଜିଲ୍ଲା କୁହୁଡ଼ିର ନବକିଶୋର ପଟ୍ଟନାୟକ ସେତେବେଳେ ପାଠ ଛାଡ଼ି କଂଗ୍ରେସ କର୍ମୀ ହୋଇଥିଲେ ଓ ଏ ସମୟରେ ବହୁତ ଫଟୋ ଉଠେଇଥିଲେ । ସେଥିରୁ ପ୍ରଥମେ 'ସମାଜ'ରେ ବି କିଛି ବାହାରି ଥିଲା ।

'ସମାଜ' ସେତେବେଳେ ନୂଆକରି ଦୈନିକ ହୋଇଥାଏ । ଅଳ୍ପଦିନ ପରେ ସରକାର ଅମାନତ ଜବତ କରିବାରୁ ସମାଜ ବନ୍ଦ ହେଇଗଲା । ସେତେବେଳେ ସରକାର ଖବରକାଗଜମାନଙ୍କଠାରୁ ଅମାନତ ଜମା ରଖୁଥିଲେ ଓ କିଛି ଆପତ୍ତିଜନକ ଖବର ବାହାରିଲେ ତାହା ବାଜ୍ୟାପ୍ତି କରି ଦେଉଥିଲେ । ସେ ଯୁଗରେ ଦୁଇ ଚାରି ହଜାର ଟଙ୍କା ବାଜ୍ୟାପ୍ତ ହେଇଗଲେ ଖବରକାଗଜବାଲାଙ୍କର ଦଫା ଶେଷ ହେଇଯାଉଥିଲା । ସମାଜ ବନ୍ଦ ହୋଇଯିବାରୁ ରାଧାନାଥବାବୁ ସେଇ ସମାଜ ସଂସ୍ଥା ପକ୍ଷରୁ 'ସମ୍ବାଦ' ନା ଦେଇ ସାଇକ୍ଲୋ ଷ୍ଟାଇଲ୍ ପତ୍ରିକା ବାହାର କଲେ ।

ତାକୁ ସମାଜର ହକରମାନେ ବିକନ୍ତି । ସେମାନଙ୍କ ଭିତରେ 'ଉତ୍କଳ ମଲ୍ଲ' ଉଦ୍ଭବ ପ୍ରଧାନ ସବୁଠାରୁ ଉତ୍ସାହୀ ଥିଲେ । ସେତେବେଳେ ପ୍ରାୟ ପ୍ରତିଦିନ ନଈବାଲିରେ ସଭା, ପ୍ରତିଦିନ ବକ୍ତୃତା । 'ଗରମା ଗରମ ଖବର' ।

## ନାରୀଶକ୍ତି ଓ ବାନରସେନା

ଲବଣ ଆଇନ ଭଙ୍ଗ ଚାଲିଥିବା ସମୟରେ କ'ଣ ଗଣ୍ଡଗୋଳ ହେବାରୁ ଇଞ୍ଚୁଡ଼ି ନିକଟ ଶ୍ରୀଜଙ୍ଗ ଗାଁ ରେ ପୁଲିସ୍ ଖୁବ୍ ଅତ୍ୟାଚାର କଲେ । ଲୋକେ ଗାଁ ଛାଡ଼ି ପଳାଇଲେ । ପୁଟୁଣୀ ଟିକସ ବସିଲା ଓ ଏକ ଆତଙ୍କରାଜ ସୃଷ୍ଟିର ଚେଷ୍ଟା ହେଲା । ଏହାର ପରେ ପରେ ବୋଉ, ଖୁଡ଼ୀ ଓ ମଙ୍ଗଳା ମାଉସୀଙ୍କର ମା' କିରଣବାଳା ସେନ ବାଲେଶ୍ୱର ଗଲେ । ସେମାନଙ୍କ ସାଙ୍ଗରେ ମୁଁ ବି ଥାଏ । ବାଲେଶ୍ୱରରେ ସେମାନଙ୍କ ସାଙ୍ଗରେ ମୁକୁନ୍ଦବାବୁଙ୍କ ସ୍ତ୍ରୀ ଜାହ୍ନବୀ ଦେବୀ ଯୋଗ

ଦେଲେ । ସମସ୍ତେ ମିଶି ଇଞ୍ଚୁଡ଼ି ଗଲେ ଓ ସେଠି ବୋଉ, ଖୁଡ଼ୀ ହେରିକା ଲୁଣ ପାଣି ରାନ୍ଧି ଲବଣ ଆଇନ ଭାଙ୍ଗିଲେ ଓ ଗାଁ ସ୍ତ୍ରୀ ଲୋକଙ୍କୁ ଆଇନ୍ ଭାଙ୍ଗିବା ପାଇଁ ଆହ୍ୱାନ ଦେଲେ । ପୁଲିସ୍ କୌଣସି ପ୍ରକାରର ହସ୍ତକ୍ଷେପ କଲେ ନାହିଁ । ବାଲେଶ୍ୱରରେ ସେତେବେଳେ ପରମିଟ୍ କୋଠି ନାମକ ଗୋଟିଏ ବଡ଼ ପୁରୁଣା ଘରେ ସତ୍ୟାଗ୍ରହର ମୁଖ୍ୟ ଆଡ଼ଡ଼ା ହେଇଥାଏ । ଏ ଘରଟା କୁଆଡ଼େ ଇଷ୍ଟ ଇଣ୍ଡିଆ କମ୍ପାନୀ ଅମଳର ଅଫିସ୍ କି ଗୋଦାମ କ'ଣ ଥିଲା ।

କଟକରୁ ଦ୍ୱିତୀୟ ସତ୍ୟାଗ୍ରହୀ ଦଳ ମଦନମୋହନ ପଟ୍ଟନାୟକଙ୍କ ନେତୃତ୍ୱରେ ବାଲେଶ୍ୱର ଯାଇଥିଲେ । ଏକ ତୃତୀୟ ଦଳ ବି ଯେତେଦୂର ମନେ ପଡ଼େ ଯାଇଥିଲେ । ତାପରେ ଏପରି ଦଳ ଯିବା ବନ୍ଦ ହୋଇଗଲା । କଲିକତାରୁ ଭାବଗ୍ରାହୀ ପତିଙ୍କ ନେତୃତ୍ୱରେ ପ୍ରବାସୀ ଓଡ଼ିଆଙ୍କ ଭିତରୁ ଏକ ସତ୍ୟାଗ୍ରହୀ ଦଳ ଆସିଥିଲେ । ଭାବଗ୍ରାହୀ ବାବୁଙ୍କ ଘର କଟକ ଜିଲ୍ଲାର ଶଂଖତ୍ରାସ ଗାଁରେ ଥିଲା । ଇତିମଧ୍ୟରେ କଟକରେ ଅଫିମ, ଗଞ୍ଜେଇ ମଦ ଦୋକାନରେ ପକେଟିଂ ଆରମ୍ଭ ହୋଇଯାଇଥାଏ । ଅଫିମ ଗଞ୍ଜେଇ ଦୋକାନ ଥାଏ ଚୌଧୁରୀ ବଜାରରେ, ମଦଦୋକାନ ବକ୍ସି ବଜାରରେ, ଏବେ ଯେଉଁଠି ପ୍ରଭାତ ସିନେମା ଅଛି ତାରି ସାମନାରେ । ବୋଉ, ଖୁଡ଼ୀ ହେରିକା ପିକେଟିଂର ତତ୍ତ୍ୱାବଧାନ କରୁଥାନ୍ତି । ବହୁତ ସାନ ସାନ ପିଲା ଘରୁ ପଳେଇ ଆସି ଆନ୍ଦୋଳନରେ ଯୋଗ ଦେଇଥାନ୍ତି । ଏମାନେ ପ୍ରାୟ ତେରରୁ ଷୋଳ ବର୍ଷ ବୟସର । ଏମାନଙ୍କର ନାମ ବାନରସେନା ହେଇଗଲା । ପିକେଟିଂରେ ଏହି ବାନରସେନା ଓ ମହିଳା କର୍ମୀମାନେ ମୁଖ୍ୟ ଥାନ୍ତି । ଏ ବାନରସେନାମାନଙ୍କ ଭିତରେ ଥାନ୍ତି ବୈଦ୍ୟନାଥ ଦାସ, ସନାତନ ଦାସ, ପାଗଳା ବୈକୁଣ୍ଠ ମହାନ୍ତି, କୋଦା ବୈକୁଣ୍ଠ, ବିଚିତ୍ରାନନ୍ଦ ମହାନ୍ତି, ରାଧାଶ୍ୟାମ, ବଙ୍କିମ ସିଂହ, ସୁଧାଂଶୁ ମୈତ୍ର, ଦେବେନ ବାନାର୍ଜୀ, ସଂକର୍ଷଣ ପଟ୍ଟନାୟକ, ପୁରୁଷୋତ୍ତମ ସିଂହ, କାଳିନ୍ଦୀ ସାହୁ, ଯଦୁମଣି ନାୟକ- 'ପ୍ରଚାରକ', ଶଙ୍କର, ନୀଳମଣି ସ୍ୱାଇଁ, ମୁରଲୀ ମହାନ୍ତି, ଲୋକନାଥ ପ୍ରଧାନ, ପ୍ୟାରିଶଙ୍କର ରାୟ, ଆକୁଳି ବେହେରା, ଶ୍ରୀହର୍ଷ ମିଶ୍ର, କିଣୁ ହାତୀ ପ୍ରଭୃତି । ଏମାନଙ୍କ ଭିତରେ ଯଦୁମଣି ନାୟକ ଅତି ସାନ, ଗେଟମ, ଟୁମୁରିପେଟା ବାନର । ପରେ ତାରି ନାଁ ଦିଆହୋଇ ପ୍ରଚାରପତ୍ର ସବୁ ବାହାରୁଥିଲା । ସେଇଥିରୁ ତାର ଉପାଧି ହୋଇଗଲା 'ପ୍ରଚାରକ' ।

ସତ୍ୟାଗ୍ରହର ପ୍ରଥମ ଧକ୍କାରେ ସୁରେନ୍ଦ୍ର ପଟ୍ଟନାୟକ, ସୁରେନ୍ଦ୍ର ଦ୍ୱିବେଦୀ, ବିନୋଦ କାନୁନ୍‌ଗୋ, ବିପିନ ମହାନ୍ତି, ଗଜେନ୍ଦ୍ର ପ୍ରସାଦ ଦାସ, ବଳରାମ ପତି ହେରିକା ଗୋଟିଏ ଦଳ ସ୍କୁଲ ଛାଡ଼ି ଆସିଥିଲେ । ନିରଞ୍ଜନ ଘୋଷ ଓ ବ୍ରଜମୋହନ ସିଂହ ଓରଫ ଚାଟୁବାବୁ କଲେଜ ଛାଡ଼ି ଆସିଥିଲେ । ବିନୋଦର ମାମୁଁ ଆର୍ତ୍ତବାବୁ ଭାରି କଡ଼ା ଲୋକ । ବିନୋଦକୁ କଥା କଥାକେ ବାଡାନ୍ତି । ତା' ପିଠିରେ କେତେନା କେତେ ଛଡା ଯେ ଭାଙ୍ଗିଥିବ ତା'ର ହିସାବ ନାହିଁ । ଆନ୍ଦୋଳନରେ ଯୋଗ ଦେବା ପରେ ଦିନେ ତା'ର ମାମୁଁଘର ଲୋକେ ତାକୁ ରାସ୍ତାରୁ କେଉଁଠୁ ଧରି ଗାଁକୁ ନେଇଗଲେ ଓ ଗୋଟିଏ ଘରେ ବନ୍ଦ କରି ରଖିଦେଲେ । ତିନି ଦିନ ଯାଏ ସେ ଖାଇବାକୁ ଅସ୍ୱୀକାର କଲା ଓ ତାପରେ ତାର ମୁରବୀମାନେ ନାଚାର ହୋଇ ଘର ଖୋଲି

ଦେବାରୁ ସେ ତାର ଗାଁ ମଲିପୁରରୁ କଟକ ଅଠର ମାଇଲ ବାଟ ସେଇ ଉପାସରେ ଚାଲିଚାଲି ପଳେଇଆସି ଆଶ୍ରମରେ ପହଞ୍ଚିଗଲା । ଏମିତି କେତେ ପିଲାଙ୍କୁ ସେମାନଙ୍କର ଅଭିଭାବକମାନେ ଜବରଦସ୍ତି ଧରି ନେଇଯାନ୍ତି, ମାରଧର କରନ୍ତି । କେତେକ ପୁଣି ପଳେଇ ଆସନ୍ତି, କେତେକ ରହିଯା'ନ୍ତି ।

କୃଷଚନ୍ଦ୍ର ପ୍ରଧାନ ଓ ଗୋବିନ୍ଦଚନ୍ଦ୍ର ପ୍ରଧାନ ଏ ଦୁଇ ଭାଇ ଆନ୍ଦୋଳନରେ ଯୋଗ ଦେଇ ଆମ ଘରେ ରହୁଥା'ନ୍ତି । କୃଷବାବୁ ସତ୍ୟାଗ୍ରହ ଶିବିରର ଦେଖାରେଖାରେ ସାହାଯ୍ୟ କରୁଥା'ନ୍ତି । ଗୋବିନ୍ଦ ପ୍ରଧାନଙ୍କ ସାଙ୍ଗରେ ମୋର ଖୁବ୍ ବନ୍ଧୁତା ହେଇଥିଲା । ବୀରଭାଇ, 'ବାଲିକୁଦା ବୀର'- ବୀରକିଶୋର ଦାସ ବି ଏ ସମୟରେ ଆନ୍ଦୋଳନରେ ଲାଗିପଡ଼ିଥିଲେ ଓ ମଫସଲରୁ ସତ୍ୟାଗ୍ରହୀ ସଂଗ୍ରହ କରିବାରେ ଖୁବ୍ ଦକ୍ଷତା ଦେଖାଉଥିଲେ । ବୀରଭାଇଙ୍କର ପୂର୍ବ ଚେହେରା ପାଞ୍ଚସାତ ବର୍ଷ ତଳେ ଯାହା ଦେଖିଥିଲି ଏବେ ଏ ସତ୍ୟାଗ୍ରହୀ ରୂପ ସହିତ ତା'ର କୌଣସି ସାଦୃଶ୍ୟ ନ ଥିଲା । ସେତେବେଳେ ଥିଲା ଲମ୍ବସାଟପଟାବୃତ ରୂପ, ଲମ୍ବ ବାଳ, ସିଲ୍‌କ ପଞ୍ଜାବୀ, ସୁନା ବୋତାମ, ପାମ୍‌ସୁ, ମୋଜା, ପାଉଡ଼ର ଚର୍ଚ୍ଚିତ ମୁଖମଣ୍ଡଳ ସାଙ୍ଗକୁ । କିନ୍ତୁ ତାଙ୍କର ପ୍ରଥମ ସ୍ତ୍ରୀ ମରିଯିବା ପରେ ସେ ଏକଦମ ବଦଳିଗଲେ । ମୁଣ୍ଡ ପ୍ରାୟ ଲଣ୍ଡା, ଆଣ୍ଠୁ ଉପରକୁ ମୋଟା ଖଦଡ଼ ଧୋତି, ଦେହରେ ଖଣ୍ଡେ ସେମିତି ମୋଟା ଧଳା ଚାଦର । ସ୍ୱରାଜ ହେଲେ ସତ୍ୟାଗ୍ରହୀଙ୍କୁ ସରକାରୀ ଚାକିରୀ ମିଳିବ, ଏହି ବିଶ୍ୱାସରେ କିଛି କିଛି ଲୋକ ସତ୍ୟାଗ୍ରହ କରିବାକୁ ଆସିଥା'ନ୍ତି । ଜେଲରେ ଥିବା ସତ୍ୟାଗ୍ରହୀ ବନ୍ଦୀମାନଙ୍କ ସହିତ ପରିଚୟ କରିବାକୁ ଯାଇ ବାପା ଆବିଷ୍କାର କଲେ ଯେ କେତେକ ହରିଜନ ସ୍ୱରାଜ ପରେ ଚୌକିଆ ଓ ଦଫାଦାର ପଦ ପାଇବା ଆଶାରେ ଆସିଥା'ନ୍ତି ।

ପିକେଟିଂ ବାଲାଙ୍କୁ ପ୍ରଥମେ ଜେଲ ଦିଆ ହେଉଥିଲା । ତା'ପରେ ଏସବୁ ସାନ ସାନ ପିଲାଙ୍କୁ ନିରସ୍ତ କରିବା ପାଇଁ ଆଉ ଗୋଟିଏ ବୁଦ୍ଧି ବାହାରିଲା । ସେମାନଙ୍କୁ ବେତ ମାଡ଼ ଦେବାର ବ୍ୟବସ୍ଥା ହେଲା । ଏ ବେତ ମାଡ଼ ହାତ ପାପୁଲିରେ ଦିଆଯାଏ । ଏଭଳି ବେତ ଦେବାର ଆଇନ୍ କେଉଁଠି ଥିଲା କେଜାଣି । ସେତେବେଳେ ତ ମକଦ୍ଦମା ଲଢ଼ିବା କଥା ନ ଥାଏ । ବ୍ରିଟିଶ୍ ଅଦାଲତରେ ନ୍ୟାୟ ନାହିଁ ବୋଲି କୁହାଯାଉଥାଏ । ଏ ବେତମାଡ଼ ଆଇନସଙ୍ଗତ କି ନୁହେଁ ଯାଞ୍ଚ କରିବା ଚେଷ୍ଟା ସେତେବେଳେ ବୋଧହୁଏ ହେଇନଥିଲା । ସେତେବେଳେ ଆହେଦ୍ ସାହେବ କଟକ ସେକେଣ୍ଡ ଅଫିସର କି କ'ଣ ଥାନ୍ତି । ତାଙ୍କରି ଇଜ୍‌ଲାସରେ ବାନରସେନାଙ୍କର ବିଚାର ହୁଏ, ଦଶ ବା ପନ୍ଦର ପାହାର ସଜା ମିଳେ । ଜଣେ ସିପାହୀ ବାନରସେନାର ଦୁଇ ହାତର ପାପୁଲିକୁ ପ୍ରସାରିତ କରି ଧରେ ଓ ଏକ ଗୋଦଡ଼ା ଚପରାସୀ ବେତ ମାରେ । ମାନିବାକୁ ହେବ ଯେ ସେ ଏଥିରେ ବେଶି ଉତ୍ସାହ ଦେଖାଏ ନାହିଁ କି ପୂରା ଜୋର ଖର୍ଚ୍ଚ କରେ ନାହିଁ । ମାତ୍ର ତଥାପି ଦଶ ପନ୍ଦର ପାହାର ପରେ ହାତରେ ନୋଳା ବସିଯାଏ । ପିଲାଏ ପରଦିନ ସେହି ହାତ ନେଇ ଅଫିମ ଦୋକାନରେ ଛିଡ଼ା ହୁଅନ୍ତି । ପୁଣି

ପାହାର ବସେ, ହାତ ଫାଟି ଘା' ହୋଇଯାଏ । ଫୁଲି ଯାଏ । ଖାଇବା, ଗାଧୋଇବା, ଲୁଗା ପିନ୍ଧିବା ଆଦି କୌଣସି କାମ ହାତରେ କରିବା ଅସମ୍ଭବ ହୋଇଯାଏ । ବୋଉ, ଖୁଡ଼ୀ ହେଉଛନ୍ତି ସେମାନଙ୍କର ସବୁ କାମ କରି ଦିଅନ୍ତି । ସେମାନଙ୍କର ତେଜ କିନ୍ତୁ କ୍ଷୀଣ ହୁଏ ନାହିଁ । ହାତ ଟିକେ ଭଲ ହୋଇଗଲେ, ପୁଣି ଯାଆନ୍ତି, ପୁଣି ମାଡ଼ ଖାଆନ୍ତି । ବୀରବାବୁ ଗୋଟିଏ ଗୀତ ଲେଖିଥିଲେ :

"ତୁମେ ମାର କେତେ ବେତ ମାରିବ
ଜୀବନକୁ ଆମେ ପାଣି ଛଡ଼ାଇଛୁ,
ତୁମେ କି ଆମକୁ ପାରିବ ?
ଆମେ କେବେ ଡରୁ ନାହିଁ ମରଣେ
ମନ ଦେଇ ଅଛୁ ବିଭୁ ଚରଣେ
ତୁମ ଆମ କଥା ତାଙ୍କ ମିସଲରେ
ଦିନେ ତ ବିଚାର ହୋଇବ ।"

ବାନରସେନାମାନେ ଗିରଫ ହୋଇ କଚେରୀକୁ ଯିବାବେଳେ ସମବେତ କଣ୍ଠରେ ଏହି ଗୀତ ଗାଇ ଗାଇ ଯାଆନ୍ତି । ପ୍ରତିଦିନ କଚେରୀ ଲୋକାରଣ୍ୟ ହୋଇଯାଏ ଓ ଗୀତ ଜନତା ଭିତରେ ଏକ ଗଭୀର ସ୍ପନ୍ଦନ ସୃଷ୍ଟି କରେ । ଗିରୀଶ ଘୋଷ, ଅଦ୍ୱୈତ ରାୟ ଓ ଅନ୍ୟମାନେ ହାର୍‌ମୋନିୟମ୍ ବଜାଇ ଗୀତ ଗାଇ ଗାଇ ବଜାରରେ ମୁଠିଭିକ୍ଷା ସଂଗ୍ରହ କରିବାକୁ ବୁଲନ୍ତି । ଗୋଟାଏ ଲୁଗାର ଚାରିକଣକୁ ଦୁଇ ଜଣ ଧରି ପତେଇଥାନ୍ତି, ପ୍ରତି ଘରୁ, ପ୍ରତି ଦୋକାନରୁ ପଇସା ବୃଷ୍ଟି ହୁଏ । କେଉଁ ଘରୁ ଚାଉଳ ମିଳେ । ଜନତାର ଘରୁଘରୁ ମିଳୁଥିବା ଏହି ପାଣ୍ଡୁବର୍ଣ୍ଣୀ ଚାଉଳ ସତ୍ୟାଗ୍ରହୀର ଅମୃତ । ସରକାରୀ କର୍ମଚାରୀ ଓ ପୁଲିସ୍‌ବାଲା ବି ଲୁଚାଇ କରି ଚାନ୍ଦା ଦିଅନ୍ତି । ବୀର ବାବୁଙ୍କର ଆଉ ଏକ ଗୀତରେ ସେତେବେଳେ ଅବସ୍ଥାର ଏକ ଜୀବନ୍ତ ଚିତ୍ର ମିଳେ ।

'ଉଡାଇ କେତନ ଚାଲ ଭାଇ ଆଜି ବଜାଇ ବିଜୟ ବାଦ୍ୟ,
ପରାଧୀନ କିଏ କରିବ ଆମକୁ ଜଗତରେ କା'ର ସାଧ ହେ-
ଲୁହାବାଡ଼ ମଧ୍ୟେ ଛନ୍ଦି
ଆମ ମନ ତ ନୁହଁଇ ବନ୍ଦୀ ହେ...
ଲୁହାବାଡ଼ ମଧ୍ୟେ...
ଆମରି ହାତରେ ଜଗତ ମୁକତି ଆମ ସେନାପତି ଗାନ୍ଧୀ,
ଠକଙ୍କ କଥାରେ ଠକନ୍ତେ କି ସେହୁ କରିଣ ଠକାଇ ସନ୍ଧି ହେ...
ଭୁଲନା ଭାଇ ଭୁଲନା
ଭରିଲାଣି ସବୁ ଜେଲଖାନା ହେ... ।

ଭୁଲନା ଭାଇ....
କଚେରୀ ହତାରେ ଦେଖବ ଆସ ଯାଇ ସବୁଠି ଉଡନ୍ତି କାଉ,
କୋର୍ଟ ଫିସ୍ ବିକା ସରିଲାଣି ନାହିଁ ଆଗ ମକଦ୍ଦମା ଆଉ ହେ...
ପୁଲିସଙ୍କୁ ନାହିଁ ନିଦ ।
କେତେ ଯୋଡ଼ିବେ ସେ ମିଛ ପଦ ହେ... ।
ପୁଲିସଙ୍କୁ ନାହିଁ....
ମଦଭାଟି ତଳେ ହାକିମ ଡାକନ୍ତି ମଦୁଆଙ୍କୁ ବାଟ ଛାଡ଼,
ମଦ ଖାଇବାରେ ବାଧା ହେବ ଯେହୁ ଭାଗ୍ୟେ ତାର ବେତମାଡ଼ ହେ..
ବୁଦ୍ଧି ହୋଇଲାଣି ବଣା, ଦାଣ୍ଡେ ମହତ ପଡୁଛି ଜଣା ହେ... ।
ବୁଦ୍ଧି ହୋଇଲାଣି...
ଜେଲଖାନା ହେଲା ମୁକତି ମଣ୍ଡପ ହାଜତ ତ ଧର୍ମଶାଳା,
ଚବିଶ ପ୍ରହରୀ କୀର୍ତ୍ତନ ଲାଗିଛି ଲାଗିଛି ସ୍ୱରାଜ ପାଲା ହେ.... ।
ପିଲାଏ ବାଗୁଡ଼ି ଖେଳି
ତହିଁ ଉଡାଇ ଦିଅନ୍ତି ଧୂଳି ହେ.... ।
ପିଲାଏ ବାଗୁଡ଼ି...
ପାର୍ଲିଆମେଣ୍ଟରେ ନାହିଁ ଆଉ ମେଣ୍ଟ ସଭାରେ ପଡ଼ିଛି ଡାକ,
ଲକ୍ଷ ଲକ୍ଷ କୁଲି ନିକମା ହେଲେଣି କର ଶୀଘ୍ର ବୈଠକ ହେ.... ।
ସାଇମନ କହ ମିଛ,
ତାକୁ କର ପଛେ ମୂଳପୋଛ ହେ.... ।
ସାଇମନ....
ସିମିଳା ପାହାଡ଼ ଥରି ଉଠିଲାଣି, ସରିଲାଣି ସବୁ ଦଫା ।

କିଛି ଦିନ ପରେ ପିକେଟିଂ କରୁଥିବା ସତ୍ୟାଗ୍ରହୀମାନଙ୍କୁ ନେଇ ବଣରେ ଛାଡ଼ି ଦେଇ ଆସିବା ପନ୍ଥା ବି ପୁଲିସ୍ ପ୍ରୟୋଗ କରି ଦେଖିଲେ । ବସରେ ନେଇ ବାଙ୍କୀ ଡମପଡ଼ା ଆଡ଼େ ଛାଡ଼ି ଦେଇ ଆସନ୍ତି । ସେମାନେ ଚାଲିଚାଲି ବାଟରେ ଗାଁ ବାଲାଙ୍କଠାରୁ ମାଗି ଖାଇ, ଆସି ପୁଣି ଦୁଇ ଦିନ ପରେ ଆଶ୍ରମରେ ହାଜର ହେଇଯା'ନ୍ତି । ଏହି ସମୟରେ ଦିନାକେତେ କଲେଜ ଓ ସ୍କୁଲ ବନ୍ଦ କରିବା ପାଇଁ ବି ପିକେଟିଂ ଚାଲିଲା । ଏଭଳି ପିକେଟିଂ ବେଳେ ଥରେ ଭରତ ସିଂହଙ୍କ ପେଟ ଉପରେ ପୁଲିସ ଚଢ଼ି ଯିବାରୁ ସେ ଗୁରୁତର ଭାବରେ ଆହତ ହେଇ ଡାକ୍ତରଖାନାରେ ପହଞ୍ଚିଲେ । ସେତେବେଳେ ଡାକ୍ତର ରଜନୀକାନ୍ତ ଘୋଷ ଓ ତାଙ୍କ ସ୍ତ୍ରୀଙ୍କର ସାହାଯ୍ୟ ସମର୍ଥନ ଖୁବ୍ ମିଳୁଥିଲା ।

ଅଖିଳ ଭାରତୀୟ ନେତାମାନଙ୍କର ଗିରଫ ଖବର ମିଳିଲେ ହରତାଳର ଡାକରା ଦିଆଯାଏ । ପ୍ରଥମ ପ୍ରଥମ ହରତାଳ ଖୁବ୍ ଭଲ ରକମରେ ହେଉଥିଲା, ମାତ୍ର ବାରମ୍ବାର

ଡାକରା ଦିଆଯିବାରୁ କ୍ରମେ ଶିଥିଳ ହେଇଗଲା । ପିକେଟିଂ ଶୋଭାଯାତ୍ରା ଆଦିର ସଙ୍ଗଠନରେ ଖୁଡ଼ୀ ଖୁବ୍ ଲାଗିଥାନ୍ତି ଓ ନିଆଁହୁଳା ପରି କାମ କରୁଥାନ୍ତି । ସେତେବେଳେ ଲୋକେ ତାଙ୍କୁ "କଟକ ଚଣ୍ଡୀ" ଉପାଧି ଦେଇଥିଲେ । ବୋଉ, ଖୁଡ଼ୀ ହେରିକା ଯାଇ କୁଜଙ୍ଗ ଆଡ଼େ ବି ଲୁଣମରା ସଂଗଠିତ କରିଥିଲେ । ସେଠି ତ ପୂର୍ବରୁ ପୁରୁଷ ସତ୍ୟାଗ୍ରହୀମାନଙ୍କ ଦ୍ୱାରା ଲୁଣମରା ଆରମ୍ଭ ହେଇଥିଲା, ଏମାନେ ପହଞ୍ଚି ଗାଁର ସ୍ତ୍ରୀଲୋକମାନଙ୍କୁ ଲୁଣ ଆଇନ ଭାଙ୍ଗିବା ପାଇଁ ଉତ୍ସାହିତ କଲେ । ହଜାର ହଜାର ସ୍ତ୍ରୀଲୋକ ଶୋଭାଯାତ୍ରା କରି ଆସି ଟୋକେଇ ଭରି ଲୁଣ ମାଟି ନେଇ ଚାଲିଗଲେ । ପୁଲିସ ବାଲା ଭକୁଆ ହୋଇ ଚାହିଁ ରହିଲେ ।

କିନ୍ତୁ ସବୁ ଅଞ୍ଚଳରେ ଯେ ଏପରି ଜନ ସମର୍ଥନ ଥିଲା, ତାହା ନୁହେଁ । ପଣ୍ଡିତ ପଢିହାରୀ ଓ ବୋଉ ଥରେ ବଡ଼ଚଣା ଆଡ଼େ ପ୍ରଚାର ପାଇଁ ଯାଇଥିଲେ । ସେଠି ତାଙ୍କୁ କେହି ପିଣ୍ଡାରେ ସୁଦ୍ଧା ବସେଇ ଦେଲେ ନାହିଁ । ରାତିରେ ସେମାନେ ଗାଁ ବାହାରେ ଗଛମୂଳେ ଉପାସ ଭୋକରେ ରହିଲେ । ବୋଉ ଓ ଖୁଡ଼ୀ ସ୍ତ୍ରୀଲୋକମାନଙ୍କୁ ସତ୍ୟାଗ୍ରହ ପାଇଁ ବାହାର କରିବା ଉଦ୍ୟମରେ ଲାଗିଥାନ୍ତି । କଟକରୁ ବୀଣାଦେବୀ, କିରଣବାଳା ସେନ, ଜଞ୍ଜାଳୀ ଦେବୀ ପ୍ରଭୃତି ବାହାରି ଥା'ନ୍ତି । ବାଖରାବାଦର 'ରାଧା ଗଉଡୁଣୀ' ବିଧବା, ଦୁଧ ବିକି ଚଳୁଥାନ୍ତି । ମାତ୍ର ସତ୍ୟାଗ୍ରହରେ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରୁଥାନ୍ତି । ବରୀ ଅଞ୍ଚଳରୁ ପ୍ରିୟଂବଦା ଦେବୀ, ହରପ୍ରିୟା ଦେବୀ, ଶରତକୁମାର ଦେବୀ, ଅଧରମଣି ଦେବୀ, କଲ୍ୟାଣପୁରରୁ ଗୋଦାବରୀ ଏମିତି ସବୁ ଆହୁରି କେତେ ବାହାରିଥିଲେ । ସେମାନଙ୍କୁ ଆଣି କଟକରେ ବିଭିନ୍ନ ସ୍ଥାନରେ ରଖାଯାଏ । ଏହା ଭିତରେ ଗୋଟିଏ ସ୍ଥାନ ଥିଲା ତେଲେଙ୍ଗାବଜାରର ରାଧାମୋହନ ମହାପାତ୍ରଙ୍କର ଘର । ଦୁଃଖୀଅପା ବୋଉ ହେରିକାଙ୍କର ତୁଳନାରେ ପୁରୁଣା ନେତ୍ରୀ । ସେ ୧୯୨୨ ରୁ ସାଧାରଣ କ୍ଷେତ୍ରକୁ ବାହାରିଥିଲା । ସେ ବି କଂଗ୍ରେସ ପ୍ରଚାରରେ ଲାଗିଥାଏ । ବୋଧହୁଏ ବକ୍ତୃତା ଦେବା ଯୋଗୁଁ ସେ ବର୍ଷେ କି କେତେ ସଜା ପାଇଥିଲା ଓ ତାକୁ ମାନ୍ଦ୍ରାଜର ଭେଲୋର ଜେଲ୍‌କୁ ବଦଳି କରା ହେଇଥିଲା । ଖୁଡ଼ୀ କଣ ପାଇଁ ଧରା ହେଲେ ମନେ ନାହିଁ । ଖୁଡ଼ୀଙ୍କ ପରେ ବୋଉ ଗିରଫ ହେଇ ଆଠମାସ ନା କେତେ ସଜା ପାଇଲା । ଟୁଲୁମାମୁଁ ସେହି ସମୟରେ ଗିରଫ ହେଇ ଜେଲ ଗଲେ । ଦାଦା ବାଲେଶ୍ୱରରେ ଧରା ହେଇଥିଲା । ତା ନାଁରେ ଗୋଟିଏ ମିଛ ମକଦ୍ଦମା କରାଯାଇଥିବାରୁ ସେ ମକଦ୍ଦମା ଲଢ଼ିଥିଲା । ତା'ର ଏ ମକଦ୍ଦମା ଲଢ଼ାଟା ସେତେବେଳେ ମତେ ଭଲ ଲାଗି ନ ଥିଲା ।

ବୋଉ ଓ ଖୁଡ଼ୀ ପ୍ରଥମେ କଟକ ଜେଲରେ ଥିଲେ । ଖୁଡ଼ୀଙ୍କୁ ଓ ତା'ପରେ ବୋଉକୁ ଭାଗଲପୁର କେନ୍ଦ୍ର ଜେଲକୁ ବଦଳି କରାହେଲା । ଉଚ୍ଚଶ୍ରେଣୀ ପାଇଥିବା ରାଜବନ୍ଦୀମାନଙ୍କୁ ହଜାରୀବାଗ ଜେଲକୁ ନିଆ ହେଉଥାଏ । ରାଜବନ୍ଦୀମାନଙ୍କର ଶ୍ରେଣୀ ବିଭାଗ ଯତୀନ ଦାସଙ୍କର ଆତ୍ମାହୂତି ପରେ ଚାଲୁ ହେଇଥିଲା । ବୁବୁକୁ ସେତେବେଳେ ଦୁଇ ବର୍ଷ । ସେ ଖୁଡ଼ୀଙ୍କ ସାଙ୍ଗରେ ଜେଲରେ ଯାଇ ରହେ । ପ୍ରତିଦିନ ଦିନବେଳେ ଯାଏ । ଭାଗଲପୁରରେ ପୂରା ଜେଲରେ

ରହିଲା । ଥରେ ଖୁଡ଼ୀଙ୍କ ସାଙ୍ଗରେ ଦେଖା କରିବାକୁ ଚୁନୀ ଓ ମୁଁ କଟକ ଜେଲ୍ ଭିତରକୁ ଗଲୁ । ସେ ବାର ନମ୍ବର ୱାର୍ଡ଼ରେ ଥା'ନ୍ତି । ଖୁଡ଼ୀଙ୍କୁ ଅଫିସକୁ ନ ଆଣି ଆମକୁ ଭିତରକୁ ନେଇଗଲେ । ଜେଲ୍ ଫାଟକ ଅତିକ୍ରମ କରିବା ମୋର ସେଇ ପ୍ରଥମ । ଜେଲଟା ଗୋଟିଏ ଅନ୍ଧାରୁଆ, ଅନାକର୍ଷକ, ବନ୍ଧସ୍ଥାନ ବୋଲି ପୂର୍ବରୁ ଯେଉଁ ଧାରଣା ଥିଲା ସେଇଟା ଏ ପ୍ରଥମ ଦର୍ଶନରେ ବଦଳିଗଲା । ଭିତରେ ପଶିବା ମାତ୍ରେ ଦେଖିଲି ପଂଝାଏ ପିଲା -ସତ୍ୟାଗ୍ରହୀ ବନ୍ଦୀ ଆମକୁ ଦେଖି ହୋ-ହୋ ହେଇ ଅଭ୍ୟର୍ଥନା କରିବାକୁ ଧାଇଁ ଆସିଲେ । ପାଗଟା ବେଶ୍ ଚକଚକିଆ ଖରାଟିଆ ଥିଲା । ସାମନାରେ ଚେନାଏ ସବୁଜ ଘାସ ପଡ଼ିଆ ଥିଲା । କେତେ ଗୁଡ଼ାଏ ଫୁଲ ବି ଫୁଟିଥିଲା । ଖରାରେ ସବୁ ଝଲମଲ ଦେଖାଯାଉ ଥାଏ । ଅସଲ କଥା ମଣିଷ ତା'ର ନିଜର ପରିବେଶ ସୃଷ୍ଟି କରେ । ବାନରସେନା ଦଳ ଯାଇ ଜେଲର ସବୁ ଅନ୍ଧାର, ସବୁ ବିଷଣ୍ଣତାର ଧୂଳି ଉଡେଇ ଦେଇଥିଲେ ।

## ମୋର ଗତିବିଧି

ସତ୍ୟାଗ୍ରହ ଆରମ୍ଭର କେତେଦିନ ପରେ କଂଗ୍ରେସକୁ ବେଆଇନ୍ ଘୋଷଣା କରାଯାଇ ସ୍ୱରାଜ ଆଶ୍ରମକୁ ପୁଲିସ ଦଖଲ କରିଥା'ନ୍ତି । ତେଣୁ ଆମ ଘର ସତ୍ୟାଗ୍ରହର କେନ୍ଦ୍ର ହେଇଥାଏ । ଚାରିଆଡୁ ସ୍ୱେଚ୍ଛାସେବକ ସେଠିକି ଆସୁଥା'ନ୍ତି । ସେଇଠୁ ସବୁ ଆଡ଼କୁ ଯାଉଥା'ନ୍ତି । ଗାଁ ଗହଳରୁ ଆସୁଥିବା ସ୍ୱେଚ୍ଛାସେବକମାନେ ନାନା ବିଚିତ୍ର କାଣ୍ଡ ଘଟାଉଥିଲେ । କିଏ ଗୋରୁ କୁଣ୍ଡକୁ ପାଇଖାନା ଭାବି ସେଇଥିରେ ଝାଡ଼ା ଫେରି ଦେଇଥା'ନ୍ତି । ନୀଳମଣିବାବୁ ହେରିକା ମା'ର ଗାଳି ଭୟରେ କାହାରିକି କିଛି ନ କହି ତାକୁ ନିଜେ ନିଜେ ସଫା କରି ରଖି ଦିଅନ୍ତି । ଥରେ କେତେଜଣ ସ୍ୱେଚ୍ଛାସେବକ ବୁବୁର ଝାଡ଼ା ଫେରିବା ପଟ୍‌କୁ ନେଇ ସେଥିରେ ଚୂଡ଼ା ଭିଜେଇ ଖାଇଥିଲେ । ମଝିରେ ମଝିରେ ଚାଲୁଲୋକ ବି ଏ ହୋ ହା ଭିତରେ ଆସି ଲୁଟନ୍ତି ଓ ଘରର ଜିନିଷପତ୍ର କୁଆଡ଼େ ଉଭେଇଯାଏ । ଉପର ମହଲାର ଦାଣ୍ଡ ପାଖ ବାରଣ୍ଡାରେ ପ୍ରତିଦିନ ଉପରଓଳି ଆଲୋଚନା ବୈଠକ ହୁଏ । ରାଧାନାଥ ବାବୁ ଆସିଲେ ବାଉଁଶ ଚିକସବୁ ପକେଇ ଦିଆଯାଏ, କାଳେ କିଏ ନଈ କୂଳରୁ ଦେଖିପକାଇବ ବୋଲି । ଦୁଇଜଣ ସାଦା ପୋଷାକର ପୋଲିସ ଚର ଆମଘର ପାଖରେ ବରାବର ନଗର ହୁଅନ୍ତି । ଜଣଙ୍କ ନାଁ ସଲୀମ୍, ଅନ୍ୟ ଜଣଙ୍କ ନାଁ ହାତୀ । ବିଚରା ଦୁହେଁଯାକ ଆମ ସମସ୍ତଙ୍କୁ ବହୁତ ଖାତିର କରି ଚଳୁଥା'ନ୍ତି ।

ଆମ ଘରୁ ସବୁ ବଡ଼ ମଣିଷଯାକ ଧରା ହୋଇଯିବା ପରେ ସତ୍ୟାଗ୍ରହ କେନ୍ଦ୍ର ଆମ ଘରୁ ଉଠିଗଲା । ସ୍ୱରାଜ ଆଶ୍ରମ ଜବତ ହେବା ପରେ ଚୌଧୁରୀବଜାର ଜୈନ ମନ୍ଦିର ହତାରେ ସତ୍ୟାଗ୍ରହୀଙ୍କର ଆଡ଼୍‌ଡ଼ା ହେଲା । ସେ ମନ୍ଦିରର ମାରଫତଦାର ଦୁଇ ଭାଇ ମୋହନଲାଲା ଜୀ ଓ ଅନ୍ୟାନ୍ୟ ଭାବରେ ସାହାଯ୍ୟ କରୁଥା'ନ୍ତି । ମୋହନଲାଲଙ୍କର ପୁଅ ମଧ୍ୟ ସତ୍ୟାଗ୍ରହରେ ଯୋଗ ଦେଇ ବେତମାଡ଼, ଜେଲ ଆଦି ଭୋଗୁଥା'ନ୍ତି । ମନ୍ଦିର ବୋଲି ପୁଲିସ୍ କିଛି କରୁ ନଥାଏ ।

ସେତେବେଳକୁ ଆନ୍ଦୋଳନର ଉଚ୍ଛ୍ୱାସ ମାନ୍ଦା ହୋଇଯାଇଥିବାରୁ ବୋଧହୁଏ ପୁଲିସ ଟିକେ ବେପରୱା ଥା'ନ୍ତି । କଟକର ମାରୱାଡ଼ି ଓ ଗୁଜରାଟୀ ଗୋଷ୍ଠୀ ଭିତରୁ ସତ୍ୟାଗ୍ରହରେ ଯୋଗଦେବା ବ୍ୟକ୍ତିଙ୍କ ଭିତରେ ଥିଲେ ବଜରଙ୍ଗଲାଲ ଚୌଖାନୀ, ଶିବଚାନ୍ଦ ରାୟ ଓ ହରିକିଷନଭାଇ । ଶିବପ୍ରସାଦ ଭଗତ ଓଡ଼ିଶା ବାସିନ୍ଦା ବିହାରୀଙ୍କ ଭିତରୁ ଥିଲେ । ତାଙ୍କର ଅଳ୍ପ ବୟସରେ ଦେହାନ୍ତ ହୋଇଯାଇଥିଲା । ଯା ଭିତରେ ଚୁନୀକୁ ଓ ମୋତେ ଆନ୍ଦୋଳନରେ ଖୋଲାଖୋଲି ଅଂଶଗ୍ରହଣ କରିବା ପାଇଁ ଅନ୍ୟମାନେ ନିରୁତ୍ସାହିତ କରୁଥା'ନ୍ତି । ଆମେ ସବୁ ଗୁପ୍ତ ପ୍ରଚାରପତ୍ର ଛାପା ଓ ବଣ୍ଟାଇବାରେ ସାହାଯ୍ୟ କରୁଥାଉ । ପ୍ରଥମେ 'ସମ୍ବାଦ' ଖୋଲାଖୋଲି ବାହାରୁଥିଲା ବୋଲି ପୂର୍ବରୁ ଲେଖିଛି । ତା'ପରେ ସାଇକ୍ଲୋଷ୍ଟାଇଲ ପତ୍ରିକା ଉପରେ କଟକଣା ଜାରି ହେଲା । ଏହାପରେ ତାହାର ପ୍ରକାଶନ ଆଉ ସମାଜ ସଂସ୍ଥାରେ ନ ହୋଇ ଅନ୍ୟତ୍ର ହେଲା । ଅନେକ ଦିନ ଯାଏ ଆମରି ଘରେ ଛାପା ମେସିନ ଥାଏ । ତାକୁ ଲୁଚେଇବାର ଏପରି ସୁବ୍ୟବସ୍ଥା କରାହୋଇଥାଏ ଯେ ଆମଘର ପୁଲିସ ଦ୍ୱାରା ବାରମ୍ବାର ଖାନତଲାସ ହେଲେ ବି ତାହା କେବେ ଧରାପଡ଼ିନାହିଁ । ଛାପା କାଗଜସବୁ ମୁଁ ଲୁଚେଇ ରଖେ । ସତ୍ୟାଗ୍ରହୀ କର୍ମୀମାନେ ତାକୁ ନେଇ ବିକନ୍ତି ଓ ପଇସା ଆଣି ମୋ ପାଖରେ ଜମା ଦିଅନ୍ତି । ସେତେବେଳେ ଏ ସାଇକ୍ଲୋଷ୍ଟାଇଲ୍ ଛପା ପତ୍ରିକା ବି ବିକ୍ରି ହେଉଥିଲା । ଲୋକେ ତାକୁ ପଇସା ଦେଇ କିଣୁଥିଲେ । ସତ୍ୟାଗ୍ରହ ଭିତରେ ବେଳେବେଳେ ଅଣ-ସତ୍ୟାଗ୍ରହୀ ସୁଲଭ ଆଚରଣ ବି ହେଉଥାଏ । ଥରେ ମାଲଗୋଦାମ ନିକଟରେ ବିଲାତି ଲୁଗା ବୋଝେଇ ବଳଦ ଗାଡ଼ିକୁ ଅଟକାଇ ପିକେଟିଂ ହେଉଥାଏ । ଜଣେ ସତ୍ୟାଗ୍ରହୀ ଗାଡ଼ି ତଳେ ଶୋଇଥା'ନ୍ତି । ଆଉଜଣେ ଶିଶିଏ ତେଜାବ ଆଣି ଗାଡ଼ିରେ ଥିବା ଲୁଗାଗଣ୍ଠି ଉପରେ ଢାଳି ଦେଲେ, ତାକୁ ନଷ୍ଟ କରିବା ଉଦ୍ଦେଶ୍ୟରେ । ସେଥିରୁ କିଛି ତଳେ ଥିବା ସତ୍ୟାଗ୍ରହୀଙ୍କ ଉପରେ ପଡ଼ି ତାଙ୍କର ଦେହର କିଛି ଅଂଶରେ କ୍ଷତ ହୋଇଗଲା । ବୋଉ କଟକ ଜେଲରୁ ଭାଗଲପୁର ଯିବା ଦିନ ବଙ୍କିମ ହେରିକା କେତେଜଣ ଯାଇ କାଠଯୋଡ଼ି ରେଳ ପୋଲ ପାଖରେ ଟେଲିଫୋନ୍ ତାର କାଟିଦେଲେ । ଫଳରେ ସେ ଦିନ ଗାଡ଼ି ଚଳାଚଳ ବିପର୍ଯ୍ୟସ୍ତ ହୋଇଗଲା ଓ ବୋଉ ହେରିକା ଅନେକ ସମୟଯାଏ ଷ୍ଟେସନରେ ବସି ରହିଲେ ।

ପ୍ରଚାରପତ୍ର ଛପା ଓ ବଣ୍ଟାରେ ସାହାଯ୍ୟ ବ୍ୟତୀତ ମୁଁ ଆଉ ଦୁଇଟି କାମ କରୁଥାଏ । ଫଟୋ ଉଠାଇବା ଓ ଖବରକାଗଜକୁ ସମ୍ବାଦ ପଠାଇବା । ପ୍ରଥମ ଓ ପରବର୍ତ୍ତୀ ଲବଣ ସତ୍ୟାଗ୍ରହୀ ଦଳ ଯାତ୍ରା ଆରମ୍ଭ କରିବାବେଳେ, ବୋଉ ହେରିକା ଇଞ୍ଚୁଡ଼ିରେ ଲୁଣ ମାରିବାବେଳେ ଓ କଟକରେ ପିକେଟିଂବେଳେ ମୁଁ ସବୁ ଛବି ନେଇଥିଲି । ପିକେଟିଂ କରୁଥିବା ସ୍ୱେଚ୍ଛାସେବକମାନେ ଗିରଫ ହେଲେ ଯିବାକୁ ଅସ୍ୱୀକାର କରି ତଳେ ଶୋଇ ପଡ଼ିବାର ନୀତି ପରେ ଗ୍ରହଣ କରାହୋଇଥାଏ । ପୁଲିସ୍ ସେମାନଙ୍କୁ ଟାଣି ଘୋଷାଡ଼ି ଟେକି ନେଇ ଘୋଡ଼ା ଗାଡ଼ିରେ ପୂରେଇ ଦେଉଥା'ନ୍ତି । ଏସବୁର ଛବି ମୁଁ ନେଇଥିଲି । କଲିକତାର ଫ୍ରି ପ୍ରେସ ସମ୍ବାଦ ସଂସ୍ଥାକୁ ମୁଁ ବରାବର ତାର ଖବର ପଠାଉଥାଏ । ଖର୍ଚ୍ଚ କଂଗ୍ରେସ ଅଫିସ ଦିଏ । କଂଗ୍ରେସ ଅଫିସ ବୋଲନ୍ତେ

ସହଦେବ ଦାସଙ୍କ କୋଠରି । ସହଦେବ ବାବୁ ବେଆଇନ୍ ହୋଇଥିବା କଂଗ୍ରେସ ସଂସ୍ଥାର କାର୍ଯ୍ୟକାରୀ ସଂପାଦକ କି କ'ଣ ଥା'ନ୍ତି ଓ ସବୁ କାଗଜପତ୍ର ଗୋଟିଏ କାନ୍ଧଝୁଲା ବ୍ୟାଗରେ ପୂରେଇ ସେଇଟିକି ଧରି ବୁଲୁଥା'ନ୍ତି । ଫ୍ରି ପ୍ରେସ୍ ସେତେବେଳେ ବେସରକାରୀ ଓ କଂଗ୍ରେସ ସମର୍ଥକ ସମ୍ବାଦ ସରବରାହ ସଂସ୍ଥା ଥିଲା । ସରକାର ସମର୍ଥିତ ସଂସ୍ଥା ଥିଲା ଆସୋସିଏଟେଡ୍ ପ୍ରେସ୍ ।

ଏ ସବୁ ଭିତରେ ମୋର ନିଜର ରୁଚି ଅନୁସାରେ ନାନା ପ୍ରକାର କାର୍ଯ୍ୟକଳାପ ବି ଚାଲିଥାଏ । ନବ ପଟ୍ଟନାୟକଙ୍କର କଥା ଆଗରୁ କହିଛି । ତା' ସଙ୍ଗରେ ମୋର ସ୍ୱଭାବ ବେଶ୍ ମିଳୁଥିଲା । ନାନା ପ୍ରକାରର ଛୋଟ ଛୋଟ ବୈଜ୍ଞାନିକ ପ୍ରୟୋଗ କରିବାରେ ଉଭୟଙ୍କର ସମାନ ରୁଚି ଥିଲା । ଏବେ ସତ୍ୟାଗ୍ରହ ଚାଲିଥିବା ଭିତରେ ବି ଆମେ ସେସବୁ ଚଳାଉଥାଉ । ଫଟୋ ଉଠାଇବା ଆଉ ଗୋଟିଏ ସମାନ ସଉକ ଥିଲା । ଥରେ ଆମେ ଭିଜା ବୈଦ୍ୟୁତିକ ବ୍ୟାଟେରୀ ତିଆରି ଉଦ୍ୟମ କଲୁ । ସେଥିପାଇଁ ମାଙ୍ଗାନିଜ୍ ଡାୟକସାଇଡ୍‌ର କଳା କଳା ଗୁଣ୍ଡ ଆଣି ତାହା ପାଇଁ ପୋରସ୍ ପଟ୍ ବା ସଚ୍ଛିଦ୍ର ମାଟିପାତ୍ର ନମିଳିବା ସ୍ଥଳେ ସେ ଗୁଣ୍ଡକୁ କାଗଜ ଡବାରେ ଭରି ଓ ତା' ଉପରେ କନା ଗୁଡ଼େଇ କାମ ଚଳେଇବା ଉଦ୍ୟମ କରୁଥାଉ । ପଣ୍ଡିତ ପଢ଼ିହାରୀ ସେସବୁ କଳାକଳା ଗୁଣ୍ଡ ଓ ଡିବା ଦେଖି ଆମେ ସବୁ ବୋମା ତିଆରି କରୁଛୁ ବୋଲି ବିଚାରି ଭାରି ଉଦ୍‌ବିଗ୍ନ ହେଲେ । କାହାକୁ କାହାକୁ ଏସବୁ କଥା କହିଲେ ଓ ଶେଷକୁ ଆମକୁ ଖଞ୍ଜରେ ପଚରାପଚରି କରି ଆଶ୍ୱସ୍ତ ହେଲେ ।

ଥରେ ଆମ ଘର ଖାନତଲାସ କରିବାକୁ ରାଜକିଶୋର ଗଡ଼ନାୟକ ନାମକ ଜଣେ ଯୁବକ ଦୋପଟୀ ଆସିଥିଲେ । ତାଙ୍କର ମୋ ପ୍ରତି କେମିତି ସହାନୁଭୂତି ଜନ୍ମିଲା ଓ ମତେ ଦିନେ ତାଙ୍କ ଘରକୁ ଡାକିଲେ । ଦୁଇ ଚାରିଥର ଯିବା ଆସିବା କରି ବେଶ ହୃଦ୍ୟତା ଜନ୍ମିଲା । ତାଙ୍କ ପାଖରେ ଫରାସୀ ଶିଖିବାର ସ୍ୱବୋଧିନୀ ପୁସ୍ତକ ଥିଲା । ସେ ମତେ ଯାଚିଲେ ଓ ମୁଁ ବି ଆଗ୍ରହରେ ଆଣି ଫରାସୀ ଶିଖିବା ଆରମ୍ଭ କଲି । ଏଥିରେ ମୁଁ ଅନେକ ବାଟ ଆଗେଇ ଯାଇଥିଲି । ମାତ୍ର କେଉଁଠି ପଢ଼ିଲି ଯେ ମହାଦେବ ଦେଶାଇ ଫରାସୀ ଶିଖୁଥିଲେ, କିନ୍ତୁ ଗାନ୍ଧୀଜୀ ତାଙ୍କୁ ନିଷେଧ କଲେ । ନିଜର ଯାହା ପ୍ରକୃତ କାମ ସେଥିରେ ଏକାଗ୍ର ହେବା ଚାହି ବୋଲି ମହାଦେବ ଦେଶାଇଙ୍କୁ ବୁଝାଇଲେ । ସେତେବେଳେ ମୋର ଗାନ୍ଧୀ ଭକ୍ତିର ଯେଉଁ ଧାରଣା ଥିଲା ସେଥିରେ ମୋର ବି ମନେହେଲା ଯେ ଫରାସୀ ଭାଷା ଶିଖିବା କି ଦରକାର ? ତେଣୁ ଛାଡ଼ିଦେଲି । ଏଇଟା ଠିକ୍ କାମ ନ ଥିଲା ବୋଲି ଏବେ ବୁଝୁଛି । ଜୀବନର ବୈଚିତ୍ର୍ୟ ହରେଇ ଏକାଗ୍ର ହେବାକୁ ବସିଲେ ଜୀବନୀଶକ୍ତି କ୍ଷୀଣ ଓ ଦୃଷ୍ଟି ଏକାଙ୍ଗୀ ହୋଇଯାଏ ।

ସେତେବେଳେ ଆମେ ସବୁ ମାମୁଁଘରେ ବଡ଼ମାଙ୍କ ପାଖରେ ଅନେକ ସମୟ ରହୁଥାଉ । ଖୁଡ଼ୀଙ୍କର ପିଉସୀଝିଅ ଭଉଣୀ ବୁଲୁ ମାଉସୀ ଓ ତାଙ୍କର ଭଉଣୀ ଦେବୀମାସୀ ଓ ବୋକାମାମା ହେରିକା କ୍ୟାଣ୍ଟନମେଣ୍ଟ ଅଞ୍ଚଳରେ ରହୁଥା'ନ୍ତି । ଚୁନୀ ତାଙ୍କ ଘରକୁ ପ୍ରାୟ ପ୍ରତିଦିନ ଯିବା

ଆସିବା କରେ, ସେଠି ସବୁ କ'ଣ ପଢ଼ାପଢ଼ି କରେ, ସିଲେଇ ଆଦି ଶିଖେ । ବେଙ୍ଗମାମୁଁ ହେରିକା ସେତେବେଳେ ବସ୍ ବ୍ୟବସାୟ କରୁଥା'ନ୍ତି ଓ ଏକ୍‌ମୀ ଥିଏଟର ହତାରେ ତାଙ୍କର ମୋଟର ଗ୍ୟାରେଜ ଥାଏ । ମୋର ତ କଳକବ୍‌ଜା ବିଷୟରେ ଖୁବ୍ ରୁଚିଥାଏ, ସେଥିପାଇଁ ବେଙ୍ଗମାମୁଁ ମତେ ପରାମର୍ଶ ଦେଲେ କାରଖାନାକୁ ଯାଇ ମୋଟର ମେକାନିକ କାମ ଶିଖିବାକୁ । ତାଙ୍କ ପାଖରେ ମୋଟରର ଯନ୍ତ୍ରପାତି ବିଷୟରେ ଖୁବ୍ ଭଲ ଭଲ ବହି ଥାଏ । ସେ ସବୁ ବହି ସେ ମୋତେ ପଢ଼ିବାକୁ ଦେଲେ । ମୁଁ ସେସବୁ ଓଲଟାଇବା ଆରମ୍ଭ କଲି ଓ ତେଣେ ଉପରଓଳି କାରଖାନାରେ ଯାଇ ହାଜିରା ଦେଲି । ବହି ପଢ଼ି ମୋଟର ଗାଡ଼ିର ରଚନା ଓ ତାର ବିବିଧ ଅଂଶ ଓ କଳକବ୍‌ଜା ବିଷୟରେ ମୋର ଭଲ ଧାରଣା ହୋଇଗଲା । ମାତ୍ର ଗ୍ୟାରେଜରେ ହାତ କାମ କିଛି ଆଗେଇଲା ନାହିଁ । ମୁଁ ସେଠି ଯାଇ ବୁଲି ବୁଲି ସବୁ କାରିଗରମାନଙ୍କର କାମ ଲକ୍ଷ୍ୟ କରେ; କିନ୍ତୁ ସେମାନେ ମୋତେ ବାବୁ ଘର ପିଲା ବୋଲି ଭାବି କି କ'ଣ କେବେ ସେମାନଙ୍କର କାମରେ ସାହାଯ୍ୟ କରିବାକୁ ଡାକନ୍ତି ନାହିଁ । ମୁଁ ବି ସଂକୋଚରେ ଉପରେ ପଡ଼ି କାମ କରିବାକୁ ଚେଷ୍ଟା କରେ ନାହିଁ । ଏମିତିରେ ସେ ବିଦ୍ୟାଟା ଶିଖା ହୋଇପାରିଲା ନାହିଁ ବୋଲି ପରେ ଅବଶୋଷ ହେଲା । କେବଳ ବୌଦ୍ଧିକ ଜ୍ଞାନ ଯାହା ହେଲା ।

ନଭେମ୍ବର ୧୪ ତାରିଖ (୧୯୩୦) ଦିନ ଜୱାହରଲାଲଙ୍କର ଜନ୍ମ ଦିନ । ସେଦିନ ଗୋଟିଏ କ'ଣ ପ୍ରତିବାଦ ଦିବସ ପାଳନ କରିବା ପାଇଁ ଉପରୁ ସୂଚନା ଆସିଲା । ସେତେବେଳକୁ ପଣ୍ଡିତ ମୋତିଲାଲ ନେହେରୁ ଜେଲରୁ ଖଲାସ ହୋଇଥା'ନ୍ତି ଓ ସେଇ ବୋଧହୁଏ ଏ ସୂଚନା ଦିଆଇଥିଲେ । ସେଦିନ କଟକରେ ନଈବାଲିରେ ସଭା ହେବାର ଥିଲା ।

ସେ ସମୟରେ କଟକରେ ୧୪୪ ଧାରା ବଳବତ୍ତର ଥାଏ । ଗୁଣନିଧି ମହାନ୍ତିଙ୍କର ନେତୃତ୍ୱରେ ସଭା ଓ ୧୪୪ ଭଙ୍ଗ ହେବ ବୋଲି ସ୍ଥିର ହୋଇଥାଏ । ବହୁତ ଲୋକ ଜମା ହୋଇଥା'ନ୍ତି । ମୁଁ ବି ସମ୍ଭାଳି ନ ପାରି ସଭାକୁ ଚାଲିଯାଇଥାଏ । ପୁଲିସ ବନ୍ଦୋବସ୍ତ ଜବର ଥିଲା ଓ ସଭାକୁ ବେଆଇନ ଘୋଷଣା କରାଯାଇ ଲୋକଙ୍କୁ ଘଉଡ଼ାଇବା ଆରମ୍ଭ ହେଲା । ସେତେବେଳର କଟକର ଡି.ଏସ୍.ପି. ଦାମୋଦର ରଥ ଖୋଦ ଗୋଟିଏ ବେତ ଧରି ଲୋକ ଘଉଡାଇବାରେ ଲାଗିଥା'ନ୍ତି । ଭିଡ଼ ଛତ୍ରଭଙ୍ଗ ହେବା ଅବସ୍ଥାରେ ମୁଁ ବି ଲୋକଙ୍କ ମେଳରେ ଧାଇଁବା ଆରମ୍ଭ କରିଦେଇଥିଲି । ଏତିକିବେଳେ ରଥଙ୍କର ବେତର ଗୋଟିଏ ପାହାର ମୋ ଅଣ୍ଟାରେ ବେଶ୍ ଜୋର୍‌ରେ ବସିଲା । ପରେ ଦେଖାଗଲା ଯେ ବେଶ୍ ନୋଳା ବସିଯାଇଛି ।

ପୁଲିସ୍‌ର ଏ ପ୍ରଥମ ଆକ୍ରମଣର ସତ୍ୟାଗ୍ରହୀମାନେ ବି ସେ ଲୋକଙ୍କ ସାଙ୍ଗରେ ପଳାଇଗଲେ । ଏଇଟା ଠିକ୍ ହେଲା ନାହିଁ ବୋଲି ତୁରନ୍ତ ସେମାନେ ଅନୁଭବ କଲେ ଓ ଅଳ୍ପ ସମୟ ପରେ ପୁଣି ସମସ୍ତେ ଡକାଡକି ହୋଇ ଯାଇ ବାଲିରେ ଆଉ ଏକ ଜାଗାରେ ଏକତ୍ର ହେଲେ । ଶହେ ଖଣ୍ଡେ ଲୋକ ସେଠି ଥିଲେ । ସେଠି ପୁଲିସ୍ ପହଞ୍ଚି ସଭାକୁ ବେଆଇନ୍ ଘୋଷଣା କଲେ । ମାତ୍ର ଏଥର ଅଧିକାଂଶ ଲୋକ ଆଉ ସେଠୁ ହଟିଲେ ନାହିଁ । ତେଣୁ ସେଠୁ

ମୋଟ ପଇଁଚାଳିଶ ଜଣଙ୍କୁ ଗିରଫ କରି ଥାନାକୁ ନିଆଗଲା । ତା' ଭିତରେ ମୁଁ ବି ଥିଲି । ଥାନାରୁ ରାତି ଏଗାରଟା ଖଣ୍ଡେ ବେଳକୁ ଆମ ଭିତରୁ ବାଇଶ ଜଣକୁ ଛାଡ଼ି ଦିଆହେଲା । ତାହା ଭିତରେ ମୁଁ ଛାଡ଼ ପାଇଲି । ମତେ ନେବା ପାଇଁ ବେଙ୍ଗ ମାମୁଁ ଥାନାକୁ ଆସିଥିଲେ । ସେଥିରୁ ମୁଁ ଅନୁମାନ କଲି ଯେ ମତେ ଖଲାସ କରିବାରେ ସେ ବି କିଛି ଜୋର ଲଗାଇଛନ୍ତି । ବାକି ତେଇଶ ଜଣଙ୍କୁ ସଜା ହେଇଗଲା ।

ମୋର ବେତମାଡ଼ ଖବର ଶୁଣି ତା' ପରଦିନ ସକାଳୁ ଭୁବନାନନ୍ଦ ଦାସ - ସମସ୍ତେ ତାଙ୍କୁ, ବି. ଦାସ କହୁଥିଲେ, ଆସି ଆମ ଘରେ ପହଞ୍ଚିଲେ । ମୋତେ ପଚାରି ସବୁ ବିବରଣୀ ଲେଖିନେଲେ ଓ ଏକଥାକୁ ନେଇ କ'ଣ କ'ଣ ସବୁ କରିବେ, ବଡ଼ଲାଟ ସଭାରେ ପ୍ରଶ୍ନ ଉଠାଇବେ ଇତ୍ୟାଦି ବହୁତ କଥା କହିଲେ । ମୋର ମନେପଡୁଛି ଯେ ଘଟଣାର ବିବରଣୀ ଦେବାବେଳେ ମୁଁ ଏକଥାକୁ ଯଥାସମ୍ଭବ ଢାଙ୍କି ଦେବାର ଚେଷ୍ଟା କରୁଥାଏ ଯେ ଲାଠି ମାଡ଼ ବେଳେ ମୁଁ ପଳାଇ ଯାଉଥିଲି । ପଳେଇ ଯିବାର କାପୁରୁଷତାଟା ବହୁତ ଲଜ୍ଜାକର ବୋଧ ହେଉଥାଏ । ଏଇ ସମୟରେ ଭୁବନାନନ୍ଦ ବାବୁ ମତେ ତାଙ୍କ ପାଖରେ ଦିଲ୍ଲୀରେ ରଖିବାର ଇଚ୍ଛା ପ୍ରକାଶ କରିଥିଲେ । ସେ ବଡ଼ଲାଟ ସଭାର ସଦସ୍ୟ ଥା'ନ୍ତି । ମୋର ବି ଦିଲ୍ଲୀ ଯିବାର ପୂରା ଇଚ୍ଛା ଥିଲା, କିନ୍ତୁ ବାପା ଏଥିରେ ଅମତ ପ୍ରକାଶ କରି ଜେଲରୁ ଚିଠି ଲେଖିଲେ ଓ ମୋର ଦିଲ୍ଲୀ ଯିବା ହେଲା ନାହିଁ ।

## ନୂଆ ଜୀବନର ଆହ୍ୱାନ

୧୯୩୦ ରେ ଆନ୍ଦୋଳନ ବାଟ ଦେଇ ମୁଁ ଗୋଟାଏ ନୂଆ ଉଦ୍ଦୀପନାମୟ ଜଗତର ଆସ୍ୱାଦ ପାଇଲି । ପୁରୁଣା ଦୁନିଆଟା ଫିକା ହୋଇଗଲା । ମୋର ସବୁ ପୁରୁଣା ସାଙ୍ଗମାନଙ୍କ ସହିତ ଆଉ ସମ୍ପର୍କ ରହିଲା ନାହିଁ, କେବଳ ଖୋକନ୍ ଛଡ଼ା । ସନ୍‌ସାଇନ୍ ପଡ଼ିଆରେ ଖେଳ ବି ବନ୍ଦ ହେଇଗଲା ।

ଏଇ ସମୟରେ ମୋର କବିତା ଲେଖାର ଝୁଙ୍କ୍ ବି ହେଉଥିଲା । ଗୋଟାଏ ମଜାର ଘଟଣା କହେ । ଦିନେ ମୁଁ ମାତାମଠ ପାଖରେ ମହାନଦୀ ବନ୍ଧ ଉପରେ ଯାଉଛି । ଦେଖିଲି ଜଣେ ବଙ୍ଗାଳୀ ପିଲା ବି ଜୋର୍‌ରେ ଏକାଦିଗରେ ଜୋବ୍ରା ଆଡ଼କୁ ଚାଲିଛି । ତା' ପଛରେ ଜଣେ ମଳିମୁଣ୍ଡିଆ ଲୋକ, ଘରର ଚାକର ହୋଇପାରେ । ପିଲାଟି ତାକୁ ପଚାରୁଛି । "ଓରେ ଶମ୍ଭୁ ! ମଙ୍ଗଲାବାଗ ଆର୍ କତ ଦୂର୍ ? ସନ୍ଧ୍ୟା ଯେ ହୋଲୋ ।"

ମତେ ଦେଖି ସେ ସେଇକଥା ପଚାରିଲା । ତା' ସାଙ୍ଗରେ ସେଠୁ ଆଳାପ ହେଲା । ସେ ପୁଣି ଭୟରେ ପଚାରିଲା - "ଜାଗାଟା ତ ବଡ଼ ଜଙ୍ଗଲିଆ ଦେଖାଯାଉଛି, ଏଠି ବାଘଫାଘ ନାହାନ୍ତି ତ ? ଏ ରାସ୍ତାରେ ବିଜୁଳି ଆଲୁଅ କାହିଁକି ନାହିଁ ?

ମଟେ ଭାରି ହସମାଡ଼ିଲା । ମୁଁ କହିଲି - "ଏଇଟା ପରା କଟକ ସହର । ଏଠି ବାଘ କୁଆଡୁ ଆସିବେ ?

ସେ ସେଠୁ ଗପିଚାଲିଲା ଯେ, ତା'ର ଘର ଖୁଲନାରେ । ସେଠି ଗଳିମାନଙ୍କରେ ସୁଦ୍ଧା ବିଜୁଳି ଆଲୁଅ ଅଛି । ତା'ର ନାଁ କମଲାକ୍ଷ କେତନ ରାୟ । ଏଠି ରେଳବାଇରେ ତା'ର କିଏ ଆତ୍ମୀୟ କାମ କରନ୍ତି । ତାଙ୍କ ଘରକୁ ଆସିଛି । ସେ କିପରି 'ବ୍ରିଲିୟାଣ୍ଟ ସ୍କଲାର' ତା'ର ବର୍ଣ୍ଣନା କରି ସେ କହିଲା ଯେ, ସେ ମାଟ୍ରିକ୍ ଓ ଆଇ.ଏସ୍.ସିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲା । କୋଉ ଗୋଟାଏ ପରୀକ୍ଷା ପୂର୍ବରୁ ଖୁବ୍ ଟାଇଫଏଡ଼୍ ଭୋଗିଥିଲା ଓ ପାଠ ପଢ଼ିପାରି ନ ଥିଲା । ତଥାପି ଦୁଇଥରଯାକ କଲିକତା ବିଶ୍ୱବିଦ୍ୟାଳୟର 'ରେକର୍ଡ଼ ବ୍ରେକ୍' କରିପାରିଥିଲା ଇତ୍ୟାଦି । ଏଣେ ମଝିରେ ମଝିରେ ଭୀତସ୍ୱରରେ ପଚାରୁଥାଏ 'ଓରେ ଶମ୍ଭୁ ! ଆର୍ କତ ଦୂର୍ ? ଅନ୍ଧକାର ଯେ ହୋଲୋ ।" ମୁଁ ତା' ଉପରେ ନଜରୁଲଙ୍କର "ବଲ ବୀର ! ଚିର ଉନ୍ନତ ମମ ଶିର୍" ର ଅନୁକରଣରେ ଗୋଟାଏ ବଙ୍ଗଳା କବିତା ନିମ୍ନମତେ ରଚନା କରିଥିଲି :

ବଲ ବୀର ! ଚିର ଉନ୍ନତ ମମ ଶିର୍,
ଶିର୍ ନେହାରି ଆମାରି ନତଶିର ଓଇ ମହା ଚାଲିୟାତ୍ ବୀର ।
ଆମି ଚାଲ ଆମି ଡାଲ୍ ଆମି ଖିଚୁଡ଼ି
ମୁଖ ହତେ ମମ ଚାଲେର ଫୋୟାରା ଛୁଟିତେଛେ ଯେନ ତୁବଡ଼ୀ ।
ଆମି ଚାଲିୟାତ୍ ଚନ୍ଦର, ଆମି କମଲାକ୍ଷ କେତନ
ଆମି ଫାଷ୍ଟ ଡିଭିଜନେ ପାସ କରିୟାଛି ଦୁଟୋ ଏଗ୍‌ଜାମିନେଶନ୍
ଆମି ଭାଙ୍ଗିୟାଛି ଦୁଟୋ ରେକର୍ଡ଼
ମମ କ୍ୟାରିୟର୍ ବଡ଼ ଚେକାର୍ଡ଼ ।
ଆମି ମହାନଦୀ ତୀରେ ଯାଇତେ ଯାଇତେ ଦେଖ୍‌ନୁ ଏକଟା ବାଘ
ତା'ର ସର୍ବ ଅଙ୍ଗେ ଦାଗ,
ତାଇ ଲ୍ୟାଜ୍ ଗୁଟାଇୟା ଶମ୍ଭୁକେ ଡାକିୟା, ଛୁଟିନୁ ମଙ୍ଗଲାବାଗ୍'

ଏଇଟା ମୋର ପ୍ରଥମ କବିତା ହିସାବରେ ବିଶେଷ ମନ୍ଦ ହୋଇଥିଲା କି ?

ଚାଲିୟାତ୍‌ର ଉପରକୁ ଉପର ସ୍ତରର ଉତ୍କର୍ଷ ସୂଚେଇବା ପାଇଁ ସୁଧୀରବାବୁ, ଚୂନୀ ଓ ମୁଁ ଚାଲ ଉପରକୁ 'ଡାଲ' ଓ ତା' ଉପରକୁ 'ଖିଚୁଡ଼ି' ଶବ୍ଦର ପ୍ରୟୋଗ କରୁଥିଲୁ । ସୁଧାଂଶୁ ମୈତ୍ର ମହାଚାଲିୟାତ୍ ଥିଲା । ଆଉ ସବୁ ବି ଥିଲେ । ସେମାନଙ୍କର ପରିପ୍ରେକ୍ଷୀରେ ଏସବୁ ସାଙ୍କେତିକ ଶବ୍ଦ ବ୍ୟବହାର କରାଯାଉଥିଲା । ସୁଧୀରବାବୁ, ସୁଧୀର ଘୋଷ, ବହୁ ଘାଟରେ ପାଣି ପିଇ ଆସି କଟକ ଫେରି ସତ୍ୟାଗ୍ରହରେ ଯୋଗ ଦେଇଥା'ନ୍ତି । କଟକର ବାଙ୍କାବଜାରରେ ରହୁଥିବା ଓକିଲ ହେମବାବୁଙ୍କର ସେ ମଝିଆ ପୁଅ । ପିଲାଦିନେ ମହାଦୁଷ୍ଟ ଥିଲେ । ଖୁବ୍ ପିଟା ଖାଉଥିଲେ । ଦିନେ ଘରୁ ପଳେଇଗଲେ ଓ କେତେ କୁଆଡ଼େ ବୁଲି ବୁଲି କୁମିଲ୍ଲାର (ବର୍ତ୍ତମାନ

ବାଙ୍ଗଲାଦେଶରେ) ଅଭୟାଶ୍ରମରେ ନାନାପ୍ରକାରର ନୂଆ ନୂଆ ପ୍ରୟୋଗ ହେଉଥିଲା । ସେସବୁର ବର୍ଣ୍ଣନା ସୁଧୀରବାବୁ କରୁଥିଲେ । ସେଥିରୁ ଗୋଟିଏ ହେଲା ଯେ, ସେଠି କେହି ଗୁରୁତର ନିୟମ ଭଙ୍ଗ କଲେ ଶାସ୍ତି ଦିଆଯାଏ ଯେ, ଅନ୍ୟମାନେ ନ ଖାଉଥିବା ଭଲ ଜିନିଷ, ମିଠେଇ, ରସଗୋଲା ଆଦି ତାଙ୍କୁ ଖାଇବାକୁ ଦିଆଯିବ ।

ସେଠୁ ଯାଇ ସୁଧୀର ବାବୁ ବର୍ମାରେ ପହଞ୍ଚିଲେ ଓ ରେଙ୍ଗୁନ୍, ମାଂଦାଲେ ଆଦିରେ ନାନା ଧନ୍ଦା କରି ଅନେକ ଦିନ କଟେଇ ଓଡ଼ିଶାକୁ ପୁଣି ଆସିଲେ । ସେ ଜଣେ କରିତ୍‌କର୍ମା ଲୋକ । ଖୁବ୍ ସାହସୀ ଓ କୌଣସି କାମ ହାତକୁ ନେଲେ ନାନା ବୁଦ୍ଧି ଖଟେଇ ତାକୁ ଯେ କୌଣସି ମତେ ପୂରା କରିବେ । ଖୁବ୍ ଫୂର୍ତ୍ତିବାଜ୍ ବି । ତାଙ୍କ ସାଙ୍ଗରେ କ୍ରମେ ମୋର ଖୁବ୍ ବନ୍ଧୁତା ହୋଇଗଲା । ତାଙ୍କର ବୟସ ମୋଠୁଁ ଆଠ ବର୍ଷ ଖଣ୍ଡେ ବେଶି ହେବ । କିନ୍ତୁ ସେଥିପାଇଁ ବନ୍ଧୁତାରେ ବାଧା ସୃଷ୍ଟି ହେଉ ନଥାଏ । ସୁଧୀରବାବୁ, ସତୀଶ ଦାସ ଏମାନେ ସବୁ କଂଗ୍ରେସ ପ୍ରଚାରପତ୍ର ଛାପିବାରେ ବି ତତ୍ପର ଥା'ନ୍ତି । ସତୀଶ ଦାସ ପୂର୍ବବଙ୍ଗରୁ କେଉଁଠୁ ଆସି କଟକରେ ରହିଥାଏ ଓ ଆନ୍ଦୋଳନରେ ସହଯୋଗ କରୁଥାଏ ।

ଲବଣ ସତ୍ୟାଗ୍ରହରେ ମାଧିଆନନାଙ୍କର ଭୂମିକାର ବର୍ଣ୍ଣନା ନ କଲେ କାହାଣୀ ଅପୂର୍ଣ୍ଣ ରହିଯିବ । ସଦର ଏସ୍.ଡ଼ି.ଓ. ମାଧବ ଚନ୍ଦ୍ର ମିଶ୍ର ଓରଫ ମାଧିଆନନା ପ୍ରଚଣ୍ଡ ରାଜଭକ୍ତ । ସେଥିପାଇଁ ସେ ଆପଣାର ସରକାରୀ କର୍ତ୍ତବ୍ୟର ବହୁତ ଆଗକୁ ଯାଇ ଆନ୍ଦୋଳନର ବିରୋଧ କରୁଥା'ନ୍ତି । ମଫସଲରେ ଯାଇ ସଭା କରି ଲୋକଙ୍କୁ ଆଇନ ଅମାନ୍ୟ ରୂପୀ ପାପ ବିରୋଧରେ ବୁଝାଉଥା'ନ୍ତି । ତାଙ୍କ ପିଛା ଦିନାକେତେ ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନ୍‌ଗୋ ହେରିକା ଲାଗିଥିଲେ । ସେ ଯେଉଁଠି ସଭା କରିବେ ଏମାନେ ଛପି ଛପି ଯାଇ ସେଠି ପହଞ୍ଚି ଜୟଧ୍ୱନି ଆରମ୍ଭ କରିବେ । ଲୋକେ ତାଙ୍କ ସଭା ଛାଡ଼ି ଏଣେ ଧାଇଁବେ । ବୁଢ଼ା ଖପା ହୋଇ ଛାଟିପିଟି ହେବେ- ହେଇ ଶଳା କଂଗ୍ରେସିଆ ପୁଣି କେଉଁଠୁ ଆସିଲେଣି । କୁଜଙ୍ଗରେ ଲୁଣମରା ବେଳେ ସେଠି ପହଞ୍ଚି ସତ୍ୟାଗ୍ରହୀଙ୍କୁ ମାରଧର, ଧରପଗଡ଼ ଆଦିର ପରିଚାଳନା କରୁଥିଲେ । ତାଙ୍କର ଢଙ୍ଗ ଢାଙ୍ଗ ଦେଖି ଗାଁ ପିଲାଏ ସୁଦ୍ଧା ତାଙ୍କୁ ଦେଖିଲେ ପଛରେ ଲାଗିବା ଆରମ୍ଭ କଲେ - "ମାଧିଆ ନନା, ମାଧିଆ ନନା, ଲୁଣମରା ହେଲା ପଛକୁ ଅନା ।" କୌଣସି ରାଜତ୍ୱ ତିଷ୍ଠି ରହେ ତାହା ପ୍ରତି ଲୋକଙ୍କର ଭୟ ଭକ୍ତିର ଆଧାରରେ । ଗାନ୍ଧୀଜୀ ଛୋଟିଆ ଲୁଣ କଥାଟି ନେଇ ପ୍ରବଳ ପରାକ୍ରାନ୍ତ ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତିଷ୍ଠାକୁ ଯେପରି ଧୂଳିସାତ୍ କରିଦେଲେ, ପୃଥିବୀର ଇତିହାସରେ ସେପରି ଅନ୍ୟ କେହି କରିପାରି ନାହାନ୍ତି ଏବଂ ତାହା ସାଙ୍ଗକୁ ଏଇ ଗାଁବାଲାଙ୍କର ଟାପରା ମଧ ସାମ୍ରାଜ୍ୟର ମୂଳଦୁଆକୁ ହୁଗୁଳା କରିବାରେ କମ୍ ସାହାଯ୍ୟ କରିନାହିଁ । ମାଧିଆ ନନା ପ୍ରଚାର ପାଇଁ ଖଣ୍ଡେ ପଲସିକିଆ ଗୀତ ବହି ବି ଲେଖିଥିଲେ । ତା'ର ଆରମ୍ଭ ପଦଟି ମନେଅଛି :

ଆଇନ ଅମାନ୍ୟ ଅଟେ ମହାଦୋଷ,
ଯେ କରେ ସେ ପାପୀ ତା'ର ସର୍ବନାଶ ।
ଅଧୋଗତି ତା'ର ନିଶ୍ଚୟ ହୋଇବ,
ନରକରେ ପଡ଼ି ଯନ୍ତ୍ରଣା ଲଭିବ ।

ଯା'ର ଜବାବରେ ରାଧାନାଥବାବୁ ପଦକୁ ପଦ ମିଳେଇ ଏକ ସେହିପରି ଗୀତ ଲେଖିଲେ । ତା'ର ଆରମ୍ଭ ହେଲା :

"ଏ ଆଇନ ଗୋରା ସରକାର କଲେ,
ମନୁ ସଂହିତାକୁ ମୋଡ଼ି ଫିଙ୍ଗି ଦେଲେ
ଯେଣୁ ମାନୁ ଥିଲେ ଅସଭ୍ୟ ସ୍ୱାଧୀନ,
ଏ ଅମଳେ ହେଲେ ସଭ୍ୟ ପରାଧୀନ ।"

ଦିନେ କଟକରେ ଆମ ପଛପାଖ ହତାରେ ଗୋଟିଏ ସାଧାରଣ ସଭାରେ ବିନୋଦ କାନୁନ୍‌ଗୋ ଏ ଦୁଇଟିଯାକ ଗୀତ, ଏଥିରୁ ପଦେ ସେଥିରୁ ପଦେ ଲେଖା ପଢ଼ି, ବ୍ୟାଖ୍ୟା କରି ଶୁଣାଇଥିଲେ । ସେଦିନ ସେ ସଭାରେ ଖୁବ୍ ଗମାତ୍ ହୋଇଥିଲା । ମୁଁ ଏ ଗୀତଗୁଡ଼ିକ ଟିପି ରଖିଥିଲି । ଅନେକ ଦିନଯାଏ ଥିଲା । ଏବେ ଖୋଜି ପାଉନାହିଁ ।

ସ୍ୱରାଜ କେମିତି ହେବ, ସେ ବିଷୟରେ ଲୋକଙ୍କର ସବୁ ଅତି ଅଦ୍ଭୁତ ଧାରଣା ଥାଏ । କବି ବୀରକିଶୋରଙ୍କର ଶ୍ୱଶୁର ଧର୍ମାନନ୍ଦ ପଟ୍ଟନାୟକ ବୁଢ଼ା ବରାବର ଆସି ଚୌଧୁରୀବଜାରରେ ଥିବା ଖଦି ଭଣ୍ଡାରରେ ବସନ୍ତି । ସେ କହନ୍ତି ଯେ, ଏସବୁ ସତ୍ୟାଗ୍ରହ ପତ୍ୟାଗ୍ରହ ଦ୍ୱାରା କିଛି ହେବ ନାହିଁ । ଆମ ଦେଶରେ ସବୁ ଗୁଣି ବିଦ୍ୟା ଅଛି । ଘରେ ବସି ଗୁଣି କରିଦେଲେ ତେଣେ ବଡ଼ଲାଟ ହେରିକାଙ୍କ ଠେଇଁ ଚଉକି ଲାଗିଯିବ, ଆଉ ଉଠିପାରିବେ ନାହିଁ । ସ୍ୱରାଜ କାଗଜରେ ଦସ୍ତଖତ କରିବ ତ କର, ନ ହେଲେ ସେମିତି ଅଟକି ରହିଥାଅ । ଏଇ ସବୁ ବିଦ୍ୟାର ସାଧନ କରିବା ଦରକାର । ଏତେ ଦଉଡ଼ ଧାପଡ଼ରେ କ'ଣ ହେବ ?

୧୯୩୦ ରେ ତେଣେ ବଙ୍ଗଳାରେ ସନ୍ତ୍ରାସବାଦୀ ଆନ୍ଦୋଳନ ବି ଖୁବ୍ ପ୍ରବଳ ଭାବରେ ତେଜିଲା । ଚଟ୍ଟଗ୍ରାମ ଅସ୍ତାଗାର ଲୁଣ୍ଠନ କରାହେଲା । ମେଦିନୀପୁରରେ ତିନିଜଣ ଜିଲ୍ଲା କଲେକ୍‌ଟରଙ୍କୁ ହତ୍ୟା କରାହେଲା । ରାଇଟର୍ସ ବିଲ୍‌ଡ଼ିଂରେ ପଶି ବିନୟ, ବାଦଲ ଓ ଦିନେଶ ପୁଲିସ ଆଇ.ଜି.ଙ୍କ ଉପରେ ଗୁଳି ଚଳେଇଲେ । ବୀଣା ଦାସ, ବଙ୍ଗଳାର ଲାଟଙ୍କ ଉପରେ ଗୁଳି ଚଳେଇଲେ (ବାପାଙ୍କଠାରୁ ଶୁଣିଛି ଯେ, ବୀଣା ଦାସଙ୍କର ବାପା ବେଣୀମାଧବ ଦାସ ବାପା ହେରିକା ସ୍କୁଲରେ ପଢ଼ିବାବେଳେ କଟକରେ କଲେଜିଏଟ୍ ବାଅନ୍ୟ ଆଉ କୋଉ ସ୍କୁଲର ହେଡ୍‌ମାଷ୍ଟର ଥିଲେ ।) ଓ ଏହିପରି ଆହୁରି ସବୁ ଖବର ସେତେବେଳେ ଚମକ ସୃଷ୍ଟି କରୁଥାଏ । ଏସବୁ ଶୁଣି ମୁଁ ଉଦ୍ଦୀପନା ଅନୁଭବ କରୁଥାଏ । ଦେଶପ୍ରେମୀଙ୍କର ସାହସ ଓ ଆତ୍ମତ୍ୟାଗ ଚିତ୍ତକୁ ଆଚ୍ଛନ୍ନ କରି ଦେଉଥାଏ । ଏହା ଶୁଣି ଆନନ୍ଦ ବି ଯେ ନ ହେଉଥାଏ ତାହା ନୁହେଁ । ଏହି

ସମୟରେ ହିଂସାବାଦୀ ଆନ୍ଦୋଳନ ସମ୍ବନ୍ଧରେ କିଛି ସାହିତ୍ୟ ହାତରେ ପଡ଼ିଥିଲା । ମାତ୍ର ସେ ବାଟ ପ୍ରତି ଖୁବ୍ ସାମାନ୍ୟ ଆକର୍ଷଣ ଅନୁଭବ କରିଛି । ସେ ପନ୍ଥାରୁ ଦୂରେଇ ରହିବାର ମନୋଭାବରେ ହୁଏତ ଭୟର ପୁଟ ଥିବ । ସେଥିରେ ଯେଉଁ ପ୍ରକାରର ଚରମ ଆତ୍ମତ୍ୟାଗ ଲୋଡ଼ା ସେଥିପାଇଁ ମନ ପ୍ରସ୍ତୁତ ନ ଥିବ । ମାତ୍ର ଅନ୍ୟ ଦିଗରେ ଗାନ୍ଧୀଜୀଙ୍କର ପ୍ରଦର୍ଶିତ ଅହିଂସାର ବାଟରେ ହିଂସାର ବାଟ ଅପେକ୍ଷା କିଛି ଊଣା ଆତ୍ମତ୍ୟାଗ ଲୋଡ଼ା ହୁଏ ନାହିଁ । ନୈତିକ ସାହସ ଲୋଡ଼ା ହୁଏ ଏଠାରେ ଅଧିକ । ମାତ୍ର ଅହିଂସା ଦ୍ୱାରା ଅଳ୍ପ ତ୍ୟାଗରେ ଓ ଅଳ୍ପ ଚେଷ୍ଟାରେ କାମ ହୋଇଯିବ ବୋଲି ଗୋଟାଏ ବିଭ୍ରମ ଉପୁଜେ । 'ଶାନ୍ତିପୂର୍ଣ୍ଣ' ର ଗତାନୁଗତିକ ଅର୍ଥ ହେଲା ଯେଉଁଥିରେ ଖୁବ୍ ବେଶି ହାତଗୋଡ଼ ହଲେଇବାକୁ ନ ପଡ଼ିବ । ଏହାର ପରିଣାମ ଆମେ ଭୋଗୁଛୁ । ଏହି ବିଭ୍ରମ ଯୋଗୁ କଂଗ୍ରେସର ନେତାମାନେ ଗାନ୍ଧୀଜୀଙ୍କର ଅହିଂସା ସାଙ୍ଗରେ ଶସ୍ତା ରାଜନୀତିକ ଚାଲବାଜୀକୁ ଗୋଳିଆ କରିଦେଲେ । ସେମାନେ ବିଚାରିଲେ ଯେ ଗାନ୍ଧୀ ପ୍ରବର୍ତ୍ତିତ ଅହିଂସା ଶେଷୋକ୍ତିଟିର ହିଁ ଗୋଟିଏ ପ୍ରକାର ।

ସେତେବେଳେ ଅବଶ୍ୟ ଏତେ ସୂକ୍ଷ୍ମ ବିଚାର ଆସି ନ ଥିଲା । କେବଳ ହିଂସାର ବାଟଟା କେମିତି ଗୋଟାଏ ଅନ୍ଧାରୁଆ ଜଣାପଡୁଥିଲା । ତାହା ସହିତ ଜଡ଼ିତ ଥିବା ଉତ୍କଟ ଦ୍ୱେଷ ଭାବଟା ଆଦୌ ମୋର ମାନସିକ୍ ରଚନା ସହିତ ଖାପ ଖାଉ ନ ଥିଲା । ବ୍ୟାବହାରିକ ଦୃଷ୍ଟିକୋଣରୁ ଗୋଟାଏ କଥା ମୁଁ ସେତେବେଳେ ଅନୁଭବ କରୁଥିଲି ବୋଲି ମୋର ଧାରଣା । ଏଇଟା ପ୍ରକୃତରେ ତିନି ଚାରି ବର୍ଷ ପରର ବିଚାର ବି ହୋଇପାରେ । ମୁଁ ଅନୁଭବ କରୁଥିଲି ଯେ ସନ୍ତ୍ରାସବାଦୀମାନେ ନିଜେ ବୀରତ୍ୱ ଓ ନିର୍ଭୟତାର ପରାକାଷ୍ଠା ଦେଖେଇଲେ ବି କ'ଣ ହେବ ସାଧାରଣ ଲୋକଙ୍କର ଭୀରୁତାକୁ ଭାଙ୍ଗିବାରେ ସେମାନଙ୍କର ସାହାଯ୍ୟ କରେ ନାହିଁ । ବରଂ ତାହା ବଢ଼େଇବାରେ ସାହାଯ୍ୟ କରେ । ସନ୍ତ୍ରାସବାଦ ବିରୋଧରେ ସରକାର ଯେଉଁ ଦମନଲୀଳା ଚଳାଉଛନ୍ତି, ତାହା ସାଧାରଣ ଲୋକଙ୍କୁ ଅଧିକ ଭୀରୁ କରିଦେଉଛି । ସାଧାରଣ ଜନତାର ମେରୁଦଣ୍ଡ ଟାଣ କରିବାର କୌଣସି ଶିକ୍ଷା ସନ୍ତ୍ରାସବାଦରେ ନାହିଁ । ପକ୍ଷାନ୍ତରେ ଗାନ୍ଧୀଜୀଙ୍କର ପନ୍ଥା ସାଧାରଣ ଲୋକଙ୍କୁ ଅଣ୍ଟା ସଳଖି, ମୁଣ୍ଡ ଟେକି ଛିଡ଼ା ହେବାକୁ, ଦମନତନ୍ତ୍ରକୁ ଅବଜ୍ଞା କରିବାକୁ ଶିଖାଉଛି ।

ସେତେବେଳେ ସାମ୍ୟବାଦ, ଶ୍ରେଣୀ ସଂଘର୍ଷ ଆଦି କଥା ବି ଉଠୁଥାଏ । ମାର୍କସବାଦୀ ଦୃଷ୍ଟିକୋଣରୁ ଗାନ୍ଧୀଜୀଙ୍କର ସମାଲୋଚନା କରାଯାଉଥାଏ । ରବୀନ୍ଦ୍ର ସାହିତ୍ୟରେ ଶ୍ରେଣୀ ମନୋଭାବର ଛାପ ଖୋଜି ବାହାର କରାଯାଉଥାଏ । ସେ ସମୟରେ ମାର୍କସ୍‌ବାଦ ବିଷୟରେ ବ୍ୟବସ୍ଥିତ ଭାବରେ ପଢ଼ାପଢ଼ି କରିବାର ସୁଯୋଗ ତ ନ ଥିଲା । କେବଳ ସେ ବିଷୟରେ ପତ୍ରପତ୍ରିକାମାନଙ୍କରେ ଯାହା ପ୍ରବନ୍ଧ ଆଦି ଆଖିରେ ପଡୁଥିଲା । ଗାନ୍ଧୀଜୀଙ୍କ ଉପରେ ତୀବ୍ର ଆକ୍ଷେପ ସହ୍ୟ ହେଉ ନ ଥାଏ । ସେଥିପାଇଁ ମାର୍କସ୍‌ବାଦୀ ବିଚାର ପ୍ରତି ଆକର୍ଷଣ ନ ଥିଲା । ତେବେ ଯୁକ୍ତିତର୍କ ଓ ଆଲୋଚନାରୁ ଯେତିକି ବୁଝିଥିଲି ତାହା ଉପରେ ସେ ସମୟରେ ଡାଏରୀରେ ଗୋଟିଏ ମନ୍ତବ୍ୟ ଟିପିଥିଲି । ତାର ସାରମର୍ମ ଏୟା ଯେ, ଶ୍ରେଣୀସ୍ୱାର୍ଥ ମଣିଷର ସତ୍ୟ ସନ୍ଧାନୀ

ଦୃଷ୍ଟି ଉପରେ ଗୋଟାଏ ପର୍ଦ୍ଦା ଭଳି ତାକୁ ଆଚ୍ଛନ୍ନ କରିପାରେ, ମାତ୍ର ଶ୍ରେଣୀସ୍ୱାର୍ଥ ହିଁ ବ୍ୟକ୍ତିର ସମସ୍ତ ଚିନ୍ତାଧାରା ଓ ମନୋଭାବକୁ ଜନ୍ମଦିଏ ବୋଲି ବିଚାରିବା ଭୁଲ । ଏବେ ବି ଦେଖୁଛି ଯେ, ଏ ବିଷୟରେ ମୋର ମତ ମୋଟାମୋଟି ସେୟା ଅଛି ।

ଆମ ଘରେ କେଉଁଠୁ କିଏ ଗୋଟାଏ ଜେଲ କୋଡ୍ ଆଣି ପକେଇ ଥାଏ । ଦିନେ ମୁଁ ତାକୁ ଅଳସ ଭାବରେ ଓଲଟାଉ ଓଲଟାଉ ଫାଶୀ ବିଷୟରେ ଥିବା ଅଧ୍ୟାୟଟି ଆଖିରେ ପଡ଼ିଲା । ତାକୁ ପଢୁ ପଢୁ ଗୋଟାଏ ତୀବ୍ର ଜୁଗୁପ୍‌ସା ସାଙ୍ଗେ ସାଙ୍ଗେ ଏକ ଅଦ୍ଭୁତ ଭୟାବହ ସମ୍ମୋହିନୀ ଆକର୍ଷଣ ମୋତେ ଘୋଟିଗଲା । ଗୋଟାଏ ମଣିଷକୁ କିପରି ମାରିବାକୁ ହେବ ତା'ର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ବୈଜ୍ଞାନିକ ନିର୍ଭୁଲତା ସହିତ ଏକାବେଳକେ ଥଣ୍ଡା ମିଜାସରେ ସେଥିରେ ଯାହା ବିବୃତ ହୋଇଥିଲା, ତାହା ଅତି ବୀଭତ୍ସ ବୋଧ ହେଲା । କି ପ୍ରକାରର ଚରମ ପାଶବିକତାକୁ ମଣିଷ ତା'ର ଆଇନ୍‌କାନୁନ୍ ଓ ସମାଜର ସଂସ୍ଥା ଭିତରେ ସ୍ୱାଭାବିକ ବୋଲି ଗ୍ରହଣ କରିଛି ! ପୁଣି ମନରେ ଆସିଲା ଯେ, ସନ୍ତ୍ରାସବାଦୀମାନେ ତ ଏହାରି ସମ୍ମୁଖୀନ ହେଉଛନ୍ତି ଛାତି ଫୁଲେଇ । ଏଇଟାର ସାମନା ନ କରିବାଯାଏ ମଣିଷ ନିଜର ପ୍ରକୃତ ପରିଚୟ ଦେଇ ନ ପାରେ । ଏଠି କଥା ଯେଉଁ ଭାଷାରେ ବ୍ୟକ୍ତ କଲି, ସେତେବେଳେ ଚିନ୍ତାକୁ ସେହି ଭାଷାରେ ତାକୁ ରୂପ ଦେଇଥିଲି ବୋଲି କହିପାରିବି ନାହିଁ, କିନ୍ତୁ ମନର ଭାବଟା ଉପରୋକ୍ତ ପ୍ରକାରର ଥିଲା । ପରେ ଚିନ୍ତା କରି ଦେଖିଛି ଯେ ସାପର ଆଖିର ଆକର୍ଷଣରେ ବେଙ୍ଗ ଯେପରି ପାଦ ପାଦ କରି ତା' ଆଡ଼କୁ ନିର୍ଘାତ ମୃତ୍ୟୁମୁଖକୁ ଆଗେଇଯାଏ, ସେମିତି ମଣିଷ ବି କେତେକ ସମୟରେ ମୃତ୍ୟୁର ସମ୍ମୋହିନୀ ଆକର୍ଷଣରେ ଏପରି ପିଛା ଧରେ ଯାହା ବାସ୍ତବିକତା ଦୃଷ୍ଟିରୁ ଅପ୍ରାସଙ୍ଗିକ ଓ ନିରର୍ଥକ ।

## ଗାନ୍ଧୀ-ଆରଓ୍ୱିନ୍ ଚୁକ୍ତି

୧୯୩୧ ମାର୍ଚ୍ଚରେ ଗାନ୍ଧୀ-ଆରଓ୍ୱିନ୍ ଚୁକ୍ତି ହେଲା । ସେ ଅନୁସାରେ ଆନ୍ଦୋଳନ ପ୍ରତ୍ୟାହୃତ ହେଲା ଓ ହିଂସାକାଣ୍ଡ ସହିତ ଜଡ଼ିତ ନ ଥିବା ସମସ୍ତ ରାଜବନ୍ଦୀ ମୁକ୍ତ ହେବେ ବୋଲି ସ୍ଥିର ହେଲା । ସମୁଦ୍ର କୂଳରେ ଲୋକେ ଲୁଣ ତିଆରି କରି ନିଜେ ବ୍ୟବହାର କରିବା ଓ ମୁଣ୍ଡ ବୋଝରେ ବିକି ପାରିବାର ଅଧିକାର ପାଇଲେ ।

ବିଲାତି ଲୁଗା ତଥା ଅବକାରୀ ଦୋକାନମାନଙ୍କରେ ଶାନ୍ତିପୂର୍ଣ୍ଣ ପିକେଟିଂ ଅବାଧରେ ଚାଲିବ ବୋଲି ସ୍ୱୀକୃତ ହେଲା । କଂଗ୍ରେସ ଗୋଲ ଟେବୁଲ ବୈଠକରେ ଯୋଗଦେଇ ଭାରତର ଭବିଷ୍ୟତ ସମ୍ବିଧାନ ଗଢ଼ାରେ ସହଯୋଗ କରିବା ମଧ୍ୟ ସ୍ଥିର ହେଲା । ତୁରନ୍ତ ପୂରଣ ହେବା ଦାବି ବା ଅଧିକାରଗୁଡ଼ିକ ଦେଖିବାକୁ ଛୋଟ । କିନ୍ତୁ ଲୋକେ ନିଜେ ଲଢ଼ିକରି ଆଣିଲେ । ଏଇ ଅନୁଭୂତିଟା ହିଁ ଅସଲ କଥା ଏବଂ ଜନତାର ପ୍ରତିନିଧି 'ଲଙ୍ଗଳା ଫକୀର' ମଧ୍ୟ ବ୍ରିଟିଶ୍ ସାମ୍ରାଜ୍ୟର ପ୍ରତିନିଧି ସାଙ୍ଗରେ ସମାନ ସମାନରେ କଥାବାର୍ତ୍ତା କରିବାର ଦୃଶ୍ୟ ମଧ୍ୟ କମ୍ ସ୍ଫୂର୍ତ୍ତିଦାୟକ ନ

ଥିଲା । ସାରା ଦେଶରେ ଗୋଟାଏ ଉତ୍ସାହ ଉଦ୍ଦୀପନାର ଲହରୀ ଖେଳିଗଲା । ଗାନ୍ଧୀ-ଆରଉଇନ୍ ଚୁକ୍ତି ଘୋଷଣା ହେବାର ପରଦିନଠାରୁ କଟକର ଅବକାରୀ ଦୋକାନମାନଙ୍କରେ ସତ୍ୟାଗ୍ରହୀମାନେ ସଦଳବଳେ ଛାତିଫୁଲେଇ ପିକେଟିଂ କରିବାକୁ ଛିଡ଼ା ହୋଇଗଲେ । ବନ୍ଦୀମାନେ ସବୁ ତୁହାକୁତୁହା ଖଲାସ ହେଲେ । ହଜାରୀବାଗ ଜେଲରୁ ଖଲାସ ହୋଇ ଯେଉଁଦିନ ବାପା, ରାଜୁଦା, ମଙ୍ଗରାଜ, ଶିବଚାନ୍ଦ ରାୟ, ରାମପ୍ରସାଦ ସିଂହ ଓଗେର କଟକରେ ଆସି ପହଞ୍ଚିଲେ ସେ ଦିନର ଦୃଶ୍ୟ କଟକ ସହରର ଇତିହାସରେ ଅଭୂତପୂର୍ବ ଥିଲା । ସେମାନେ ଦିନ ପାସେଞ୍ଜରରେ ବାଲେଶ୍ୱରରୁ ଆସି ପହଞ୍ଚିଲେ । ପୂର୍ବରୁ ବାଲେଶ୍ୱରରେ ଅନ୍ୟ ଗାଡ଼ିରେ ପହଞ୍ଚିଥିଲେ ।

କଟକ ଷ୍ଟେସନରେ ଓ ବାହାରେ ଏପରି ଭିଡ଼ ଯେ ସେଥିରେ ଥାଳି ଚାଲିଯିବ । ସେମାନେ କଲେଜଛକ, ମଙ୍ଗଳାବାଗ, ରାଣୀହାଟ, ବକ୍ସି ବଜାର, ଚୌଧୁରୀ ବଜାର ଆଦି ବଡ଼ରାସ୍ତା ଦେଇ ସ୍ୱରାଜ ଆଶ୍ରମ ଯାଏ ଚାଲିଚାଲି ଶୋଭାଯାତ୍ରାରେ ଆସିଲେ । ବାଟରେ ସାରା କଟକ ସହର ଭାଙ୍ଗିପଡୁଥାଏ । ରାସ୍ତା କଡ଼ର ସବୁ କୋଠା ଉପରେ ପ୍ରବଳ ଭିଡ଼ । ସ୍ତ୍ରୀଲୋକମାନେ ହୁଳହୁଳି ଦେଉଥା'ନ୍ତି । ଛାତ ଉପରୁ ପୁଷ୍ପବୃଷ୍ଟି କରୁଥା'ନ୍ତି । ବାଟରେ ଠା'କୁ ଠା' ସାହି ଲୋକ ଥଣ୍ଡା ପାଣି ଓ ସରବତ୍ ଶୋଭାଯାତ୍ରାର ଜନତାକୁ ପିଆଇବା ପାଇଁ ହଣ୍ଡା ଓ ଘଡ଼ାରେ ଥୋଇଥାନ୍ତି । ଗୋଲାପ ପାଣି ଓ ଅତର ଛିଞ୍ଚା ହେଉଥାଏ । ଫୁଲମାଳରେ ନେତାମାନଙ୍କର ମୁହଁ ଦିଶୁ ନ ଥାଏ । ଏହିପରି ଏକ ଅଦ୍ଭୁତ ଉତ୍ସାହ ଓ ଉଦ୍ଦୀପନା ସାରା ଦେଶରେ ଖେଳି ଯାଇଥିଲା । ସେଦିନ ସନ୍ଧ୍ୟାରେ ନଈବାଲିରେ ସାଧାରଣ ସଭା ବି ସେମିତି ଅଭୂତପୂର୍ବ ଥିଲା ।

ଖୁଡ଼ୀ ଓ ବୋଉ ଭାଗଲପୁର ଜେଲ୍‌ରୁ ଖଲାସ ହେବାର କଥା । ସେମାନଙ୍କୁ ଆଣିବାକୁ ମୁଁ ସେଠିକି ଗଲି । ଏଇ ବୋଧହୁଏ ମୋର ପ୍ରଥମ ଏକୁଟିଆ ଦୀର୍ଘ ରେଳଯାତ୍ରା । ସେଠି ବଡ଼ ମାମୁଁଙ୍କାନ୍, ଖୁଡ଼ୀଙ୍କର ବଡ଼ଭାଇ ପ୍ରମୋଦ କୁମାର ସେନ୍‌ଗୁପ୍ତ, ଇନ୍‌କମ୍ ଟ୍ୟାକ୍ସ ଅଫିସର ଥାଆନ୍ତି । ଖୁଡ଼ୀଙ୍କର ମା' ବି ସେଇଠି ଥାଆନ୍ତି । ସେଠି ପହଞ୍ଚି ମୁଁ ତାଙ୍କରି ଘରେ ରହିଲି । ବୋଉ ହେରିକାଙ୍କର ମୁକ୍ତିର ଆଦେଶ ବୋଧହୁଏ ଦୁଇଦିନ ପରେ ପହଞ୍ଚିଲା । ବୁବୁ ତ ତାଙ୍କରି ସାଙ୍ଗରେ ଥାଏ । ଏମାନଙ୍କ ସାଙ୍ଗରେ ବିହାରର ମହିଳା ବନ୍ଦୀମାନେ ବି ଖଲାସ ହେଲେ । ସେ ସମସ୍ତଙ୍କୁ ନେଇ ସେଠି ଏକ ବିଶାଳ ମହିଳା ଶୋଭାଯାତ୍ରା ବାହାରିଲା । ତେବେ ସେଠାରେ ଉତ୍ସାହ ଓ ଉଦ୍ଦୀପନା କଟକଠାରୁ କଣା ବୋଧ ହେଲା ।

ଏହାର ଅଳ୍ପଦିନ ପରେ କରାଚୀରେ କଂଗ୍ରେସର ଅଧିବେଶନ ବସିଲା । ଆମେ ସବୁ ବାପା, ବୋଉ, ଚୁନୀ ମୁଁ, ଦାଦା, ଖୁଡ଼ୀ ଓ ମା' ସମସ୍ତେ ସେଠିକି ଚାଲିଲୁ । ପଣ୍ଡିତ ପଡ଼ିହାରୀ ହେରିକା ଅନ୍ୟ ବହୁତ କର୍ମୀ ମଧ୍ୟ ଚାଲିଲେ । ହାଓଡାରୁ ତୋଫାନ ଏକ୍ସପ୍ରେସ୍ ଧରି ଦିଲ୍ଲୀ ଗଲୁ । ରେଳରେ ଏତେ ବାଟ ଆସିବା ଏଇ ପ୍ରଥମ, ପୁଣି ବାଟଯାକ ଭାରତବର୍ଷର ବିଖ୍ୟାତ ସହର, ବଡ଼ ବଡ଼ ରେଲ୍ ଜଙ୍କ୍‌ସନ । ଏସବୁ ଦେଖିବାର ତୀବ୍ର ଉତ୍ତେଜନାରେ ରାତିଯାକ ନିଦ ନ ଥାଏ । ପୁଣି ତୋଫାନ ଏକ୍ସପ୍ରେସ୍‌ର ବେଗ ! ତା' ପାଖରେ ପୁରୀ ଏକ୍ସପ୍ରେସ୍, ମାନ୍ଦ୍ରାଜ

ମେଲ କୋଉ ପାସଙ୍ଗରେ ପଡ଼ିବେ । ଦିଲ୍ଲୀରେ ପହଞ୍ଚି ଭୁବନାନନ୍ଦବାବୁଙ୍କର ଆତିଥ୍ୟ ଗ୍ରହଣ କଲୁ । ପୁଣି ସେହି ରାତିରେ ଗାଡ଼ି ଧରି ରାଇଓ୍ୱିଣ୍ଡ ଜଙ୍କ୍‌ସନ ଓ ସେଠୁ କରାଚୀ ମେଲ । ଦାଦା, ଖୁଡ଼ୀ ଓ ଆଉ କେତେକ ମଝିରୁ ଭାଙ୍ଗିଯାଇ ସାମସାଟା ଭାଟିଣ୍ଡା ବାଟେ ଗଲେ ।

ସେହି ସମୟରେ ସର୍ଦ୍ଦାର ଭଗତ ସିଂହ, ଶୁକଦେବ ଓ ରାଜଗୁରୁଙ୍କର ମୃତ୍ୟୁଦଣ୍ଡ କାର୍ଯ୍ୟକାରୀ ହୋଇସାରିଥାଏ । ଏହା ବନ୍ଦ କରିବା ପାଇଁ ଗାନ୍ଧୀଜୀଙ୍କର ଉଦ୍ୟମ ବିଫଳ ହୋଇଥାଏ । ସେମାନଙ୍କର ଶବକୁ ଆତ୍ମୀୟମାନଙ୍କର ଜିମା ନ ଦେଇ ରାବୀ ନଦୀ କୂଳରେ ଗୁପ୍ତରେ ପେଟ୍ରୋଲ ଢାଳି ଜାଳି ଦିଆଯାଇଥାଏ । ସେଥିପାଇଁ ସାରା ଦେଶରେ ଓ ବିଶେଷକରି ପଞ୍ଜାବରେ ପ୍ରଚଣ୍ଡ କ୍ଷୋଭ ଓ ଉତ୍ତେଜନା ଦେଖାଦେଇଥାଏ । ଗାନ୍ଧୀ-ଆରଓ୍ୱିନ୍ ଚୁକ୍ତି ବାତିଲ କରିଦେବା ପାଇଁ ଦାବି ହେଉଥାଏ । ଆମେ ସକାଳୁ ଯେଉଁ କରାଚୀ ମେଲ୍‌ରେ ଚଢ଼ିଲୁ ସେଥିରେ ସୁଭାଷବାବୁ ବି ଯାଉଥା'ନ୍ତି । ତାଙ୍କୁ ସ୍ୱାଗତ କରିବା ପାଇଁ ପ୍ରତି ଷ୍ଟେସନ୍‌ରେ ପ୍ରଚଣ୍ଡ ଭିଡ଼ ହେଉଥାଏ ଓ ଗାନ୍ଧୀ-ଆରଓ୍ୱିନ୍ ଚୁକ୍ତି ବିରୋଧରେ ଧ୍ୱନି ଦିଆହେଉଥାଏ । ସେହି ଗାଡ଼ିରେ ସୀମାନ୍ତ ପ୍ରଦେଶର ଖୁଦାଇ ଖିଦ୍‌ମତ୍‌ଗାର ବା ଲାଲ କୁର୍ତ୍ତା ଦଳ ବି ବହୁତ ସଂଖ୍ୟାରେ ଯାଉଥାନ୍ତି । ସେମାନଙ୍କର ଅପୂର୍ବ ବୀରତ୍ୱ ତ ସାରା ଭାରତକୁ ସମ୍ମୋହିତ କରିଦେଇଥାଏ । ସେମାନେ ପ୍ରତି ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲେଇ ବ୍ୟାଣ୍ଡ ବଜେଇ ଉଦ୍ଦୀପନା ସୃଷ୍ଟି କରୁଥାନ୍ତି । ଗାଡ଼ିରେ ପ୍ରଚଣ୍ଡ ଭିଡ଼ । ଆମେ ସବୁ ଇଣ୍ଟର କ୍ଲାସରେ କୌଣସିମତେ ଠେଲିପେଲି ପଶିଥିଲୁ । କରାଚୀରେ ଓହ୍ଲେଇ ପଣ୍ଡିତ ପଢ଼ିହାରୀଙ୍କୁ କହିବାର ଶୁଣିଲୁ । "ଗୋପବାବୁ ତ ସବୁବେଳେ ଯାହା କହନ୍ତି, କିନ୍ତୁ ଟି.ଟି. ଆଇଙ୍କୁ ତ ଆଠଟଙ୍କା ଦେଲେ ।"

ଗାନ୍ଧୀଜୀଙ୍କର ପରାମର୍ଶ ଅନୁସାରେ ଏଥର କଂଗ୍ରେସ ଖୋଲାରେ ହୋଇଥିଲା । ପୂର୍ବପୁରୁଷମାନଙ୍କ ପରି ମୁଣ୍ଡ ଉପରେ ମଣ୍ଡପ ନ ଥିଲା । ଆଉ ଭିଡ଼ ମଧ୍ୟ ସେମିତି ବହୁତ ବେଶି ହୋଇଥିଲା । ଖରା ଏଡ଼େଇବା ପାଇଁ ଅଧିବେଶନ ଉପରଓଳି ଚାରିଟା ପରେ ଆରମ୍ଭ ହେଉଥାଏ ଓ ରାତି ନଅ ଦଶ ଯାଏ ଚାଲୁଥାଏ । ମୁଁ ଏଥିରେ ପ୍ରେସ୍ ପ୍ରତିନିଧି ଭାବରେ ଯୋଗ ଦେଇଥିଲି-ଯେତେଦୂର ମନେପଡ଼େ 'ପ୍ରଜାତନ୍ତ୍ର'ର ପ୍ରତିନିଧି ଭାବରେ । ଏଠି ଗାନ୍ଧୀ-ଆରଓ୍ୱିନ ଚୁକ୍ତି ମଞ୍ଜୁର କରାଗଲା ଓ ଦେଶର ଭବିଷ୍ୟତ ଅର୍ଥରଚନା ବିଷୟରେ ନେହେରୁଙ୍କ ଦ୍ୱାରା ଚିଠା ହୋଇଥିବା ଚଉଦ ଦଫା ଘୋଷଣା ଗୃହୀତ ହେଲା । ଏ କଂଗ୍ରେସରେ ପ୍ରତିନିଧିମାନଙ୍କ ଭିତରେ ପ୍ରବଳ ଉତ୍ସାହ ଥାଏ । ପ୍ରତିଦିନ ଭୋର୍‌ରେ ବିଭିନ୍ନ ପ୍ରଦେଶର ପ୍ରତିନିଧିମାନେ ପ୍ରଭାତଫେରୀ କରି ପ୍ରତିନିଧି ଶିବିର ପରିକ୍ରମା କରୁଥା'ନ୍ତି । ଏଠି ଝିଅମାନେ ବହୁତ ସଂଖ୍ୟାରେ ସ୍ୱେଚ୍ଛାସେବିକା ହୋଇଥା'ନ୍ତି । ସେମାନଙ୍କର ସାଲ୍‌ୱାର କମୀଜ୍ ପୋଷାକ ଓ ମୁକ୍ତ ସପ୍ରତିଭ ଚାଲିଚଳଣ ଆଖିକୁ ଭଲ ଲାଗୁଥାଏ ।

କରାଚୀରେ ଆମେସବୁ ସହର ବୁଲାବୁଲି କରି ଦେଖିଲୁ । ଦିନେ ମା'କୁ ଆମଯୋଗୁଁ ଖୁବ୍ ହନ୍ତସନ୍ତ ହେବାକୁ ହେଲା । ଗୌର ଦାସ, ମୁଁ ଓ ଆଉ କିଏ ସବୁ କରାଚୀ ବନ୍ଦର

ଦେଖୁଗଲୁ । ସାଙ୍ଗରେ ମା' ଗଲା । ବାରଟା ଗୋଟାଏ ବେଳେ ଖରାରେ ବନ୍ଦରର ପୀଚ୍ ଓ ସିମେଣ୍ଟ ରାସ୍ତା ତାତିଯାଇଥାଏ । ସେଥିରେ ଆମର ବୁଲିବାରେ ତ କିଛି ବାଧା ହେଉ ନ ଥାଏ । କିନ୍ତୁ ମା'ର ଖାଲି ଗୋଡ଼ । ସେ ବିଚାରି ଛଟଛଟ ହୋଇ ଆମ ପିଛା ଧରିଥାଏ । ସେଠୁ ଫେରିବାବେଳେ ଦାଦା ଖୁଡ଼ୀ ହେରିକା ସମସ୍ତେ ସାଙ୍ଗ ହୋଇ ଫେରିଲୁ । ଫେରିବାବେଳେ ଗାଡ଼ିରେ ଭିଡ଼ ଯିବାବେଳେ ପରି ଏତେ ଭୀଷଣ ନ ଥିଲା । ବାଟରେ ଗାଡ଼ିରେ ଅନ୍ୟସବୁ ଫେରନ୍ତା ପ୍ରତିନିଧି ଓ ଯାତ୍ରୀଙ୍କ ମେଳରେ ଜାତୀୟ ସଙ୍ଗୀତ ଖୁବ୍ ଉତ୍ସାହର ସହିତ ବୋଲା ହେଉଥାଏ ଓ ଅନ୍ୟସବୁ ପ୍ରଦେଶର ଲୋକେ ଖୁଡ଼ୀଙ୍କ କଣ୍ଠରେ ଓଡ଼ିଆ ଗୀତ ଖୁବ୍ ପସନ୍ଦ କରୁଥା'ନ୍ତି ।

ଦିଲ୍ଲୀରେ ଆମେ ଡାକ୍ତର କୁନ୍ତଳାକୁମାରୀ ସାବତଙ୍କ ଘରେ ଦୁଇଦିନ ଖଣ୍ଡେ ରହି ଦିଲ୍ଲୀର ସବୁ ଦର୍ଶନୀୟ ସ୍ଥାନ, ଲାଲକିଲ୍ଲା ଆଦି ଦେଖିଲୁ । ମୋଗଲ ବାଦ୍‌ଶାହମାନଙ୍କର ରହିବା ଘର ସବୁ ଦେଖି ବାଦ୍‌ଶାହଙ୍କ ଆରାମ ବିଷୟରେ ଲୋକଙ୍କର ଯେଉଁପରି କଳ୍ପନା ଥାଏ ସେପରି ଆରାମ ମୋଗଲ ବାଦ୍‌ଶାହା ବଂଶ ସେସବୁ ଘରୁ କେମିତି ପାଉଥିବେ ସେ ବିଷୟରେ ସନ୍ଦେହ ଜନ୍ମିଲା । ଦିଲ୍ଲୀ ଆଗ୍ରା ଗଲୁ ତାଜମହଲ ଦେଖିବା ପାଇଁ । ଗୋଟିଏ ପାର୍ସେଲ ପାସେଞ୍ଜରରେ ଗଲୁ ସେ ସେଟା ସନ୍ଧ୍ୟା ରାତିରେ ଦିଲ୍ଲୀରୁ ବାହାରି ଦିନ ଘଡ଼ିଏ  ବଜେଇ ଦେଲା ବିଶାଶହେ ମାଇଲ ବାଟ ଯାଇ ଆଗ୍ରା ପହଞ୍ଚିବାକୁ । ଆଗ୍ରାରେ ଅନେକଗୁଡ଼ିଏ ଷ୍ଟେସନ୍ : ଆଗ୍ରା ସିଟି, ଆଗ୍ରା ଫୋର୍ଟ, ଆଗ୍ରା କ୍ୟାଣ୍ଟନ୍‌ମେଣ୍ଟ୍ ଯମୁନା ବ୍ରିଜ୍, ରାଜା କୀମଣ୍ଡୀ.... । ଗୋଟିଏ ଷ୍ଟେସନ୍‌ରେ ଦାଦା ଖୁଡ଼ୀ ସୋରେଇ କିଣିବା ପାଇଁ ଓହ୍ଲେଇଲେ । ଆରାମ୍ ସେ ସୋରେଇବାଲା ସାଙ୍ଗରେ ଦରଦସ୍ତୁର କରୁଛନ୍ତି ଏଣେ ଗାଡ଼ି ଛାଡ଼ିଦେଲା । ବାପା ତ ମହା ବିରକ୍ତ । ସମସ୍ତେ ଖୁବ୍ ବ୍ୟସ୍ତ । ମାତ୍ର ଯେଉଁଠି ଓହ୍ଲେଇବାର କଥା ସେ ଷ୍ଟେସନରେ ପହଞ୍ଚି ଦେଖୁଁ ତ ସେମାନେ ଆସି ହାଜର । ଟାଙ୍ଗା କରି ସେମାନେ ସେଠିକି ଚାଲି ଆସିଥିଲେ ।

ତାଜମହଲକୁ ପ୍ରଖର ସୂର୍ଯ୍ୟାଲୋକରେ ଦେଖି ତାହା ବିଷୟରେ ପୂର୍ବରୁ ଥିବା ମନୋରମ କଳ୍ପନା ଟିକିଏ ଧକ୍କା ଖାଇଲା । ଆଗ୍ରାରେ ଦୁଇପ୍ରହରବେଳେ ଜଣେ ବ୍ରାହ୍ମଣଙ୍କର ଛୋଟିଆ 'ଚୌକି' ରେ ଖାଇଲୁ, ଯାହାକୁ ଏଠି· ବିଶୁଦ୍ଧ ହିନ୍ଦୁ ହୋଟେଲ କୁହାଯିବ । ରୋଷେଇ ଘର ଭିତରେ ହିଁ ଖାଇବା ବ୍ୟବସ୍ଥା । ଘର ଭିତରେ ଲମ୍ବରେ ଓ ଆଡ଼ରେ ଚାଖଣ୍ଡେ ଉଚ୍ଚର ହିଡ଼ ଦିଆ ହୋଇ ଦେଢ଼ ଦୁଇହାତ ଲମ୍ବ ଓସାରର ସାନସାନ ଖୋପ ତିଆରି ହୋଇଥାଏ । ପ୍ରତ୍ୟେକଟିରେ ଜଣେ ଲେଖାଏଁ ଭୋଜନାର୍ଥୀ ବସିବେ । ସେ ହିଡ଼କୁ ଡେଇଁ ଜାତି ଛୁଆଁ ଆସିପାରିବ ନାହିଁ । ସବୁ ଖୁବ୍ ପରିଷ୍କାର ପରିଚ୍ଛନ୍ନ, ଚିକ୍କଣ ଲିପାପୋଛା । ଆମର ଏଠାରେ ସେପରି ହୋଟେଲରେ ଏତେ ସଫେଇ କଳ୍ପନା କରି ହେବ ନାହିଁ । ପଣ୍ଡିତଜୀ ଚୁଲୀ ପାଖରେ ବସି ଗରମ ଫୁଲକା ସେକୁଥା'ନ୍ତି ଓ ସେଠୁ ଅବ୍ୟର୍ଥ ଲକ୍ଷ୍ୟରେ ପ୍ରତ୍ୟେକଙ୍କର ପତରକୁ ଫିଙ୍ଗୁଥାନ୍ତି । ସେଠି ଖାଇବାଟା ଖୁବ୍ ସନ୍ତୋଷ ଦେଲା ।

ତା'ପରେ ଏଲାହାବାଦରେ ଓହ୍ଲାଇଲୁ, ପ୍ରୟାଗ ଓ ଆନନ୍ଦ ଭବନ ଦେଖିବା ପାଇଁ । ସେତେବେଳେ ଆନନ୍ଦ ଭବନ ଏକପ୍ରକାର ତୀର୍ଥକ୍ଷେତ୍ର । ସେଠାରେ ଦୁଇଟା କୋଠାରୁ ଗୋଟାଏ

ପଣ୍ଡିତ ମୋତିଲାଲ କଂଗ୍ରେସକୁ ଦାନ କରି ଦେଇଥା'ନ୍ତି । ଯେଉଁ ବଖରାରେ ପଣ୍ଡିତ ମୋତିଲାଲାଙ୍କର ଦେହାବସାନ ହୋଇଥିଲା ତାହାକୁ ଫୁଲ ଦେଇ ସୁନ୍ଦର କରି ସଜେଇ ରଖା ହୋଇଥାଏ । ପ୍ରୟାଗରେ ମା'ର ବୁଡ଼ ପାରିବାର ଥିଲା । ସେ ଜାଗାଟା ସେମିତି କିଛୁ ଆକର୍ଷକ ମନେ ହେଇ ନଥିଲା । ଆମର ତ ଓଡ଼ିଆ ପ୍ରତିନିଧିମାନେ ବାଟଯାକ ଗାଧୁଆ ପାଧୁଆର ନିଷ୍ଠା ବଜାୟ ରଖିବା ଚେଷ୍ଟାରେ ପୂର୍ଣ୍ଣପ୍ରାଣରେ ଲାଗିଥା'ନ୍ତି । ପଣ୍ଡିତ ମହାଶୟ ସେଇ ସେକାଳର ତୃତୀୟ ଶ୍ରେଣୀର ଅଣଓସାରିଆ ପାଇଖାନାରେ ଭୋରରୁ ବାଲଟି ନେଇ ପଶି ଗାଧୋଇ ସବୁପାଣି ଶେଷ କରିଦେବେ । ବଡ଼ ଷ୍ଟେସନମାନଙ୍କର ପାଣିକଳ ପାଖରେ ଗାଧୁଆ ଭିଡ଼ ଲାଗିଥାଏ । ଏଲାହାବାଦରୁ କଲିକତା ଆସିବା ବାଟରେ ଦିପହରବେଳେ ମଧୁପୁର ଷ୍ଟେସନରେ ଖୁଡ଼ୀ, ସୁନାମଣି ମାଉସୀ ହେରିକା ଓଲଟା ପାଖ ପ୍ଲାଟ୍‌ଫର୍ମରେ ପାଣିକଳ ଦେଖି ଗାଧୋଇ ଗଲେ । ଏଣେ ଗାଡ଼ି ଛାଡ଼ିବାକୁ ସିଟି ଦେଲାଣି । ସୁନାମଣି ମାଉସୀ ନିଶ୍ଚିନ୍ତରେ ଲୁଗା ହକଚାରେ ଲାଗିଥା'ନ୍ତି । ତା' ପରେ ଯେତେବେଳେ ଧାଇଁଲେ ସେତେବେଳକୁ ଗାଡ଼ି ଛାଡ଼ି ଦେଲାଣି । ଗୋଟିଏ ହାତରେ ଲୁଗା, ଅନ୍ୟଟାରେ ବାଲ୍‌ଟି, ଓଲଟା ପାଖରୁ ଗାଡ଼ି ଚଢ଼ୁଛନ୍ତି କେମିତି ? ଊର୍ଦ୍ଧ୍ୱବାହୁ ହୋଇ ଧାଇଁଥା'ନ୍ତି । ଏ ଗୋଟିଏ ମୂଲ୍ୟବାନ ସୁଯୋଗ ପାଇ ଆମେସବୁ ମହା ଉତ୍ସାହରେ ଚେନ୍ ଟାଣିବାର ଅଭିଜ୍ଞତା ହାସଲ କଲୁ । ଗାର୍ଡ଼ସାହେବ ମନ୍ତବ୍ୟ କଲେ, "ରାସ୍ତେମେଁ କ୍ୟା ଇତନା ନାହାନା ଧୋନା ?"

କଲିକତାରେ ଆମେ ସତୀଶବାବୁଙ୍କର ଅତିଥି ହେଲୁ । ଯେତେଦୂର ମନେପଡ଼େ ତାଙ୍କ ଜୁଆଁଇଙ୍କ ଘରେ ରହିଥିଲୁ । ସୋଦପୁରରେ ଖଦୀ ପ୍ରତିଷ୍ଠାନର ମୁଖ୍ୟ କେନ୍ଦ୍ର ଦେଖିଗଲୁ । ଖଦୀ ପ୍ରତିଷ୍ଠାନର ହତା ବେଶ୍ ବଡ଼ । ପାଞ୍ଚ ଏକର ଖଣ୍ଡେ ହେବ । ଦୁଇଟା ପୋଖରୀ । ରହିବା ଘର ଚାରିପଟେ ବାଡ଼ି ବଗିଚା । ଜାଗାଟା ବେଶ୍ ମନୋରମ । ସେଠାକୁ ମଫସଲ କେନ୍ଦ୍ରମାନଙ୍କରୁ ଖଦଡ଼ ଲୁଗା ବୁଣା ହେଇ ଆସେ ଓ ସେଠି ତା'ପରେ ଧୋଇଲେ, ରଙ୍ଗେଇ ଆଦି ପ୍ରକ୍ରିୟା ଚାଲେ । ସେଥିପାଇଁ ନାନା ପ୍ରକାରର ଯନ୍ତ୍ରପାତି ଖଞ୍ଜା ହୋଇଥାଏ । ସତୀଶବାବୁଙ୍କର ଗୋଟାଏ ରାସାୟନିକ ଲାବୋରେଟୋରୀ ବି ଥାଏ । ଏସବୁ ମତେ ଖୁବ୍ ଆକୃଷ୍ଟ କଲା, କିନ୍ତୁ ସେଠାର ବାତାବରଣରେ ଥିବା ଗୋଟିଏ ନିସ୍ତେଜ ଭାବ ଆମକୁ ଆଦୌ ପସନ୍ଦ ହେଲା ନାହିଁ । ସେଠି କେହି ପ୍ରାଣଖୋଲି ହସୁ ନ ଥାନ୍ତି କି ମନ ଖୋଲି କଥା କହି ପାରୁ ନ ଥା'ନ୍ତି । ଯେମିତି ଜାଣ ଇଣ୍ଡନର ବଡିଟା କମେଇଦିଆ ହୋଇଛି, ଆଲୁଅଟା, ସମସ୍ତଙ୍କ ଦେହରେ ମିଞ୍ଜିମିଞ୍ଜି ହୋଇ ଜଳୁଛି । ସେଠୁ ଫେରିବା ପରେ ଥରେ ଚୁନୀକୁ ଓ ମତେ ଖଦୀ ପ୍ରତିଷ୍ଠାନ ପଠେଇବା କଥା ଉଠିଥିଲା, କିନ୍ତୁ ଆମେ ଦୁହେଁ ତା'ର ଘୋର ବିରୋଧ କରିଥିଲୁ । ତା' ପରେ ଅବଶ୍ୟ ମୁଁ ସତୀଶବାବୁଙ୍କ ପାଖରେ ଅନେକ ଦିନ ରହିଲି । ତେବେ ସେତେବେଳେ ମୁଁ ଖଦୀ ପ୍ରତିଷ୍ଠାନରେ ନ ଥିଲି, କଲିକତାର ଉପକଣ୍ଠରେ ଶୁଁଡ଼ା ଅଞ୍ଚଳରେ ରହିଥିଲି । ସେଠା ଆବହାଓ୍ୱା ବି ପ୍ରଥମେ ବୋଝପରି ଲାଗୁଥିଲା, ମାତ୍ର ସୋଦପୁର ପରି ଏତେ ନୁହେଁ । ତା' ଛଡ଼ା ଏଠା ଆବହାଓ୍ୱାକୁ ଗଢ଼ିବାରେ ଆମର ବି କିଛି ହାତ ରହିଲା ।

# ପିକେଟିଂ ଓ ବିଜ୍ଞାନ ଚର୍ଚ୍ଚା

ଏହାପରେ ମୋର ନାନାପ୍ରକାର ନିଜସ୍ୱ ଧନ୍ଦା ସାଙ୍ଗରେ ବିଲାତି ଲୁଗା ପିକେଟିଂରେ ବି ମୁଁ ସାହାଯ୍ୟ କରୁଥିଲି । କଟକରେ ବିଲାତି ଲୁଗା ବିକ୍ରି ପୂରାପୂରି ବନ୍ଦ କରାଇବା ଉଦ୍ୟମ ସେତେବେଳେ ଚାଲିଥାଏ । ପ୍ରଥମେ ଲୁଗା ଦୋକାନମାନଙ୍କରେ ଖୁବ୍ କଡ଼ାକଡ଼ି ପିକେଟିଂ ହେଲା । ତା'ପରେ ମାରୱାଡ଼ି ବେପାରୀମାନେ ସେମାନଙ୍କ ପାଖରେ ଥିବା ବିଲାତି ଲୁଗା ଷ୍ଟକ୍‌କୁ ଜଉମୁଦ କରି ରଖିବାକୁ ରାଜି ହେଲେ । ବିଲାତି ଲୁଗା ସାଙ୍ଗକୁ ରାଜନନ୍ଦଗାଓଁ ମିଲ୍, ଏମ୍ପ୍ରେସ ମିଲ୍ ପ୍ରଭୃତି କେତେକ ଲୁଗାକଲର ଲୁଗା ବି ବନ୍ଦ କରିବାର ସ୍ଥିର ହେଉଥାଏ, କାରଣ ସେସବୁ ମିଲ୍ ବିଲାତି ସୂତା ବ୍ୟବହାର କରୁଥା'ନ୍ତି । ବେପାରୀମାନଙ୍କର ଦୋକାନ ଓ ଗୋଦାମ ଯାଞ୍ଚକରି ନିଷିଦ୍ଧ ଲୁଗାସବୁ ଗଣ୍ଠିଲିବାନ୍ଧି ଜଉମୁଦ କରି ରଖା ହୋଇଥାଏ । କେତେକ ପୁଣି ଏଣେ ବନ୍ଦ କରିବାକୁ ରାଜିହେଇ ତେଣେ ଚୋରାରେ ମାଲ ଚାଲାଣ କରି ଦେବାକୁ ଚେଷ୍ଟା କରୁଥାନ୍ତି । ସେଥିପାଇଁ ଦିନରାତି ଆମର ସ୍ୱେଚ୍ଛାସେବକ ମାନଙ୍କର ପହରା ବସିଥାଏ । ସାରା ରାତି ଆମେ ସାଇକେଲ ଧରି ଗଳିକନ୍ଦି ବୁଲି କେଉଁଠି ଲୁଗା ଗଣ୍ଠିଲି କି ଗାଣ୍ଠି ଯାଉଛି କି ନାହିଁ ତାହା ତଦାରଖ କରୁଥାଉ । ଏପରି ଭାବରେ ଚୋରା ଚାଲାଣ ବେଶ୍ ସଫଳ ଭାବରେ ବନ୍ଦ ହେଇପାରିଥିଲା । ସେତେବେଳେ କଟକରେ ବିଲାତି ଲୁଗା ବିକ୍ରି ପ୍ରାୟ ସଂପୂର୍ଣ୍ଣ ବନ୍ଦ ହେଇଯାଇଥିଲା । ଜନମତ ସପକ୍ଷରେ ଥିଲେ ସ୍ୱେଚ୍ଛାସେବୀ ସଂସ୍ଥା ଉଦ୍ୟମରେ ଏ ପ୍ରକାର କାମ କେତେ ସଫଳ ଭାବରେ କରାଯାଇପାରେ ଏହା ତାହାର ଏକ ଚମତ୍କାର ଉଦାହରଣ ।

ବିଜ୍ଞାନ ବିଷୟରେ ମୋର ରୁଚି କଥା ପୂର୍ବରୁ କହିଛି । ଅନେକ ଆଗରୁ ଜଗଦାନନ୍ଦ ରାୟଙ୍କର ବିଜ୍ଞାନ ବିଷୟରେ ପିଲାଙ୍କ ପାଇଁ ଲେଖା ବଙ୍ଗଳା ବହିସବୁ ମଗେଇ ପଢ଼ିଥିଲି । ଜଗଦାନନ୍ଦ ବାବୁ ଶାନ୍ତିନିକେତନରେ ଶିକ୍ଷକ ଥିଲେ । ପିଲାଙ୍କ ପାଇଁ ସବୁ ଜଟିଳ ବିଷୟ ବେଶ୍ ସରଳ କରି ଲେଖିପାରୁଥିଲେ । ତାଙ୍କ ବହି ଭିତରେ ମତେ 'ଗ୍ରହନକ୍ଷତ୍ର' ବହିଟି ସବୁଠୁଁ ଭଲ ଲାଗିଥିଲା ଓ 'ଗାଛପାଲା' (ଗଛପତ୍ର) ବହିଟି ସବୁଠୁ ନିରସ । ଗ୍ରହ ନକ୍ଷତ୍ର ଓ ବହିର୍ବିଶ୍ୱ ସମ୍ବନ୍ଧରେ କିଛି ଲେଖା ପାଇଲେ ମୁଁ ଆଗ୍ରହରେ ପଢୁଥାଏ । ଖୋଜକନ୍ ଏଇ ସମୟରେ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧରେ ଖଣ୍ଡେ ବହି, କଲେଜ ପାଠାଗାରରୁ ବୋଧହୁଏ, ଆଣିଥିଲା । ସେ ଖଣ୍ଡ ଆଗ୍ରହରେ ପଢ଼ିଲି । ଏତିକିବେଳେ କବି ନବ ବି ଗ୍ରହନକ୍ଷତ୍ର ବିଷୟକୁ ଆକୃଷ୍ଟ ହୋଇଥିଲେ । ସେ କାଠଯୋଡ଼ି ହଷ୍ଟେଲ୍‌ରେ ଥାଇ ପଢ଼ିବାବେଳେ ତାଙ୍କ ସହିତ ପରିଚୟ ହେଇଥିଲା । ଆମ ଘରକୁ ଯିବା ଆସିବା କରନ୍ତି । ଆମ ଘରୁ ଇଂରେଜୀ ଉପନ୍ୟାସ ସବୁ ମାଗିନେଇ ପଢ଼ନ୍ତି । ତାଙ୍କର ସାହିତ୍ୟ ଚର୍ଚ୍ଚା ସେତିକିବେଳୁ ଥାଏ ଓ ଆକାଂକ୍ଷା ମଧ୍ୟ ଉଚ୍ଚ ଥାଏ ।

ଯାହାହେଉ କବି ନବ ମଧ୍ୟ ମୋର ଗ୍ରହନକ୍ଷତ୍ର ଅଧ୍ୟୟନରୁ ଆକାଶର ରାଶି ଓ ନକ୍ଷତ୍ରମଣ୍ଡଳସବୁକୁ ଚିହ୍ନିବା ଉଦ୍ୟମକୁ ଉତ୍ସାହିତ କଲେ । ନକ୍ଷତ୍ରମଣ୍ଡଳମାନଙ୍କର ଇଂରାଜୀ ବା ଲାଟିନ୍ ନାମର ଅନୁକରଣରେ ସେ ଅନେକ ନୂଆ ନୂଆ ଓଡ଼ିଆ ନାଁ ଗଢ଼ିବା ଆରମ୍ଭ କରିଥିଲେ ।

ସେସବୁର ପ୍ରଚଳିତ ସଂସ୍କୃତ ନାମସବୁ ଆମକୁ ବିଶେଷ ଜଣା ନ ଥାଏ । ଏଇ ତାରା ଚିହ୍ନିବାରେ ପିୟର୍ସ ସାଇକ୍ଲୋପିଡ଼ିଆ ବା ଜ୍ଞାନକୋଷରେ ଥିବା ଆକାଶରେ ମାନଚିତ୍ରରୁ ଖୁବ୍ ସାହାଯ୍ୟ ମିଳିଥିଲା । ବଡ଼ ପିସାଙ୍କଠାରୁ ଏ ବହିରୁ ଖଣ୍ଡେ ବାଗେଇଥିଲି । ଏ ମାନଚିତ୍ର ଗୋଲ ଚକି ପରି, ବୁଲେଇ ହୁଏ । ଏହାକୁ ବୁଲେଇ ସଜାଡ଼ିଲେ ବର୍ଷର କେଉଁ ତାରିଖରେ ରାତି କେତେଟାରେ କେଉଁ କେଉଁ ନକ୍ଷତ୍ର କେଉଁ ଦିଗରେ ଦେଖାଯିବ ତାହା ଜାଣିହୁଏ ।

ଜବି ନବଙ୍କ ପରାମର୍ଶରେ ଏହି ଆକାଶ ମାନଚିତ୍ରକୁ ଗୋଟିଏ ବଡ଼ ଆକାରରେ ତିଆରି କରିବାର ସ୍ଥିର ହେଲା । ସେଥିରେ ତାରାମାନଙ୍କ ସ୍ଥାନରେ ଫୋଡ଼ କରିଦିଆଯିବ ଓ ପଛଆଡ଼େ ଏକ ଆଲୁଅ ରଖିଲେ ବାସ୍ତବ ତାରା ପରି ସବୁ ଦେଖାଯିବ । ମୂଳ ମାନଚିତ୍ରଟି ଲଣ୍ଡନର ଅକ୍ଷାଂଶକୁ କେନ୍ଦ୍ର କରି ତିଆରି ହୋଇଥାଏ । ଏଇଟିର କେନ୍ଦ୍ର କଟକର ଅକ୍ଷାଂଶକୁ କରିବା ସ୍ଥିର ହେଲା । ସେଥିପାଇଁ ଅମୁକ ଦୈର୍ଘ୍ୟ ଓ ପ୍ରସ୍ଥ ଥିବା ଏକ ଅଣ୍ଡାକୃତି କ୍ଷେତ୍ର (ଏଲିପ୍‌ସ୍) ଆଙ୍କିବା ଆବଶ୍ୟକ ହେଲା । ମୁଁ ଯେତେ ବନ୍ଧୁଙ୍କୁ ପଚାରିଲି, କଲେଜର କେତେକ ବିଜ୍ଞାନର ଛାତ୍ରଙ୍କୁ ମଧ, ସେମାନେ କେହି ଏହାର ସୂତ୍ର ବତେଇ ପାରିଲେ ନାହିଁ । ଶେଷକୁ ମୁଁ ବୁଦ୍ଧି ଖଟେଇ ସେ ସୂତ୍ରଟି ଆବିଷ୍କାର କଲି । ଏଇଟା ଏତେ ଖୁବ୍ ଆତ୍ମପ୍ରସାଦ ଦେଇଥିଲା ଓ ଆତ୍ମବିଶ୍ୱାସ ଯଥେଷ୍ଟ ବଢ଼େଇ ଦେଇଥିଲା ।

ଖରାଦିନ । ମୁଁ ରାତିରେ ନାଣ୍ଡିଛାତ ଉପରେ ବସି ଆକାଶ ନିରୀକ୍ଷଣ କରେ । ଛାତ ଉପରେ ଶୁଏ ଓ ରାତିରେ ବି ବିଭିନ୍ନ ସମୟରେ ନିଦ ଭାଙ୍ଗିଲେ ଆକାଶ ଦେଖେଁ । ଦିନେ ରାତି ଏଗାରଟା କି ବାରଟା ବେଳକୁ ହଠାତ୍ ନିଦ ଭାଙ୍ଗିଗଲା । ଆକାଶ ନିର୍ମଳ । ପୂର୍ବ ପରିଚିତ ନକ୍ଷତ୍ରମଣ୍ଡଳରୁ କେତେକ ଅସ୍ତ ଯାଇଛନ୍ତି ଓ ନୂଆ ଅପରିଚିତ ମଣ୍ଡଳର ଉଦୟ ହେଉଛି । ନିଦ ଭାଙ୍ଗିବାବେଳେ ମୋର ଚିତ୍ତ ଏକ ପ୍ରଶାନ୍ତ ଓ ନିର୍ମଳ ଅବସ୍ଥାରେ ଥିଲା । ଏଇ ଅବସ୍ଥାରେ ତାହା ସେ ରାତିରେ ଆକାଶର ଐଶ୍ୱର୍ଯ୍ୟକୁ ଜାଣି ସମଗ୍ରଭାବରେ ଗ୍ରହଣ କରି ସେଥିରେ ଆପ୍ଳୁତ ହୋଇଗଲା । ସେହି ଅନୁଭୂତିକୁ ଭାଷାରେ କହିବା ଏକରକମ ଅସମ୍ଭବ । ସେ ରାତିର ଆକାଶ ସବୁଦିନେ ଆଖିରେ ପଡୁଥିବା ଘଷରା ଆକାଶ ନ ଥିଲା । ଜାଣି ମହାବିଶ୍ୱର ସମସ୍ତ ଗହନ ରହସ୍ୟର ସଂକେତ ନେଇ ସେ ଆକାଶ ମୋ ଆଗରେ ବିଛେଇ ହୋଇରହିଥିଲା । ମୁଁ ଅନେକ ସମୟ ପର୍ଯ୍ୟନ୍ତ ଏକ ପ୍ରଶାନ୍ତ ବିସ୍ମୟ ଓ ଆନନ୍ଦର ଅନୁଭୂତିରେ ବୁଡ଼ି ରହିଲି । ଏ ଅନୁଭୂତି ସବୁଦିନ ପାଇଁ ମୋର ହୃଦୟରେ ଗୁନ୍ଥା ହେଇ ରହିଲା ।

ଗଭୀର ଅନୁଭୂତି କଥାରେ, ଯା ପାଞ୍ଚଛଅ ବର୍ଷ ପୂର୍ବରୁ ଆଉ ଗୋଟିଏ ବିଚିତ୍ର ଅନୁଭୂତି କଥା ମନେପଡୁଛି, ଯାହାର କୌଣସି ଓର ମୁଁ ପାଇନାହିଁ । ଫଗୁଣ ଚଇତ ମାସ ହେବ । ବେଶ୍ ଜୋର୍‌ରେ ଦକ୍ଷିଣା ପବନ ବହୁଥାଏ । ନଈକୂଳରେ ଥିବା ବର ଅଶ୍ୱତ୍‌ଥ ଗଛର ପତ୍ରର ମର୍ମର ସାଙ୍ଗକୁ ଟେଲିଗ୍ରାଫ୍ ଓ ଟେଲିଫୋନ୍ ତାର ଓ ଖୁଣ୍ଟର ଗୁଞ୍ଜନ ନାଦ ମିଶି ଏକ ବିଚିତ୍ର ଆବେଗମୟ ଧ୍ୱନି ସୃଷ୍ଟି ହେଉଥାଏ । ମୁଁ ଉପରମହଲାର ମଝି ଘରେ ଏକୁଟିଆ ଥାଏ । ହଠାତ୍ ମୋର

ଗୋଟାଏ କେମିତିକା ଉତଳା ଓ ଉଦାସ ଭାବ ଆସିଲା, ଯାହାକୁ ଭାଷାରେ ପ୍ରକାଶ କରିବା କଠିନ । ମନେହେଲା ଯେମିତି ଦୁନିଆଟା କୁଆଡ଼େ କେମିତି ଆଗେଇ ଚାଲିଗଲାଣି ମୁଁ ଏକୁଟିଆ ପଛରେ ପଡ଼ିଯାଇଛି । ମୋର ଯେମିତି କ'ଣ ସବୁ କରିବାର କଥା, ପାଇନାହିଁ । ଜୀବନରେ ଯେମିତି ଗୁଡାଏ କ'ଣ ବାକି ରହିଯାଇଛି, ଅପୂର୍ଣ୍ଣ ରହିଯାଇଛି । ପରେ କିଏ ଜଣେ ସାଙ୍ଗ ଆସିଲା ଓ ଖେଳକୁଦରେ ମାତିଗଲୁ, କିନ୍ତୁ ଏ ଅନୁଭୂତିଟା ମନରେ ରହିଗଲା । ପରେ ସେହିଭଳି ପବନର ମର୍ମର ଶୁଣିଲେ ତାର ଛାୟା ମନକୁ ପୁଣି ଘେରିଯାଏ । ଏହାର ଅନେକ ପରେ ରବୀନ୍ଦ୍ରନାଥଙ୍କର କବିତା - "ଆମି ଚଞ୍ଚଳ ହେ । ହେ ସୁଦୂର ଆମି ଉଦାସୀ ।" କବିତା ପଢ଼ି ମନେହେଲା ତାହା ଭିତରେ ଏହିପରି ଏକ ଅନୁଭୂତିର ଇଙ୍ଗିତ ରହିଛି ।

## ପୁରୀ କଂଗ୍ରେସ ଆୟୋଜନ

କରାଚୀ କଂଗ୍ରେସରେ ଓଡ଼ିଶା ପକ୍ଷରୁ ଆସନ୍ତା କଂଗ୍ରେସ ପୁରୀରେ କରିବା ପାଇଁ ନିମନ୍ତ୍ରଣ ଦିଆଯାଇଥିଲା । ସେଥିପାଇଁ କରାଚୀରୁ ଫେରିବାର ଅଳ୍ପଦିନ ପରେ ଆୟୋଜନ ଆରମ୍ଭ ହେଲା । ସ୍ୱରାଜ ଆଶ୍ରମରେ ଥିବା କର୍ମୀମାନଙ୍କୁ ସ୍ୱେଚ୍ଛାସେବକ ତାଲିମ ଦେବା ଆରମ୍ଭ ହେଲା । ମୁଁ ସେମାନଙ୍କୁ ସକାଳୁ ଡ୍ରିଲ୍ କରାଇବା ଭାର ନେଲି । ମୋର ସାମରିକ ଡ୍ରିଲ୍ ପ୍ରତି ଆକର୍ଷଣ ବୋଧହୁଏ କଲିକତା କଂଗ୍ରେସ ବେଳେ ସ୍ୱେଚ୍ଛାସେବକମାନଙ୍କର କୁଚ କାୱାଜ୍ ଦେଖି ହୋଇଥିଲା । ସାମରିକ ପୋଷାକ, ଡ୍ରିଲ୍, ଚାଲିଚଳଣ, ଏସବୁ ମତେ ଖୁବ୍ ଆକୃଷ୍ଟ କରୁଥାଏ । ଏଇ ସମୟରେ ସୁଧୀରବାବୁ ଓ ମୁଁ ନାନା ପ୍ରକାରର ଉଦ୍‌ଭଟ କଳ୍ପନା କାର୍ଯ୍ୟକାରୀ କରୁଥାଉଁ । ଥରେ ଠିକ୍ କଲୁ ଯେ ସ୍ୱରାଜ ଆଶ୍ରମରେ ଗୋଟିଏ ଖୁବ୍ ଉଚ୍ଚ ପତାକା ସ୍ତମ୍ଭ ପୋତାଯିବ । ସେଥିପାଇଁ ଦୁଇଟା କାଠ ଖୁଣ୍ଟ ଓ ତା' ଉପରେ ଏକ ବାଉଁଶ ଯୋଡ଼ି ପଁଷଠି କି କେତେ ଫୁଟ ଉଚ୍ଚ ଏକ ଖୁଣ୍ଟ ତିଆରି କଲୁ । ମାତ୍ର ସେଥିରେ ସନ୍ତୋଷ ହେଲା ନାହିଁ । ଶହେ ଫୁଟ ଉଚ୍ଚ କରାଯିବ ବୋଲି ବିଚାର ହେଲା ଓ ଆହୁରି କାଠ ବାଉଁଶ ଲଗେଇ ଓ ତାକୁ ସିଧା ରଖିବା ପାଇଁ ଚାରିପାଖରେ ଟଣକ ରସିସବୁ ବାନ୍ଧି ଖୁଣ୍ଟଟାକୁ ନବେ ଫୁଟ ଯାଏ ଉଚ୍ଚ କରି ହେଲା । ତା'ର କାଠ ଅଂଶ ଉପରକୁ ଚଢ଼ିବା ପାଇଁ ଏକ ରସିର ସିଢ଼ି ମଧ୍ୟ ଖଞ୍ଜା ହୋଇଥିଲା ଓ ରାତିରେ ପତାକାକୁ ଆଲୋକିତ କରିବା ପାଇଁ ତଳେ ଏକ ମୋଟର ଗାଡ଼ିର ହେଡ୍‌ଲାଇଟ୍ ଖଞ୍ଜା ହୋଇ ବ୍ୟାଟେରୀ ସାହାଯ୍ୟରେ ଜଳା ହେଉଥିଲା । ସେ ସମୟରେ ଆଶ୍ରମରେ ବିଜୁଳି ଆଲୁଅ ଲାଗି ନ ଥିଲା । ସେଥିପାଇଁ ସମ୍ବଳ ନ ଥିଲା ।

କିଛିଦିନ ପରେ ହିନ୍ଦୁସ୍ତାନୀ ସେବା ଦଳର ସାହାଯ୍ୟ ନେଇ ବ୍ୟାପକ ଆକାରରେ ସ୍ୱେଚ୍ଛାସେବକ ସଂଗ୍ରହ ଓ ତାଲିମର ବ୍ୟବସ୍ଥା କରାଗଲା । ସେବା ଦଳର ଜଣେ ପ୍ରଶିକ୍ଷକ ମୁକୁନ୍ଦରାଓ ଶେଷଗିରି ବାଲସୱାର ଓଡ଼ିଶା ଆସିଲେ ଓ ସ୍ୱେଚ୍ଛାସେବକମାନଙ୍କର ପ୍ରଥମ ତାଲିମ ଶିବିର କଟକରେ ହେବାର ସ୍ଥିର ହେଲା । ଏ ଶିବିରରେ ମତେ ନିଆଯିବ ବୋଲି ମୁଁ ଆଶା

କରିଥିଲି । ମାତ୍ର ଯେତେବେଳେ ଶିବିରାର୍ଥୀମାନଙ୍କର ତାଲିକା ବାହାରିଲା ଦେଖାଗଲା ଯେ ସେଥିରେ ମୋର ନାଁ ନାହିଁ । ମୋର ଭୀଷଣ କ୍ଷୋଭ ହେଲା । ଶିବିରର ଉଦ୍‌ଘାଟନ ଉତ୍ସବରେ ମୁଁ ଯୋଗ ନ ଦେଇ ସାଇକେଲ୍ ଧରି ପଳେଇଲି ଓ ଅତି ବିକ୍ଷୁବ୍ଧ ଚିତ୍ତରେ ଏଣେ ତେଣେ ଲକ୍ଷ୍ୟହୀନ ଭାବରେ ବୁଲିବୁଲି ସନ୍ଧ୍ୟା ପରେ ଡେରିରେ ଘରକୁ ଫେରି ଗୁମ୍ ହୋଇ ବସି ରହିଲି ।

କଂଗ୍ରେସ ପାଇଁ ଅଭ୍ୟର୍ଥନା ସମିତିର ସଭ୍ୟ ସଂଗ୍ରହ ଓ ସମିତି ଗଠନ ନେଇ କଟକ ଓ ପୁରୀ ଭିତରେ ରେଷାରେଷି ଲାଗି ଟିକିଏ ତିକ୍ତତା ଉତ୍ପନ୍ନ ହୋଇଥାଏ । ସେଥିପାଇଁ ବାପା ତିନିଦିନ ଅନଶନ କରିଥା'ନ୍ତି ଓ ବଡ଼ଘର ଦୋତାଲାରେ ଥା'ନ୍ତି । ମତେ ଡାକି ସେ ବୁଝାଇଲେ ଯେ ସେ ମତେ ଗୁଜରାଟ୍ ବିଦ୍ୟାପୀଠକୁ ପଠାଇବାକୁ ଚାହାନ୍ତି । ସେଠି ଅର୍ଥନୀତି ଓ ଅନ୍ୟାନ୍ୟ ବିଷୟ ପଢ଼ିବାକୁ ସୁବିଧା ମିଳିବ । ବ୍ୟାପକ ଜ୍ଞାନ ହେବ । ତା' ସାଙ୍ଗରେ ଯା ବି କହିଲେ ଯେ ସେଠି ଡ୍ରିଲ୍ ବି ହୁଏ । ଡ୍ରିଲ୍ ଶିଖିହେବ । ମାତ୍ର ସ୍ୱେଚ୍ଛାସେବକ ତାଲିମ ଶିବିରରେ ଯୋଗ ଦେବାର ଆଗ୍ରହ ମୋର ଏତେ ଥାଏ ଯେ ବାପାଙ୍କ କଥା ମୋ ମନରେ ତିଳେହେଲେ ଭେଦିଲା ନାହିଁ । ଗୁଜ୍‌ରାଟ୍ ବିଦ୍ୟାପୀଠ ବିଖ୍ୟାତ ରାଷ୍ଟ୍ରୀୟ ଶିକ୍ଷାନୁଷ୍ଠାନ । ଗାନ୍ଧୀଜୀଙ୍କର ବିଶ୍ୱସ୍ତ ଓ ପ୍ରତିଭାଶାଳୀ ସହକର୍ମୀମାନେ ତାକୁ ଚଳାଉଥା'ନ୍ତି । ସେଥିରେ ଅଧ୍ୟୟନ କରିବାର ସୁଯୋଗକୁ ଏପରି ଭାବରେ ପ୍ରତ୍ୟାଖ୍ୟାନ କରି ମୁଁ ଠିକ୍ କଲି କି ଭୁଲ୍, ତାହା କହିପାରିବି ନାହିଁ । ତେବେ ଏକଥା ନିଶ୍ଚିତ ଯେ ଏଇଟା ମୋର ଜୀବନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦୋଛକି ଥିଲା । ସେତେବେଳେ ମୁଁ ଜିଦ୍‌କରି ଗୋଟିଏ ରାସ୍ତା ଧରିଲି ଓ ଯେଉଁଠି ପହଞ୍ଚିବାର ପହଞ୍ଚିଲି ।

ମୋର ଶିବିରରେ ଯୋଗ ଦେବାର ଠିକ୍ ହେଲା । ସ୍ୱରାଜ ଆଶ୍ରମ ପାଖରେ ଗୋଟିଏ ଦୋତାଲା ଘର ଭଡ଼ା ନେଇ ଶିବିର ଆରମ୍ଭ ହେଲା । ମୋଟରେ ଏକୋଇଶ ଜଣ ଯୋଗ ଦେଇଥିଲେ, ଖୁଡ଼ୀଙ୍କ ସମେତ । ଏ ଶିବିରାର୍ଥୀମାନଙ୍କର ଭିତରୁ ଅନେକେ ପରେ ଓଡ଼ିଶାର ସାଧାରଣ ଜୀବନରେ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ସେମାନେ ହେଲେ : (୧) ଶରତ ମହାପାତ୍ର (ବାଲେଶ୍ୱର), (୨) ବ୍ରଜ ମହାପାତ୍ର (କଟକ), (୩) ଶରତଚନ୍ଦ୍ର ଦାଶ (କଟକ), (୪) ଦାଦା, (୫) ନରସିଂହ ଚରଣ ସାମନ୍ତସିଂହାର (ପୁରୀ) (ପରେ ଲୋକସଭା ସଦସ୍ୟ ଆଦି ହେଲେ) (୬) ସୁଧୀର ଘୋଷ (କଟକ), (୭) ଦୟାନନ୍ଦ ଶତପଥୀ (ସମ୍ବଲପୁର), ପରେ କମ୍ୟୁନିଷ୍ଟ ନେତା, (୮) ରାଜକିଶୋର ମହାପାତ୍ର (କଟକ), (୯) ରବୀନ୍ଦ୍ର ଦାସ (ବାଲେଶ୍ୱର), ପରେ ସମାଜବାଦୀ ନେତା, (୧୦) ମୁଁ, (୧୧) ଗୋକୁଳ ମୋହନ ରାୟଚୂଡ଼ାମଣି (ପୁରୀ), ପରେ କମ୍ୟୁନିଷ୍ଟ ନେତା, (୧୨) ରାଜେନ୍ଦ୍ର ବର୍ମା (କଟକ), ସମ୍ପାଦିକ (୧୩) ଗୁଣନିଧି ଦାସ (କଟକ), (୧୪) ନାରାୟଣ ପାତ୍ର (ଗଞ୍ଜାମ), ପରେ ଲୋକସଭା ସଦସ୍ୟ, (୧୫) ବଳରାମ ପତି (କଟକ), (୧୬) ସୁରେନ୍ଦ୍ର ଦ୍ୱିବେଦୀ, ପରେ ସୁନାମଧନ୍ୟ ସମାଜବାଦୀ ନେତା ଓ ଲୋକସଭାରେ ବିରୋଧୀ ଦଳର ନେତା, (୧୭) ସୁରେନ୍ଦ୍ର ନାଥ ପଟ୍ଟନାୟକ, ପରେ କଂଗ୍ରେସର ବିଶିଷ୍ଟ ନେତା ଓ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ (୧୮) ଗତିକୃଷ୍ଣ ସ୍ୱାଇଁ (ପୁରୀ), ପରେ ସୁନାମଧନ୍ୟ

କୃଷକ ନେତା, (୧୯) ବିନୋଦ କାନୁନ୍‌ଗୋ (ଜ୍ଞାନମଣ୍ଡଳ ସଂପାଦକ), (୨୦) ନରସିଂହ ସାହୁ (କଟକ) ଓ (୨୧) ଖୁଡ଼ୀ ସମସ୍ତଙ୍କୁ ଉଚ୍ଚତା ଅନୁସାରେ ଧାଡ଼ିକରି ଛିଡ଼ାକରି ଦେଇ ପ୍ରତ୍ୟେକଙ୍କୁ କ୍ରମାନ୍ୱୟରେ ନମ୍ବର ଦିଆ ହେଇଥିଲା ଓ ଶିବିରରେ ପ୍ରତ୍ୟେକ ସେହି ନମ୍ବର ଅନୁସାରେ ପରିଚିତ ଥିଲେ । ମୋର ନମ୍ବର ଥିଲା ଦଶ । ଉପରେ ତାଲିକା ସେହି କ୍ରମ ଅନୁସାରେ ଦିଆହୋଇଛି । କେବଳ ଖୁଡ଼ୀଙ୍କ ଏ ଉଚ୍ଚତାର କ୍ରମ ବାହାରେ ଶେଷ ସ୍ଥାନ ଓ ନମ୍ବର ଦିଆହେଇଥିଲା । ରାଜକିଶୋର ମହାପାତ୍ର ଅଳ୍ପଦିନ ପରେ ଶିବିରରୁ ଚାଲିଯାଇଥିଲେ ।

ତିନି ସପ୍ତାହଯାଏ ଶିବିର ଚାଲିଲା । ଭୋର ଚାରିଟାରେ ଉଠିବା ପାଇଁ ବିଗୁଲ୍ ବାଜେ ଓ ରାତି ନ'ଟାରେ ଶୋଇବା ପାଇଁ । ଏହା ଭିତରେ ସମସ୍ତ ସମୟ ନାନା ପ୍ରକାରର କାମ ଓ ବିଷୟର ଶିକ୍ଷାରେ ଠାସି ଭର୍ତ୍ତି କରା ହେଇଥାଏ । ସକାଳୁ ପ୍ରାର୍ଥନା, ସଫେଇ, ନିତ୍ୟକର୍ମ, ଜଳଖିଆଦି ପରେ ବୌଦ୍ଧିକ ବିଷୟରେ ବର୍ଗ ନିଆହୁଏ । ଆସନ, ନମସ୍କାର ଶିଖା ହୁଏ । ଉପରଓଳି ଡ୍ରିଲ୍ । ପ୍ରାଥମିକ ଚିକିତ୍ସା, ଭିଡ଼ ସମ୍ଭାଳିବା ଆଦି ବି ଶିକ୍ଷା ଦିଆଯାଇଥିଲା । ଶୃଙ୍ଖଳାବଦ୍ଧ ଭାବରେ ଓ ଖୁବ୍ ତତ୍‌ପରତାର ସହିତ କାମ କରିବାର ଏକ ଅଭ୍ୟାସ ଏ ଶିବିରରେ ପଡ଼ିଗଲା । ଆମମାନଙ୍କର ଚାଲିଚଳଣରେ ଥିବା ଢିଲାଢାଲା ଭାବଟା ଏକଦମ୍ କଟିଗଲା । କଷ୍ଟସହିଷ୍ଣୁତାର ଅଭ୍ୟାସ ମଧ୍ୟ ପଡ଼ିଗଲା । ଏଠି ମ୍ୟୁନିସିପାଲିଟି ପାଇଖାନା ଛଡ଼ା ଚାରିଟା ଖଣ୍ଡେ ଅସ୍ଥାୟୀ ପାଇଖାନା ତିଆରି ହୋଇଥାଏ । ସେସବୁ ପାଇଖାନା ସଫା କରିବା ପାଳି ମଧ୍ୟ ପଡ଼େ । ପାଇଖାନା ସଫେଇ କଳା ଓ ବ୍ୟବସ୍ଥିତ ଅଭ୍ୟାସ ସେଇଠୁ ଶିଖିଗଲୁ । ଏଇ ଶିବିରରେ ଶିଖିଥିବା ଯୋଗାସନ ମୋର ସେବଠୁଁ ସ୍ଥାୟୀ ଅଭ୍ୟାସ ହେଇଗଲା । ରାତିରେ ଦୁଇ ଘଣ୍ଟା ଲେଖାଁ ପହରା ପାଳି ପଡ଼େ । କାନ୍ଧରେ ଠେଙ୍ଗା ପକାଇ ଓ ହାତରେ ଲଣ୍ଠନ ଧରି ହତା ଭିତରେ ଚକର ମାରିବାକୁ ହୁଏ । ଦିନଯାକ ବ୍ୟାୟାମ, ଡ୍ରିଲ୍, ସଫେଇ, ପାଠପଢ଼ା ଆଦି ଲଗାତାର ପରିଶ୍ରମ ପରେ ରାତିରେ ଖାଇ ସାରିବା ପରେ ଆଖି ଖୋଲା ରଖିବା କାଠିକର ପାଠ ହୁଏ । ରାତି ଏଗାରଟା କି ଗୋଟାଏରେ ଉଠି ପହରା ପାଳି ବଜେଇବା କି କଷ୍ଟକର ବ୍ୟାପାର କଳ୍ପନା କରନ୍ତୁ । ଶେଷକୁ ଆଖି ବନ୍ଦ କରି ଏକ ରକମ ଶୋଇ ଶୋଇ ଟହଲିବା ଅଭ୍ୟାସ ହୋଇଗଲା । ଥରେ ଥରେ ରାତିରେ ବିପଦ ସଂକେତ ହୁଏ । 'କମାଣ୍ଡର' ସିଟିରେ ତିନିଥର ଲେଖାଁ ବିପ୍ ବିପ୍ ଧ୍ୱନି କରି ସଂକେତ ଦିଅନ୍ତି । ଏହା ଶୁଣିବା ମାତ୍ରେ ପ୍ରତ୍ୟେକଙ୍କୁ ତିନି ମିନିଟରେ ନିଜର ବିଛଣାପତ୍ର ଗୁଡାଗୁଡ଼ି କରି ବାନ୍ଧି ହାତରେ ଧରି ଯାଇ ଧାଡ଼ିରେ ଛିଡ଼ା ହେବାକୁ ହୁଏ ।

ଏତେ କାମର ଚାପ ଯୋଗୁଁ ଯେ ଶିବର ଜୀବନ ନିରାନନ୍ଦ ଥିଲା ତାହା ନୁହେଁ । ସମସ୍ତେ ଖୁବ୍ ଫୂର୍ତ୍ତିରେ ଥାନ୍ତି ଓ ସବୁବେଳେ ହସଥଟ୍ଟା ଲାଗିଥାଏ । ବାଳସଦ୍ୱାର ବି ଖୁବ୍ ମଜାଦାର ଥଟଲି ଲୋକ ଥିଲେ । ଖାଇବାବେଳେ ଗୀତାଂତ ବା ଶ୍ଳୋକାନ୍ତ ହୁଏ । ଦିନେ ଦିନେ ରାତିରେ 'କ୍ୟାମ୍ପ୍ ଫାୟାର' ହୁଏ । ସେଥିରେ ସମସ୍ତେ ନାନା ପ୍ରକାରର ରଙ୍ଗରସ ଦେଖାନ୍ତି, ଗୀତ, ଆବୃତ୍ତି ଆଦି ହୁଏ । ଏଥିରେ ଗୁଣନିଧି ଦାସ, ନାରାୟଣ ପାତ୍ରଙ୍କୁ ଭାଲୁ କରି ନଚେଇବାଟା ସବୁଠୁଁ ଉପଭୋଗ୍ୟ ହେଉଥିଲା ଓ ଠିଆପାଲାର ଅନୁକରଣ ।

ଏ ଶିବିର ଶେଷରେ ଆମେ କଟକରୁ ଭୁବନେଶ୍ୱର ଯାଏ ପଦଯାତ୍ରା କରିବା ସ୍ଥିର ହେଲା । ସେତେବେଳେ ବାଲିଅନ୍ତା, ବାଲିପାଟଣା ବାଟେ ପୁରୁଣା ବାଟ ଥାଏ । ସାମରିକ କାଇଦା ଅନୁସାରେ ଆମେ ଧାଡ଼ି ବାନ୍ଧି ଚାଲୁଥାଉ, ପ୍ରତ୍ୟେକଙ୍କର ବିଛଣା ଓ ଲୁଗାପଟା ସତରଞ୍ଜିରେ ଲମ୍ବବାଗରେ ଗୁଡ଼ାଇହୋଇ ପଇତାପରି କାନ୍ଧରେ ପଡ଼ିଥାଏ । ପଚାଶ ମିନିଟ୍ ଚାଲିବା ପରେ ଦଶ ମିନିଟ୍ ବିଶ୍ରାମ । ସେତେବେଳେ ସମସ୍ତେ ବାଟକଡ଼ରେ, ଘାସ ଉପରେ ଲମ୍ୱଲମ୍ୱ ହୋଇ ଶୋଇ ବିଶ୍ରାମ କରନ୍ତି । ସକାଳୁ ବାହାରି ଉପରଓଳି ଭୁବନେଶ୍ୱରରେ ପହଞ୍ଚିଲୁ । ରହଣି ହେଲା ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କର ସେଠାରେ ଥିବା ଘରେ । ମନ୍ଦିର, ଖଣ୍ଡଗିରି, ଉଦୟଗିରି ଆଦି ବୁଲାବୁଲି କରି ଦେଖି ସେଠୁ ରେଲ୍‌ରେ କଟକ ଫେରିଲୁ । ସ୍ୱାମୀଜୀ ଆମେ ପହଞ୍ଚିବା ଦିନ ସନ୍ଧ୍ୟାରେ ଖୁଡ଼ୀଙ୍କୁ ଗୋଟିଏ ଗୀତ ଗାଇବାକୁ ଅନୁରୋଧ କରିବାରୁ ସେ ରବୀନ୍ଦ୍ରନାଥଙ୍କର 'ଭୁବନେଶ୍ୱର ହେ' ଗୀତଟି ଗାଇଲେ । ମୋର ସବୁଦିନ ପାଇଁ ମନେ ରହିଥିବା ଅନୁଭୂତି ଭିତରେ ସେଦିନର ସେ ଗୀତଟି ଗୋଟିଏ ।

ସେ ସମୟର, ଆକ୍ଷରିକ ଭାବରେ ନିୟମାନୁବର୍ତ୍ତିତାର ମୋର ମନୋଭାବର ଗୋଟାଏ ନମୁନା ଦିଏ । ଶିବିରରେ ନିୟମ ଥାଏ ଯେ ଶିବିରାର୍ଥୀମାନେ ବାହାର ଲୋକଙ୍କ ସହିତ ପରିଚାଳକଙ୍କ ବିନା ଅନୁମତିରେ କଥାବାର୍ତ୍ତା କରିବେ ନାହିଁ । ଭୁବନେଶ୍ୱର ଯିବା ପୂର୍ବଦିନ ମୋର କ୍ୟାମେରାଟା ଆଣିବା ପାଇଁ ମୁଁ ଘରକୁ ଗଲି । ମାତ୍ର ପରିଚାଳକଙ୍କର ଅନୁମତି ନ ନେଇଥିବାରୁ ଘରେ କାହାରି ସହିତ କଥାବାର୍ତ୍ତା କଲିନାହିଁ ।

କଟକ ଶିବିରରେ ତାଲିମ ପାଇଥିବା କର୍ମୀମାନେ ଅନ୍ୟାନ୍ୟ ସ୍ଥାନରେ ଶିବିର ଚଳାଇବା ସ୍ଥିର ହେଲା । ଦାଦା, ସୁଧୀରବାବୁ ପ୍ରଭୃତି ଅନ୍ୟାନ୍ୟ କର୍ମୀଙ୍କ ସାହାଯ୍ୟରେ କଟକ ଓ ବାଲେଶ୍ୱରରେ ଶିବିର ଚଳାଇଲେ । ପୁରୀରେ ମୁକୁନ୍ଦ ରାଓଙ୍କ ତତ୍ତ୍ୱାବଧାନରେ ଶିବିର ଚାଲିଲା । ଏଥିରେ ସାରା ପ୍ରଦେଶରୁ ପଞ୍ଚାବନଜଣ କର୍ମୀ ରହିଲେ । ଏଥିରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ମଦନମୋହନ ପଟ୍ଟନାୟକ, ନୀଳାମ୍ବର ଦାସ, ଚାଟୁବାବୁ, ସୁଧାଂଶୁ ମୈତ୍ର, ଗୋବର୍ଦ୍ଧନ ପ୍ରଧାଣ, ନଟ କାନୁନ୍‌ଗୋ, ମାଗୁଣି ନନ୍ଦ ପ୍ରଭୃତି ଥାନ୍ତି । ମୁକୁନ୍ଦରାଓଙ୍କୁ ସାହାଯ୍ୟ କରିବାକୁ ନୃସିଂହ ଚରଣ ସାମନ୍ତସିଂହାର, ସୁରେନ୍ଦ୍ର ପଟ୍ଟନାୟକ, ନରସିଂହ ସାହୁ ଓ ମୁଁ ଥାଉ । ସାମନ୍ତସିଂହାର ସହାୟକ ପରିଚାଳକ ଥା'ନ୍ତି । ପୁରୀ ବଡ଼ ଡାକଘର ସାମନାରେ ଥିବା ଧନପତି ବନ୍ଦୋପାଧ୍ୟାୟଙ୍କର କୋଠାରେ ଏ ଶିବିର ଚାଲିଥିଲା । ତା'ର ସାମନାରେ ଥିବା ଆଉ ଏକ କୋଠାରେ ମହିଳା ଶିବିର ଚାଲିଥାଏ । ତା'ର ପରିଚାଳିକା ମୁକୁନ୍ଦ ରାଓଙ୍କ ସ୍ତ୍ରୀ ସୁଶୀଳାବାଈ ଥାନ୍ତି । ବୋଉ ହେରିକା ତତ୍ତ୍ୱାବଧାନ ପାଇଁ ଥା'ନ୍ତି । ସତ୍ୟାଗ୍ରହରେ ଯୋଗଦେଇଥିବା ମହିଳାମାନଙ୍କ ଛଡ଼ା ଆଉ ଅନେକ ବି ଯୋଗ ଦେଇଥା'ନ୍ତି । ଯଥା – ମାଳଅପା, ରାଧାଶ୍ୟାମ ଦାସଙ୍କର ସ୍ତ୍ରୀ ପ୍ରଭୃତି ।

ମୁଁ ଉଭୟ ଶିବିରରେ ଡ୍ରିଲ୍ ଶିଖାଉ ଥାଏ । ପୁରୁଷମାନଙ୍କ ଶିବିରରେ ଏକ ନମ୍ବରରେ ମଦନ ମୋହନ ପଟ୍ଟନାୟକ ପାଞ୍ଚଫୁଟ ଏଗାର ଇଞ୍ଚ ଓ ପଞ୍ଚାବନ ନମ୍ବରରେ ଥାନ୍ତି ନୀଳାମ୍ବର

ଦାସ ଚାରିଫୁଟ ଏଗାର । ପାଦ ମିଳାଇ ଚାଲିବାବେଳେ ବଡ଼ ତାମସା ହୁଏ । ଏକ ନମ୍ବର ହେରିକା ଆଗରେ ଥିଲେ ପଛରେ ଥିବା ପଞ୍ଚାବନ ନମ୍ବର ହେରିକା ତାଳ ରଖିବା ପାଇଁ ଦୌଡ଼ି ଦୌଡ଼ି ନୟାନ୍ତ ହୁଅନ୍ତି । ପୁଣି ଓଲଟା ଆଡ଼କୁ ବୁଲିଗଲେ ପଛରେ ଥିବା ଡେଙ୍ଗାମାନଙ୍କର ଗୋଡ଼ ଛନ୍ଦୁରି ମନ୍ଦୁରି ହୋଇଯାଏ ।

ଶିବିରବାସୀ ଆମେ ସମସ୍ତେ ପ୍ରତିଦିନ ଉପରଓଳି ସମୁଦ୍ରକୂଳକୁ ଖେଳିବାକୁ ଯାଉ ଓ ତା'ପରେ ସମୁଦ୍ରରେ ଗାଧୋଉ । ପୁରୀର ବାସିନ୍ଦାଙ୍କ ଭିତରୁ କେତେକ ସମୁଦ୍ର ଭିତରକୁ ଅନେକ ଦୂରଯାଏ ପହଁରି ଚାଲିଯାନ୍ତି । ମୋର ସେମାନଙ୍କୁ ଦେଖି ଈର୍ଷା ହୁଏ, ମାତ୍ର ସେପରିଭାବରେ ସମୁଦ୍ରରେ ପହଁରିବାଟା ହେଲାନାହିଁ । ତେବେ ନିର୍ଭୟରେ ଗାଧୋଇବା ଓ ଲହଡ଼ିର ଠେଲାପେଲାକୁ ଉପଭୋଗ କରିବା ଅଭ୍ୟାସ ହୋଇଗଲା । ମୁଁ ପରେ ପ୍ରାୟ ପ୍ରତିଦିନ ଦୁଇଓଳି ସମୁଦ୍ରରେ ଗାଧୋଇବାକୁ ଲାଗିଲି । ମନେଅଛି, ଦିନେ ବର୍ଷା ଓ ବତାସର ପାଗ ହୋଇଥାଏ । ଲହଡ଼ି ବି ପ୍ରବଳ ଥାଏ । ସମୁଦ୍ର କୂଳରେ ପ୍ରାୟ ଲୋକ ନ ଥାନ୍ତି । ତଥାପି ମୁଁ ଏକୁଟିଆ ଯାଇ ଗାଧୋଇ ଆସିଲି ।

ପୁରୀ ଶିବିରରେ ଥରେ ଗୋଟାଏ କ'ଣ କଥା ନେଇ ଗଣ୍ଡଗୋଳ ହେଲା । ଯେତେଦୂର ମନେପଡୁଛି ତରକାରୀର ପରିମାଣ ଓ ଆମ 'ଅଫିସର' ମାନଙ୍କର ଆଚରଣ ନେଇ । ଶିକ୍ଷାର୍ଥୀମାନଙ୍କର ସଭା ହେଇ ଗରମା ଗରମ ବକ୍ତୃତା ଚାଲିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ତ ଗରମାଗରମିରେ ସବୁବେଳେ ଆଗୁଆ । ତାଙ୍କର ଅଗ୍ନିଗର୍ଭ ଉଦ୍‌ଗାରର ଗୋଟାଏ ଅଂଶ ଥିଲା ମୋତେ ଲକ୍ଷ୍ୟ କରି, "ଅକାଳପକ୍ୱ, ଆପୋଗଣ୍ଡ, ଦୁଗ୍‌ଧପୋଷ୍ୟ ଶିଶୁ ! ଭାବିଛୁକି ହେବୁ ତୁହି ଉତ୍କଳର ଭାବୀ ଜହରଲାଲ..." ଯାହାହେଉ ସବୁ ମିଟ୍‌ମାଟ ହେଇ ଶିବିର ପୁଣି ଠିକ୍ ଚାଲିଥିଲା । ଇତିମଧ୍ୟରେ କର୍ଣ୍ଣାଟକରୁ ଆଉଜଣେ ସେବାଦଳ ପ୍ରଶିକ୍ଷକ, ଗୁଡ୍ରାସ୍ପା ମାଲାପ୍ପା ବାଲେଶ୍ୱର ଆସିଥାନ୍ତି । ଶିବିର ଶେଷରେ ସମସ୍ତେ ପଦଯାତ୍ରା କରି, ତାଙ୍କର ତତ୍ତ୍ୱାବଧାନରେ, ସାକ୍ଷୀଗୋପାଳରେ ଗୋପବନ୍ଧୁ ସେବାସଦନ ଯାଏ ଗଲୁ ।

ଇତି ମଧ୍ୟରେ ସରକାର ଓ କଂଗ୍ରେସ ମଧ୍ୟରେ ପରସ୍ପର ସମ୍ପର୍କ ତିକ୍ତ ହୋଇଗଲାଣି । ଉଭୟ ପକ୍ଷରୁ କିଛିଦିନ ଧରି ଆକ୍ଷେପ ଚାଲିଥିଲା ଯେ ଅପର ପକ୍ଷ ଗାନ୍ଧୀ-ଆରୱିନ୍ ଚୁକ୍ତି ଭଙ୍ଗ କରିଛନ୍ତି । ଉତ୍ତର ପ୍ରଦେଶରେ ଧରପକଡ଼ ବି ଆରମ୍ଭ ହୋଇଯାଇଥାଏ । ତେଣେ ଗୋଲ ଟେବୁଲ ବୈଠକ ବିଫଳ ହୋଇଥାଏ ଓ ଗାନ୍ଧୀଜୀ ସେଠୁ ନିରାଶ ହୋଇ 'ଖାଲି ହାତରେ' ଫେରୁଥାନ୍ତି, ବାଟରେ ସ୍ୱିଜରଲ୍ୟାଣ୍ଡରେ ରୋମାଁ ରୋଲାଁଙ୍କ ସାଙ୍ଗରେ ଦେଖା କରି । ଆମେ ସାକ୍ଷୀଗୋପାଳ ବୁଲାବୁଲି କରିସାରି ପଦଯାତ୍ରାରେ ପୁରୀ ଫେରି କୁମ୍ଭାରପଡ଼ା ଥାନା ପାଖରେ ପହଞ୍ଚିବା ବେଳକୁ ଦେଖିଲୁ ଯେ ରାସ୍ତା ଅବରୋଧ କରି ପୁଲିସ ଫୌଜ ଛିଡ଼ା ହୋଇଛନ୍ତି । ପୁଲିସ୍ ଆଇନ୍‌ର ୩୨ ଧାରା କି ଫୌଜଦାରୀ ଆଇନ୍‌ର ୧୪୪ ଧାରା ଅନୁସାରେ ଆଦେଶ ଜାରି କରାଗଲା ଯେ, ଆମେ ଧରିଥିବା ଲାଠିସବୁ ଦେଇଦେବାକୁ ହେବ ଓ ଧାଡ଼ି ଭାଙ୍ଗି ଦେଇ ଦୁଇ

ଚାରି ଜଣ ଲେଖାଁ ଅଲଗା ଅଲଗା ହୋଇ ସହରରେ ପଶିବାକୁ ହେବ । ଏ ଆଦେଶରେ ସମସ୍ତଙ୍କର ରକ୍ତ ଗରମ, ଆଇନ ଅମାନ୍ୟ କରିବାକୁ ହେବ ନାହିଁ । ତେଣୁ ଆମେସବୁ ଅନିଚ୍ଛାସତ୍ତ୍ୱେ ପୁଲିସର ଆଦେଶ ପାଳନ କଲୁଁ ।

ପୁରୀରେ ଦ୍ୱିତୀୟ ଦଫା ଶିବରସବୁ ବଳିଆପଣାରେ ହେଲା । କଂଗ୍ରେସ ଅଧିବେଶନ ପାଇଁ ଏଇ ଜାଗା ବନ୍ଧାହୋଇଥାଏ ଓ ଚାରିଆନୁ କାଠ, ବାଉଁଶ, ତଲେଇ, ଟାଂଚ ଆଦି ସଂଗ୍ରହ କରାଯାଇ ଘର ତିଆରି କାମ ଚାଲିଥାଏ । ଏଠି ମୁକୁନ୍ଦ ରାଓଙ୍କ ପରିଚାଳନାରେ ଚାଲୁଥିବା ପୁରୁଷମାନଙ୍କ ଶିବିର ଓ ମହିଳା ଶିବିର ଛଡ଼ା ମୋର ପରିଚାଳନାରେ ଏକ ବାନର ସେନା ଶିବିର ଚାଲିଲା । ଏଥିରେ ତେଇଶ ଚବିଶ ଜଣ ପିଲା ଥା'ନ୍ତି । ଏଇ ଶିବିର ପୂରା ନ ହେଉଣୁ ୧୯୩୨ ଜାନୁୟାରୀ ମାସରେ ପୁଣି ସଂଘର୍ଷର ସୂତ୍ରପାତ ହୋଇଗଲା । ଗାନ୍ଧୀଜୀ ଭାରତକୁ ଫେରିବାର ଅଳ୍ପ ସମୟ ଭିତରେ କଂଗ୍ରେସକୁ ବେଆଇନ୍ ଘୋଷଣା କରିଦେଇ ଗାନ୍ଧୀଜୀ ଓ ଅନ୍ୟ ନେତାମାନଙ୍କୁ ଗିରଫ କରି ନିଆଗଲା । ଆମେସବୁ ବଳିଆପଣା ଶିବିର ଭାଙ୍ଗିଦେଇ ଯେଝା ସ୍ଥାନକୁ ଫେରିଗଲୁ ।

## ଜେଲ୍ ଅନୁଭୂତି

ଏହାପରେ କ୍ରମେ କ୍ରମେ ବାପା, ମହତାବବାବୁ, ନୀଳକଣ୍ଠବାବୁ ପ୍ରଭୃତି ଗିରଫ ହୋଇଗଲେ । ଜାନୁୟାରୀ ଛବିଶ ତାରିଖ ଦିନ କଟକରେ ଆଇନ ଭଙ୍ଗ କରି ବଜାର ଛକମାନଙ୍କରେ ସାଧାରଣ ସଭା କରିବା ସ୍ଥିର ହେଲା । ସେଦିନ ଅନ୍ୟମାନଙ୍କର ଭିତରେ ଜାହ୍ନବୀ ଦେଇ ଓ ଗୌରଗୋପାଳବାବୁ, ଦିଦିମା ଓ ନୀପେନଦା ତଥା ବୋଉ ଓ ମୁଁ, ଏମିତି ତିନି ହଳ ମା' ପୁଅ ଚୌଧୁରୀ ବଜାର ଓ ବାଲୁ ବଜାର ଛକମାନଙ୍କରେ ସଭା କରିବା ଚେଷ୍ଟାକରି ଗିରଫ୍ ହେଲୁ । ଅନ୍ୟମାନେ ବି ହେଲେ । ଆମକୁ ନେଇ କଟକ ଜେଲରେ ଦାଖଲ କରାହେଲା । ସେତେବେଳକୁ ସେଠି ନରକ ଗୁଲଜାର, ପଣ୍ଡିତ ପଢ଼ିହାରୀ, ଯଦୁମଣି ମଙ୍ଗରାଜ, କୃଷ୍ଣବଲ୍ଲଭ ଘୋଷ, ଗୁଣନିଧି ମହାନ୍ତି, ସୁଧୀର ଘୋଷ, ହରିଶ୍ଚନ୍ଦ୍ର ଦାସ ପ୍ରଭୃତି ଅନେକେ ଥା'ନ୍ତି । ପନ୍ଦର, ଷୋଳ, ସତର ନମ୍ବର ୱାର୍ଡ଼ ଭରପୁର । ଅଳ୍ପଦିନ ପରେ ଆମର ବିଚାର ହେଇ ମତେ ତିନିମାସ ସଜା ହେଲା ଓ ଦ୍ୱିତୀୟ ଶ୍ରେଣୀରେ ରଖାଗଲା ।

ଏଇଠି ଥିବାବେଳେ ଜଣେ ଲୋକର ଫାଶୀ ହେବାର ଥିଲା । ହରିଶ ହେରିକା କେତେଜଣ ତାହା ଦେଖିବା ଉଦ୍ଦେଶ୍ୟରେ ପେଟଟଣାର ବାହାନା କରି ପୂର୍ବ ଦିନ ସନ୍ଧ୍ୟାରେ ଡାକ୍ତରଖାନାରେ ଦାଖଲ ହେଲେ । ଫାଶୀ ଯନ୍ତଟା ଡାକ୍ତରଖାନାର ସାମନାରେ । ସେମାନେ ମତେ ବି ଡାକୁଥିଲେ; ମାତ୍ର ମୁଁ ଗଲିନାହିଁ । ମୋର ଗୋଟାଏ କେମିତି ଅରୁଚି ବୋଧ ହେଲା । କେହି କେହି ପରାମର୍ଶ ଦେଇଥିଲେ ଯେ, ଏସବୁ ଦେଖିଲେ ଭଲ, ମନ ଟାଣ ହେବ । ବିପ୍ଳବୀର ମନ ଶକ୍ତ ଓ ନିର୍ମମ ହେବା ଉଚିତ ବୋଲି କୁହାଯାଇଥାଏ । ମାତ୍ର ମୋର ଧାରଣା

ଯେ ଏସବୁ ଦେଖିବାର କୌତୂହଳ ମଣିଷର ସଂବେଦନଶୀଳତା କମେଇଦିଏ । ବର୍ତ୍ତମାନର ସମାଜରେ ମଣିଷକୁ ସମ୍ବେଦନହୀନତା, ନିର୍ମମତା ଓ ନିଷ୍ଠୁରତାର ପ୍ରବଳ ସଂସ୍କାର ଦିଆଯାଉଛି ଓ ଏହିସବୁ ବଳରେ ହିଁ ଏ ସମାଜ ତିଷ୍ଠିଛି । ସଂବେଦନଶୀଳତାର ପୁନରୁଦ୍ଧାର ହିଁ ପ୍ରକୃତ ବିପ୍ଳବୀର ପ୍ରଥମ ତାଲିମ ହେବା ଚାହିଁ, ଗାନ୍ଧୀଙ୍କ ଅହିଂସାର ତାତ୍ପର୍ଯ୍ୟ ଏୟା ।

ମୋର ସଜା ହୋଇଯିବା ପରେ ଯଦୁମଣିବାବୁ, ମୁଁ ଓ ଆଉ ଜଣେ କିଏ ହଜାରିବାଗ ଜେଲକୁ ବଦଳି ହେଲୁ । ଯଦୁମଣିବାବୁ ବାଟ ଯାକ ହାସ୍ୟପରିହାସରେ ସମସ୍ତଙ୍କୁ ମାତ୍ କରି ରଖିଥାନ୍ତି । ହଜାରିବାଗରେ ପହଞ୍ଚି ସମସ୍ତଙ୍କୁ ପୁରୁଣା ବନ୍ଧୁ ଭଳି ସଂଖୋଳିବାରେ ଲାଗିଲେ ଭୋଜପୁରୀ ବୋଲିଲେ, 'ରାଉର ମିଜାଜ କୈସନ ବା ? ନିମନ୍ ବା ?" ଅର୍ଥାତ୍- ଆପଣଙ୍କର ଦେହପା କେମିତି ? ଭଲ ଅଛି ତ ? "ହମ୍ ଫିର୍ ଆଗୟେ !" ମତେ ନେଇ ଏକ ନମ୍ବର ୱାର୍ଡ଼ରେ ରଖାଗଲା । ଏଠି ବାପା ଓ ନୀଳକଣ୍ଠବାବୁ ଅନ୍ୟ ବିହାରୀ ନେତାମାନଙ୍କ ସାଙ୍ଗରେ ଥା'ନ୍ତି, ଯଦୁମଣିବାବୁ ହେରିକାଙ୍କୁ ତିନି ନମ୍ବରକୁ ନିଆହେଲା । ଦାଦା ପରେ ଆସି ତିନି ନମ୍ବରରେ ଦାଖଲ ହେଲା । ଏସବୁ ୱାର୍ଡ଼ରେ ପ୍ରତ୍ୟେକରେ ଅଠେଇଶଟା ଲେଖାଁ କୋଠରୀ । ପ୍ରତ୍ୟେକ ବନ୍ଦୀକୁ ଗୋଟିଏ ଲେଖା କୋଠରୀ ମିଳିଥାଏ । ଆମ ୱାର୍ଡ଼ରେ ବାପା ହେରିକାଙ୍କ ଛଡ଼ା ଥା'ନ୍ତି ରାଜେନ୍ଦ୍ରବାବୁ (ପରେ ଭାରତର ରାଷ୍ଟ୍ରପତି) ଜୟପ୍ରକାଶଜୀଙ୍କର ଶ୍ୱଶୁର ବ୍ରଜକିଶୋରବାବୁ, କୃଷ୍ଣବଲ୍ଲଭ ସହାୟ, (ପରେ ବିହାରର ମୁଖ୍ୟମନ୍ତ୍ରୀ), ପ୍ରଜାପତି ମିଶ୍ର, ରାଜେନ୍ଦ୍ର ବାବୁଙ୍କ ସହକାରୀ ମଥୁରା ପ୍ରସାଦ, ମହାମାୟା ପ୍ରସାଦ (ପରେ ସମାଜବାଦୀ ନେତା), ସତ୍ୟନାରାୟଣ ସିଂହ ( ଯେ ପରେ ସ୍ୱାଧୀନ ଭାରତର କେନ୍ଦ୍ର ମନ୍ତ୍ରୀ ଓ ରାଜ୍ୟପାଳ ହେଲେ), ସାଂତାଳ ପରଗଣାର ନିଷ୍ଠାପର ସେବକ ମୋତିଲାଲ କେଜରୀୱାଲ୍, ଜୟପ୍ରକାଶଙ୍କର ସାନଭାଇ ରାଜେଶ୍ୱର ପ୍ରସାଦ, ନାରାୟଣ ପ୍ରସାଦ, ରାମନାରାୟଣ ସିଂହ, ମଥୁରାବାବୁଙ୍କ ପୁଅ ସୁରେନ୍ଦ୍ର, ଜଗତ୍‌ନାରାୟଣବାବୁ ଓ ଭରତ ମିଶ୍ର । ଏସବୁ କଂଗ୍ରେସକର୍ମୀଙ୍କ ଛଡ଼ା କାକୋରୀ ରେଲ୍ ଡକେଇତି ଓ ମାଛୁଆବଜାର ବୋମା ମାମଲାର ସନ୍ତ୍ରାସବାଦୀ ବନ୍ଦୀ ମଧ୍ୟ କେତେଜଣ ଥା'ନ୍ତି । ସେମାନେ ହେଲେ, ସତୀଶ ପାକଡାଶୀ, ଶୈଳେନ୍ ବସୁ, ଉପେ ଧର, ସୁରେନ୍ ବାବୁ, ଗୁଲାବ ସିଂହ, ସୁଖେନ୍ଦୁ ବିକାଶ ଦତ୍ତ ଓ ବିଶ୍ୱନାଥ । ପରେ ରାମାନନ୍ଦ ମିଶ୍ର (ପରେ ସମାଜବାଦୀ ନେତା) ବି ଆମ ୱାର୍ଡ଼କୁ ଆମଦାନୀ ହେଲେ । ଆଉ ଜଣେ ଓଡ଼ିଆ ଉଦୟନାଥ ମହାନ୍ତି ବି ଆମ ୱାର୍ଡ଼ରେ ଥା'ନ୍ତି । ସେ ଗୋଟାଏ କ'ଣ ହିସାବ ସଂକ୍ରାନ୍ତ ମାମଲାରେ ସଜା ପାଇଥା'ନ୍ତି ।

ସବୁ କୋଠରୀ ଅଲଗା ଅଲଗା, ମାତ୍ର ମଝିରେ ପାଞ୍ଚଟି କୋଠରୀରେ ପରସ୍ପରକୁ ବାଟ ଫିଟିଥାଏ । ତେଣୁ ରାତିରେ କୋଠରିସବୁ ବନ୍ଦ ହେବା ପରେ ମଧ୍ୟ ସେଥିରେ ଥିବା ବନ୍ଦୀମାନେ ପରସ୍ପର ମିଳାମିଶା କରିପାରୁଥା'ନ୍ତି । କୋଠରୀଗୁଡ଼ିକ ପ୍ରତ୍ୟେକଟି ଆଠଫୁଟରେ ଦଶଫୁଟ ହେବ । ଗୋଟିଏ ଲୁହା କବାଟ ସାମନା ପାଖରେ । ପ୍ରତ୍ୟେକଙ୍କୁ ଗୋଟିଏ ଲୁହା ଖଟ, ଗଦୀ, ବିଛଣା, କମ୍ବଳ, ଚାଦର, ତକିଆ ମିଳିଥାଏ । ଗୋଟିଏ ଲେଖା ପିତଳ ଥାଳି, ଆଲୁମିନିୟମ

ଗିଲାସ ଓ ବାଲ୍‌ଟି ଓ ଗୋଟିଏ ମଗ୍; ଏତକ ବାସନକୁସନ ମିଳିଥାଏ । ରାତିରେ ଗୋଟିଏ ଲଣ୍ଠନ ମିଳେ । ପ୍ରଥମଶ୍ରେଣୀ ବନ୍ଦୀମାନଙ୍କୁ ନିଜର ଲୁଗାପଟା ବ୍ୟବହାର କରିବାର ଅନୁମତି ଥାଏ । ଦ୍ୱିତୀୟ ଶ୍ରେଣୀ ବାଲାଙ୍କୁ ଧଳାକନାର ଲମ୍ବା ପାଇଜାମା ଓ ପୂରା ହାତ କୁର୍ତ୍ତା ହଳେଲେଖା ମିଳିଥାଏ । ଚପଲ ବି ମିଳିଥାଏ । ମୁଁ ଯିବାବେଳକୁ ସେଠି ପ୍ରଚଣ୍ଡ ଶୀତ । ସେଥିପାଇଁ ଗରମ କାମିଜ, ମୋଜା ଓ ଗାଢ଼ ନୀଳ ରଙ୍ଗର ପଶମ ପାଇଜାମା ଓ କୋଟ ବି ମିଳିଥାଏ । ସନ୍ଧ୍ୟା ସାତଟା ଅନ୍ଦାଜ କୋଠରୀରେ ତାଲା ପଡ଼େ । ତା'ର ଗୋଟିଏ କଣରେ ଦୁଇଟି ଇଟା ପଡ଼ି ଶୌଚ ଯିବା ପାଇଁ ଦୁଇଟି ମାଟି କୁଣ୍ଡ ରଖାଯାଇଥାଏ, ଦୁଇଟି ଟିଣ ଢାଙ୍କୁଣୀ ସହ । ସକାଳୁ ସେସବୁ ଉଠେଇ ନିଆହୁଏ । ଭୋର୍‌ରୁ ଉଠିବା ଲୋକ ସକାଳୁ ଏଇ ପାଇଖାନା ହିଁ ବ୍ୟବହାର କରୁଥିଲୁ । ସାବଧାନରେ ବ୍ୟବହାର କରି ଶିଖିଲେ ଘର ଅପରିଚ୍ଛନ୍ନ ହୁଏ ନାହିଁ । ସକାଳେ ସାଢ଼େ ପାଞ୍ଚଟା ଖଣ୍ଡେରେ ଘର ଖୋଲା ହୁଏ । ହଜାରିବାଗ ଜେଲର ରଚନା ଗୋଟିଏ ଶଗଡ଼ ଚକ ପରି । ମଝିରେ ଗୋଟାଏ ଉଚ୍ଚ ଗୋଲ ଘର ବା ବୁରୁଜ । ତାହା ଉପରେ ଜଣେ ପ୍ରହରୀ ରହି ସାରା ଜେଲ ଉପରେ ନଜର ରଖିପାରୁଥାଏ । ୱାର୍ଡ଼ଗୁଡ଼ିକ ଚକର ପଖି ପରି ରହିଥାଏ । ତେଣୁ ପ୍ରହରୀ ବୁରୁଜ ଉପରୁ ପ୍ରତ୍ୟେକ ୱାର୍ଡ଼ର ହତା ଭିତର ପୂରା ଦେଖିପାରେ । ଏ ହତାଗୁଡ଼ାକସବୁ ବୃତ୍ତାଂଶ ହେଇଥିବାରୁ ପ୍ରତ୍ୟେକର ବୁରୁଜ ଆଡ଼କୁ ଥିବା ପାଖଟା ତା'ର ବିପରୀତ ପାଖ ଅପେକ୍ଷା ଅଣଓସାରିଆ । ୱାର୍ଡ଼ଗୁଡ଼ାକର ଫାଟକ ସବୁବେଳେ ବନ୍ଦ ଥାଏ । କେବଳ ରବିବାର ଦିନ ବିଭିନ୍ନ ୱାର୍ଡ଼ ଭିତରେ ଯିବା ଆସିବା ଓ ମିଳାମିଶାର ଅନୁମତି ମିଳେ । ହତାର ଲମ୍ବ ପାଖର ଗୋଟାକରେ କୋଠରୀ ଧାଡ଼ି । ଅଣଓସାରିଆ ମୁଣ୍ଡପାଖକୁ ପାଣିର ହାଉଦା ଓ ଚଉତରା ଥାଏ । ନଳରେ ପାଣି ଆସେ । ହତାର ବିପରୀତ ମୁଣ୍ଡରେ ପାଇଖାନା ଥାଏ । ଗୋଟାଏ ଅଶ୍ୱତ୍ଥ କି ଆଉ କି ଗଛ ଆମ ୱାର୍ଡ଼ର ଗୋଟାଏ ପାଖକୁ ଥାଏ । ତା'ର ମୂଳରେ ଚଉତରା ବନ୍ଧା ହୋଇଥାଏ । ଉପରଓଳି ସେଠି ସମସ୍ତେ ବସାଉଠା କରନ୍ତି । ବାକି ହତା ମଝିରେ ଗୋଟାଏ ବ୍ୟାଡ଼ମିଣ୍ଟନ୍ କୋର୍ଟ ଥାଏ ।

ବାପା ଓ ମୁଁ ପାଖ ପାଖ କୋଠରୀରେ ଥାଉ । ବାପାଙ୍କ ସେପାଖକୁ ନୀଳକଣ୍ଠବାବୁ ଥା'ନ୍ତି । ସେଠି ମୋର ଦୈନନ୍ଦିନ କାର୍ଯ୍ୟକ୍ରମଟା ଗୋଟାଏ ଧାରାରେ ପଡ଼ିଗଲା । ସକାଳୁ ନିତ୍ୟକର୍ମ ସାରି ଆସନ, ନମସ୍କାର କରେ । ତା' ପରେ ଉପେନ୍ ଧର ସାଙ୍ଗରେ ହତା ଚାରିପଟେ ଅନେକ ବେଳଯାଏ ଦୌଡ଼େ, ଯେତେଦୂର ମନେପଡ଼େ ପ୍ରତିଦିନ ଦୁମାଇଲ ଖଣ୍ଡେ ଦୌଡ଼ା ହେଉଥିଲା । ବାପାଙ୍କ ସାଙ୍ଗରେ ପାଉଁରୁଟି ଓ ଦହି ଜଳଖିଆ ହୁଏ । ସେଠୁ ସେ ସୂତା କାଟି ବସନ୍ତି ଓ ମୁଁ ତାଙ୍କ ପାଖରେ ବସି ବହି ପଢ଼େ, ସେ ଶୁଣନ୍ତି । ଏ ଜେଲ୍‌ରେ ମୋର ରହଣି ଭିତରେ ଆମେ ଦୁଇଖଣ୍ଡ ମହତ୍ତ୍ୱପୂର୍ଣ୍ଣ ବହି ପଢ଼ି ଶେଷ କରିଥିଲୁ । ଗୋଟିଏ ହେଲା ଏଚ୍.ଜି. ୱେଲସ୍‌ଙ୍କର "ଦି ଆଉଟ୍‌ଲାଇନ୍ ଅଫ୍ ୱାର୍ଲଡ୍ ହିଷ୍ଟ୍ରି" (ବିଶ୍ୱ ଇତିହାସର ରୂପରେଖ) ଓ ଅନ୍ୟଟି ମେଜର ବି.ଡ଼ି. ବସୁଙ୍କର "ଦି ରାଇଜ ଅଫ୍ କ୍ରିଷ୍ଟନ୍ ପାୱାର ଇନ୍ ଇଣ୍ଡିଆ" (ଭାରତରେ

ଖ୍ରୀଷ୍ଟାନ୍ ରାଜତ୍ୱର ଉଦୟ) । ମୋର ପିଲାଦିନେ ଇତିହାସ ପ୍ରତି ଘୋର ବିତୃଷ୍ଣା ଥିଲା । ପିଲାଦିନେ ଯେଉଁସବୁ ସ୍କୁଲ ପାଠ୍ୟ ଇତିହାସ ପଢ଼ିଥିଲି ସେଗୁଡ଼ାକ ମୋତେ ଅତି ନୀରସ ଓ ଅରୁଚିକର ବୋଧ ହେଉଥିଲା । ୱେଲସ୍‌ଙ୍କର ବହିପଢ଼ି ଇତିହାସ ବିଷୟରେ ମୋର ଧାରଣା ବଦଳିଗଲା ଓ ମନର ଦିଗ୍‌ବଳୟ ସୁଦୂର ପ୍ରସାରିତ ହୋଇଗଲା । ତେବେ ତାଙ୍କର ଇତିହାସରେ ଭାରତର ସ୍ୱାଧୀନତା ଆନ୍ଦୋଳନ ପ୍ରତି ନ୍ୟାୟ କରାହୋଇ ନାହିଁ ବୋଲି ଆମେ ଅନୁଭବ କରିଥିଲୁ । ମୋର ସେତେବେଳକୁ ମୁଣ୍ଡରେ କିଛି କିଛି ସମାଜବାଦୀ ଚିନ୍ତାଧାରା ପଶିଲାଣି, ସେଥିପାଇଁ ସେ ବହିରେ ୱେଲ୍‌ସ ବ୍ୟକ୍ତିଗତ ସମ୍ପତ୍ତି ବିଷୟରେ ଯେଉଁ ମତ ବ୍ୟକ୍ତ କରିଛନ୍ତି, ତାହା ସହିତ ଏକମତ ନ ହୋଇ ପାରି ସେ ବିଷୟରେ ବହୁତ ଚିନ୍ତା କରିଥିବାର ମନେ ପଡ଼େ ।

ମେଜର ବସୁଙ୍କ ବହିରେ ଭାରତରେ ଇଂରେଜଙ୍କର ରାଜତ୍ୱ ବିସ୍ତାରରେ ସମସ୍ତ କୂଟ କପଟ ଓ ନୀଚତାକୁ ବିଶଦ ଭାବରେ ଖୋଲି ରଖିଦିଆ ହେଇଥାଏ । ବହୁତ ଦଲିଲପତ୍ରରୁ ସେ ସେଥିରେ ପ୍ରମାଣ ଉଦ୍ଧୃତ କରିଥା'ନ୍ତି । ଏ ଧରଣର ବହି ସେତେବେଳେ ଜେଲ୍ ଭିତରକୁ ଆସିବାକୁ ଦେବାର ନୀତି ନଥିଲା । ମାତ୍ର ଜେଲ୍ କର୍ତ୍ତୃପକ୍ଷ ବୋଧହୁଏ ଲେଖକଙ୍କ ନାମରେ ମେଜର ଉପାଧି ବହିର ନାମରେ 'ଖ୍ରୀଷ୍ଟାନ୍ ରାଜତ୍ୱ' ଶବ୍ଦ ଦେଖି ତାହାକୁ ନିରାପଦ ଓ ନିରୀହ ବିଚାରିଥିବେ । ଏ ବହିରୁ ବି ଭାରତ ଇତିହାସ ବିଷୟରେ ଏକ ନୂଆ ଦୃଷ୍ଟିକୋଣ ମିଳିଲା ।

ଯା'ପରେ ଆମେ ଉର୍ଦ୍ଦୁ ପଢ଼ି ବସୁ । ମୁଁ ଯିବା ପୂର୍ବରୁ ଜଗତ୍‌ନାରାୟଣବାବୁଙ୍କ ସାହାଯ୍ୟରେ ବାପା ଉର୍ଦ୍ଦୁ ପଢ଼ା ଆରମ୍ଭ କରିଥିଲେ । ମୁଁ ବି ତାଙ୍କ ସାଙ୍ଗରେ ଯୋଗ ଦେଲି । ସକାଳୁ ଘଣ୍ଟାଏ ଖଣ୍ଡେ ପଢ଼ିବା ଛଡ଼ା ଅନ୍ୟ ସମୟରେ ମୁଁ ଅନୁବାଦ, ପ୍ରବନ୍ଧ ଲେଖା ଆଦି ମଧ୍ୟ କରେ । ଦିନକୁ ତିନି ଘଣ୍ଟା ଖଣ୍ଡେ ଏହା ପିଛା ଯାଉଥାଏ । ରାଜେନ୍ଦ୍ରବାବୁ ତ ଫାର୍‌ସୀ ମଧ୍ୟ ଜାଣିଥିଲେ, ସେଥିପାଇଁ ଯେଉଁସବୁ କଠିନ ଶବ୍ଦ ଓ ପ୍ରୟୋଗରେ ଜଗତ୍‌ନାରାୟଣବାବୁ ଅଟକି ଯାଉଥିଲେ, ସେଠି ରାଜେନ୍ଦ୍ରବାବୁ ହାତ ଲଗାଇ ଦେଉଥିଲେ । ସେଠି ଥିବା ଭିତରେ ଉର୍ଦ୍ଦୁ ମୋର ଭଲ ରକମ ଆୟତ୍ତ ହେଇଯାଇଥିଲା । ପ୍ରବେଶିକା ସ୍ତରଯାଏ ପାଠ୍ୟ ପୁସ୍ତକତକ ପଢ଼ି ଦେଇଥିଲି ।

ଉର୍ଦ୍ଦୁ ଭାଷାରେ ଅନେକ ଅକ୍ଷରର ତଳେ ବା ଉପର କେଉଁଥିରେ ଏକ, କେଉଁଥିରେ ଦୁଇ ତ କେଉଁଥିରେ ତିନୋଟି ନୁକ୍ତା ବା ବିନ୍ଦୁ ଥାଏ । ଏଇ ବିନ୍ଦୁ ଦ୍ୱାରା ହିଁ ସେ ଅକ୍ଷରକୁ ଚିହ୍ନିହୁଏ । କୌଣସି ଶବ୍ଦର ମଝିରେ ବା ଆରମ୍ଭରେ ଥିବା ପ,ତ, ସ, ବ, ୟ ଓ ନ ଏକା ପ୍ରକାର ଲେଖାଯାଏ, କେବଳ ତଳେ ବା ଉପରେ ଥିବା ବୁନ୍ଦାରୁ ଅକ୍ଷରଟା କ'ଣ ତାହା ବୁଝାଯିବ । ସେହିପରି ଆକାର, ଇକାର, ଉକାର ସୂଚେଇବା ପାଇଁ ମଧ୍ୟ ଅକ୍ଷରର ଉପର ବା ତଳେ ଚିହ୍ନ ଦିଆଯାଏ । ମାତ୍ର ସାଧାରଣତଃ ହାତ ଲେଖାରେ ଏସବୁ ନୁକ୍ତା ଓ ମାତ୍ରା ଛାଡ଼ିଦିଆଯାଏ । ବିଷୟର ପୂର୍ବାପର ସମ୍ବନ୍ଧ ଦେଖି ଓ ଶବ୍ଦର ଆକୃତି ଦେଖି କେଉଁ ଅକ୍ଷରଟା କ'ଣ ତାହା ପାଠକ ଅନ୍ଦାଜ କରିନିଅନ୍ତି । ଏ ବିଷୟରେ ଜଗତ୍‌ବାବୁ ଗୋଟିଏ ହସ ଗପ ଶୁଣେଇଥିଲେ । ଜଣେ ବେପାରୀ ଘରକୁ ଚିଠି ଲେଖିଲେ - "ଆବ୍‌ବାଜାନ୍ ଆଜମେର ଗୟେ । ବଡ଼ୀ ବହୀ କୋ

ଲେକର ଆନା" - ବାପା ଆଜମେର ଗଲେ । ବଡ଼ ବହି ନେଇ ଆସିବ । ସେ ଚିଠି ଘରେ ପଢ଼ା ହେଲା : ଆବ୍‌ବାଜାନ୍ ଆଜ ମର୍‌ଗୟେ । ବଡ଼ୀ ବୋହୁ କୋ ଲେକର ଆନା ।" ବାପା ଆଜି ମରିଗଲେ । ବଡ଼ ବୋହୂକୁ ନେଇଆସିବ । ଘରେ କାନ୍ଦବୋବାଳି ପଡ଼ିଲା ।

ରାଜେନ୍ଦ୍ରବାବୁ ଆଉ ଏକ କାହାଣୀ ଶୁଣାଇ ଥିଲେ । ବିହାରରେ ଡୁମ୍‌ରାଓଁର ପୂର୍ବତନ ଜମିଦାରଙ୍କର ଉଇଲ୍ ନେଇ ଏକ ମକଦ୍ଦମା ବିଲାତର ପ୍ରିଭି କାଉନ୍‌ସିଲ୍ ଯାଏ ଯାଇଥିଲା । ସେଥିରେ ରାଜେନ୍ଦ୍ରବାବୁ ଗୋଟିଏ ପକ୍ଷର ସହାୟକ ଓକିଲ ଭାବରେ ଯାଇଥିଲେ । ଏ ମକଦ୍ଦମାର ଭାଗ୍ୟ ବହୁତ ପରିମାଣରେ ଗୋଟିଏ ଉର୍ଦ୍ଦୁ ଶବ୍ଦର ଅର୍ଥ ଉପରେ ନିର୍ଭର କରିଥିଲା । ଉର୍ଦ୍ଦୁରେ ଲେଖା ଓ୍ୱସିୟତ୍‌ନାମାରେ ଗୋଟିଏ ଶବ୍ଦ ଥିଲା ଯାହାକୁ ଦୁଇ ପ୍ରକାରରେ ପଢ଼ିହେବ: ଇନ୍‌ଜାନିବ୍ ଓ ଇୟାନତ୍ । ପ୍ରଥମ ପାଠଟି ଠିକ୍ ହେଲେ ଅର୍ଥ ହେବ ଯେ, ସମ୍ପତ୍ତିର ଅମୁକ ଅଂଶକୁ ଉଇଲକର୍ତ୍ତା ନିଜ ପାଇଁ ରଖିଲେ । ତା' ହେଲେ ତାଙ୍କର ପୁତ୍ର ପୌତ୍ର ତାହା ପାଇବେ । ଅନ୍ୟ ଅର୍ଥଟି ଠିକ୍ ହେଲେ ସେ ତାହା ଅନ୍ୟକୁ ଦେଲେ ବୋଲି ବୁଝାଯିବ । ବାସ୍, ଏହାରି ଉପରେ ପ୍ରିଭି କାଉନ୍‌ସିଲ୍ ।

ଏସବୁ ଛଡ଼ା ସେଠି ବ୍ୟାଡ୍‌ମିଣ୍ଟନ୍‌ର ଧୂମ ଚାଲିଥାଏ । ହଜାରିବାଗର ଶୀତରେ ଦିନଯାକ ଯେତେବେଳେ ମନ ହେଲା ପିଟା ଚାଲେ । ବାପା, ରାଜେନ୍ଦ୍ରବାବୁ ହେରିକା ସମସ୍ତେ ଉତ୍ସାହରେ ଖେଳୁଥା'ନ୍ତି । ବ୍ରଜକିଶୋରବାବୁଙ୍କର ଗଣ୍ଠିବାତ ହେଇ ଆଣ୍ଠୁ ଓ ଅଣ୍ଟା ବଙ୍କା ହେଇଯାଇଥାଏ । ସିଧା ହେଇ ଛିଡ଼ା ହେଇ ପାରୁ ନ ଥାନ୍ତି । ମାତ୍ର ସେ ବି କମ୍ ଯା'ନ୍ତି ନାହିଁ । ଶାଳଗ୍ରାମ ପରି ଉଭା ଓ ଶୁଆରେ ସମାନ ଯେ ପ୍ରଜାପତି ମିଶ୍ର ସେ ବି । ସମସ୍ତେ ଏଥିପାଇଁ ରବର କେଡ଼୍‌ସ୍ ଜୋତା କିଣି ଥା'ନ୍ତି । ସାଧାରଣତଃ ଉପରଓଳି ଖେଳ ପରେ ସମସ୍ତେ ଯାଇ ଗଛମୂଳେ ଚଉତରାରେ ବସନ୍ତି । ଦୁନିଆଯାକର ଗପ ପଡ଼େ । ରାଜେନ୍ଦ୍ରବାବୁ ପ୍ରଭୃତି ନିଜର ଯେଉଁସବୁ ଅଭିଜ୍ଞତା ବର୍ଣ୍ଣନା କରିଥିଲେ ସେସବୁ ଲେଖି ରଖିଥିଲେ ବହୁତ ମୂଲ୍ୟବାନ ତଥ୍ୟ ମିଳିଥା'ନ୍ତା ।

ପୁରୁଲିୟାର ନିବାରଣଚନ୍ଦ୍ର ଦାସଗୁପ୍ତ ବି ସେଇ ଜେଲ୍‌ରେ ତିନି ନମ୍ବର ୱାର୍ଡ଼ରେ ଥା'ନ୍ତି । ସେ ଥରେ ଥରେ ଆମ ୱାର୍ଡ଼କୁ ଆସନ୍ତି । ମୁଁ ଥିବାବେଳେ କେତେଥର ଗାନ୍ଧୀବାଦ ଓ ମାର୍କ୍ସବାଦ ଦର୍ଶନର ତୁଳନା କରି ବକ୍ତୃତା ଦେଇଥିଲେ । ରାଜେନ୍ଦ୍ରବାବୁ ହେରିକା ବି ଶୁଣିବା ପାଇଁ ବସୁଥିଲେ । ନିବାରଣବାବୁଙ୍କର ଏସବୁ ବିଷୟରେ ଗଭୀର ଅଧ୍ୟୟନ ଥିଲା । ତେବେ ତାଙ୍କ ବକ୍ତୃତା ମତେ ଆକର୍ଷକ ଜଣାପଡୁ ନଥିଲା । ମୋର କିଛି ହେଲେ ମନେ ନାହିଁ, କେବଳ କହୁଥିବା ବେଳରେ ତାଙ୍କର ସୌମ୍ୟ, ଶାନ୍ତ ରୂପ ଛଡ଼ା । ତାଙ୍କର ଆଲୋଚନାଟା ତତ୍ତ୍ୱଜ୍ଞାନର ଜଟିଳ ଓ ଦୁରୂହ ସ୍ତରରେ ହେଉଥିଲା ବୋଲି ମନେ ହୁଏ ।

ସେ ହତା ଭିତରେ ମୁହିଁ ଥିଲି ସବୁଠୁଁ ସାନ । ମଥୁରାବାବୁଙ୍କ ପୁଅ ସୁରେନ୍ଦ୍ର ମୋଠୁଁ ଅଳ୍ପ ବଡ଼ । ତା' ଉପରକୁ ରାଜେଶ୍ୱର । ଉପେନ ଧରର ବୟସ ସେତେବେଳେ ପଚିଶ ଛବିଶ ହେବ । ସୁରେନ ଓ ଉପେନ ସାଙ୍ଗରେ ମୋର ଖୁବ୍ ବନ୍ଧୁତା ହେଇଥିଲା । ବାକୀ ପଢ଼ାଶୁଣା

ଯୋଗୁଁ ମୋର ସମୟ ବଡ଼ ମଣିଷଙ୍କ ମେଳରେ ବେଶି କଟୁଥିଲା । ଅନ୍ୟ ଏକ ୱାର୍ଡ଼ରେ ରାମବୃକ୍ଷ ବେନୀପୁରୀ ଥା'ନ୍ତି । ସେ ପରେ ଏକ ଟାଣୁଆ ଲେଖକ ଓ ସମାଜବାଦୀ ନେତା ହେଲେ । ସେ ବେଳେବେଳେ ଆମ ୱାର୍ଡ଼କୁ ଆସନ୍ତି । ଆହୁରି ଜଣେ ଦୁଇଜଣ ଯୁବକ ବି ଆସନ୍ତି । ଯୁବକମାନଙ୍କର ଆଡ଼ଡ଼ା ବସେ । ଭବିଷ୍ୟତ ବିଷୟରେ ବହୁତ କଳ୍ପନା ଜଳ୍ପନା ହୁଏ, ବାକ୍ୟ ଚର୍ଚ୍ଚା ହୁଏ । ମୁଁ ସେଥିରେ ବେଶୀ ଯୋଗ ଦିଏ ନାହିଁ, ସେଥିପାଇଁ ଥରେ ବେନୀପୁରୀ ମନ୍ତବ୍ୟ କରିଥିଲେ - "ସେ ପିଲା ହେଲେ କ'ଣ ହେବ, ବୁଢ଼ାଙ୍କ ସାଙ୍ଗରେ ହିଁ ତା'ର ବେଶି ମେଳ ।"

ସନ୍ତ୍ରାସବାଦୀ ବନ୍ଦୀଙ୍କ ଭିତରେ ପାକଡାଶୀ ମହାଶୟ ଓ ସୁରେନ୍‌ବାବୁ ତାଙ୍କର ପଢ଼ାଶୁଣା ଓ ଚିନ୍ତନ ମନନ ନେଇ ଥା'ନ୍ତି । ଅନ୍ୟମାନଙ୍କ ସାଙ୍ଗରେ ବେଶୀ ମିଶାମିଶି କରନ୍ତି ନାହିଁ । ଶୈଳେନ୍‌ବାବୁ ବହୁତ ପଢ଼ାଶୁଣା କରୁଥା'ନ୍ତି । ତାଙ୍କ ପାଖରେ ବହୁତ ବହିପତ୍ର ଥାଏ । ମୁଁ ବେଳେବେଳେ ଯାଏ । ଗପସପ ହୁଏ । ଉପେନ ଧର ସାଙ୍ଗରେ ଖେଳ କସରତ ସୂତ୍ରରେ ହିଁ ବେଶୀ ବନ୍ଧୁତା ହେଇଥିଲା । ସେ ମତେ ତାଙ୍କ ଦଳକୁ ରିକ୍ରୁଟ କରିବା ଉଦ୍ଦେଶ୍ୟ ରଖିଥିବ । ମୁଁ ବାହାରକୁ ଗଲେ କ'ଣ କରିବି ସେ ବିଷୟରେ ଆଲୋଚନା ପକାଏ । ଏତେ ଶ୍ରୀ ଅରବିନ୍ଦଙ୍କର "ଗୀତାର ଭୂମିକା" ପଢ଼ିବାକୁ ଦେଇଥିଲା । ଭଲ ବୁଝି ପାରି ନଥିଲି ଓ ଆକର୍ଷକ ବି ବୋଧ ହେଇ ନଥିଲା । ଜେଲର ସୁପରିଟେଣ୍ଡେଣ୍ଟ ଉପେନ୍ ହେରିକାଙ୍କ ସାଙ୍ଗରେ ମୋର ମିଳାମିଶା ଦେଖି ବୋଧହୁଏ ଟିକିଏ ଉଦ୍‌ବିଗ୍ନ ହେଇ ବାପାଙ୍କ ପାଖରେ ସେ ବିଷୟରେ ମନ୍ତବ୍ୟ କରିଥିଲେ, ମାତ୍ର ; ବାପା ମତେ ସେ ବିଷୟରେ କିଛି କହି ନାହାନ୍ତି କି କୌଣସି ଉଦ୍‌ବେଗ ପ୍ରକାଶ କରିବାର ଦେଖି ନାହିଁ ।

ଉପେନ୍ ଟିକିଏ ହୁଣ୍ଡା ରକମର ଓ ପେଟୁ । ହୋଲି ଉପଲକ୍ଷରେ ଦିନେ ମାଲପୁଆ ହେଲା । ବିହାରରେ ତ ମାଲପୁଆ ଏକମାତ୍ର ପିଠା । ପୌଆ ଯେଉଁଦିନ ହେବ ସେଦିନ ବିହାରୀ ଭାଇମାନଙ୍କର ଆନନ୍ଦ ଦେଖେ କିଏ । ସେଦିନ ଉପେନ୍ ଆକଣ୍ଠ ମାଲପୁଆ ଖାଇଦେଲା । ସନ୍ଧ୍ୟାରେ ନମ୍ବର ବନ୍ଦ ହେବା ପରେ ତାକୁ ଉଚାଟ ଲାଗିଲା । ବିଚାରିଲା ଯେ କସରତ୍ କଲେ ହଜମ ହେଇଯିବ । ସେଠୁ ଥୋଡ଼ାଏ ଦଣ୍ଡବୈଠକ କରିଗଲା । ତା'ପରେ ପ୍ରଚଣ୍ଡ ଶୋଷ ହେବାରୁ ଗୁଡାଏ ପାଣି ପିଇଦେଲା । ଆଉ ଯାଏ କୁଆଡ଼େ, ଚିତ୍‌ପଟାଂ ହେଇ ପଡ଼ି ଗାଁ ଗାଁ ହେବାକୁ ଲାଗିଲା । ପୁଣି ୱାର୍ଡ଼ର ଆସି ଅବସ୍ଥା ଦେଖି ଡାକ୍ତରକୁ ଡାକିବାରୁ ସେ ତାକୁ ବାନ୍ତିଫାନ୍ତି କରେଇ ସାଷ୍ଟମ କଲେ ।

ମୁଁ ସେଠି ଥିବା ଭିତରେ ଜଣକୁ ଫାଶୀ ଦେଲା । ସେଦିନ ସେସବୁ କାଣ୍ଡ ସରିବାଯାଏ ପ୍ରାୟ ଅଧିକା ଘଣ୍ଟାଏ ସମୟ ୱାର୍ଡ଼ସବୁ ବନ୍ଦ ରହିଲା । ଫାଶୀ ଦଣ୍ଡର ବର୍ବରତା ବିଷୟରେ ସେଦିନ ମୁଁ ବହୁତ ଭାବିଥିଲି ଓ ବହୁତ ଉତ୍ତେଜିତ ହେଇଥିଲି ।

# ଜେଲ୍ ବାହାରେ

ସେଠୁ ଖଲାସ ହେଇ ମୁଁ ଭାଗଲପୁର ଗଲି ବୋଉ ଓ ଖୁଡ଼ୀଙ୍କ ସାଙ୍ଗରେ ଦେଖା କରିବାକୁ । ସେମାନେ ଏଥର ବି ସେଠିକି ବଦଳି ହେଇ ଥା'ନ୍ତି । ବାଟରେ ପାଟନାରେ କ୍ୟାମ୍ପ ଜେଲ୍‌ରେ ପଣ୍ଡିତ ପଢ଼ିହାରୀ ହେରିକାଙ୍କ ସାଙ୍ଗରେ ଦେଖା କରିବା ଚେଷ୍ଟାକଲି, ମାତ୍ର ଅନୁମତି ମିଳିଲା ନାହିଁ । ତେବେ ଗେଟ୍ ପାଖରେ ତାରବାଡ଼ ସେପାଖେ ଜମା ହୋଇଥିବା କେତେକ ଓଡ଼ିଆ ବନ୍ଦୀଙ୍କୁ ଦେଖିବାର ଓ ପରସ୍ପର ଅଭିବାଦନ ବିନିମୟର ସୁଯୋଗ ମିଳିଲା ଓ ସେତିକିରେ ସନ୍ତୁଷ୍ଟ ହେବାକୁ ହେଲା । କ୍ୟାମ୍ପ ଜେଲ୍‌ରେ ପାଚିରୀ ନଥିଲା । କଣ୍ଟା ତାରର ବାଡ଼ ଘେରା ହେଇଥାଏ । ସେଥିରେ ବାହାର ଭିତର ସବୁ ଦେଖାଯାଉଥାଏ ।

କଟକ ଫେରିବା ପରେ ମୁଁ ବାପା ଦେଇଥିବା ପରାମର୍ଶ ଅନୁସାରେ ବାଲେଶ୍ୱର ଯାଇ ସେଠା କର୍ମୀମାନଙ୍କୁ ସଂଖୋଳି ଆସିଲି ଓ ନୀଳକଣ୍ଠବାବୁଙ୍କ ଗାଁକୁ ମଧ୍ୟ ଯାଇ ତାଙ୍କ ପରିବାରର ସମସ୍ତଙ୍କୁ ଯାଇ ଭେଟି ଆସିଲି । ବାଲେଶ୍ୱରରେ କଂଗ୍ରେସ ଅଫିସ୍ ବେଆଇନ୍ ହେଲା । ପୁଲିସ୍ ଦଖଲରେ ଥିବା ଯୋଗୁଁ କର୍ମୀମାନେ ଯାଇ 'ଫରାସୀଡ଼ିଙ୍ଗୀ' ରେ ରହିଥା'ନ୍ତି । ଏ ଗୋଟାଏ ଗାଁ ସେତେବେଳେ ସୁଦ୍ଧା ପଣ୍ଡିଚେରୀ ଓ ଚନ୍ଦନନଗର ପରି ଫରାସୀମାନଙ୍କର ଦଖଲରେ ଥାଏ । ସେଠି ଫରାସୀ ସରକାର ପକ୍ଷରୁ ଶାସନର କିଛି ବ୍ୟବସ୍ଥା ତ ଦିଶୁ ନଥାଏ, ମାତ୍ର ବ୍ରିଟିଶ୍ ଭାରତର ପୁଲିସ୍ ତା' ଭିତରକୁ ପଶୁ ନଥା'ନ୍ତି । ତେଣୁ କର୍ମୀସବୁ ସେଇଠି ରହି ବାହାରେ ଆସି ସତ୍ୟାଗ୍ରହ କରୁଥା'ନ୍ତି । ଏଠି ସେତେବେଳେ ସେମାନଙ୍କ ଭିତରେ ମୁଖ୍ୟ ଭାବରେ ସର୍ଦ୍ଦାର ସୁରେନ୍ଦ୍ର ଥିବାର ମନେ ପଡୁଛି । ପୁରୀ ଜିଲ୍ଲାରୁ ବ୍ରାହ୍ମଣ ଶାସନ ଗାଁକୁ ପ୍ରଥମ ଥର କରି ଦେଖିବାର ଉପଲକ୍ଷ ନୀଳକଣ୍ଠବାବୁଙ୍କ ଗାଁ ଶ୍ରୀରାମଚନ୍ଦ୍ରପୁରକୁ ଯିବାର ହେଲା । ଗାଁର ଦାଣ, ଧାଡ଼ିଧାଡ଼ି ଘର ଓ ନଡ଼ିଆଗଛ ଦେଖି ମତେ ଖୁବ୍ ଭଲ ଲାଗିଥିଲା ।

ସେତେବେଳକୁ ଆନ୍ଦୋଳନ ମାନ୍ଦା ଅବସ୍ଥାରେ ଥାଏ । ବିଶେଷ କିଛି ହେଉ ନଥାଏ । କେତେକ କର୍ମୀ ପ୍ରଚାରପତ୍ର ଆଦି ବାଣ୍ଟିବା କାମ କରୁଥା'ନ୍ତି । ସ୍ୱରାଜ ଆଶ୍ରମ ପୁଲିସ୍ ଦଖଲରେ ଥିବାରୁ ସେମାନଙ୍କର ରହିବା ପାଇଁ ଜାଗା ନ ଥାଏ । ଏଥର ଜୈନ ମନ୍ଦିରରେ ରହିବାର ସୁବିଧା ଆଉ ନ ଥିଲା । କର୍ମୀମାନେ ନଈକୂଳେ ବୁରୁଜ ପାଖରେ ଦିନଯାକ ରହୁଥା'ନ୍ତି ଓ ରାତିରେ ଆସି ଆମ ଘର ପିଣ୍ଡାରେ ଶୋଉଥା'ନ୍ତି । ଆମେ ସେତେବେଳକୁ ଏକତାଲା ଘରକୁ ଚାଲି ଆସିଲୁଣି । ଦୋତଲାଟା ଭଡ଼ା ଦିଆଗଲାଣି; ଉମାକାନ୍ତବାବୁଙ୍କ ପରିବାର ୧୯୩୧ ରୁ ସେଠୁ ଅନ୍ୟତ୍ର ଉଠି ଯାଇଥା'ନ୍ତି ।

ଏଇ ସ୍ୱରାଜ ଆଶ୍ରମ ଦଖଲ ସତ୍ୟାଗ୍ରହ ମୁଁ ପ୍ରଥମ ଥର କଟକ ଜେଲ୍‌ରେ ଥିବାବେଳେ ଚାଲିଥିଲା । ଦଳ ଦଳ ସତ୍ୟାଗ୍ରହୀ ଆଶ୍ରମ ଦଖଲ କରିବାକୁ ଯାଉଥା'ନ୍ତି ଓ ସେମାନଙ୍କୁ ମାଡ଼ ହେଉଥାଏ । ଗୋଲକ ମହାରଣା ଓ ଆଉ କାହାକୁ ପୁଲିସ୍ ଉପର ମହଲାରୁ ତଳକୁ ଠେଲି

ପକେଇ ଦେବା ଯୋଗୁଁ ସେମାନେ ଗୁରୁତର ଭାବରେ ଆହତ ହେଇଥିଲେ । ଜେଲ୍‌ରେ ତ ଖବର ହେଇଗଲା ଯେ ଗୋଲକ ମହାରଣା ମରି ଯାଇଛନ୍ତି । କଟକର ସେତେବେଳେ ପୁଲିସ୍ ସୁପରିଟେଣ୍ଡେଣ୍ଟ ଲେନ୍ ସାହେବ ଏସବୁ ମାଡ଼ପିଟରେ ଅଗ୍ରଣୀ ବୋଲି ଶୁଣାଯାଇଥିଲା ।

କଟକ ଫେରି ମୁଁ ପ୍ରଚାରପତ୍ର ଛପା ଓ ବଣ୍ଟାରେ କିଛି କିଛି ସାହାଯ୍ୟ କଲି । ଖାସ୍ କାମ ନ ଥାଏ । ସୁଧୀରବାବୁ ବି ସେତେବେଳକୁ ଖଲାସ ହୋଇଥା'ନ୍ତି । ଆମେ ଦୁହେଁ ବହୁତ ସମୟ ଛୋରା ଖେଳ ଅଭ୍ୟାସ କରୁଥାଉ । ପୁରୀରେ ସେବା ଦଳ ଶିବରରେ ମହିଳାମାନଙ୍କୁ ଛୋରା ଖେଳର ତାଲିମ ଦିଆଯାଇଥିଲା । ପୁରୁଲିୟାର ନିବାରଣବାବୁଙ୍କର ଶିଳ୍ପାଶ୍ରମରେ ବାସୁମାସୀ (ବାସନ୍ତୀ ଦାସଗୁପ୍ତ), ନିବାରଣ ବାବୁଙ୍କ ଝିଅ ଓ ଉର୍ମିଳାଦି, ଉର୍ମିଳା ଘୋଷ, ଅତୁଳଚନ୍ଦ୍ର ଘୋଷଙ୍କ ଝିଅ, ଶିବିରକୁ ଆସି ଏସବୁ ଶିକ୍ଷା ଦେଇଥିଲେ । ଆମେ ବି ସେସବୁ ଶିଖି ନେଇଥାଉ । କଟକରେ ଆମ ଘର ଦାଣ୍ଡରେ ଏସବୁ ଅଭ୍ୟାସ କରୁଥାଉ । ଏସବୁ ଦେଖି ପୁଲିସ୍ ସନ୍ଦିଗ୍ଧ ହେଇ ଆମ ଘର ସାମନାରେ ଚର ରଖିଥା'ନ୍ତି । ଏମାନଙ୍କୁ ଆମେ 'ଉଚ୍ଚିଂଡେର ଛା' କହୁଥାଉ । ବଙ୍ଗଳାରେ 'ଲାଲକାଲୋ' ବୋଲି ପିଲାଙ୍କର ଏକ ଉପାଦେୟ ଗପ ବହିରୁ ଜନ୍ତୁଜନ୍ତାଙ୍କର ଭିତରୁ ଚର ବା ପ୍ରହରୀ କାମ କରୁଥିବା ଏକପ୍ରକାର ଝିଣ୍ଟିକା ବଂଶର ନାଁ ଅନୁସାରେ ଏ ନାଁ ଦିଆଯାଇଥାଏ ।

ଦିନେ ସନ୍ଧ୍ୟାବେଳେ ସୁଧୀରବାବୁ ଓ ମୁଁ ନଈକୂଳେ ବୁଲୁଥୁ । ଜଣେ ଚର ବନ୍ଧ ଉପରେ ବସିଥିବାର ଦେଖିଲୁ । ଟିକେ ମଜା ଦେଖିବା ପାଇଁ ଆମେ ତାକୁ ଶୁଣେଇ ଶୁଣେଇ କଥାବାର୍ତ୍ତା ହେଲୁ ଯେ ଆଜି ରାତିରେ ଅମୁକଆଡ଼େ ଯିବା, ଯା କରିବା ଇତ୍ୟାଦି । ସେ ଲୋକ ତୁରନ୍ତ ଉଠି ସାଇକେଲ୍‌ରେ ଚାଲିଗଲା । ଆମେ ଘରକୁ ଫେରିଲୁ । ଘଣ୍ଟାଏ ଖଣ୍ଡେ ପରେ ପୁଲିସ ଆସି ହାଜର, ମତେ ଗିରଫ କରିବା ପାଇଁ । ତା'ପର ଦିନ ଭୋର୍‌ରୁ ସୁଧୀରବାବୁ ମଧ୍ୟ ଗିରଫ ହେଲେ । କଟକ ଜେଲ୍ ଭିତରେ ଆମର ବିଚାର ହେଲା । ସେତେବେଳେ ତ ମକଦ୍ଦମାରେ ପକ୍ଷ ସମର୍ଥନର କଥା ନ ଥାଏ । ସେଥିପାଇଁ କେଉଁ ଦଫାରେ ଗିରଫ ହେଲୁ ଓ ସଜା ପାଇଲୁ ମନେରଖିବା ଆବଶ୍ୟକ ହେଇନାହିଁ ।

## ପାଟନା କ୍ୟାମ୍ପ ଜେଲ୍

ଆମକୁ ଛଅ ମାସ ଦଣ୍ଡ ହେଲା । ଏଥର ଆମ ଉଭୟଙ୍କୁ ତୃତୀୟ ଶ୍ରେଣୀରେ ରଖା ହେଲା । କିଛି ଦିନ ପରେ ଗୋଟାଏ ବଡ଼ ଦଳ ସାଙ୍ଗରେ ଆମକୁ ପାଟନା କ୍ୟାମ୍ପ ଜେଲ୍‌କୁ ବଦଳି କରାହେଲା । ତୃତୀୟ ଶ୍ରେଣୀ ରେଲ୍ ଡବାର ଝରକାମାନଙ୍କରେ ଲୁହାଛଡ଼ ଲଗେଇ କଏଦୀ ଡବା କରାଯାଇଥାଏ । ସେଥିରେ ଆମେ ଷାଠିଏ ଜଣ ଖଣ୍ଡେ ଯାଉଥାଉ । ଆମେ ଶୁଣିଥାଉ ଯେ ପାଟନା କ୍ୟାମ୍ପ ଜେଲ୍‌ରେ ଗୋଟିଏ ଗୋରା ସର୍ଜେଣ୍ଟ ଅଛି । କଏଦୀମାନେ ଆସିବା ବେଳେ ଜୟଧ୍ୱନି କଲେ ସେ ଖୁବ୍ ମାଡ଼ ଦିଏ । ଆମେ ସବୁ ଠିକ୍ କଲୁ ଯେ ଯାହା ହେବାର ହେବ ସମସ୍ତେ ଜୟଧ୍ୱନି ଦେଇ ଯିବା । ଫୁଲୱାରୀ ଶରୀଫ ଷ୍ଟେସନରୁ ଜେଲ୍ ତିନି

ଫର୍ଲଙ୍ଗ୍ ବାଟ ହେବ । ଆମକୁ ସବୁ ହଳ ହଳ କରି ହାତକଡ଼ି ଦେଇ ଏକ ଲମ୍ବ ଦଉଡ଼ିରେ ମାଳ କରି ଗୁନ୍ଥି ନିଆହେଲା । ସୁଧୀରବାବୁ ଓ ମୁଁ ଧାଡ଼ିର ଆଗରେ ରହିଲୁ । ଜୟଧ୍ୱନି ପ୍ରାଣଭରି ଦିଆହେଲା, ମାତ୍ର ମାଡ଼ ଫାଡ଼ କିଛି ହେଲା ନାହିଁ ।

ପାଟଣା କ୍ୟାମ୍ପ ଜେଲ୍‌ରେ ସାଢ଼େ ତିନି କି ଚାରି ହଜାର ରାଜବନ୍ଦୀ ଥା'ନ୍ତି । ସମସ୍ତେ ତୃତୀୟ ଶ୍ରେଣୀ । ବୟାଅଶି ତେୟାଅଶିଟା ଲମ୍ବା ଲମ୍ବା ଗୋଦାମ ଘର ଭଳି ନାହାଚାଳିଆ ବିରାଟ ଟିଣର ଘର ଥାଏ । ଗରମ କମେଇବା ପାଇଁ ଟିଣ କାନ୍ଥ ବାହାରପଟେ ତାରଜାଲିରେ ମାଟିଗୋବର ନେସା ହେଇ ଗୋଟିଏ ପ୍ରକାର କାନ୍ଥ ହେଇଥାଏ । ପ୍ରତ୍ୟେକରେ ଚାଳିଶ ପଚାଶ ଲେଖା ବନ୍ଦୀ ରହନ୍ତି । ଏମିତିକା ଆଠ ଦଶଟା ଲେଖା ୱାର୍ଡ଼ ଚାରିପଟେ କଣ୍ଟାତାରବାଡ଼ ଥାଏ । ଏସବୁ ଅଲଗା ଅଲଗା ହତା ଭିତରେ ଯିବା ଆସିବା ପାଇଁ ଯେଉଁ ବାଟ ଥାଏ ସେଠି ଜଣେ ଜଗୁଆଳି ଥାଏ, ମାତ୍ର ଏସବୁ ତାର ମଝିରେ ଛିଣ୍ଡିଯାଇ ଅବାଧ ଗତିବିଧି ପାଇଁ ବାଟ ହୋଇଯାଇଥାଏ । ଜେଲ୍ ଭିତରେ ପୁଣି ସଜା ପାଇବା ବନ୍ଦୀଙ୍କ ପାଇଁ ଗୋଟିଏ ପାଖରେ ଦଶ ବାରଟା ପକ୍‌କା ସେଲ୍ ବା କୋଠରୀ ଥାଏ । ଗାଧୁଆପାଧୁଆ ପାଇଁ କେତେଟା ଲମ୍ବ ଲମ୍ବ ପକ୍‌କା ପାଣି ହାଉଦା ଓ ଚଟାଣ । କଳ ପାଣିର ବ୍ୟବସ୍ଥା ଥାଏ । ସେହିପରି ସବୁ ଧାଡ଼ି ଧାଡ଼ି ଟିଣର ପାଇଖାନା ।

ରୋଷେଇ ପାଇଁ ଏକ ଜେଲ୍‌ରେ ଦୁଇଟା ବିରାଟ ପକ୍କା ଘର 'ଭଟ୍ଟା' ଥାଏ । ସେଥିରୁ ସାନଟିରେ କେବଳ ରୁଟି ତିଆରି ହୁଏ । ପଶାପାଲି ଆକୃତିରେ ରହିଥିବା ଚାରିଟା ଲମ୍ବ ଲମ୍ବ କୋଇଲା ଚୁଲୀ ଉପରେ ଲମ୍ବ ଲମ୍ବ ଲୁହାପତର ପଡ଼ିଥାଏ । ତାରି ଉପରେ ରୁଟି ସେକା ହୁଏ । ପଶାପାଲିର ଛକ ମଝିରେ ଥାଏ ଧୂଆଁ ଯିବା ପାଇଁ ଚିମନୀ । ଏଠାରେ ଅଟା ଦଳିବା ବ୍ୟବସ୍ଥା ହିଁ ସବୁଠାରୁ ମନୋରଞ୍ଜକ । ଦସ୍ତା ପତରର ବଡ଼ବଡ଼ ଗାଧୁଆ ଟବ୍ ଭଳି ପାତ୍ରରେ ଦୁଇ ତିନି ବସ୍ତା ଲେଖାଁ ଅଟାରେ ଆବଶ୍ୟକ ପରିମାଣର ପାଣି ଦେଇ ଢଳା ଯାଏ । ଟବ୍ ପିଛା ଦୁଇ ଜଣ ଲେଖାଁ ପହିଲମାନ କଏଦୀ ଲଙ୍ଗୋଟି ଭିଡ଼ି, ତା' ଭିତରକୁ ଉତୁରି ଯାଇ ସେ ଅଟାକୁ ଗୋଡ଼ରେ ଦଳିବାରେ ଲାଗନ୍ତି । ଅବଶ୍ୟ ସେମାନେ ଏହା ପୂର୍ବରୁ ସାବୁନ୍ ଲଗେଇ ଗାଧୋଇ ଥା'ନ୍ତି । ତେବେ ଯେଉଁ ଝାଳଟା ବହେ ତାହାର ରୁଟିର ସ୍ୱାଦ ବୃଦ୍ଧିରେ ସାହାଯ୍ୟ କରେ । ନ ହେଲେ ଓଳିକୁ ପଚିଶ ମହଣ ଖଣ୍ଡେ ରୁଟି ତିଆରି କରିବା କ'ଣ ସହଜ କାମ କି ?

ଜେଲ ଚାରିପଟଯାକ ପାଚିରୀ ବଦଳରେ କଣ୍ଟା ତାରର ବାଡ଼ ଥାଏ । ତେଣୁ ବାହାରର ସବୁ ଦେଖାଯାଏ । ଦକ୍ଷିଣ ପାଖରେ ରେଲ୍ ଲାଇନ୍‌ରେ ରେଲ୍ ଚଳାଚଳ, ଚାରିପଟଯାକର ଧାନ ବିଲ, ଦୂରର ଗାଁ ସବୁ ଦେଖାଯିବା ଯୋଗୁଁ ଜେଲ୍‌ର ଆବଦ୍ଧ ଭାବଟା ଅନେକ ପରିମାଣରେ କଟି ଯାଉଥାଏ । ଏ ତାରବାଡ଼ ବାରଫୁଟ ଖଣ୍ଡେ ଉଚ୍ଚ । ବାଡ଼ର ଉପର ମୁଣ୍ଡଟା ଭିତର ଆଡ଼କୁ ଢଳି ରହିଥାଏ । ଏ ବାଡ଼ର ଚାରିପଟେ ଓ ଜେଲ୍ ଭିତରେ ବି ଠା'କୁ ଠା ଖୁବ୍ ଉଚ୍ଚ ଖୁଣ୍ଟ ଉପରେ ବିଜୁଳିର ବଡ଼ ବଡ଼ ସନ୍ଧାନୀ ଆଲୁଅ ଲଗା ହେଇଥାଏ ଓ ଏହା ରାତିରେ ସମସ୍ତ

ଅଞ୍ଚଳକୁ ଉଜ୍ଜ୍ୱଳ ଆଲୋକରେ ପ୍ଲାବିତ କରି ରଖେ । ୱାର୍ଡ଼ ଭିତରେ କିନ୍ତୁ ଲଣ୍ଠନ ଜଳେ । ତାରବାଡ଼ ଚାରିପଟେ ବାହାର ପାଖରେ ଠା'କୁ ଠା ଉଚ୍ଚ ମଞ୍ଚା ଉପରେ ସଶସ୍ତ୍ର ପୁଲିସ୍ ପହରା ଥା'ନ୍ତି । ପଞ୍ଜାବ କି ସିନ୍ଧୁର ପୁଲିସ୍ ଏଥିପାଇଁ ରହିଥା'ନ୍ତି । ଏଠି ରାତିରେ ୱାର୍ଡ଼ର ତାଲା ପଡ଼ିବା ବ୍ୟବସ୍ଥା ଉଠି ଯାଇଥାଏ । ସନ୍ଧ୍ୟା ବେଳେ ୱାର୍ଡ଼ର ଜମାଦାର ଆସି ସମସ୍ତଙ୍କୁ ଘରେ ବନ୍ଦ କରି ଗଣତି ନିଅନ୍ତି । ହିସାବ ମିଳିଯିବା ପରେ ତାଲା ଖୋଲି ଦିଆଯାଏ ।

ରୋଷେଇ ବ୍ୟବସ୍ଥା ବନ୍ଦୀମାନେ ନିଜେ ବୁଝୁଥା'ନ୍ତି । ଏ ବ୍ୟବସ୍ଥାପକଙ୍କ ଭିତରେ ମଦନବାବୁ ଜଣେ ମୁଖ୍ୟ ମାମଲତ୍‌କାର ଥା'ନ୍ତି । ଚାଉଳ ଅଟା ଯେତେ ମିଳେ ତାହା ବଳକା ହୁଏ । ଏହାକୁ ବଦଳେଇ ପରିବା ଅଣାଯାଏ । ଏହାଦ୍ୱାରା ତରକାରୀ ପରିମାଣ ବଢ଼େ । ତୃତୀୟ ଶ୍ରେଣୀରେ ଆମକୁ ଭାତ ବା ରୁଟି, ଡାଲି ଓ ତରକାରୀ ଏତକ ଖାଦ୍ୟ ଦୁଇଓଳି ମିଳେ । ସକାଳ ଜଳଖିଆରେ ଖେଚେଡ଼ୀ ବା ଚୂଡ଼ାଗୁଡ଼ । ଦୁଗ୍ଧଜାତ ଖାଦ୍ୟ କିଛି ନ ଥାଏ । ମାଛ ମାଂସ ବି ସେତେବେଳେ ନ ଥିଲା । ଜେଲ୍‌ମାନଙ୍କରେ ଖାଦ୍ୟର ପ୍ରକାର ବଢ଼େଇବା ପାଇଁ ଗୋଟାଏ ପଦ୍ଧତି ଥିଲା କମ୍ପାନୀ ଉପବାସ । ପାଞ୍ଚ ଛଅଜଣ ମିଶି ଗୋଟାଏ କମ୍ପାନୀ କରନ୍ତି । ତାହା ଭିତରୁ ଦୁଇଜଣ ଖଣ୍ଡେକ ନାମରେ ଏକାଦଶୀ ବା ଅନ୍ୟ ସେହିପରି ଉପଲକ୍ଷ୍ୟରେ ଉପାସ ଲେଖେଇ ଦିଆଯାଏ । ଉପବାସ କଲେ ସେଠି ଜଣକା ଚଉଦ ଛଟାଙ୍କି ଗୁଡ଼, ପାଏ ଆଳୁସିଝା ଓ ଅଧସେର ଖଣ୍ଡେ ସାଗୁଦାନା ମିଳୁଥିଲା । କମ୍ପାନୀର ଯେତେଜଣଙ୍କର ଦୈନନ୍ଦିନ ଖୋରାକି ଆସେ ତାକୁ ସମସ୍ତେ ବାଣ୍ଟି ଖାଆନ୍ତି ଓ ଏ ଗୁଡ଼ ଓ ସାଗୁଦାନାକୁ ଜମାକରି ରଖି ପରେ ଜଳଖିଆରେ ଖାଆନ୍ତି । ଅଟା ବା ଚାଉଳ ମୁଣ୍ଡପିଛା ଓଳିକୁ ପାଞ୍ଚ ଛଟାଙ୍କି ଖାଇବାବାଲା ବି ଥାଆନ୍ତି । ପାଞ୍ଚ ଛଟାଙ୍କି ଅଟାରେ ତିନିପଟ ରୁଟି ହୁଏ । ମୁଁ ସେଥିରୁ ଚାରି ପାଞ୍ଚପଟ ଖାଉଥିଲି । ସୁରେନ୍ଦ୍ର ପଟ୍ଟନାୟକ ସତର ପଟ ଖାଉଥିଲା ।

ଜେଲ୍‌ରେ ତ ବିହାରୀଙ୍କ ସଂଖ୍ୟା ବେଶି । ଓଡ଼ିଆ ତିନି ଚାରି ଶହ ଥାଆନ୍ତି । ଆମେ ଥିବାବେଳେ ସେଠି ପଣ୍ଡିତ ପଡ଼ିହାରୀ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ମଦନ ମୋହନ ପଟ୍ଟନାୟକ, ଗୋବିନ୍ଦ ମିଶ୍ର, ମନୋଦ କାନୁନ୍‌ଗୋ, ସୁଧାଂଶୁ ପ୍ରଭୃତି ଥା'ନ୍ତି । ବିହାରରୁ ବନାରସୀ ଦାସ ଚତୁର୍ବେଦୀ, ରାମବୃକ୍ଷ ବେନୀପୁରୀ, ଅରୁଣ ଘୋଷ ପ୍ରଭୃତି ଥା'ନ୍ତି । ଏତେ ବଡ଼ ଜମାଉତରେ ନାନା ପ୍ରକାରର ହୋହଲ୍ଲା ସବୁବେଳେ ଲାଗିଥାଏ । ନିଜ ନିଜ ରୁଚି ଅନୁସାରେ ପଢ଼ାଶୁଣା, ପୂଜାପାଠ, କୀର୍ତ୍ତନ,ଖେଳ କସରତ ଆଦି ସବୁପ୍ରକାରର କାର୍ଯ୍ୟକଳାପ ଚାଲିଥାଏ । ଦଳାଦଳି ବି ଥାଏ ଓ ବେଳେବେଳେ ମାରପିଟ୍ ଯାଏ ବି କଥା ଯାଏ । ଜଣେ ବୟସ୍କ ବନ୍ଦୀଙ୍କ ଆଚରଣ ନେଇ ଥରେ ଓଡ଼ିଆଙ୍କ ଭିତରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ଏଭଳି ଆଚରଣ ପ୍ରତିକାର ପାଇଁ ଗୋଟିଏ ସଂଘ ଗଢ଼ିଥିଲେ ।

ସେଠି ବି ମୋର ଜୀବନ ପଢ଼ାଶୁଣା, ଖେଳକସରତ୍ ଆଦିର ଗୋଟାଏ ନିୟମିତ ଧାରାରେ ପଡ଼ିଯାଇଥିଲା । ବାପା ଏଚ୍. ଜି. ୱେଲସଙ୍କର ଦି ସାଇନ୍‌ସ ଅଫ୍ ଲାଇଫ୍ (ଜୀବନର

ବିଜ୍ଞାନ) ବୋଲି ଖଣ୍ଡେ ବହି ପଠେଇ ଦେଇଥିଲେ । ଏଥିରେ ବିଶ୍ୱ ସୃଷ୍ଟିଠାରୁ ଆରମ୍ଭ କରି ମଣିଷର ଆବିର୍ଭାବ ପର୍ଯ୍ୟନ୍ତ ପ୍ରାଣୀ ଓ ଉଦ୍ଭିଦ ଜଗତର ବିବର୍ତ୍ତନ ତଥା ମଣିଷର ଶରୀର ଓ ମନ ସମ୍ବନ୍ଧରେ ଅଧୁନାତମ ବୈଜ୍ଞାନିକ ତଥ୍ୟ ଏକତ୍ର କରି ଗୋଟାଏ ସମଗ୍ର ଚିତ୍ର ଦେବାର ଉଦ୍ୟମ ହୋଇଥାଏ । ୱେଲସ୍ ସାଧାରଣ ଶିକ୍ଷିତ ଲୋକଙ୍କୁ ମଣିଷର ପ୍ରାକୃତିକ ଓ ସାମାଜିକ ପରିବେଶ ତଥା ଜୈବିକ ଓ ମାନସିକ ଗଠନ ବିଷୟରେ ଏକ ସମଗ୍ର ଓ ପୂର୍ଣ୍ଣ ଧାରଣା ଦେବା ପାଇଁ ତିନି ଖଣ୍ଡ ବହିର ଯୋଜନା କରିଥିଲେ । ପ୍ରଥମ ଖଣ୍ଡଟି ହଜାରିବାଗ ଜେଲ୍‌ରେ ପଢ଼ିଥିବା ବିଶ୍ୱଇତିହାସ, ଦ୍ୱିତୀୟଟି ହେଲା ଉପରଲିଖିତ ବହିଟି ଓ ତୃତୀୟ ବହି 'ଦି ୱର୍କ, ୱେଲଥ, ଏଣ୍ଡ ହ୍ୟାପିନେସ ଅଫ୍ ମ୍ୟାନକାଇଣ୍ଡ' (ମାନବ ଜାତିର କର୍ମ, ସମ୍ପଦ ଓ ସୁଖ) । ଏ ଶେଷ ବହିଟି ପରେ ବାହାରେ ପଢ଼ିବାକୁ ଯାଇଥିଲି । ସେଇଟି ପ୍ରଥମ ଦୁଇଟି ପରି ଏତେ ଉପାଦେୟ ଓ ସଫଳ ହୋଇଥିବାର ମନେହେଲା ନାହିଁ । ତଥାପି ସେଥିରୁ ମଣିଷ ସମାଜ ଓ ତା'ର ଆର୍ଥିକ, ସାମାଜିକ ଆଦି ସମସ୍ୟା ବିଷୟରେ ଗୋଟିଏ ସମଗ୍ର ଧାରଣା ମିଳିଲା । ୱେଲସ୍‌ଙ୍କର ଏ ବହି ତିନିଖଣ୍ଡ ଲେଖିବାର ଉଦ୍ଦେଶ୍ୟ ଅନ୍ତତଃ ମୋ କ୍ଷେତ୍ରରେ ସଫଳ ହେଇଥିଲା ।

'ଜୀବନର ବିଜ୍ଞାନ' ବହି ଖଣ୍ଡ ମୁଁ ଓ ସୁଧୀରବାବୁ ମିଶି ସେଇ ଜେଲ ଭିତରେ ଶେଷ କରିଦେଲୁ । ଏଇଟା ବୈଜ୍ଞାନିକ ତଥ୍ୟର ଗୋଟାଏ ଖଣି ଓ ମୋର ଦୃଷ୍ଟିକୁ ପ୍ରସାରିତ କରିବାରେ ଓ ଜ୍ଞାନ ବୃଦ୍ଧିରେ ବହୁତ ସାହାଯ୍ୟ କଲା । ଏହାଛଡ଼ା ସେଠି ବେନୀପୁରୀଙ୍କ ପାଖରେ ସମାଜବାଦ, ରାଜନୀତି, ଅର୍ଥନୀତି ଆଦି ବିଷୟରେ ବହୁତ ବହି ଥାଏ । ତାଙ୍କରି ୱାର୍ଡ୍‌ରେ ଯାଇ ସେସବୁ ପଢ଼ିବାକୁ ହୁଏ । ଏସବୁ ଭିତରୁ ଜେରୋମ୍ ଡେଭିସ୍ (Jerome Davis) ନାମକ ଜଣେ ଆମେରିକାନ୍ ଲେଖକଙ୍କ 'କଣ୍ଟେମ୍ପୋରାରୀ ସୋଶାଲ୍ ମୁଭମେଣ୍ଟସ୍' (ସମସାମୟିକ ସାମାଜିକ ଆନ୍ଦୋଳନ) ବହିଟି ବି ଆମେ ବେଶ୍ ଭଲ ଭାବରେ ଅଧ୍ୟୟନ କରିଥିଲୁ । ଏଥିରେ ସମାଜବାଦ, ସାମ୍ୟବାଦ, ଫାସୀବାଦ, ନାଜିବାଦ ଆଦିର ମୋଟାମୋଟି ପରିଚୟ ଦିଆଯାଇଥିଲା ।

ଏସବୁ ପଢ଼ାଶୁଣା ଛଡ଼ା ଆମେ କେତେଜଣ ଜୁଜୁତ୍ସୁ ଶିଖିବାରେ ଲାଗିଥିଲୁ । ପୁରୁଲିଆର ସୁନୀଲ୍‌ବାବୁ ବୋଲି ଭଦ୍ରଲୋକ ଜୁଜୁତ୍ସୁ ଖୁବ୍ ଭଲ ଜାଣିଥା'ନ୍ତି । ତାଙ୍କରି ପାଖରେ ଶିଖୁଥାଉ । ତଳେ ବିଛେଇବା ପାଇଁ ସମସ୍ତଙ୍କୁ ଛଣ ମିଳିଥାଏ । ସେଇଥିରେ ମୋଟା ମୋଟା ଗଦି ତିଆରି କରି ତା' ଉପରେ ଜୁଜୁତ୍ସୁର ଉଠାପଟକ୍ ଚାଲିଥାଏ । ୧୯୨୮ ହେବ, ପ୍ରଫେସର୍ ତାକାଗାକି ବୋଲି ଜଣେ ଜାପାନୀ ଭଦ୍ରଲୋକ କଟକ ଆସି ଟାଉନ୍‌ହଲ୍‌ରେ ଜୁଜୁତ୍ସୁର କୌଶଳ ସବୁ ପ୍ରଦର୍ଶନ କରିଥିଲେ । ସେଇ ବେଳୁ ଏହାପ୍ରତି ଆକର୍ଷଣ ଥିଲା । ଏସବୁ ମୁଁ ଚଳନୀୟ ରକମର ଆୟତ୍ତ କରିଥିଲି । ଯା ଛଡ଼ା ସେଠି ଡ୍ରିଲ୍ ବି କରାହେଉଥାଏ ଓ ମୁହିଁ କରାଉଥାଏ । ଥରେ ଖେଳକୁଦର ବି ଆୟୋଜନ ହୋଇଥିଲା । ସେଥିରେ ଅବଷ୍ଟାକଲ ରେସ୍ ବା 'ପ୍ରତିବନ୍ଧକ ଦୌଡ଼'ରେ କୋଉଠି ଛିଣ୍ଡା ତାର ବାଡ଼ ଭିତରେ ଗଳିବା, କେଉଁଠି ତାକୁ ଡେଇଁଯିବା, ଏମିତି ସବୁ ପ୍ରତିବନ୍ଧକ ଅତିକ୍ରମ କରିବା କଥା ରଖା ହୋଇଥିଲା । ଯାଛଡ଼ା ତକିଆ ଯୁଦ୍ଧଟା ବେଶ୍ ଉପଭୋଗ୍ୟ

ହେଉଥିଲା । ତିନିହାତ ଖଣ୍ଡେ ଉଚ୍ଚରେ ଦୁଇଟା ଖୁଣ୍ଟରେ ଆଡୁଆ ବନ୍ଧା ହୋଇଥିବା ଗୋଟାଏ ମୋଟ ବାଉଁଶ ଉପରେ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ପରସ୍ପରକୁ ଲମ୍ବାଳିଆ ତକିଆରେ ପିଟି ତଳକୁ ଖସାଇପକାଇବା ଚେଷ୍ଟା କରନ୍ତି । ଏ ତକିଆସବୁ ଛଣ ଉପରେ କନା ଗୁଡ଼ାଇ ତିଆରି ହୋଇଥିଲା ।

ସେଠି ସାମରିକ ବିଭାଗରେ ପୂର୍ବରୁ କାମ କରିଥିବା ଜଣେ ବିହାରୀ ବନ୍ଦୀ ଥା'ନ୍ତି । ତାଙ୍କଠାରୁ 'ସେମାଫେର' ସଂକେତ ବା ପତାକା ସାହାଯ୍ୟରେ ଦୂରରୁ ସମ୍ବାଦ ଆଦାନ ପ୍ରଦାନ ପ୍ରଣାଳୀ ମଧ୍ୟ ଆମେ କେତେଜଣ ଶିଖୁଥିଲୁ । ବିହାରର ଜଣେ ବିଶିଷ୍ଟ କର୍ମୀ ମୌଲାନା ଅବଦୁଲ୍ ୱଦୁଦଙ୍କ ପାଖରେ ଉର୍ଦ୍ଦୁପଢ଼ା ବି ଚଳୁଥାଏ ।

ମୁଁ ଯିବା ବେଳକୁ ଜେଲ୍‌ର କର୍ତ୍ତୃପକ୍ଷଙ୍କ ସହିତ ବିଶେଷ କଳିକଜିଆ ନ ଥାଏ । ପୂର୍ବରୁ ସବୁ ଜୋରଦାର କଳିକଜିଆ ଶେଷ ହୋଇଯାଇଥାଏ । ସେଠାର ସୁପରିଟେଣ୍ଡେଣ୍ଟ୍ ଥା'ନ୍ତି ମେଜର ପରେରା । ସାମରିକ ବିଭାଗର ଅବସରପ୍ରାପ୍ତ ଡାକ୍ତର । ବୋଧହୁଏ ଗୋଆ ଆଡ଼ର ଲୋକ, ଭଦ୍ରଲୋକ ଟିକିଏ ଆଡ଼ପାଗଳିଆ ରକମର, ତେବେ ସେ ଜେଲ୍‌ର ସୁପରିଚାଳନା ପ୍ରତି ଭଲ ଦୃଷ୍ଟି ଦେଉଥିଲେ । ପ୍ରଥମେ ଖୁବ୍ ଜିଦ୍ ଧରିବା ପରେ ଠିକ୍ କଥାଟା ବୁଝିଗଲେ ତାକୁ ସନ୍ତୋଟ ଭାବରେ କାର୍ଯ୍ୟକାରୀ କରୁଥିଲେ । ସଫେଇ ପ୍ରତି ତାଙ୍କର ଖୁବ୍ ତୀକ୍ଷ୍ଣ ଦୃଷ୍ଟି ଥିଲା । ସେଠି ସେ ଗୋଟିଏ ହେଲେ ମାଛି ରହିବାକୁ ଦେଉ ନ ଥିଲେ । ମଶା ବିଷୟରେ ଏତେ କଡ଼ାକଡ଼ି ସମ୍ଭବ ନଥିଲା, ତଥାପି ମଶା ଖୁବ୍ ଅଳ୍ପ ଥିଲେ । ସୁଧୀରବାବୁଙ୍କର ତାଙ୍କ ସାଙ୍ଗରେ ଭଲ ପଡ଼ିଗଲା ଓ ସଫେଇ ବ୍ୟାପାରରେ ସେ ସୁଧୀରବାବୁଙ୍କର ସାହାଯ୍ୟ ନେବାକୁ ଲାଗିଲେ ।

ମଝିରେ ମଝିରେ ଜେଲ୍‌ରେ କୌଣସି ନା କୌଣସି କଥା ନେଇ ହୁଜୁଗ ଉଠେ । ସେଥର ବିଜୟା ଦଶମୀରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ପ୍ରସ୍ତାବ ଦେଲେ ଯେ ବଙ୍ଗାଳୀମାନଙ୍କ ଭିତରେ ବିଜୟା ଦଶମୀରେ କୋଳାକୋଳି କରିବାରେ ଯେଉଁ ପ୍ରଥା ଅଛି ସେଇଟା ଅତି ଉତ୍ତମ ଓ ସେଇଟା ସମସ୍ତେ ଗ୍ରହଣ କରିବା ଉଚିତ । ଏହାଦ୍ୱାରା ମଣିଷକୁ ପୂର୍ବର ସବୁ ଛୋଟ ଛୋଟ ରାଗଦ୍ୱେଷକୁ ଭୁଲିଯାଇ ସଦ୍‌ଭାବରେ ନୂଆ ବର୍ଷ ଆରମ୍ଭ କରିବାର ପ୍ରେରଣା ମିଳେ । ସେଠୁ ମହା ଉତ୍ସାହରେ ପରସ୍ପର ଆଲିଙ୍ଗନ ଆରମ୍ଭ ହେଇଗଲା । ଥରେ ଉତ୍ସାହର କୁଆର ଉଠିଲେ ଆଉ ତାକୁ ସମ୍ଭାଳେ କିଏ । ଆଲିଙ୍ଗନରୁ ଆରମ୍ଭ ହେଲା 'କମ୍ବଳ ନଚା' । ପାଞ୍ଚ ଛ' ଜଣ ମିଶି ଜଣକୁ କମ୍ବଳ ଘୋଡ଼େଇ ଟେକି ଆଣି ସମସ୍ତେ ମିଶି ଉପରକୁ ଫିଙ୍ଗି ଦିଅନ୍ତି ଓ ପଡ଼ିବାବେଳେ ଧରି ନିଅନ୍ତି । ବନ୍ଧୁତା ଓ ସ୍ନେହର ଏ ଉଦ୍ଦଣ୍ଡ ଅଭିବ୍ୟକ୍ତି ସେ ଲୋକର ହାତଗୋଡ଼ର ଗଣ୍ଠିସବୁ ଢ଼ୁଗୁଳା ହେଇଯିବାଯାଏ ଚାଲେ । ଆମେ ଟୋକାମାନେ ପଞ୍ଝା କରି ଜେଲସାରା ବୁଲି ଅନେକ ବେଳଯାଏ ଏଇ ଧନ୍ଦା ଚଳେଇଲୁ ।

ଆମେ ସେଠିଥିବା ଭିତରେ ହିଁ ଗାନ୍ଧୀଜୀ ହରିଜନମାନଙ୍କ ପାଇଁ ଅଲଗା ଭୋଟ ବ୍ୟବସ୍ଥା ବିରୋଧରେ ଅନଶନ ଆରମ୍ଭ କଲେ ଓ ବର୍ଣ୍ଣହିନ୍ଦୁ ତଥା ହରିଜନ ନେତାମାନଙ୍କ ଭିତରେ ବହୁ ଆଲୋଚନା ପରେ ଏ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା ରଦ୍ଦ ହେଲା ଓ 'ପୁନା ଚୁକ୍ତି' ଅନୁସାରେ

ନୂଆ ବ୍ୟବସ୍ଥା ଗୃହୀତ ହେଲା, ଯେଉଁଥିରେ ସାଧାରଣ ନିର୍ବାଚନ ମଣ୍ଡଳୀରେ ହରିଜନଙ୍କ ପାଇଁ ସ୍ୱତନ୍ତ୍ର ଆସନ ସୁରକ୍ଷିତ ରଖିବା ବ୍ୟବସ୍ଥା ହେଲା । ଏହାପରେ ଗାନ୍ଧୀଜୀଙ୍କ ପ୍ରେରଣାରେ ଅସ୍ପୃଶ୍ୟତା ବିରୋଧରେ ଜୋରସୋର ଆନ୍ଦୋଳନ ଆରମ୍ଭ ହେଲା । ଅଛୁଆଁ ଜାତିଙ୍କ ପାଇଁ ହରିଜନ ଶବ୍ଦ ମଧ୍ୟ ଏହି ସମୟରେ ଗାନ୍ଧୀଜୀ ବ୍ୟବହାର କରିବା ଆରମ୍ଭ କଲେ ।

## ପୁଣି ବାହାରେ

ସୁଧୀରବାବୁ ଓ  ମୁଁ ନିୟମ ଅନୁସାରେ ଷୋଳ ଦିନ 'ମାର୍କା' ପାଇ ସାଢ଼େ ପାଞ୍ଚ ମାସରେ ଖଲାସ ହେଇ ଖୁଡ଼ୀଙ୍କୁ ଦେଖିବା ପାଇଁ ଭାଗଲପୁର ଗଲୁ । ସେ ସେଠା ଜେଲରେ ଥା'ନ୍ତି । ସେଠୁ କଟକ ଫେରିଲୁ । ବାପା ହେରିକା ସେତେବେଳକୁ ଜେଲ୍‌ରୁ ବାହାରି ହରିଜନ ଆନ୍ଦୋଳନରେ ଲାଗିଥା'ନ୍ତି । ଗଣେଶଘାଟ ରାସ୍ତା ଓ ବାଖରାବାଦ ରାସ୍ତା ଛକରେ ଗୋଟାଏ ଘର ଭଡ଼ା ନିଆଯାଇ ସେଠି ଆଶ୍ରମ ଚାଲୁଥାଏ । ଚୁନୀ, ଗୋଦାବରୀ, ମାଣିକ, ଶୋଭାଅପା ଓ ଅନ୍ୟ ଝିଅମାନେ ସେଠି ରହି କଟକର ମେହେନ୍ତର ବସ୍ତିମାନଙ୍କରେ କାମ କରୁଥା'ନ୍ତି । ପୁନା ଚୁକ୍ତିର ଅଳ୍ପ କେତେମାସ ପରେ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନକୁ ଅଧିକ ପ୍ରେରଣା ଦେବାପାଇଁ ଗାନ୍ଧୀଜୀ ଏକୋଇଶି ଦିନ ଅନଶନ କଲେ । ଚାରିଆଡ଼େ ଗୋଟାଏ ବିରାଟ ସ୍ପନ୍ଦନ ଖେଳିଗଲା । କଟକର ଶହଶହ ଛାତ୍ର ଓ ଯୁବକ ବାହାରି ପାଇଖାନା ଓ ହରିଜନ ବସ୍ତି ସଫେଇ କାମ କଲେ । ଠା କୁ ଠା ସବର୍ଣ୍ଣ ଓ ହରିଜନଙ୍କର ଏକତ୍ର ପଙ୍‌କ୍ତି ଭୋଜନର ଆୟୋଜନ ହେବାକୁ ଲାଗିଲା । ଗାନ୍ଧିଜୀଙ୍କର ଉପବାସ ସମୟରେ ପ୍ରତିଦିନ ପ୍ରଭାତଫେରୀ, ପ୍ରାର୍ଥନାସଭା ଆଦି ଚାଲିଲା । କଟକରେ ପ୍ରଭାତଫେରୀ ପାଇଁ ଉପମାମୁଁ ଗୋଟିଏ ଗୀତ ଲେଖିଥା'ନ୍ତି । ତା'ର କିଛି ମନେ ରହିଛି :

ଜାଗ ଜନପଦବାସୀ<br>
ପତିତର ବନ୍ଧୁ ତବ ଦ୍ୱାରେ ତବ ପାପ ପାଇଁ ଉପବାସୀ ।<br>
ଅଳସ ବିଳାସେ ବିଶୋରି ଜୀବନ<br>
ଏ ଜାତି ଯେ ଆଜି ହୀନ ପରାଧୀନ<br>
ନିଜ ହାତେ ଗଢ଼ି ଭେଦର ପ୍ରାଚୀର ନିଜ ଦେଶେ ପରବାସୀ ।

ଏହିପରି ଏକ ଜାଗରଣ ସାରା ଦେଶରେ ଆସୁଥିବାର ଓ ଦେଶର ସର୍ବତ୍ର ଏହିପରି ସବୁକାମ ହେଉଥିବାର ଖବର ମିଳୁଥାଏ । ଗାନ୍ଧୀଜୀଙ୍କର ଅନଶନ ଫଳରେ ଦେଶବାସୀଙ୍କର ବିବେକ ଯେ ଜାଗ୍ରତ ହୋଇଉଠିଛି ତା'ର ଆଶାଭରା ଆଭାସ ମିଳୁଥାଏ । ଏ ଆନ୍ଦୋଳନରେ ବାପାଙ୍କର ଓ ଆମ ପରିବାରର ବନ୍ଧୁ ଓକିଲ ସତ୍ୟନାରାୟଣ ସେନଗୁପ୍ତ, ବିଖ୍ୟାତ କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ, ବୃନ୍ଦାବନ ଷଡ଼ଙ୍ଗୀ ପ୍ରଭୃତି ବିଶେଷ ଭାବରେ ସହଯୋଗ କରୁଥା'ନ୍ତି ।

ଏଣେ ଆଇନ୍ ଅମାନ୍ୟ ମାନ୍ଦା ଧରିଯାଇଥାଏ । ତାକୁ ତେଜେଇବା ପାଇଁ ଚେଷ୍ଟା ଚାଲିଥାଏ । ଗାନ୍ଧୀଜୀଙ୍କର ଏକୋଇଶ ଦିନିଆ ଅନଶନର ପ୍ରଥମ ଦିନ ତାଙ୍କୁ ସ୍ୱାସ୍ଥ୍ୟ ଦୃଷ୍ଟିରୁ

ଖଲାସ କରି ଦିଆଗଲା । ସେ ବାହାରକୁ ଆସିବାର କେତେଦିନ ପରେ ସାମୂହିକ ଆଇନ୍ ଅମାନ୍ୟ ପରିବର୍ତ୍ତେ ବ୍ୟକ୍ତିଗତ ଆଇନ୍ ଅମାନ୍ୟର ପରାମର୍ଶ ଦେଲେ ଓ ନିଜେ କେତେଜଣ ସାଥୀଙ୍କ ସହିତ ଗୁଜରାତର ରାସ ଗାଁରେ ଆଇନ୍ ଅମାନ୍ୟ କରି ଗିରଫ ହେଲେ । ଏହାପରେ ବାପା ମଧ୍ୟ ଆଇନ୍ ଅମାନ୍ୟ ଉଦ୍ଦେଶ୍ୟରେ ଚୌଦ୍ୱାରକୁ ପଦଯାତ୍ରା ଆରମ୍ଭ କରିବେ ବୋଲି ସ୍ଥିର କରି କର୍ତ୍ତୃପକ୍ଷଙ୍କୁ ଚିଠି ଲେଖି ସୂଚନା ଦେଲେ ଓ କଟକରୁ ହିଁ ଗିରଫ ହେଲେ ।

ଗାନ୍ଧୀଜୀଙ୍କୁ ବର୍ଷେ ସଜା ହେଲା । ସେ ଜେଲ୍‌ରେ ପହଞ୍ଚି ପୁଣି ଅନଶନ କଲେ । ପୂର୍ବରୁ ହରିଜନ ସମସ୍ୟା ନେଇ ଅନଶନ ପରେ ତାଙ୍କୁ ଜେଲ୍‌ରେ ଥାଇ 'ହରିଜନ' ସମ୍ପାଦନା କରିବାର ଅନୁମତି ଦିଆଯାଇଥିଲା । ଏଥର ଗାନ୍ଧୀଜୀ ଜେଲରେ ପହଞ୍ଚି ସେଥିପାଇଁ ପୁଣି ଅନୁମତି ଚାହିଁଲେ ଓ ତାହା ନ ମିଳିବାରୁ ଉପବାସ ଆରମ୍ଭ କଲେ । ଏଥର ତାଙ୍କୁ ଛାଡ଼ି ଦିଆହେଲା । ସେ ଘୋଷଣା କଲେ ଯେ ଯେହେତୁ ସେ ବର୍ଷେ ସଜା ପାଇଥିଲେ, ତେଣୁ ସେ ବର୍ଷେ ପର୍ଯ୍ୟନ୍ତ ରାଜନୀତି ବିଷୟରେ କୌଣସି କଥା କହିବେ ନାହିଁ । କେବଳ ହରିଜନ ଆନ୍ଦୋଳନରେ ସମସ୍ତ ଶକ୍ତି ଲଗାଇବେ । ଏଣେ ବାପାଙ୍କୁ ବି ବର୍ଷେ ସଜା ହେଲା । ଗାନ୍ଧୀଜୀ ଜେଲ୍‌ରୁ ବାହାରି ପୁନାରେ ଲେଡ଼ୀ ଠାକରସୀଙ୍କର ଭବନ 'ପର୍ଣ୍ଣକୁଟୀ'ର ରେ ରହି ଉପବାସ ପରେ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବିଶ୍ରାମ କରୁଥାନ୍ତି । ସେହି ସମୟରେ ନୂଆ ହୋଇ ଗଢ଼ା ହେଇଥିବା ହରିଜନ ସେବକ ସଂଘର ବୈଠକ ହେଲା । ସତ୍ୟନାରାୟଣ ବାବୁ, ମହତାବବାବୁ, ବୋଉ, ଚୁନୀ ଓ ମୁଁ ସେଠିକି ଗଲୁ । ବମ୍ବେ ଲାଇନ୍‌ରେ ଯାତ୍ରା ମୋର ଏଇ ପ୍ରଥମ । ଦ୍ୱିତୀୟ ଦିନ ଭୋର୍‌ରୁ ଗାଡ଼ି ପଶ୍ଚିମଘାଟ ପର୍ବତମାଳା ପାରି ହେଉଥିବାବେଳେ ସତ୍ୟନାରାୟଣ ବାବୁଙ୍କର ଡକାଡକିରେ ନିଦ ଭାଙ୍ଗିଲା । ବାହାରର ଦୃଶ୍ୟ ଦେଖିବା ପାଇଁ ସେ ଆମକୁ ଉଠଉ ଥା'ନ୍ତି । ସେତେବେଳେ ବର୍ଷା ଦିନ । ରେଳ ରାସ୍ତା ପାହାଡ଼ ଭିତର ଦେଇ ସାପେଇ କରି ଯାଇଛି । ଗୋଟାଏ ପାଖରେ ଖାଡ଼ା ପାହାଡ଼ ଓ ଆରପାଖରେ ଗହୀର ଖାତ, ତଳକୁ ଚାହିଁଲେ ମୁଣ୍ଡ ବୁଲେଇବ । ଟିକିଏ ଦୂରରେ ଶ୍ୟାମଳ ବନାନୀଘେରା ପାହାଡ଼ । ମଝିରେ ମଝିରେ ପାହାଡ଼ୀ ଝରଣା, କୋଉଠି ପାହାଡ଼ୀ ନଈ, ଠାଏଠାଏ ଲଣ୍ଡା, ଦାନ୍ତୁଆ ପାହାଡ଼ର ଶିଖ । ପଚିଶ କି ତିରିଶଟା ସୁଡ଼ଙ୍ଗ ବି ପଡ଼ିଲା । ଏସବୁ ଦେଖି ଆମେ ପିଲାମାନେ ପୁଲକିତ ଓ ମୋହିତ ହୋଇଯାଇଥିଲୁ । କଲ୍ୟାଣ ଷ୍ଟେସନଠାରୁ ପୁନା ଲାଇନ୍‌ର ଦୃଶ୍ୟ ଆହୁରି ଚମତ୍କାର ଥିଲା । ତା' ଉପରେ ପୁଣି ବୈଦ୍ୟୁତିକ୍ ଇଞ୍ଜିନ୍ ଦ୍ୱାରା ଗାଡ଼ି ଟଣା ହେଉଥିବାର ଦେଖିବାର ଉତ୍ତେଜନା । ସେତେବେଳେ ବମ୍ବେ-ଇଗତ୍‌ପୁରୀ ଓ କଲ୍ୟାଣ-ପୁନା ଲାଇନ୍‌ରେ ବୈଦ୍ୟୁତିକ ଟ୍ରେନ୍ ଚାଲୁଥାଏ ।

ଯେତେଦୂର ମନେପଡ଼େ, ପୁନାରେ ଆମେ ଭାରତ ସେବକ ସମାଜ (ସର୍ଭେଣ୍ଟସ୍ ଅଫ୍ ଇଣ୍ଡିଆ ସୋସାଇଟି) ର ସଂସ୍ଥାରେ ରହିଲୁ । ଏହାର ନାମ ସ୍ୱାଧୀନତା ପରେ ହିନ୍ଦ୍ ସେବକ ସମାଜ ହେଲା, ଗୁଲଜାରୀଲାଲ ନନ୍ଦା ଜବରଦସ୍ତ ଭାରତ ସେବକ ସମାଜ ନାମଟି ତାଙ୍କର ସଂସ୍ଥା ପାଇଁ ଅପହରଣ କରି ନେବାରୁ । ଗାନ୍ଧୀଜୀଙ୍କୁ ଦେଖିବାକୁ ଆମେ ସବୁ ପର୍ଣ୍ଣକୁଟୀରକୁ ଗଲୁ । ଏ

ଘରର ଆଡ଼ାଚୌଡ଼ା ଦେଖି ତ ଆମେ କାବା । ଏଇ ଯଦି ପର୍ଣ୍ଣକୁଟୀର, ତେବେ ରାଜଭବନ କି ପ୍ରକାରର ? ଏକ ଛୋଟ ମୁଣ୍ଡିଆ ଉପରେ ବିରାଟ ଭବନ । ଏବେ ଭୁବନେଶ୍ୱରରେ ଯେଉଁ ରାଜଭବନ ତିଆରି ହୋଇଛି ତାହାରି ସମାନ ହେବ ପ୍ରାୟ । ବିରାଟ ହତାରେ ସୁଦୃଶ୍ୟ ଉଦ୍ୟାନ । ତାକୁ ଘରଯାଏ ମୋଟର ରାସ୍ତା ଆଙ୍କି ବାଙ୍କି ଉଠିଛି । ସେଠି ପହଞ୍ଚିବା ପରେ ଆମକୁ ଅଭ୍ୟର୍ଥନା କରି ଦୋତାଲାକୁ ନିଆ ହେଲା । ସେଠି ଗାନ୍ଧିଜୀ ଗୋଟାଏ ଘରେ ଖୋଲା ଝରକା ପାଖରେ ବିଛଣାରେ ବସିଥା'ନ୍ତି । ଝରକାବାଟେ କିଛି ଖରା ଆସି ବିଛଣାରେ ପଡ଼ିଥାଏ । ସେତେବେଳକୁ ପ୍ରାର୍ଥନା ବେଳ ହୋଇଯାଇଥାଏ । ଗାନ୍ଧୀଜୀଙ୍କ ସହିତ ଅଳ୍ପ ଟିକିଏ କଥାବାର୍ତ୍ତା ପରେ ପ୍ରାର୍ଥନା ଆରମ୍ଭ ହେଲା । ସେଦିନ ମୁଁ ଗାନ୍ଧୀଜୀଙ୍କର ସାନ୍ନିଧ୍ୟରେ ପ୍ରାର୍ଥନାରେ ବସି ଏକ ଗଭୀର ଶାନ୍ତି ଓ ପ୍ରସନ୍ନତା ଅନୁଭବ କରିଥିଲି । ସେପରି ଅନୁଭୂତି ମୋର ପୂର୍ବରୁ କେବେ ହୋଇନଥିଲା ଓ ପରେ ମଧ୍ୟ କ୍ୱଚିତ୍ ହୋଇଛି ।

ସେଇଠି ପ୍ରଥମ କରି ରାଜଗୋପାଳଚାରୀ ଓ ଅମ୍ୱାଲାଲ ସାରାଭାଇଙ୍କୁ ଦେଖିଲୁ । ହରିଜନ ସେବକ ସଙ୍ଘ ବୈଠକରେ ଆମେ ପିଲାମାନେ ଦର୍ଶକ ଭାବରେ ବସିଥାଉ । ଘନଶ୍ୟାମଦାସ ବିଡ଼ଲା ଅଧ୍ୟକ୍ଷ ଥା'ନ୍ତି । ମୁଁ ଗୋଟାଏ ହାତକଟା ଗେଞ୍ଜି ମାତ୍ର ପିନ୍ଧି ବସିଥାଏ । ବିଡ଼ଲାଜୀ ସଙ୍ଘର ଅଫିସ୍ ସମ୍ପାଦକ ଶ୍ୟାମଲାଲଜୀଙ୍କୁ ଇଶାରା କଲେ, ସେ ଆସି ମତେ ଗୋଟିଏ ପଞ୍ଜାବୀ ପିନ୍ଧି ଆସିବାକୁ ଅନୁରୋଧ କଲେ । ଆମେ ସବୁ ସ୍ୱରାଜୀ ଭାବରେ ଯେଉଁ ପ୍ରକାରର ଅନୌପଚାରିକ ସଂସ୍କୃତିରେ ଅଭ୍ୟସ୍ତ ହୋଇଥିଲୁ ଦେଖିଲି ଯେ ତାହା ଏଠି ଚଳିବ ନାହିଁ । ଏଠି କେତାଦୁରସ୍ତ ଚୋସ୍ତ ରହିବାକୁ ହେବ । ଯାହା ହେଉ ମୁଁ ସେଠୁ ଉଠିଆସିଲି । ଆଉ ଯିବାକୁ ମନ ହେଲା ନାହିଁ । ଘରେ ଶୋଇ ପଡ଼ିଲି । ସଭା ଦେଖିବା ହେଲା ନାହିଁ । ପଚିଶ ବର୍ଷ ପରେ ଆମେ କେତେଜଣ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ରାଷ୍ଟ୍ରପତି ରାଜେନ୍ଦ୍ର ବାବୁଙ୍କ ସାମନାରେ ଖାଲି ଦେହରେ ବସି ଆମର ମୁକ୍ତ ସଂସ୍କୃତିର ଟେକ ବଜାୟ ରଖିଥିଲୁ ।

ଫେରିବାବେଳେ ଆମେ ହଜାରିବାଗରେ ବାପାଙ୍କ ସାଙ୍ଗରେ ଦେଖା କରିବା କଥା ହେଲା । ସତ୍ୟନାରାୟଣବାବୁ ସିଧା ଫେରିଲେ । ଆମେ ମହତାବବାବୁ, ବୋଉ, ଚୁନୀ ଓ ମୁଁ ଏଲାହାବାଦ ଦେଇ ଯାଉଥିବା ହାୱଡ଼ା ମେଲ୍‌ରେ ସୱାର ହେଲୁ । ଏ ଗାଡ଼ି ଜବଲପୁର ଦେଇଯାଏ । ସେଠି ପାଖରେ ନର୍ମଦା ନଈ କୂଳରେ ମାର୍ବଲ ପାହାଡ଼ ଥିବାର ଜାଣିଥାଉ । ଆମେ ପିଲାମାନେ ଜିଦ୍ ଧରିବାରୁ ଜବଲ୍‌ପୁରରେ ସମସ୍ତେ ଓହ୍ଲାଇଲୁ । ସେତେବେଳକୁ ସନ୍ଧ୍ୟା ହୋଇଆସୁଛି । ଗୋଟିଏ ଧର୍ମଶାଳାରେ ଯାଇ ରହିଲୁ । ଘରେ ତାଲା ପକେଇ ବାହାରକୁ ଯିବାକୁ ପ୍ରସ୍ତୁତ ହେବାରୁ ସେଠାର ଜଗୁଆଳ କହିଲା ଯେ ସେମାନେ ତାଲା ଦେବେ । ଆମ ତାଲା ପଡ଼ି ପାରିବ ନାହିଁ । ଏଥିରେ ମହତାବ ବାବୁଙ୍କର ସନ୍ଦେହ ହେଲା ଯେ ତା'ର କିଛି ମନ୍ଦ ଉଦ୍ଦେଶ୍ୟ ଅଛି । ସେଠୁ ଆମେ ଚାଲିଯାଇ ଷ୍ଟେସନ୍‌ରେ ମୁସାଫିରଖାନାରେ ରହିଲୁ ଓ ତହିଁଆରଦିନ ସକାଳେ ଡଙ୍ଗାରେ ନଈଏ

ନଣଏ  ଯାଇ ଦୁଇ ପାଖରେ ପାହାଡ଼ର ଦୃଶ୍ୟ ଦେଖିବାର ଉପାୟ ନ ଥିଲା । କୂଳରେ ବସି ଯେତିକି ଦେଖିବାର ଦେଖିଲୁ ।

ସେଠୁ ହଜାରୀବାଗ । ହଜାରୀବାଗରେ ମହାତାବବାବୁଙ୍କୁ ମୋଟେ ଜେଲ୍ ହତା ଭିତରେ ରହିବାକୁ ଜେଲ୍‌ର ମନାକଲେ । ସରକାରରୁ ସେପରି ଆଦେଶ ଆସିଛି ବୋଲି ଜଣାଇଲେ । ସେ ସେଠା ଜେଲ୍‌ରେ ଥିବାବେଳେ  ଲୁଚେଇ କରି ଖବର ଦିଆନିଆ କରିଥିଲେ ବୋଲି ବୁଝାପଡ଼େ ତାଙ୍କୁ ବିପଦଜନକ ମନେ କରାଯାଉଥିଲା । ସେତେବେଳେ ମୋର କଥା କହିବାର ପ୍ରବୃତ୍ତି ଓ ଅଭ୍ୟାସ ଏତେ କମ୍ ଥିଲା ଯେ, ବାପାଙ୍କ ସାଙ୍ଗରେ ଘଣ୍ଟାଏ କାଳ ସାକ୍ଷାତ୍ ଭିତରେ ମୁଁ ପଦେ ଦୁଇପଦରୁ ବେଶି କଥା କହି ନ ଥିଲି । ଏହା ଲକ୍ଷ୍ୟ କରି ଜେଲର୍ ମହାଶୟ ମନ୍ତବ୍ୟ କରିଥିଲେ - "ଏ ବାବୁ କ'ଣ ଘୁଙ୍ଗା କି  ? ଏ କ'ଣ ମୋଟେ କଥାବାର୍ତ୍ତା କଲେ ନାହିଁ  ?"

ଆମେ ମୋଦପୁରରେ ସତୀଶଚନ୍ଦ୍ର ଦାସଗୁପ୍ତଙ୍କ ସାଙ୍ଗରେ ବି ଦେଖା କରିଥିଲୁ । ତାଙ୍କ ସାଙ୍ଗରେ ମହତାବବାବୁଙ୍କର କଥାବାର୍ତ୍ତା ଭିତରେ ଆନ୍ଦୋଳନରେ ଗୋପନୀୟତାର ସ୍ଥାନ ନେଇ ଖୁବ୍ ଯୁକ୍ତିତର୍କ ହୋଇଥିଲା । ଗାନ୍ଧୀଜୀ ଏହା ପୂର୍ବରୁ କହିଥିଲେ ଯେ ସତ୍ୟାଗ୍ରହ ଆନ୍ଦୋଳନରେ ଗୋପନୀୟତାର ସ୍ଥାନ ନାହିଁ । ଏଇ କଥାକୁ ନେଇ ସେତେବେଳେ ଖୁବ୍ ଆଲୋଚନା ଚାଲିଥାଏ । ତାହା ପୂର୍ବରୁ ତ ପ୍ରଚାରପତ୍ର ଛାପିବା, ଖବର ନେବା ଆଣିବା ଆଦି କାମ ଲୁଚେଇ କରି କରାଯାଉଥାଏ । ସତୀଶବାବୁଙ୍କ ଭଳି କେତେକ ଗାନ୍ଧୀଜୀଙ୍କ ମତର ଅତି କଟ୍ଟର ବ୍ୟାଖ୍ୟା କରୁଥା'ନ୍ତି । ମହତାବବାବୁ ଉପରୋକ୍ତ ପ୍ରକାରର ସୀମାବନ୍ଧ ଗୋପନୀୟତା ସପକ୍ଷରେ ଥା'ନ୍ତି । ଏସବୁ ଆଲୋଚନା ଶୁଣି ମୋର ଧାରଣା ହୋଇଥିଲା ଓ ଏବେ ମୋଟାମୋଟି ସେୟା ଅଛି ଯେ ସତ୍ୟାଗ୍ରହ ଓ ଆଇନ୍ ଅମାନ୍ୟର କାର୍ଯ୍ୟକ୍ରମ ଗୁପ୍ତରେ ଚାଲିପାରେ ନାହିଁ । ଲୁଚି ଲୁଚି ଯାଇ କେଉଁଠି ପତାକା ଉଡ଼େଇଦେବା ବା ଆଉ କିଛି କରିଦେବା ସତ୍ୟାଗ୍ରହ ନୁହେଁ । ପ୍ରଚାରପତ୍ର ଯେ ବାଣ୍ଟିବ ସେ ତାହା ଖୋଲାଖୋଲି, ଗିରଫ୍  ହେବାକୁ ପ୍ରସ୍ତୁତ ହେଇ, ବାଣ୍ଟିବା ଚାହିଁ । ମାତ୍ର ପ୍ରଚାରପତ୍ର କେଉଁଠି ଛପା ହେଉଛି ତାହା ସମସ୍ତଙ୍କୁ ଜଣେଇବା ସତ୍ୟାଗ୍ରହୀର କର୍ତ୍ତବ୍ୟ ନୁହେଁ । ତାହାଛଡ଼ା ଲୋକେ ନିଜ ନିଜ ଭିତରେ ଯେଉଁ ଉପାୟରେ ସମ୍ପର୍କ ରଖିବେ ବା ଯାହା ଆଲୋଚନା କରିବେ ସେସବୁ ସର୍ବସାଧାରଣ ବା ସରକାରଙ୍କୁ ଜଣାଇବାକୁ ହେବ, ଏହାର କିଛି ଅର୍ଥ ନାହିଁ ।

ଏ ସଂକ୍ରାନ୍ତରେ ଗୋଟିଏ ପ୍ରସଙ୍ଗ ମନେପଡୁଛି । ରେଭରେଣ୍ଡ ସଦରଲ୍ୟାଣ୍ଡଙ୍କର 'ଇଣ୍ଡିଆ ଇନ୍ ବଣ୍ଡେଜ' ବହି ସରକାର ବାଜ୍ୟାପ୍ତ କରିଥିଲେ । ଏ ବହି ଖୋଜିବା ପାଇଁ ସାବରମତୀ ଆଶ୍ରମକୁ ପୁଲିସ୍ ଗଲେ ଓ ସେ ବହି ଥିଲେ ଦେଇଦେବା ପାଇଁ ଗାନ୍ଧୀଜୀଙ୍କୁ ଅନୁରୋଧ କଲେ । ଗାନ୍ଧୀଜୀ ଜାବାବ ଦେଲେ ଯେ, ସେ ବହି ତ ଆଶ୍ରମରେ ଅଛି, ମାତ୍ର ତାହା ପୁଲିସ୍‌କୁ ଦେବା ତାଙ୍କର କାମ ନୁହେଁ । ପୁଲିସ୍ ଆଶ୍ରମରେ ଖୋଜି ତାହା ପାଇବ ତ ନେଇଯାଉ ।

# ନୂତନ ଦିଗନ୍ତ

ଏତେବେଳକୁ ଆଇନ୍ ଅମାନ୍ୟ ଆନ୍ଦୋଳନ କାର୍ଯ୍ୟତଃ ବନ୍ଦ ହେଇଗଲାଣି । ଆଗକୁ କ'ଣ କରାଯିବ ତାହା ନେଇ ନାନା କଳ୍ପନାକଳ୍ପନା, ବିଚାର ଆଲୋଚନା ଚାଲିଥାଏ । ସେତେବେଳକୁ ସମାଜବାଦୀ ଚିନ୍ତାଧାରାର ପ୍ରସାର ବି ଯଥେଷ୍ଟ ହେଲାଣି । ସେତେବେଳେ ମୁଁ ସ୍ୱରାଜ୍ୟ ସାଧନର ପନ୍ଥା ବିଷୟରେ ଯେତେ ନୁହେଁ, ଜୀବନର ଅର୍ଥ ଓ ପନ୍ଥା ବିଷୟରେ ଅଧିକ ଅଭିନିବିଷ୍ଟ ଥାଏ । ସାରା ବିଶ୍ୱ, ସମସ୍ତ ଜୀବନ, ମତେ ସେତେବେଳେ ବିଚିତ୍ର ରସ ଓ ବିଚିତ୍ର ବର୍ଣ୍ଣର ସମ୍ଭାର ନେଇ ହାତଠାରି ଡାକୁଥାଏ । ରବୀନ୍ଦ୍ର କବିତା, ବର୍ଟରାଣ୍ଡ ରସେଲଙ୍କର ମିଷ୍ଟିସିଜିମ୍ ଏଣ୍ଡ ଲଜିକ୍ (ରହସ୍ୟବାଦ ଓ ତର୍କବୁଦ୍ଧି), ଏଡିଂଟନଙ୍କର 'ଦି ଏକ୍ସପ୍ୟାନ୍ଡିଂ ୟୁନିଭର୍ସ' (ବିସ୍ତାରଶୀଳ ବିଶ୍ୱ), ଜୁଲିଆନ୍ ହକ୍ସଲୀଙ୍କର 'ହ୍ୱାଟ୍ ଡେୟାର୍ ଆଇ ଥିଂକ୍' ( ମୁଁ କ'ଣ ଭାବିବାକୁ ସାହସ କରୁଛି), ଅପ୍ଟନ୍ ସିନ୍‌କ୍ଲେୟାରଙ୍କର 'ହ୍ୱାଟ ଗଡ୍ ମିନ୍ସ୍ ଟୁ ମି' (ଈଶ୍ୱର ବୋଇଲେ ମୁଁ କ'ଣ ବୁଝେ) ଏମିତି ସବୁ ବହି ମୋ ହାତରେ ପଡ଼ିଥାଏ ଓ ଏହି ସବୁ ପ୍ରକାରର ବିଷୟ ଭିତରେ ମୁଁ ଗୋଟାଏ କ'ଣ ଖୋଜୁଥାଏ ।

ଅନେକ ଦିନ ପୂର୍ବରୁ ପ୍ରବାସୀରେ 'ଅପରାଜିତ' ଉପନ୍ୟାସ କିସ୍ତିୱାରୀ ବାହାରୁଥିବା ବେଳେ ସେଥିରୁ ପୁଳାଏ ପୁଳାଏ ପଢ଼ିଥିଲି । ଅପୁ କଲିକତାରେ କଲେଜରେ ନାଁ ଲେଖାଇ ଯେମିତି ଅନୁଭବ କରୁଥିଲା, ଲାଇବ୍ରେରୀରେ ଅସଂଖ୍ୟ ପ୍ରକାରର ବହି, ଜୀବନର ଅସଂଖ୍ୟ ପ୍ରକାରର ବୈଚିତ୍ର୍ୟ, ଏସବୁର ସ୍ୱାଦ ଗ୍ରହଣ ପାଇଁ ତାହା ଭିତରେ ଯେଉଁ ପ୍ରକାରର ବ୍ୟାକୁଳ ପିପାସା ଥିଲା ମୋର ସ୍ଥିତି ଏ ସମୟରେ ଠିକ୍ ସେମିତି ହୋଇଥାଏ । ଈଶ୍ୱର ଅଛନ୍ତି କି ନାହିଁ ? ଈଶ୍ୱର ବୋଇଲେ ଲୋକେ କ'ଣ ବୁଝୁଛନ୍ତି ? ବିଶ୍ୱ ସୃଷ୍ଟିର ଆଦି ଅନ୍ତ କ'ଣ ? ସେଥିରେ ମଣିଷର ସ୍ଥାନ କି ପ୍ରକାରର ? ଏହିପରି ସବୁ ପ୍ରଶ୍ନ ମୁଣ୍ଡ ଭିତରେ ଘୂରୁଥାଏ । ଗୋଟିଏ ଦିଗରେ ଗାନ୍ଧୀଜୀଙ୍କର ଈଶ୍ୱର ବିଶ୍ୱାସ, ଅନ୍ୟ ଦିଗରେ ବିଜ୍ଞାନର ପ୍ରଖର ଆଲୋକ ଓ ଆଉ ଏକ ଦିଗରେ ବୈଜ୍ଞାନିକ ବସ୍ତୁବାଦ ନାଁରେ ପ୍ରସାର କରାଯାଉଥିବା ନିରୀଶ୍ୱରବାଦ- ଏହି ସବୁ ଭିତରେ ମୁଁ ନିଜର ରାସ୍ତା ଖୋଜୁଥାଏ । ସେ ଖୋଜା ଏବେ ବି ସରି ନାହିଁ । ଯଦିଓ ଆଗରେ କେତେଗୁଡାଏ ବଡିଖୁଣ୍ଟ ନଜରରେ ପଡ଼ିଛି ।

ମୁଁ ରବୀନ୍ଦ୍ରନାଥଙ୍କର ଅନୁଭୂତିପୂର୍ଣ୍ଣ କବିତା ଓ ଗୀତସବୁ ମୁଖସ୍ଥ କରିଥାଏ । ସେସବୁ ମନେମନେ ଆବୃତ୍ତି କରି ତା'ର ଗଭୀର ତାତ୍ପର୍ଯ୍ୟ ଓ ଅନୁଭୂତିର ସ୍ୱାଦ ପାଇବାକୁ ଚେଷ୍ଟା କରେ । "ଏଇ ଲଭିନୁ ସଙ୍ଗ ତବ ସୁନ୍ଦର ହେ ସୁନ୍ଦର" - ଏଇ ଗୀତଟି ମୋର ସେତେବେଳେ ଅତି ପ୍ରିୟ । ପୂର୍ବରୁ ଉପମାମୁଁଙ୍କ ଘରେ ରେକର୍ଡ଼ରେ ଶୁଣିଥିଲି । ଭାରି ଭଲ ଲାଗିଥିଲା । ଏଇ ସମୟରେ ଦିନକର ଘଟଣା । ଭାଦ୍ର ସକାଳର ସୁନେଲି ଖରା ପଡ଼ିଥାଏ । ଆମ ଘର ବାରନ୍ଦାରେ ବସି ଖୁଡ଼ୀ ଗାଇଲେ - "ଶରତ୍ ତୋମାର୍ ଅରୁଣ ଆଲୋର୍ ଅଞ୍ଜଳି", ମନେହେଲା ଯେପରି ଏ

ଗୀତର କୁହୁକ ସ୍ପର୍ଶରେ ଆମ ଘରର ସାମନା ହତାର ଘସରା, ଯାଦୁରା ଘାଗୁଡ଼ାକ ବି ଏକ ନୂଆ ରୂପରେ ଝଲମଲ କରି ଉଠିଲା । ସକାଳର ସେ ସୁନେଲି ଖରା ଢଳା ସୁନା ପରି ଆହୁରି ଉଜ୍ଜ୍ୱଳ ହୋଇଉଠିଲା । ଆକାଶର ନୀଳ ହେଲା ଆହୁରି ଅତଳ ଗଭୀର । ସେ ଏକ ଅନିର୍ବଚନୀୟ ଅନୁଭୂତି ।

ଗାନ୍ଧୀଜୀଙ୍କର ହରିଜନ ଗସ୍ତ ଭିତରେ ପୁନାର ଏକ ସଭାରେ ସନାତନୀମାନଙ୍କ ଆଡୁ ଏକ ବୋମା ଫିଙ୍ଗାଗଲା । ଦାଦା, ଖୁଡ଼ୀ ହେରିକା ଆମେସବୁ କଟକ ଘରେ ଥାଉ, ଏ ଖବର ଆସି ପହଞ୍ଚିଲା । ସମସ୍ତେ ଖୁବ୍ ବିଚଳିତ ଓ ଉତ୍ତେଜିତ ହୋଇ ଉଠିଲେ । ଖୁଡ଼ୀ ଗାଇ ଉଠିଲେ - "ତୋମାର ଆସନ ଶୂନ୍ୟ ଆଜି ହେ ବୀର ପୂର୍ଣ୍ଣ କରୋ,.... ଦୁର୍ଗମ ପଥ ସଗୌରବେ ତୋମାର ଚରଣ ଚିହ୍ନ ଲବେ.... ଚିରେ ଅଭୟ ବର୍ମ ତୋମାର ବକ୍ଷେ ତାହାଇ ଧରୋ ।" ... ଏ ସଙ୍ଗୀତର ଝଙ୍କାର ସେତେବେଳେ ଗାନ୍ଧୀଜୀଙ୍କର ବିଷୟରେ ଆମର ଭାବନାକୁ ମୂର୍ତ୍ତିମନ୍ତ କରି ତୋଳିଥିଲା ।

ସେତେବେଳେ ମୋର ଗୋଟିଏ ଭାବ ଥିଲା, ଏବେ ବି ଅଛି, କୌଣସି ବହିକୁ ଲୋକେ ଗୋଟିଏ ନୂଆ ଧର୍ମର ବାର୍ତ୍ତାବହ ଭଳି ପଢ଼ିବାକୁ ଆରମ୍ଭ କଲେ ମୋର ତାହା ପଢ଼ିବା ପାଇଁ ବିଶେଷ ଇଚ୍ଛା ହୁଏ ନାହିଁ । ଗାନ୍ଧୀପନ୍ଥା ବିଷୟରେ ଅନାସ୍ଥାପରାୟଣ ହୋଇ ସେତେବେଳେ କେତେକ ବନ୍ଧୁ ମାର୍କ୍ସବାଦକୁ ଏକ ନୂଆ ଧର୍ମର ବାଣୀ ଭଳି ଗ୍ରହଣ କରି ଯେପରି ଭକ୍ତିପୂର୍ଣ୍ଣ ଚିତ୍ତରେ ମାର୍କ୍ସବାଦୀ ସାହିତ୍ୟ ଅଧ୍ୟୟନ ଆରମ୍ଭ କଲେ ଓ ସୋଭିଏତ୍ ରୁଷିର ଭକ୍ତିପୂର୍ଣ୍ଣ ପ୍ରଶଂସା ଆରମ୍ଭ କଲେ, ତାହା ମୋତେ ପସନ୍ଦ ହେଉ ନ ଥିଲା । ଉଭୟ ପ୍ରକାରର ଭକ୍ତିମାର୍ଗକୁ ଛାଡ଼ି ମୁଁ ବୈଜ୍ଞାନିକ ଓ ବିଶ୍ଳେଷଣମୂଳକ ସାହିତ୍ୟ ପସନ୍ଦ କରୁଥିଲି । ଏହାପରେ ମୋତେ ବର୍ଣ୍ଣାଡ଼୍ ଶଙ୍କର ଲେଖାହିଁ ସବୁଠୁଁ ଭଲ ଲାଗିଥିଲା ।

ମହାକାଶ ଓ ଗ୍ରହନକ୍ଷତ୍ର ବିଷୟରେ କିଛି ଅଧ୍ୟୟନ କରିବା ପରେ ମୋ ମନରେ ଗୋଟାଏ ବିଚାର ଆସିଲା ଯେ ପ୍ରତ୍ୟେକ ରାଜନୀତିକ ନେତା ଓ କର୍ମୀ ଏସବୁ ବିଷୟ ଅଧ୍ୟୟନ କରିବା ଉଚିତ । ତାହା ହେଲେ ସେମାନଙ୍କର ମାତ୍ରାଜ୍ଞାନ ବା ଅନୁପାତଜ୍ଞାନର (ସେନ୍ସ ଅଫ୍ ପ୍ରୋପୋର୍ଶନ୍) ର ବିକାଶ ହେବ । ରସେଲ୍‌ଙ୍କର ଲେଖାର ଅର୍ଥ ଗ୍ରହଣ କରିବା କଠିନ ହେଉଥିଲା, ମାତ୍ର ତାଙ୍କର ତର୍କଶୁଦ୍ଧ ବିଶ୍ଳେଷଣ ବେଳେ ବେଳେ ନୀରସ ହେଲେ ବି ଭଲ ଲାଗୁଥିଲା ।

ସମାଜବାଦ ଇତ୍ୟାଦିର କଥାକୁ ମୋର ଅର୍ଥନୀତି ବିଷୟରେ ଜାଣିବାର ଆଗ୍ରହ ହେଲା । ଆମ ଘରେ ଦୁଇଖଣ୍ଡରେ ସଂପୂର୍ଣ୍ଣ ଟସିଗ୍‌ଙ୍କର (Taussing) ଅର୍ଥନୀତିର ପାଠ୍ୟପୁସ୍ତକ ଥିଲା । ତାକୁ ପଢ଼ିବା ଆରମ୍ଭ କଲି । ଦେଖିଲି ଯେ, ବିଷୟଟା ବେଶ୍ ବୁଝି ହେଉଛି । ସେଥିରେ ଅର୍ଥନୀତିର ଗତାନୁଗତିକ ସିଦ୍ଧାନ୍ତ ଗୁଡ଼ାକ ବେଶ୍ ପ୍ରାଞ୍ଜଳ ଭାବରେ ଉପସ୍ଥାପିତ କରାହୋଇଥିଲା । ଏ ବହି ଦୁଇଖଣ୍ଡ ମୁଁ ପ୍ରାୟ ତିନି ମାସରେ ପଢ଼ି ଶେଷ କରିଦେଲି । ଏହାପରେ ମୁଁ ଲକ୍ଷ୍ୟ କରି ଦେଖିଲି ଯେ କଲେଜରେ ତୃତୀୟ ଚତୁର୍ଥ ବର୍ଷରେ ପଢୁଥିବା ଛାତ୍ରମାନେ ଯେ ଏହାଠାରୁ ବେଶି

କିଛି ଆୟତ୍ତ କରିପାରିଛନ୍ତି ତାହା ନୁହେଁ । ମୋର ଧାରଣା ହେଲା ଯେ କଲେଜରେ ଦୁଇ ତିନି ବର୍ଷରେ ଯାହା ପଢ଼ାହୁଏ ତାହା ଜଣେ ସାଧାରଣ ପିଲା ଦୈନିକ ତିନି ଘଣ୍ଟାରୁ ଅଧିକ ସମୟ ପରିଶ୍ରମ କଲେ ତିନି ଚାରି ମାସରେ ଆୟତ୍ତ କରିପାରିବ । ଏହାପରେ ମୋ ହାତରେ ଜି.ଡ଼ି.ଏଚ୍ କୋଲଙ୍କର "ଦି ଇଣ୍ଟେଲିଜେଣ୍ଟ୍ ମ୍ୟାନ୍ସ ଗାଇଡ୍ ଟୁ ୱାଲର୍ଡ୍ କେଓଜ୍" (ବିଶ୍ୱବ୍ୟାପୀ ଅବ୍ୟବସ୍ଥାରେ ବୁଦ୍ଧିମାନ ବ୍ୟକ୍ତିର ମାର୍ଗଦର୍ଶିକା) ବହି ହାତରେ ପଡ଼ିଲା । ଏ ବହି ମଧ୍ୟ ଆଧୁନିକ ଦୁନିଆର ଅର୍ଥନୀତିର ଗତିବିଧି ବୁଝିବାରେ ଖୁବ୍ ସାହାଯ୍ୟ କଲା । ବର୍ଣ୍ଣାଡ଼୍ ଶ'ଙ୍କର ସାହିତ୍ୟ ସହିତ ମଧ୍ୟ ଏତିକି ବେଳେ ପରିଚିତ ହେଲି ଓ ତାଙ୍କର "ଦି ଇଣ୍ଟେଲିଜେଣ୍ଟ ଉମ୍ୟାନ୍ସ୍ ଗାଇଡ୍ ଟୁ ସୋଶାଲିଜିମ୍" (ବୁଦ୍ଧିମତୀ ମହିଳାଙ୍କ ପାଇଁ ସମାଜବାଦକୁ ମାର୍ଗଦର୍ଶିକା) ବହି ମତେ ସମାଜବାଦର ଦୀକ୍ଷା ଦେବାର ପ୍ରଧାନ ମାଧ୍ୟମ ଥିଲା । ତାଙ୍କର ନାଟକ ସବୁ ମଧ୍ୟ ମୁଁ ପ୍ରଭୃତ ଭାବରେ ଉପଭୋଗ କରିଥିଲି । ସେ ସବୁଥିରୁ ଅତି ପୁଷ୍ଟିକର ମାନସିକ ଖାଦ୍ୟ ମିଳିଥିଲା । ୱେଲସ୍‌ଙ୍କର "ଦି ଓପେନ୍ କନ୍‌ସ୍ପିରେସୀ" (ଖୋଲା ଷଡ଼ଯନ୍ତ୍ର) ଓ ରସେଲଙ୍କର 'ଦି ପ୍ରସ୍‌ପେକ୍ଟସ୍ ଅଫ୍ ଇଣ୍ଡସ୍ଟ୍ରିୟାଲ ସିଭିଲାଇଜେଶନ୍ (ଶିଳ୍ପପ୍ରଧାନ ସଭ୍ୟତାର ଭବିଷ୍ୟତ ସମ୍ଭାବନା) ବହିରୁ ମଧ୍ୟ ନୂଆ ନୂଆ ଦୃଷ୍ଟିକୋଣ ପାଇଥିଲି । ସେ ସମୟରେ ଅପ୍‌ଟନ୍ ସିନ୍‌କ୍ଲେୟାର୍ ଉପନ୍ୟାସ ମାଧ୍ୟମରେ ଆମେରିକାନ୍ ସଂସ୍କୃତିର ସମାଲୋଚନାମୂଳକ ନୂଆ ନୂଆ ଭାବଧାରା ପ୍ରଚାର କରୁଥା'ନ୍ତି । ତାଙ୍କର 'ଅଏଲ', 'ବୋଷ୍ଟନ୍', 'ଏ ରୋମାନ୍ ହଲିଡ଼େ' ପ୍ରଭୃତି ବହି ମଧ୍ୟ ମୋର ସାମାଜିକ ଦୃଷ୍ଟିକୋଣକୁ ପୁଷ୍ଟ କରିଥିଲା । ଏହି ସମୟରେ ଏଂଜ୍ରୁଜ ଓ ରୋମାଁରୋଲାଁଙ୍କ ଲିଖିତ ଗାନ୍ଧୀଜୀଙ୍କର ଜୀବନୀ ଦୁଇଟି ଗାନ୍ଧୀଜୀଙ୍କର ଜୀବନ ଓ ଆଦର୍ଶକୁ ବୁଝିବାରେ ସାହାଯ୍ୟ କରିଥିଲା । ମିସେସ୍ ଦାସ୍ ଦାଦାଙ୍କୁ ଗୋଟାଏ ସାର ଇବସେନ୍ ଗ୍ରନ୍ଥାବଳୀ ଦେଇଥିଲେ । ସେଥିରୁ ଡଲ୍‌ସ୍ ହାଉସ୍, ବ୍ରାଣ୍ଡ, ଏନିମୀ ଅଫ୍ ଦି ପିପଲ୍, ଗୋଷ୍ଟସ୍ ପ୍ରଭୃତି କେତେଗୁଡ଼ିଏ ନାଟକ ପଢ଼ିଥିଲି ଓ ତାହା ଭିତରୁ ବି ମତେ ଆଉ ଏକ ଦୃଷ୍ଟିକୋଣର ପରିଚୟ ମିଳିଥିଲା ।

ଏସବୁ ଭିତରେ ନିର୍ମଳବାବୁ ଓ ଭୂପେନ୍‌ଦା ହେରିକା ମଧ୍ୟ କଟକ ଆସିଥିଲେ ଓ ଦାଦା ସାଙ୍ଗରେ ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା କରିଥିଲେ । ଭୂପେନ୍‌ଦା ମଙ୍ଗଳାମାସୀଙ୍କର ବଡ଼ଭାଇ । ଦିଦିମା, ମାସୀ ଓ ନୀପେନ୍‌ଦା ସାଙ୍ଗରେ ତ ଇତିମଧ୍ୟରେ ଆମ ପରିବାରର ବେଶ୍ ଘନିଷ୍ଠତା ଗଢ଼ିଉଠିଥିଲା, ଭୂପେନଦାଙ୍କ ସାଙ୍ଗରେ ଏହାପରେ ହେଲା । ପରେ ତ କାଳକ୍ରମେ ଏ ପରିବାର ସହିତ ଘନିଷ୍ଠତମ ଆତ୍ମୀୟତା ହେଲା । ଭୂପେନ୍‌ଦା ଗାନ୍ଧୀଜୀଙ୍କର ପନ୍ଥାରେ ଆସ୍ଥାବାନ ଥିଲେ ଏବଂ ମାର୍କ୍ସବାଦୀ ବିଚାର ସହିତ ମଧ୍ୟ ତାଙ୍କର ଭଲ ପରିଚୟ ଥିଲା । ତାଙ୍କ ଦୃଷ୍ଟିକୋଣରେ ଗୋଟାଏ ନବୀନତା ଓ ଜୀବନ୍ତତା ଥିଲା ଯାହା ମତେ ଆକୃଷ୍ଟ କରିଥିଲା । ଏହାଛଡ଼ା କଲିକତା ସହରରେ ସେ ବାପାଙ୍କର ଓ ମୋର ମାର୍ଗଦର୍ଶକ ଥିଲେ । କ୍ୟାମେରା, ବଢ଼େଇ ହତିଆର, ବହି ଠୁଁ ଆରମ୍ଭ କରି ମୌଳିକ ବିଦ୍ୟାଳୟରେ ପିଲାଙ୍କ ରଙ୍ଗ, କାଗଜ, ରଙ୍ଗୀନ୍ ଚକ୍‌ଯାଏ ଯେତେବେଳେ ଯାହା ଦରକାର ଦୁନିଆଯାକର ସେସବୁ ଅଜବ ଜିନିଷ କିଣିବା ପାଇଁ ଆମେ ଭୂପେନ୍‌ଦାଙ୍କର

ଆଣ୍ଡ୍ରା ହୋଇଥିଲୁ । ଦିନାକେତେ ସେ କଲିକତାରୁ ପାର୍କ ଷ୍ଟ୍ରିଟ୍‌ରେ ଏକ ଲୁଗା ଦୋକାନ କରିଥିଲେ । ସେଠିକି ଅନେକ କଂଗ୍ରେସ କର୍ମୀ ଆସନ୍ତି, ଆଡ୍‌ଡ୍ରା ଦେବାକୁ, ଭୂପେନ୍‌ଦା ଆଡ୍‌ଡାରେ ଓସ୍ତାଦ ଥିଲେ । ଏଇ ଆଡ୍‌ଡ୍ରାରେ ପ୍ରଫୁଲ୍ଲ ସେନ୍, ରତନ୍‌ମଣି ଚଟ୍ଟୋପାଧ୍ୟାୟ ପ୍ରଭୃତିଙ୍କ ସହିତ ପ୍ରଥମ ଚାକ୍ଷୁସ ପରିଚୟ ହୋଇଥିଲା ।

ନିର୍ମଳଦା-ନିର୍ମଳ କୁମାର ବସୁ-ମଧ ଭୂପେନ୍‌ଦାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଭୂପେନ୍‌ଦାଙ୍କ ସାଙ୍ଗରେ ବୁଲାବୁଲି ବେଳେ ତାଙ୍କ ସାଙ୍ଗରେ ବି ଅନେକ ଥର ସାକ୍ଷାତ୍ ହୁଏ । ସେ ଆମ ପରିବାର ଓ କାମଦାମ ବିଷୟରେ ଜାଣିବାକୁ ଖୁବ୍ ଉତ୍ସୁକ୍ ଥା'ନ୍ତି । ସବୁକଥା ଆଗ୍ରହର ସହିତ ପଚାରି ବୁଝନ୍ତି । ତାଙ୍କର କଥାବାର୍ତ୍ତାରେ ଗୋଟିଏ ଜ୍ଞାନର ପ୍ରଭା ଓ ଶାନ୍ତ କୌତୂକର ଭାବ ଥିଲା ଯାହା ମତେ ମୁଗ୍ଧ କରୁଥିଲା । ପରେ ତାଙ୍କ ସହିତ ପରିଚୟ ହେଲା । ସେ ବିଶ୍ୱବିଶ୍ରୁତ ନୃତତ୍ତ୍ୱବିଦ୍ ଥିଲେ ଓ ଗାନ୍ଧୀପନ୍ଥୀମାନଙ୍କ ଭିତରେ ବୋଧହୁଏ ଏକମାତ୍ର ବ୍ୟକ୍ତି ଥିଲେ ଯାହାଙ୍କର ବୈଜ୍ଞାନିକ ତାଲିମ ଥିଲା ଓ ବିବିଧ ସାମାଜିକ ବିଜ୍ଞାନର ଗଭୀର ଅଧ୍ୟୟନ ଥିଲା । ମାର୍କ୍ସ, ଫ୍ରୟେଡ୍ ହୃଦୟଙ୍ଗମ କରିଥିଲେ । ଗାନ୍ଧୀଜୀଙ୍କର ସମସ୍ତ ଲେଖା ସେ ତନ୍ନ ତନ୍ନ କରି ଅଧ୍ୟୟନ କରି ସେସବୁର ବିଷୟାନୁସାରିଣୀ ସୂଚୀ ମଧ୍ୟ ତିଆରି କରିଛନ୍ତି । ତାଙ୍କ ଦୃଷ୍ଟିରେ ଗୋଟାଏ ନବୀନତା ଓ ବ୍ୟାପକତା ଥିଲା ଯାହା ଅନ୍ୟମାନଙ୍କଠାରେ କମ୍ ଦେଖିବାକୁ ମିଳେ ।

ଓଡ଼ିଶାର ମନ୍ଦିର ବିଷୟରେ ବି ବ୍ୟାପକ ଗବେଷଣା କରି ସେ ବହି ଲେଖିଛନ୍ତି । ଥରେ ସେ କଟକ ଟାଉନ୍ ହଲ୍‌ରେ ଏ ବିଷୟରେ ବକ୍ତୃତା ଦେଉଥିଲେ । ସେଠି ମୁଁ ପ୍ରଶ୍ନ କରିଥିଲି ଯେ ଓଡ଼ିଶା ସହିତ ଦରିଆପାରି ଦେଶମାନଙ୍କର ସମ୍ବନ୍ଧ ଥିବାର କୌଣସି ସୂଚନା ଏଠାରେ ମନ୍ଦିରମାନଙ୍କର ଶିଳ୍ପାକୃତିମାନ ଭିତରୁ ମିଳେ କି ନାହିଁ ? ସେ କହିଲେ ଯେ କୋଣାର୍କ ମନ୍ଦିର ଦକ୍ଷିଣ ପାଖରେ ଖୋଳା ହୋଇଥିବା ପ୍ରତିକୃତିମାନଙ୍କ ଭିତରେ ଗୋଟାଏ ଦୃଶ୍ୟ ଅଛି ଯେଉଁଥିରେ ଜଣେ ରାଜାଙ୍କର ଦରବାରକୁ କେତେକ ଲୋକ ନାନା ଉପହାର ନେଇ ଆସୁଥିବାର ଦେଖାଯାଉଛି । ସେଥିରେ ଏକ ଜନ୍ତୁର ପ୍ରତିକୃତି ରହିଛି ଯେଉଁଟା ନିଶ୍ଚୟ ଗୋଟାଏ ଜିରାଫ୍ । ପରେ ମୁଁ କୋଣାର୍କରେ ଏଇ ଜିରାଫ୍‌କୁ ଖୋଜି ବାହାର କରିଥିଲି । ଅନେକ ପରେ ନିର୍ମଳଦା ମତେ ସମାଜବିଜ୍ଞାନ ଅଧ୍ୟୟନ ଦିଗରେ ଉତ୍ସାହିତ ଓ ସାହାଯ୍ୟ କରିଥିଲେ ।

## ବନ୍ୟାସଙ୍କଟ ଓ ଆର୍ତ୍ତସେବା

୧୯୩୩ ମସିହା ବୋଧହୁଏ ସେପ୍‌ଟେମ୍ବରରେ ଏଣେ କଟକରେ ପ୍ରବଳ ବର୍ଷା ସାଙ୍ଗକୁ ତେଣେ ଆସିଲା ମହାନଦୀ କାଠଯୋଡ଼ିରେ ପ୍ରବଳ ବନ୍ୟା ଓ ଭାଙ୍ଗିଲା ଖଣ୍ଡେଇତାଠାରେ ଘାଇ । ସେଥିରେ କାଠଯୋଡ଼ିରେ ଛବିଶ ଫୁଟ୍ ଉପରେ ପାଣି ଓ ଏପରି ଜୋର୍ ଦକ୍ଷିଣା ବତାସ ପିଟୁଥାଏ ଯେ ନଈରେ ବଡ଼ବଡ଼ ଲହଡ଼ି ଉଠି ବନ୍ଧରେ ବାଡ଼େଇ ହେଇ ତା'ର ପାଣିଛାଟ ଆସି ଆମ ଘର ଭିତରେ ଶେଷ ମୁଣ୍ଡାଯାଏ ପଡୁଥାଏ । ତେଣେ ଦିନକ ଭିତରେ ସହରରେ ବାର

ରାସ୍ତାରୁ ଅଧିକ ବର୍ଷା ଗାଳିଦେଇଥାଏ । ନଈବଢ଼ି ଯୋଗୁଁ ବନ୍ଧକବାଟି ନାଳବାଟେ ଏ ବର୍ଷାପାଣି ଖଲାସ ହୋଇପାରୁ ନଥାଏ । ସୂତାହାଟ, ପଟାପୋଲ ପ୍ରଭୃତି ଅଞ୍ଚଳରେ ଶହ ଶହ ଘରେ ପାଣି ପଶିଯାଇଥାଏ ।

ଗରିବ ଲୋକଙ୍କର ପଲା ଓ ଚାଳଘରମାନଙ୍କର କାନ୍ଥ ଭୁଷୁଡ଼ି ପଡ଼ିଥାଏ । ଶହ ଶହ ଲୋକ ଆସି ଉଚ୍ଚ ଭାଗାରେ, ତିନିକୋଣିଆ ବଗିଚା ପ୍ରଭୃତିରେ ଆଶ୍ରୟ ନେଇଥା'ନ୍ତି ।

ଏଣେ କାଠଯୋଡ଼ିର ଲହଡ଼ି ପୁରୀଘାଟଠାରୁ ଖାନ୍‌ନଗରଯାଏ ବନ୍ଧରେ ବାଡ଼େଇହେଇ ଅତଡ଼ା ଖସେଇବାକୁ ଆରମ୍ଭ କଲା । ବନ୍ଧ ଭାଙ୍ଗିବାର ଆଶଙ୍କା ଦେଖାଗଲା । ବାରିକମିସ୍ତ୍ରୀ ବିଭାଗର ଲୋକେ ବାଲିବସ୍ତା ପକାଇ ତାକୁ ରୋକିବା ଚେଷ୍ଟା କରୁଥା'ନ୍ତି, ମାତ୍ର ବାଲିବସ୍ତା ଠାକୁ ନ ଥାଏ । ଆମ ସ୍ୱରାଜୀ ଇଞ୍ଜିନିୟର ଗୁଣନିଧିବାବୁ ବୁଦ୍ଧି ଦେଲେ ଯେ ଗଛଡ଼ାଳ ସବୁ ହାଣି ବନ୍ଧ କଡ଼େକଡ଼େ ବାନ୍ଧିଦିଅ । ଥୋଡ଼ା ବୁଝାବୁଝି କରିବା ପରେ କଥାଟା ବାରିକମିସ୍ତ୍ରୀବାଲାଙ୍କର ମୁଣ୍ଡରେ ପଶିଲା । ବନ୍ଧପାଖ ଗଛମାନଙ୍କରୁ ଡାଳକାଟି ବନ୍ଧ କଡ଼େ କଡ଼େ ବାନ୍ଧି ଦିଆହେଲା । ଲହଡ଼ିର ମାଡ଼  ଗଛର ଡାଳପତ୍ରରେ ବାଜି ଥୋବରା ହୋଇଗଲା ଓ ବନ୍ଧ ରକ୍ଷା ପାଇଗଲା ।

ସେତେବେଳେ ଆମେ ସବୁ କଂଗ୍ରେସ ସ୍ୱେଚ୍ଛାସେବକମାନେ ଏହିସବୁ କାମରେ ଦିନରାତି ଲାଗିଥାଉ । ନିଜର ଉତ୍ସାହ ଓ କର୍ମତତ୍ପରତା ଦେଖେଇବାର ଏ ଏକ ଭଲ ସୁଯୋଗ ମିଳିଯାଇ ଥାଏ । ଦିନରାତି ବନ୍ଧ ଏମୁଣ୍ଡ ସେମୁଣ୍ଡ ପଇଁତରା ମାରି ବନ୍ଧକୁ ଜଗୁ,ଡାଳ ହଣାହଣି ଓ ବନ୍ଧାବନ୍ଧିରେ ମଧ୍ୟ ସାହାଯ୍ୟ ଦେଉଥାଉ । ଏସବୁ ଭିତରେ ଖବର ଆସିଲା ଯେ କଟକଠୁଁ ପାଞ୍ଚମାଇଲ ଖଣ୍ଡେ ତଳେ ନଈରେ ଡାହାଣ ବନ୍ଧରେ ଖଣ୍ଡେଇତା ଗାଁ ପାଖରେ ଘାଇ ହେଇଛି । ସେତେବେଳେ ବରାବର ଲୋକଶ୍ରୁତି ଥିଲା ଯେ କଟକ ସହରକୁ ନଈବଢ଼ି ଯୋଗୁଁ ବିପଦର ସମ୍ଭାବନା ଦେଖାଦେଲେ ସରକାରୀ ଲୋକ, ଗୁପ୍ତରେ ଡଙ୍ଗାରେ ଯାଇ ତଳମାନଙ୍କରେ କେଉଁଠି ହେଲେ ନଈବନ୍ଧ କାଟି ଦିଅନ୍ତି । ସେଥିପାଇଁ ଗାଁ ଲୋକେ ବରାବର ବଡ଼ ବଢ଼ିବେଳେ ନିଜନିଜ ଗାଁ ପାଖ ଜଗନ୍ତି । ଏ ଖଣ୍ଡେଇତା ଘାଇ ସେମିତି ହେଇଥିଲା କି ନାହିଁ ତାହା ଜାଣିବାର ତ ଉପାୟ ନଥିଲା । ମାତ୍ର ଏଇ ପ୍ରକାରର ଜନରବ ଉଠିଥିଲା ।

ଘାଇ ଫଳରେ ବିସ୍ତୃତ ଅଞ୍ଚଳ ବନ୍ୟାରେ କ୍ଷତିଗ୍ରସ୍ତ ହେଲା, ତା'ଛଡ଼ା ସବୁଦିନିଆ ଧୋୟା ଅଞ୍ଚଳସବୁ ବି । କଂଗ୍ରେସ କର୍ମୀମାନେ ସାହାଯ୍ୟ କାମରେ ଅଗ୍ରଣୀ ହେଲେ । ଡଙ୍ଗାରେ ଚୁଡ଼ା ଚାଉଳ ନେଇ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ବାଣ୍ଟିବାର ତୁରନ୍ତ ବ୍ୟବସ୍ଥା ହେଲା । ସେଥିପାଇଁ ବେପାରୀ ବ୍ୟବସାୟୀଙ୍କ ଠାରୁ ଭଲ ସାହାଯ୍ୟ ମଧ୍ୟ ମିଳିଲା । ଗୋଟାଏ ପ୍ରଶ୍ନ ଉଠିଲା ଯେ ପାଣିଘେରରେ ପଡ଼ିଥିବା ଲୋକଙ୍କୁ ଚାଉଳ ଦେଲେ ସେ ଖାଇବେ କିପରି ? ରନ୍ଧା ଖାଦ୍ୟ ଲୋଡ଼ା । ଏତେ ଆସିବ କେଉଁଠୁ ? ସୁଧୀରବାବୁଙ୍କ ମୁଣ୍ଡରେ ବୁଦ୍ଧି ପଶିଲା ଯେ ଜେଲ୍‌ରେ ତ ବହୁତ ଲୋକଙ୍କ ପାଇଁ ରୋଷେଇ ବ୍ୟବସ୍ଥା ଅଛି । ସେଠି ବରାଦ ଦେଲେ ସେମାନେ ପ୍ରଚୁର ପରିମାଣରେ ରୁଟି ତିଆରି କରିଦେଇ ପାରିବେ । ସେତେବେଳେ ଲେଫ୍‌ଟନ୍ୟାଣ୍ଟ କର୍ଣ୍ଣେଲ୍

ଅନାଥନାଥ ପାଳିତ କଟକର ସିଭିଲ୍ ସର୍ଜନ୍ ଓ ଜେଲ୍‌ର ସୁପରିଟେଣ୍ଡେଣ୍ଟ ଥାଆନ୍ତି । ସେ ଜଣେ ବେଶ୍ ଉଦାର ସ୍ୱଭାବର ଲୋକ ଥିଲେ । ତାଙ୍କ ସହିତ କଥାବାର୍ତ୍ତା କରାଗଲା ଓ ସେ ସାଙ୍ଗେ ସାଙ୍ଗେ ଜେଲ୍‌ରେ ରୁଟି ତିଆରି କରାଇ ଦେବା ପାଇଁ ରାଜି ହୋଇଗଲେ । ତାହାରେ ଅଟା ମିଳିଲା ଓ ଜେଲ୍‌ବାଲା ଅଳ୍ପ ସମୟ ଭିତରେ ମହଣ ମହଣ ରୁଟି ତିଆରି କରି ଯୋଗେଇ ଦେଲେ ।

ଏଇ ବନ୍ୟାବେଳେ ପବନ ମାଡ଼ କମିଗଲା ପରେ ଦିନେ ଆମ ସାହିର କେତେଜଣ ଯୁବକ, ସୁଧୀରବାବୁ ଓ ମୁଁ ଗୋଟିଏ ଛୋଟ ଡଙ୍ଗାରେ କିଛି ଖାଦ୍ୟ ଓ ପୁରୁଣା ଲୁଗା ନେଇ ବାରଙ୍ଗ ଗଲୁ । ଖବର ମିଳିଗଲା ଯେ ସେଠାର ପାଖ ଆଖ ଗାଁରେ ବି ପାଣି ପଶିଛି । ବଢ଼ିଲା ନଈ ଡଙ୍ଗାରେ ପାରି ହେବା ଏଇ ମୋର ପ୍ରଥମ । ତେବେ ସାହିର ସବୁ ଭଲ ଭଲ ନାଉରୀ ଥା'ନ୍ତି । ସେଥିପାଇଁ ନିର୍ଭୟରେ ଚାଲିଗଲି । ବୋଉ ହେଲିକା ଟିକେ ଭୟ କରୁଥିଲେ । ସେପାରିରେ ପହଞ୍ଚି ରାତିରେ ବାରଙ୍ଗ କାଚ କାରଖାନାରେ ରହିଲୁ ଓ ଦିନରେ ଡଙ୍ଗାରେ ବୁଲି ପାଖ ଆଖ ଗାଁରେ ସାହାଯ୍ୟ ବାଣ୍ଟିଲୁ ।

ଏହାପରେ ଖୁବ୍ ଶୀଘ୍ର ଏକ ବନ୍ୟା ସାହାଯ୍ୟ ସମିତି ଗଢ଼ାଯାଇ ବିଧିବଦ୍ଧ ସାହାଯ୍ୟ କାମ ଆରମ୍ଭ କଲୁ । ଖଣ୍ଡେଇତା ଠାରେ ବନ୍ଧ ଉପରେ ବରଡ଼ାପତ୍ର ତାଟିର ଖଣ୍ଡେ ପଲା ମାରି ସେଇଥିରେ ରହିଥାଉ । ସେଠି ଘାଇ ମୁହଁରେ ପଡ଼ିଥିବା ଗାଁର ଘରଦ୍ୱାର ସବୁ ଭାସିଯାଇଥାଏ, ବାଲିମାଟିରେ ଆଧାଅଧି ପୋତି ଦେଇଥାଏ । ବିଲରେ ବାଲିଚରି ବହୁତ ଜମି ନଷ୍ଟ ହୋଇଯାଇଥାଏ । ମୂଲିଆ ଓ ଛୋଟ ଛୋଟ ଚାଷୀ ତ ତଳିତଳାନ୍ତ ହୋଇଯାଇ ଥା'ନ୍ତି । ମଧ୍ୟବିତ୍ତ ଲୋକଙ୍କୁ ବି କମ୍ ବାଧି ନଥାଏ । ସେ ଯୁଗରେ ସେମାନେ କାହାରିଠାରୁ ସାହାଯ୍ୟ ନେବା ଆତ୍ମସମ୍ମାନ ହାନିକର ମଣୁଥିଲେ । ସେଥିପାଇଁ ସେମାନଙ୍କର ଦୁର୍ଦ୍ଦଶାର ପ୍ରତିକାରର ସହଜ ବାଟ ନ ଥାଏ । ଦ୍ୱିବେଦୀ ଓ ମୁଁ ଦିନଯାକ ଗାଁ ଗାଁ ବୁଲି, କାହାର ଘର ଭାଙ୍ଗିଛି, ଫସଲ ନଷ୍ଟ ହେଉଛି ଏସବୁର ହିସାବ ସଂଗ୍ରହ କରୁ । ଯେଉଁମାନଙ୍କର ସାହାଯ୍ୟ ଦରକାର ସେମାନଙ୍କର ପରିବାରର ଲୋକସଂଖ୍ୟାର ତାଲିକା କରୁ, ସେମାନଙ୍କୁ ଟିପଣା ଦେଉ । ସେହି ଅନୁସାରେ ସେମାନେ ପରେ ଆସି କେନ୍ଦ୍ରରୁ ଚାଉଳ ନେଇଯା'ନ୍ତି ।

କିଛିଦିନ ଖଣ୍ଡେଇତାରେ କାମ କରିବା ପରେ ମୁଁ ଝାରପଡ଼ା କେନ୍ଦ୍ରକୁ ଗଲି । ଝାରପଡ଼ା କଟକ ଡଲକୁ କୋଡ଼ିଏ ମାଇଲ ଖଣ୍ଡେ ହେବ । ଦେବୀନଈ କୂଳରେ । ସେଠି ସୁଧୀରବାବୁ, ନୀପେନ୍‌ଦା, ବଙ୍କିମ୍ ଆଉସବୁ କିଏ ଥା'ନ୍ତି । ସେତେବେଳେ ସେଇଟା ଶରତକାଳ । ନଈଠାରୁ ଅଳ୍ପ ଦୂରରେ ବନ୍ଧ ସେପଟେ ଗାଁ । ଆମେ ନଈକୂଳରେ ପଲାଘର ମାରି ସାହାଯ୍ୟ କେନ୍ଦ୍ର କରିଥାଉ । ଏଠି ମଧ୍ୟ ପ୍ରଧାନ କାମ ସେଇ ଚାଉଳ ବାଣ୍ଟିବା । ଡଙ୍ଗାରେ ଚାଉଳ ଆସି ନଈକୂଳେ ଥାକ ମରା ହୋଇ ଥୁଆ ହୁଏ ଓ ଲୋକଙ୍କୁ ଦିଆ ଯାଉଥିବା ଟିପଣା ଅନୁସାରେ ବଣ୍ଟାଯାଏ ।

ରିଲିଫ୍ କମିଟିକୁ ଔଷଧପତ୍ର ମଧ୍ୟ ଅନେକ ମିଳିଥାଏ । ନୀପେନ୍‌ଦା ସେସବୁ ଆଣି ସେଠି ଏକ ଚିକିତ୍ସା କେନ୍ଦ୍ର ବି ଚାଲୁ କଲା । ପାଖ ଆଖରେ କୌଣସି ଡାକ୍ତର ନଥା'ନ୍ତି କି ଡାକ୍ତରଖାନା ନଥାଏ । ତେଣୁ ବହୁତ ରୋଗୀ ଆସୁଥାନ୍ତି । ଅଧିକାଂଶ ମେଲେରିଆ ଆମାଶୟ,ସାର, ଖାଜୁକୁଣ୍ଡିଆ ଆଦିର ରୋଗୀ ହିଁ ଦେଖାଯାଉଥା'ନ୍ତି । ଆଜିକାଲିକା ପରି ପୂର୍ବପ୍ରସ୍ତୁତ ବଟିକା ଓ ତରଳ ଔଷଧ ସେତେବେଳେ ଖୁବ୍ କମ୍ ବାହାରିଥାଏ । ଆଜିକାଲି ପରି ଡାକ୍ତର ବଟିକା ବାଣ୍ଟୁ ନଥା'ନ୍ତି । ଚାରିପାଞ୍ଚ ପ୍ରକାରର ଉପାଦାନ ମିଶେଇ ତରଳ ବା ପୁଡ଼ିଆ ଔଷଧ ତିଆରି କରିବାର ବରାଦ ଡାକ୍ତର ଦିଅନ୍ତି । ଏ ସବୁ ତିଆରିରେ ବେଶ୍ ଦକ୍ଷତା ଆବଶ୍ୟକ ହେଉଥାଏ । ସେତେବେଳେ କମ୍ପାଉଣ୍ଡରଙ୍କୁ ଏଇସବୁ କରିବାକୁ ପଡୁଥିଲା । ମୁଁ ନୀପେନ୍‌ଦା ଡାକ୍ତରଖାନାରେ କମ୍ପାଉଣ୍ଡରୀ କାମ କଲି ଓ ଟିଞ୍ଚର ଆଇଡ଼ିନ୍, କୁଇନାଇନ୍ ମିକ୍ସଚର, ଇଡାଡେଲ ଇମଲ୍‌ସନ୍, କାରମିନେଟିଭ୍ ମିକ୍ସଚର ଆଦିସବୁ ତିଆରି କରିବା ବେଶ୍ ଭଲ ଶିଖିଗଲି ।

ନୀପେନ୍‌ଦା ସାଙ୍ଗରେ ମୁଁ ଗାଁକୁ ରୋଗୀ ଦେଖିଯାଏ ଔଷଧ ବ୍ୟାଗ୍ ଆଦି ଧରି । ଥରେ ନଈ ସେପାରିରେ ଗୋଟିଏ ଗାଁକୁ ରୋଗୀ ଦେଖିଗଲୁ, ଚମ୍ପାଖଣ୍ଡ ବୋଧହୁଏ । ବାର ତେର ବର୍ଷର ଝିଅଟିଏ । ତା ଗୋଡ଼ ଗୋଇଠି ଭିତରେ ପାଚି ପୂଜ ହେଇ ଫୁଲି ଯାଇଥାଏ । ନୀପେନ୍‌ଦା ଦେଖି କହିଲା ସେଲୁଲାଇଟସ୍ । ମୁଁ ତା ଗୋଡ଼କୁ ମାଡ଼ିବସିଲି, ନୀପେନ୍‌ଦା ଛୁରୀରେ କାଟି ପୂଜ ବାହାର କରିଦେଲା । ସେ ଟୋକୀ ଯେତେ ଗାଳି ଦେଉଥାଏ - "ତତେ ଯୋଗିନୀ ଖାଉରେ ! ବାଡ଼ୀ ପଶୁରେ ! ତୁ ମର୍‌ରେ..." ନୀପେନ୍‌ଦା ହସି ହସି ସବୁ ଶୁଣୁଥାଏ ଓ ତା'ର କାମ କରି ଚାଲିଥାଏ । ତା' ପର ଦିନ ପୁଣି ଦେଖିବାକୁ ଯିବା ବେଳକୁ ପୂରା ଆରାମ ହେଇଯାଇଛି ଓ ଝିଅଟି ପୂର୍ବଦିନର ଗାଳିଗୁଲଜ ପାଇଁ ଲଜ୍ଜିତ ହେଉଛି । ସେଇଥିରୁ ଗୋଟିଏ କଥା ଶିଖିଲି । ଅନ୍ୟର ଉପକାର କରିବାକୁ ଗଲେ ବେଳେ ବେଳେ ଉପକୃତ ହେବାକୁ ଯାଉଥିବା ଲୋକ ଅଜ୍ଞାନ ଯୋଗୁଁ ବା ଅପ୍ରକୃତିସ୍ଥ ଥିବା ଯୋଗୁଁ ତାହା ବୁଝିପାରେ ନାହିଁ । ବିରୋଧ କରେ, ରାଗିଯାଏ । ବୁଝିବା ସୁଝିବା ଲୋକ ତାକୁ ଦୋଷ ବୋଲି ଧରନ୍ତି ନାହିଁ ଓ ସେକଥା ଦେହକୁ ନିଅନ୍ତି ନାହିଁ । ସତ୍ୟାଗ୍ରହୀର ବୃହତ୍ତର ଓ ଜଟିଳତର କର୍ମକ୍ଷେତ୍ରରେ ଏଇ ସାଦାସିଧା ଗୁଣଟି ଲୋଡ଼ା ହୋଇଥାଏ ।

ସେ ଅଞ୍ଚଳରେ ବନ୍ୟା ପରେ ଦୂଷିତ ପାଣି ଓ ଅଖାଦ୍ୟ ଯୋଗୁଁ ହଇଜା ବ୍ୟାପିଲା । ଘରେ ଘରେ ରୋଗୀ ପଡ଼ିଥା'ନ୍ତି । ମୁର୍ଦାର ସବୁ ଆଣି ଆମ କେନ୍ଦ୍ର ପାଖ ନଈ କଣ୍ଠିଆରେ ପକେଇ ଦେଉଥା'ନ୍ତି । ଦିନରାତି କୁକୁର ବିଲୁଆଙ୍କ ସଂକୀର୍ତ୍ତନ ଲାଗିଥାଏ । ସେତେବେଳେ ହଇଜାର ସେମିତି କିଛି ଚିକିତ୍ସା ନଥିଲା । ସାଲାଇନ୍ ଦେବା ଏକମାତ୍ର ଉପାୟ ଥାଏ । ମାତ୍ର ସେ ଯୁଗରେ ଏହାର ବ୍ୟବସ୍ଥା ମଫସଲ ଗାଁରେ ବ୍ୟାପକ ଆକାରରେ ହେବା ତ ଅସମ୍ଭବ, ସ୍ୱପ୍ନର ଅତୀତ । ଆଉ ଗୋଟିଏ ଚିକିତ୍ସା ଥାଏ । କାଲୋମେଲ୍ ଓ ସୋଡ଼ିବାଇକାର୍ବର ଛୋଟ ଛୋଟ ମାତ୍ରା ବାରମ୍ବାର ଖୁଆଇବା ଆଉ ଗୋଟାଏ ବି କର୍ପୂର ଅର୍କ ନା କ'ଣ ଥାଏ । ଏଇସବୁକୁ ନେଇ ଆମେ ଅନ୍ଧାରରେ ଟେକା ପକେଇବା ପରି ଗାଁରେ ବାଣ୍ଟି ଆସୁ । ଯେ ବଞ୍ଚିବାର ବଞ୍ଚେ,

ଯାହାର ଯିବାର ଥାଏ ଯାଏ । ଲୋକଙ୍କର ଚରମ ଦାରିଦ୍ର୍ୟ ଓ ଅସହାୟ କରୁଣ ଅବସ୍ଥାର ପ୍ରଥମ ନିକଟ ପରିଚୟ ଏଇ ବନ୍ୟା ସାହାଯ୍ୟ କାମରୁ ପାଇଲି ।

ଏଇଠି ମୋର ଜୀବନର ଗୋଟାଏ ସବୁଠୁଁ ଆନନ୍ଦମୟ ପର୍ବ କଟିଛି । ସେଠି ଆମ ପଲାଟି ଥାଏ ନଈର ଘାଟ ଉପରେ । ରାତିରେ ସେଇ ନଈ କୂଳରେ ଆମେ ଖୋଲା ଆକାଶ ତଳେ ଶୋଉ । ମୁଁ ସେତେବେଳେ ମହାବିଶ୍ୱ ସମ୍ବନ୍ଧରେ ଜୀନ୍ସ୍ ଓ ଏଡ଼ିଂଗ୍‌ଟନ୍‌ଙ୍କର ବହି ପଢୁଥାଏ । ନିଦ ନ ଲାଗିବା ଯାଏ ଆକାଶକୁ ଚାହିଁ ଚାହିଁ ଶତକୋଟି ଆଲୋକବର୍ଷ ଦୂର-ବ୍ୟାପୀ ଏ ବିଶ୍ୱର ରହସ୍ୟମୟ ରୂପ ଦେଖୁଥାଏ । କାନରେ ପଡୁଥାଏ ଅତି ନିକଟରେ ବହିଯାଉଥିବା ନଈର କଳକଳ । ଭୋର୍‌ରେ ଆକାଶ ଫିକା ପଡ଼ିଆସିବା ବେଳକୁ ନିଦ ଭାଙ୍ଗେ । ସେଇଠି ଶୋଇ ଶୋଇ ଦେଖୁ କେମିତି ପୂର୍ବ ଦିଗନ୍ତରେ ଅବିର ବିଛୁ ହେଇଯାଉଛି । ସୂର୍ଯ୍ୟ ନ ଉଠୁଣୁ ଉଠିପଡୁ । ସେଇଠୁ ନଈ ଭିତରକୁ କୁଦା ମାରୁ । ବଢ଼ିଲା ନଈର ଖର ସୁଅରେ ପହଁରିବାର ମଜା, ଗୋତା ଓ କୁଦା ମାରିବାର ମଜା, ପ୍ରାଣଭରି ଉପଭୋଗ କରୁ । ସେଠି କାମ ଓ ଖେଳ ସବୁ ମିଶି ଏକ ହେଇଯାଇଥିଲା । ସାରାଦିନଟା ଗୋଟାଏ ଐକ୍ୟତାନ ସଙ୍ଗୀତ ପରି ଲାଗୁଥାଏ । ନୀପେନ୍‌ଦା ଖଣ୍ଡେ ହାର୍‌ମୋନିୟମ୍ ବି ଯୋଗାଡ଼ କରିଥାଏ ଓ ସେଥିରେ ମଝିରେ ମଝିରେ ରବୀନ୍ଦ୍ର ସଙ୍ଗୀତ ବୋଲେ । ମୁଁ ବି ସେଠି "ଶରତ୍ ତୋମାର ଅରୁଣ ଆଲୋର୍ ଅଞ୍ଜଳି" ବଙ୍ଗେଇ ଗାଇବା ଶିଖି ଯାଇଥିଲି । ଦେଖିବାକୁ ଗଲେ ସେମିତି କିଛି ବିଶେଷତା ସେଠି ଆମର କାମରେ କି କେନ୍ଦ୍ରରେ ନଥିଲା । ଆହୁରି ଆଠ ଦଶଟା ସେହିପରି କେନ୍ଦ୍ର ତ ଥିଲା ଓ ସବୁଠି ଏକା ପ୍ରକାରର କାମ । ସବୁ କେନ୍ଦ୍ର ସେଇ ନଈ ପାଖେ ପାଖେ । ତେବେ ସେଠି ଆମେ ଯେଉଁ ମିତ୍ରମଣ୍ଡଳଟି ଏକାଠି ହେଇଥିଲୁ ତା'ର ବିଶେଷତା ଥିବ । ଥିବ ମୋର ମନ ଭିତରର ଗୋଟାଏ ବିଶେଷ ସ୍ଥିତି । କିଛିଦିନ ତଳୁ ମୋର ଗୋଟାଏ ମନ୍ଦ ଅଭ୍ୟାସ ହେଉଥିଲା । ସେଇଟା ଭାରି ଖରାପ ଲାଗୁଥାଏ । ମାତ୍ର ଏଠି ମୁଁ ସେ ଅଭ୍ୟାସରୁ ସମ୍ପୂର୍ଣ୍ଣ ମୁକ୍ତ ଥିଲି । ଏହା ମଧ୍ୟ ମୋର ପୂର୍ଣ୍ଣତା ଓ ପ୍ରସନ୍ନତାର ଅନୁଭୂତିକୁ ସମୃଦ୍ଧ କରିଥିଲା । ସେଥିରୁ ମନେହୁଏ ଯେ ମନ୍ଦ ଅଭ୍ୟାସ ପରିବେଶ ସହିତ ଐକ୍ୟତାନର ଅଭାବ ଓ କୌଣସି ପ୍ରକାରର ମାନସିକ ଟେନ୍‌ସନ୍‌ର ପରିମାଣ ।

ସେଠାରେ ଗୋଟିଏ ଦିନର ଘଟଣା ଖାସ୍ ମନେଅଛି । ମିସେସ୍ ଦାସ୍ (ଫ୍ରୀଡ଼ା) କେନ୍ଦ୍ର ଦେଖିବାକୁ ଦିନେ ଆସିଥିଲେ । ତାଙ୍କ ସାଙ୍ଗରେ ମଣିକୁଣ୍ଡା ଆଡ଼େ ଗାଁ ଓ ବନ୍ଧରେ ହେଇଥିବା ଘାଇ ଦେଖି ଯାଇଥିଲୁ । ଏ ଘାଇ ବନ୍ୟା ସାହାଯ୍ୟ ସମିତି ପକ୍ଷରୁ ମରାମତି ହେଉଥିବାର ମନେ ପଡୁଛି । ତେଣୁ ଫେରିବାବେଳକୁ ଅନ୍ଧାର ହେଇଯାଇଥାଏ । ନଈ ଦୁଇପାଖରେ ଘନ ତରୁପଲ୍ଲବର ଅନ୍ଧାରରେ ଢଙ୍କା ଗାଁ, କ୍ୱଚିତ୍ କେଉଁଠି କ୍ଷୀଣ ଦୀପାଲୋକର ରେଖା । ତଳେ ନଈରେ ଡଙ୍ଗାର ମଙ୍ଗ ଢେଉ ସୃଷ୍ଟି କରି ଚାଲିଛି । ସେ ଢେଉର ଶିଖରରେ ତାହାର ଜ୍ୟୋତି ପଡ଼ି ଚିକ୍ ଚିକ୍ ଦେଖାଯାଉଛି । ମୁଣ୍ଡ ଉପରେ ସ୍ୱଚ୍ଛ ଶାରଦ ଆକାଶରେ ତାରାଗୁଡ଼ିକ ଯେପରି ସବୁଦିନ ଅପେକ୍ଷା

ଅଧିକ ଉଜ୍ଜ୍ୱଳ ଦେଖାଯାଉଛନ୍ତି । ଝିଙ୍କାରୀର ଏକସ୍ୱରୀ ରାହା ସେ ରାତିର ନିସ୍ତବ୍ଧତାକୁ ଯେମିତି ଢାଣି ଆହୁରି ବେଶୀ ଗାଢ଼ କରି ଦେଉଛି । ଆମେ ଡଙ୍ଗାରେ ପଞ୍ଚାରୀମାନେ ସମସ୍ତେ ନିସ୍ତବ୍ଧ, କେବଳ ଆହୁଲାର ଛପଛପ ଶବ୍ଦ ଏ ନୀରବତାରେ ବିରାମ ଚିହ୍ନ ସୃଷ୍ଟି କରି ଚାଲିଛି । ସେ ରାତିର ସେ ସ୍ତବ୍ଧ ସୌନ୍ଦର୍ଯ୍ୟ ଯେ ମନରେ ଏକ ବିଚିତ୍ର ଗଭୀର ଅନୁଭୂତି ଆଣି ଦେଇଥିଲା, ତା'ର ସ୍ପର୍ଶ ଏବେ ବି ଲିଭିଯାଇ ନାହିଁ ।

## କଂଗ୍ରେସ ସମାଜବାଦୀ ଦଳ ଗଠନ

ମିସେସ୍ ଦାସଙ୍କ ସହିତ ମୁଁ କଟକ ଆସିଥିଲି । ସେ ପରିଜା ସାହେବଙ୍କ ଘରେ ରେଭେନ୍ସା କଲେଜର କ୍ୱାଟରରେ ରହିଥା'ନ୍ତି । ତାଙ୍କରି ଗାଡ଼ିରେ ବରଡ଼ା ଯାଏ ଆସିଥା'ନ୍ତି । ଫେରିବା ବେଳେ ସେ ଆମର କାମ ବିଷୟରେ କିଛି ପଚରାପଚରି କଲେ ଓ ମନ୍ତବ୍ୟ କଲେ ଯେ ତେମେ ଏଠି ଯେତେ କଥା ଶିଖିବାକୁ ପାଉଛ ଓ ଯେତେ ମୂଲ୍ୟବାନ ଅଭିଜ୍ଞତା ପାଉଛ ତାହା କୌଣସି ବିଶ୍ୱବିଦ୍ୟାଳୟରୁ ପାଇପାରିବ ନାହିଁ । ତାଙ୍କର ଏ କଥା ମତେ ଖୁବ୍ ବଳ ଦେଇଥିଲା । ଆମ କେନ୍ଦ୍ର ଦେଖିବା ପାଇଁ ବଙ୍ଗଳାର ବିଶିଷ୍ଟ ସାହିତ୍ୟିକ ରାମାନନ୍ଦ ଚଟ୍ଟୋପାଧ୍ୟାୟ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ମଧ୍ୟ ବିଭିନ୍ନ ସମୟରେ ଆସିଥିଲେ ।

ଏଠି ଆମେ ନୈଶ୍ୟ ବିଦ୍ୟାଳୟ ମଧ୍ୟ ଆରମ୍ଭ କରିଥିଲୁ । ମୁଁ ଓ୍ୟାଉବରେଇ ଗାଁରେ ହରିଜନ ବସ୍ତିରେ ଯାଇ ସଞ୍ଜବେଳେ କେତେକ ଯୁବକଙ୍କୁ ଏକତ୍ର କରି ସେମାନଙ୍କୁ ଦେଶର ପରିସ୍ଥିତି ବିଷୟରେ ସାଧାରଣ ଜ୍ଞାନ ଦେବାର ଚେଷ୍ଟା କରିଥିଲି । ସେତେବେଳେ ମୋର ବିଶ୍ୱାସ ଥାଏ, ଏବେ ବି ତାହା ଟିକିଏ ପରିପକ୍ୱ ରୂପରେ ଅଛି ଯେ, ଲୋକଙ୍କୁ ସାରା ପୃଥିବୀ, ସାରା ମଣିଷ ସମାଜ ଓ ସେଥିରେ ନିଜର ସ୍ଥାନ ବିଷୟରେ ପ୍ରଥମେ ଧାରଣା ଦେବା ଉଚିତ । ଏହି ଅନୁସାରେ ମୁଁ ଗୋଟାଏ ପୃଥିବୀର ମାନଚିତ୍ର ଯୋଗାଡ଼ କରି ସେ ଯୁବକମାନଙ୍କୁ ପୃଥିବୀ ବିଷୟରେ ଧାରଣା ଦେବାର ଚେଷ୍ଟା କରିଥିଲି । ତେବେ ଏ ନୈଶ୍ୟ ବିଦ୍ୟାଳୟ ବେଶୀ ଦିନ ଚାଲି ନଥିଲା ।

ସେଠି ଥିବାବେଳେ ଦିନେ ସୁଧାରବାବୁ ଓ ମୁଁ ଚାଲି ଚାଲି କଟକ ଆସିଗଲୁ । ବରଡ଼ାଠେଇଁ ବସ୍ ମିଳିଲା ନାହିଁ । ସେଠୁ କନ୍ଦରପୁର ଆସିଲୁ । ସେଠି ମଧ୍ୟ ବସ୍‌ର ଦର୍ଶନ ନ ପାଇ କଟକ ଚାଲି ଚାଲି ଯିବା ଠିକ୍ କଲୁ । ଏତେ ଲମ୍ବା ବାଟ ଏକାଥରକେ ଚାଲିବା ଏଇ ମୋର ପ୍ରଥମ । କଟକରେ ପହଞ୍ଚି ଖବର ପାଇଲୁ ଯେ ଶ୍ରୀରାମଚନ୍ଦ୍ର ଭବନରେ ବନ୍ୟା ସାହାଯ୍ୟ ପାଇଁ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ହେଉଛି । ଖୁଡ଼ୀ ହେରିକା ତାର ଆୟୋଜନ କରିଥା'ନ୍ତି । ଟିକଟର ବ୍ୟବସ୍ଥା ଥାଏ, କିନ୍ତୁ ଆମେସବୁ ତ ବନ୍ୟା ସାହାଯ୍ୟର ହିରୋ, ତେଣୁ ଆମକୁ ବିନା ଟିକଟରେ ପ୍ରବେଶ ମିଳିଗଲା । ମନେ ପଡୁଛି ଯେ, ସେଠାରେ ନାନା ଗୀତ, ନାଟ୍ୟ, ଆବୃତ୍ତି ଭିତରେ

ସବୁଠୁ ଭଲ ଲାଗିଥିଲା ଅନାଥନାଥ ରାୟଙ୍କର 'ବନ୍ଦୀବୀର' କବିତାର ଭାବପୂର୍ଣ୍ଣ ଆବୃତ୍ତି । ଅନାଥନାଥ କଟକରେ ଓକିଲାତି କରୁଥିଲେ, ଏବେ ତାଙ୍କର ଦେହାନ୍ତ ହେଇଗଲା ।

କ୍ରମେ ଝାରପଡ଼ାରେ ଚାଉଳ ବଣ୍ଟା କାମ ବନ୍ଦ ହେଇଗଲା । କେବଳ ଔଷଧ ଦେବା କାମ ଚାଲିଥାଏ । ଭିତି ମଧ୍ୟରେ ସେଠି ସାହାଯ୍ୟ ପାଉଥିବା ଲୋକଙ୍କୁ କାମରେ ଲଗେଇ ଓ ଗାଁରୁ କିଛି ଛଣ ବାଉଁଶ ସଂଗ୍ରହ କରି ଏକ ଅଧିକ ସ୍ଥାୟୀ ଚାଳଘର ତିଆରି କରାହେଲା । ସେ ଘରତଳ ଜମି ବନ୍ୟା ସାହାଯ୍ୟ ସମିତି ନାଁରେ କରିଦିଆ ନ ଯାଇଥିବାରୁ ଓ ଏ କାମ ପାଇଁ ଅନୁମତି ନିଆ ନ ଯାଇଥିବାରୁ ଏହା ନେଇ ଟିକିଏ ଘାଣ୍ଟଚକଟ ଲାଗିଥିଲା । ଏହି ସମୟରେ ଆଉ ଗୋଟିଏ ଘଟଣା ମନେ ପଡୁଛି । ଦିନେ ଦେଖିଲୁ ଯେ ବନ୍ୟା ସାହାଯ୍ୟ ସମିତିର ଚିଠି କାଗଜରେ ସମିତିର ସବୁ ସଦସ୍ୟମାନଙ୍କର ନାଁ ଛପା ହେଇଛି । ଆମେ ସବୁ ବସି ବିଚାର କଲୁ ଯେ ଏଥିରେ କର୍ମୀମାନଙ୍କର ନାମ ବି ଛପାଯିବା ଉଚିତ । ଯେମିତି ବିଚାର ସେମିତି କାମ । ମୁଁ ସମିତିକୁ ଏଇ ମର୍ମରେ ଏକ ଚିଠି ଲେଖିଲି । ସେଥିରେ ଟିକିଏ ବ୍ୟଙ୍ଗର ପୁଟ ଥିଲା । ସତ୍ୟନାରାୟଣବାବୁ ସେ ଚିଠି ପଢ଼ି ମହା ଖପ୍‌ପା ହେଲେ ଓ ଶେଷକୁ ମୁଁ କ୍ଷମା ପ୍ରାର୍ଥନା କରି ଏକ ଚିଠି ଲେଖିବାରୁ ସବୁ ଥଣ୍ଡା ପଡ଼ିଲା ।

ଝାରପଡ଼ାରେ କାମ ଭଣା ହୋଇଯିବାରୁ ମୁଁ ଅଧିକ ସମୟ ଅଣଖିଆରେ ଓ କଟକରେ କଟେଇଲି । ଏହି ୧୯୩୩ ର ଶେଷ ଆଡ଼କୁ ଅଣଖିଆରେ କେତେକ କର୍ମୀଙ୍କର ବୈଠକ ହେଇ ଓଡ଼ିଶା କଂଗ୍ରେସ ସୋଶାଲିଷ୍ଟ ଦଳ ଗଢ଼ା ହେଲା । ସେତେବେଳେ ସମାଜବାଦ ଶବ୍ଦଟା ବ୍ୟବହାରରେ ଆସି ନ ଥାଏ । ସୋଶାଲିଷ୍ଟ ଓ କମ୍ୟୁନିଷ୍ଟ ଉଭୟଙ୍କ ପାଇଁ 'ସାମ୍ୟବାଦ' ଶବ୍ଦ ଚଳୁ ଥାଏ । ଏ ବୈଠକରେ ଦାଦା, ଖୁଡ଼ୀ, ଗୌରାଙ୍ଗବାବୁ, ଗୌରଦାସ, ସୁରେନ୍ଦ୍ର ଦ୍ୱିବେଦୀ ଓ ମୁଁ ଉପସ୍ଥିତ ଥିବାର ମନେ ପଡୁଛି । ଆଉ କାହାରି କଥା ମନେ ପଡୁ ନାହିଁ । ଅଖିଳ ଭାରତ କଂଗ୍ରେସ ସୋଶାଲିଷ୍ଟ ଦଳ ୧୯୩୪ ରେ ଗଢ଼ା ହେଲା । ଓଡ଼ିଶା ଦଳ ତାହା ପୂର୍ବରୁ ଗଢ଼ା ହେଇଥିଲା । ଦାଦା ହେରିକାଙ୍କର ପୂର୍ବରୁ ଅନ୍ୟ ଭାରତୀୟ ସୋଶାଲିଷ୍ଟ ନେତାମାନଙ୍କ ସହିତ ଯୋଗାଯୋଗ ଥିଲା ଓ ସେହି ଅନୁସାରେ ନାମ ଠିକ୍ ହେଲା । ଏ ଦଳର ନୀତିରେ ଲେଖାଯାଇଥିଲା ଯେ ଏହା ଗାନ୍ଧୀଜୀଙ୍କର ଗତିଶୀଳ (ଡାଇନାମିକ୍) ଅହିଂସାରେ ବିଶ୍ୱାସ କରେ ଓ ସେହି ପଥରେ କାମ କରିବି । ମୋର ଯେତେଦୂର ମନେପଡ଼େ, ଅଖିଳ ଭାରତୀୟ ଦଳ ଗାନ୍ଧୀଜୀଙ୍କର ନାମ ବ୍ୟବହାର କରି ନ ଥିଲେ କି ଅହିଂସାକୁ ଏପରି ବିଧାୟକ ଢଙ୍ଗରେ ସ୍ୱୀକାର କରି ନ ଥିଲେ ।

ଏ ଦଳର ମୁଖପତ୍ର ରୂପେ ଏକ ସାପ୍ତାହିକ ପତ୍ରିକା ବାହାର କରିବାର ସ୍ଥିର ହେଲା । ଏହାର ନାମ ରଖାଗଲା 'ସାରଥି' । ମୋର ମନେଅଛି ଭାଗୁଭାଇ ଏ ନାଁ ଦ୍ୱାରା ଅନୁପ୍ରାଣିତ ହେଇ ଏହାର ଆଧ୍ୟାତ୍ମିକ ତାତ୍‌ପର୍ଯ୍ୟ- ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କର ସାରଥୀ ଶ୍ରୀକୃଷ୍ଣ ବିଶ୍ୱମାନବର ଆଧ୍ୟାତ୍ମିକ ନେତୃତ୍ୱର ପ୍ରତୀକ- ଏହି ସବୁ ବୟାନ କରି ଏକ ପ୍ରବନ୍ଧ ପଠାଇଥିଲେ । ମାତ୍ର ଏ ନାଁ ପାର୍ଥସାରଥୀଙ୍କୁ ମନରେ ରଖି ରଖା ହୋଇ ନ ଥିଲା । ସେତେବେଳେ ପତ୍ରିକା

ପ୍ରକାଶନ ପାଇଁ ଅନୁମତି ନେବାକୁ ପଡୁଥିଲା ଓ ରାଜନୀତିର ଗନ୍ଧ ପାଇଲେ କର୍ତ୍ତୃପକ୍ଷ ମୋଟା ଅମାନତ ଦାବୀ କରୁଥିଲେ । ଏ ସବୁ ଏଡ଼େଇବା ପାଇଁ ଏପରି ଏକ ନାମ ବଛାଗଲା ଯେଉଁଥିରୁ ରାଜନୀତିର ଗନ୍ଧ କର୍ତ୍ତୃପକ୍ଷଙ୍କୁ ନ ମିଳିବ ।

ଏଇ ସମୟରେ ସମାଜବାଦୀ ଓ ସାମ୍ୟବାଦୀ ସାହିତ୍ୟ ଖୁବ୍ ପଢ଼ା ଚାଲିଥାଏ । ବହିପତ୍ର ସବୁ ସେମିତି ସହଜରେ ମିଳୁ ନ ଥାଏ । କଟକ ତ ସେତେବେଳେ ସଂସ୍କୃତିର ଏକ ବଡ଼ ଗାଡ଼ିଆ । ସେଠି ଆଧୁନିକ ଓ ଜାଗତିକ ବିଚାରଧାରା ଚର୍ଚ୍ଚା କରିବା ଲୋକ ମୁଷ୍ଟିମେୟ । ପାଠାଗାର ତ ନଥାଏ । ତେବେ ଏଠୁ ସେଠୁ ବହିପତ୍ର ମିଳି ଯାଉଥାଏ । ଜଣେ ଜ୍ଞାନପ୍ରେମୀ ବ୍ୟକ୍ତି ଥାଆନ୍ତି ଲକ୍ଷ୍ମୀନାରାୟଣ ସାହୁ । ଏପରି କୌଣସି କାମ ନ ଥିଲା ଯେଉଁଥିରେ ସେ ହାତ ଦେଉ ନଥିଲେ । ତେବେ ତାଙ୍କର ଦୃଷ୍ଟି ଖୁବ୍ ଉଦାର ଥିଲା ଓ ସେ ବହୁତ ବିଷୟରେ ବହୁତ ବହି ସଂଗ୍ରହ କରିଥିଲେ । 'ତ୍ରିବେଣୀ' ନାଁରେ ଗୋଟିଏ ଛୋଟ ଇଂରେଜୀ ମାସିକ ପତ୍ର ସେ ପ୍ରକାଶ କରୁଥାନ୍ତି । ବିଦେଶକୁ ବି ତାହା ସେ ପଠାଉଥାନ୍ତି ଓ ସେଥିରେ ସମୀକ୍ଷା ପାଇଁ ଦେଶବିଦେଶରୁ ତାଙ୍କ ପାଖକୁ ବହି ମଧ୍ୟ କିଛି କିଛି ଆସୁଥାଏ । ଆମେ ଯେତେବେଳେ ଜାଣିପାରିଲୁ ଯେ ତାଙ୍କ ପାଖରେ ସମାଜବାଦ, ସାମ୍ୟବାଦ, ସୋଭିଏତ ରାଷ୍ଟ୍ର ଆଦି ସମ୍ବନ୍ଧରେ ବେଶ୍ କିଛି ବହି ଅଛି – ସେ ସବୁ ପଢ଼ିବା ପାଇଁ ଆମେ ଅନୁମତି ମାଗିଲୁ ଓ ସେ ବି ଆନନ୍ଦରେ ଅନୁମତି ଦେଲେ । ଦିନେ ମୁଁ ହିଁ ତାଙ୍କ ଘରକୁ ଯାଇ ତାଙ୍କର ବହିଥାକ ଖୋଜା ଖୋଜି କରି ଷୋଳ ସତର ଖଣ୍ଡ ବହି ନେଇଆସିଲି । ଏସବୁ ବହି ଖୁବ୍ ଉତ୍ସାହରେ ପଢ଼ାହେଲା ଓ କ୍ରମେ ଉଭେଇ ବି ଗଲା । ସେ ସବୁ ଯାଇ ଆଉ କାହାର କାହାର ପୁସ୍ତକ ସଂଗ୍ରହର ଶୋଭାବର୍ଦ୍ଧନ କରିଥିବ- ଯେମିତି ଆମ ଦେଶରେ ପ୍ରାୟ ଘଟିଥାଏ । ଲକ୍ଷ୍ମୀନାରାୟଣ ବାବୁଙ୍କୁ ସେସବୁ ଫେରାଇବାର ଦାୟିତ୍ୱ ଆମେ ସବୁ ଭୁଲିଗଲୁ । ସେ ସେଥିପାଇଁ ଥରେ ମୋ ଠାରେ ମୃଦୁ ଅନୁଯୋଗ କରିଥିଲେ ।

ଲକ୍ଷ୍ମୀନାରାୟଣ ବାବୁ ତ ଆଶୁ କବି ଥିଲେ । ମନକୁ ଭାବ ଆସିବା ମାତ୍ରେ ତୁରନ୍ତ ତୁରନ୍ତ ଲେଖିପକାଉଥିଲେ । ଏପରି ସବୁ କବିତାର ଛୋଟ ଛୋଟ ବହି ବି ଛପେଇଥିଲେ । ତା' ଉପରେ ଥାଏ, ଲେଖକ : ଲକ୍ଷ୍ମୀନାରାୟଣ ସାହୁ, ଜାତିରେ ପାଣ । ଏ ସବୁ କବିତାରୁ ଗୋଟିଏ କବିତାରୁ କିଛି ମନେ ରହିଯାଇଛି । କବିତା ତାଙ୍କ ମା'ଙ୍କ ବିଷୟରେ :

ମା' ମୋର, ଧରମର ଧାତ୍ରୀ,<br>କରମର ସିଂହୀ, ଅନ୍ୟାୟର ବ୍ୟାଘ୍ରୀ,<br>କ୍ଷେତ୍ରୀ ପରି ଚାଲେ<br>ସ୍ନେହେ ଅବା ରଣେ କେବେ ହେଁ<br>କେବେ ହେଁ ନ ଥକି

ଏ ସମୟରେ ଜଣେ ବିଶିଷ୍ଟ ଓ ବୈଚିତ୍ର୍ୟପୂର୍ଣ୍ଣ ବ୍ୟକ୍ତିଙ୍କର ଆବିର୍ଭାବ କଟକରେ ହୋଇଥିଲା । ସେ ହେଉଛନ୍ତି ବ୍ରଜେନ୍ ପାଲ୍ । ତାଙ୍କ ଘର ନବଦ୍ୱୀପ । ଏବେ ସୁଦ୍ଧା ଓଡ଼ିଶାରେ

ରହି କାମ କରୁଥିବା ସାମ୍ୟବାଦୀ କର୍ମୀ ଫନୀ ପାଲଙ୍କର ବଡ଼ଭାଇ । ସେ ପକ୍କା ମାର୍କସ୍‌ବାଦୀ ଥିଲେ ଓ ମାର୍କସ୍‌ଙ୍କର ମୁଖ୍ୟ ଗ୍ରନ୍ଥ- କ୍ୟାପିଟାଲ, କମ୍ୟୁନିଷ୍ଟ ମାନିଫେଷ୍ଟୋ ଆଦି କୁଆଡ଼େ ପନ୍ଦର ସତର ଥର ଲେଖାଏଁ ପଢ଼ିଥାନ୍ତି । ତାଙ୍କର ଢଙ୍ଗ ଥିଲା ପୁରୁଣା କାଳର 'କଥକ' ମାନେ ପୁରାଣ ଶୁଣାଇବା ପରି ଘଣ୍ଟା ପରେ ଘଣ୍ଟା ଇତିହାସ, ଗଳ୍ପ ଓ ଦର୍ଶନ ସବୁ ମିଶେଇ ଅତି ସରସ ଭାବରେ ତତ୍ତ୍ୱ ବଖାଣି ଚାଲିବା । ମୁଁ ଅବଶ୍ୟ ତାଙ୍କର ବ୍ୟାଖ୍ୟାନ କମ୍ ଶୁଣିଛି । ଯଦିଓ ସେ ଆମ ଘରକୁ ବହୁତ ଥର ଆସୁଥିଲେ । ମୁଁ ସେତେବେଳେ ସମାଜବାଦ, ସାମ୍ୟବାଦ ଆଦି ବିଷୟରେ ଯାହା ବହି ହାତରେ ପଡୁଥାଏ, ମାତ୍ର ସେତେବେଳେ ସୋଭିଏତ୍ ଦେଶ ଓ ମାର୍କସ୍‌ବାଦକୁ ନେଇ ଯେପରି ନଚାନଚି ଆରମ୍ଭ ହେଉଥାଏ, ସେଇଟା ମୋର ପସନ୍ଦ ହେଉ ନ ଥାଏ । ଅବଶ୍ୟ ମୁଁ ସୋଭିଏତ୍ ସମାଜ ବିଷୟରେ ସେତେବେଳେ ଯାହାସବୁ ପଢ଼ିଥିଲି, ତାହାଦ୍ୱାରା ପ୍ରଭାବିତ ହେଉଥିଲି ଓ ସୋଭିଏତ୍ ଦେଶ ଯେଉଁ ସବୁ ସାଫଲ୍ୟ ହାସଲ କରିଛି, ସେ ସବୁର ଖବର ରଖୁଥିଲି । ସେହି ସମୟରୁ ମୁଁ ଲେନିନ୍‌ଙ୍କୁ ଗାନ୍ଧୀଜୀଙ୍କର ସମକକ୍ଷ ଏକ ମହାନ୍ ଜନନେତା ରୂପେ ଦେଖି ଆସିଛି । କିନ୍ତୁ ସୋଭିଏତ୍ ବିପ୍ଳବର ଉଦାହରଣ ଦେଇ ଅହିଂସା ଆନ୍ଦୋଳନକୁ ଛୋଟ କରିବାର ଚେଷ୍ଟାକୁ ମୁଁ ସହ୍ୟ କରିପାରୁ ନ ଥାଏ ଓ ସେହିପରି ଯେଉଁମାନେ ରାମ, କୃଷ୍ଣ, ଶିବାଜୀ, ଗାରିବଲଡ଼ୀ ଆଦିଙ୍କର ବୀରତ୍ୱର ପ୍ରଶଂସାରେ ପଞ୍ଚମୁଖ ସେମାନଙ୍କ ଦ୍ୱାରା ଲେନିନ୍, ଟ୍ରଟସ୍କିଙ୍କୁ ହିଂସାବାଦୀ ବୋଲି ନିନ୍ଦା କରାଯିବାଟା ମଧ୍ୟ ମୋତେ ଅସୁଖ ଲାଗୁଥାଏ । ଏ ବିଷୟରେ 'ସମାଜ'ର ଏକ ସଂପାଦକୀୟର ଉତ୍ତର ଦେଇ ମୁଁ କଲିକତାରୁ ଏକ ଲେଖା 'ସାରଥି'ରେ ଥରେ ଲେଖିଥିଲି ।

## ବିହାର ଭୂମିକମ୍ପ

୧୯୩୪ ଜାନୁୟାରୀରେ ଦାଦା, ଖୁଡ଼ୀ, ଗୌର ଓ ମୁଁ ଅଣଖିଆରେ ଥାଉ । ସେ ଦିନ ତେର ତାରିଖ । ଆମେ ସବୁ ଦିପହରରେ ଖାଇସାରି ବିଶ୍ରାମ କରୁଛୁ, ହଠାତ୍ ଘରକଣରେ ସାନ ଟେବୁଲ ଉପରେ ଥିବା ପିତଳ ଫୁଲଦାନୀଟା ଖଟ ଖଟ ହୋଇ ଦୋହଲିବାକୁ ଲାଗିଲା । ମୁହୂର୍ତ୍ତକ ପରେ ସମସ୍ତଙ୍କର ଖିଆଲ ହେଲା ଯେ ଭୂମିକମ୍ପ ହେଉଛି । ବାହାରକୁ ଦୌଡ଼ି ପଳାଇଲୁ । ଭୂମିକମ୍ପର ଅନୁଭୂତି ଏଇ ପ୍ରଥମ । ବେଶ୍ କିଛି ସମୟ ଚାଲିଲା, ଏହାର ଦୁଇ ଦିନପରେ ଖବରକାଗଜରୁ ଜଣାପଡ଼ିଲା ଯେ ବିହାରରେ ଏ ଭୂମିକମ୍ପ ଅତି ପ୍ରବଳଭାବରେ ହୋଇଛି ଓ ସେ ପ୍ରଦେଶର ଭୟାବହ କ୍ଷତି ଘଟାଇଛି । ସହରସବୁ ଧ୍ୱଂସ ହୋଇଯାଇଛି । ଖୁଡ଼ୀଙ୍କ ମା' ଓ ବଡ଼ମାମୁଁଙ୍କ ମୁଜାଫରପୁରରେ ଥା'ନ୍ତି । ଖବର ଶୁଣି ଖୁଡ଼ୀ କାନ୍ଦିବାକୁ ଆରମ୍ଭ କଲେ । ସେଠୁ ପରିସ୍ଥିତିର ଭୟାବହତାର ଧକ୍କାଟା ଆମେ ଅନୁଭବ କଲୁ । ପରେ ଅବଶ୍ୟ ଖବର ମିଳିଲା ଯେ ଦିଦିମା' ହେରିଙ୍କାଙ୍କର କୌଣସି କ୍ଷତି ହେଲାନାହିଁ ।

ବାପା ସେତେବେଳେ ହଜାରୀବାଗ ଜେଲ୍‌ରେ ତାଙ୍କର ବର୍ଷକର ସଜା ଭୋଗୁଥା'ନ୍ତି ।

ଭୂମିକମ୍ପ ପରେ ବିହାରରେ ଥିବା ସମସ୍ତ ରାଜବନ୍ଦୀଙ୍କୁ ଛାଡ଼ି ଦିଆଗଲା । ବାପା କେତେକ ସହର ବୁଲାବୁଲି କରି ଅବସ୍ଥା ଦେଖି ଫେରିଲେ । ସୁରେନ୍ଦ୍ର ପଟ୍ଟନାୟକ ହେରିକା କେତେଜଣ ମୁଙ୍ଗେର ଜେଲ୍‌ରେ ବନ୍ଦୀ ଥିଲେ । ସେମାନେ ବି ଫେରିଲେ । ସୁରେନ୍ଦ୍ର ପଟ୍ଟନାୟକ ହେରିକା କେତେଜଣ ମୁଙ୍ଗେର ଜେଲ୍‌ରେ ବନ୍ଦୀ ଥିଲେ । ସେମାନେ ବି ଫେରିଲେ । ବାପାଙ୍କଠାରୁ ଭୂମିକମ୍ପ ଓ ପରବର୍ତ୍ତୀ ଅବସ୍ଥାରେ ହୃଦୟସ୍ପର୍ଶୀ ବର୍ଣ୍ଣନା ଶୁଣିବାକୁ ମିଳିଲା । ସହରସବୁ କିପରି ଭଗା କୁଡ଼ରେ ପରିଣତ ହେଇଛି, ଲୋକେ କିପରି ପଳେଇବାକୁ ଚେଷ୍ଟା କରି ମଧ ରକ୍ଷା ପାଇ ପାରିନାହାନ୍ତି, ପୁଣି ଠାଏ ଠାଏ କେମିତି କେତେ ଲୋକ ଅତି ଅଦ୍‌ଭୁତ ଭାବରେ ବଞ୍ଚି ଯାଇଛନ୍ତି, ଏ ସବୁ ସେ ବର୍ଣ୍ଣନା କରିଥିଲେ । ପର୍ଦ୍ଦାପ୍ରଥାର କରୁଣ ପରିଣତିର ଏକ କାହାଣୀ ମଧ ଶୁଣାଇଥିଲେ । ପାଟନାର ଜଣେ ବଡ଼ ଜମିଦାର ଭୂମିକମ୍ପ ଆରମ୍ଭ ହେବାମାତ୍ରେ ଘରୁ ବାହାରିଆସି 'ପର୍ଦ୍ଦା ଲଗାଓ, ପର୍ଦ୍ଦା ଲଗାଓ' ବୋଲି ଚିତ୍‌କାର କରି ଲାଗିଲେ । ବିହାରର ଉଚ୍ଚ ଜାତିର ଓ ଧନୀ ମହିଳାମାନେ ଘରୁ ବାହାରି  ପାଲିଙ୍କି ବା ଗାଡ଼ିଯାଏ ଯିବାକୁ ହେଲେ ବି ଚାକରମାନେ ପ୍ରଥମେ ଦୁଇପାଖରେ  କନାର ପର୍ଦ୍ଦା ବାଡ଼ ଅଟୋପକରି ଧରନ୍ତି ଓ ତାହା ମଝିଦେଇ ମହିଳାମାନେ ଚାଲିଥା'ନ୍ତି । ଏବେ ଭୂମିକମ୍ପ ବେଳେ ଚାକରବାକର ପ୍ରାଣବିକଳରେ କିଏ କୁଆଡ଼େ ଧାଉଁଛନ୍ତି, ପର୍ଦ୍ଦା ଧରୁଛି କିଏ ଓ ସେଥିପାଇଁ ବେଳ ବି ନାହିଁ ? ଜମିଦାର ସାହେବ ଡକା ପାରୁ ପାରୁ ଘର ଭୁଷୁଡ଼ି ପଡ଼ିଲା ଓ ଘରର ସମସ୍ତ ସ୍ତ୍ରୀ ଲୋକେ ତା'ତଳେ ସମାଧି ଲଭିଲେ !

ସେତେବେଳେ ତ ଗାନ୍ଧୀଜୀ ହରିଜନ ଗସ୍ତ କରୁଥା'ନ୍ତି । ବିହାରର ଏ ଦୁର୍ଦ୍ଦଶାର ସମ୍ବାଦ ପାଇ ସେ ତୁରନ୍ତ ବିହାରକୁ ଆସିଲେ । ସେଠି ରାଜେନ୍ଦ୍ରବାବୁଙ୍କ ଅଧ୍ୟକ୍ଷତାରେ ସାହାଯ୍ୟ ସମିତି ଗଢ଼ାହେଲା ଓ ସମିତି ପକ୍ଷରୁ ଭୂମିକମ୍ପ ପୀଡ଼ିତଙ୍କର ସେବାକାର୍ଯ୍ୟ ଅତି ଚମତ୍କାର ଭାବରେ ଚାଲିଲା । ଗାନ୍ଧୀଜୀ ସେ ସମୟରେ ସାରା ବିହାର ଗସ୍ତ କଲେ । ଏହି ସମୟରେ ଏକ ବକ୍ତୃତା ବା ଲେଖାରେ ସେ କହିଲେ ଯେ ଅସ୍ପୃଶ୍ୟତାରୂପୀ ପାପ ପାଇଁ ବିହାର ଭୂମିକମ୍ପ ଈଶ୍ୱର ଦେଇଥିବା ଦଣ୍ଡ । କବିଗୁରୁ ରବୀନ୍ଦ୍ରନାଥ ଏ ଉକ୍ତିର ତୁରନ୍ତ ପ୍ରତିବାଦ କଲେ । ସେ କହିଲେ ଯେ ଭୂମିକମ୍ପ ଏକ ପ୍ରାକୃତିକ ଘଟଣା, ଜଡ଼ସୃଷ୍ଟିର ନିୟମ ଅନୁସାରେ ଘଟୁଛି । ତାହାର ଏଭଳି ବ୍ୟାଖ୍ୟା କରିବା ଦ୍ୱାରା ଲୋକଙ୍କର ଅନ୍ଧବିଶ୍ୱାସ ହିଁ ଦୃଢ଼ ହେବ । ଏ ବାଦାନୁବାଦରେ ମୋର ବୁଦ୍ଧିଟା କବିଙ୍କ ଆଡ଼େ ଥାଏ । ମାତ୍ର ଗାନ୍ଧୀଜୀଙ୍କ ପ୍ରତି ଭକ୍ତି ଓ ବିଶ୍ୱାସ ଯୋଗୁଁ ତାଙ୍କ କଥାଟା ଠିକ୍ ବୋଲି ମାନିବା ଉଚିତ ବୋଲି ବିଚାରୁଥାଏ । ତା'ର ତାତ୍ପର୍ଯ୍ୟ  ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଥାଏ । ଏ ବିଷୟରେ ଆଜି ପର୍ଯ୍ୟନ୍ତ ବହୁତ ଭାବିଛି । ବାସ୍ତବିକ ଗାନ୍ଧୀଜୀ ଓ ରବୀନ୍ଦ୍ରନାଥଙ୍କର ଏଇ ମତଭେଦ ସୃଷ୍ଟିର ଓ ଜୀବନର ରହସ୍ୟର ଗୂଢ଼ତମ ସ୍ତର ସହିତ ସମ୍ବନ୍ଧିତ ଥିଲା । ସୃଷ୍ଟିର ରଚନା ପଛରେ ଏକ ଉଦ୍ଦେଶ୍ୟ ଓ ଖାସ୍ କରି ଏକ ନୈତିକ ଉଦ୍ଦେଶ୍ୟ ଅଛି କି ନାହିଁ ? ଯଦି ଅଛି, ତାହା କିପରି ଭାବରେ କାମ କରୁଛି ? ଏହି ପ୍ରଶ୍ନର ଉତ୍ତର ଖୋଜିବା ତ ମଣିଷର ଏକ ଅତି ଗୁରୁତ୍ୱପୂର୍ଣ୍ଣ କାମ । ସତ୍ୟ, ପ୍ରେମ, କରୁଣା ଆଦି କେବଳ ସମାଜର ଚଳିବାର ସୁବିଧା

ପାଇଁ ଗଢ଼ାଯାଇଥିବା ନୀତି ନୁହେଁ । ଏସବୁ ଏଭଳି ଶକ୍ତି ଯାହା ମଣିଷର ଜୀବନ ଓ ସମାଜକୁ ବଦଳାଇ ଦେଇପାରେ । ଏ ବିଶ୍ୱାସ ଅହିଂସା ବିପ୍ଳବୀ ପକ୍ଷରେ ଅପରିହାର୍ଯ୍ୟ । ମାତ୍ର ମଣିଷ ତା'ର ଠିକ୍ ବା ଭୁଲ ଆଚରଣ ପାଇଁ ପ୍ରାକୃତିକ ଘଟଣା ଦ୍ୱାରା ଅତି ସ୍ଥୂଳଭାବରେ ପୁରସ୍କାର ବା ଦଣ୍ଡ ପାଉଛି - ଏ ବିଶ୍ୱାସ ମତେ ଅଯଥାର୍ଥ ଜଣାପଡ଼େ । ମଣିଷ ସମାଜ ବାହାରେ, ଜଡ଼ ସୃଷ୍ଟିର ମଧ୍ୟ ନୈତିକ ନିୟମ କାମ କରୁଥିବ ଓ ତାହାର ପ୍ରକ୍ରିୟା ଅନ୍ୟ ପ୍ରକାରର ହୋଇଥିବ, ଏପରି ସ୍ଥୂଳ ନୁହେଁ ।

ଏହାର ବର୍ଷେ ଖଣ୍ଡେ ପରେ କେଉଁଠି ଗୋଟାଏ ପଢ଼ିଲି ଯେ ଇଟାଲୀରେ ବି ସେହି ଦଶନ୍ଧିରେ ଏକ ଭୂମିକମ୍ପ ହେଇ ବହୁତ କ୍ଷତି କରିଥିଲା ଓ ସେଠାରେ ଧର୍ମଯାଜକ ଘୋଷଣା କଲେ ଯେ ସ୍ତ୍ରୀଲୋକମାନେ ଆଣ୍ଠୁ ଉପରକୁ ସ୍କାର୍ଟ ବା ଘାଘରା ପିନ୍ଧୁଥିବାରୁ ଭଗବାନ କ୍ରୁଦ୍ଧ ହେଇ ଏ ଭୂମିକମ୍ପରୂପୀ ଦଣ୍ଡ ଦେଇଛନ୍ତି । ଆମ ଦେଶର ଗାଁ ଗହଳରେ ରକ୍ଷଣଶୀଳ ଲୋକେ କହନ୍ତି ଯେ ଛୁଆଁଅଛୁଆଁ ଉଠିବା ଯୋଗୁଁ, ମାଇପେ ପାଠପଢ଼ି ଦାଣ୍ଡରେ ଚାଲିବା ଯୋଗୁଁ ଓ ଏମିତି ସବୁ 'ଅନାଚାର' ଘଟିବା ଯୋଗୁଁ ବନ୍ୟା, ମରୁଡ଼ି, ତୋଫାନ ବା ଅନ୍ୟ ପ୍ରାକୃତିକ ବିତ୍‌ପାତ୍ ଘଟୁଛି । ଏ ସାଧାରଣ ଚିନ୍ତା ଓ ଯୁକ୍ତି କରି ଚାଲିଲେ ବୁଦ୍ଧି ଓ ବିବେକ ବ୍ୟବହାର କରି ପ୍ରତ୍ୟେକ କଥାର ତାତ୍ପର୍ଯ୍ୟ ବୁଝିବାର ବାଟ ହିଁ ବନ୍ଦ ହୋଇଯାଏ । ସେଥିପାଇଁ ଭୂମିକମ୍ପକୁ ଅସ୍ପୃଶ୍ୟତା ସହିତ ଯୋଡ଼ି କୌଣସି ଲାଭ ହେଲା ବୋଲି ମୋର ମନେ ହୁଏ ନାହିଁ ।

ବାପା ଆସିବା ପରେ ବନ୍ୟାସାହାଯ୍ୟ କେନ୍ଦ୍ରସବୁ ଦେଖିବାକୁ ବାହାରିଲେ । ମୁଁ ବି ତାଙ୍କ ସାଙ୍ଗରେ ଗଲି । ବିଶ୍ୱଦା ବି ଥା'ନ୍ତି । କେନ୍ଦ୍ର ସବୁ ପ୍ରାୟ ଦେବୀନଈ କୂଳେ କୂଳେ ଥାଏ । ଆମେ ଡଙ୍ଗାରେ ଯାଉଥାଉ । ଗୋଟିଏ ପରେ ଗୋଟିଏ କେନ୍ଦ୍ର ଦେଖି ଦେଖି ତଳକୁ ଭାସି ଚାଲିଥାଉ । କେବଳ ଚାଉଳ ବଣ୍ଟା କାମର ବ୍ୟର୍ଥତା ବୁଝାଇ ସ୍ୱରାଜ ଲଢ଼େଇ ପାଇଁ ଲୋକଙ୍କୁ ତିଆରି କରିବା କାମ କିପରି କରାଯିବ ତାହା କେନ୍ଦ୍ରର କର୍ମୀମାନଙ୍କ ସହିତ ବାପା ଆଲୋଚନା କରୁଥା'ନ୍ତି । ଈଶ୍ୱରଙ୍କଠାରେ ଦୃଢ଼ ବିଶ୍ୱାସ ରଖି ଅସହାୟତା ଦୂର କରିବା ପାଇଁ ଗାଁ ଲୋକଙ୍କୁ ବୁଝାଉଥା'ନ୍ତି ।

ନିଆଳୀ ଠାରୁ ଆମେ, ବାପା, ବିଶ୍ୱଦା ଓ ମୁଁ ସାଇକେଲରେ କୋଣାର୍କ ଗଲୁ । ସେଠି ବି କର୍ମୀଙ୍କ ସାଙ୍ଗରେ ଦେଖା କରିବାର ଥାଏ । କୋଣାର୍କ ମନ୍ଦିରକୁ ରାସ୍ତାଟା ଏକାବେଳେକେ ସିଧା ପଡ଼ିଥାଏ । ତିନି ମାଇଲ କି ବେଶୀ ଦୂରରୁ ଠିକ୍ ରାସ୍ତା ମଝିରେ ମନ୍ଦିର ଦେଖାଯାଉଥାଏ । ବିଶ୍ୱଦା ଓ ମୁଁ ଖୁବ୍ ଜୋର୍‌ରେ ସାଇକେଲ ଚଳାଇ ଆଗରେ ଚାଲିଆସିଲୁ । ବାପା ପଛରେ ପଡ଼ିଗଲେ । ଆମେ ରହଣି ଜାଗାରେ ପହଞ୍ଚି ଅପେକ୍ଷା କରିଛୁ, ବାପା କୁଆଡ଼େ ଗଲେ । ଘଣ୍ଟାଏ କି ବେଶି ପରେ ଆସି ପହଞ୍ଚିଲେ । ବାଟରେ ତାଙ୍କର ସାଇକେଲ ଚକ ଫୁଟିଗଲା । ସେ ଡାକିଲେ ବି ଆମକୁ ଶୁଣାଗଲା ନାହିଁ । ଆମେ ପହଞ୍ଚିବା ପରେ ଡେରି ଦେଖି ଫେରିଯାଇ ଦେଖିବା ଉଚିତ ଥିଲା । ତା' ବି କଲୁ ନାହିଁ । ସେ ଚାଲି ଚାଲି ଆସି ଅଗ୍ନିଶର୍ମା ହେଇ ପହଞ୍ଚିଲେ । ଆମର କୋଣାର୍କ ଭ୍ରମଣଟା ଫିକା ହେଇଗଲା । ସେ ଆଉ ମନ୍ଦିର ଦେଖି ଗଲେ ନାହିଁ । ବିଶ୍ୱଦା ଓ ମୁଁ ଘେରାଏ ବୁଲି ପଳେଇ ଆସିଲୁ ।

# ଗାନ୍ଧୀଜୀଙ୍କ ପଦଯାତ୍ରା

୧୯୩୪ ମଇ ମାସରେ ଓଡ଼ିଶାରେ ଗାନ୍ଧୀଜୀଙ୍କର ହରିଜନ ଗସ୍ତ ଥାଏ । ଥଳି ଭେଟିଦେବା ପାଇଁ ଚାନ୍ଦା ଆଦାୟ କରିବାକୁ ସୁରେନ୍ଦ୍ର ପଟ୍ଟନାୟକ ଓ ମୁଁ ସତ୍ୟଭାମାପୁର ମାମୁଁଘରେ ରହି ଆଖପାଖ ଗାଁରେ ବୁଲୁଥାଉ । ମାମୁଁଘରେ ଭୋଜନଟା ଭଲ ମିଳୁଥାଏ । କିଛି କିଛି ଚାନ୍ଦା ମିଳୁଥାଏ । ନାନାପ୍ରକାରର ଅଭିଜ୍ଞତା ମିଳୁଥାଏ । ଦିନେ ଆମେ ଘଣ୍ଟିମୁଣ୍ଡା ଯାଇଥିଲୁ, ସେଠି ଜଣେ ବଡ଼ ଧନୀ ମହାଜନ ଅଛନ୍ତି ବୋଲି ଶୁଣି । ମହାଜନଙ୍କ ଘରେ ପହଞ୍ଚି ଦେଖିଲି ଯେ ପିଣ୍ଡାରେ ଆଣ୍ଠୁ ଟେକି ବସି ଜଣେ ବୁଢ଼ା ଟଙ୍କା ଗଣୁଛନ୍ତି । କୋଟଟ ମଇଳା କରିଆ ଖଣ୍ଡେ ପିନ୍ଧା, ମୁଣ୍ଡରେ ଗୋଟିଏ ବେଣ୍ଟି । ଆଗରେ ଥାକ ଥାକ ହୋଇ ଅନେକ ଟଙ୍କା ଥୁଆ ହୋଇଥାଏ । ଆମେ ତାଙ୍କୁ ଗାନ୍ଧୀଙ୍କ ମହାତ୍ମ୍ୟ ଖୁବ୍ ବୁଝାଇଲୁ । ବୁଢ଼ା ଟଙ୍କା ଗଣା ବନ୍ଦକରି ଶୁଣୁଥା'ନ୍ତି । ଶେଷକୁ ଯେତେବେଳକୁ କହିଲେ, "ହଉ ! ଭଲକଥା" - ଆମେ ବିଚାରିଲୁ ଯେ ବୁଢା ସେ ଟଙ୍କାଥାକରୁ ଅନ୍ତତଃ ଆମକୁ ଗୋଟିଏ ଥାକ ଦେବ । ମାତ୍ର ବୁଢା ଅଣ୍ଟିରୁ ଜୋଡ଼ିଏ ପଇସା କାଢ଼ି "ହଉ ନିଅ" ବୋଲି ଯେମିତି ଯାଚିଛନ୍ତି, ଆମର ସବୁ ଆଶା ପାଣିଫାଟିଗଲା । ଆମେ ସେତକ ଆଉ ନ ନେଇ ପଳେଇ ଆସିଲୁ । ଅନ୍ୟତ୍ର ଭଲ ପ୍ରତିସ୍ପଂଦ ମିଳୁଥିଲା । ଅନେକ ଜାଗାରେ ଲୋକେ ଆମକୁ ଆଦରରେ ଖାଇବାକୁ ଦେଇଥିଲେ । ଏଇ ସତ୍ୟଭାମାପୁରରେ ଥିବାବେଳେ ଆମେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ମୃତ୍ୟୁ ସମ୍ବାଦ ପାଇଥିଲୁ ।

ଜମିଦାରୀ ଅତ୍ୟାଚାରର ପ୍ରତ୍ୟକ୍ଷ ଦର୍ଶନ ମଧ ପ୍ରଥମେ ଏଇ ସମୟରେ ମିଳିଲା । ଆମେ ଦିନେ ଲେଖନପୁର ଯାଇ ସେଠା ଜମିଦାରଙ୍କ ଘରେ ଅତିଥି ହୋଇଥାଉ । ସେ ପୁଣି ସ୍ୱାଧୀନତା ଆନ୍ଦୋଳନର ସମର୍ଥକ ଥା'ନ୍ତି । ଆମ ରହିବା ଘର ସାମନାରେ ତାଙ୍କର କଚିରୀ । ସେଠି ବେଶ୍ କିଛି ଲୋକ ଜମା ହୋଇଥା'ନ୍ତି । ହଠାତ୍ ପାଟି ଶୁଣି ଚାହିଁ ଦେଖିଲି ଗୋଟିଏ ଲୋକକୁ ଜଣେ ପିଆଦା କି କିଏ ଜୋତାରେ ପିଟୁଛି । ମୁଁ ହତଭମ୍ବ ହୋଇ ଦେଖିଲି । ପରେ ଅନୁଶୋଚନା ହେଲା ଯେ, ମୋର ପ୍ରତିବାଦ କରିବା ଉଚିତ ଥିଲା ।

ସେତେବେଳେ ମୋ ମନରେ ବିଶ୍ୱଜନୀନ ଭାବର ଉଦୟ ହେଉଥାଏ । ସାରା ପୃଥିବୀର ସବୁଦେଶର ଲୋକ ଏ ମଣିଷ ଜାତି, ସାରା ପୃଥିବୀର ଲୋକ ରାଷ୍ଟ୍ରର ଭେଦବାଡ଼ ଅତିକ୍ରମ କରି ଏକ ହେବା ଉଚିତ- ଏ ବିଚାରଟି ମୋ ମନରେ ଏକ ଉଦାର ଭାବ ସୃଷ୍ଟି କରୁଥାଏ । ପୁଣି ଶିଳ୍ପ ଶ୍ରମିକ ଶ୍ରେଣୀ ବିଷୟରେ ଏକ ରୋମାଣ୍ଟିକ୍ କଳ୍ପନା ଥାଏ । କଲିକତାରେ ଚଟକଳ କି କେଉଁଠି କାମ କରୁଥିବା ଲୋକଙ୍କୁ ଗାଁରେ କେଉଁଠି ଭେଟିଲେ ବିଶେଷ ଆଳାପ କରିବା ପାଇଁ ଇଚ୍ଛା ହେଉଥାଏ । ପଦ୍ମପୁରରେ ଜାଣିବାକୁ ପାଇଲୁ ଯେ ସେଠାକର ବେଶ୍ କେତୋଟି ପରିବାର ଦକ୍ଷିଣ ଆମେରିକାର ବ୍ରାଜିଲ୍‌ରେ ଯାଇ ବସବାସ କରିଯାଇଛନ୍ତି । ଓଡ଼ିଶାର ଗଣ୍ଡମଫସଲ ସହିତ ସୁଦୂର ଦକ୍ଷିଣ ଆମେରିକାର ଏ ସମ୍ବନ୍ଧ ମୋ ମନରେ ଖୁବ୍ ଉଦ୍ଦୀପନା ସୃଷ୍ଟି କରିଥିଲା, ସାରା ପୃଥିବୀ ଏମିତି ଧୀରେ ଧୀରେ ଏକ ହେବାକୁ ଯାଉଛି ବୋଲି ମୁଁ ବିଚାରିଥିଲି ।

ଗାନ୍ଧୀଜୀଙ୍କ ଗସ୍ତବେଳ ପାଖ ହୋଇଯିବାରୁ ଆମେ କଟକ ଫେରିଆସିଲୁ । ତିନିଶହ ଖଣ୍ଡେ ଟଙ୍କା ଆମେ ଚାନ୍ଦା ଉଠେଇ ପାରିଥିଲୁ । ଗାନ୍ଧୀଜୀ ସମ୍ବଲପୁର ଦେଇ ଅନୁଗୁଳ ଆସିଲେ । ସେଠିକା ଡେପୁଟି କମିଶନର ଲୋକଙ୍କୁ ଧମକ ଦେଇ ଯେ କେହି ଗାନ୍ଧୀଙ୍କର ଅଭ୍ୟର୍ଥନା ପାଇଁ କୌଣସି ସାହାଯ୍ୟ ଯେପରି ନ କରନ୍ତି । ଏକା ଗିରିଜାଭୂଷଣ ଦତ୍ତ ତମ୍ବୁ ଆଦି ପକେଇ କୌଣସିମତେ ଗାନ୍ଧୀଜୀଙ୍କ ରହଣୀ ବ୍ୟବସ୍ଥା କଲେ । ମଫସଲରୁ କିନ୍ତୁ ଗାନ୍ଧୀଜୀଙ୍କୁ ଦେଖିବାକୁ ବହୁତ ଲୋକ ଆସିଥିଲେ । ଗିରିଜାବାବୁ ଅନୁଗୁଳରେ ଠିକାଦାରୀ କାମ କରୁଥା'ନ୍ତି । ସେ ସ୍ୱାଧୀନତାପ୍ରେମୀ ଓ ନିର୍ଭୀକ ଥିଲେ । ପରେ ସେ ଗଡ଼ଜାତ ଆନ୍ଦୋଳନରେ ଖୁବ୍ ସାହାଯ୍ୟ କରିଥିଲେ । ତାଙ୍କରି ଜମି ଉପରେ ପରେ ଖୁଡ଼ୀ ଯାଇ ଅନୁଗୁଳରେ ଆଶ୍ରମ ଆରମ୍ଭ କଲେ ।

ଗାନ୍ଧୀଜୀ ସନ୍ଧ୍ୟାରେ ତାଳଚେର ଗାଡ଼ିରେ କଟକ ଅତିକ୍ରମ କରି ପୁରୀ ଗଲେ । ପୁରୀରୁ ତାଙ୍କର କଟକଆଡ଼କୁ ଆସିବାର କଥା । ତାଙ୍କର ସାତଦିନିଆ ତୋଫାନୀ ଗସ୍ତର କାର୍ଯ୍ୟକ୍ରମ ଗଢ଼ା ହେଇଥାଏ । ମୋଟରରେ ବୁଲି ଦିନକୁ ଦୁଇତିନିଟା ଲେଖା ଜାଗାରେ ସଭା କରିବା କଥା ଥାଏ । ମାତ୍ର ତହିଁ ଆରଦିନ ସକାଳୁ ଖବର ମିଳିଲା ଯେ ଗାନ୍ଧୀଜୀ ପୁରୀରୁ ପଦଯାତ୍ରା ଆରମ୍ଭ କରିବେ । ତାଙ୍କର ମୋଟର ଗସ୍ତ ବାତିଲ ହେଲା । ଜଣାଗଲା ଯେ ପୁରୀରେ ପଣ୍ଡାମାନେ ଗାନ୍ଧୀଜୀଙ୍କୁ ମାରପିଟ କରିବାର ଷଡ଼ଯନ୍ତ୍ର କରୁଛନ୍ତି ବୋଲି ଖବର ପାଇ ସ୍ଥାନୀୟ ନେତାମାନେ ତାଙ୍କର ସୁରକ୍ଷା ପାଇଁ ପୁଲିସ ବନ୍ଦୋବସ୍ତ କରାଇଥିଲେ । ଏଇଟା ଗାନ୍ଧୀଜୀଙ୍କୁ ଭଲ ଲାଗିଲା ନାହିଁ । ତାଙ୍କୁ କେହି ମାରିବାକୁ ଚାହେଁ ତ ତାକୁ ଆହୁରି ସୁବିଧା ଦେବାକୁ ସେ ପଦଯାତ୍ରା କରିବାକୁ ସ୍ଥିର କରିଛନ୍ତି ବୋଲି ଶୁଣିଲୁ ।

ଏଣେ ଯେଉଁସବୁ ଆଡ଼େ ତାଙ୍କର ଗସ୍ତକ୍ରମ ସ୍ଥିର ହେଉଥିଲା ତେଣିକି ଲୋକେ ଓ ସେ ସବୁର ଆୟୋଜନ କରିଥିବା କର୍ମୀମାନେ ଖୁବ୍ ଉତ୍ୟକ୍ତ ହେଲେ । ଅନେକେ ଯାଇ ତାଙ୍କ ସହିତ ଯୁକ୍ତିତର୍କ ମଧ୍ୟ କଲେ । କିନ୍ତୁ ଗାନ୍ଧିଜୀ ଅଟଳ । ପୁରୀରୁ କଟକ ଯାଏ ସାତଦିନର ପଦଯାତ୍ରାର କାର୍ଯ୍ୟକ୍ରମ ସ୍ଥିର ହେଲା । ମୁଁ ଯାଇ ଦ୍ୱିତୀୟ ଦିନ ସାକ୍ଷୀଗୋପାଳଠାରେ ପଦଯାତ୍ରାରେ ଯୋଗଦେଲି । ମୋର କାମ ଥାଏ ଗାନ୍ଧୀଜୀଙ୍କର ବକ୍ତୃତାର ବିବରଣୀ ଲେଖିବା ଓ ଫଟୋ ଉଠାଇବା ।

କବିଗୁରୁ ରବୀନ୍ଦ୍ରନାଥଙ୍କର ବଡ଼ଭାଇ ଦ୍ୱିଜେନ୍ଦ୍ରନାଥ ବଙ୍ଗଳାରେ ଦ୍ରୁତ ଲିଖନର ଗୋଟିଏ ପ୍ରଣାଳୀର ଉଦ୍‌ଭାବନ କରିଥିଲେ ଓ ଖଣ୍ଡେ ବହି ପ୍ରକାଶ କରିଥିଲେ । ଏ ବହିରୁ ଖଣ୍ଡେ ଖୁଡ଼ୀଙ୍କ ପାଖରେ ଥିଲା ଓ ମୋ ହାତରେ ପଡ଼ିଲା । ମୁଁ ଏ ଦ୍ରୁତ ଲିଖନ ଅଭ୍ୟାସ କରୁଥିଲି । ପ୍ରକୃତରେ ସେଥିରେ ମୋର ସେମିତି କିଛି ଦକ୍ଷତା ଆସି ନ ଥାଏ କି ବେଗ ବି ଭଲ ହେଉ ନ ଥାଏ । ତେବେ ଗାନ୍ଧୀଜୀଙ୍କର ହିନ୍ଦୀ ବକ୍ତୃତାର ଓଡ଼ିଆ ଅନୁବାଦ ଗୋଟିଏ ଗୋଟିଏ ବାକ୍ୟ ଧରି ହେଉଥାଏ ବୋଲି ଲେଖିବାକୁ ଯଥେଷ୍ଟ ସମୟ ମିଳିଯାଉଥାଏ । ବକ୍ତୃତାକୁ ମୁଁ ସାଫୀ କରିବା ପରେ ପ୍ରଥମେ କେତେଦିନ ତାକୁ ଗାନ୍ଧୀଜୀ ନିଜେ ଦେଖି ସଂଶୋଧନ କରି ଦେଉଥିଲେ । ତା' ପରେ ଆଉ

ସଂଶୋଧନ କରିବା ଆବଶ୍ୟକ ମନେକଲେ ନାହିଁ । ମୁଁ କାକା କାଲେଲକର କି ଆଉ କାହାକୁ ଦେଖେଇ ନେଉଥିଲି ।

ପଦଯାତ୍ରା ସକାଳୁ ଅଢ଼େଇ ତିନି ମାଇଲ ଓ ଉପରଓଳି ଆଉ ସେତିକି ବାଟ ଚାଲୁଥାଏ । ସକାଳୁ ଶୀଘ୍ର ଜଳଖିଆ ଖାଇଦେଇ ପଦଯାତ୍ରା ଆରମ୍ଭ ହୁଏ । ସନ୍ଧ୍ୟାବେଳେ ସେହିପରି ପାଞ୍ଚ କି ସାଢ଼େ ପାଞ୍ଚରେ ରାତି ଭୋଜନ ସାରିଦେଇ ବାହାରିପଡ଼ୁ । ରାତି ରହଣିରେ ରାତି ଖାଇବାର ଝାମେଲା ନ ଥାଏ । ଖରାଦିନ, ସମସ୍ତେ ପଦାରେ ଶୁଅନ୍ତି । ଦିନ ରହଣିରେ ଘର ବା ନଡ଼ିଆ ଛାଞ୍ଚ, ବରଡ଼ା ଆଦିର ଛାମୁଣ୍ଡିଆ ଲୋଡ଼ାହୁଏ । ବାହାରିବା ପୂର୍ବରୁ ଗାନ୍ଧୀଜୀ ନିଜେ ତଦାରଖ କରି ଦେଖନ୍ତି ଯେ ଖାତ ପାଇଖାନା, ଅଇଁଠାପତ୍ର ଆସି ଠିକ୍ ଭାବରେ ପୋତା ହେଇଛି କି ନାହିଁ । ସବୁ ସଫାସୁତୁରା ହେଇଛି କି ନାହିଁ । ସାଥୀମାନଙ୍କର ମଧ୍ୟ ଖବର ବୁଝନ୍ତି । କଣ ରନ୍ଧା ହେଲା, କିଛି ବଳିଲା କି ନାହିଁ, ଏ ସବୁ ଖବର ମଧ୍ୟ ବୁଝନ୍ତି । ଥରେ ଚୁନୀ ଗୋଡ଼ରେ କଣ୍ଟା ପଶିଛି ଶୁଣି ନିଜେ ସେ କଣ୍ଟା ବାହାର କରିବାକୁ ବସିଗଲେ । ଥରେ ଭାତ ବଳିଛି ବୋଲି ଶୁଣି ତାହାର ପଖାଳ କରାଯାଇ ସଦ୍‌ବ୍ୟବହାର କରାଯିବ ବୋଲି ଜାଣିବା ପରେ ଯାଇ ସନ୍ତୁଷ୍ଟ ହେଲେ । ଦିନ ରହଣିମାନଙ୍କରେ ପଦଯାତ୍ରୀମାନେ ହରିଜନ ବସ୍ତିକୁ ଯାଇ ସେଠା ଅବସ୍ଥା ଦେଖିଆସି ଗାନ୍ଧୀଜୀଙ୍କୁ ଜଣାନ୍ତି । ଥରେ ଥରେ ଦିନ ରହଣିରେ ପାଖ ଗାଁର ହରିଜନମାନଙ୍କୁ ଖାଇବା ପାଇଁ ନିମନ୍ତ୍ରଣ କରାଯାଏ ।

ଗାନ୍ଧୀଜୀଙ୍କୁ ଭେଟିବାକୁ ଅନେକ ବିଶିଷ୍ଟ ବ୍ୟକ୍ତି ଆସୁଥା'ନ୍ତି । ବିଦେଶରୁ ମଧ୍ୟ ବିଶିଷ୍ଟ ବ୍ୟକ୍ତି ଓ ଅନ୍ୟାନ୍ୟ କେତେ ପ୍ରକାରର ଲୋକ ଆସୁଥା'ନ୍ତି । କୁଟି ବୁଟୋ ବୋଲି ଦକ୍ଷିଣ-ପଶ୍ଚିମ ଆଫ୍ରିକାର ଜଣେ ଜର୍ମାନ ଯୁବକ ମୂଳରୁ ଶେଷଯାଏ ପଦଯାତ୍ରାରେ ରହିଥିଲା । ସେ ନିଜକୁ ନାତ୍‌ସୀ ଦଳର ସଦସ୍ୟ ବୋଲି କହୁଥାଏ । ପଦଯାତ୍ରାର ସେ ଅନ୍ୟତମ ଆକର୍ଷଣ ହୋଇଥାଏ । ଯେଉଁଠି ପହଞ୍ଚେ, ଏକା ସାଙ୍ଗରେ ଦଶବାରଟା ପଇଡ଼ ପିଇଯାଏ । ପୁରୀ ଜିଲ୍ଲାର ଶିଉଳାଟଙ୍କ କି ସତ୍ୟଭାମାପୁରରେ ଦୁଇଜଣ ଚେକୋସ୍ଲୋଭାକ୍ ଯୁବକ ଆସି ପହଞ୍ଚିଥିଲେ । ଠକ୍‌କର ବାପା ପୁରୀରୁ କଟକ ଯାଏ ସାଙ୍ଗରେ ଥିଲେ । ହରିଜନ ସେବକ ସଂଘର ସହକାରୀ ସମ୍ପାଦକ ଏନ୍.ଆର୍. ମାଲକାନୀ ପୁଣି ବୈରୀରୁ ଭଦ୍ରକ ଯାଏ ରହିଲେ । ସତୀଶଚନ୍ଦ୍ର ଦାସଗୁପ୍ତ ପ୍ରଥମଥର ଆସି ଶିଉଳାଚକଠାରେ ପହଁଞ୍ଚିଥିଲେ । ଓଡ଼ିଶା ପରେ ବଙ୍ଗଳାରେ ଗାନ୍ଧୀଜୀଙ୍କର ଦୁଇ ସପ୍ତାହର କାର୍ଯ୍ୟକ୍ରମ ଥିଲା । ସତୀଶବାବୁ ବଙ୍ଗଳା ପକ୍ଷରୁ ସେତକ ସମୟ ଓଡ଼ିଶାକୁ ଦେଇ ଦେଇଥିଲେ । ତେଣୁ ଗାନ୍ଧୀଜୀ କଟକରେ ପହଁଞ୍ଚି ଅଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ଯୋଗ ଦେବାକୁ ପାଟନା ଗଲେ ଓ ସେଠୁ ଫେରି ବୈରୀ ଷ୍ଟେସନରେ ଓହ୍ଲେଇ ପୁଣି ଦ୍ୱିତୀୟ ଦଫା ପଦଯାତ୍ରା ଆରମ୍ଭ କଲେ । ବାଲେଶ୍ୱର ଯାଏ ପଦଯାତ୍ରା ଚାଲିବା କଥା ଥିଲା । ମାତ୍ର ଯାଜପୁରଠାରୁ ବର୍ଷା ଆରମ୍ଭ ହୋଇଯିବାରୁ ଭଦ୍ରକଠାରେ ହିଁ ପଦଯାତ୍ରା ଶେଷ କରିବାକୁ ପଡ଼ିଲା ।

ଅଗାଥା ହ୍ୟାରିସନ୍, ଭାରତପ୍ରେମୀ ଇଂରେଜ ମହିଳା, ଅନେକ ଦିନଯାଏ ଦ୍ୱିତୀୟ ଦଫା

ପଦଯାତ୍ରାରେ ଥିଲେ । ସର୍ଭିସ୍ ସିଭିଲ୍ ଇଣ୍ଟରନ୍ୟାସନାଲ୍ ନାମକ ଶାନ୍ତିବାଦୀ ସେବା ସଂସ୍ଥାର ଜଣେ କର୍ମୀ ପିୟର୍ ସେରିସୋଲ୍ ବିହାରର ଭୂମିକମ୍ପ ପୀଡ଼ିତ ଲୋକଙ୍କର ସେବା କରିବାକୁ ଆସିଥା'ନ୍ତି । ସେ ବି କେତେଦିନ ଗାନ୍ଧୀଜୀଙ୍କ ସାଙ୍ଗରେ ଥିଲେ । ମିନୁ ମସାଣୀ ସେତେବେଳେ କଂଗ୍ରେସ ସୋଶାଲିଷ୍ଟ ଦଳର ଜଣେ ମୁଖ୍ୟ ନେତା ଥା'ନ୍ତି । ସେ ବି ଆସି ଦୁଇ ତିନିଦିନ ପଦଯାତ୍ରାରେ ରହି ଗାନ୍ଧୀଜୀଙ୍କ ସହିତ ଆଲୋଚନା କରିଗଲେ । ଘନଶ୍ୟାମଦାସ ବିଡ଼ଲା ମଧ୍ୟ ଆସିଥିଲେ । ସେ ସବୁଠାରୁ ଅସୁବିଧାଜନକ ରହଣି ଇଂଡାରାପୋଖରୀରେ ଆସି ପହଞ୍ଚିଲେ । ସେଠି ଗୋଟିଏ ଛୋଟିଆ ଘରେ ଗାନ୍ଧୀଜୀ ଥା'ନ୍ତି । ଅନ୍ୟମାନଙ୍କ ଭିତରୁ ଅଧିକାଂଶ ଏକ କଦଳୀ ବାଡ଼ିରେ ରହିଥା'ନ୍ତି । ସେଠି ବିଡ଼ଲାଜୀଙ୍କ ପାଇଁ ମୁନ୍ଦିଏ ଭଲ କ୍ଷୀର ମିଳିବା ମଧ୍ୟ କଠିନ ହେଲା ।

ପ୍ରତି ରହଣିରେ ପହଞ୍ଚି ଗାନ୍ଧୀଜୀ ସମବେତ ଜନତାକୁ ଅସ୍ପୃଶ୍ୟତା ବିରୋଧରେ ବୁଝାନ୍ତି । ରାଜୁଦା ଅନୁବାଦ କରନ୍ତି । ଗାନ୍ଧୀଜୀ ଗୋଟିଏ ଲେଖା ବାକ୍ୟ କୁହନ୍ତି ଓ ତା'ର ଅନୁବାଦ ହୁଏ । ବକ୍ତୃତା ବେଶି ଲମ୍ବା ହୁଏ ନାହିଁ । କେତେଟା ମୁଖ୍ୟ କଥା ସବୁଠେଇଁ ବୁଝାଉଥା'ନ୍ତି । ଗାନ୍ଧୀଜୀଙ୍କୁ ଦେଖିବାକୁ ଦୂରାଦୂରାନ୍ତରୁ ଲୋକ ଆସୁଥା'ନ୍ତି ଓ ଅନେକ ଆସି ଅସମୟରେ ପହଞ୍ଚି ଗାନ୍ଧୀଜୀଙ୍କୁ ଦେଖିବାକୁ ବ୍ୟାକୁଳ ହୁଅନ୍ତି । ଦିନବେଳେ ତ ସେ ପ୍ରାୟ ଖୋଲା ଜାଗାରେ ବସନ୍ତି । ସେଥିପାଇଁ କିଛି ଅସୁବିଧା ହୁଏ ନାହିଁ । ମାତ୍ର ରାତିରେ ଅନେକ ସମୟରେ ଲୋକ ଗାନ୍ଧୀଜୀ ଶୋଇଥିବାବେଳେ ତାଙ୍କ ମୁହଁ ପାଖରେ ଲଣ୍ଠନ ଧରି ଟର୍ଚ୍ଚ ପକେଇ ବଡ଼ ହଇରାଣ କରୁଥା'ନ୍ତି ।

କେତୋଟି ବିଶେଷ ପ୍ରସଙ୍ଗ ମନେ ରହିଯାଇଛି । ଠାଏ ଗୋଟିଏ ମଠ ବା ମନ୍ଦିର ହତା ଭିତରେ ରାତ୍ରି ରହଣି ହୋଇଥାଏ । କିଏ ଜଣେ ଗାନ୍ଧିଜୀଙ୍କର ବିଛଣା ଯେଉଁଠି ବିଛେଇ ଦେଲେ ସେଇଟା ଗୋଟିଏ କଣ୍ଟାବାଡ଼ରୁ ମୋଟେ ପାଞ୍ଚ ସାତ ହାତ ଦୂର । ଗାନ୍ଧୀଜୀ ବିଛଣାରେ ବସିଯାଇଥା'ନ୍ତି, ବାପା ଦେଖି ପକେଇ କହିଲେ – "ଜାଗାଟା ଅରମା, ଜନ୍ତୁଜନ୍ତା ଥିବେ । ବିଛଣାଟା ଆଉରି ଦୂରକୁ ଘୁଞ୍ଚାଇ ଦେବା ।" ଗାନ୍ଧିଜୀ ହସି ଜବାବ ଦେଲେ – "ଗୋପବାବୁ ! ସାପର କାମୁଡ଼ିବାର ଥିବ ତ ସେ କ'ଣ ଆଉ ଟିକେ ଦୂରକୁ ଯାଇ କାମୁଡ଼ି ପାରିବ ନାହିଁ ?" ବିଛଣା ସେଇଠି ରହିଲା ।

ଆଉଠାଏ ଦୁଇପହରବେଳେ ଖୁବ୍ ଗରମ ହେବାରୁ ଗାନ୍ଧୀଜୀ ଯାଇ ଗୋଟାଏ ଆମ୍ବତୋଟା ଛାଇରେ ବସିଲେ । ସେଠି ଗଛମାନଙ୍କରେ ଆମ୍ବ ଡାଆଣୀ ଭର୍ତ୍ତି । ମଣିଷକୁ ରଖେଇ ଥୁଆଇ ଦେଉ ନ ଥା'ନ୍ତି । କିଏ ଜଣେ ସେଥିପାଇଁ ବିରକ୍ତି ପ୍ରକାଶ କରିବାରୁ ଗାନ୍ଧୀଜୀ ମନ୍ତବ୍ୟ କଲେ – "ସେମାନଙ୍କର କି ଦୋଷ ? ଆମେ ଯଦି ପୋକ ହେଇଥା'ନ୍ତୁ ଆମେ ବି ସେମିତି କରନ୍ତୁ ।" କଟକ ଜିଲ୍ଲାର ଲେଖନପୁରଠାରୁ ସତ୍ୟଭାମାପୁର ଟିକିଏ ବେଶି ଦୂର ବାଟଥାଏ । ଆସୁ ଆସୁ ବେଶ୍ ଡେରି ହେଇଗଲା । ସେଠୁ ଗୋପୀନାଥପୁର ଠେଇଁ ବନ୍ଧରୁ ଗଡ଼ି ଗାନ୍ଧୀଜୀ ଦୌଡ଼ିବାକୁ ଆରମ୍ଭ କଲେ । ଅଧମାଇଲିଏ ଖଣ୍ଡେ ବାଟ ଯାଏ ରୀତିମତ ଦୌଡ଼ । ସମସ୍ତେ ଧଇଁ ସଇଁ ହେଇ ଗୋଡ଼େଇଥା'ନ୍ତି ।

ଯାଜପୁରର ପୂର୍ବ ରହଣି ବୁଢ଼ା ନଈକୂଳରେ ରାତିରେ ହେଇଥାଏ । ସେଠି ଯେମିତି ସନ୍ଧ୍ୟା ପ୍ରାର୍ଥନା ସରା ସରିଛି, କୁଆଡୁ କଳାବଉଦ ଝାକିଝୁକି ହେଇ ଆସି ଝିପିଝିପି ବର୍ଷା ଆରମ୍ଭ ହେଇଗଲା । ସେଠି ଖଣ୍ଡେ ଛୋଟିଆ ଦୋକାନ ଘର ଥାଏ । ତା'ରି ଗୋଟିଏ ବଖରାରେ ଟିକିଏ ଜାଗାଥାଏ । ସେଠି ଗାନ୍ଧୀଜୀ ଓ ମହିଳାମାନେ ମୋଟ ସାତଆଠ ଜଣ ଆଶ୍ରୟ ନେଲେ । ବାକି ସମସ୍ତଙ୍କ ପାଇଁ ଦୁଇଖଣ୍ଡ ଛଅ ସାତ ହାତ ଲମ୍ବର ବରଡ଼ାତାଟି ମିଳିଲା । ତାକୁ ହିଁ ଡେରି ଓ ତା' ଉପରେ ଖଣ୍ଡେ କେରପାଲ ଘୋଡ଼େଇ ଆମେ ଏକୋଇଶ ବାଇଶ ଜଣ ତା' ଭିତରେ ଆଶ୍ରୟ ନେଲୁ । ଏତକ ବ୍ୟବସ୍ଥା କରୁକରୁ ମୂଷଳଧାର ବର୍ଷା ଆରମ୍ଭ ହେଇଗଲା । ବର୍ଷା ଅନେକ ରାତିଯାଏ ଚାଲିଲା । ଆମେସବୁ ରାତିଯାକ ସେଇ ତାଟି ଭିତରେ ଗୁଣ୍ଡିଗାଣ୍ଡି ହେଇ ଆଉଜି ବସି ଢୁଳେଇ, ରାତିଟାଯାକ କଟେଇଲୁ ।

ବାଲେଶ୍ୱର ଜିଲ୍ଲା ତୋଡ଼ଙ୍ଗାରେ ମଧ୍ୟ ପ୍ରବଳ ବର୍ଷା ହେଲା । ସେଠୁ ଭଦ୍ରକ ଏଗାର ମାଇଲ । ସେତକ ବାଟ ଏକା ଠେଲାକେ ଯାଇ ଭଦ୍ରକରେ ଜୀବରାମଜୀଙ୍କର ଆଶ୍ରମରେ ଦୁଇଦିନ ରହି ଓଡ଼ିଶା ଗସ୍ତ ଶେଷକରିବା ସ୍ଥିର ହେଲା । ସେହି ଅନୁସାରେ ସକାଳୁ ବାହାରି ଅଧାବାଟରେ ଠାଏ ଟିକିଏ ବିଶ୍ରାମ କରି ଦିପହର ବେଳକୁ ଭଦ୍ରକରେ ପହଞ୍ଚିଲୁ ।

ଏଇ ପଦଯାତ୍ରାର ଦ୍ୱିତୀୟ ପର୍ବ ଭିତରେ ବଡ଼ମା' ବସନ୍ତରେ ପଡ଼ିଲେ । ଅଖା ବସନ୍ତ ହୋଇଗଲା ଓ ସେଥିରେ ସେ ଦେହତ୍ୟାଗ କଲେ । ବୋଉ କଟକରୁ ଫେରି କବିରପୁର ରହଣିରେ ପହଞ୍ଚିଲା । ଗାନ୍ଧୀଜୀ ତାକୁ ପ୍ରବୋଧନା ଦେଲେ । ସେତେବେଳେ ମୁଁ ପ୍ରାର୍ଥନାରେ ବୋଲାଯାଉଥିବା ସ୍ଥିତପ୍ରଜ୍ଞ ଲକ୍ଷଣର ପ୍ରଭାବ ଯୋଗୁଁ ହେଉ ବା ମୋର ଚାପା ସ୍ୱଭାବ ଯୋଗୁଁ ହେଉ ବାହାରେ କୌଣସି ଭାବ ପ୍ରକାଶ ନ କରି ନିର୍ବିକାର ରହିଗଲି । ପରେ ବିନୋବାଜୀଙ୍କର ପଦଯାତ୍ରା ବେଳେ ବୁଢ଼ୀମା'ର ଦେହାନ୍ତ ହେଲା ଓ ସେତେବେଳେ ବି ମୁଁ ଏହିପରି ନିର୍ବିକାର ଭାବ ଦେଖାଇଥିଲି । ଏଇଟା ସ୍ଥିତପ୍ରଜ୍ଞତା ନା ସଂବେଦନଶୀଳତାର ଅଭାବ ତାହା ବିଶ୍ଳେଷଣ କରି ବସିଲେ ଶେଷୋକ୍ତିଟିର ପ୍ରଭାବ ହିଁ ଅଧିକ ଦେଖାଯିବ । ଅନ୍ୟ ସମୟରେ ବଡ଼ମା' ଓ ମା' କଥା ମନେପକେଇ ମନେମନେ ଖୁବ୍ ଭାବିଛି । ଏବେ ମୋର ମନେହୁଏ ଦୁଃଖ ଓ ସୁଖ ଅନୁଭବ ନ କରିବାଟା ସୁସ୍ଥତାର ଲକ୍ଷଣ ନୁହେଁ । ଦୁଃଖ ଓ ସୁଖଦ୍ୱାରା ମଣିଷ କାବୁ ହେଇଯିବ ନାହିଁ, ଏ ସବୁ ସତ୍ତ୍ୱେ ବୁଦ୍ଧି କାମ କରିବ, ଏଇଟା କାମ୍ୟ । ମାତ୍ର ସମ୍ବେଦନଶୀଳତା ବି ସତେଜ ରହିବା ଚାହି । ପ୍ରଚଳିତ ସମାଜର ପରିବେଶରେ ଆମର ସମ୍ବେଦନଶୀଳତା ଥୋବରା ହେଇଯାଏ । ସେଥିପାଇଁ ତାହାର ବିକାଶ, ତାହାକୁ ସତେଜ ଓ ତୀକ୍ଷ୍ଣ ରଖିବାର ଉପାୟ ଲୋଡ଼ା । ତାହା ନ ହେଲେ ସଂବେଦନହୀନ ଜଡ଼ତା ହିଁ ସ୍ଥିତପ୍ରଜ୍ଞତା ବୋଲି ଚଳିଯିବ । ବିନୋବାଜୀଙ୍କର ଗତିବିଧି ଦେଖି ତାହା ହିଁ ମନେ ହେଉଛି ।

ବିହାରରେ ଏଣେ ଗ୍ରାମଦାନର 'ତୋଫାନୀ' ଆନ୍ଦୋଳନ ଚାଲିଥାଏ, ତେଣେ ସେଠି ଘୋର ଦୁର୍ଭିକ୍ଷ ପଡ଼ିଲା । ଜୟପ୍ରକାଶଜୀ ସାହାଯ୍ୟ ସମିତି ଗଢ଼ି ସାହାଯ୍ୟ କାମର ନେତୃତ୍ୱ

ନେଲେ । ବିନୋବା ମତ ଦେଲେ ଯେ ସେ କାମରେ ପଶିବା ଆବଶ୍ୟକ ନାହିଁ । ଗ୍ରାମଦାନ ସଂଗ୍ରହ ରୂପୀ 'ବୁନିୟାଦୀ' କାମ ହିଁ ସମସ୍ତେ କରିଯିବା ଚାହିଁ । ସେତେବେଳେ ଏ କଥା ମୋ ମନକୁ ପାଇ ନ ଥିଲା । ବିନୋବାଙ୍କ ସହିତ ବହୁତ ଯୁକ୍ତିତର୍କ କରିଥିଲି । ସେ ଯୁକ୍ତି ଦର୍ଶେଇଥିଲେ ଯେ ମଣିଷର ପ୍ରାରବ୍ଧ ଶେଷ ହେଲେ ଯାଇ ଯେ ମରେ । ତେଣୁ ଯେଉଁମାନଙ୍କ ପ୍ରାରବ୍ଧ ସରିବ ସେମାନେ ଯେତେ ଯାହା କଲେ ବି ମରିବେ ଓ ଯାହାଙ୍କର ନ ସରିଥିବ ସେମାନେ ଯେତେ ଯାହା ହେଲେ ବି ବଞ୍ଚିବେ । ତେଣୁ ସେମାନଙ୍କ ପାଇଁ ଚିନ୍ତାର ପ୍ରୟୋଜନ ନାହିଁ । ଏ ପ୍ରାରବ୍ଧବାଦ ଗୋଟିଏ ଏପରି ବସ୍ତୁ ଯାହାକୁ ପ୍ରମାଣ କରିହେବ ନାହିଁ କି ଅପ୍ରମାଣ କରିହେବ ନାହିଁ । ଏହାକୁ କହନ୍ତି ଚକ୍ରାକାର ଯୁକ୍ତି । ବିନୋବା ଅବଶ୍ୟ ପରେ ସାହାଯ୍ୟ କାମ କରିବା ତ ଗ୍ରାମସଭା ଗଢ଼ି ତାହା ମାଧ୍ୟମରେ କର ବୋଲି ସମ୍ମତି ଦେଇଥିଲେ ।

ସେ ତ ଯାହା ଗଲା, ଏବେ ଭାରତରେ ବସ୍ତୁତଃ ଏକଛତ୍ରବାଦ ପ୍ରତିଷ୍ଠା କରାଯାଇ ଘୋର ମିଥ୍ୟା ଓ ହିଂସାର ରାଜତ୍ୱ ଚାଲିଥିବାବେଳେ ଓ ବିହାର ତଥା ଅନ୍ୟତ୍ର ଶହ ଶହ ଲୋକଙ୍କୁ ହତ୍ୟା କରାଯାଇଥିବାବେଳେ ବିନୋବାଜୀ ତିଳେମାତ୍ର ଚିନ୍ତିତ ନ ହେଇ ଏବେ ଅନୁଶାସନ ପର୍ବ' ଚାଲିଛି ବୋଲି ଶାସନ ନୀତିକୁ ସମର୍ଥନ ଜଣାଇବା ଏକ ବିଚିତ୍ର କଥା । ଗାନ୍ଧୀଜୀ ତାଙ୍କର ବିରୋଧୀମାନଙ୍କର ଦୁଃଖ କଷ୍ଟରେ ସୁଦ୍ଧା ବିଚଳିତ ହେଉଥିଲେ । କେମିତି କ'ଣ ପ୍ରତିକାର କରିପାରିବେ ତାହା ଭାବୁଥିଲେ । ଆଉ ଏବେ ଜୟପ୍ରକାଶଜୀଙ୍କ ଠାରୁ ଆରମ୍ଭ କରି ହଜାର ହଜାର ବା ଶହ ଶହ ଅନ୍ତରଙ୍ଗ ସହକର୍ମୀ ଗିରଫ ହେବାବେଳେ, ସାରାଦେଶର ନାଗରିକ ଅଧିକାର ଅପହୃତ ହେବାବେଳେ, ଏସବୁ ଘଟଣା ତାଙ୍କୁ ଆଦୌ ସ୍ପର୍ଶ ନ କରିବାଟା ସ୍ଥିତପ୍ରଜ୍ଞତାର ଲକ୍ଷଣ ନୁହେଁ, ଭାବାତ୍ମକ ଅବରୋଧ ଓ ଆଧ୍ୟାତ୍ମିକ ପକ୍ଷାଘାତର ଲକ୍ଷଣ ।

ପଦଯାତ୍ରା ଭିତରେ ଦିନେ ସକାଳେ ଗାନ୍ଧୀଜୀ ମୋ ସହିତ କଥାବାର୍ତ୍ତା କରିବା ପାଇଁ ମୋ କାନ୍ଧରେ ଭରାଦେଇ ଚଲା ଆରମ୍ଭ କଲେ । ତେମେ କ'ଣ କରୁଛ ଓ କ'ଣ କରିବାକୁ ଚାହଁ ବୋଲି ପଚାରିଲେ । ମୁଁ କହିଲି ଯେ ମୋର ଜ୍ୟୋତିର୍ବିଜ୍ଞାନ ଆଦି ପଢ଼ିବାର ଇଚ୍ଛା । ସେ କହିଲେ ତେମେ କୌଣସି ଗୋଟାଏ କାମ ଯଥା, ଖଦୀ କାମ କରିବା ସାଙ୍ଗେ ସାଙ୍ଗେ ଏ ସବୁ ପଢ଼ାପଢ଼ି କରିପାର । ମୁଁ ହଁ, ଭରିଲି । ଏତିକିରେ କଥାବାର୍ତ୍ତା ସରିଲା । ଅସଲ କଥା ସେତେବେଳେ ମୁଁ କ'ଣ କରିବି ନ କରିବି ସେ ବିଷୟରେ କିଛି ସ୍ପଷ୍ଟ ଧାରଣା ମୋର ନ ଥାଏ । ଗୋଟାଏ ଦିଗରେ ସ୍ୱାଧୀନତାର ଲଢେଇରେ ତ ପଶିଥାଏ । ସେ ଦିଗରେ ଆଗେଇବାକୁ ହେବ ବୋଲି ମୋଟାମୋଟି ଧାରଣା ଥାଏ । ସମାଜବାଦୀ ବିଚାରର ସ୍ପର୍ଶରେ ନୂଆ ସମାଜର ଆକାଂକ୍ଷା ଜାଗିଥାଏ । ଅନ୍ୟଦିଗରେ, ବିଜ୍ଞାନ ଯେଉଁ ବିଚିତ୍ର ଜଗତର ରହସ୍ୟ ଉଦ୍‌ଘାଟନ କରୁଛି ସେ ବିଷୟରେ ଜାଣିବାର ଗଭୀର ଆଗ୍ରହ ଥାଏ । ମୋର ଚାପା ସ୍ୱଭାବ ଯୋଗୁଁ ଏ ସବୁ ବିଷୟରେ ମୁଁ କାହାରି ସହିତ ଖୋଲାଖୋଲି ଆଲୋଚନା କେବେ କରୁ ନ ଥାଏ । ତେଣୁ ଗାନ୍ଧୀଜୀଙ୍କ ସହିତ ମଧ୍ୟ ଆଉ ଅଧିକ କଥା କ'ଣ ହେବ ?

# ଶତୀଶ ବାବୁଙ୍କ ସାନ୍ନିଧରେ

ପଦଯାତ୍ରା ପରେ ବାପା ମତେ ବୁଝାଇଲେ ସତୀଶବାବୁଙ୍କ ପାଖରେ ଯାଇ ରହିବାକୁ । ସତୀଶବାବୁ ସେତେବେଳେ କଲିକତାର ପୂର୍ବ ପାଖରେ ସୁଁଡ଼ା ଅଞ୍ଚଳରେ ଗୋଟିଏ ସାନ ହାସପାତାଳ ହରିଜନମାନଙ୍କ ପାଇଁ ଖୋଲିଥା'ନ୍ତି ଓ ତାହା ମାଧ୍ୟମରେ ନିଜେ ଡାକ୍ତରୀ ଶିଖୁଥା'ନ୍ତି । ବାପା ସୂଚନା ଦେଲେ ଯେ ତାଙ୍କ ପାଖରେ ରହିଲେ ଜୀବାଣୁ ବିଜ୍ଞାନ ଆଦି ଶିଖିହେବ । ରସାୟନ, ପଦାର୍ଥ ବିଜ୍ଞାନ ଆଦିର ବ୍ୟବହାରିକ ପାଠପାଇଁ ଲାବରେଟୋରୀର ବ୍ୟବସ୍ଥା ବି ସେ କରିପାରିବେ । ମୋର ସେତେବେଳେ ଜୀବାଣୁ ବିଜ୍ଞାନ ପ୍ରତି କୌଣସି ଆକର୍ଷଣ ନ ଥିଲା । ତେବେ ଆଉ କିଛି ଭାବି ନ ପାରିବାରୁ ଓ ସତୀଶବାବୁଙ୍କ ପାଖରେ ବିଜ୍ଞାନ ଚର୍ଚ୍ଚାର ସୁଯୋଗ ମିଳିବା ଆଶାରେ ସେ ପ୍ରସ୍ତାବରେ ରାଜିହେଲେ । ବାପା ମତେ ନେଇ ବୋଧହୁଏ ଅଗଷ୍ଟ ମାସରେ କଲିକତାରେ ଛାଡ଼ି ଦେଇ ଆସିଲେ । ତା'ପରେ ସେମାନେ ଯାଇ ବରୀରେ ଆସ୍ଥାନ ଜମେଇଲେ ।

କଲିକତାରେ କଲେଜ ସ୍କୋୟାରରେ ବସି ବାପା ମୋ ସହିତ ଅନେକ ସମୟ ଯାଏ କଥାବାର୍ତ୍ତା କରିବା ଚେଷ୍ଟା କରିଥିଲେ । ଜୀବନରେ ଗୋଟିଏ ଗୋଟିଏ ବିଶେଷ ସମୟ ଆସେ ଯେତେବେଳେ ଜୀବନର ଗତି ବଦଳିବାର ସମ୍ଭାବନା ଦେଖାଦିଏ । ସେତେବେଳେ ଖୁବ୍ ଭାବିଚିନ୍ତି ନିର୍ଣ୍ଣୟ କରିବାକୁ ହୁଏ । ଏତେବେଳେ ତରତର ବା ଅଧୈର୍ଯ୍ୟ ହେବା ଦରକାର ନାହିଁ । ସେ କେମିତି ଚାକିରି ଛାଡ଼ିବା ପୂର୍ବରୁ ଦୁଇ ତିନି ରାତି ଅନିଦ୍ରା ରହି ଭାବିଥିଲେ ଓ ତା' ପରେ ତାଙ୍କର କର୍ତ୍ତବ୍ୟ ସ୍ଥିର କରିଥିଲେ, ତାହା ବର୍ଣ୍ଣନା କଲେ । ମୋର ଉଦ୍‌ବେଗର ବୋଝ ହାଲୁକା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଏଥିରେ ତାଙ୍କର କଥା ହିଁ ମୁଁ ଶୁଣି ଯାଉଥିଲି । ନିଜେ ବିଶେଷ କିଛି କହିଥିବାର ମନେପଡୁ ନାହିଁ ।

ସୁଁଡ଼ାପଲ୍ଲୀ ଶିଆଲଦାରୁ ଦୁଇ ଅଢ଼େଇ ମାଇଲ ପୂର୍ବକୁ । ସେ ଅଞ୍ଚଳଟା କଲିକତା ଅପେକ୍ଷା କଟକର ଗଳିକନ୍ଦି ପରି ବେଶି ଜଣାପଡୁଥାଏ । ସେଠି ଗୋଟାଏ ପାଞ୍ଚ ବଖୁରିଆ ଏକତାଲା ଭଡ଼ାଘରେ ଡାକ୍ତରଖାନା ହେଉଥାଏ । ଘର ଚାରିପଟେ ଅଳ୍ପ ଟିକିଏ ହତା ଓ ସେଥିରେ କେତେଗୁଡ଼ାଏ ନଡ଼ିଆ ଗଛ ଥାଏ । ସେଠି ପାଞ୍ଚ ଜଣ କର୍ମୀ ଥା'ନ୍ତି । ମାୟାଦି ଓ ନିର୍ମଳାଦି, ଦୁଇଜଣ ନାରୀକର୍ମୀ ସେଠି ରହି ପାଖ ହରିଜନ ପଡ଼ାରେ ପିଲାମାନଙ୍କୁ ପଢ଼ାଉଥା'ନ୍ତି । ଆଉ ଜଣେ ଶ୍ୟାମଦା, ଖୁବ୍ କରିତ୍‌କର୍ମା ଯୁବକ । ଡାକ୍ତର ନବୀନଚନ୍ଦ୍ର ନାଥ, ଏଲ୍.ଏମ୍.ଏଫ୍ ସେଠା ଡାକ୍ତରଖାନା ଦାୟିତ୍ୱରେ ଥା'ନ୍ତି । ଶୀତିକଣ୍ଠ ଝା ହିସାବପତ୍ର, ଲେଖାପଢ଼ି କାମ ବୁଝୁଥା'ନ୍ତି । ତାଙ୍କୁ ସମସ୍ତେ ମାଷ୍ଟରଜୀ କହୁଥା'ନ୍ତି । ତାଙ୍କର ଘର ବିହାରର ମୋଜାଫରପୁର ଜିଲ୍ଲାରେ । ମୁଁ ପହଞ୍ଚିବା ପରେ ଗୋପାଲ ବୋଲି ହାଉଡ଼ାର ଜଣେ ଯୁବକ ଓ ଜିତେନ୍ ତାଲୁକଦାର ନାମକ ଜଣେ ଶିକ୍ଷିତ ହରିଜନ ଯୁବକ ମଧ୍ୟ ଆସି ସେଠି ରହିଲେ ।

ସତୀଶବାବୁ ମସ୍ତବଡ଼ ପ୍ରତିଭାଶାଳୀ, ବୈଜ୍ଞାନିକ, କର୍ମବୀର ଓ ଅତି ସ୍ନେହପ୍ରବଣ, ମାତ୍ର ଏ ସବୁ ସାଙ୍ଗକୁ ତାଙ୍କର ପୁରୁଣା ଢଙ୍ଗର ମୁରବି ଭାବ ଥାଏ । ସଂସ୍କାର ସବୁ ସୂତ୍ର ତାଙ୍କରି ହାତରେ ରହିବ । ପ୍ରତ୍ୟେକ ଲୋକ କ'ଣ କଲେ ନ କଲେ ତାହା ଖୁଣ୍ଟେଇ ଖୁଣ୍ଟେଇ ପଚାରି ବୁଝିବେ । ତାଙ୍କ ପରାମର୍ଶ ଗ୍ରହଣ କରିବାକୁ ସମସ୍ତଙ୍କୁ ଏକରକମ ବାଧ୍ୟ କରିବେ । ଥରେ ଭୋର ପ୍ରାର୍ଥନା ପରେ ଖାଦ୍ୟତତ୍ତ୍ୱ ବିଷୟରେ ଆଲୋଚନା ଚଳେଇଲେ ଓ ଆଳୁର ଚୋପାରେ ବହୁତ ଖାଦ୍ୟସାର ଅଛି, ତେଣୁ ତାକୁ ଖାଇବା ଉଚିତ ବୋଲି ବୁଝାଇଲେ । ତା'ପରେ ମାଷ୍ଟରଜୀଙ୍କୁ ପଚାରିଲେ ଯେ ସେ ଆଳୁଚୋପା ଖା'ନ୍ତି ନା ନାହିଁ ? ମାଷ୍ଟରଜୀ କହିଲେ ଯେ ସେ ଖା'ନ୍ତି ନାହିଁ । ସେଠୁ ସତୀଶବାବୁ ତାଙ୍କୁ ଯୁକ୍ତି ଦ୍ୱାରା ଏପରି ଠେସି ଧରିଲେ ଯେ ସେ ଏକରକମ ବାଧ୍ୟହେଇ ଏଣିକି ଖାଇବେ ବୋଲି ରାଜି ହେଲେ । ୧୯୩୧ ରେ ସୋଦ୍‌ପୁର ଆଶ୍ରମ ଦେଖି ଆମର କି ପ୍ରତିକ୍ରିୟା ହୋଇଥିଲା ତାହା ପୂର୍ବରୁ ବର୍ଣ୍ଣନା କରିଛି । ସୁଁଡ଼ାରେ ବି ସେଇ ମୁରବୀ ପ୍ରଧାନ ବାତାବରଣ । "ବାବା ଯା କହିଛନ୍ତି, ତା' କହିଛନ୍ତି, ଏ କଥା ତାଙ୍କୁ ପଚାରିବାକୁ ହେବ । ସେ ନ କହିଲେ କେମିତି ହେବ", ଇତ୍ୟାଦି ମତେ ସୁହାଉ ନ ଥାଏ । ମୋର ସ୍ୱଭାବ ଯୋଗୁଁ ମୁହଁରେ କିଛି କହୁ ନ ଥାଏ ମାତ୍ର କାର୍ଯ୍ୟରେ ଗୋଟାଏ ଚାପା ବିଦ୍ରୋହର ଭାବ, ଯାହା ମନହେଲା କରାଯିବାର ଭାବଥାଏ । ଯଥା, ଡାକ୍ତରଙ୍କ ଛଡ଼ା ବାକି ସମସ୍ତେ, ମାୟାଦି ଓ ନିର୍ମଳାଦି ସମେତ, ଲଣ୍ଡା ହେଇଥା'ନ୍ତି । ମାତ୍ର ମୁଁ ସେ କଥାର ପାଖ ମାଡ଼ିଲି ନାହିଁ । ସତୀଶବାବୁଙ୍କୁ ସମସ୍ତେ 'ବାବା' ଓ ହେମପ୍ରଭା ଦେବୀଙ୍କୁ 'ମା' ଡାକିବା ରୀତିକୁ ଏଡ଼େଇ ଯାଇ ସେମାନଙ୍କୁ କକା ଓ କାକୀମା ଡାକିଲି । ଯଦିଓ ଜ୍ୟେଠାମଶଇ ଓ ଜ୍ୟେଠିମା ଡାକିବା ଉଚିତ ହେଇଥା'ନ୍ତା । ସେମାନେ ବାପା, ବୋଉଙ୍କ ଠୁଁ ଅନେକ ବଡ଼ । ଅନେକ ପରେ ମୁଁ ଏ ସଂଶୋଧନ କଲି ।

ମୋର କଲିକତାରେ କେଉଁଠିକି ଯିବାର ଥିଲେ ସତୀଶବାବୁଙ୍କର ଅନୁମତି ନ ନେଇ ଚାଲିଯାଏ । ଯିବା ଜାଗା ଭିତରେ ଥିଲା ୧୭୦ ନମ୍ବର ହ୍ୟାରିସନ ରୋଡ଼୍‌ରେ ଅଭୟାଶ୍ରମର ବସା, ଇଂପିରିୟାଲ ଲାଇବ୍ରେରୀ ଓ ଧର୍ମତାଲାର ଫଟୋ ଦୋକାନ । ଫଟୋ ଉଠାକାମ ମୁଁ ସେଠି ବି ଚାଲୁ ରଖିଥାଏ । ଅଭୟାଶ୍ରମରେ ରବୀନ୍ଦ୍ରମୋହନ ଦାସ ଓ ରାଧାଶ୍ୟାମ ମହାରାଜ ଏ ଦୁଇଜଣ ଓଡ଼ିଆ ପିଲା ଥା'ନ୍ତି । କଲିକତାରେ ପହଞ୍ଚିବାର ଅଳ୍ପଦିନ ପରେ ମୁଁ ଇଂପିରିୟାଲ୍ ଲାଇବ୍ରେରୀରେ ଏକ ସଦସ୍ୟ ହେଇ ସେଠୁ ବହିପତ୍ର ଆଣି ପଢ଼ାପଢ଼ି କରିବା ଆରମ୍ଭ କଲି ।

ଏପରି କରିବା ଯୋଗୁଁ ମୁଁ ଥରେ କାଇଲି ହେଇଥିଲି । ଇଂପିରିୟାଲ୍ ଲାଇବ୍ରେରୀର ପାଠକ ସଦସ୍ୟ ହେବା ସମୟରେ ଏକ ଅପ୍ରୀତିକର ବ୍ୟାପାର ହେଇଥିଲା । ସଦସ୍ୟ ହେବା ପାଇଁ ଏକ ସୁପାରିଶ ଦରକାର ହେଉଥିଲା । ସତୀଶ ବାବୁଙ୍କଠାରୁ ମୁଁ ସୁପାରିଶ ଲେଖିନେଲି । ଲାଇବ୍ରେରୀର କର୍ମଚାରୀ କହିଲେ ଯେ ସୁପାରିଶକାରୀଙ୍କର ଡିଗ୍ରୀ ଲେଖାଯିବା ଚାହି । ଏଥିରେ ତାହା ନାହିଁ । କୌଣସି ଡିଗ୍ରୀଧାରୀଙ୍କଠାରୁ ସତୀଶବାବୁ ଢେର ବିଦ୍ୱାନ ଓ ତା' ଉପରକୁ ଯଥେଷ୍ଟ ଖ୍ୟାତି ସଂପନ୍ନ । ମାତ୍ର ସେଥିରେ ଚଳିଲା ନାହିଁ । ସେଠୁ ମୁଁ ଡାକ୍ତର ନବୀନଚନ୍ଦ୍ରଙ୍କର ଦସ୍ତଖତ

ନେଲି । ସେ ତା' ପରେ ଏଲ୍.ଏମ୍.ଏଫ୍. ଲେଖିଦେଲେ ଓ କାମ ହୋଇଗଲା । ଏଥିରେ ସତୀଶବାବୁ ବିସ୍ମିତ ହେଇ ସରକାରୀ କର୍ମୀର ଢଙ୍ଗ ବିଷୟରେ ଅସନ୍ତୋଷ ପ୍ରକାଶ କରିଥିଲେ । ଗୋଟାଏ କ'ଣ ପରୀକ୍ଷା ସତୀଶବାବୁ ଚଳେଇଥା'ନ୍ତି । ସେଥିପାଇଁ ଡେକ୍‌ଚିରେ କ'ଣ ଗୋଟାଏ ସିଝା ହେଉଥାଏ, କିରୋସିନି ଷ୍ଟୋଭ୍ ଉପରେ ରଖାହେଇ । ସତୀଶବାବୁ ମତେ ତା' ଉପରେ ନିଘା ରଖିବାକୁ କହି ବାହାରକୁ ଚାଲିଗଲେ ଓ ମୁଁ ବି ଅଳ୍ପ ସମୟ ପରେ ଚାଲିଗଲି । ପ୍ରାୟ ସନ୍ଧ୍ୟା ବେଳକୁ ଫେରି ଦେଖେ ତ ବିଷମ କାଣ୍ଡ । ସେ ଡେକ୍‌ଚିରୁ ପାଣି ସରିଯାଇ ସବୁ ପୋଡ଼ିପୋଡ଼ି ନଷ୍ଟ । ଷ୍ଟୋଭ୍ ବି ବେଶି ଜୋର୍‌ରେ ଜଳି ସବୁ କଳାପଡ଼ି ଏକକାର ହେଇଯାଇଛି । ସତୀଶବାବୁ ମୁଁ ଯେପରି ଆଶଙ୍କା କରିଥିଲି ସେପରି କିଛି କହିଲେ ନାହିଁ । ଖୁବ୍ ମୃଦୁ ଭାବରେ ଦୁଃଖ ପ୍ରକାଶ କଲେ ମୋର ଦାୟିତ୍ୱହୀନତା ପାଇଁ । ସେ ମୋର ଅବାଧ ଗତିବିଧିରେ ବାଧା ହେଉ ନଥିଲେ । ସେଠି ଯାହାକିଛି କର୍ତ୍ତବ୍ୟ କର୍ମ ତାହା ବାହାରେ ବଳକା ସମୟତକ ମୁଁ ପଢ଼ାପଢ଼ି, ଫଟୋଉଠା ଆଦିରେ ଦିଏ । ତଥାପି ସେଠାର ବାତାବରଣ ଯୋଗୁଁ ମୋ ଭିତରେ ଟେନ୍‌ସନ୍ ବଢ଼ିଯାଇଥିବାର ମୁଁ ଅନୁଭବ କଲି ।

ସତୀଶବାବୁଙ୍କର ନାନା ପରୀକ୍ଷାନିରୀକ୍ଷା ଭିତରେ ଗରିବ ଲୋକଙ୍କୁ ଶସ୍ତାରେ ଔଷଧ ଯୋଗାଇବାର ଏକ ଉଦ୍ୟମ ଥିଲା । ଏଥିପାଇଁ ନାନା ପ୍ରକାରର ଦେଶୀ ଜଡ଼ିବୁଟି ଓ ଏଲୋପ୍ୟାଥିକ ଔଷଧର ବଟିକା ତିଆରି କରାଯାଉଥିଲା । କୁରଚି, କାଲମେଘ, ବେଲ୍, ଅମୃତଭଣ୍ଡା କ୍ଷୀର (ପେପ୍‌ସିନର ଉତ୍ସ) ଆଦିରୁ ଆରମ୍ଭ କରି କୁଇନାଇନ୍, ସୋଡ଼ା ବାଇକାର୍ବ ଆଦି ଅନେକ ଜିନିଷର ବଟିକା ଗୋଟିଏ ହାତଚଳା ସାନ ଯନ୍ତ୍ର ସହାଯ୍ୟରେ ତିଆରି ହେଉଥାଏ । କେତେକ ଇଞ୍ଜେକ୍‌ସନ୍ ମଧ୍ୟ ତିଆରି ହେଉଥାଏ । ଏହା ପଛରେ ବିଚାର ହେଲା ଯେ ନିର୍ଦ୍ଦିଷ୍ଟ ମାପର ବଟିକା ଥିଲେ ଆଉ ମପାମପିର ଝାମେଲା ମୁଣ୍ଡେଇବାକୁ ହେବନାହିଁ, ଔଷଧ ଦେଲାବେଳେ । ଏସବୁ ବହୁତ ଶସ୍ତାରେ ତିଆରି ହେଉଥିଲା । ଔଷଧ କମ୍ପାନୀମାନେ କିପରି ଲାଗତ ଖର୍ଚ୍ଚ ଉପରେ ପଚିଶ ପଚାଶ ଗୁଣା ଲାଭ ନିଅନ୍ତି ସେ ତାହାର ସବୁ ତଥ୍ୟ ସଂଗ୍ରହ କରି ଆମକୁ ଜଣାଉଥିଲେ । ସେତେବେଳେ କୁଇନାଇନ୍ ସଲଫେଟ୍ ପାଉଣ୍ଡକ ଅଠେଇଶ ଟଙ୍କା ଦାମ୍ ଥିଲା । କୁଇନାଇନ୍ ଉତ୍ପାଦନ କରୁଥିବା ବିଦେଶୀ କମ୍ପାନୀମାନେ ମେଣ୍ଟବାନ୍ଧି ମନଇଚ୍ଛା ଏକ ଚଢ଼ା ଦାମ୍ ବାନ୍ଧି ଦେଉଛନ୍ତି ବୋଲି ସେ ଆମକୁ ବୁଝେଇଥିଲେ । ସେ ଦୁଃଖ କରୁଥା'ନ୍ତି ଯେ ବଙ୍ଗଳା ସରକାର କାଲିମପଙ୍ଗ ପ୍ରଭୃତି ଅଞ୍ଚଳରେ ପାଉଣ୍ଡ ପାଞ୍ଚ ସାତ ଟଙ୍କା ଦରରେ କୁଇନାଇନ୍ ଉତ୍ପାଦନ କରି ମଧ୍ୟ ସେ ବିଦେଶୀ କମ୍ପାନୀଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଭାଉରେ ତାହା ବିକୁଥା'ନ୍ତି । ସତୀଶବାବୁଙ୍କର ଶସ୍ତା ଔଷଧ-ଚିପ୍-ରେମିଡ଼ିଇ୍ ମଫସଲର ଆଶ୍ରମମାନଙ୍କରେ ଲୋକପ୍ରିୟ ହେଇ ଅନେକ ବର୍ଷଯାଏ ଚଳିଥିଲା ।

ସେଠି ଚାରୋଟି ରୋଗୀଶଯ୍ୟା ଥାଏ । ସେଠାରେ କଠିନ ରୋଗୀମାନଙ୍କୁ ରଖାହୁଏ ଓ ଆମେସବୁ ସେମାନଙ୍କର ସେବା କରୁ । ମୋର ଝାରପଡ଼ାର କମ୍ପାଉଣ୍ଡରୀ ତାଲିମ ଏଠି ବେଶ୍

କାମ ଦେଖେଇଲା । ତେବେ ଏଠି ମୁଖ୍ୟତଃ ସେଠି ତିଆରି ବଟିକା ଔଷଧ ବ୍ୟବହାର କରାହେଉଥାଏ । ମନେଅଛି ଜଣେ ଯୁବକ ହରିଜନ ଶ୍ରମିକ ମେନିନ୍‌ଜାଇଟିସ୍ କି ସେରିବ୍ରାଲ୍ ମେଲେରିଆରେ ଆକ୍ରାନ୍ତ ହେଇ ସେଠି ଭର୍ତ୍ତି ହେଲା । ଆମେ ରାତି ରାତି ଅନିଦ୍ରା ରହି ତା'ର ଶୁଶ୍ରୂଷା କଲୁ ମାତ୍ର ସେ ବଞ୍ଚିଲା ନାହିଁ । ମନରେ ଖୁବ୍ ଅଘାତ ଲାଗିଥିଲା ।

ଗାନ୍ଧୀଜୀ ସତୀଶବାବୁଙ୍କୁ ଚିକିତ୍ସା ବିଷୟରେ ଖଣ୍ଡେ ସାନ ମାର୍ଗଦର୍ଶିକା ଲେଖିବାକୁ ପରାମର୍ଶ ଦେଇଥିଲେ ଯାହାକୁ କି ଗାଁ ଗହଳିରେ କାମ କରୁଥିବା କର୍ମୀ ଓ ସାଧାରଣ ଗୃହସ୍ଥ ସାଧାରଣ ରୋଗସବୁରେ ଚିକିତ୍ସା ପାଇଁ ବ୍ୟବହାର କରିପାରିବେ । ଏଇ ସୁଁଢ଼ାରେ ସତୀଶବାବୁ ସେଥିପାଇଁ ନିଜକୁ ପ୍ରସ୍ତୁତ କଲେ । ସେ ତ ଚିକିତ୍ସକ ନଥିଲେ । ବହି ଲେଖିବା ପାଇଁ ସେ ଡାକ୍ତରୀ ଶିଖିଲେ, ସେ ଡାକ୍ତରଖାନାରେ ସେଠାରେ ଥିବା ଡାକ୍ତରଙ୍କ ତତ୍ତ୍ୱାବଧାନରେ ରୋଗୀଙ୍କର ସେବା ଶୁଶ୍ରୂଷା ଓ ଚିକିତ୍ସା ନିଜେ କରି, ବହି ପଢ଼ି ଓ କଲିକତାର ବିଶିଷ୍ଟ ଚିକିତ୍ସକମାନଙ୍କ ସହିତ ଆଲୋଚନା କରି ଓ ସେମାନଙ୍କର ପରାମର୍ଶ ନେଇ, ତା' ପରେ ସେ ବହି ଲେଖିଲେ । ସେ ବହି ଗାନ୍ଧୀଜୀଙ୍କର ବରାଦ ମୁତାବକ ସାନବହି ଖଣ୍ଡେ ନ ହେଇ ହଜାର ପୃଷ୍ଠାରୁ ବଳିଗଲା । କିନ୍ତୁ ତାହା ଏକ ଚମତ୍କାର ବହି ହେଲା । ସାଧାରଣ ବୁଦ୍ଧିମାନ ଲୋକଙ୍କୁ ଶରୀରବିଦ୍ୟାଠାରୁ ଆରମ୍ଭ କରି ସବୁପ୍ରକାରର ଚିକିତ୍ସା ଓ ପ୍ରସୂତି ପରିଚର୍ଯ୍ୟାଯାଏ ସବୁ ବିଷୟରେ ପ୍ରାଥମିକ, ବ୍ୟାବହାରିକ ଓ ବେଶ୍ ଗଭୀରତାଯୁକ୍ତ ପ୍ରାଞ୍ଜଳ ଜ୍ଞାନ ଦେବାପାଇଁ "ହୋମ୍ ଏଣ୍ଡ୍ ଭିଲେଜ୍ ଡକ୍ଟର" ପରି ଆଉ ବହି ନ ଥିବ ।

## କାମ ଓ ପାଠ

କିଛି ଦିନ ପରେ ଏକ କୁଟୀର ଚମଡ଼ାକଷା କାରଖାନା ଆରମ୍ଭ କରିବା କଳ୍ପନା ତାଙ୍କର ମୁଣ୍ଡକୁ ଆସିଲା । ମଲା ଗୋରୁଗାଈଙ୍କର ଚମଡ଼ା ବେପାରୀଙ୍କୁ ବିକି ନ ଦେଇ ଗାଁର ହରିଜନମାନେ ଯେପରି ନିଜେ ତାହା କଷ କରିପାରିବେ ଓ ଗୋଟାଏ ଧନ୍ଦା ପାଇବେ ଏହା ଥିଲା । ତା'ର ଉଦ୍ଦେଶ୍ୟ । ପ୍ରଥମେ କାଠର ସାନ ସାନ କୁଣ୍ଡ, ଛେଳି ଚମଡ଼ା ଓ ମସଲାମସଲି ଆଣି ସେଇ ସୁଁଢ଼ାରେ ପରଖ ଆରମ୍ଭ ହେଲା । ଓଡ଼ିଶାର ଅମର ପାଲିତ, ଯେ ପରେ ଓଡ଼ିଶା ସରକାରଙ୍କର ଶିକ୍ଷ ବିଭାଗରେ ଜଣେ ଡେପୁଟୀ ଡାଇରେକଟ୍‌ର ହେଇଥିଲେ, ଆସି ସାହାଯ୍ୟ କରୁଥା'ନ୍ତି । ସେ ସଦ୍ୟ କଲିକତାର ଏକ ଶିକ୍ଷା ସଂସ୍ଥାରୁ ଚମଡ଼ାକଷ କାମ ଶିଖି ବାହାରିଥା'ନ୍ତି । ସତୀଶବାବୁ ମତେ ବରାଦ କଲେ ଇମ୍ପିରିୟାଲ୍ ଲାଇବ୍ରେରୀରୁ ଟ୍ୟାନିଂ ଉପରେ ଯାହା ବହି ମିଳିବ ତାହା ସଂଗ୍ରହ କରିବାକୁ । ଦୁଇ ତିନି ଖଣ୍ଡ ଯାହା ମିଳିଲା ଆଣିଲି । ପୁଣି ବରାଦ କଲେ, 'ଚାରିନମ୍ବର' ପୋଲ ଅଞ୍ଚଳରେ ଥିବା ସାନ ସାନ ଟ୍ୟାନେରୀମାନଙ୍କରେ କିପରି କାମ ହେଉଛି ତାହା ଦେଖି ଓ ଶିଖି ଆସିବାକୁ । ମୁଁ ଯାଇ ସେ ଅଞ୍ଚଳରେ ବୁଲାବୁଲି କରି ରଉଫ୍ ନାମକ ଜଣେ ମୁସଲମାନ ଯୁବକଙ୍କ ସହିତ ପରିଚିତ ହେଲି ଓ ତାଙ୍କର ସାନ ଟ୍ୟାନେରୀଟିର କାମ ଯେତେଟା ସମ୍ଭବ ଅଧ୍ୟନ କଲି ।

ଇମ୍ପିରିୟାଲ୍ ଲାଇବ୍ରେରୀରେ ମୋର ପଢ଼ାପଢ଼ି ଖୁବ୍ ଗୁରୁତର ରକମର ଚାଲିଛି ବୋଲି କଟକରେ ବନ୍ଧୁ ମହଲରେ ଗୁଜବ ବ୍ୟାପିଯାଇଥାଏ । ଲେନିନ୍ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ଅଧ୍ୟୟନ କରି ନିଜକୁ ପ୍ରସ୍ତୁତ କରିଥିଲେ ବୋଲି ବି କିଏ ଥରେ ଅଧେ ଦର୍ଶାଇଥିଲେ । ମାତ୍ର ମୋର ଅଧ୍ୟୟନ ସେପରି 'ଗୁରୁତର' ନ ଥିଲା । ଦର୍ଶନ, ରାଜନୀତି ଓ ଅର୍ଥନୀତିର ବହି ମୁଁ ସେଠି ଆଦୌ ପଢ଼ି ନ ଥିଲି । ପ୍ରଥମରେ ତ ସେଠା ପାଠାଗାରରେ ପଶି ପ୍ରାୟ ଛାତଯାଏ ଲାଗିଥିବା ଥାକମାନଙ୍କରେ ଅସଂଖ୍ୟ ବିଷୟରେ ଅଗଣିତ ସନ୍ଦର୍ଭ ଗ୍ରନ୍ଥ (ରେଫରେନ୍‌ସ୍) ଦେଖି କାବା ହୋଇଗଲି । କେଉଁ ବିଷୟ ପଢ଼ିବି, କେଉଁଟା ଛାଡ଼ିବି ? ଗୋଟାଏ ଗୋଟାଏ ବହି ବାହାର କରି ଓଲଟେଇ ପାଲଟେଇ ଦେଖେ । ବିଷୟଟାର ଧାରଣା ପାଇବା ଚେଷ୍ଟାକରେ । ମୁଖ୍ୟତଃ ମୁଁ ୱେଲ୍‌ସ, ବର୍ଟ୍ରାଣ୍ଡ ରସେଲ, ବର୍ଣ୍ଣାର୍ଡ଼ ଶ' ପ୍ରଭୃତି ଇଂରେଜୀ ଲେଖକମାନଙ୍କର ଯେତେ ବହି ପାଉଥାଏ ପଢୁଥାଏ । ରୋମାଁ ରୋଲାଁଙ୍କର ଉପନ୍ୟାସ ସବୁ ବି ଖୁବ୍ ଉପଭୋଗ କରୁଥିଲି । ମୋର ପ୍ରିୟ ବିଷୟ ଜ୍ୟୋତିର୍ବିଜ୍ଞାନ, ମହାକାଶ, ପରମାଣୁତତ୍ତ୍ୱ ଆଦି ବିଷୟରେ ଯାହା ବୁଝିପାରିବା ଭଳି ବହି ଥାଏ ଆଣି ପଢ଼େ ।

ସେତେବେଳେ କଟକରେ ନବଯୁଗ ସାହିତ୍ୟ ସଂସଦ ପକ୍ଷରୁ 'ଆଧୁନିକ' ମାସିକପତ୍ର ବାହାରୁଥିଲା । ସେଥିରେ ମୁଁ ପରମାଣୁ ବିଷୟରେ ଦୁଇ ତିନିଟା ପ୍ରବନ୍ଧ ଲେଖିଥିଲି । ମୋର ମନେଅଛି ସେ ଲେଖା ଆରମ୍ଭ ହେଉଥିଲା ପ୍ରାର୍ଥନାର ମନ୍ତ୍ର "ତଦ୍ ବ୍ରହ୍ମନିଷ୍କଳମହଂ ନଚ ଭୂତସଂଘଃ" ର ସମାଲୋଚନାରୁ । ମୁଁ ଲେଖିଥିଲି ଯେ ଆମ ଧର୍ମରେ ଭୂତସଂଘ ଅର୍ଥାତ୍ ଜଡ଼ପଦାର୍ଥକୁ ହେୟ ମନେକରାଯାଇଛି ଓ ପ୍ରାର୍ଥନାରେ କୁହାଯାଇଛି ଯେ ମୁଁ ଜଡ଼ବସ୍ତୁ ନୁହେଁ, ନିଷ୍କଳୁଶ ବ୍ରହ୍ମ । ମାତ୍ର ଜଡ଼ପଦାର୍ଥ ସେପରି ଅବଜ୍ଞାର ପାତ୍ର ନୁହେଁ କି ଅପବିତ୍ର ନୁହେଁ । ତାହା ଯେତେ ଜଡ଼ ବୋଲି ଆମେ ଭାବୁ ସେତେ ଜଡ଼ ନୁହେଁ ।

ଦାଦା କଲିକତାରେ ସର୍ଟହ୍ୟାଣ୍ଡ୍ ବା ଦ୍ରୁତଲିଖନ ଶିଖିବା ବେଳେ ଯେଉଁ ସବୁ ବହି ବ୍ୟବହାର କରୁଥିଲା ସେଗୁଡ଼ାକ ବି ମୁଁ ସାଙ୍ଗରେ ନେଇ ଆସିଥିଲି ଓ ଦ୍ରୁତ ଲିଖନ ଅଭ୍ୟାସ କରୁଥିଲି । ଯେଉଁସବୁ ବହି ପଢ଼େ ସେଥିରୁ କିଛି କିଛି ନୋଟ୍ ଖାତାରେ ଉତାରି ରଖୁଥିଲି । ସେଥିରୁ ଅନେକଗୁଡାକ ଦ୍ରୁତଲିପିରେ ଲେଖିଥିଲି । ସେ ଖାତା ସବୁ ଏବେ ବି ଅଛି ମାତ୍ର ସେ ସବୁର ପାଠୋଦ୍ଧାର କରିବା ଅସମ୍ଭବ ହେଲାଣି । ଦ୍ରୁତଲିପି ପଢ଼ିବା ଭୁଲିଗଲିଣି । ସେ ସବୁ ପ୍ରଣାଳୀ ଏବେ ଏ ଦେଶରେ ଆଉ କେହି ଶିଖୁ ବି ନାହାନ୍ତି ।

ଏଇଠି ଥିବାବେଳେ ମୁଁ ପ୍ରଥମ ଥର ପାଇଁ ଶାନ୍ତିନିକେତନ ଗଲି । ଶାନ୍ତିନିକେତନ ପ୍ରତି ତ ମୋର ଖୁବ୍ ଆକର୍ଷଣ ଥିଲା । ଦାଦା ସେଠିକି ଯିବାପରେ ସେଠି ଯାଇ ପଢ଼ାଶୁଣା କରିବାର ଇଚ୍ଛା ବି ଭିତରେ ଭିତରେ ଥିଲା । ଦାଦା ଓ ଖୁଡ଼ୀ କ'ଣ ପାଇଁ ଶାନ୍ତିନିକେତନ ଯାଇଥା'ନ୍ତି । ସେଠି ଦିଦିମା ହେରିକା ବି ଥା'ନ୍ତି । ମତେ ସେମାନେ ଯିବାକୁ ଖବର ଦେଇଥିଲେ । ମୁଁ ବି ତିନି ଚାରିଦିନ ପାଇଁ ଗଲି । ଯିବାବେଳେ ହ୍ୟାରିସନ୍ ରୋଡ଼ରେ ଅଭୟାଶ୍ରମର ବସାବାଟେ

ଗଲି । ସେଠି ଦେଖେ ଯେ କିଏ ଜଣେ ଗ୍ରାମୋଫୋନ୍‌ରେ ଲଗେଇଛନ୍ତି - "ପ୍ରଳୟ ନାଚନ୍ ନାଚଲେ ଯଖନ୍ ଆପନ୍ ଭୁଲେ, ହେ ନଟରାଜ ! ଜଟାର ବାଁଧନ ପଡ଼ଲ ଖୁଲେ..." ସେ ଗୀତର ଛନ୍ଦ ଓ ଝଙ୍କାର ମୋ ମନ ଭିତରେ ପଶିଗଲା ଓ ଶାନ୍ତିନିକେତନ ଯାତ୍ରାର ଏକ ଉପଯୁକ୍ତ ଶୁଭାରମ୍ଭ ପରି ମନେହେଲା ।

ଶାନ୍ତିନିକେତନରେ ସେତେବେଳେ ଗୁରୁଦେବ ଥା'ନ୍ତି । ଏମିତି ତ ଆମେ ତାଙ୍କୁ ଦେଖା କରିବାକୁ ଗଲୁ । ଦିନେ ସେ ତାଙ୍କର ଗୋଟିଏ କବିତା ପଢ଼ି ବୁଝାଉଥା'ନ୍ତି, ବୋଧହୁଏ ଗୋଟାଏ କ୍ଲାସ ନେଉଥା'ନ୍ତି । ଆଉ ଦିନେ ସେ ତାଙ୍କର ସେତେବେଳର ନୂଆ ଲେଖା ବହୁ ସମାଲୋଚିତ ଉପନ୍ୟାସ 'ଚାର୍ ଅଧ୍ୟାୟ'ର ପାଣ୍ଡୁଲିପି ଆମକୁ ପଢ଼ି ଶୁଣାଇଲେ । ମୋଟରେ ପନ୍ଦର ଜଣ ଖଣ୍ଡେ ଶ୍ରୋତା ଥା'ନ୍ତି । ତା' ଭିତରେ ଜଣେ ଥାଏ ଇନ୍ଦିରା ନେହେରୁ । ଏ ଉପନ୍ୟାସରେ ସନ୍ତ୍ରାସବାଦୀ ଆନ୍ଦୋଳନରେ ନାରୀର ଭୂମିକା ବିଷୟ ଅବତାରଣା କରାଯାଇ ସେଥିରେ ଲିପ୍ତ ହେବା ନାରୀର ସ୍ୱଧର୍ମ ନୁହେଁ ବୋଲି ଇଙ୍ଗିତ ଦିଆଯାଇଥିଲା । ଏ ବହି ଛାପା ହେବା ପରେ କବିଙ୍କର ଏ ଦୃଷ୍ଟିକୋଣ ପ୍ରବଳ ସମାଲୋଚନାର ସମ୍ମୁଖୀନ ହୋଇଥିଲା । କିନ୍ତୁ ଆମ ସମସ୍ତଙ୍କୁ ତ ସେଇଟି ବେଶ୍ ଭଲ ଲାଗିଥିଲା ।

ଶାନ୍ତିନିକେତନର ସବୁ ବିଭାଗ ଦାଦା ଓ ଖୁଡ଼ୀଙ୍କ ସାଙ୍ଗରେ ବୁଲି ଦେଖିଥିଲି । ସେମାନେ ସବୁ ବିଭିନ୍ନ ସ୍ଥାନ ଦେଖି ପ୍ରତ୍ୟେକ ସହିତ ଜଡ଼ିତ ଥିବା ପୁରୁଣା ସ୍ମୃତି ମନେପକାଉଥା'ନ୍ତି । ନନ୍ଦଲାଲ ବସୁଙ୍କୁ ମଧ୍ୟ ଭେଟିଲୁ । ମୁଁ ସେ ସମୟରେ ଛବି ଅଙ୍କା ପ୍ରାୟ ଛାଡ଼ି ଦେଇଥାଏ । ('ପ୍ରାୟ' ଏଇଥିପାଇଁ ଲେଖିଲି ଯେ କଲିକତାରେ ଥିବାବେଳେ କେତେଟା କାର୍ଟୁନ ଆଙ୍କିଥିବା କଥା ହଠାତ୍ ମନେପଡ଼ିଲା ।) କିନ୍ତୁ ଛବି ପ୍ରତି ଆକର୍ଷଣ ଥାଏ । ନନ୍ଦବାବୁଙ୍କ ଅଙ୍କା ଛବିରେ ମୁଁ ଗୋଟାଏ ବିଶେଷ ପ୍ରକାରର ସ୍ୱାଦ ପାଉଥାଏ ।

ସେଠାକାର ସେତେବେଳର ପରିବେଶ ଓ ଆବହାଓ୍ୱା ବିଷୟରେ ଦାଦା ହେରିକା କୁହାକୁହି ହେଉଥା'ନ୍ତି ଯେ ସେମାନଙ୍କ ଅମଳର ମୁକ୍ତିର ଆବହାଓ୍ୱା ଆଉ ସେଠି ନାହିଁ । ଅନେକ କଥା ପୁରୁଣା ଗତାନୁଗତିକ ଧାରାରେ ପଡ଼ିଗଲାଣି । ପୁଅଝିଅମାନେ ପୂର୍ବ ଭଳି ସହଜତାର ଓ ସରଳତାର ସହିତ ମିଳାମିଶା କରିପାରୁ ନାହାନ୍ତି । ପଢ଼ାପଢ଼ି ବି ଗତାନୁଗତିକ ସ୍କୁଲ ଧାରାରେ ପଡ଼ିବା ଆରମ୍ଭ ହେଲାଣି । ଏ ସବୁ ଶୁଣି ଦୁଃଖ ଲାଗୁଥାଏ ।

## କୁଟୀର ଚର୍ମକାରୁ ଶାଳା

ଏଣେ ଚମଡ଼ାକଷ କାରଖାନା ବା ଟ୍ୟାନେରୀ ଆରମ୍ଭ ହେବ ବୋଲି ଆୟୋଜନ ହେଇ ସହରର ପୂର୍ବ ଦିଗର ଶେଷ ପ୍ରାନ୍ତ ଟାଙ୍ଗରା ଅଞ୍ଚଳରେ ଜମି ଓ ଘର ନିଆ ହେଲା । ଶେଷ ପ୍ରାନ୍ତ ମାନେ ଆମର ହତାର ସେ ପାଖରୁ 'ଧାପାର୍ ମାଠ' ଆରମ୍ଭ । ସେଇଠି ସହରର ଶେଷ । ଏଇଟାରେ ବେଶ୍ ବଡ଼ ହତା ଥିଲା ବୋଧହୁଏ ପୂର୍ବରୁ ଝୋଟ ଗୋଦାମ ଥିଲା । କାରଣ ଗାଣ୍ଠି

ବାନ୍ଧିବାର ଗୋଟାଏ ବଡ଼ ଚାପା କଳ ସେଠି ଥିଲା । ଦକ୍ଷିଣ ଓ ପଶ୍ଚିମ ପାଖରେ ଦୁଇଟା ଦୋତାଲା ଓ ଉତ୍ତରରେ ଗୋଟାଏ ଲମ୍ବ ନାହାଚାଳିଆ ଟିଣ ଛପର ଘର । ମଝିରେ ଗୋଟାଏ ଗାଡ଼ିଆ ।

ପ୍ରଥମେ ତିନି ଚାରିଜଣଙ୍କୁ ନେଇ କାମ ଆରମ୍ଭ ହେଲା । ବୀରେନ୍ ଖାଁ, ମୁଁ, ପରେଶ ବାବୁ ଓ ଆଉ ଜଣେ ଅଧେ କିଏ । କ୍ରମେ ଯନ୍ତ୍ରପାତି ସବୁ ଆସିଲା ଓ କାମ ଜମିଲା । ପ୍ରଥମେ ଜଣେ ଚମଡ଼ାକଷ ବିଶେଷଜ୍ଞ ବସୁ ଆସିଥିଲେ, ନିଜକୁ ସେ ବିଶିଷ୍ଟ ସାହିତ୍ୟିକ ବୁଦ୍ଧଦେବ ବସୁଙ୍କର ପୁତୁରା ବୋଲି କହୁଥିଲେ । ତାଙ୍କର କର୍ମପଟୁତା ଅପେକ୍ଷା ବାକ୍‌ପଟୁତା ଅଧିକ ଥିଲା । ତା' ପରେ ଆସିଲେ ହରି ସାହା । ଏ ଭଦ୍ରଲୋକ ଖୁବ୍ ଭଲ କାମ କରିଥିଲେ ଓ ତାଙ୍କ ତତ୍ତ୍ୱାବଧାନରେ ଟ୍ୟାନେରୀ ଠିକ୍ ଭାବରେ ଉଧେଇଲା । କ୍ରମେ ହରିଜନ ସେବକ ସଂଘ ପକ୍ଷରୁ ଏଠି ତାଲିମ ପାଇବା ପାଇଁ ବିଭିନ୍ନ ପ୍ରଦେଶରୁ ଶିକ୍ଷାର୍ଥୀ ଆସିଲେ । ସେମାନଙ୍କ ଭିତରେ ଥିଲେ ଆନ୍ଧ୍ର ପ୍ରଦେଶରୁ ବନ୍ତୁ ଭେଂକଟ ରେଡ଼୍‌ଡୀ, ତମିଲନାଡୁରୁ ଗୁରୁସ୍ୱାମୀ, ପରେ 'ସାନ' ବୋଲି ପରିଚିତ ଓ କାଦିରୁଭେଲୁ, ଗୁଜରାଟରୁ ଦୁଇଜଣ ହରିଜନ ପିଲା ଯସା ଗିଗା ମକୱାନା ଓ ହମୀର ମୂଲଜୀ ପରମାର ତଥା ଜଣେ ଶିକ୍ଷିତ ଯୁବକ ଭୀଖୁଭାଇ ଧ୍ରୁବ । ଆଉ ଜଣେ ଗୁଜରାଟୀ ବି ଥାଏ, କଲ୍ୟାଣଜୀ ସୋଲାଂକୀ । ମହାରାଷ୍ଟ୍ରରୁ ଆସିଥିଲେ ନା.ରା. ସୋୱାନୀ, କେରଳରୁ ପି.ସି. ଆଦିଚନ୍ । ଏ ଶେଷୋକ୍ତ ଜଣକ ସ୍ୱାଧୀନ ଭାରତରେ ଲୋକସଭାର ସଦସ୍ୟ ହେଇଥିଲେ । ଏହାଙ୍କର ପୂରା ନାଁ ପେରେକେତେକେଡ଼େକେଭିଲ ଚନ୍ନନ୍ ଆଦିଚନ୍ ବୋଲି ଆମକୁ ସେ ବତାଇଥିଲେ । ପ୍ରଥମ ପଦଟିର କୁଆଡ଼େ ଅର୍ଥ ହେଲା ଯେ ଅମୁକ ଗାଁରେ ଅମୁକ ଦିଗରେ ଯାହାର ଘର । ବଙ୍ଗଳାରୁ ତିନିଜଣ ହରିଜନ ପିଲା ଥାନ୍ତି । କର୍ଣ୍ଣାଟକରୁ ଆସିଥାନ୍ତି ମାଲାପ୍ପା ଗୁଦ୍ରାପ୍ପା କଡ଼ିଗୋଦର, ଉତ୍ତର ପ୍ରଦେଶରୁ ବିଶିଷ୍ଟ ସେବକ ଆଚାର୍ଯ୍ୟ ଯୁଗଳ କିଶୋରଙ୍କର ସାନ ଭାଇ ପିତାମ୍ବର ଓ ରାଜସ୍ଥାନରୁ ସୋହନ୍‌ଲାଲ୍ ।

ବୀରେନ୍‌ଦା ଥାଏ ଆମ ଦଳର ମୁରବି । ଏଠି କହି ରଖେ ଯେ ତା' ପଦବୀ ଖାଁ ହେଲେ ବି ସେ ଜାତିରେ ବ୍ରାହ୍ମଣ, ତା'ର ବୟସ ଆମଠୁଁ ଖୁବ୍ ବେଶୀ ନ ହେଉଥିବାରୁ ସେ ବେଶୀ ସର୍ଦ୍ଦାରୀ କରିପାରୁ ନଥାଏ । ସତୀଶବାବୁ ପ୍ରଥମେ ସେଠି ରହୁ ନଥିଲେ । ପ୍ରତିଦିନ ଆସି ପାଞ୍ଚ ସାତ ଘଣ୍ଟା ସେଠାର କାମ ତଦାରଖ କରିବାରେ ଦେଉଥିଲେ । ପରେ ତାଙ୍କ ପାଇଁ ଖଣ୍ଡେ ବାଉଁଶ ତାଟି ବାଡ଼ ଦିଆ ଚାଳଘର ତିଆରି ହେଲା ଓ ସେ ସେଥିରେ ଆସି ରହିଲେ । ସେ ମଧ୍ୟ ଏଠି ତାଙ୍କର ଆଶ୍ରମ ନୀତିର ପାଳନ ସେତେ କଡ଼ାକଡ଼ି କରୁ ନ ଥାନ୍ତି । ଆମେ ପଞ୍ଚାଟା ଫୂର୍ତିରେ ଥାଉ । ପ୍ରତ୍ୟେକର ବିଚିତ୍ର ସ୍ୱଭାବ । ସୋହନ୍‌ଲାଲର ହାର୍‌ମୋନିୟମ ଶିଖିବାର ଶଉକ । ସେଥିପାଇଁ ସେ ଖୋଜି ଖୋଜି କୋଉଠି ଗୋଟିଏ ସଙ୍ଗୀତ ବିଦ୍ୟାଳୟ ଆବିଷ୍କାର କରିଥିଲା । ସେଠିକି ସନ୍ଧ୍ୟାବେଳେ ଗୀତ ଶିଖି ଯାଏ । ଦିନେ ଦିନେ ରାତିରେ ଫେରିବା ଡେରି ହେଲେ ତାଲା ପଡ଼ିଥିବା ଫାଟକକୁ ଡେଇଁ ଭିତରେ ପଶେ । ସେଥିପାଇଁ ଦିନେ ଚୋର

ଚୋର ବୋଲି ପାଟି ହେଲା । ସୋଲାଂକୀ ଖୁବ୍ ଫିଟ୍‌ଫାଟ୍ ଲୁଗାପଟା ପିନ୍ଧି ବୁଲି ବାହାରିଯାଏ, କାହେ ଝିଅମାନଙ୍କର ଦୃଷ୍ଟି ମୋ ଉପରେ ପଡ଼ିବ । କଡ଼ିଗୋଦରର ଓଟ ପରି ଢଙ୍ଗ ଓ ନଡ଼ବଡ଼ିଆ । ବିଷଣ୍ଣ ସ୍ୱଭାବ । ସବୁ କଥାରେ ତାଙ୍କୁ ଆଗେ ଉପାୟଟା ଦେଖାଯାଏ । ଆଉ ଓଡ଼ିଶାରୁ ପରେ ଆଉ ଜଣେ ଗଲେ ବଂଶୀଧର ନାୟକ । ତାଙ୍କର ଚାଲିଚଳନ ସ୍ପିଂଗ୍‌ଦିଆ କଣ୍ଢେଇ ପରି । ସେ ପରେ ମୋ ସାଙ୍ଗରେ ବରୀରେ ଟ୍ୟାନେରୀରେ କାମ କରିଥିଲେ ଓ ତା'ପରେ ଶିକ୍ଷକ ହେଲେ । ଧ୍ରୁବର ପଢ଼ାପଢ଼ିରେ ମନ ଥାଏ, ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରେ ।

ମଜା ହେଲା ସୀମାନ୍ତ ପ୍ରଦେଶର ଜଣେ ନବାଗତଙ୍କୁ ନେଇ । ତାଙ୍କର ନାଁ ଗୋଟିଏ କି ଗାନ୍ଧୀ । ବୋଧହୁଏ ଏଠାର ପରିସ୍ଥିତି ଦେଖି ତାଙ୍କର ମନ ପଳେଇ ଯିବାକୁ ହେଲା । ସେ କହିଲେ ଯେ ଏଠା ଖାଦ୍ୟ ସେ ଖାଇପାରିବେ ନାହିଁ । ସତୀଶବାବୁ ଜବାବ ଦେଲେ ଯେ ସେ ଯେଉଁ ପ୍ରକାର ଖାଦ୍ୟ ଚାହିଁବେ ତାଙ୍କୁ ଦିଆଯିବ । ମାତ୍ର ତାଙ୍କୁ ଯେତେ ପଚରା ହେଲା ସେ କେବଳ ନାସ୍ତିବାଣୀ ଛଡ଼ା କିଛି କହିଲେ ନାହିଁ ଯେ ସେ କ'ଣ ଚାହାନ୍ତି । ଶେଷକୁ ଜଣଙ୍କ ସାଙ୍ଗରେ ତାଙ୍କୁ ବାହାରକୁ ପଠାହେଲା । ସେ ଫେରିବା ପରେ ଶୁଣାଗଲା ଯେ ସେ ଏକ ମାମୁଲି ପଞ୍ଜାବୀ ହୋଟେଲରେ ମାଂସ ପରଟା ଖାଇଲେ । ସେ ସବୁ ତାଙ୍କୁ ଦିଆଯିବ ବୋଲି ପ୍ରତିଶ୍ରୁତି ଦିଆଗଲା । ମାତ୍ର ଶେଷ ପର୍ଯ୍ୟନ୍ତ ସେ ପଳେଇଲେ ।

ଆମର ଖାଇବା  ସାଧାରଣ ରକମର ଥାଏ । ଦୁଧ ମିଳୁଥାଏ । ରୋଷେଇବାସ ବିଷ୍ଣୁ ବୋଲି ଜଣେ ଓଡ଼ିଆ ପିଲା କରୁଥାଏ । ସେତେବେଳେ ମାସକୁ ମୁଣ୍ଡପିଛା ଖରଚ ପାଞ୍ଚ ଛ' ଟଙ୍କା ଭିତରେ ପଡୁଥାଏ । ଖଜୁରୀଗୁଡ଼ ପ୍ରଚୁର ମିଳେ । ଟ୍ୟାନେରୀରେ 'କ୍ରୋମ୍ ଲିକର' ତିଆରି ପାଇଁ ବହୁତ ଗୁଡ଼ ଦରକାର ହୁଏ । ଭଲ ଖଜୁରୀଗୁଡ଼ ସେର ଚାରି ପାଞ୍ଚ ପଇସା ଦରରେ ମହଣ ମହଣ କିଣାହୁଏ । ଆମ ମେସ୍ ପାଇଁ ମଧ ଆସେ । ଆମେ ତିନି ଓଳି ମେଞ୍ଚା ମେଞ୍ଚା ଗୁଡ଼ ଖାଇ ତିନି ଚାରି ଦିନରେ ମାଠିଆଏ ଲେଖା ଉଡ଼େଇ ଦେଉ । ମୁଣ୍ଡପିଛା ଦୈନିକ ତିନିପା ଗୁଡ଼ ହାରାହାରି ଖର୍ଚ୍ଚ ହେଉଥାଏ ।  ଥରେ ବୀରେନ୍‌ଦା ସତୀଶବାବୁଙ୍କ ପାଖରେ ଫେରାଦ ହେଲେ । ସତୀଶବାବୁ କହିଲେ, "ଖାଉଛନ୍ତି ତ ଖାଆନ୍ତୁ ଭଲ ଜିନିଷ ।" ସେଠୁ ଆମେ ଆହୁରି ଉତ୍ସାହରେ ଖାଇଗଲୁ । ଚୂଡ଼ାକୁ ସନ୍ତୁଳି ଚୂଡ଼ାର ଉପମା କରିବା ପ୍ରଣାଳୀଟା ବୋଧହୁଏ ସେଇଠି ପ୍ରଥମେ ଉଦ୍‌ଭାବିତ ହେଲା ।

ସେଠି ମଶାଙ୍କର ପ୍ରାଦୁର୍ଭାବ ଯେମିତି ଥିଲା ପରେ ଗୌହାଟୀର ଗୋଟାଏ ଅଞ୍ଚଳ ଛଡ଼ା ଆଉ କୋଉଠି ଦେଖିନାହିଁ । ସନ୍ଧ୍ୟା ହେଲେ ପଲପଲ ମାଡ଼ିଆସିବେ । ପ୍ରତି ଘନ ସେଣ୍ଟିମିଟରରେ ବୋଧହୁଏ ଗୋଟାଏ ଲେଖାଁ ପଡ଼ିବେ । ରାତିରେ ମଶାରିରେ ମଧ ନିସ୍ତାର ନାହିଁ । ପଚିଶ ପଚାଶ ଲେଖାଁ ପଶିଯିବେ । ଶେଷକୁ ମଶାରି ଭିତରର ମଶା ମାରିବାକୁ ଏକ ପାଇକାରୀ ପଦ୍ଧତି ଉଦ୍ଭାବନ କଲୁ । ମଶାରିର ଚାରିକଣ ଖୋଲିଦେଇ ତଳେ ପକେଇ ତା' ଉପରେ ଏମୁଣ୍ଡ ସେମୁଣ୍ଡ ଦୁଇତିନିଥର ଗଡ଼ିଯାଉ । ସବୁଯାକ ମଶା ରୋଲର ଚାପାରେ ମରିଯାନ୍ତି ।

ଅଣହିନ୍ଦୀ ପିଲାମାନେ ସେଠି ହିନ୍ଦୀ ଶିଖିବା ଆରମ୍ଭ କଲେ । ତାମିଲ ବର୍ଣ୍ଣମାଳାରେ ତ ପ୍ରତ୍ୟେକ ବର୍ଗର କେବଳ ପ୍ରଥମ ଓ ଶେଷ ଅକ୍ଷର ଅଛି । କଙ, ଚଞ, ତନ, ଇତ୍ୟାଦି, ମଝିଗୁଡ଼ାକ ନାହିଁ, ତେଣୁ ଖ,ଗ, ଘ, ଆଦିର ଉଚ୍ଚାରଣ କଠିନ ହେଉଥାଏ । 'ହମ୍ ଖାନା ଖାତେ ହେଁ, କୁ ପଢ଼ିବେ 'ହମ୍ କାନା କାତେ ହେଁ । 'ଖ' ଉଚ୍ଚାରଣ କରିବାକୁ ବୁଝାଇଲେ କହିବେ, "ହମ୍ ଗାନା ଗାତେ ହେଁ" ।

ଥରେ ଗୁରୁସ୍ୱାମୀକୁ ଜଣେ କାରିଗର, ଗନି, ନାମଧାମ ପଚରାପଚରି କରି ଶେଷକୁ ପଚାରିଲା - "ବାବୁ, ଆପନେ ଶାଦୀ କିୟା ହେ ?" ଗୁରୁସ୍ୱାମୀ ଟିକିଏ ଭାବି ଜବାବ ଦେଲା - "ଥୋଡ଼ା ଥୋଡ଼ା" । ସମସ୍ତେ ହସି ହସି ପେଟ ପରାସ୍ତ । କିହୋ ଥୋଡ଼ା ଥୋଡ଼ା ଶାଦୀ କ'ଣ ? ଅସଲରେ ସେ ପ୍ରଶ୍ନଟା ବୁଝି ନ ପାରିବାରୁ ହଁ କହିବ କି ନାହିଁ କହିବ ଠିକ୍ ନ କରିପାରି ସବୁଆଡ଼କୁ ପାଇବ ବୋଲି ଥୋଡ଼ା ଥୋଡ଼ା କହିଦେଲା ।

ଟ୍ୟାନେରୀରେ ବାର ଚୌଦ ଜଣ କାରିଗର ଥା'ନ୍ତି । ପ୍ରାୟ ସମସ୍ତେ ବିହାର ଓ ଉତ୍ତର ପ୍ରଦେଶର ଲୋକ । ଧାନକୀ ଜନୁ ଚମଡ଼ା ଛେଲିବା କାମରେ ଥା'ନ୍ତି । ଗନି ପେଟେଣ୍ଟ ଚମଡ଼ା କାମରେ ଥାଏ । ତାଖୀ ଚମଡ଼ା ପାଲିଶ କରିବା, ସମାନ କରି ଚାଞ୍ଛିବା ଆଦି ଯନ୍ତ୍ର ଚଳାଏ । ଫାଗୁନୀ ରଙ୍ଗ ଲଗାଏ, କଣ୍ଡା ବାଡ଼ାଏ । ରାମ କାହାର ଛେଲି ଦ୍ୱାରା କଷ କରିବା କାମରେ ଥାଏ । ଅବ୍ଦୁଲ କାହାର ଖଦୀ ପ୍ରତିଷ୍ଠାନର ପୁରୁଣା ମିସ୍ତ୍ରୀ । ଖୁବ୍ ସୂକ୍ଷ୍ମ ଓ ନିର୍ଭୁଲ କାମରେ ସିଦ୍ଧହସ୍ତ । ଏମାନଙ୍କର ସମସ୍ତଙ୍କର ଓ ଅନ୍ୟମାନଙ୍କର ସ୍ନେହ ଓ ସହଯୋଗ ମତେ ପୁଷ୍ଟ କରିଛି ।

ଏଠି କ୍ରୋମ୍ ଦ୍ୱାରା ଚମଡ଼ାକଷ ଆଧୁନିକ ଢଙ୍ଗରେ ହେଉଥାଏ । ତା'ଛଡ଼ା ହରିଡ଼ା, ସୁନାରୀ ଛେଲି, ବାବୁଲ ଛେଲି ଆଦି ଦ୍ୱାରା ଦେଶୀ ଢଙ୍ଗରେ ବି କଷ କରାଯାଉଥାଏ । ମୁଖ୍ୟତଃ ଜୋତାର ତଳ ଓ ଉପର ପାଇଁ ବିଭିନ୍ନ ପ୍ରକାରର ଚମଡ଼ା ତିଆରି କରାଯାଉଥାଏ । ଆମେ ଶିକ୍ଷାର୍ଥୀମାନେ କାରିଗରଙ୍କ ସହିତ ମିଶି ପୂରା ଆଠ ନଅ ଘଣ୍ଟା କାମ କରୁଥାଉଁ । ବରଂ ଦିନେ ଦିନେ ସେମାନଙ୍କଠୁଁ ଆମକୁ ଅଧିକ କାମ କରିବାକୁ ପଡ଼େ । କାରଖାନା ବନ୍ଦ ହେବା ପରେ କଞ୍ଚା ଚମଡ଼ା ବୋଝେଇ ଟ୍ରକ୍ ଆସି ପହଞ୍ଚିଗଲେ ଆମେ ହିଁ ସେ ସବୁ ଉତାରି ରଖୁ । ରବିବାର ଦିନ କିଛି ଜରୁରୀ କାମ ଥିଲେ ଆମକୁ କରିବାକୁ ହୁଏ ।

ସାଧାରଣ ଶ୍ରମିକଙ୍କ ସାଙ୍ଗରେ ପୂରା ଆଠ ଘଣ୍ଟା ସମାନ ତାଳରେ କାମ କରି ମୋର ନିଜର ଶ୍ରମଶକ୍ତି ବିଷୟରେ ପୂରା ଆତ୍ମବିଶ୍ୱାସ ଆସିଗଲା । ଚମଡ଼ା କଷ କରିବା ତାର ସମସ୍ତ ଆନୁଷଙ୍ଗିକ ପ୍ରକ୍ରିୟା ଆମକୁ ଶିଖିବାକୁ ଓ କହିବାକୁ ପଡୁଥିଲା । ସେ ସବୁଥିରେ ମୁଁ ଦକ୍ଷ ହେଇଗଲି । କଷ ହେଇସାରି ରଙ୍ଗ ହେଉଥିବା ଚମଡ଼ାକୁ ଖଟପରି ବଡ଼ବଡ଼ ପଟାରେ ଟାଣିକରି ତା'ର ଧାଡ଼ିଯାକ କଣ୍ଡା ବାଡ଼େଇ ଶୁଖାଇବାକୁ ହୁଏ ଓ ତା'ପରେ ସେଥିରେ ପାଲିସ୍ ଲଗାଯାଏ । ଏ କାମ ଫାଗୁନୀ ଓ ମୁଁ କରୁଥିଲୁ । ମୋର ଦକ୍ଷତା କ୍ରମେ ତାକୁ ବି ଟପିଗଲା । ଗୋଟାଏ କାମକୁ ଠିକ୍ ଭାବରେ ପୂରା କରିବାରେ ଯେ ଗୋଟାଏ କଳାତ୍ମକତା ଥାଏ ଓ ସେଥିରେ ଯେ

ଗୋଟାଏ ପ୍ରକାରର ଆତ୍ମପ୍ରସାଦ ମିଳେ ତାହା ମୁଁ ଏସବୁ କରୁ କରୁ ଉପଲବ୍ଧି କଲି । କେବଳ କୋଇଲା ଚୁଲି ଲଗେଇବାର କଳାଟା ମୁଁ ଯଥାଯଥ ଭାବରେ ହାସଲ କରିପାରିଲି ନାହିଁ, ଯଦିଓ ଅନେକ ଦିନଯାଏ ମତେ ଏ କାମ କରିବାକୁ ପଡ଼ିଥିଲା ।

ଏ ଟ୍ୟାନେରୀରେ ବଜାର ପାଇଁ ଉତ୍ପାଦନ ଚଳାଇ ତାକୁ ଆର୍ଥିକ ଦୃଷ୍ଟିରୁ ଆତ୍ମନିର୍ଭରଶୀଳ କରିବା ସାଙ୍ଗ ସାଙ୍ଗେ ଏଥିରେ ବ୍ୟବହୃତ ଯନ୍ତ୍ର ସବୁକୁ କିପରି ଛୋଟ ଆକାରରେ, ଗାଁରେ ବ୍ୟବହୃତ ହେଇପାରିବା ପ୍ରକାରେ, ତିଆରି କରିହେବ ତା'ର ପ୍ରୟୋଗ ବି ଚାଲିଥାଏ । ସେଭଳି କେତେଗୁଡ଼ିଏ ଯନ୍ତ୍ର ବେଶ୍ ସଫଳ ହୋଇଥିଲା ଓ ମୁଁ ସେ ସବୁ ବରୀରେ ବ୍ୟବହାର କରିଥିଲି ।

ଟ୍ୟାନେରୀ ଆରମ୍ଭ କରିବାପରେ ସତୀଶବାବୁ ହାଓଡ଼ାର ଭାଗାଡ଼, ଅର୍ଥାତ୍ ମୃତ ଜନ୍ତୁ ପକେଇବା ସ୍ଥାନକୁ, ଠିକା ନେଲେ । ପୂର୍ବରୁ ଠିକାଦାରମାନେ ମଲା ଗୋରୁ ଓ ମଇଁଷିଙ୍କର କେବଳ ଚମଡ଼ା ଓ ଚମଡ଼ାତଳୁ କିଛି ଚର୍ବି ଚାଞ୍ଛି ନେଉଥିଲେ । ବାକୀ ସବୁ ସେଠି ଶାଗୁଣା, କୁକୁର, ବିଲୁଆଙ୍କର ଭୋଜିରେ ଲାଗୁଥିଲା । ସତୀଶବାବୁ ସମସ୍ତ ମୃତଦାରଟାକୁ କାମରେ ଲଗାଇବା ଯୋଜନା କଲେ । ଚମଡ଼ା ଛଡ଼ା ହାଡ଼ ମାଂସକୁ ଖଣ୍ଡ ଖଣ୍ଡ କରି କାଟି, ଶୁଖେଇ ଯନ୍ତ୍ରରେ ଗୁଣ୍ଡକରି ସାର ତିଆରି ହେଲା । ଏ ହାଡ଼ଗୁଣ୍ଡ ଯନ୍ତ୍ର ଆମ ଟ୍ୟାନେରୀରେ ବସା ହେଇଥିଲା । ଏ ସାର ଚାହା ବଗିଚାମାନଙ୍କରେ ଖୁବ୍ କଟୁଥିଲା, ମହଣ ତିନି ଟଙ୍କା ଦରରେ । ଅନ୍ତନାଳୀଗୁଡ଼ାକୁ ଶୁଖେଇ ସେ ସବୁକୁ ବିକାହେଲା । ସସୋଜ୍ ତିଆରି ପାଇଁ କୁଆଡ଼େ ଏଗୁଡ଼ାକ ଦରକାର ହୁଏ । ମାଂସକୁ ଶୁଖାଇ ଗୁଣ୍ଡ କରିବା ପୂର୍ବରୁ ତାକୁ ସିଝେଇ ଚର୍ବି ବାହାର କରି ନିଆଯାଉଥିଲା । ସେ ଚର୍ବିକୁ ଶୋଧନ କରି ସାବୁନ ପାଇଁ ବ୍ୟବହାର କରାହେଲା । ଗୋଟିଏ ଗାଈରୁ ସତର ଅଠର ସେର ଯାଏ ଚର୍ବି ବାହାରେ । ଏହିପରି ମୃତ ପଶୁମାନଙ୍କର ପୂରା ସଦ୍‌ବ୍ୟବହାରର ପନ୍ଥା ବାହାରିଲା ଓ ହାଓଡ଼ାର ଏ ମୃତପଶୁଶାଳାରୁ ବେଶ୍ ଲାଭ ହେବାକୁ ଲାଗିଲା । ଶ୍ୟାମଦାଙ୍କୁ ଏହାର ଦାୟିତ୍ୱରେ ରଖା ହେଇଥିଲା ।

ଆମ ଟ୍ୟାନେରୀରେ ଗୋଟାଏ ରସାୟନିକ ଲାବରେଟରୀ ମଧ୍ୟ ସଜ ହେଲା । ସେଥିରେ ଏକା ସମୟରେ ଆଠଜଣ କାମ କରିବା ପାଇଁ ବ୍ୟବସ୍ଥା ଥାଏ । ଜଣେ ରସାୟନବିତ୍, ଇନ୍ଦୁଭୂଷଣ ବସୁ, ତା'ର ଦାୟିତ୍ୱରେ ରହିଲେ । ଇନ୍ଦୁବାବୁ କାନପୁରରେ ଚମଡ଼ାର ପ୍ରଯୁକ୍ତିବିଦ୍ୟାରେ ମଧ୍ୟ ତାଲିମ ନେଇଥିଲେ । ଚମଡ଼ା କଷର ବିବିଧ ପ୍ରକ୍ରିୟା ସଂକ୍ରାନ୍ତରେ ବରାବର ରସାୟନିକ ପରୀକ୍ଷା ନିରୀକ୍ଷା ଆବଶ୍ୟକ ହୁଏ । ଏହା ସାଙ୍ଗକୁ ଶିକ୍ଷାର୍ଥୀମାନଙ୍କୁ ପ୍ରାଥମିକ ରସାୟନ ବିଜ୍ଞାନ ଶିଖାଇବା ପାଇଁ ଏହା ସଜ ହେଇଥାଏ । ମୁଁ ଏହାର ପୂରା ଲାଭ ଉଠେଇଥିଲି - ବା ପୂରାରୁ ବି ଅଧିକ । ଉତ୍ପାଦନ ସଂକ୍ରାନ୍ତ ଦୈନନ୍ଦିନ ପରୀକ୍ଷା ଆଦି ଶିଖିବା ଓ କରିବା ସାଙ୍ଗେ ସାଙ୍ଗେ ରୀତିମତ ପଢ଼ାପଢ଼ି ଓ ବ୍ୟାବହାରିକ ପ୍ରୟୋଗରେ ହାତ ପାକଳ କରିବା ଆରମ୍ଭ କଲି । ଚମଡ଼ା ସଂକ୍ରାନ୍ତ ଛଡ଼ା ସାଧାରଣ ଜୈବ ଓ ଅଜୈବ ରସାୟନର ନାନାପ୍ରକାରର ପ୍ରୟୋଗ, ପରିମାଣଗତ ଓ ଗୁଣଗତ ବିଶ୍ଳେଷଣ, ନାନା ଯୌଗିକ ପଦାର୍ଥ ତିଆରି ଆଦି ସବୁ ଚଳେଇଲି । ଦୈନିକ ଦୁଇ

ତିନି ଘଣ୍ଟା ନିୟମିତ ଭାବରେ ଲାବରେଟରୀରେ କାମ କରିବାର ସୁଯୋଗ ବିଶ୍ୱବିଦ୍ୟାଳୟରେ ବି ଛାତ୍ରମାନେ ପା'ନ୍ତି କି ନାହିଁ ସନ୍ଦେହ । ବେଳେବେଳେ ସାରାଦିନ ଲାଗିଥାଏ, ଟ୍ୟାନେରୀ ଛୁଟିଥିଲେ । ଇନ୍ଦୁବାବୁ ମତେ ଏଥିରେ ଖୁବ୍ ସାହାଯ୍ୟ ଓ ଉତ୍ସାହିତ କରୁଥିଲେ । ତାଙ୍କ ସହିତ ମୋର ଖୁବ୍ ସ୍ନେହ ସଂପର୍କ ଗଢ଼ି ଉଠିଥିଲା । ସେଠୁ ଆସିବା ପରେ ତାଙ୍କ ସାଙ୍ଗରେ ଆଉ ଦେଖା ହୋଇନାହିଁ ।

ସତୀଶବାବୁ ମଧ୍ୟ ଆମକୁ ନିୟମିତ ଭାବରେ କେତେବେଳେ ରସାୟନ ଓ କେତେବେଳେ ଖାଦ୍ୟତତ୍ତ୍ୱ ବିଷୟରେ କହୁଥିଲେ । ସେ ଏପରି ପ୍ରାଞ୍ଜଳ ଭାବରେ ବିଷୟକୁ ବୁଝାନ୍ତି ଯେ ଅନ୍ତତଃ ମୋର ତ ଏକରକମ ମୁଖସ୍ଥ ହେବାପରି ମନେ ରହି ଯାଉଥିଲା । ସତୀଶବାବୁ ଚମଡ଼ାକଷ ସଂକ୍ରାନ୍ତ ରାସାୟନିକ ପରୀକ୍ଷା ସବୁକୁ ବି ଗାଁରେ କରାଯାଇପାରିବା ପରି ସରଳ କରିବାର ଉପାୟ ଉଦ୍ଭାବନରେ ଲାଗିଥିଲେ । ସେଥିପାଇଁ ସେ ଚପାକାଗଜରେ ମନ୍ଦାର ଫୁଲର ପାଖୁଡ଼ା ଘଷି ଲିଟ୍‌ମସ୍ କାଗଜର ବିକଳ୍ପ ବାହାର କଲେ । କୌଣସି ଦ୍ରବ୍ୟରେ ଖାରର ପରିମାଣ ନିରୂପଣ ପାଇଁ କାଗିଜି ରସ ବ୍ୟବହାରର ଉପାୟ ବତେଇଲେ । ଏହିପରି ଆହୁରି ସବୁ କ'ଣ ସଫଳ ପ୍ରୟୋଗ କରିଥିଲେ । ଏଥିରୁ ବି କେତେକ ମୁଁ ବରୀ ଟ୍ୟାନେରୀରେ ସଫଳ ଭାବରେ କାମରେ ଲଗେଇଥିଲି ।

ଲାବରେଟରୀରେ ଆଉ ଜଣେ ବିଚିତ୍ର ଲୋକ ଜୁଟିଥିଲେ । ବାବୁଲାଲ ବର୍ମା ଘର ଉତ୍ତର ପ୍ରଦେଶରେ କେଉଁଠି ଗୋଟାଏ । ରସାୟନରେ ଏମ୍.ଏସ୍‌ସି. ପାସ୍ । ଲାବରେଟରୀ କାମରେ ଖୁବ୍ ଦକ୍ଷ । କାମରେ ଲାଗିଥିଲେ ଖାଇବା ପିଇବା ଭୁଲିଯିବେ । ବହୁତ ବେଶି ତ୍ୟାଗର ଭାବନା । ସ୍ତ୍ରୀ ଓ ଗୋଟିଏ ଝିଅକୁ ନେଇ ଶ୍ରମିକ ବସ୍ତି ଭିତରେ ଏକ ସନ୍ତସନ୍ତିଆ ଘରେ ରହିଥା'ନ୍ତି । ବର୍ଷା ହେଲେ ସେ ଘର ଭିତରେ ଟାଖଣ୍ଡେ ପାଣି ଜମା ହୁଏ । ତ୍ୟାଗରେ ମୂର୍ଖାମିର ଅଂଶ ଥିଲା । ଯେତେ ବୁଝାଇଲେ ବୁଝନ୍ତି ନାହିଁ । ଶେଷକୁ ତାଙ୍କର ସ୍ତ୍ରୀ ଓ ସନ୍ତାନ ଅସୁସ୍ଥ ହେଇ ମରିଗଲେ । ସେ ଯାଇ ପରେ ଖଦୀ ପ୍ରତିଷ୍ଠାନ (ସୋଦପୁର) ଠାରେ ସ୍ଥାୟୀ ଭାବରେ ରହିଲେ । ସେ ବି ମତେ ଲାବରେଟରୀରେ ଶିଖିବାରେ ଖୁବ୍ ସାହାଯ୍ୟ କରିଥିଲେ ।

ବାବୁଲାଲ ବର୍ମା ଓ ମୁଁ ସାଧାରଣ ଶ୍ରମିକଙ୍କ ସହିତ ନିଜକୁ ମିଶାଇବା ପାଇଁ ଏତେ ବ୍ୟଗ୍ର ଥିଲୁ ଯେ ଦିନେ ଟ୍ୟାନେରୀଠାରୁ ଖଦୀ ପ୍ରତିଷ୍ଠାନର କଲେଜ ସ୍କୋୟାର ଦୋକାନ ଯାଏ, ପ୍ରାୟ ତିନି ମାଇଲ ବାଟ – ମୁଣ୍ଡରେ କମ୍ବଳ ବୋଝ ଧରି ଚାଲିଯାଇଥିଲୁ ।

ଏ ସବୁ ଭିତରେ ମୋର ସମାଜବାଦୀ ଦୃଷ୍ଟିକୋଣ ଦୃଢ଼ ହେଉଥାଏ । ଥରେ 'ସମାଜ' ରେ ସମାଜବାଦର ସମାଲୋଚନା କରି ଓ ସେଥିରେ ହିଂସା ଅହିଂସା କଥା ଉଠେଇ ଗୋଟାଏ ସମ୍ପାଦକୀୟ ବାହାରିଥିଲା । ମୁଁ ତା'ର ଗୋଟିଏ ଜବାବ ଲେଖିଥିଲି । ସେଇଟା ସାରଥୀରେ ବାହାରିଥିଲା । ବାପା ତାକୁ ପଢ଼ି ଲେଖିଲେ ଯେ ଲେଖାଟା ବେଶ୍ ଭଲ ହେଇଛି ତେବେ ଟିକିଏ ବେଶୀ ଲମ୍ବା ହେଇଯାଇଛି । ପ୍ରସଙ୍ଗ ମନେ ନାହିଁ କିନ୍ତୁ ଥରେ ସମାଜବାଦ ନେଇ ସତୀଶବାବୁଙ୍କ

ସାଙ୍ଗରେ କିଛି ତର୍କ ହେଲା । ଜମିଦାରୀ ଓ ମଠ ସମ୍ପତ୍ତି କୋଠ ହେବା ଉଚିତ ବୋଲି ମୁଁ କହିଥିଲି । ସେ ମତେ ବୁଝାଇବାକୁ ଚେଷ୍ଟା କରିଥିଲେ ଯେ ଏହାର ଆବଶ୍ୟକତା ନାହିଁ । ମୁଁ ଜମିଦାର ଓ ମହନ୍ତମାନଙ୍କର ଅତ୍ୟାଚାରର ଉଦାହରଣ ଦେଇଥିଲି ।

ଏ ସମୟରେ ମୋ ମନରେ ଧର୍ମ ବିଷୟରେ ମଧ୍ୟ ଚିନ୍ତା ଚାଲିଥାଏ । ଧର୍ମକୁ ମୁଁ ଠକାମୀ ଓ ଅଫିମ ବୋଲି ସ୍ୱୀକାର କରିବାକୁ ରାଜି ନ ଥାଏ । ମାତ୍ର ଯେ ଯେଉଁ ଧର୍ମର ଲୋକ ସେ ଧର୍ମର ନୀତି ଅନୁସାରେ ଚଳିବେ, ତାର ସବୁ କଥାରେ ବିଶ୍ୱାସ କରିବେ, ଏ ଧରଣର ଯେଉଁ ଏକ ସ୍ଥୂଳ ବିଚାର ସେତେବେଳେ ଗାନ୍ଧୀବାଦୀ ମହଲାରେ ଥାଏ ତାହା ମୋର ତଣ୍ଟିରେ ଗଳୁ ନ ଥାଏ । ସେ ସମୟରେ ମୁଁ ଏଇ ନିଷ୍ପତ୍ତିରେ ପହଞ୍ଚିଥିଲି ଯେ ସବୁ ଧର୍ମ ଏଇ ଅର୍ଥରେ ସମାନ  ଯେ ସେ ସବୁ ସମାନ ତ୍ରୁଟିପୂର୍ଣ୍ଣ ।

## ବଙ୍ଗଳାର ଗାଁରେ

୧୯୩୫ ବା ୩୬ ରେ ବଙ୍ଗଳାର ମୟମନସିଂହ ଜିଲ୍ଲାରେ ଖୁବ୍ ଦୁର୍ଭିକ୍ଷ ପଡ଼ିଲା । ଲୋକଙ୍କର ଅବସ୍ଥା ଅତି ଶୋଚନୀୟ ହୋଇଥାଏ । ସେ ବର୍ଷ ଆମ୍ବ ବହୁତ ହେଇଥିବାରୁ ଗରିବ ଲୋକେ କେବଳ ଆମ୍ବ ଖାଇ ବଞ୍ଚିଥା'ନ୍ତି । ସତୀଶବାବୁ ମତେ ପଠେଇଲେ ସେଠାକାର ଅବସ୍ଥାର ଫଟୋ ଉଠେଇ ଆଣିବାକୁ । କ୍ଷିତୀଶବାବୁ ସତୀଶବାବୁଙ୍କର ସାନଭାଇ । ସୋଦପୁର ଆଶ୍ରମରେ ସସ୍ତ୍ରୀକ ଥା'ନ୍ତି । ତାଙ୍କୁ ଆମେ କାକାବାବୁ ଡାକୁ । ବେଶୀ ମିଶୁକ ନୁହନ୍ତି । କିନ୍ତୁ ଖୁବ୍ ସ୍ନେହୀ ଓ ପଣ୍ଡିତ ଲୋକ । ଖଦୀ ପ୍ରତିଷ୍ଠାନର ଲୋକମାନେ ତାଙ୍କର ଗମ୍ଭୀର ସ୍ୱଭାବ ଯୋଗୁଁ ତାଙ୍କୁ ଡରୁଥିଲେ । ତାଙ୍କର ବ୍ୟବସ୍ଥିତତାର ଅଭ୍ୟାସ ଅତି ପ୍ରବଳ । ଥରେ ତାଙ୍କଠାରୁ କ୍ୟାମେରାର ଷ୍ଟାଣ୍ଡ ମାଗିଆଣିଥିଲି । ତାଙ୍କର ପିଲାଦିନେ ସେ ଷ୍ଟାଣ୍ଡ ଯେଉଁ ଖୋଳରେ ପଶି, ଯେଉଁ କାଗଜରେ ଗୁଡ଼ିଆ ହେଇ ଓ ଯେଉଁ ସୁତୁଲୀରେ ବନ୍ଧା ହେଇ କିଣା ହେଇଥିଲା ସେ ସବୁ ସେହିପରି ଅକ୍ଷତ ଥିଲା  ଓ ମତେ ଷ୍ଟାଣ୍ଡଟି ଧାର ଦେବାବେଳେ ତାଗିଦ୍ କରି ଦେଇଥିଲେ ଯେ କାମସାରି ପୁଣି ଅବିକଳ ସେହିପରି ବାନ୍ଧିବୁନ୍ଧି ତାହା ଫେରସ୍ତ  ଦେବାକୁ ହେବ । ଏଇ କାକାବାବୁଙ୍କର କ୍ୟାମେରା ଆଦି ଧାର ନେଇ ମୁଁ ମୟମନସିଂହ ବାହାରିଲି ।

ସିଆଲଦା ଷ୍ଟେସନରୁ ମୁଁ ଟ୍ରେନ୍‌ରେ ସିରାଜଗଞ୍ଜ ଘାଟ ଯାଇ ସେଠୁ ଷ୍ଟିମର୍‌ରେ ଫୁଲବାଡ଼ୀ ଘାଟ ଯାଏ ଗଲି ଓ ସେଠୁ ଟାଙ୍ଗାଇଲ ଗଲି । ବାଟରେ ଟ୍ରେନ୍‌ରେ ଏକ ମଜାର ଘଟଣା ହେଲା । ମୋ ଡବାରେ ଆଉ କେତେଜଣ ଓଡ଼ିଆ ଗାଉଁଲି ଲୋକ କୁଆଡ଼େ ଯାଉଥା'ନ୍ତି । ସେମାନେ ବାଟରେ ଗୋଟାଏ ଜାଗାରେ ଓହ୍ଲାଇଗଲା ପରେ ଡବାରେ ଥିବା କେତେଜଣ ବଙ୍ଗାଳୀ ଯାତ୍ରୀ ସେମାନଙ୍କ ବିଷୟରେ ବ୍ୟଙ୍ଗ ବିଦ୍ରୂପ କରି କଥାବାର୍ତ୍ତା କରିବାକୁ ଲାଗିଲେ । ପର ଷ୍ଟେସନ୍‌ରେ ଏମାନେ ଓହ୍ଲାଇଲେ । ମୁଁ ସେମାନଙ୍କର ଜିନିଷ ପତ୍ର ଉତାରିବାରେ ସାହାଯ୍ୟ କଲି ଓ ସେମାନେ ଧନ୍ୟବାଦ ଦେବା ବେଳକୁ କହିଲି, "ଆପଣମାନେ ଓଡ଼ିଆମାନଙ୍କ ବିଷୟରେ ଖୁବ୍ ଟିପ୍ପଣୀ

କରୁଥିଲେ । ମୁଁ ବି ଜଣେ ଓଡ଼ିଆ । ସେ ମନ୍ତବ୍ୟଗୁଡ଼ିକ ଠିକ୍ ନୁହେଁ ।” ସେମାନେ ଖୁବ୍ ଅପ୍ରସ୍ତୁତ ହେଇ କ୍ଷମା ମାଗିବାକୁ ଲାଗିଲେ ।

ଷ୍ଟିମର୍ ଭୋର୍‌ରୁ ଛାଡ଼ିଲା ଓ ଉପରଓଳି ଚାରିଟା ଆଡ଼କୁ ଯାଇ ଫୁଲବାଡ଼ୀ ଘାଟରେ ପହଞ୍ଚିଲା । ପଦ୍ମାନଦୀରେ ମୋର ଏଇ ପ୍ରଥମ ଷ୍ଟିମର୍ ଯାତ୍ରାକୁ ମୁଁ ଖୁବ୍ ଉପଭୋଗ କରିଥିଲି । ବିଶାଳବକ୍ଷା ନଦୀ । ବେଳେବେଳେ ଏ ପାରିରୁ ସେ ପାରି ଦିଶୁ ନ ଥାଏ । ଷ୍ଟିମର୍ ଗୋଟାଏ କୂଳ ପାଖ ଦେଇ ଯାଉଥାଏ । ନଈ କୂଳେକୂଳେ ତରୁପଲ୍ଲବର ଛାୟାଘନ ଗାଁ । ଷ୍ଟିମର୍‌ରେ ବସି ବସି ଲୋକଙ୍କର ଦୈନନ୍ଦିନ ଜୀବନ ଯାତ୍ରାର ଏକ ଅସରନ୍ତି ଚଳଚ୍ଚିତ୍ର ଦେଖିବାକୁ ମିଳୁଥାଏ । ଚାଷୀମାନେ ହଳ କରୁଛନ୍ତି । ନଈକୂଳର ଚଲାବାଟ ଧରି ବାଟୋଇ ଚାଲିଛନ୍ତି । ତୁଠରେ ଗାଁର ଝିଅବୋହୂ ବାସନ ମାଜୁଛନ୍ତି, ଗାଧୋଉଛନ୍ତି, ପାଣି ଭରୁଛନ୍ତି । ନଈକୂଳ ତୋଟାରେ ପିଲାଏ ଖେଳୁଛନ୍ତି । ଗାଈଆଳ ଗାଈ ଚରାଉଛି । ଷ୍ଟିମର୍ ଘାଟରେ ଲାଗିଲେ ଓହ୍ଲାଇବା ଚଢ଼ିବାର ବ୍ୟସ୍ତତା । ପାଟିଗୋଳ । ଘାଟକୁ ଲୋକେ ଘୋଡ଼ାନେଇ ଆସିଥା’ନ୍ତି, ଭଡ଼ା ଦେବାପାଇଁ । ଯାତ୍ରୀମାନେ ଘୋଡ଼ାରେ ଚଢ଼ି ଗାଁକୁ ଯିବେ । ଦଳଖିଆ ସାନ ସାନ ଘୋଡ଼ା ।

ଫୁଲବାଡ଼ୀରେ ପହଞ୍ଚି ଡଙ୍ଗାରେ ଗୋଟାଏ ସାନ ଢୋର ପାରି ହେବାକୁ ହେଲା । ତା’ପରେ ଘୋଡ଼ାଗାଡ଼ିରେ ଟାଙ୍ଗାଇଲ ଯାଇ ସେଠାର ଖଦୀ ପ୍ରତିଷ୍ଠାନର ଭଣ୍ଡାର ଖୋଜି ବାହାର କଲି । ସେଠାର କର୍ମୀଭାଇ ମୋର ରହିବା ଆଦିର ସୁବ୍ୟବସ୍ଥା କଲେ । ସେଇଠି ପ୍ରଥମେ କୂଅ ପାଇଖାନା ଦେଖିଲି । ଗୋଟାଏ କୂଅ ଉପରେ ପଟା ପକେଇ ବସିବା ବ୍ୟବସ୍ଥା ହେଇଛି ଓ ଚାରିପଟେ ତାଟି ଘେରା ହେଇଛି । ଏହା ପରେ ମାଲିକାନ୍ଦା ଯାଇ ଗଛ ପାଇଖାନା ଦେଖିଥିଲି । ଗଛ ଉପରେ ଚଢ଼ି ଦୋକେନା ଡାଳରେ ବସି ଝାଡ଼ା ଫେରିବେ । ଉପରେ ଖଣ୍ଡେ ଆଢୁଆଳ ଘେରା ହେଇଛି । ଚଢ଼ିବା ପାଇଁ ଖଣ୍ଡେ ମୋଟ ଗଣ୍ଠିଆ ବାଉଁଶର ସିଡ଼ି ଓ ଆରଖଣ୍ଡେ ବାଉଁଶର ଧାରଣା । ତଳେ ସାନ ଗାଡ଼ିଆ ଆକାରରେ ଏକ ନରକ କୁଣ୍ଡ । ଉପରୁ ଟିକିଏ ଗୋଡ଼ ଖସିଲେ ଜନ୍ମ ଜନ୍ମାନ୍ତରର ପାପ ହରିନେବ ।

ପରଦିନ ସକାଳେ କର୍ମୀଭାଇ ଜଣକ ଓ ମୁଁ ଦୁଇଟି ଘୋଡ଼ା ଭଡ଼ା କରି ବୁଲି ବାହାରିଲୁ । ଏପରି ଭଡ଼ା ଘୋଡ଼ା ପୂର୍ବ ବଙ୍ଗରେ ଗାଁ ଗାଁରେ ମିଳନ୍ତି । ମୋର ତ ଘୋଡ଼ା ଚଢ଼ା କେବେ ଜୀବନରେ ହେଇ ନ ଥିଲା । ଏଠି ପ୍ରଥମ ପ୍ରଥମ ଚଢ଼ିବା ବେଳେ ଡର ମାଡୁଥିଲା । ଦୁଇ ତିନି ଘଣ୍ଟା ପରେ ଅଭ୍ୟାସ ହେଇଗଲା ଓ ଡର ଛାଡ଼ିଗଲା । ଦିନଯାକରେ ଅନେକ ଗାଁ ବୁଲି ଅନେକ ଛବି ଉଠେଇଲି । ଗରିବ ଲୋକଙ୍କର ଦୟନୀୟ ଅବସ୍ଥା ଦେଖିଲି । ବାଟରେ ଏକ ବଡ଼ ହାଟ ବି ନଈ କୂଳରେ ଦେଖିଲି । ଏଠା ହାଟକୁ ଲୋକେ ଡଙ୍ଗାରେ ଜିନିଷପତ୍ର ଧରି ଆସନ୍ତି । ହାଟ ପାଖ ଘାଟ କୂଳରେ ଡଙ୍ଗାର ମେଳା ଲାଗିଥାଏ । ଏ ଆଡ଼ର ଡଙ୍ଗାର ଆକୃତି ବେଶ୍ କଳାତ୍ମକ । ଆମ କଟକୀ ପଟେଇ ପରି ଚୌଖୁଣ୍ଟିଆ ବ୍ୟବହାରବାଦୀ ନୁହେଁ ।

ବୁଲାବୁଲି କରି ଫେରିବା ବେଳକୁ ଘୋଡ଼ାଚଢ଼ାରେ ମୁଁ ବେଶ୍ ବେପରୱା ହୋଇଯାଇଥାଏ । ଗୋଟାଏ ଗଡ଼ାଣି ବାଟରେ ଘୋଡ଼ା ଜୋର୍‌ରେ ଦୌଡ଼ିବାକୁ ଲାଗିଲା ଓ ମୁଁ ବେସାମାଲ ହୋଇ ତା'ର ମୁଣ୍ଡବାଟେ ମାଙ୍କଡ଼ଚିତ୍ ମାରି ତଳେ ପଡ଼ିଲି । ଜେଲ୍‌ରେ ଯେଉଁ ଜୁଜୁତ୍‌ସୁ ଶିଖିଥିଲି ସେଥିରେ ମୁହଁମାଡ଼ି ଓ ପିଠିମାଡ଼ି କଚଡ଼ା ଖାଇବାର ଅଭ୍ୟାସ କରାହୋଇଥିଲା ଯେପରି କି ପଡ଼ିଲେ ଆଘାତ ଲାଗିବ ନାହିଁ । ବୋଧହୁଏ ସେହି ଅଭ୍ୟାସ ଯୋଗୁଁ ସ୍ୱୟଂକ୍ରିୟ ଭାବରେ ମୋର ଦେହଟା ଏପରି ଭାବରେ ପଡ଼ିଗଲା ଯେ କିଛି ଆଘାତ ଲାଗିଲା ନାହିଁ । ଝାଡ଼ିଝୁଡ଼ି ହୋଇ ପୁଣି ଘୋଡ଼ାରେ ଚଢ଼ିଲି । ସେ ଦିନଯାକ କେବଳ ଆମ୍ବ, ଦୁଧ, ମୁଢ଼ି ଖିଆହୋଇଥିଲା । ଏ ତିନୋଟି ବସ୍ତୁ ଏକାଠି ଗୋଳେଇ ଖାଇବା ସେଇଠି ଶିଖିଲି । ପ୍ରକୃତରେ ସେ ବର୍ଷ ସେ ଅଞ୍ଚଳରେ ଫସଲହାନି ସାଙ୍ଗକୁ ଗୋରୁ ଚରିଯିବା ଭଳି ଆମ୍ବ ହୋଇଥିଲା । ଲୋକେ କେବଳ ଆମ୍ବ ହିଁ ଖାଇ ବଞ୍ଚିଥିଲେ । ମୁଁ ସେଠୁ ଆଣିଥିବା ଛବିରୁ କେତେକ ଆନନ୍ଦବଜାର ପତ୍ରିକା ଓ ପ୍ରବାସୀରେ ବାହାରି ଥିଲା । ଏହାପରେ ଥରେ ଉତ୍ତର ବଙ୍ଗର ଅଞ୍ଚଳକୁ ଯାଇଥିଲି । ସେଠାର ଗାଈଗୋରୁଙ୍କର ଦୁରବସ୍ଥାର ଛବି ଆଣିବାକୁ ।

ମଝିରେ ବରୀରେ ବୋଉ ଦେହ ଖରାପ ହେଲା । ବୋଧହୁଏ ଅତ୍ୟଧିକ ପରିଶ୍ରମ ଯୋଗୁଁ ସ୍ନାୟବିକ ଅବସନ୍ନତା ଘଟିଥିଲା । ଖବର ପାଇ ଡାକ୍ତର ଇନ୍ଦ୍ରନାରାୟଣ ସେନଗୁପ୍ତ ବରୀ ଗଲେ । ମୁଁ ଖବର ପାଇ ତା' ପରେ ଯାଇ ପହଞ୍ଚିଲି । ବରୀକୁ ଗାନ୍ଧୀଜୀଙ୍କର ପଦଯାତ୍ରା ପରେ ମୋର ଏଇ ପ୍ରଥମ ଯାତ୍ରା । ବରୀରେ ଥିବା ବେଳେ ଇନ୍ଦ୍ରନାରାୟଣ ବାବୁଙ୍କ ପାଖକୁ ଗାଁରୁ ରୋଗୀମାନେ ଆସୁଥା'ନ୍ତି । ଦିନେ ଗୋଟିଏ ପିଲା ଆସିଲା, ତା'ର ବେକରେ ଏକ ବଥ କାଟିବାକୁ ହେବ । ଇନ୍ଦ୍ରନାରାୟଣବାବୁ ମୋ ହାତରେ ଛୁରୀ ଧରାଇ ଦେଇ କହିଲେ, " ନେ, କାଟ୍ ।" ମୁଁ ବଥ କାଟିଦେଲି । ସେଇ ମୋର ପ୍ରଥମ ଓ ଶେଷ ଅସ୍ତ୍ରୋପଚାର । ବୋଉକୁ କଟକ ନିଆହେଲା । ସେତେବେଳେ ବରୀକୁ କଟକ ଯିବାମାନେ ବଳଦ ଗାଡ଼ିରେ ବାଇଶ ମାଇଲ ବାଟଯାଇ ହରିଦାସପୁରଠାରୁ ଟ୍ରେନ୍ ଧରିବା । ଏତକ ବଳଦଗାଡ଼ିରେ ଯାତ୍ରା ପୁରା ବାର ଘଣ୍ଟା ଲାଗୁଥାଏ । ବୋଉକୁ ସବାରୀରେ ନିଆ ହେଲା । ବୋଉକୁ ଦେଖିବା ପାଇଁ ବାବାଜୀ ରାମଦାସ ବି ଆସିଥିଲେ । ବୋଉ ସାଙ୍ଗରେ କଟକ ଆସିଥିଲେ । ହରିଦାସପୁର ବାଟରେ ବନ୍ଧଡିହ ଠାରେ କେଲୁଅ ନଈ ପାରି ହୋଇ ଆମେ ସେପାରିରେ ବିଶ୍ରାମ କରୁଛୁ । ଏତିକି ବେଳେ ପଛରେ ପଡ଼ିଥିବା ବାବାଜୀ ସାଇକେଲ ଚଢ଼ି ଆର କୂଳରେ ଆବିର୍ଭୂତ ହେଲେ । ଆମମାନଙ୍କୁ ଦେଖି 'ସୀତାରାମ' ବୋଲି ଧ୍ୱନି ଦେଇ ନଈଗଡ଼ାରେ ସାଇକେଲ ଗଡ଼େଇ ଦେଲେ । ତା'ପରେ ଏକ ବିକଟ ଚିତ୍କାର । କାନ୍ଧରେ ବିରାଟ ଖଦଡ଼ ଝୋଲାରେ ଡାକୁଡ଼ି ଥିଲା । ପଛପଟେ ଫୋଡ଼ି ହୋଇଗଲା । ଆମ ସବୁ ହସି ହସି ଅସ୍ଥିର । କଟକରେ ଚିକିତ୍ସା ଦ୍ୱାରା ବୋଉର ସ୍ୱାସ୍ଥ୍ୟରେ ଉନ୍ନତି ହେଲା । କିଛି ଦିନପରେ ମୁଁ କଲିକତା ଫେରି ଆସିଲି ।

# କେତେକ ଅଭିଜ୍ଞତା

ଚମଡ଼ା କାମ ଶିଖିବାବେଳେ ଦୁଇଟି ଅନୁଭୂତି ହେଉଥିଲା । ଥରେ କେଉଁଠୁ କଞ୍ଚା ଚମଡ଼ା ରେଳରେ ଚାଲାଣ ହେଇ ଆସିଥାଏ । ମୁଁ ଛଡ଼େଇବା ପାଇଁ ହାଓଡ଼ା ଗଲି । ସେଠି ମାଲବାବୁମାନେ ରେଳ ବିଲ୍‌ଟି ଛାଡ଼୍ କରିବାବେଳେ ଚାରି ଆଠଅଣା ଲେଖା ଅଣ୍ଟାଗୁଞ୍ଜା ନେଉଥା'ନ୍ତି । ମତେ ବି ଇଙ୍ଗିତ ଦେଲେ । ପଦାରେ ମୋ ପାଖରେ ଛିଡ଼ା ହେଉଥିବା ଜଣେ ଲୋକ ଫୁସ୍‌ଫୁସ୍ କରି କହିଲା ଯେ, ତିନିଅଣା ଦିଅ । ମୁଁ ନଛୋଡ଼ବନ୍ଧା, ଦେଲିନାହିଁ । ସେଠୁ ସେ ବାବୁ ବିଲ୍‌ଟିରେ କ'ଣ ଦୋଷ ଦେଖେଇ ଫେରେଇ ଦେଲା । ପୁଣି ତା' ପରଦିନ ଯାଇ ଯେତେ ଚେଷ୍ଟା କଲି ସବୁ ବାବୁମାନେ ମୋ ବିଲ୍‌ଟି ଦେଖିବା ମାତ୍ରେ ହାତଯାକି ବସୁଥା'ନ୍ତି । ଶେଷକୁ ସେଠାର ସୁପରିଟେଣ୍ଡେଣ୍ଟଙ୍କ ପାଖକୁ ଗଲି । ସେଠି ଚପରାସୀ ପଇସା ନ ପାଇଲେ ଭିତରକୁ ନ ଛାଡ଼ିବାର ଢଙ୍ଗ ଦେଖଉଥିଲା । ଜୋର୍ କରି ପଶିଗଲି ସେ କହିଲେ ଯେ ଅନୁଷ୍ଠାନ ପକ୍ଷରୁ ଏକ ବଣ୍ଡ ଲେଖିଦେଇ ମାଲ୍ ନେବାକୁ ହେବ । ଏଣେ କଞ୍ଚା ଚମଡ଼ା, ଲୁଣ ଦିଆ ହେଇଛି ସତ, ମାତ୍ର ଗରମରେ ନଷ୍ଟ ହେଇଯିବାର ସମ୍ଭାବନା ଦିନୁଦିନ ବଢ଼ିଚାଲିଛି । ତୃତୀୟ ଦିନ ଖୋଦ୍ ବୀରେନ୍‌ଦା ଗଲା ଓ ବାବୁମାନଙ୍କୁ ସନ୍ତୁଷ୍ଟ କରି ଚମଡ଼ା ଛାଡ଼୍ କରି ଆଣିଲା । ସିଆଲଦା ଷ୍ଟେସନରେ କିନ୍ତୁ ବାବୁମାନେ ଖଦୀ ପ୍ରତିଷ୍ଠାନକୁ ଚିହ୍ନିଥା'ନ୍ତି, ମୁଁ ଚମଡ଼ା ଛାଡ଼୍ କରି ଗଲେ ପ୍ରତିଷ୍ଠାନର ମାଲ୍ ବୋଲି ଶୁଣିଲେ ପଇସା ମାଗୁ ନ ଥିଲେ ।

ଥରେ ବୀରେନ୍‌ଦା ଓ ମୁଁ ପାକୁଡ଼ ଗଲୁ ଚମଡ଼ା କିଣିବା ପାଇଁ । ହାଓଡ଼ାରୁ ଟ୍ରେନ୍‌ରେ ଯାଇ ସେଠି ରାତିରେ ପହଞ୍ଚି ଷ୍ଟେସନ୍ ବାହାରେ ପଦାରେ ଶୋଇଗଲୁ । ସକାଳୁ ଉଠି ଦେଖୁଁ ତ ବୀରେନ୍‌ଦାର କୋଟ ପକେଟ କଟା ଓ ମନିବ୍ୟାଗ ଅଦୃଶ୍ୟ । ଖୋଜାଖୋଜି କରି ସେଥିରେ ଥିବା ମୋଟର ଚାଳକ ଲାଇସେନ୍‌ସଟି ପାଖ ନଳାରେ ପଡ଼ିଥିବାର ଦେଖାଗଲା । ବ୍ୟାଗରେ ଦୁଇଶହ ପାଖାପାଖି ଟଙ୍କା ଥିଲା, ଦୁହେଁ କପର୍ଦ୍ଦକଶୂନ୍ୟ । ଷ୍ଟେସନ୍ ମାଷ୍ଟରଙ୍କଠାରୁ ଚାରି ପାଞ୍ଚଟଙ୍କା ଧାର କରି କଲିକତାକୁ ତାର କଲୁ ଓ ଖିଆପିଆ କଲୁ । ଜି.ଆର.ପି.ରେ ଏତଲା ଦେଲୁ । ଦି' ପହର ବେଳକୁ ପୁଲିସ୍ ସବ୍‌ଇନ୍‌ସପେକ୍ଟର ଆସିଲେ ଚୋରି ମାମଲା ଅନୁସନ୍ଧାନ କରିବାକୁ । ଦରବୁଢ଼ା ଗେଦଳା ମିଆଁ ସାହେବ, ମୁନିଆ ଦାଢ଼ୀ । ଆମଠୁ ସବୁ ଜମାନବନ୍ଦୀ ନେଲେ । ବୀରେନ୍‌ଦାର ପକେଟ କଟା କୋଟଟା ଏକଜିବିଟ୍ ବା ଦର୍ଶନୀୟ ବସ୍ତୁ ଭାବରେ ନେଲେ ଓ ପୁଣି ବୀରେନ୍‌ଦାକୁ ତାହା ଫେରାଇ ଦେଇ ପ୍ରାପ୍ତି ସ୍ୱୀକାର ରସିଦ୍ ଦସ୍ତଖତ କରାଇନେଲେ ବିନା ତାରିଖରେ । କହିଲେ ଯେ, ପରେ ମକଦ୍ଦମାରେ ଦରକାର ହେଲେ ମାଗିନେବି । ଏଇଥିରୁ ଆମେ ବୁଝିଲୁ ଯେ, ଏ ବାବଦରେ ପୋଲିସ୍‌ର ଧରପଗଡ଼ ଉଦ୍ୟମ ଏତିକିରେ ସରିଲା । କେବଳ ଫାଇନାଲ ରିପୋର୍ଟ ଲେଖିବା ବାକି । ଏ ଟଙ୍କା ଚୋରୀ ବିଷୟରେ କେତେଦିନ ପରେ ଠକ୍‌କର ବାପା ଆମକୁ ସାବଧାନତାର ଉପଦେଶ ଖୁବ୍ ଶୁଣାଉଥିଲେ ।

ସେଠି ନାନାପ୍ରକାର କାମ ଶିଖିବା ଓ କରିବାରେ ଖୁବ୍ ସନ୍ତୋଷ ମିଳୁଥିଲେ ବି ଭିତରେ ଘରକୁ ଫେରିବାର ଇଚ୍ଛା ବୋଧହୁଏ ବଢୁଥାଏ । ୧୯୩୬ରେ ଓଡ଼ିଶାରେ ଜଓ୍ୱାହରଲାଲାଙ୍କର ଗସ୍ତ ହେବାର ଖବର ବାହାରିଲା । ମୁଁ ସେତେବେଳେ ଓଡ଼ିଶା ଯାଇ ତାଙ୍କର ସଭା ଆଦି ଦେଖିବି ବୋଲି ବିଚାର କରି ଦାଦାକୁ ଲେଖିଲି । ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ଭାବରେ ଭାଗୁଭାଇ ମୋତେ ଲେଖିଲେ ଯେ, ତମେ ଜଓ୍ୱାହରଲାଲାଙ୍କୁ କଲିକତାରେ ପ୍ରାଦେଶିକ କଂଗ୍ରେସ ପକ୍ଷରୁ ପାଛୋଟି ଆଣିବ । ମୁଁ ଏ କାମର ଦାୟିତ୍ୱ ଉପଲବ୍ଧି ନକରି କେବଳ ହାଓଡ଼ା ଷ୍ଟେସନରେ ପଣ୍ଡିତଜୀଙ୍କର ସହକାରୀ ଉପାଧ୍ୟାୟଜୀଙ୍କୁ ଭେଟି ଦେଇ ମାନ୍ଦ୍ରାଜ ମେଲ୍‌ରେ କଟକ ଚାଲିଆସିଲି । ସେମାନେ ପୁରୀ ଏକ୍‌ସପ୍ରେସରେ ଆସିଲେ । ମୁଁ କେବଳ ସତୀଶବାବୁଙ୍କୁ ଜଣାଇଦେଇ ମାତ୍ର ଚାଲିଆସିଥିଲି । ତାହା ପରଦିନ ଶୁଣିଲି ଯେ, ଉପାଧ୍ୟାୟଜୀ ଆଶା କରିଥିଲେ ମୁଁ ତାଙ୍କ ସାଙ୍ଗରେ ଏକାଗାଡ଼ିରେ ଆସିବି ଓ କେଉଁଠି ଓହ୍ଲାଇବାକୁ ହେବ ତାହା ବତେଇବି । ସେ ମୋତେ ଖୋଜି ନ ପାଇ ରାତିଯାକ ଟାଇମ୍‌ଟେବୁଲ୍ ଧରି ଷ୍ଟେସନ୍ ମିଳାଇ ମିଳାଇ ଜଗତପୁର ଯାଏଁ ଆସିଲେ । ସେଠି ଓହ୍ଲାଇ କେନ୍ଦ୍ରପଡ଼ାଆଡ଼ର କାର୍ଯ୍ୟକ୍ରମ ସାରି କଟକ ଆସିଲେ । ସେତେବେଳେ ମହାନଦୀ ଡଙ୍ଗା ବା ଲଞ୍ଚରେ ପାରି ହେବାକୁ ପଡୁଥାଏ । ମୁଁ ନେହେରୁଙ୍କ ଗହଣରେ ପୁରୀ ଯାଏ ଗଲି । ସେଠି ମତେ ପ୍ରବଳ ମେଲେରିଆ ଜ୍ୱର ହେଲା । ଆରୋଗ୍ୟ ହେବାଯାଏ ମୁଁ ସେଠି ବାଲୁଦାଦାଙ୍କ ଘରେ ରହିଲି । ସେତେବେଳେ ଗୁକଅପା ମୋର ଖୁବ୍ ସେବା କରିଥିଲା ।

## ବରୀ ଅଞ୍ଚଳ

ଏହାପରେ ମୁଁ ବରୀ ଚାଲିଆସିଲି ଓ ସେଠାରେ ଜୀବନ ଆରମ୍ଭ ହେଲା । ବରୀରେ ପହଞ୍ଚି ସତୀଶବାବୁଙ୍କର ଚିଠି ପାଇଲି । ମୁଁ ହଠାତ୍ ଚାଲିଆସିବା ଦ୍ୱାରା ସେ ଖୁବ୍ କ୍ଷୁର୍ଣ୍ଣ ହେଇଥିଲେ । ମୋ ବିଷୟରେ ତାଙ୍କର ଅନେକ କିଛି ଯୋଜନା ଥିଲା । ମତେ ଅନେକ କିଛି ଶିଖେଇବା ପାଇଁ ଚାହୁଁଥିଲେ । ମାତ୍ର ଅନ୍ୟ କାହାରି ଯୋଜନା ଅନୁସାରେ ଗଢ଼ି ହେବା ମୋ ଦେଇ ହେବାର ନ ଥିଲା ।

୧୯୩୪ ମସିହା ବର୍ଷାଦିନେ ବାପା ହେରିକା ଯାଇ ବରୀରେ ପହଞ୍ଚିଥିଲେ । ଏ ଜାଗା ତାଙ୍କର କର୍ମକେନ୍ଦ୍ର ପାଇଁ ବାଛିବାର ଇତିହାସ ଅଛି । ୧୯୨୦ ରେ ବାପା ଯାଜପୁରର ସେକେଣ୍ଡ ଅଫିସର ଥିବାବେଳେ ଏଇଠିକୁ ସାହାଯ୍ୟ ବାଣ୍ଟି ଆସିଥିଲେ ଓ ଏହାକୁ ଦୁର୍ଭିକ୍ଷ ଅଞ୍ଚଳ ଘୋଷଣା କରିବା ପାଇଁ ସରକାରଙ୍କୁ ଜଣାଇଥିଲେ । ଉପରୁ ଏ ରିପୋର୍ଟକୁ ସୁଧାରିବା ପାଇଁ ଚାପ ଦିଆଯିବାରୁ ସେ ପ୍ରତିବାଦରେ ଚାକିରୀ ଛାଡ଼ିଥିଲେ । ୧୯୩୦ ର ଲବଣ ଆନ୍ଦୋଳନ ବେଳେ ବରୀ ଅଞ୍ଚଳ ମାତି ଉଠିଥିଲା ଓ ସେଠୁ ବହୁତ ପୁରୁଷ ଓ ମହିଳା ସତ୍ୟାଗ୍ରହୀ ବାହାରିଥିଲେ । ୧୯୩୪ ରେ ଗାନ୍ଧୀଜୀଙ୍କର ପଦଯାତ୍ରା ବରୀବାଟ ଦେଇ ଯାଇଥିଲା । ଗାନ୍ଧୀଜୀ ପଦଯାତ୍ରା ଶେଷରେ ବାପାଙ୍କୁ କହିଥିଲେ, "ମୁଁ ଯେଉଁବାଟେ ଗଲି ସେ ସବୁ ଜାଗାରେ କାମ କରିବାକୁ ବସିଗଲେ ପ୍ରତି

ପାହୁଣ୍ଡରେ ସୁନା ଫଳିବ ।" ଏହାପରେ ବାପା ବରୀ ଅଞ୍ଚଳକୁ ତାଙ୍କର ଗାଁ କାମର କେନ୍ଦ୍ର ପାଇଁ ବାଛିଲେ, ତାହା ସହିତ ତାଙ୍କର ପୂର୍ବର ସମ୍ବନ୍ଧ ଯୋଗୁଁ ।

ଏଇଟି ଗୋଟିଏ ବନ୍ୟାପ୍ରପୀଡ଼ିତ ଅଞ୍ଚଳ ଓ ଓଡ଼ିଶାର ଦରିଦ୍ରତମ ଅଞ୍ଚଳ ଭିତରୁ ଗୋଟିଏ । ଏହାକୁ ବନ୍ୟାପ୍ରପୀଡ଼ିତ କହିଦେଲେ କିଛି ବୁଝିହେବ ନାହିଁ । ଉତ୍ତର ପାଖରେ ଖରସୁଆଁ ସେପାରି ଓ ଦକ୍ଷିଣରେ ବିରୂପା ପାରିର ସୁରକ୍ଷିତ ନାଳକୂଳିଆ ଅଞ୍ଚଳର ହିତ ଦୃଷ୍ଟିରୁ ଏ ଅଞ୍ଚଳକୁ ବଳି ଦିଆହୋଇଛି । ଏ ଦୁଇପାଖ ଅଞ୍ଚଳକୁ ରକ୍ଷା କରିଥିବା ଖରସୁଆଁର ବାମପଟେ ବନ୍ଧ ଓ ବିରୂପାର ଦକ୍ଷିଣପଟ କ୍ରମେ ତଳଆଡ଼କୁ ଯାକି ହୋଇଯାଇଛି, ଏହା ଫଳରେ ବରୀ ଅଞ୍ଚଳରେ ପଶୁଥିବା ବନ୍ୟା ଜଳ ବାହାରି ଯିବାର ବାଟ କ୍ରମେ ସଂକୀର୍ଣ୍ଣ ହୋଇଯାଇଛି ଗୋଟାଏ କାହାଳୀର ମୁହଁପରି । ତା' ତଳକୁ ପୁଣି ଆଜି ଅଞ୍ଚଳକୁ ରକ୍ଷା କରୁଥିବା ଘେରିବନ୍ଧ ପୁରୁଣା କାଳର ସୋଡ଼ା ବୋତଲର ମୁହଁର କାଚ ଗୁଳି ପରି ପାଣି ଖଲାସ ବାଟକୁ ଆହୁରି ସଂକୀର୍ଣ୍ଣ କରିଦେଇଛି । ପୁଣି ଏ ଅଞ୍ଚଳରେ ଓଡ଼ିଶାର ତିନୋଟିଯାକ ପ୍ରଧାନ ନଦୀ ପ୍ରଣାଳୀକାର - ମହାନଦୀ, ବ୍ରାହ୍ମଣୀ ଓ ବୈତରଣୀର ପାଣି ପଶେ । ମହାନଦୀର ପାଣି ବିରୂପା ଓ ତା'ର ଶାଖା ବାଟେ, ବ୍ରାହ୍ମଣୀ ଓ ବୈତରଣୀର ପାଣି ତା'ର ଶାଖା ବୁଢ଼ା ନଈବାଟେ ଆସି ଏ ଅଞ୍ଚଳରେ ପଡ଼େ । ତେଣୁ ଯେକୌଣସି ନଈରେ ପାଣି ପଡ଼ିଲେ ତାହା ଆସି ଏଠି ପହଞ୍ଚିଯାଏ । ଆଉ ସବୁଯାକ ନଈ ଏକାସାଙ୍ଗରେ ବଢ଼ିଲେ ଆଉ ରକ୍ଷା ନାହିଁ । ଏକାବେଳକେ ତ୍ରିସ୍ପର୍ଶ ଯୋଗ । ଏ ଅଞ୍ଚଳଟି ବନ୍ୟାରେ ଯେପରି ଉବେଇଟୁବେଇ ହୁଏ, ସେପରି ଓଡ଼ିଶାର ଆଉ ଅନ୍ୟ କୌଣସି ଅଞ୍ଚଳ ହୁଏ ନାହିଁ ।

ବଡ଼ ବନ୍ୟାବେଳେ ଏଠି ଗାଁ ଦାଣ୍ଡରେ ପୁରୁଷେ ଲେଖାଏଁ ପାଣି ଚାଲେ । ଘର ସବୁ ପ୍ରଥମେ ତିନି ଚାରି ହାତ ଲେଖା ଉଚ୍ଚ ଡିହ ଉପରେ ଥିଲା । କିନ୍ତୁ ନଈ ଧାର କ୍ରମେ ପୋତି ହୋଇ ପଡ଼ିବାରୁ ଓ ତେଣେ ଜଙ୍ଗଲସବୁ କଟିଯାଇ ଜଣା ହେଇ ଚାଲିବାରୁ ପ୍ରତିବର୍ଷ ବଢ଼ବଢ଼ିର ଉଚ୍ଚତା ଟିକିଏ ଟିକିଏ ବଢ଼ିଚାଲିଛି । ୧୯୩୪ ରେ ଆମେ ପ୍ରଥମେ ଯିବାବେଳେ ଯେଉଁ ସ୍ତର ଥିଲା ଏବେ ୧୯୭୪ର ସ୍ତର ତାହାଠାରୁ ପାଞ୍ଚଫୁଟ ଅଧିକ ହେଇଗଲାଣି । ସେଥିପାଇଁ ଲୋକେ ଘରଡ଼ିହ କ୍ରମାଗତ ଅଳ୍ପ ଅଳ୍ପ ଉଚ୍ଚ କରିଚାଲିଛନ୍ତି, ବନ୍ୟା ସହିତ ପ୍ରତିଯୋଗିତାରେ ।

ଏଠାର ଘର ତିଆରି ପ୍ରଣାଳୀ ନିଧୋୟା ଅଞ୍ଚଳଠାରୁ ଭିନ୍ନ । ମାଟି କାନ୍ଥ ଉପରେ ଓରା ବା କଇଁଚି ଥୋଇ ନିଧୋୟା ଅଞ୍ଚଳର ଗାଁମାନଙ୍କରେ ଘର ତିଆରି କରିଥା'ନ୍ତି । ଏପରି ଘରେ ତ ଟିକିଏ ପାଣି କାନ୍ଥମୂଳରେ ବାଜିଲେ ସବୁ ଭୁଷୁଡ଼ି ପଡ଼ିବ । ବନ୍ୟା ଅଞ୍ଚଳରେ ଘରର ଚାଳ କାଠ ଖୁଣ୍ଟ ଉପରେ ରହିଥାଏ । ଏବେ ଇଟାଖୁଣ୍ଟ ବି କଲେଣି । ଘର ଚାରିପଟେ ବୁଲିଥିବା 'ବରାନ୍ଦା' ରେ ବାଉଁଶ ବାଡ଼ କଣ୍ଟାପିଟି ଲଗେଇ ଦିଆଯାଇ ଥାଏ ଓ ଏଥିରେ ବାଉଁଶ ଝାଟି ଦେଇ କାମୁଡ଼ା ଭିଡ଼ି ତାହା ଉପରେ ମାଟି ଲେସି କାନ୍ଥ ତିଆରି ହୁଏ । ବଢ଼ିପାଣି ଘରେ ପଶିଲେ କାନ୍ଥର ଯେତିକି ଯାଏ ପାଣିରେ ବୁଡ଼ିଥାଏ ସେତିକିରେ କେବଳ ମାଟି ଧୋଇଯାଏ । ବାକିତକ ଅକ୍ଷତ ରହେ । ବଢ଼ି ଛାଡ଼ିଗଲେ ସେତକ ପୁଣି ମାଟି ଛାଟି ଲେସି ଦିଆଯାଏ ।

ଉଚ୍ଚ ଡିହ ମଝିରେ ଗାଁ ଦାଣ୍ଡସବୁ ତ ବଢ଼ିବେଳେ ନାଳ ପରି ହୋଇଯାଏ । ସାଧାରଣ ରକମର ବଡ଼ ବଢ଼ିହେଲେ ଗାଁ ଦାଣ୍ଡରେ ସୁଅ ପଡ଼େ । ତିନି ଚାରି ବା ପାଞ୍ଚ ହାତ ପାଣି ହୁଏ । ଏପାଖ ଦାଣ୍ଡି ଓ ସେପାଖ ଦାଣ୍ଡିର ଲୋକେ ମୁହଁ ଚାହାଁଚୁହିଁ ହୋଇ ପିଣ୍ଡାରେ ବସିଥା'ନ୍ତି । ଡଙ୍ଗା ବିନା ସବୁ ଅଚଳ । ଗାଁ ପିଛା ଯେ ଅଳ୍ପ କେତେ ଖଣ୍ଡ ଡଙ୍ଗା ଥାଏ, ତାହାରି ସାହାଯ୍ୟରେ ଲୋକେ ଅତ୍ୟାବଶ୍ୟକୀୟ କାମ ସାରନ୍ତି । କିନ୍ତୁ ସମସ୍ତଙ୍କର ସବୁକାମ ପାଇଁ ଏତେ ଡଙ୍ଗା କାହିଁ ? ଦିନଯାକ ଚାହିଁ ବସିଥିବେ । କେତେବେଳେ ଯାଇ ଡଙ୍ଗାର ଦର୍ଶନ ମିଳିବ ତ ବହୁତ ନେହୁରା ହେଲେ ଯାଇ ସେ ନେଇ ଦୋକାନ ପିଣ୍ଡାରେ କି ଆଉ ସାହିରେ ଲଗେଇ ଦେବ । ଗରିବ ଲୋକଙ୍କର, ବିଶେଷକରି ହରିଜନଙ୍କର, ଅବସ୍ଥା ତ କହିଲେ ନ ସରେ । ମୂଲପାତି ସବୁ ବନ୍ଦ । ଘରେ ଆଉ କେତେ କ'ଣ ଥାଏ ଯେ ତିନିଦିନ ବସି ଖାଇବେ ? ଦୁଇ ତିନିଦିନ ଉପାସ ରହିଯିବା ତ ଅନେକ ପରିବାରଙ୍କ ଭାଗ୍ୟରେ ଘଟେ । ତା' ଉପରେ ପୁଣି କିଏ ଦୟାକରି ଏମାନଙ୍କ ପାଇଁ ଡଙ୍ଗା ଆଣୁଛି ?

'ଘରଭଙ୍ଗା' ବଢ଼ି ଆସିଲେ ଲୋକେ ଚାଳ ଉପରେ ଆଶ୍ରୟ ନିଅନ୍ତି । ଚାଳ ସହିତ ନିଜକୁ ରସି ଦେଇ ବାନ୍ଧିଦିଅନ୍ତି । ଯେପରି ଅସାବଧାନରେ ବା ନିଦ ବାଉଳାରେ ଖସିଯାଇ ଭାସି ନ ଯିବେ । ବଡ଼ ବଢ଼ିବେଳେ ଚାଳ ଉପରେ ଗର୍ଭବତୀ ସ୍ତ୍ରୀ ପିଲା ଜନ୍ମ କରିବାର ଘଟଣା ବି ଅନେକ ଥର ଘଟେ । ଗୋରୁ ଗାଈଙ୍କ ସମସ୍ୟା ଏତିକିବେଳେ ସବୁଠୁଁ ଉତ୍କଟ ହୁଏ । ଏ ଅଞ୍ଚଳରେ ଘାସ ପ୍ରଚୁର ହୁଏ । ସେଥିପାଇଁ ଗୋରୁଗାଈଙ୍କ ଅବସ୍ଥା ଭଲ । କିନ୍ତୁ ବଢ଼ିବେଳେ ଘାସ ମିଳିବ କେଉଁଠୁ ? ଉଚ୍ଚ ପାଳମାନଙ୍କରୁ ଘାସ କାଟି ଆଣିବା ପାଇଁ ସମସ୍ତଙ୍କୁ ଡଙ୍ଗାର ସୁବିଧା କେଉଁଠୁ ମିଳିବ ? ବଡ଼ ବଢ଼ିର ଆଶଙ୍କା ଦେଖାଦେଲେ ଗୋରୁଗାଈଙ୍କୁ ଯଥାସମ୍ଭବ ଉଚ୍ଚଜାଗାରେ ନେଇ ଛାଡ଼ି ଦିଆଯାଏ । ବନ୍ଧାଯାଏ ନାହିଁ । ବଢ଼ି ସେ ଜାଗାକୁ ବୁଡ଼େଇ ଦେଲେ ସେମାନେ ଆଣ୍ଠୁଏ ବା ଛାତିଏ ପାଣି ଭିତରେ ଠିଆ ହୋଇ ରହନ୍ତି । ପାଣି ପୁଣି ଛାଡ଼ିଯାଏ । ଅତି ବଡ଼ ବନ୍ୟାରେ କିଛି କିଛି ଗୋରୁଗାଈ ଭାସିଯା'ନ୍ତି । ମଣିଷ ବନ୍ୟା ସହିତ ଲଢ଼ିବାକୁ ଅଭ୍ୟସ୍ତ ହୋଇଥିବାରୁ ବନ୍ୟାରେ କ୍ୱଚିତ୍ କେହି ବୁଡ଼ିମରନ୍ତି । କେତେବେଳେ ଡଙ୍ଗାରେ ଗଛ ବାଡ଼େଇ ହେଇଗଲେ ବା ସେମିତି କିଛି ଦୁର୍ଘଟଣା ହେଲେ ପ୍ରାଣହାନି ଘଟେ ।

ଏ ଅଞ୍ଚଳରେ ଧାନ ଫସଲରେ ତ ସ୍ଥିରତା ନାହିଁ । ଭଲ ଉଧେଇଥିବ, କେଣ୍ଡା ଧରିଥିବ, ଭାଦ୍ରବ କି ଅଶିଣ ମାସରେ ବଢ଼ି ଆସିଲା ତ ସବୁ ଶେଷ । ରବି ଫସଲଟା ଏଠିକାର ମୁଖ୍ୟ ଆଶ୍ରୟ ଥାଏ । ମାଣ୍ଡିଆ, ଗହମ, ଯଅ, ସୋରିଷ, ଧନିଆ, ବିରି, କୋଳଥ ଏସବୁ ବନ୍ୟାର ପଟୁ ପଡ଼ିଥିବା ମାଟିରେ ପ୍ରଚୁର ହୁଏ । ଶୀତଦିନେ ପାଟ ସବୁ ଜାତିଜାତିକା ଫସଲରେ ହସିଉଠେ । ସୋରିଷ ଫୁଲର ହଳଦିଆ ଗାଲିଚା ଶହ ଶହ ମାଣ ଧରି ବିଛା ହୋଇଥାଏ । ସେମିତି କୋଉଠି ଧନିଆ କେଉଁଠି ରାଶି ଫୁଲ । ମଝିରେ ମଝିରେ ଛଣପଟ କିଆରୀର ଶାଗୁଆ କାନ୍ଥରେ ହଳଦିଆ ଫୁଲ ଧଡ଼ି । ଏ ପାଟ ଜମି ଭିତରେ କେନା କେନା ହେଇ ପାଣି ଧାର ବୋହିଯାଇଛି । ଉଚ୍ଚ-ଖାଲ ଜମି । ଏ ବି ତା'ର ଗୋଟାଏ ଶୋଭା ।

ପ୍ରକୃତି ସହିତ ବରାବର ଲଢ଼େଇ କରି ଏ ଲୋକଙ୍କର ଜୀବନୀଶକ୍ତି ଅଧିକ । ନିଧୋୟା ଅଞ୍ଚଳ ଅପେକ୍ଷା ସେମାନେ ଅଧିକ ସୁସ୍ଥ ଓ ଦରିଦ୍ର ହେଲେ ବି ଅଧିକ ତେଜସ୍ୱୀ, ଲଢୁଆ, ସହଜରେ ବି ଯାଆନ୍ତି ନାହିଁ । ସେ ଅଞ୍ଚଳ ସହିତ ୧୯୨୦ ର ସମ୍ପର୍କ, ୧୯୩୦ ଐତିହ୍ୟ ଆଦି ସାଙ୍ଗକୁ ସେଠା ଲୋକଙ୍କର ଗୁଣ-ଦୋଷ, ସେ ଅଞ୍ଚଳରେ ଦାରିଦ୍ର୍ୟ ଓ ଦୁରବସ୍ଥା ବାପାଙ୍କୁ ସେ ଅଞ୍ଚଳରେ ଯାଇ ବସିବାକୁ ପ୍ରେରଣା ଦେଇଥିଲା ।

## ସେବାଘର

ବାପା, ବୋଉ, ଚୁନୀ, ମାସୀ, ଗୋଦାବରୀ, ସୁରେନ୍ଦ୍ର ଓ ବିନୋଦ ପ୍ରଥମେ ଯାଇ ବରୀ-ବାଗଦାର ବାମନଚରଣ ଦାସଙ୍କର ଚୌପାଢ଼ୀରେ ଡେରା ପକାଇଥିଲେ । ବାମନବାବୁ କବି ନବକିଶୋରଙ୍କର ବାପା । ଗାନ୍ଧୀଜୀ ବରୀ ରହଣିବେଳେ ମଧ୍ୟ ଏହି ଚୌପାଢ଼ୀରେ ରହିଥିଲେ । ତା' ପରେ ସେଠୁ ପାଏବାଟ ଦୂରରେ ବଗୁଆଁ-ଜଳାମାଟିଆ ରାସ୍ତା କଡ଼ରେ ଖଣ୍ଡେ ଜାଗା ମିଳିବାରୁ ସେଠି ଆଶ୍ରମ ତିଆରି ପାଇଁ ବାପା ହେରିକା ନିଜେ ମାଟି ପକେଇ ଡିହ ବାନ୍ଧିବା ଆରମ୍ଭ କଲେ ଓ ଖୁବ୍ ସାଧାସିଧା ଚାଳଘର ତିଆରି କରି ସେଠି ରହିଲେ । ଏ ବଗୁଆଁ ଜଳାମାଟିଆ ରାସ୍ତାର କେବଳ ଏଇ ଆଶ୍ରମ ପାଖରେ ମାଇଲିଏ ଖଣ୍ଡେ ରାସ୍ତା ଅବସ୍ଥାରେ ଥାଏ । ବାକି ପୂର୍ବପଟେ ଅରଙ୍ଗାବାଦ ଓ ପଶ୍ଚିମପଟେ ନେଉଳା ପରେ ଠା'କୁ ଠା ଘାଇ ହୋଇଯାଇଥାଏ । ବର୍ଷାଦିନେ ରାସ୍ତା ଅଚଳ ହୋଇଯାଏ । ବଡ଼ ବଢ଼ିରେ ପୂରା ବୁଡ଼ିଯାଏ ।

ପାଞ୍ଚ ଫୁଟ ଖଣ୍ଡେ ଉଚ୍ଚ ଡିହ ଉପରେ ଆଶ୍ରମ ଘର ତିଆରି ହୋଇଥିଲା । ମୁଁ ଯିବାବେଳକୁ ସେଠି ଦୁଇଟା ଲମ୍ବ ଚାଳଘର ଥାଏ । ଘରର ଓଳି ଏତେ ନୀଚା ଯେ, ନଇଁକରି ଯିବା ଆସିବା କରିବାକୁ ହୁଏ । ଘରଗୁଡ଼ିକ ଚାଳିଶ ଫୁଟ ଲମ୍ବ ଓ ଦଶ ଫୁଟ ଖଣ୍ଡେ ଓସାରର ପୂର୍ବ ପଶ୍ଚିମ ହୋଇ ଲମ୍ବ । ମଝିରେ ପନ୍ଦର ଫୁଟ ଖଣ୍ଡେ ଓସାରର ଅଗଣା । ପୂର୍ବ ପଟକୁ ସାନ ଦୁଇ ବଖରା ଘର, ଖଣ୍ଡକରେ ରୋଷେଇ ଘର ଓ ଖଣ୍ଡକରେ ଭଣ୍ଡାର । ଉତ୍ତରପଟ ସାହାଳାର ଅଧେ ବସାଉଠା ପାଇଁ ରହିଥାଏ । ତା'ର ଭିତର ପଟଟା ଖୋଲା, କାନ୍ଥ ନ ଥାଏ । ଏଇ ମେଲାରେ ବାପା ବି ରହୁଥା'ନ୍ତି । ଉତ୍ତର ପଶ୍ଚିମକୋଣକୁ ଗୁହାଳ । ରାସ୍ତାଠୁଁ ପନ୍ଦର ହାତ ଖଣ୍ଡେ ଛାଡ଼ି ଛାଡ଼ି ଘରର ଡିହ ଥାଏ । ଡିହ ଚାରିପଟେ ଆଉ ଟିକିଏ ଜମି ବି ଥାଏ । ଏତକ ଜମିରେ ଓ ରାସ୍ତାକଡ଼ ନୟନଜୋଡ଼ିକୁ ପଟା ନେଇ ସେଥିରେ ପନିପରିବା ଚାଷ ହେଉଥାଏ । ସାମନାରେ ରାସ୍ତାକଡ଼ରେ ଗୋଟିଏ ନଳକୂଅରେ ଚାପା କଳ ଲାଗିଥାଏ ।

ଏ ଆଶ୍ରମର ସେବାଘର ନାଁ ଗାନ୍ଧୀଜୀ ହିଁ ଦେଇଥିଲେ । ନାମଟି ଅତି ଉପଯୁକ୍ତ, କାରଣ ତାହା ଗୋଟାଏ ଘର ଓ ପରିବାର ଭଳି ହିଁ ଚଳୁଥିଲା । ବୋଧହୁଏ ସେଇଠୁ ହିଁ ଓଡ଼ିଶାର ରଚନାତ୍ମକ କର୍ମୀମାନଙ୍କର ମଣ୍ଡଳୀରେ ପରିବାର ଭାବନାର ମୂଳଦୁଆ ପଡ଼ିଲା । ବାପା ବୋଉଙ୍କର

ଗୁଣ ଯେ, ସମସ୍ତ କର୍ମୀ, ପ୍ରତ୍ୟେକ କର୍ମୀଙ୍କୁ, ପରିବାରଭୁକ୍ତ କଲାଭଳି କରିନେଉଥିଲେ ଓ ଏହି ପରିବାରର ବିସ୍ତାର କ୍ରମେ ବଢ଼ି ଚାଲିଥିଲା ।

ମୁଁ ସେଠି ପହଞ୍ଚିବା ବେଳକୁ ସେଠି ଦୁଇ ପାଖରେ ଦୁଇ ହରିଜନ ବସ୍ତି ବାଗଡା ଓ ଆନନ୍ଦପୁରରେ ଯଥାକ୍ରମେ ସୁରେନ୍ଦ୍ର ଓ ବିନୋଦ କାମ କରୁଥା'ନ୍ତି । ସେମାନେ ସାରାଦିନ ସେ ବସ୍ତିରେ କଟାନ୍ତି । କେବଳ ଖାଇବାବେଳେ ବା ଅନ୍ୟ କିଛି କାମ ଥିଲେ ଆଶ୍ରମକୁ ଆସନ୍ତି । ସେଠି ସେମାନେ ସୂତାକଟା ଶିଖାଉଥା'ନ୍ତି । ଏସବୁ ତ ସ୍ଥୁଳ କାମ ଥାଏ । ସେମାନେ ଏସବୁ କାମ ମାଧ୍ୟମରେ ଲୋକଙ୍କ ଜୀବନରେ ଓତଃପ୍ରୋତଃ ହେବାପାଇଁ ଚେଷ୍ଟା କରୁଥା'ନ୍ତି । ସେବାଘରରେ ପଶ୍ଚିମକୁ ଫର୍ଲଙ୍ଗେ ଦୂରରେ ସେଇ ରାସ୍ତା କଡ଼ରେ ଆଉ ଗୋଟିଏ ଆଡ଼୍ଡ଼ା ଥାଏ । ତା'ର ଡାକ ନାମ 'ଚାଟୁବାବୁଙ୍କ କ୍ୟାମ୍ପ' । ସେଠି ପୁରୁଷକର୍ମୀମାନଙ୍କୁ ଖଦୀ ଓ ଗ୍ରାମସେବା କାମର ତାଲିମ୍ ଦିଆଯାଉଥାଏ । ବ୍ରଜମୋହନ ସିଂହ ଓରଫ୍ ଚାଟୁବାବୁ ତା'ର ଦାୟିତ୍ୱରେ ଥା'ନ୍ତି । ଓଡ଼ିଶାର ବହୁସଂଖ୍ୟକ କର୍ମୀ ଏଇଠୁ ତାଲିମ ପାଇଛନ୍ତି । ଏଠି ଲୁଗାବୁଣା ବ୍ୟବସ୍ଥା ଦାୟିତ୍ୱରେ ଥା'ନ୍ତି ଅଳକାଶ୍ରମ ପାଖର ଘନଭାଇ ।

ସେବାଘର ଓ କ୍ୟାମ୍ପ ମଝିରେ ରାସ୍ତା ଦୁଇପାଖରେ ଅନେକଗୁଡ଼ିଏ ମଶାଣି । ଏଠି ଦେଖାଗଲା ଯେ ମରିବା ପରେ ବି ଜାତି ମଣିଷକୁ ଛାଡୁନାହିଁ । ସେଥିପାଇଁ ବ୍ରାହ୍ମଣ, କରଣ, ବାରିକ, ହରିଜନ ସମସ୍ତଙ୍କର ମଶାଣି ଅଲଗା ଅଲଗା । ଏଠି ପାଖପାଖ ହେଇ ଏତେଗୁଡ଼ିଏ ମଶାଣି ଥିବା ଯୋଗୁଁ ଆଗେ ସେ ରାସ୍ତାରେ ସନ୍ଧ୍ୟା ପୂର୍ବରୁ ହିଁ ଲୋକ ଚଳାଚଳ ବନ୍ଦ ହୋଇଯାଉଥିଲା । ଅଣଖିଆରେ ଯେମିତି ଲୋକେ ଦାଦାକୁ ଗୁଣିବିଦ୍ୟାରେ ପାରଙ୍ଗମ ବୋଲି ବିଚାରୁଥିଲେ ଏଠି ବି ଲୋକେ ପ୍ରଥମେ ଆଶ୍ରମବାଲାଙ୍କୁ ଅସାଧାରଣ ବୋଲି ଭାବୁଥିଲେ । ନ ହେଲେ ଏ ମଶାଣି ମଝିରେ ଘର କରି ରହନ୍ତେ ? କ୍ରମେ ଲୋକଙ୍କର ଭୟ ଭାଙ୍ଗିଗଲା ଓ ସେବାଟେ ଦିନରାତି ସ୍ୱାଭାବିକ ଲୋକ ଚଳାଚଳ ଲାଗିରହିଲା ।

ଚୁନୀ, ଗୋଦାବରୀ,ମାସୀ, ଶୋଭାଅପା ଓ ବୋଉ ଯାଇ ପାଖ ପାଖ ଗାଁମାନଙ୍କରେ ଲୋକଙ୍କ ସହିତ ମିଳାମିଶା କରି ସୂତାକଟା, ସଫେଇ, ଅସ୍ପୃଶ୍ୟତା ନିବାରଣ ଆଦିର ପ୍ରଚାର କରୁଥା'ନ୍ତି । ଖଦୀକାମ ସାଙ୍ଗକୁ ସେଠି ମହୁଚାଷ ମଧ୍ୟ ଆରମ୍ଭ ହେଇଯାଇଥାଏ । ସେବାଘରେ କେତୋଟି ମହୁମାଛି ଦଳ ପୋଷା ହୋଇଥା'ନ୍ତି । ଏଠି ମହୁଚାଷ ଓଡ଼ିଶା ଭିତରେ ପ୍ରଥମ ଆରମ୍ଭ ହୋଇଥିଲା ଓ ଏହାର ଶ୍ରେୟ ଟୁଂଖୁ ମାମୁଁଙ୍କର (ନିତ୍ୟାନନ୍ଦ କାନୁନ୍‌ଗୋ) । ସେ ଦକ୍ଷିଣରେ ମାର୍ତଂତମ୍‌ଠାରେ ଥିବା ୱାଇ ଏମ୍.ସି.ଏ.ର ଗ୍ରାମସେବା କେନ୍ଦ୍ରରୁ ଏହା ଶିଖି ଆସିଥିଲେ ଓ ଗୋଟିଏ ନା ଯୋଡ଼ିଏ ମହୁମାଛି ଦଳ ସହିତ ବରୀରେ ପହଞ୍ଚି ସେଠି ମହୁଚାଷର ଭିତ୍ତି ସ୍ଥାପନ କରିଥିଲେ ।

ସେବାଘରେ ନାରୀକର୍ମୀ ଓ ସାନ ସାନଝିଅମାନଙ୍କୁ ଶିକ୍ଷା ଦେବାର କାମ ନିଆଯାଥାଏ । କର୍ମୀମାନଙ୍କର ସ୍ତ୍ରୀ ବା ଭଉଣୀ ତଥା ଦେଶସେବା କରିବାକୁ ଇଚ୍ଛୁକ ମହିଳାମାନେ ଆସି ସେଠି

କିଛିଦିନ ଲେଖା ରହୁଥା'ନ୍ତି । ବେଶି ଲୋକ ରହିବାର ବ୍ୟବସ୍ଥା ତ ନଥାଏ । ଚାରି ପାଞ୍ଚଜଣ ଲେଖା ଅତି ବଡ଼ରେ ରହନ୍ତି ଓ ଆଶ୍ରମର ଦୈନନ୍ଦିନ କାମ ମାଧ୍ୟମରେ ଯାହା ଶିକ୍ଷାଲାଭ କରିବାର କରନ୍ତି । କେତେଜଣ କର୍ମୀଙ୍କର ଦ ସାତ ବର୍ଷର ଝିଅମାନଙ୍କୁ ବି ରଖାହେଉଥାଏ । ଏମାନଙ୍କ ଭିତରେ ପ୍ରଥମ ଦଫାରେ ଥିଲେ ନୀଳମଣି ପ୍ରଧାନଙ୍କ ଝିଅ ବାସନ୍ତୀ,ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ଝିଅ ଦୁଲ, କବି ବୀରକିଶୋରଙ୍କ ଭାଣିଜୀ ସିତୁ ଓ ଅନ୍ତର୍ଯ୍ୟାମୀ ପଣ୍ଡାଙ୍କ ଝିଅ ଗାୟତ୍ରୀ । ତା' ପରେ ମାଳ, କିରଣ ହେଉିକା ସ୍ଥାନୀୟ ପିଲା ଓ ମିନି, ବେଙ୍ଗ ହେଉିକା ବାହାରୁ ଆସିଲେ ।

ସେବାଘରର ନିତ୍ୟକର୍ମରେ ପ୍ରାର୍ଥନା, ସୂତାକଟା ଓ ବଗିଚାକାମ କରାଯାଉଥାଏ । ସଫେଇ ପ୍ରତି ମଧ୍ୟ ଦୃଷ୍ଟିଥାଏ ଓ ପାଇଖାନା ସଫେଇ ମଧ୍ୟ ସମସ୍ତେ ଶିଖୁଥା'ନ୍ତି ଓ କରୁଥା'ନ୍ତି । ସାନପିଲାଙ୍କୁ ପଢ଼େଇବା ପାଇଁ ଜଣେ ଶିକ୍ଷକ ରହିଥିଲେ । ଜଣେ ହିନ୍ଦୀ ଶିକ୍ଷକ ମଧ୍ୟ କର୍ମୀମାନଙ୍କୁ ହିନ୍ଦୀ ଶିଖାଇବା ପାଇଁ ଅନେକ ଦିନଯାଏ ଥିଲେ । ଦିନାକେତେ ଜଣେ ସଙ୍ଗୀତ ଶିକ୍ଷକ, ଲଛମନ ଖାଡ଼ଙ୍ଗା ଗଞ୍ଜାମରୁ ଆସି ରହିଥିଲେ ପିଲାମାନଙ୍କୁ ଗୀତବାଦ୍ୟ ଶିଖେଇବା ପାଇଁ । ଏ ଶିକ୍ଷକମାନଙ୍କର ରହିବାର ବନ୍ଦୋବସ୍ତ ଗାଁରେ ହୋଇଥାଏ ।

ସେବାଘରର ଆଶ୍ରମ ଜୀବନରୁ ସେଠାକାର ଅସଲ କାମର ଧାରଣା ମିଳିବ ନାହିଁ । ଅସଲ କଥା ଥିଲା ଗାଁର ସବୁଶ୍ରେଣୀର ଲୋକଙ୍କ ସହିତ ଘନିଷ୍ଠଭାବରେ ମିଶିବା, ସେମାନଙ୍କର ସୁଖଦୁଃଖ ସହିତ ନିଜକୁ ମିଶାଇଦେବା ଓ ସେମାନଙ୍କ ଭିତରେ ସାହସ, ଆତ୍ମବିଶ୍ୱାସ ଓ କର୍ମପ୍ରେରଣା ଆଣିଦେବା । ସେଠି ଘର ଘର ବୁଲି ବ୍ୟକ୍ତିଗତ ସମ୍ପର୍କ କରାଯାଉଥିଲା ଓ ବାପାଙ୍କର ଯେତେ ଲୋକଙ୍କ ସହିତ ପ୍ରତ୍ୟକ୍ଷ ପରିଚୟ ଥିଲା ସେତେ ଅନ୍ୟ କାହାରି ଅନ୍ୟ କେଉଁଠି କ୍ୱଚିତ ଥିବ ।

ବରୀ ଅଞ୍ଚଳରେ ଅନେକଗୁଡ଼ିଏ ସାନ ସାନ ସ୍ଥାନୀୟ ଜମିଦାର ଥା'ନ୍ତି । ସେମାନେ ଚିରାଚରିତ ରୀତି ଅନୁସାରେ ଗାଁର ଦରିଦ୍ର ଲୋକ ଓ ପ୍ରଜାଙ୍କ ଉପରେ ନାନା ପ୍ରକାର ଉତ୍ପୀଡ଼ନ ଚଳେଇଥା'ନ୍ତି । କାହାରିକୁ ଜବତ କରିବାର ଥିଲେ ଗୋଟାଏ ଉପାୟ ଥିଲା ରାତିଅଧରେ ତା'ର ଦାଣ ଦୁଆରେ ମଶାଣିରୁ ହାଡ଼ ନେଇ ଥୋଇଦେବା । ସେ ସକାଳୁ ଉଠି ଆଉ ଘରୁ ବାହାରିପାରିବ ନାହିଁ । ହାଡ଼କୁ ଘର ସାମନାରୁ ଉଠେଇ ଫିଙ୍ଗିଦେଲେ ହାଡ଼ ଛୁଇଁବା ଯୋଗୁ ତାକୁ ପଇସା ଖର୍ଚ୍ଚ କରି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ଏହି ନ୍ୟାୟରେ ଫଳନ୍ତି ଆମ୍ବ ବା ପଣସ ତୋଟାକୁ ସୁରକ୍ଷିତ ରଖିବା ବି ସହଜ ଥିଲା । ତା' ଚାରିପଟେ ଖଣ୍ଡେ ପାଳ ଦଉଡ଼ି ଘେରେଇଦେଇ ସେଥିରେ କେତେଖଣ୍ଡ ହାଡ଼ ବୁଲେଇ ଦେଲେ ସେ ତୋଟା ଭିତରକୁ ଆଉ କେହି ପଶିବେ ନାହିଁ ।

ହରିଜନମାନେ ସେଠି ପ୍ରାୟ ମିନ୍ହା ପ୍ରଜାରୂପେ ଥା'ନ୍ତି । ତାଙ୍କର ଘର ତଳ ଜମିରେ ସେମାନଙ୍କର ଅଧିକାର ନ ଥାଏ । ଜମିଦାର ଆସି ସେମାନଙ୍କୁ ରାତିଅଧରେ ଘରୁ ଉଠେଇ ଦେଇପାରନ୍ତି । କେତେଜଣଙ୍କର ଏଇଟା ଧନ୍ଦା ଥିଲା । କିଛି ଟଙ୍କା ପଇସା ଲୋଡ଼ାହେଲେ କୌଣସି ଏକ ହରିଜନ ଘରକୁ ରାତିରେ ଯାଇ ତାକୁ ଉଠାଯିବା ପାଇଁ ଧମକଚମକ ଦେବେ ଓ

କିଛି ଟଙ୍କା ଆଦାୟକରି ତାକୁ ଛାଡ଼ିଦେବେ । ମିଛ ମକଦ୍ଦମା ମଧ୍ୟ ଗରିବଙ୍କୁ ହଇରାଣ କରିବାର ଆଉ ଏକ ଉତ୍ତମ ପନ୍ଥା । ସେଠୁ ଯାଜପୁର କଚେରୀ ତେର ମାଇଲ ବାଟ । ନଈ ନାଳ ପାରି ହୋଇଯାଇ ପହଞ୍ଚିବାକୁ ଅଧାଦିନ ଚାଲିଯାଏ । ଗୋଟାଏ ଗୋଟାଏ ତାରିଖରେ ଜାଣି ନିକୁଛରେ ଦୁଇଦିନ ନିକମା । ଜଣଙ୍କ ନାଁରେ ମକଦ୍ଦମା ଦାଏର କରି ପେଶ୍‌କାରକୁ କିଛି ଅଣ୍ଟାଗୁଞ୍ଜା ଦେଇ ଦୁଇ ତିନିଥର ତାରିଖ ପକେଇଦେଲେ ସେ ମୁଦାଲା ବିଚରା ବାପ୍ ବାପ୍ କରି ଜମିଦାରଙ୍କ ଗୋଡ଼ ଜାବୁଡ଼ିଧରି ପଡ଼ିଯିବ । ଥରେ କଚେରୀକୁ ଗଲେ ଦୁଇଦିନ ମୂଲପାତି ବନ୍ଦ, ତା' ଉପରକୁ ଓକିଲ ପଇସା !

ମୁଁ ଯେତେବେଳେ ପ୍ରଥମେ ପହଞ୍ଚିଲି ଦିନେ ସନ୍ଧ୍ୟାରେ ଖବର ମିଳିଲା ଯେ, ଜଣେ ସ୍ଥାନୀୟ ଜମିଦାର ଜଣେ ଲୋକକୁ ବିଚ୍ ରାସ୍ତାରେ ବାଡ଼େଇଛନ୍ତି । ମୋର ସମାଜବାଦୀ ରକ୍ତ ଗରମ ହୋଇ ଉଠିଲା ଓ ତୁରନ୍ତ ଗୋଟାଏ କିଛି ପ୍ରତିକାର  କରିବା ଚାହି ବୋଲି ମନ ଡାକିଲା, ମାତ୍ର ବାପା ସେ ବିଷୟରେ ବିଶେଷ କିଛି  ଉଚ୍ଚ ବାଚ୍ୟ ନ କରି ଚୁପ୍ ରହିଲେ । ମତେ ଖରାପ ଲାଗିଲା । ମାତ୍ର ନୂଆ ଯାଇଥାଏ । କୌଣସି ଅନୁଭୂତି ବି ନ ଥାଏ । ତେଣୁ ଚୁପ୍ ରହିଲି । ପରେ ଦେଖିଲି ହରିଜନ ଓ ଗରିବ ଲୋକଙ୍କ ଭିତରେ ଯେଉଁ ଜାଗରଣ ଆସିଲା ଓ ଉଚ୍ଚଜାତିର ଲୋକଙ୍କ ସହିତ ଘନିଷ୍ଠ ସମ୍ପର୍କ ଯୋଗୁଁ ସେମାନଙ୍କର ମନୋଭାବ ବି କିଛିଟା ଯେ ବଦଳିଲା ତାହା ଫଳରେ କ୍ରମେ ଏ ଧରଣର ଘଟଣା ବିରଳ ହୋଇଗଲା ।

ବାପାଙ୍କର ପଦ୍ଧତି ଥାଏ କୌଣସି ଘଟଣାନେଇ ନିଜେ କିଛି ହୈ ଚୈ କରିବା  ପରିବର୍ତ୍ତେ ସଂପୃକ୍ତ ଲୋକଙ୍କୁ ନିଜେ ପ୍ରତିକାର ପାଇଁ ସକ୍ଷମ କରାଇବା । ସେ ସେମାନଙ୍କୁ ବୁଦ୍ଧି ବତେଇ ଦିଅନ୍ତି, ମାତ୍ର ନିଜେ ସେଥିରେ ଛନ୍ଦି ହୁଅନ୍ତି ନାହିଁ । ଅପରପକ୍ଷରେ ଜମିଦାରମାନଙ୍କ ସହିତ ସମ୍ପର୍କ ରଖି ସେମାନଙ୍କର ଭଲ ଦିଗଟାର ବିକାଶର ଚେଷ୍ଟା କରନ୍ତି । ଲୋକଙ୍କ ଭିତରେ ପରନିର୍ଭରଶୀଳତା ପରିବର୍ତ୍ତେ ଆତ୍ମନିର୍ଭରଶୀଳତା ଆଣିବାର ତାଙ୍କର ଉଦ୍ୟମ ଅନେକାଂଶରେ ସଫଳ ହୋଇଥିଲା । ତଥାପି ନିର୍ଭରଶୀଳତା ଯେ ନ ଥିଲା ତାହା ନୁହେଁ । ଗୋପବାବୁ ଅଛନ୍ତି ଏକଥା ହିଁ ଲୋକଙ୍କୁ ସାହସ ଦେଉଥିଲା ।

ମନୁ ଜେନା ଜଣେ ଭୂମିହୀନ ହରିଜନ, ମିନ୍ହା ପ୍ରଜା । ଜମିଦାର ତା' ନାଁରେ ମିଛ ମକଦ୍ଦମା କଲେ ଯେ ସେ ଜମିଦାରଙ୍କର ଫେରାଦ ହେଲା । ବାପା ତାକୁ ବୁଝେଇଲେ ଦେଖ ତୁ ଓକିଲ ଦେଇ ଲଢ଼ିବସବୁ ତ ମରିଯିବୁ । ଖବରଦାର, ସେ ପାଲରେ ପଡ଼ିବୁନାହିଁ । ତୁ ଏମିତି ଛିଣ୍ଡା ଲୁଗା ପିନ୍ଧି କଚିରୀରେ ହାକିମ ଆଗରେ ଛିଡ଼ା ହେଇଯିବୁ, କହିବୁ, ଧର୍ମାବତାର, ମୁଁ ଗରିବ ଲୋକ, ମୋର ଅବସ୍ଥା ତ ସ୍ୱଚକ୍ଷୁରେ ଦେଖୁଛନ୍ତି । ମୋର ଏ ସାଆନ୍ତଙ୍କ ସାଙ୍ଗରେ ଲଢ଼ିବାର ବଳ ନାହିଁ । ଆପଣ ମତେ ମାରିଲେ ମାରିବେ, ତାରିଲେ ତାରିବେ । ଜେଲ ଦେବେ, ଯାହା କରିବେ, ଆପଣଙ୍କର ଦୟା, ମାତ୍ର ଖାଲି ଥରେ ସରଜମିନ୍ ତଦନ୍ତର ହୁକୁମ ହେଉ ଯେ ମୁଁ ପ୍ରକୃତରେ ତାଙ୍କ ମାଟି ନେଇଛି କି ନାହିଁ ।"

ସେ ସେୟା କଲା ଓ ସତକୁ ଜମିଦାରଙ୍କ ମକଦ୍ଦମା ଖାରଜ ହୋଇଗଲା । ଏହିପରିସବୁ ଉପାୟରେ ଗରିବ ଲୋକଙ୍କର ଆତ୍ମବିଶ୍ୱାସ ବଢୁଥିଲା । ସେମାନେ ଜମିଦାର ଓ ବଡ଼ଲୋକଙ୍କୁ ମୁହେଁ ମୁହେଁ ଜବାବ ଦେବାର ସାହସ କରୁଥିଲେ । ଅନେକ ପରେ ଆଉ ଗୋଟିଏ ଘଟଣା । ସେତେବେଳକୁ ଦ୍ୱିତୀୟ ମହାଯୁଦ୍ଧ ସରିଗଲାଣି । ଗୋଟାଏ ଥାନାରୁ ଆଉ ଗୋଟାଏ ଥାନାକୁ ଧାନ ଚାଉଳ ନେବା ଉପରେ କଟକଣା ଉଠିଯିବାରୁ କନିକାଆଡୁ ବେପାରୀମାନେ ଧାନଡଙ୍ଗା ନେଇ ଆସିଥା'ନ୍ତି । ସାଧାରଣତଃ କନିକା ଅଞ୍ଚଳର ଧାନ ହିଁ ବରୀ ଅଞ୍ଚଳର ଲୋକଙ୍କ ଅଭାବ ମେଣ୍ଟାଏ । କଟକଣା ଯୋଗୁଁ ଲୋକେ ବହୁତ ହଇରାଣ ହେଉଥିଲେ । ସେଦିନ ଧାନଡ଼ଙ୍ଗା ଆସିବାରୁ ଖୁବ୍ ଖୁସିରେ କିଣିବାକୁ ଜମାହେଲେ । ଏହି ସମୟରେ ବରୀର ସପ୍ଲାଇ ଇନ୍‌ସ୍‌ପେକ୍ଟର ଯାଇ ସେଠି ପହଞ୍ଚିଲେ ଓ ଧାନଡଙ୍ଗା ଜବତ କରିବି, ଯା କରିବି, ତା' କରିବ ବୋଲି ଧମକ ଚମକ ଆରମ୍ଭ କଲେ । ତାଙ୍କର ଉଦ୍ଦେଶ୍ୟ ଥାଏ ଡଙ୍ଗାବାଲା ବେପାରୀଙ୍କଠୁଁ କିଛି ପଇସା ଅସୁଲ କରିବା ।

ସବୁଲୋକ ତ କଟକଣା ଉଠିବା କଥା ଜାଣି ନ ଥା'ନ୍ତି । ଗୋଟାଏ ଦଳ ବଡ଼ ବିବ୍ରତ ହୋଇ ବାପାଙ୍କ ପାଖକୁ ଦୌଡ଼ି ଆସିଲେ । ବାପା ସେମାନଙ୍କୁ କହିଲେ ଯେ କଟକଣା ଉଠିଯିବା ଖବର ଏକଦମ୍ ଠିକ୍ । ତମେ ସେ ସପ୍ଲାଇ ଇନ୍‌ସ୍‌ପେକ୍ଟରଙ୍କୁ ଯାଇ ସେ କଥା କୁହ ଓ ଗୋଳମାଳ କରିବାକୁ ମନାକର । ଯଦି ସେ ନମାନିବ ତେବେ ତମେ ତା କଥା ନଶୁଣି ତାକୁ ଆଡ଼େଇଦେଇ ତମର ଧାନ କିଣା କିଣି କରି ଯିବ । ଲୋକ ଫେରିଯାଇ ଇନ୍‌ସ୍‌ପେକ୍ଟରଙ୍କୁ ବୁଝାଇଲେ । ଶେଷକୁ ସେ ନମାନିବାରୁ ତାକୁ ଆଡ଼େଇ ଦେଇ ଡଙ୍ଗା ପାଖକୁ ଚାଲିଗଲେ । ସେ ବିଚରା ଏ ଠେଲାରେ ପାଣିରେ ପଡ଼ିଗଲା । ତା'ର ଟୋପିଟା ଭାସିଗଲା । ତା' ପରେ ସେ ପଳେଇଯାଇ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଫେରାଦ ହେଲା ଓ ସେଠି ସେଇପରି ଜାଲିଲି ହେଲା ବୋଲି ଶୁଣିଲୁ ।

ତେବେ ଏପରି ଉପଲକ୍ଷ୍ୟ ତ କେତେବେଳେ କେମିତି ଘଟେ । ଦୈନନ୍ଦିନ କାମଥାଏ ଲୋକଙ୍କ ଜୀବନ ଓ ସମସ୍ୟା ସହିତ ପରିଚିତ ହେବା ଓ ରଚନାତ୍ମକ କାମ ମାଧ୍ୟମରେ ସେ ସବୁର ସମାଧାନରେ ସାହାଯ୍ୟ କରିବା । ବାପା ଠିକ୍ ଉଦୁଉଦିଆ ଖରାବେଳେ ବାହାରିଯାଇ ବିଲ ବାଡ଼ି ତୋଟାରେ ବୁଲିବେ । ଗାଈଆଳ ପିଲାଙ୍କ ସାଙ୍ଗରେ ଗପ କରିବେ, ତାଙ୍କ ସାଙ୍ଗରେ ମାଙ୍କଡ଼ ହୁରୁଡ଼େଇବେ, ତାଙ୍କଠୁଁ ଗାଁର ଦୁଃଖ ସୁଖ ଖବର ସଂଗ୍ରହ କରିବେ । ବଡ଼ ବଡ଼ିବେଳେ ଗୋଟାଏ ପଟେଇ ଉଡ଼ାକରି ବାହାରିଯାନ୍ତି । ଆଖ ପାଖର ଚାରି ପାଞ୍ଚ ଖଣ୍ଡ ଗାଁର ଅବସ୍ଥା ଦେଖି ଆସନ୍ତି । ଲୋକଙ୍କୁ ସଂଗୋଳିବା ସାଙ୍ଗେ ସାଙ୍ଗେ ସାହସ ଦିଅନ୍ତି । ମଝିରେ ମଝିରେ ଗାଁମାନଙ୍କରେ ବୁଲି ଛୋଟ ଛୋଟ ସଭା କରନ୍ତି ।

ବୋଉ ସେବାଘରର ସମସ୍ତ ଦେଖାଚାହାଁ କରେ, ବେଳେ ବେଳେ ଗାଁ ବୁଲି ଯାଏ । ତା'ର ଗୋଟାଏ କାମ ଥିଲା ହୋମିଓପ୍ୟାଥିକ ଔଷଧ ଦେବା । ବାପା ବି ଦେଉଥିଲେ । ସେ

ଅଞ୍ଚଳରେ କୌଣସି ଡାକ୍ତର ନ ଥାନ୍ତି । ବାମନବାବୁ ବାୟୋକେମିକ ଓ ହୋମିଓପାଥି କରୁଥାନ୍ତି । ହୋମିଓପ୍ୟାଥିରେ ଥିଓରୀ ବା ତତ୍ତ୍ୱଜ୍ଞାନ ମତେ ବୈଜ୍ଞାନିକ ଦୃଷ୍ଟିରୁ ବିଶ୍ୱାସଯୋଗ୍ୟ ମନେ ନ ହେଉଥିଲେ ମଧ୍ୟ ମୁଁ ଦେଖୁଥାଏ ଯେ ତାହା ଦ୍ୱାରା ପ୍ରକୃତରେ ଉପକାର ହେଉ ଥାଏ । ହଇଜା ବ୍ୟାପିଲେ ସେତେବେଳେ ଯା ଛଡ଼ା ଅନ୍ୟ ପନ୍ଥା ନ ଥିଲା । ଏ ଚିକିତ୍ସାରେ ଯେତେ ରୋଗୀ ସୁସ୍ଥ ହେଉଥିଲେ ତାହାକୁ ଆକସ୍ମିକ କୁହାଯାଇପାରିବ ନାହିଁ । ବୋଉ ପାଖକୁ ଔଷଧ ନେବା ପାଇଁ ପ୍ରତିଦିନ ବହୁତ ଲୋକ ଆସନ୍ତି । ସେମାନେ ସେତେବେଳେ ବୋଉକୁ ବରାବର 'ବାବୁ' ଡାକୁଥିଲେ । ବୋଧହୁଏ ଭାବୁଥାନ୍ତି ଏ ସ୍ତ୍ରୀଲୋକ ପଦାରେ ବୁଲୁଛି, ନାନା ପ୍ରକାରର କାମ କରୁଛି, ଯା ପ୍ରତି ଗତାନୁଗତିକ ମା କି ଅପା କି ଦେଈ କେମିତି ପ୍ରଯୋଜ୍ୟ ହେବ ?

ସେବାଘରେ କେତୋଟି ଗାଈ ଓ ଗୋଟିଏ ଦେଶୀ ଷଣ୍ଢ ଥା'ନ୍ତି । ବରୀ ଅଞ୍ଚଳରେ ଗାଈଜାତି ଖୁବ୍ ଭଲଥିଲା । ବନ୍ୟାଞ୍ଚଳ ହେଉଥିବା ଯୋଗୁଁ ପାଟରେ ଖୁବ୍ ଘାସ ହୁଏ । ବିରି, କୋଳଥ ଆଦି ରବି ଫସଲର ବୋଡି ବି ମିଳେ । ଗାଈଙ୍କର ଖାଦ୍ୟର ଅଭାବ ନଥିଲା, ବଡ଼ ବଡ଼ି ବେଳ ଛଡ଼ା । ଆମ ଗାଈଗୁଡ଼ିକ ବିଭିନ୍ନ ଜାତିର ଥା'ନ୍ତି । ଗୋଟିଏ ଗାଈ ଜୀବରାମଜୀ ଦେଇଥା'ନ୍ତି, ଲାଲ ସିନ୍ଧୀ । ତା' ନାଁ ପାଟ । ଆଉସବୁ ଦେଶୀ ଗାଈ ଥା'ନ୍ତି । ଯମୁନା, କାବେରୀ, ସୁରଭୀ, ଷଣ୍ଢ ନା ଗଣେଶ । ବେଙ୍ଗମାମୁଁ ଗୋଟିଏ ହରିୟାନା ଗାଈ ଦେଇଥିଲେ ତା' ନାଁ ସୁକୁମାରୀ । ଗାଈମାନଙ୍କର ଦାୟିତ୍ୱରେ କଳପ ଥା'ନ୍ତି । ଲୋକମାନଙ୍କ ଠାରୁ ଭୋଟ ଆଦାୟ ପାଇଁ ରାଜନୀତିକ ଦଳମାନେ ଯେପରି ଭାବରେ 'ଗରିବ ହଟାଓ' ଆଦି ବୁଆକୁ ବ୍ୟବହାର କରନ୍ତି ତା'ର ମୌଳିକ ମର୍ମଟା କଳପ ଆବିଷ୍କାର କରି ନିଜ କାମରେ ଲଗାଉଥିଲେ । ସେ ଗାଈମାନଙ୍କୁ ଗୋଟି ଗୋଟି କରି ଗୁହାଳରୁ ପଦାରେ ବାନ୍ଧିବାକୁ ନେବାବେଳେ ଗୋଟିଏ ହାତରେ ପଘା ଓ ଆର ହାତରେ ବିଡ଼ାଏ ଛଣ ଆଗକୁ ବଢ଼େଇ ଧରିଥା'ନ୍ତି । ଗାଈ ସେ ଛଣ ବିଡ଼ାକୁ ଲୋଲୁପ ଦୃଷ୍ଟିରେ ଚାହିଁ କଳପ ତାକୁ ଯୁଆଡ଼େ ନିଅନ୍ତି ସେଆଡ଼େ ବିନା ଆପତ୍ତିରେ ଚାଲିଯାଏ ।

ବାପାଙ୍କର ବେଳେବେଳେ ଦୁର୍ଦ୍ଦମନୀୟ କ୍ରୋଧ ବାହାରେ । ଥରେ ସେବାଘରେ ଗାଈମାନଙ୍କର ସେବା ଯତ୍ନରେ ଅବହେଳା ହେଲା ବୋଲି ସେ ଠିକ୍ କଲେ ଯେ ବଡ଼ ବଡ଼ ଗାଈଗୁଡ଼ାକ ଆଉ ରଖାଯିବ ନାହିଁ । ସୁକୁମାରୀ ଓ ଆଉ ଗୋଟାଏ ଗାଈକୁ ବାଛୁରୀ ସମେତ ନେଇ ଲୋକ ବାହାରିଲେ ଆମ ମାମୁଁଘର ଗାଁ କୁମୁଡା ଜୟପୁରରେ ଛାଡ଼ିଆସିବାକୁ । ପରଦିନ ସେ ଲୋକମାନେ ଫେରିଆସିଲେ, ଗୋଟିଏ ଗାଈଧରି । ସେମାନେ ଖବର ଦେଲେ ଯେ, ନଈପାରି ହେଲାବେଳେ ଗୋଟାଏ ଗାଈ ପାଣିରେ ଭିଜି ବେମାର ହେଲା ଓ ମରିଗଲା । ବାପାଙ୍କର କ୍ରୋଧ ଏକାବେଳକେ ଥଣ୍ଡା ପଡ଼ିଗଲା ।

# ଗାଁରେ କାମ

ସେଠି ଦେହ ମିହନ୍ତ କରିବାର ଆଦର୍ଶ ରଖାଯାଇଥାଏ । ସମସ୍ତେ ପାରୁପର୍ଯ୍ୟନ୍ତ ମେହନତ୍ କରୁଥା'ନ୍ତି । ବାପା ବିଲବାଡ଼ିରେ ମୂଲିଆଙ୍କ ସାଙ୍ଗରେ ସମାନ ତାଳରେ କାମ କରନ୍ତି, ବରଂ ସାଧାରଣ ମୂଲିଆଙ୍କ ଠୁଁ କେତେ ଅଂଶରେ ବେଶୀ । ଚାଟୁବାବୁ ପ୍ରଭୃତି ମଧ୍ୟ ସେପରି ପରିଶ୍ରମ କରିବାରେ ଦକ୍ଷ ଥିଲେ । ବୁଦ୍ଧିମାନ, ଶିକ୍ଷିତ ଲୋକେ ଦେହ ମିହନ୍ତ କରିବା ଦ୍ୱାରା ସବୁକାମକୁ ଅଧିକ କୁଶଳତାର ସହିତ କରିବାର ଚେଷ୍ଟା କରୁଥିଲେ । ସେଥିରେ ନିଜର ବୁଦ୍ଧି ଲଗାଉ ଥିଲେ । ଏହା ଫଳରେ ସେଠାର ସ୍ଥାନୀୟ ମୂଲିଆଙ୍କର କର୍ମକୁଶଳତା ବଢ଼ିଯାଇଥିଲା, କାମକୁ ସୂଚାରୁରୂପେ ଓ ସଂଠଣାର ସହିତ କରିବାର ଦକ୍ଷତା ମଧ୍ୟ । ଝାଟିମାଟି କାନ୍ଥର ବାଉଁଶ ଓ ଝାଟି ବାଡ଼ ପୂର୍ବେ ଯେମିତି ସେମିତି ବାନ୍ଧି ଦେଉଥିଲେ । କାନ୍ଥଗୁଡ଼ା ଉଚ୍ଚଖାଲ, ବଙ୍କାଟଙ୍କା ହେଉଥିଲା, ସମାନ କରିବାକୁ ଯାଇ ବହୁତ ମାଟି ଲେସି ଅତି ମୋଟା କରି ଦେଉଥିଲେ, ମାତ୍ର କ୍ରମେ ସ୍ଥାନୀୟ ମିସ୍ତୀ ଓ ମୂଲିଆ କାନ୍ଥକୁ ସୁନ୍ଦରା, ସମତଳ ଓ ଚିକ୍କଣ କରି ଗଢ଼ିବା ଶିଖିଗଲେ । ଡିହ ଓ ବନ୍ଧରେ ମାଟି ପକାଇ ତା'ର ଢାଲୁ ଢଡ଼ଗୁଡ଼ାକ ଅସମାନ ଉଚ୍ଚଖାଲ ଛାଡ଼ି ଦେଉଥିଲେ । ସେ ସବୁ ସୁଆଁସି ସମାନ କରିବା ଓ ସେହିପରି ଆହୁରି ଅନେକ ଉନ୍ନତି କାମର ଢଙ୍ଗରେ ହେଲା ।

ସେତେବେଳେ ଘର ତିଆରି ବେଳେ 'ନାହାକ' ଆସି ଘରର ଭାଗମାପ ଓ 'ମୋଡ଼' ସ୍ଥିର କରିବା ଆବଶ୍ୟକ ହେଉଥିଲା । ସେ ନୂଆ ଲୁଗା ଓ ପାଞ୍ଚଟଙ୍କା ଖଣ୍ଡେ ଏଥିପାଇଁ ନେଉଥିଲା । ଏହା ନ ହେଲେ ଘରରେ ମୋଡ଼ ରହିଗଲେ ଘର ତିଆରିରେ ଅସୁବିଧା ଓ ପରେ ଅକଲ୍ୟାଣ ହେବ ବୋଲି ଧାରଣା ଥିଲା । ଅସଲ କଥା ଘରର ନିଅଁ ପଡ଼ିବାବେଳେ କୋଣଗୁଡ଼ାକ ସମକୋଣ ନ ହେଲେ ଘର ତିଆରିବେଳେ ବହୁତ ଅସୁବିଧା ବାହାରେ । ପାଖ ଆଖର ହରିଜନ ଓ ଗରିବ ଲୋକେ ଆମଠୁଁ ସମକୋଣ କରି ଗାର ଟାଣିବା ଶିଖିଗଲେ ଓ ଆଉ ନାହାକର ସାହାଯ୍ୟ ଦରକାର କଲେ ନାହିଁ । ଲୋକେ ପୂର୍ବେ ଘରମାନଙ୍କରେ ଅତି ସାନ ସାନ ଝରକାଟିମାନ ରଖୁଥିଲେ । ଆମ ଦେଖା ଦେଖି ବଡ଼ ବଡ଼ ଝରକା ରଖିବା ଅଭ୍ୟାସ ବହୁତ ବ୍ୟାପିଗଲା । ଏହିପରି ଭାବରେ ତେଣିକାର ଘରମାନଙ୍କର ନିର୍ମାଣ ସ୍ତରର ମଧ୍ୟ କେତେକ ଉନ୍ନତି ହେଲା ।

ବାପା ହେରିକା ସେଠିକି ଯିବାବେଳକୁ ତେଣେ ବାଇଗଣ, କଖାରୁ, ଜହ୍ନି ଆଦି ସାଧାରଣ ପନିପରିବା ହିଁ ଯାହା ଚାଷ ହେଉ ଥିଲା । ସେବାଘରର ଅଳ୍ପ ବାଡ଼ିରେ କୋବି, ଟୋମାଟୋ, ସାଲଗମ୍, ମୂଳା, ଭେଣ୍ଡି ଆଦି ଶୀତଦିନିଆ ଫସଲ ଭଲ ମଞ୍ଜି ମଗେଇ ଚାଷ କରାହେଲା । କ୍ରମେ ଗାଁ ଲୋକେ ସେସବୁ କରି ଶିଖିଲେ । ବାପା ଗୋଟାଏ ସମୟରେ କୋବି ଓ ଟମାଟୋ ଚାରା ପକେଇ ବିକୁଥିଲେ ଓ ବହୁତ ଲୋକ ତାହା ନେଉଥିଲେ । କ୍ରମେ ଅନେକ ଲୋକ ନିଜେ ଭଲ ଚାରା ଉତାରିବା ଶିଖିଗଲେ । ସେ ଅଞ୍ଚଳରୁ ପ୍ରତି ହାଟପାଳିରେ ଭାର ଭାର ଟୋମାଟୋ ବରୀ ଅଞ୍ଚଳର ସୀମାରେ ଥିବା ଇନ୍ଦୁପୁର, ହରିପୁର, ବିଞ୍ଝାରପୁର ଆଦି ହାଟକୁ ଯିବାକୁ ଲାଗିଲା ।

ବରୀର ନିକଟତମ ହାଟ ବାଲିଆପାଳ । ସେଠୁ ତିନି ମାଇଲ । ବର୍ଷାଦିନେ ହାଟମାନଙ୍କୁ ଯିବା ବହୁତ ଅସୁବିଧା । ସେଥିପାଇଁ ବାପା ପାଖରେ ଗୋଟାଏ ହାଟ ଆରମ୍ଭ ହେବା ଉଚିତ୍ ବୋଲି ବିଚାରିଲେ ଓ ସ୍ଥାନୀୟ ଲୋକଙ୍କ ସହିତ ପରାମର୍ଶ କରି ରମ୍ଭା ଗାଁ ନିକଟ 'ମାଉଣ୍ଡ' ପଡ଼ିଆରେ ହାଟ ଆରମ୍ଭ କରାଗଲା । ଏ 'ମାଉଣ୍ଡ ପଡ଼ିଆ' ଗୋଟାଏ ଉଚ୍ଚ ଢିପ,ଲୋକେ ବନ୍ୟାବେଳେ ଆଶ୍ରମ ନେବେ ବୋଲି ସରକାରଙ୍କ ଦ୍ୱାରା ଅନେକ ପୂର୍ବରୁ ବନ୍ଧା ଯାଇଥିଲା ।

ସୂତାକଟା ପ୍ରଚାର ଏକ ମୁଖ୍ୟ କାମ ଥାଏ । ପ୍ରଥମେ ବରୀ ଓ ତା' ପାଖରେ ଚାରିପାଞ୍ଚ ଖଣ୍ଡ ଗାଁରେ କାମ ଚାଲୁଥିଲା । କ୍ରମେ ସାରା ଦକ୍ଷିଣ ବିଞ୍ଝାରପୁର ଅଞ୍ଚଳ କର୍ମକ୍ଷେତ୍ର ହେଲା ଓ ବିଭିନ୍ନ ସ୍ଥାନରେ କର୍ମୀମାନେ କେନ୍ଦ୍ର ଖୋଲି ସୂତାକଟା ଓ ଆନୁଷଙ୍ଗିକ କାମ ଗାଁମାନଙ୍କରେ ଆରମ୍ଭ କଲେ । ସେତେବେଳେ ଲୋକେ ସୂତାକାଟି ନିଜର ପରିବାରର ଲୁଗାର ଆବଶ୍ୟକତା ପୂରଣ କରିବା ଉପରେ ଜୋର ଦିଆଯାଉଥିଲା । ଏହା ଫଳରେ ସେ ଅଞ୍ଚଳରେ ଶହେ ଉପରେ ପରିବାର ନିୟମିତ ଖଦୀ ବ୍ୟବହାର କରିବାରେ ଅଭ୍ୟସ୍ତ ହୋଇଯାଇଥିଲେ । ଏହା ଛଡ଼ା ଆହୁରି ଅନେକ ଲୋକ ପେଟପୋଷିବା ପାଇଁ ସୂତା କାଟିଲେ । ବନ୍ୟା ସମୟରେ ଏଇଟା ଲୋକଙ୍କର ଗୋଟାଏ ଆଶ୍ରୟ ହେଲା । ଏହା ମାଧ୍ୟମରେ ଲୋକେ ଡିରୋଟ ସମୟରେ କିଛିହେଲେ ଉପାର୍ଜନ କରିବାକୁ ସକ୍ଷମ ହେଲେ । ଏତେ ବର୍ଷପରେ ବି ସାଧାରଣ ସମୟରେ ସେ ଅଞ୍ଚଳର ହଜାର ପରିବାର ସୂତାକାଟି ନିଜର ସ୍ୱଳ୍ପ ଆୟକୁ କିଛିଟା ବଢ଼େଇ ପାରୁଛନ୍ତି ଓ ବଡ଼ ବଢ଼ି ଓ ମରୁଡ଼ି ପରେ ତ ଅରଟର ଚାହିଦା ବଢ଼ି ଯାଉଛି ।

ଚୁନୀ, ଗୋଦାବରୀ, ମାସୀ ଓ ଅନ୍ୟମାନେ ସେତେବେଳେ ପ୍ରାୟ ପ୍ରତିଦିନ ଗାଁ ସଫେଇ କରିବାକୁ ଯାଉଥିଲେ । ଲୋକେ ରାସ୍ତାକଡ଼ରେ ଝାଡ଼ା ଫେରିଥା'ନ୍ତି । ଏମାନେ ସେ ସବୁକୁ ସଫାକରି ମଇଳାକୁ ଆଣି ପୋତନ୍ତି । ଯାର ପରିଣାମ କିନ୍ତୁ ଆଶାନୁରୂପ ହେଲାନାହିଁ । କେତେକ ପରିବାର ଏହାଦ୍ୱାରା ପ୍ରଭାବିତ ହେଇ ନିଜର ଆଚରଣ ବଦଳେଇଲେ, କିନ୍ତୁ ଆହୁରି ବେଶି ଲୋକ ବିଚାରିଲେ ଯେ ଜାଗାଗୁଡ଼ିକ ନିୟମିତ ସଫାହେବା ଦ୍ୱାରା ସୁବିଧା ହେଉଛି । ସେ ସବୁକୁ ପାଇଖାନାରୂପେ ଅଧିକ ଆରାମରେ ବ୍ୟବହାର କରିହେବ । ଆଶ୍ରମରେ ପାଇଖାନା ଥାଏ ଓ ତାହା ପ୍ରତିଦିନ ନିଜେ ସଫାକରି ସେ ମଇଳାକୁ ବଗିଚାରେ ପୋତାଯାଏ । ଏ ଉତ୍କୃଷ୍ଟ ଖତ ଯୋଗୁଁ ସେବାଘରର ପନିପରିବା ବି ଉତକୃଷ୍ଟ କିସମର ହେଉଥିଲା । ଅନେକ ଲୋକ ପ୍ରଥମ ପ୍ରଥମ ଏ ସବୁ ପରିବା ମଇଳାଖତରୁ ହେଉଛି ବୋଲି ତାହା ଖାଇବାକୁ ଘୃଣା କରୁଥିଲେ । ପରେ ଘୃଣା ଛାଡ଼ିଗଲା ।

ମୁଁ ସେଠି ପହଞ୍ଚି ପ୍ରଥମେ ମହୁମାଛି ପାଳନ କାମଟା ଆଦରି ନେଲି । ସେ କାମଟା ନୂଆ ଓ ଖୁବ୍ ଚିତ୍ତାକର୍ଷକ ହେଉଥାଏ । ସେ ଅଞ୍ଚଳରେ ସେତେବେଳେ କରଞ୍ଜ, ଜାମୁ, ଶିମିଳି, ହିଂଜଳ ଗଛ ବିସ୍ତାର ଥାଏ ଓ ସେ ସବୁରୁ ପ୍ରଚୁର ମହୁ ମିଳେ । ଶୀତ ଦିନେ ହଜାର ହଜାର ଏକରରେ ଧନିଆଁ ଓ ସୋରିଷ ହୁଏ । ଏ ସବୁରୁ ବି ଉତ୍କୃଷ୍ଟ ମହୁ ପ୍ରଚୁର ମିଳେ । ଏ

ସବୁଛଡ଼ା ଆମ୍ବ, ନଡ଼ିଆ, ଖଜୁରୀ, ତାଳ, ତେନ୍ତୁଳି ଆଦି ଫୁଲରୁ ମଧ କିଛି ମହୁ ମିଳେ ଓ ମହୁମାଛିଙ୍କର ଅନ୍ୟତମ ଖାଦ୍ୟ ପରାଗ ଯଥେଷ୍ଟ ମିଳେ । ତେଣୁ ସେ ଅଞ୍ଚଳରେ ସାପଫେଣିଆ ମହୁମାଛି, ଯାହାଙ୍କୁ କି ପୋଷାଯାଏ, ବଣୁଆ ଅବସ୍ଥାରେ ବହୁତ ଥାନ୍ତି । ସେମାନଙ୍କର ଆସ୍ଥାନ ଗଛ କୋରଡ଼, ଉଇହୁଙ୍କା, ଘରକାନ୍ଥରେ ଥିବା ଫାଟ ଓ କୋରଡ଼ ଆଦିରେ । ସେ ସବୁକୁ ଖୋଳି, ଠାବକରି ମାଛିପଲଙ୍କୁ ଧରି ବାକ୍ସରେ ରଖିବାକୁ ହଉଥାଏ । ଏଇ କାମରେ ଗଣେଶ ମହାନ୍ତି ଓ ମୁଁ ଲାଗିପଡ଼ିଲୁ । ଗଣେଶଙ୍କର ଘର ରମ୍ଭା । ତାଙ୍କର ଉତ୍ସାହ ଓ ଉଦ୍ୟମରେ କେବେ ଅବସାନ ନ ଥାଏ । ପ୍ରତ୍ୟେକ କାମରେ ସେ ବାପାଙ୍କର ହାତବାରସୀ ହେଉଥା'ନ୍ତି । ମହୁ ଆମଦାନୀ କରିବାର ଆନନ୍ଦ ଛଡ଼ା ବଣବିଲରେ ବୁଲି ମାଛିଙ୍କର ବସା ଖୋଜିବା ଓ ଉଚ୍ଚଗଛ, କଣ୍ଟାଝଟା ବା ଅନ୍ୟାନ୍ୟ ଅସୁବିଧାଜନକ ସ୍ଥାନରୁ ନାନା କୌଶଳରେ ବସାକୁ ବାହାରକରି ବାକ୍ସଭୁକ୍ତ କରିବା କାମ ବି କମ୍ ଉନ୍ମାଦନାପୂର୍ଣ୍ଣ ନ ଥାଏ । ଦିନାକେତେ ଆମେ ସକାଳ ସନ୍ଧ୍ୟା ଏଇ ଧନ୍ଦାରେ ଲାଗିଥିଲୁ ।

ସେବାଘରେ ମହୁବାକ୍ସ ସଂଖ୍ୟା ଦୁଇରୁ ବଢ଼ି କୋଡ଼ିଏରେ ପହଞ୍ଚିଲା ଓ ସେ ସବୁରୁ ମୌସମରେ ହାରାହାରି ଦଶପାଉଣ୍ଡ ଲେଖା ମହୁ ମିଳିବାକୁ ଲାଗିଲା । କ୍ରମେ ଏହାର ପ୍ରସାର ଗାଁ ଗହଳରେ ହେଲା ଓ ଅନେକ ଲୋକ ମହୁମାଛି ପୋଷିବା ଆରମ୍ଭ କଲେ । ସେଥିପାଇଁ ବାକ୍ସ ବା ଅନ୍ୟ ଅଧିକାଂଶ ସରଞ୍ଜାମ ସ୍ଥାନୀୟ ମିସ୍ତ୍ରୀମାନେ ତିଆରି କରିବା ଶିଖିଗଲେ ଓ ଶସ୍ତା କାଠରୁ ଗୋଟା ଅଢ଼େଇ ତିନିଟଙ୍କା ମାତ୍ର ଦାମରେ ମହୁବାକ୍ସର ସାର ଲୋକଙ୍କୁ ମିଳିପାରିଲା । କେବଳ ମହୁ ନିଷ୍କାସନ ଯନ୍ତ୍ରଟି ସେଠି ତିଆରି ହେଇପାରି ନ ଥିଲା । ତାହା କଟକରେ ତିଆରି କରିବାର ବନ୍ଦୋବସ୍ତ କରାହେଲା । ବାକ୍ସ ସମେତ ଅନ୍ୟ ସରଞ୍ଜାମ ଲୋକେ ନିଜେ ବଢ଼େଇ କମାରଙ୍କ ଦ୍ୱାରା ତିଆରି କରାଇ ନେବାକୁ ଲାଗିଲେ ।

୧୯୩୭ ରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ହେବାପରେ ସେଠି ସରକାରୀ ସାହାଯ୍ୟରେ ମହୁଚାଷର ତାଲିମ ଦେବାପାଇଁ ପନ୍ଦରଦିନିଆ ଶିବିର ବି ଚାଲିଲା । ଏଥିରେ ଅନ୍ୟାନ୍ୟ ଜିଲ୍ଲାରୁ ବି ଲୋକ ଆସି କାମ ଶିଖିଲେ ଓ ବିଭିନ୍ନଆଡ଼େ ମହୁଚାଷର ପ୍ରସାର ଆରମ୍ଭ ହେଲା । ପାଖ ଆଖ ଗାଁମାନଙ୍କରେ ଜଣେ ଜଣେ ଗୃହସ୍ଥ ଚାରି ପାଞ୍ଚୋଟି ଲେଖା ବାକ୍ସରଖି ମୌସମ ପିଛା ଚାଳିଶ ପଚାଶ ପାଉଣ୍ଡ ଲେଖାଁ ମହୁ ପାଇଲେ । ସେତେବେଳେ ମହୁ ପାଉଣ୍ଡ ଦାମ୍ ଦେଢ଼ଟଙ୍କା ଭଳି ଥାଏ । ସେତେବେଳ ସମୟରେ ବର୍ଷକୁ ଷାଠିଏ ସତୁରୀ ଟଙ୍କାଭଳି ଅଧିକ ଆୟ କମ୍ କଥାନୁହେଁ । କେହି କେହି ଏ ଧନ୍ଦାକୁ ଅଧିକ ଗୁରୁତ୍ୱର ସହିତ ଧରିଲେ । ବହୁସଂଖ୍ୟକ ବାକ୍ସ ରଖି ସେ ସବୁକୁ ଫସଲ ସମୟରେ ବିଲ ମଝିରେ ନେଇ ରଖନ୍ତି ଓ ଢେର ବେଶୀ ମହୁ ପାଆନ୍ତି । ଜଣ ଜଣକା ଅଢ଼େଇ ମହଣ ତିନି ମହଣ ମହୁ ଥର ଥରକେ ପାଇବାର ଦେଖାଯାଇଛି । ଗୋବର୍ଦ୍ଧନ ପ୍ରଧାନଙ୍କ ଖୁଡ଼ୀ ଚନ୍ଦ୍ରପ୍ରଭା ଦେବୀ ଅରଙ୍ଗାବାଦର ଏକ ଟାଣୁଆ ବ୍ୟକ୍ତିତ୍ୱସଂପନ୍ନ ମହିଳା ଥିଲେ । ସେ ଥରେ ମନ୍ତବ୍ୟ କଲେ "ବାପା ସୂତାକଟା ଆଉ ପୁଅ ମହୁଚାଷ କାମ ଧରିଛନ୍ତି ଯେ ବାପଙ୍କ ଠଉଁ ପୁଅଙ୍କ କାମଟା ସରସ ପଡ଼ିଲା ।"

ମହୁଚାଷ ପ୍ରଥମ ଜମିବାକୁ ଆରମ୍ଭ ହେବାବେଳକୁ ଥରେ ଟୁଙ୍ଗୁମାମୁଁ ବରୀ ଆସିଲେ । ତାଙ୍କଦ୍ୱାରା ମୂଳ ଥାପନା କରାଯାଇଥିବା କାମର ଅଗ୍ରଗତି ଦେଖି ଖୁବ୍ ଖୁସି ହେଲେ । ସେଥର ସେବାଘରେ ଧନିଆ ମହୁ କିଛି ମିଳିଥାଏ, ବାପା ଟୁଙ୍ଗୁମାମୁଁଙ୍କୁ ଚଖେଇବା ପାଇଁ କହିଲେ - "ତେମେ ଆଁ କର ମୁଁ ପାଟିରେ ଢାଳିଦେଉଛି," ଟୁଙ୍ଗୁମାମୁଁ ଆଁ କରି ରହିଛନ୍ତି, ବାପା ଠିକ୍ ଦୁଇଟୋପା ମହୁ ତାଙ୍କ ପାଟିରେ ପକେଇ ଦେଇ କହିଲେ" ଏୟାକୁ ଖୁବ୍ ଭଲକରି ପାଟିରେ ବୁଲେଇ ଚାଖି ଚାଖି ଖାଅ ।"

ମହୁମାଛିଙ୍କ ଜୀବନଯାତ୍ରା ନିରୀକ୍ଷଣ କରିବା ମଧ୍ୟ ଏକ ବଡ଼ ଚିତ୍ତାକର୍ଷକ କାମ । ଏଥିପାଇଁ ଗୋଟିଏ ବାକ୍ସ ତିଆରି କରି ସେଥିରେ ମହୁମାଛି ରଖି ନିରୀକ୍ଷଣ ଆରମ୍ଭ କଲୁ । ମୁଁ ବେଳେ ବେଳେ ଘଣ୍ଟା ଘଣ୍ଟା ବସି ସେମାନଙ୍କର ଗତିବିଧି ଲକ୍ଷ୍ୟକରେ ।

ଦିନେ କଟକରେ ମାଛି ବିଷୟରେ ଗୋଟିଏ ଫିଲ୍ମ ଦେଖି ଖିଆଲ ହେଲା ଯେ ମହୁମାଛିଙ୍କର ଜୀବନଯାତ୍ରା ଓ ମହୁଚାଷ ବିଷୟରେ ବି ତ ବେଶ ଚିତ୍ତାକର୍ଷକ ଫିଲ୍ମ ତିଆରି କରିହେବ । ଟୁଙ୍ଗୁମାମୁଁ ଶିକ୍ଷମନ୍ତ୍ରୀ ଥା'ନ୍ତି । ତାଙ୍କୁ ଏ କଥା କହିଲି । ସେ ଅଢ଼େଇଶହ ଟଙ୍କା ଦିଆଇଦେଲେ । କଲିକତାରୁ ଭୁପେନଦା ଓ ନିର୍ମଳବାବୁଙ୍କ ସାହାଯ୍ୟରେ ବହୁତ ଖୋଜି ଖୋଜି କରି ଗୋଟାଏ ୧୬ ମିଲିମିଟର ମୁଭି କ୍ୟାମେରା ମିଳିଲା । ସେଥିରେ ଛବି ଉଠାଇବା ଆରମ୍ଭ କଲି । କ୍ଲୋଜ୍‌ଅପ୍ ଓ ବହୁଗୁଣରେ ବର୍ଦ୍ଧିତ ଛବି ନେବାପାଇଁ କେତେଗୁଡ଼ିଏ ସରଞ୍ଜାମ ସେଇ ବରୀରେ ତିଆରି କଲି । ସେତେବେଳକୁ ସେଠି ସରଞ୍ଜାମ କାର୍ଯ୍ୟାଳୟ ଆରମ୍ଭ ହୋଇଥାଏ ଓ ସେଥିରେ ଲେଥ୍ ଆଦି ଯନ୍ତ୍ରଥାଏ । ସେ ସବୁ ସାହାଯ୍ୟରେ ହିଁ ଏ ସବୁ ସରଞ୍ଜାମ ତିଆରି ସମ୍ଭବ ହେଲା ।

ଏ ସବୁ ଉଠାଯାଇଥିବା ଛବିର ନେଗେଟିଭ୍ ଫିଲ୍ମ ଧୋଇବା ପାଇଁ ଆବଶ୍ୟକ ସରଞ୍ଜାମ ମଧ୍ୟ ସେଇଠି ତିଆରି ହେଲା । ଏ ସଂକ୍ରାନ୍ତରେ ବହିପତ୍ର ପଢ଼ି ବିଷୟଟାର ବୈଜ୍ଞାନିକ ଓ ବ୍ୟାବହାରିକ ପୃଷ୍ଠଭୂମି ବୁଝି ନେଇଥିଲି । ନେଗେଟିଭ୍ ଧୋଇସାରି ତାକୁ ଆବଶ୍ୟକମତେ କଟାଜୋଡ଼ା କରି ଛାପିବା ପାଇଁ ବମ୍ବେର ଏକ ସଂସ୍ଥାକୁ ପଠେଇ ଦିଏ । ଏ ଫିଲ୍ମ ଦେଖିବା ପାଇଁ ପ୍ରୋଜେକଟର ମୋ ପାଖରେ ନ ଥିଲା କି ତା'ର ଆବଶ୍ୟକତା ବି ଅନୁଭବ କରିନାହିଁ । କଟକରେ ମ୍ୟୁନିସିପାଲିଟିର ପ୍ରୋଜେକ୍‌ଟର ଧାରନେଇ ଏହା ଦେଖା ହେଇଥିଲା । ମୋର ଆଗ୍ରହ ଛବି ତିଆରି କରିବାରେ ଥାଏ, ଦେଖିବାରେ ନୁହେଁ । ଯାହାହେଉ ଶେଷ ପର୍ଯ୍ୟନ୍ତ ଚାରିଶହ ଫୁଟର ଫିଲ୍ମ ପ୍ରସ୍ତୁତ ହୋଇଗଲା । ଏହାର ଗୋଟିଏ ନକଲ ଏ ପର୍ଯ୍ୟନ୍ତ ଥିଲା । ଏବେ ବମ୍ବେରେ ଖଦୀ କମିଶନ୍‌ରେ ଦେଖାଇବାକୁ ନେଇ ସେଥିରୁ ଅଧେ ସେଠି ହଜିଗଲା । ଏହାର ନେଗେଟିଭ୍ ଅନ୍ୟ ସବୁ ନେଗେଟିଭ୍ ସହିତ ୧୯୪୨ ରେ ନଷ୍ଟ ହୋଇଗଲା । ଯେତେବେଳେ ପୁଲିସ ସେବାଘରକୁ ଭାଙ୍ଗିଦେଲେ ।

ଏ କ୍ୟାମେରାଟି ହାତରେ ଥିବାରୁ ତାଳଚେର ହିଜରତବେଳେ ବି ତା'ର ଏକ ତଥ୍ୟଚିତ୍ର

ତିଆରି କରିବା ଖିଆଲ ହେଲା । ମହେଶଚନ୍ଦ୍ର ପ୍ରଧାନ ସେତେବେଳେ କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ଥା'ନ୍ତି । ସେ ପଚାଶ ଟଙ୍କା ସାହାଯ୍ୟ ଦେଲେ । ସେଇଥିରେ କୋଶଳା ଓ କମଶଳା ଠାରେ ଥିବା ତାଳଚେର ଶରଣାର୍ଥୀମାନଙ୍କର ଏକ ଦୁଇଶହ ଫୁଟର ଅର୍ଥାତ୍ ଆଠମିନିଟ୍ ଚାଲିବା ଭଳି - ଏକ ତଥ୍ୟ ଚିତ୍ର ତିଆରି ହେଲା । ସେଇଟା ତ୍ରିପୁରୀ କଂଗ୍ରେସ ବେଳେ (୧୯୩୯) ମହତାବବାବୁଙ୍କ ଉଦ୍ୟମରେ କେତେକ ବିଶିଷ୍ଟ ଲୋକଙ୍କୁ ନିମନ୍ତ୍ରଣ କରି ଦେଖା ହେଇଥିଲା । ଏଇଟି ବୋଧହୁଏ ଓଡ଼ିଶାରେ ନିର୍ମିତ ପ୍ରଥମ ତଥ୍ୟଚିତ୍ର । ଏଇଟି ବି ସେଇ ୧୯୪୨ ରେ ହଜିଲା ।

## ଲକ୍ଷ୍ନୌ କଂଗ୍ରେସ ଓ ନିର୍ବାଚନ

୧୯୩୬ ରେ ଖରାଦିନେ ଲକ୍ଷ୍ନୌରେ କଂଗ୍ରେସ ଅଧିବେଶନ ହେଲା । ଟଙ୍କା କେଉଁଠୁ ସଂଗ୍ରହ ହେଲା ମନେନାହିଁ । ମା' ବି ବାହାରିଲା ଓ ସେଇ ବୋଧହୁଏ ଟଙ୍କା ଦେଇଥିଲା । ମା'ର ଉଦ୍ଦେଶ୍ୟ ଥିଲା ସେଇବାଟେ ତୀର୍ଥକରି ଆସିବା । ଆଚାର୍ଯ୍ୟ ମହାଶୟ, ଅନସୂୟା ପ୍ରସାଦ ପାଠକ, ମା' ଓ ମୁଁ ଏଇ ଚାରିଜଣ ଗୋଟିଏ ଦଳ ହେଲୁ । ଦାଦା ହେରିକା ମଧ୍ୟ ଗଲେ । ସେଠି ଜୱାହରଲାଲ ସଭାପତି ହେଇଥିଲେ ଓ ତାଙ୍କର ବକ୍ତୃତାଟା ଖୁବ୍ ଗରମାଗରମ ଓ ଲଢୁଆ ହେଇଥିଲା । କଂଗ୍ରେସରେ ୧୯୩୫ ର ଶାସନ ସଂସ୍କାର ଆଇନ୍ ଅନୁସାରେ ନିର୍ବାଚନ ଲଢ଼ିବା ଓ ମନ୍ତ୍ରୀତ୍ୱ ନେଇ ମତଭେଦ ଥାଏ । ସୋଶାଲିଷ୍ଟମାନଙ୍କର ମତ ମନ୍ତ୍ରୀତ୍ୱ ନେବା ବିରୋଧରେ ଥାଏ । ଲକ୍ଷ୍ନୌରେ ନିର୍ବାଚନ ଲଢ଼ିବା ସ୍ଥିର ହେଲା ମାତ୍ର ମନ୍ତ୍ରୀତ୍ୱ କଥା ପରେ ଦେଖାଯିବ ବୋଲି ରହିଲା । ଆମେ ଚାରିଜଣିଆ ଦଳ ଲକ୍ଷ୍ନୌରୁ ହରିଦ୍ୱାର ଗଲୁ ଓ ସେଠୁ ହୃଷିକେଶ । ହୃଷିକେଶରେ ରାମଦାସ ବାବାଜୀ ମନକାମନାସିଦ୍ଧ ହନୁମାନ ମନ୍ଦିର ସ୍ଥାପନ କରି ତା'ଙ୍କ ସେବାପୂଜାରେ ଥା'ନ୍ତି । ସେ ଖୁବ୍ ଆହ୍ଲାଦିତ ହେଇ ଆମର ରହିବା ଓ ବୁଲାବୁଲିର ସବୁ ବ୍ୟବସ୍ଥା କଲେ । ସେଠାରେ ଗଙ୍ଗାରେ ମୁଁ ଖୁବ୍ ପହଁରିଲି ଓ ଆମେ ସବୁ ଲକ୍ଷ୍ମଣଝୁଲା ପୋଲ ପାରିହେଇ ଗଙ୍ଗା କୂଳେ କୂଳେ ଉପରଆଡ଼କୁ କେଦାରନାଥ -ବଦ୍ରିନାଥ ବାଟରେ ଦୁଇ ତିନି ମାଇଲ ଗଲୁ । ପାହାଡ଼ ମଝିରେ ଗଙ୍ଗାର ସେ ଦୃଶ୍ୟ ଖୁବ୍ ଭଲ ଲାଗୁଥାଏ । ସେଠି ଗଙ୍ଗାର ଓସାର ତ କମ୍, ନଦୀ ଶଯ୍ୟାଟା ପଥୁରିଆ । ନୀଳାଭ ସ୍ୱଚ୍ଛପାଣି । ନଈ ଓ ପାହାଡ଼ ସବୁଥିରେ ଏକ ନୂତନତା । ସେଠୁ ହୃଷିକେଶ । ହୃଷିକେଶରେ ରାମଦାସ ବାବାଜୀ ମନକାମନାସିଦ୍ଧ ହନୁମାନ ମନ୍ଦିର ସ୍ଥାପନା କରି ତା'ରି ସେବାପୂଜାରେ ଥା'ନ୍ତି । ସେ ଖୁବ୍ ଆହ୍ଲାଦିତ ହେଇ ଆମର ରହିବା ଓ ବୁଲାବୁଲିର ସବୁ ବ୍ୟବସ୍ଥା କଲେ । ସେଠାରେ ଗଙ୍ଗାରେ ମୁଁ ଖୁବ୍ ପହଁରିଲି ଓ ଆମେସବୁ ଲକ୍ଷ୍ମଣଝୁଲା ପୋଲ ପାରିହେଇ ଗଙ୍ଗା କୂଳେ କୂଳେ ଉପରଆଡ଼କୁ କେଦାରନାଥ - ବଦ୍ରିନାଥ ବାଟରେ ଦୁଇ ତିନି ମାଇଲ ଗଲୁ । ପାହାଡ଼ ମଝିରେ ଗଙ୍ଗାର ସେ ଦୃଶ୍ୟ ଖୁବ୍ ଭଲ ଲାଗୁଥାଏ । ସେଠି ଗଙ୍ଗାର ଓସାର ତ କମ୍, ନଦୀ ଶଯ୍ୟାଟା ପଥୁରିଆ । ନୀଳାଭ ସ୍ୱଚ୍ଛପାଣି । ନଈ ଓ ପାହାଡ଼ ସବୁଥିରେ

ଏକ ନୂତନତା । ସେଠୁ ହିମାଳୟର ତୁଷାର ଶୃଙ୍ଗ ଦେଖାଯାଏ ନାହିଁ । ଡେରାଡୁନ୍ ଯାହା ସେଠୁ ନଇନିତାଲ ଗଲେ ଯାଇ ଦର୍ଶନ ମିଳିବ ବୋଲି ବାବାଜୀ କହିଲେ । ମାତ୍ର ସେଥିପାଇଁ ଆମର ସମୟ ନ ଥିଲା । ସେଠୁ ଫେରି ଆମେ ହରିଦ୍ୱାର ଓ ଅଯୋଧ୍ୟା ଦେଖି ଫେରିଲୁ । ହରିଦ୍ୱାରରେ ଗଙ୍ଗାର ମାଛଙ୍କୁ କେହି ଆକ୍ରମଣ କରନ୍ତି ନାହିଁ । ସେଥିପାଇଁ ମଣିଷ ପାଖକୁ ସେମାନେ ଆସିବାକୁ ଡରନ୍ତି ନାହିଁ । ବିରାଟ ବିରାଟ ମାଛ ଦଳ ଆସି ଅଟା କି ଭୁଜା ପକେଇଲେ ଖାଇବାପାଇଁ ଜମାହୁଅନ୍ତି । ସେ ଏକ ଦେଖିଲାଭଳି ଦୃଶ୍ୟ । ଅଯୋଧ୍ୟାରେ ଦିନକପାଇଁ ଓହ୍ଲେଇଥିଲୁ । ଏଇଟି ଗୋଟିଏ ସାନ ସହର । ଆଉ ପାଞ୍ଚଟା ସହର ପରି ଦଦରା ଓ ମସିଆ । ସେଠି ସରଜୁ ନଈ ବି କିଛି ମନୋରମ ବୋଧ ହେଲା ନାହିଁ ।

ଏହି ବେଳର ଏକ ବିଚିତ୍ର ଅନୁଭୂତି କଥା ଏଠି କହିଦିଏ । କଲିକତାରେ ଟ୍ୟାନେରୀରେ ଥିବାବେଳେ ସେଠି କେରଳର କୃଷନ୍ ନାୟାର ଥିଲେ । ସେ ପରେ ଲୋକସଭା ସଦସ୍ୟ ହେଇଥିଲେ ଓ ଦିଲ୍ଲୀ ନିକଟରେ ନାରୋରାଠାରେ ଖଦୀକାମ ଆରମ୍ଭ କରିଥିଲେ । କଲିକତାରେ ଥିବାବେଳେ ହିଁ ମୁଁ ଦିନେ ରାତିରେ ସ୍ୱପ୍ନ ଦେଖିଲି ଯେ ଗୋଟିଏ ଖୋଲା ଜାଗାରେ ମୁଁ ରାତିରେ ଚାଲିଯାଉଛି । ବିଜୁଳି ଆଲୁଅ ରହିଛି । ମୋ ଆଗରେ ଗୋଟାଏ ଦଉଡ଼ି ବେଢ଼ା ଓ ତା' ସେ ପାଖରେ କୃଷନ୍ ନାୟାର ମୋ ଆଡ଼କୁ ଆସୁଛନ୍ତି ବା ଛିଡ଼ାହେଇଛନ୍ତି । ଏହାପରେ ମୁଁ ବରୀ ଫେରି ଲକ୍ଷ୍ନୌ କଂଗ୍ରେସ ଅଧିବେଶନକୁ ଗଲି । ସେଠି ଅଧିବେଶନର ଶେଷରେ ସରୋଜିନୀ ନାଇଡୁ ଧନ୍ୟବାଦ ବକ୍ତୃତା ଦେଉଥାନ୍ତି । ମୁଁ ଉଠି ବାହାରକୁ ଯିବାର ଉପକ୍ରମ କଲି । ସେତେବେଳେ ରାତି ନ'ଟା ହେବ । ଚାରି ପାଖ ବିଜୁଳି ଆଲୁଅରେ ଆଲୋକିତ ହେଇଥାଏ । ମୁଁ ଅଳ୍ପ କେତେ ପାହୁଣ୍ଡ ଯିବାପରେ ସାମନାରେ ଗୋଟାଏ ଦଉଡ଼ି ଘେର ପଡ଼ିଲା ଓ ତା' ସେ ପାଖରେ ଦେଖିଲି କୃଷନ୍ ନାୟାର ମୋ ଆଡ଼କୁ ଆସୁଛନ୍ତି । ସ୍ୱପ୍ନରେ ଯେପରି ଦେଖିଥିଲି ସେହିପରି । ମୋ ସ୍ୱପ୍ନ କଥା ନାୟାରଙ୍କୁ କହିଲି ମଧ୍ୟ । ସ୍ୱପ୍ନରେ ଭବିଷ୍ୟତ ଘଟଣାର ଆଭାସ ମିଳିବା କଥା ଅନେକଆଡୁ ଶୁଣାଯାଏ । ମୋର ଏପରି ଅନୁଭୂତି ଏଇ ଥରେ ମାତ୍ର ହେଇଛି । ଏହା ପଛରେ ମନୋବୈଜ୍ଞାନିକ କାରଣ କ'ଣ ଥାଇପାରେ, ମୁଁ ଜାଣେ ନାହିଁ । ସ୍ୱପ୍ନରେ ଯାହା ଦେଖିଥିଲି ପରେ ବାସ୍ତବରେ ଅବିକଳ ସେୟା ଦେଖିଲି ବୋଲି ମନେହେଲା । ତାହା ବି କେତେ ଦୂର ଠିକ୍ ସେ କଥା ଯଚେଇ କରିବାର କି ଉପାୟ ଅଛି ଜଣା ନାହିଁ ।

ଏହାପରେ ପ୍ରଦେଶମାନଙ୍କରେ ଲାଟ୍ସଭାକୁ ନିର୍ବାଚନ ହେବାର ହେଲା । ଓଡ଼ିଶା ସେତେବେଳକୁ ନୂଆ ସ୍ୱତନ୍ତ୍ର ପ୍ରଦେଶ ହେଇଥାଏ ଓ ତା'ର ଲାଟ୍ସଭାରେ ଷାଠିଏଟି ସ୍ଥାନ ଥାଏ । ସେଥିରୁ ଚାରୋଟି ଲାଟ୍ସାହେବ ମନୋନୀତ କରିବାର କଥା, ଆଦିବାସୀ ଆଦିଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ ପାଇଁ । ବାକି ଛପନଟି ଆସନରୁ କଂଗ୍ରେସ ସଇଁତିଶିଟି ପାଇଁ ପ୍ରାର୍ଥୀ ଛିଡ଼ା କରିଥିଲା । ଅନ୍ୟସବୁ ସ୍ଥାନପାଇଁ କଂଗ୍ରେସର ବଳ ନ ଥିଲା । ଏଥି ଭିତରୁ ତିରିଶ କି ଏକତିରିଶ ଜଣ ନିଦ୍ୱର୍ନ୍ଦ୍ୱରେ ନିର୍ବାଚିତ ହେଇଥିଲେ । କଂଗ୍ରେସ ପ୍ରତି ଲୋକଙ୍କର ଏତେ ସମ୍ମାନ ଥିଲା ଓ

ଜନସମର୍ଥନ ଏତେ ପ୍ରବଳ ଥିଲା ଯେ ବିରୋଧରେ ଠିଆ ହେବାର ସାହସ ସୁଦ୍ଧା ଅଳ୍ପ କେତୋଟି କ୍ଷେତ୍ରଛଡ଼ା ଅନ୍ୟଠାରେ କେହି କରି ନ ଥିଲେ । ଯେତେଦୂର ମନେପଡୁଛି ଦାଦା (ଏରସମା, ତିର୍ତ୍ତୋଲ), ଟୁଙ୍କୁମାମୁଁ (ପଶ୍ଚିମ ଯାଜପୁର), ଗୋବିନ୍ଦ ମିଶ୍ର (ଧର୍ମଶାଳା), ପ୍ରାଣନାଥ ପଟ୍ଟନାୟକ (ଜଟଣୀ), ମୋହନ ଦାସ (ନିମାପଡ଼ା-କାକଟପୁର) ଓ ଆଉ ଜଣେ ଅଧେ ଯାହା ବିରୋଧରେ ପ୍ରାର୍ଥୀ ଛିଡ଼ା ହେଇଥିଲେ । ଏମାନଙ୍କ ଭିତରୁ ଗୋବିନ୍ଦ ବାବୁଙ୍କ ଛଡ଼ା ବାକି ସମସ୍ତେ ଜିତିଲେ । ଗୋବିନ୍ଦ ବାବୁଙ୍କର ଏ ନୈତିକ ଦୁର୍ବଳତା ଯୋଗୁଁ ଗାନ୍ଧୀଜୀ ତାଙ୍କ ବିରୋଧରେ ହରିଜନ ପତ୍ରିକାରେ ଏକ ଟିପ୍ପଣୀ ଲେଖିଥିଲେ । ଫଳରେ କଂଗ୍ରେସ ପକ୍ଷରୁ ତାଙ୍କୁ ସମର୍ଥନ କୋହଳ ହେଲା ଓ ସେ ହାରିଗଲେ । ପରେ ମହତାବବାବୁ କେଉଁଠି ଲେଖିଥିଲେ ଯେ, ଏ ନିର୍ବାଚନ ଏକ ଜନଆନ୍ଦୋଳନର ରୂପ ଗ୍ରହଣ କରିଥିଲା । ପ୍ରକୃତରେ ତାହା ଘଟିଥିଲା ଓ ତାହା ମୁଁ ପ୍ରତ୍ୟକ୍ଷ ଦେଖିବାର ସୁଯୋଗ ପାଇଥିଲି ।

ଦାଦା ସାଙ୍ଗରେ ମୁଁ ତା'ର ନିର୍ବାଚନ ମଣ୍ଡଳୀ ତିର୍ତ୍ତୋଲକୁ ପ୍ରଚାର ପାଇଁ ଯାଇଥାଏ । ଅନେକ କର୍ମୀ ଜୁଟିଥାନ୍ତି । ତିର୍ତ୍ତୋଲ ଥାନା ପାଖରେ ଆମର ଡେରା ହୋଇଥାଏ । ଚାରିଆଡ଼େ ବୁଲାବୁଲି କରି ପ୍ରଚାର କରୁଥାଉ । କୋଉଁଠୁ ଖଣ୍ଡେ ଦଦରା ମୋଟରଗାଡ଼ି ଜୋଗାଡ଼ ହେଇଥାଏ । ସେଇଥିରେ ଠାକ ଜାଗାମାନଙ୍କୁ ଯାଉ ।ବାକି ଗାଁ ଭିତରକୁ ଚାଲିଚାଲି ଯାଉ । କେତେ ଖଣ୍ଡ ସାଇକେଲ ବି ଥାଏ । ଦାଦା ବିରୋଧରେ ରାୟବାହାଦୂର ଚିନ୍ତାମଣି ଆଚାର୍ଯ୍ୟ, ଓକିଲ ଛିଡ଼ା ହୋଇଥା'ନ୍ତି । ସେ ୧୯୩୦ ର ଲବଣ ସତ୍ୟାଗ୍ରହ ବେଳେ 'ସତ୍ୟ ସମାଚାର' ନାମକ ସରକାରୀ ସାହାଯ୍ୟରେ ବାହାରୁଥିବା ଆନ୍ଦୋଳନ ବିରୋଧୀ ପ୍ରଚାରପତ୍ରର ସମ୍ପାଦନାରେ ସାହାଯ୍ୟକରି ରାୟବାହାଦୂର ଉପାଧି ପାଇଥା'ନ୍ତି । ସେ ପୁଣି ସେ ଅଞ୍ଚଳର ଜମିଦାର ଓ ଶାରଳା ଠାକୁରାଣୀଙ୍କର ମୁଖ୍ୟ ମାରଫତଦ୍‌ଦାର । ଆଉ ଜଣେ ପ୍ରାର୍ଥୀ ଥା'ନ୍ତି ଆମର ଦେବମାମୁଁ ।

ଏ ଲଢ଼େଇରେ ଦାଦା ଦୁଇହଜାରଟି ଟଙ୍କା ଖର୍ଚ୍ଚ କରିଥିଲା । କର୍ମୀମାନେ ସ୍ବେଚ୍ଛାସେବକ ଭାବରେ ହିଁ କାମ କରୁଥିଲେ । ଦାଦା ହେରିକା ଏହା ପୂର୍ବରୁ କୃଷକ ଆନ୍ଦୋଳନ ଆରମ୍ଭ କରିଥା'ନ୍ତି ଓ ନିର୍ବାଚନ ପ୍ରଚାରର ଢଙ୍ଗଟା ସେହି ଆନ୍ଦୋଳନମାନଙ୍କୁ ଟଙ୍କା ପଇସା ଦେଉଥାନ୍ତି । ଜମିଦାରିଆ ଥାଟର ବି ବ୍ୟବହାର କରୁଥା'ନ୍ତି । ଶାରଳାଙ୍କ ଧଣ୍ଡା ଛୁଆଁଇ ଲୋକଙ୍କୁ ଶପଥ ଦିଆଉଥା'ନ୍ତି । ଦେବମାମୁଁ ତାଙ୍କର ବନ୍ଧୁବାନ୍ଧବ ସଂପର୍କ ଧରି ଭୋଟ ପାଇବା ଆଶା କରୁଥା'ନ୍ତି ।

ସେତେବେଳେ ଭୋଟ ଅଧିକାର ବହୁତ ସୀମାବଦ୍ଧ ଥାଏ । ବାରଅଣାରୁ ଉର୍ଦ୍ଧ୍ୱ ଚୌକିଦାରୀ ଟିକସ ଦେଉଥିବା ଲୋକେ ହିଁ ଏ ଅଧିକାର ପାଇଥା'ନ୍ତି । ନିର୍ବାଚନମଣ୍ଡଳୀର ଆୟତନ ବହୁତ ବଡ଼, ମାତ୍ର ଭୋଟ କେନ୍ଦ୍ର ଯୋଡ଼ିଏ । ସେଥିରେ ମାତ୍ର ତିନୋଟି ବୁଥ୍ । ତିର୍ତ୍ତୋଲରେ ଦୁଇଟି ଓ ଏରସମାରେ ଗୋଟିଏ । ଭୋଟ ସାତଦିନ ଧରି ଚାଲିଲା । ଲୋକଙ୍କୁ ଏଥିପାଇଁ ପନ୍ଦର ମାଇଲ ଦୂରରୁ ବି ଆସିବାକୁ ପଡୁଥିଲା । ଆଚାର୍ଯ୍ୟ ଓ ଦେବମାମୁଁ ମୋଟର ଲଞ୍ଚ ଦ୍ୱାରା କେନାଲବାଟେ ଲୋକ ଆଣିବାର ବ୍ୟବସ୍ଥା କରିଥା'ନ୍ତି । ସେମାନଙ୍କ ଦ୍ୱାରା ଭୋଟରଙ୍କ ପାଇଁ

ଖାଇବାର ବ୍ୟବସ୍ଥା ହୋଇଥାଏ । ଆମର ଏସବୁ କୌଣସି ବ୍ୟବସ୍ଥା ନ ଥାଏ । ଆଚାର୍ଯ୍ୟେ ମଠା ପିନ୍ଧି, ମୁଣ୍ଡରେ ପୁଳାଏ ଶାରଳାଙ୍କ ସିନ୍ଦୁର ବୋଳିଦେଇ ମୋଟାଏ ଧଣ୍ଡା ଧରି ନସରପସର ହେଉଥା'ନ୍ତି ।

ଆମ ଶିବିରରେ ପ୍ରଚାରର ମୁଖ୍ୟ କୌଶଳୀ ଥା'ନ୍ତି ନାରାୟଣ ବୀରବର ସାମନ୍ତ । ସେ ସବୁ ମଜାର ମଜାର ଦୋହା ଓ ପଦ ତିଆରି କରୁଥା'ନ୍ତି । ସେସବୁ ଭୋଟ ବୁଥକୁ ଆସିବା ବାଟର କଡ଼େ କଡ଼େ ପଟାରେ ଲେଖି ଖୁଣ୍ଟରେ ମରାଯାଇଥାଏ । ଗୋଟାଏ ମୋର ମନେ ଅଛି

ମୂଷାଙ୍କୁ ଧରିବା ପାଇଁ ବିଲେଇ ବାବାଜୀ
ମନଭୁଲା କଥା କହି ବୁଲୁଛନ୍ତି ଆଜି ।

ଏସବୁ ପୋଷ୍ଟର ଲେଖିବା କାମ ମୁଁ କରୁଥାଏ । ସେଇଥିରେ ମୁଁ ପୂର୍ବରୁ ମୋର ହାତ ପାକଳ କରିଥାଏ ।

ଭୋଟ ଆରମ୍ଭର ପୂର୍ବଦିନ ସନ୍ଧ୍ୟାରେ ଆମେସବୁ ଏରସମା ଥାନାକୁ ଗଲୁ; ସେଠା ଅବସ୍ଥା ଦେଖିବା ପାଇଁ । ଅନ୍ଧାର ହୋଇଯାଇଥାଏ । ଦେଖିଲୁ ଥାନା ଚାରିପଟେ ଦୂର ଦୂର ଯାଏ ବିଲ ପଡ଼ିଆରେ କୋଡ଼ି କୋଡ଼ି ଧୁନି ଜଳୁଛି । ପାଞ୍ଚ ଦଶଜଣଲେଖା ଭୋଟର୍ ରୋଷେଇ ବସେଇଛନ୍ତି । ତା'ରି ଧୁନି । ଏ ଦୃଶ୍ୟ ମୁଁ କେବେ ଜୀବନରେ ଭୁଲିପାରିବି ନାହିଁ । ସେମାନେ ଦୂରଦୂରାନ୍ତରୁ ଚାଉଳ, ଲୁଣ, କାଠ ବାନ୍ଧି ଆସି ପୂର୍ବଦିନ ସନ୍ଧ୍ୟାରୁ ପହଞ୍ଚିଛନ୍ତି ପରଦିନ ସକାଳୁ ଭୋଟ ଦେବେ ବୋଲି । ଜଣେ କିଏ ପଚାରିଲାରୁ ଜବାବ ମିଳିଲା – "କଂଗ୍ରେସର କୋଉଠି ଏତେ ପଇସା ଅଛି ଯେ ଆମକୁ ଖାଇବାକୁ ଦେବ ?" ଆମେ ବୁଲିବୁଲି ଦେଖୁଥାଉ । ଠାଏ ଦାଦା ଗୋଟାଏ ଦଳକୁ ପଚାରିଲା – "ତମେ ସବୁ କାହାକୁ ଭୋଟ ଦେବ ? ନବବାବୁଙ୍କୁ ଦେବ ଟି ?" ଜବାବ ମିଳିଲା – "ହ୍ୟାପ୍ ନବବାବୁ ନା ଗେଣ୍ଟୁବାବୁ । ଆମେ ତ କଂଗ୍ରେସକୁ ଭୋଟ ଦେବୁ ।" ସେଇଠୁ ଆମେ ବୁଝିଗଲୁ ଯେ ଆଉ ଚିନ୍ତା ନାହିଁ । ନ୍ୟସ୍ତସ୍ୱାର୍ଥଙ୍କର କରଣୀ ଏଠି କାଟୁ କରିବ ନାହିଁ ।

ଲୋକେ ଭୋଟ ଦେବାକୁ ଦଳ ଦଳ ହୋଇ ଗୀତାଗାଇ କୀର୍ତ୍ତନ କରି ଆସୁଥା'ନ୍ତି । ଭୋଟ ଗୁପ୍ତରେ ଦେବାର ବ୍ୟବସ୍ଥା ଥାଏ । ମାତ୍ର ଲୋକଙ୍କର ସେଥିପାଇଁ ପରବାଏ ନ ଥାଏ । ସେମାନେ ଯେ କଂଗ୍ରେସକୁ ଭୋଟ ଦେବେ ଏକଥା ଗାଇ ବଜେଇ, ହାଟରେ ରାଷ୍ଟ୍ରକରି ଆସୁଥା'ନ୍ତି । ତେବେ ଲଞ୍ଚରେ ବୁହାହେବା ଲୋକମାନେ ଚୁପ୍‌ଚାପ୍ ଭୋଟ ଦେଇ ଚାଲିଯାଉଥା'ନ୍ତି । ସେମାନଙ୍କ ଭିତରୁ ବି ଯେ ଅଧିକାଂଶ ଲଞ୍ଚ ମାଲିକମାନଙ୍କୁ ଭୋଟ ଦେଇ ନଥିଲେ ତା'ର ପ୍ରମାଣ ମିଳିଲା ଭୋଟ ଗଣତି ପରେ, ଯେତେବେଳେ ଦେଖାଗଲା ଯେ ଦାଦା ହଜାର ଯାଏ ଭୋଟ ପାଇଛି ଓ ଆଚାର୍ଯ୍ୟେ କେବଳ ଚାଳିଶ ପଚାଶ ଖଣ୍ଡ ଭୋଟ ଯୋଗୁଁ ଅମାନତ ହରେଇବାର ଲଜ୍ଜାରୁ ରକ୍ଷା ପାଇ ଯାଇଛନ୍ତି । ଦେବମାମୁଁ ପାଇଛନ୍ତି ଅଢ଼େଇ ଶହ ଭିତରେ ।

ମୋହନ ଦାସ ଓ ପ୍ରାଣନାଥ ପଟନାୟକଙ୍କ କ୍ଷେତ୍ରରେ ମଧ୍ୟ ଏଇଭଳି ହେଉଥିଲା, କିନ୍ତୁ ସେତିକିବେଳୁ କଂଗ୍ରେସ ଭିତରେ ଥିବା ଦୁର୍ବଳତାର ଝଲକ ମଧ୍ୟ ଦେଖାଯାଉଥିଲା । କୌଣସି କୌଣସି ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀ ଗାଁ ଟାଉଟରଙ୍କୁ ଟଙ୍କା ଦେଇ ଭୋଟ ସଂଗ୍ରହ ଚେଷ୍ଟା କରିଥିଲେ । ଧଣ୍ଡା ତୁଳସୀ ବି ଛାଡ଼ି ନାହାନ୍ତି । ଏସବୁ ଜାଗାରେ କଂଗ୍ରେସ ପ୍ରାର୍ଥୀ ଜିତିଲେ ମଧ୍ୟ ପାର୍ଥକ୍ୟଟା ସେତେ ବେଶି ରହି ନ ଥିଲା । ଜାଗ୍ରତ ଦରିଦ୍ର ଜନତାର ସମର୍ଥନ ଓ ପୁରୁଣା ନ୍ୟସ୍ତ ସ୍ୱାର୍ଥ ମୁଣ୍ଡିଆଳ ମାମଲତକାରଙ୍କ ସମର୍ଥନ ଦୁଇଟା ଅଲଗା ବସ୍ତୁ । ଦୁଇଟାର ପରିଣତି ସମ୍ପୂର୍ଣ୍ଣ ଭିନ୍ନ । ଏବେ ଭୋଟରେ ହଜାର ତ ପୁରୁଣା କଥା; ଲକ୍ଷ ଲକ୍ଷ ପରିମାଣରେ ଟଙ୍କା ଖରଚ ନ କରି, ଗାଁ ଟାଉଟରଙ୍କୁ ନ ଧରି ଭୋଟ ପାଇବା ସମ୍ଭବ ବୋଲି କେହି ଭାବିପାରୁ ନାହାନ୍ତି । କିନ୍ତୁ ମୋର ବିଶ୍ୱାସ ଯେ, ଯଦି ଶୁଦ୍ଧ ଉପାୟରେ ବିଶ୍ୱାସ ରଖିଥିବା ଓ ଦରିଦ୍ର ଜନତାର ହିତ ପାଇଁ ତ୍ୟାଗ ବରଣ କରିଥିବା ଦଳ କେହି ବାହାରେ ତେବେ ପୁଣି ସେହି ୧୯୩୬ ର ଇତିହାସର ପୁନରାବୃତ୍ତି ହେବ । ଯେମିତି ୧୯୪୬ର ଭୋଟରେ ମଧ୍ୟ ହୋଇଥିଲା ।

## ଟ୍ୟାନେରୀର ଅନୁଭୂତି

ବରୀରେ ମୁଁ ମହୁଚାଷ ପରେ ପରେ ଟ୍ୟାନେରୀ ମଧ୍ୟ ଆରମ୍ଭ କଲି । ଏଥିପାଇଁ ବଡ଼ପି'ସା ଅଢ଼େଇଶହ ଓ ଜଗନ୍ନାଥ ପି'ସା ଅଢ଼େଇଶହ ଟଙ୍କା ଦେଇଥିଲେ । ଏତକ ମୂଳଧନ ଧରି ସେବାଘର ଓ ଚାଟୁବାବୁଙ୍କ କ୍ୟାମ୍ପ ମଝିରେ ସେହି ରାସ୍ତାକଡ଼ରେ ଖଣ୍ଡେ ଛୋଟ ଘର ତିଆରି କରି ଟ୍ୟାନେରୀ ଆରମ୍ଭ ହେଲା । ସେଥିରେ ଦିନକୁ ଦୁଇ ତିନିଖଣ୍ଡ ଚମଡ଼ା କଷ ହେଉଥାଏ । କ୍ରୋମ୍ ପଦ୍ଧତିରେ ହିଁ କାମ ଚାଲିଥାଏ । ବଂଶୀ ନାୟକ ଆସି ମତେ ଅନେକ ଦିନ ସାହାଯ୍ୟ କରିଥିଲେ । କଟକରୁ ଗଣ୍ଟଲନ୍ ପେଣ୍ଟାୟା ବୋଲି ଜଣେ ତେଲୁଗୁ କାରିଗର ମଧ୍ୟ ଆସିଥିଲେ । ବୁଲା ଦାସ୍ ବୋଲି ଜଣେ ସ୍ଥାନୀୟ ଯୁବକ ମଧ୍ୟ କିଛି ଦିନ ଥିଲେ ।

ମୋର ଟ୍ୟାନିଂ କଳାଟା ଖୁବ୍ ଭଲଭାବରେ ଆୟତ୍ତ ହୋଇଥିଲା । ସେଥିପାଇଁ ଏଠା ତିଆରି ଜୋତାର ଉପର ଚମଡ଼ା ବଜାରରେ ମିଳୁଥିବା ଅନ୍ୟ ସେ ପ୍ରକାରର ଚମଡ଼ାଠାରୁ ନିକୃଷ୍ଟ ନ ଥିଲା । ସତୀଶବାବୁ ତା'ର ନମୁନା ଦେଖି ଖୁବ୍ ଖୁସି ହୋଇଥିଲେ । କିନ୍ତୁ ମୋର ବ୍ୟବସାୟ ଦିଗଟା କଞ୍ଚା ଥିଲା । ପ୍ରଥମତଃ ମୁଁ ଯେଉଁ ଡମମାନଙ୍କଠାରୁ ଚମଡ଼ା କିଣୁଥିଲି, ସେମାନେ ଲୁଣପାଣି ଛିଞ୍ଚି ଓଜନ ବଢ଼େଇ ଦେଉଥିଲେ । ମୁଁ ବାଇଁଶିରିଆକୁ ଚମଡ଼ା କିଣି ଯାଏ । ଡମମାନେ ମୋତେ ଆଜ୍ଞା ଆପଣ ଟିକେ ବସନ୍ତୁ ବୋଲି କହି ମତେ ବସେଇ ଦେଇ ତେଣେ ବାରିଆଡ଼େ ପାଣି ଛିଞ୍ଚିବାରେ ଲାଗିଯା'ନ୍ତି । କଞ୍ଚାଚମଡ଼ା ଓଜନରେ ବିକାକିଣା ହୁଏ । ଯାହାହେଉ ଏଥିରେ କ୍ଷତିଟା ବେଶି ହେଉ ନ ଥିଲା । ଏ ଉପାୟରେ ସେମାନେ ଶତକଡ଼ା କୋଡ଼ିଏ ପଚିଶ ଅଧିକ ଦାମ ନେଉଥିଲେ ବି ସହରରେ କଞ୍ଚା ଚମଡ଼ା ବିକ୍ରିଦାମ ଅପେକ୍ଷା ଏହା ଶସ୍ତା ଥିଲା ।

କଟକରେ ଚମଡ଼ା ବିକ୍ରିର ବ୍ୟବସ୍ଥା ଥିଲା ଯେ ହିନ୍ଦୀ ପଣ୍ଡିତ ଅନସୂୟା ପ୍ରସାଦ ପାଠକଙ୍କ ଜିମାରେ ତାହା ରହିବ ଓ ସେଠୁ ଜୋତା ଦୋକାନୀଙ୍କ ପାଖରେ ତାହା ପହଞ୍ଚେଇବା ପାଇଁ ଜଣେ

ଲୋକ ଥାଏ । ସେ ବିକ୍ରି ଉପରେ କମିଶନ ପାଏ । ଜଣେ ପୁରୁଣା ଓ ପରିଚିତ ଦେକାନୀ ହିଁ ମୁଖ୍ୟତଃ ଚମଡ଼ା ନେଉଥା'ନ୍ତି ଓ କ୍ରମେ ତାହା ଧାରରେ ନେବାକୁ ଆରମ୍ଭ କଲେ । ତାଙ୍କ ଉପରେ ବେଶ୍ କିଛି ଟଙ୍କା ପାଉଣା ହେଇଯିବା ପରେ ସେ ଆଉ ଟଙ୍କା ନ ଦେଇ ଫାଙ୍କି ଦେଲେ । ଏହାଦ୍ୱାରା ଯାହାକିଛି କ୍ଷତି ହେଲା ତାହା ସମ୍ଭାଳି ଯିବା କଠିନ ନ ଥିଲା । କିନ୍ତୁ ଅସଲ କଥା ହେଲା ଯେ, ମୁଁ ତ ତେଣେ ବାହାରେ କଂଗ୍ରେସ ସଙ୍ଗଠନ ଓ ପ୍ରଚାର କାମରେ ସମୟ ଦେଉଥାଏ । ଦକ୍ଷିଣ ବିଞ୍ଝାରପୁର ଅଞ୍ଚଳଟା ଯାକରେ ବୁଲି ସଭା ଜରିବା, କଂଗ୍ରେସ ସଦସ୍ୟ ସଂଗ୍ରହ କରିବା ଆଦି କାମ କରୁଥାଏ । ୧୯୩୯ ରେ ମହାଯୁଦ୍ଧ ଆରମ୍ଭ ହେବା ପରେ ଏ ବାହାର କାମର ଜୋରଟା ବଢ଼ିଗଲା । ୧୯୪୦ ରେ ମୁଁ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଜେଲ ଗଲି ଓ ସେବେଠୁଁ ଟ୍ୟାନେରୀ ବନ୍ଦ ହେଲା । ୧୯୪୫-୪୬ ରେ ବରୀ ଫେରିବାପରେ ଟ୍ୟାନେରୀର ସ୍ମୃତି ମନକୁ ଆଲୋଡ଼ିତ କରୁଥିଲା । ଏ କାମକୁ ମୁଁ ପ୍ରକୃତରେ ଭଲପାଉଥିଲି ଓ ଏବେ ବି ଟ୍ୟାନେରୀ ଦେଖିଲେ ଗୋଟାଏ ବ୍ୟଥାମଧୁର ସ୍ମୃତି ମନକୁ ଘେରିଯାଏ । ଏ ଅଧାପନ୍ତାରିଆ କାମକୁ ପୁଣି ସୂଚାରୁରୂପେ ଚଳେଇବାକୁ କେତେଥର ମନ ଡାକିଛି କିନ୍ତୁ ତାହା ଆଉ ସମ୍ଭବ ହେଇନାହିଁ ।

ମୋ ତତ୍ତ୍ୱାବଧାନରେ ବରୀରେ ଏକ ସରଞ୍ଜାମ କାର୍ଯ୍ୟାଳୟ ମଧ୍ୟ ସାନ ଆକାରରେ ଆରମ୍ଭ ହେଇଥିଲା, ଚରଖା ଓ ମହୁଚାଷ ସରଞ୍ଜାମ ତିଆରି କରିବାକୁ । ମୁଁ ଥରେ ୱାର୍ଧା ଯାଇ ସେଠାର କାର୍ଯ୍ୟାଳୟ ଦେଖି ଆସିଥିଲି । ବରୀ କାର୍ଯ୍ୟାଳୟରେ ଲେଥ୍ ପ୍ରଭୃତି ଆଧୁନିକ ଯନ୍ତ୍ରପାତି କିଛି ଥାଏ । ସ୍ଥାନୀୟ ବଢ଼େଇ ମିସ୍ତ୍ରୀମାନେ କାମ କରୁଥା'ନ୍ତି । ଏଥିରେ ମଧ୍ୟ ଦେଖାଗଲା ଯେ ସ୍ଥାନୀୟ କାରିଗରଙ୍କ କର୍ମକୁଶଳତା ବହୁତ କମ୍, କାରିଗରୀ ସୂକ୍ଷ୍ମତା ମଧ୍ୟ କମ୍ । ୱାର୍ଧାରେ ମିସ୍ତ୍ରୀମାନେ ବାକ୍ସ ଚରଖାର ଗୋଟିଏ ବାକ୍ସ ତିଆରି କରି ସେତେବେଳେ ଚଉଦଅଣା ମଜୁରୀ ପାଉଥା'ନ୍ତି ଓ ଜଣେ ମିସ୍ତ୍ରୀ ଦିନକୁ ଦୁଇ ଅଢ଼େଇ ଟଙ୍କା କମଉଥା'ନ୍ତି । ଆମର ମିସ୍ତ୍ରୀ ଗୋଟିଏ ବାକ୍ସ ପିଛା ତିନିଟା ମଜୁରୀ ଲଗାନ୍ତି ଓ ଦୈନିକ ଆୟ ଛଅ ଅଣା । ୱାର୍ଧାରେ ଠିକାରେ କାମ ହେଉଥାଏ । ମିସ୍ତ୍ରୀମାନେ ତିନି ଚାରି ଜଣ ଲେଖାଁ ଦଳବାନ୍ଧି କାମ ବାଣ୍ଟିନେଇ କରୁଥା'ନ୍ତି, ଏକା ମାପର କାଠ ଅଂଶ ସବୁ କାଟିବାପାଇଁ, ମାପକରି ଚିହ୍ନ ଦେବାପାଇଁ ଟେମ୍ପ୍ଲେଟ୍ ତିଆରିକରି ନେଇଥା'ନ୍ତି । ସେମାନେ ଛିଡ଼ାହୋଇ ଟେବୁଲ ଉପରେ କାମ କରନ୍ତି । ତଳେ ବସି ନୁହେଁ । ଏଠି ମଧ୍ୟ ଠିକା ପଦ୍ଧତି ଓ କାମ କରିବାର ଉନ୍ନତ ଢଙ୍ଗ, ଟେମ୍ପ୍ଲେଟ୍ ଆଦିର ପ୍ରବର୍ତ୍ତନ ଦ୍ୱାରା ମିସ୍ତ୍ରୀମାନଙ୍କର କର୍ମକୁଶଳତା ଓ ସୂକ୍ଷ୍ମତା ବଢ଼ିଲା ଓ ସେମାନଙ୍କର ଆୟ ବି ଦିନକୁ ବାର ଚୌଦ ଅଣା ହେଲା । ତିନି ଦିନରେ ଗୋଟାଏ ସ୍ଥାନରେ ଦିନକୁ ଦେଢ଼ଟା ବାକ୍ସ ତିଆରି କରିପାରିଲେ । ସେହିପରି ମହୁବାକ୍ସ ଓ ଅନ୍ୟସବୁ ସରଞ୍ଜାମ ବାବଦରେ ମଧ୍ୟ ହେଲା । ପୂର୍ବେ ବହୁ ବାକ୍ସର ଫ୍ରେମ୍ ଗୋଟାକୁ ଦୁଇଅଣା ମଜୁରୀ ଲାଗୁଥିଲା । ଏବେ ଗୋଟା ପଇସାକରେ ହୋଇପାରିଲା । ଲେଥ୍‌ରେ କାମ କରିବା ପାଇଁ ଇନ୍ଦୁପୁରର କୃଷ୍ଣଚନ୍ଦ୍ର ଜେନା ଆସି ରହିଥିଲେ । ସେ ବହୁ ଉତ୍‌ଥାନ ପତନ ଭିତର ଦେଇ ଏବେ ବି ସାଥିରେ ଚାଲିଛନ୍ତି ।

ମୁଁ ଗାନ୍ଧୀଙ୍କର ଜୀବନୀରେ ପଢ଼ିଥିଲି - ନାଁ ତାଙ୍କର ଅନ୍ୟ କୌଣସି ଲେଖାରେ ? ଯେ ସେ ବିଲାତରେ ଥିବାବେଳେ ହିସାବ ଠିକ୍ ରଖିବା ଉପରେ ଖୁବ୍ ଜୋର ଦେଉଥିଲେ । ଚାରି ପଇସାର ସୁଦ୍ଧା ଠିକ୍ ହିସାବ ନ ମିଳିଲେ, ତାହା ନମିଳିବା ଯାଏ ସେ ସ୍ୱସ୍ତି ଅନୁଭବ କରୁ ନ ଥିଲେ । ତାର ଗୋଟାଏ ପ୍ରଭାବ ମୋର ଉପରେ ପଡ଼ିଥିଲା ଓ ମୁଁ ନିୟମିତ ହିସାବ ଲେଖିବା ଅଭ୍ୟାସ କରିଥିଲି । କଲିକତାରେ ଟ୍ୟାନେରୀରେ ଥିବାବେଳେ କିଛି ଦିନ ହିସାବ ଲେଖିବା କାମ କରିଥିଲି ଓ ତାହା ଫଳରେ ଡବ୍ଲ ଏଣ୍ଟ୍ରି ପ୍ରଣାଳୀଟା ଅଭ୍ୟାସରେ ପଡ଼ିଯାଇଥିଲା । ବରୀରେ ଟ୍ୟାନେରୀର ଆୟବ୍ୟୟ ଓ ଲାଭକ୍ଷତି ହିସାବ ବାହାର କରିବା ଆବଶ୍ୟକ ହେବାରୁ ମୁଁ ଖଦୀ ଅନୁଷ୍ଠାନର ପୁରୁଣା ବାର୍ଷିକ ଲାଭ କ୍ଷତି ହିସାବ- ବାଲାନ୍ସ ସିଟ୍- ଘାଣ୍ଟି ଓ ହିସାବ ବିଷୟରେ ଖଣ୍ଡିଏ ବହିର ସାହାଯ୍ୟ ନେଇ ତାହା ବାହାର କରିଦେଲି । ଫଳରେ ଏ ବିଷୟରେ ମୋର ପକ୍କା ଧାରଣା ହୋଇଗଲା । ଏ ଜ୍ଞାନ ମୋର ଖୁବ୍ କାମରେ ଆସୁଛି ଓ ବ୍ୟବସ୍ଥିତ ହିସାବ ରଖିବା ଅଭ୍ୟାସ ମଧ ମୋର ବହୁତ ଉପକାର କରିଛି ।

## ଗଡ଼ଜାତ ପ୍ରଜା ଆନ୍ଦୋଳନ

୧୯୩୬ ରୁ ୧୯୪୨- ଏହି ସାତବର୍ଷ ସମୟ ଏତେ ପ୍ରକାରର କାମ, ଏତେ ଘଟଣା ଓ ଚିନ୍ତାର ସଂଘାତରେ ଭରପୂର ଯେ, ସେଥିରୁ କେଉଁଟା ଆଗେ ଓ କେଉଁଟା ପରେ ଲେଖିବି ତାହା ମୋ ପକ୍ଷରେ ଏକ ସମସ୍ୟା ହେଉଛି । ତାହାଛଡ଼ା କେତେକ ଘଟଣା ଓ ଅନୁଭୂତିର ସମୟର କ୍ରମ ମଧ ଠିକ୍ ଠିକ୍ ମନେ ପକେଇବା ଏକ ସମସ୍ୟା । ତେଣୁ ଗୋଟାଏ ଗୋଟାଏ ପ୍ରସଙ୍ଗଧରି ଲେଖିବି । ସମୟର ଯଥାଯଥ କ୍ରମ ଯେତେଟା ରହିପାରିବ ରହିବ, ନଚେତ ନାହିଁ ।

ଏହାରି ଭିତରେ ୧୯୩୮-୩୯ ରେ ଓଡ଼ିଶାର ମୌଳିକ ଶିକ୍ଷାର ମୂଳପତନ ହେଲା । ଗଡ଼ଜାତମାନଙ୍କରେ ପ୍ରଜା ଆନ୍ଦୋଳନ ଆରମ୍ଭ ହେଲା ଓ ଅନ୍ୟ ଦିଗରେ କୃଷକ ଆନ୍ଦୋଳନ ମଧ ତେଜିଲା । ଏହା ସାଙ୍ଗକୁ କଂଗ୍ରେସର ମନ୍ତ୍ରୀତ୍ୱ ଗ୍ରହଣର ନୂଆ ଅନୁଭୂତି ସାଙ୍ଗକୁ କଂଗ୍ରେସ୍‌ରେ ଗୋଷ୍ଠୀ ବିବାଦ ମଧ ତେଜିଉଠିଥାଏ । କଂଗ୍ରେସ ସୋସାଲିଷ୍ଟ ଦଳକୁ ଭିତରୁ ଦଖଲ କରିବା ପାଇଁ କମ୍ୟୁନିଷ୍ଟମାନ ପ୍ରବଳ ଉଦ୍ୟମ ଚଳାଉଥା'ନ୍ତି । ୟୁରୋପରେ ହିଟଲରଙ୍କ ପ୍ରତାପ ବଢ଼ିବା ସାଙ୍ଗେ ସାଙ୍ଗେ ମହାଯୁଦ୍ଧର ଆଶଙ୍କା ମଧ ଘନେଇ ଆସୁଥାଏ । ନେତାଜୀ ସୁଭାଷଚନ୍ଦ୍ର, ଭାରତୀୟ ସ୍ୱାଧୀନତା ଆନ୍ଦୋଳନକୁ ଏକ ନୂଆ ଆଭିମୁଖ୍ୟ ଦେବାପାଇଁ ଉଦ୍ୟମ କରୁଥା'ନ୍ତି ଓ କଂଗ୍ରେସ ସରକାର ଦ୍ୱାରା ଦଙ୍ଗାହଙ୍ଗାମା ଶାନ୍ତ କରିବା ପାଇଁ ପୁଲିସର ଘନଘନ ବ୍ୟବହାରରେ ଗାନ୍ଧୀଜୀ ଚିନ୍ତିତ ହୋଇପଡ଼ିଥା'ନ୍ତି ।

ମୁଁ ଏହା ଭିତରେ ସବୁବ୍ୟାପାର ସହିତ କିଛି ନା କିଛି ପରିମାଣରେ ସଂପୃକ୍ତ ଥିଲେବି କେଉଁଥିରେ ପୂରାପୂରି ଲିପ୍ତ ହୋଇଥାଏ ବୋଲି କହିହେବ ନାହିଁ । ସବୁଥିରେ ଥାଏ କେଉଁଥିରେ

ନ ଥାଏ, ଏପରି ଅବସ୍ଥା । ସେତେବେଳେ ମୁଁ କଂଗ୍ରେସ ସୋସାଲିଷ୍ଟ ଦଳରେ ଥାଏ କିନ୍ତୁ ଗାନ୍ଧୀ ପ୍ରବର୍ତ୍ତିତ ରଚନାତ୍ମକ କାମରେ ଲାଗିଥାଏ । ଏ ଦୁଇଟା ଭିତରେ ମତେ ସେତେବେଳେ ବିଶେଷ ବିରୋଧ ଦେଖାଯାଉ ନ ଥାଏ ବା ସେ ବିରୋଧଟାକୁ ମୁଁ ଖାତିର କରୁ ନ ଥାଏ । ମୁଁ ସେତେବେଳେ ବିକେନ୍ଦ୍ରିତ  ଗ୍ରାମ୍ୟ ଅର୍ଥ ବ୍ୟବସ୍ଥାରେ ଗୁରୁତ୍ୱ ଓ ଆବଶ୍ୟକତା ମୋଟାମୋଟି ଉପଲବ୍ଧି ଓ ଗ୍ରହଣ କରୁଥାଏ । ମୁଁ ଯେତେବେଳେ ଏ ସବୁ ବିଷୟରେ ଅନ୍ୟ ରଚନାତ୍ମକ କର୍ମୀଙ୍କ ସହିତ ଯୁକ୍ତିତର୍କରେ ପଶେ ସେତେବେଳେ ସେମାନଙ୍କର ଦୃଷ୍ଟିକୋଣ ମତେ ଏକାଙ୍ଗୀ ଜଣାପଡ଼େ । ସେତେବେଳେ ମୁଁ ଅନୁଭବ କରୁଥାଏ ଯେ ଏ ଦେଶରୁ ଦାରିଦ୍ର୍ୟ ସଂପୂର୍ଣ୍ଣରୂପେ ଲୋପ ହୋଇପାରିବ, ସମସ୍ତ ଲୋକ ଭଲରକମ ମୁଠାଏ ଖାଇବାକୁ, ପିନ୍ଧିବାକୁ ପାଇବେ, ଏଭଳି ଭରସା ଅନେକ ଗାନ୍ଧୀପନ୍ଥୀ କର୍ମୀଙ୍କର ନାହିଁ । କିଛି ଦୁଃଖ ଦୂର କରିବା, ଏଇ ଭାବନେଇ ସେମାନେ କାମ କରୁଛନ୍ତି । ଅନ୍ୟପକ୍ଷରେ ସମାଜବାଦୀମାନଙ୍କ ଭିତରେ ଅହିଂସା ବିଷୟରେ ଅନାସ୍ଥା, ଗାନ୍ଧୀଙ୍କୁ ବିଦ୍ରୂପ କରିବାର ମନୋଭାବ ଓ ପ୍ରଚ୍ଛନ୍ନ କମ୍ୟୁନିଷ୍ଟଙ୍କ ଭିତରେ ସୋଭିଏତ୍ ଦେଶପ୍ରତି ଅନ୍ଧଭକ୍ତି ମତେ ଅଡୁଆ ଲାଗୁଥାଏ । ନୂଆ ଦୁନିଆ, ସମାଜବାଦ, ଗଢ଼ିବା ପାଇଁ ମତେ ଏସବୁ ଆବଶ୍ୟକ ବୋଧହେଉନଥାଏ । ସୋଭିଏତ୍ ଦେଶକୁ ମୁଁ ପ୍ରଶଂସା ଦୃଷ୍ଟିରେ ଦେଖୁଥାଏ । ସେଠି ଏକ ନୂଆ ସଭ୍ୟତାର ମୂଳଦୁଆ ପଡ଼ିଛି ବୋଲି ଅନୁଭବ କରୁଥାଏ । ତାହା ବିଷୟରେ ଅଧିକରୁ ଅଧିକ ଜାଣିବାକୁ ଉତ୍ସୁକ ଥାଏ । କିନ୍ତୁ କଥା କଥାକେ ତାହାର ଦ୍ୱାହି ମୋ ତଣ୍ଟିରେ ଗଳୁ ନ ଥାଏ । ମୋର ଦୃଷ୍ଟି ଥାଏ ଯେ ସେଥିରୁ ଆମେ ଯାହା ଶିଖିବାର ଶିଖିବା, କିନ୍ତୁ ଅନ୍ଧ ଅନୁକରଣ ମୂର୍ଖତା । ଏବେ ବି ମୋର ସେହି ଦୃଷ୍ଟି ରହିଛି ।

ଏହି ସମୟରେ ଧର୍ମଶାଳା ଥାନାର କେଉଁ ଗୋଟାଏ ଗାଁରେ କୃଷକ ସଂଘର ଶିବିର ହେଲା । ଦାଦା, ଖୁଡ଼ୀ, ଭଗବତୀବାବୁ, ଗୁରୁଚରଣ ପଟ୍ଟନାୟକ ପ୍ରଭୃତି ସେଥିରେ ଯୋଗ ଦେଇଥା'ନ୍ତି । ପାଖ ଆଖ ଅଞ୍ଚଳର ଅନେକ ଚାଷୀ ଓ ଯୁବକ ସେଥିରେ ଯୋଗ ଦେଇଥା'ନ୍ତି । ମୁଁ ବି ସେଠି ଯାଇ ଆସନ, ନମସ୍କାର ଓ ଡ୍ରିଲ୍ ଶିଖାଉଥାଏ । କୃଷକ ସଙ୍ଗଠନ, ଜମିଦାରୀ ଜୁଲୁମ ଆଦି ବିଷୟରେ ଆଲୋଚନା ଓ ବକ୍ତୃତା ଅନ୍ୟମାନେ କରୁଥା'ନ୍ତି । ତାହା ଭିତରେ ଭଗବତୀବାବୁ ଯେଉଁପରି ହିଂସାର ମନୋଭାବ ଓ ଦ୍ୱେଷ ଉତ୍ତେଜବା ଚେଷ୍ଟା କରୁଥା'ନ୍ତି ତାହା ମତେ ଭଲ ଲାଗୁନଥାଏ । ଦିନେ ଆମେ ଗୋଟାଏ କୁଆଡ଼େ ଏକାଠି ସମସ୍ତେ ଯାଉଥାଉ, ବାଟରେ ଜମିଦାରଙ୍କର କଚିରୀ ପଡ଼ିଲା । ସେଠି କେତେଜଣ କର୍ମଚାରୀ ଛିଡ଼ାହୋଇଥିଲେ, ଆମମାନଙ୍କୁ ଦେଖି ନମସ୍କାର କଲେ । ରାମଚନ୍ଦ୍ର ମିଶ୍ର ଆମ ସହିତ ଥା'ନ୍ତି । ସେ ପ୍ରତିନମସ୍କାର କରି କ'ଣ ଦୁଇପଦ କଥା ହେଲେ । ସେଥିପାଇଁ ତାଙ୍କୁ ପରେ ଧମକ ଖାଇବାକୁ ପଡ଼ିଲା । ଏଗୁଡ଼ାକ ମତେ ଭଲ ଲାଗୁନଥାଏ, ଅଥଚ ମୁଁ କିଛି କହି ବି ପାରୁ ନ ଥାଏ ।

ଏହାପରେ ଗଡ଼ଜାତ ଆନ୍ଦୋଳନ ଆରମ୍ଭ ହେଲା । ତାଳଚେର ରାଜାଙ୍କର ଉତ୍ପୀଡ଼ନର ପ୍ରତିବାଦରେ ସେଠୁ ବହୁ ସହସ୍ର ପ୍ରଜା ପିଲାଛୁଆ ଧରି ଆସି ଅନୁଗୁଳରେ କୋଶଳା, କମଶଳା ଓ

ବଁରପାଳ ଗାଁମାନଙ୍କ ପାଖରେ ଅନେକ ଦିନଯାଏ ତାଳପତ୍ରର ପଲାମାରି ପଡ଼ିରହିଲେ । ଓଡ଼ିଶା ସରକାର ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଥା'ନ୍ତି ଓ ସେମାନଙ୍କର ଯଥାସମ୍ଭବ ସୁବିଧା କରିଦେବା ପାଇଁ ଚେଷ୍ଟା କରୁଥା'ନ୍ତି । ଗାନ୍ଧୀ ସେବା ସଂଘ ପକ୍ଷରୁ ସେଠି ଲୋକଙ୍କୁ କାମ ଯୋଗାଇବା ପାଇଁ ସୂତାକଟା, ଖଲିପତ୍ର ସିଆଁ ଆଦି କାମ ଆରମ୍ଭ ହେଲା । କର୍ମୀମାନେ ଏ ସବୁ କାମ ସାଙ୍ଗକୁ ଲୋକଙ୍କୁ ଗାନ୍ଧୀଜୀଙ୍କର ଚିନ୍ତାଧାରା ସହିତ ମଧ୍ୟ ପରିଚିତ କରାଉଥାନ୍ତି । ମୁଁ ବି ସେତେବେଳେ ତେଣେ ଯାଇ କିଛି ସାହାଯ୍ୟ କରୁଥାଏ ।

ଏଣେ ସେହି ସମୟରେ ଢେଙ୍କାନାଳରେ ବି ପ୍ରଜା ଆନ୍ଦୋଳନ ତେଜିଲା । ବାହାରୁ ଗୌରାଙ୍ଗବାବୁ ହେରିକା ସତ୍ୟାଗ୍ରହ କରିବାକୁ ଯାଇ ଖୁବ୍ ମାଡ଼ ଖାଇଲେ । ରବିଦା (ରବି ଘୋଷ) ବି ଏଇବେଳେ ଏ ସବୁ ଆନ୍ଦୋଳନରେ ଖୁବ୍ ସହଯୋଗ କରୁଥିଲା । ତା'ଭଳି ହୃଦୟବାନ ଲୋକ ମୁଁ କମ୍ ଦେଖିଛି । ସେ ରାସ୍ତାରେ ଯିବାବେଳେ କୌଣସି ଛିଣ୍ଡା ଲୁଗା ପିନ୍ଧା ଲୋକ ଦେଖିଲେ ତାକୁ ନିଜର କୁର୍ତ୍ତା ଦେଇ ଦେଇ ଖାଲି ଦେହରେ ଫେରିବ । ଢେଙ୍କାନାଳ ଆନ୍ଦୋଳନ ଭିତରେ ବ୍ରାହ୍ମଣୀ ନଈର ଭୁବନ ଘାଟରେ ପୁଲିସଙ୍କୁ ନଈ ପାରି ହେବାରେ ସହଯୋଗ କରିବାକୁ ମନା କରିବାକୁ ବାଜୀ ରାଉତ ସମେତ ସାତଜଣ ପୁଲିସ ଗୁଳିରେ ପ୍ରାଣ ଦେଲେ । ସେମାନଙ୍କର ଶବକୁ ଜେନାପୁର ପର୍ଯ୍ୟନ୍ତ ଅଣାଯାଇ ସେଠୁ ଟ୍ରେନ୍‌ରେ କଟକ ଅଣାହେଲା । କଟକରେ ଏ ସବୁ ଶବକୁ ନେଇ ଏକ ଶୋଭାଯାତ୍ରା ବାହାରିଲା ଓ ଖୁବ୍ ଉତ୍ତେଜନା ସୃଷ୍ଟି ହେଲା ।

ଓଡ଼ିଶା ଗଡ଼ଜାତ ଆନ୍ଦୋଳନରେ ହିଂସାର ପ୍ରଚାର ହେଉଛି ବୋଲି ଗାନ୍ଧୀଜୀଙ୍କର କାନରେ ଖବର ପଡ଼ିବାରୁ ସେ ସେ ବିଷୟରେ ପଚରାପଚରି କରି ବୁଝୁଥା'ନ୍ତି । ଇତିମଧ୍ୟରେ ମିସ୍ ଏଲେନ୍ ୱିଲକିନ୍‌ସନ୍ ଗଡ଼ଜାତ ଆନ୍ଦୋଳନ ବିଷୟରେ ଜାଣିବା ପାଇଁ ଆସି ଏ ବିଷୟରେ ମଧ୍ୟ ଖୋଜ ନେଇଥିଲେ । କାଳିନ୍ଦୀବାବୁଙ୍କର ବାଜୀ ରାଉତ କବିତାଟିରେ ହିଂସାର ପ୍ରଚାର ଅଛି ବୋଲି ସେ କେଉଁଠୁ ଶୁଣିଥିଲେ ଓ ତାଙ୍କ ଅବଗତି ନିମନ୍ତେ ଏହାର ଇଂରାଜୀ ଅନୁବାଦ ମୁଁ କରିଦେଇଥିଲି ।

ଢେଙ୍କାନାଳ ଆନ୍ଦୋଳନରେ ଲୋକଙ୍କ ଆଡୁ ହିଂସା ହୋଇଥିବାର ଜଣାନାହିଁ, କାଁ ଭାଁ କେଉଁଠି ଅତି ସାଧାରଣ ରକମର ହେଇଥିଲେ ହେଇଥାଇପାରେ । ମାତ୍ର ମୁଁ ଲକ୍ଷ୍ୟ କରିଥିଲି ଯେ କଂଗ୍ରେସ ସୋଶାଲିଷ୍ଟ ଦଳରେ ପଶିଥିବା କମ୍ୟୁନିଷ୍ଟ ପଞ୍ଝାଟା - ସେମାନେ କମ୍ୟୁନିଷ୍ଟ ବୋଲି ଅବଶ୍ୟ ପରେ ଜଣାପଡ଼ିଲା - ବରାବର ଗାନ୍ଧୀ ପନ୍ଥାକୁ ଉପହାସ କରି ଲାଗିଥାନ୍ତି ଓ କୌଣସି ମତେ ଗୋଟାଏ କିଛି ଗୁଳି ବା ଲାଠି କାଣ୍ଡର ପରିସ୍ଥିତି ସୃଷ୍ଟି କରିଦେଲେ ଭାରି ବଡ଼ କାମ ହେଇଗଲା ବୋଲି ବିଚାରୁଥା'ନ୍ତି । ସେପରି ଲାଠି ବା ଗୁଳି ସାମନାରେ ଅବଶ୍ୟ ସେମାନେ ନିଜେ ରହିବାର ପ୍ରଶ୍ନ ନ ଥାଏ । ଏହା ଫଳରେ ଲୋକଙ୍କର ଅବସ୍ଥା କ'ଣ ହେବ, ସେମାନଙ୍କର ମନୋବଳ ରହିବ କି ନାହିଁ, ଏ ସବୁରେ ଚିନ୍ତା ବି ନ ଥାଏ । ଏ ମନୋଭାବ ମତେ ଦାୟିତ୍ୱହୀନ ବୋଧ ହେଉଥାଏ । ଆଜି ପର୍ଯ୍ୟନ୍ତ ଦେଖୁଛି କେବଳ ସେହିମାନେ ନୁହନ୍ତି, ଅନ୍ୟ କେତେକ

ନେତା ଓ ଦଳଙ୍କ ଭିତରେ ବି ସେହି ମନୋଭାବ ରହିଛି । ସେମାନେ ଲୋକଙ୍କୁ କେବଳ ଗୋଟାଏ କାମ ହାସଲ କରିବାର ଉପକରଣ ବୋଲି ବିଚାରନ୍ତି । ଏଭଳି ବ୍ୟକ୍ତି କୌଣସି ପ୍ରକୃତ ଜନଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିବା ସମ୍ଭବ ନୁହେଁ ।

ଏହି ସମୟରେ ସାଧ୍ୟ ଓ ସାଧନ ନେଇ ଖୁବ୍ ଚର୍ଚ୍ଚା ଚାଲିଥାଏ । ମୋଟ ଉପରେ ଅହିଂସାର ଗୁରୁତ୍ୱକୁ ଊଣାକରି ଦେବାର ଏକ ଝୁଙ୍କ ବାମପନ୍ଥୀ ମହଲରେ ଦେଖାଯାଉଥାଏ । ସାଧ୍ୟ ଓ ସାଧନର ଅବିଚ୍ଛେଦ୍ୟ ସମ୍ବନ୍ଧ, କୌଣସି ଭଲ ଲକ୍ଷ୍ୟ ହାସଲ କରିବା ପାଇଁ ତାହାର ଅନୁରୂପ ଭଲ ଉପାୟ ଲୋଡ଼ା, ଏ ବିଷୟରେ ମୋର ସେତେବେଳକୁ ଏକରକମ ଦୃଢ଼ ପ୍ରତୀତି ହୋଇଯାଇଥାଏ । ସେତେବେଳେ ମୁଁ ଏ ସବୁ ପ୍ରଶ୍ନ ଉପରେ ସାପ୍ତାହିକ କଂଗ୍ରେସ ସୋଶାଲିଷ୍ଟ ପତ୍ରିକାରେ ଗୋଟିଏ ଛୋଟ ଓ ଦୁଇଟି ବଡ଼ ଲେଖା ଲେଖିଥିଲି । ସେତେବେଳେ ଅଶୋକ ମେହତା ତା'ର ସଂପାଦକ ଥା'ନ୍ତି । ତିରିଶ ବର୍ଷ ପରେ ଯେତେବେଳେ ତାଙ୍କ ସାଙ୍ଗରେ ଏକ କମିଟିରେ ପୁଣି ଦେଖାହେଲା ସେ ସେକଥା ମନେ ପକେଇଥିଲେ । ଏ ଲେଖାରୁ ଗୋଟିଏ ସାଧ୍ୟସାଧନ ଉପରେ ଓ ସେଥିରେ ପ୍ରକୃତ ସମାଜବାଦ ପ୍ରତିଷ୍ଠା ପାଇଁ ଅହିଂସା ଆନ୍ଦୋଳନର ଅପରିହାର୍ଯ୍ୟତା ଉପରେ ଜୋର ଦିଆଯାଇଥାଏ । ଏ ଲେଖାଟି ଗାନ୍ଧୀଜୀଙ୍କର ଆଖିରେ ପଡ଼ିଲା ଓ ସେ ତା'ର ପ୍ରଶଂସା କଲେ ବୋଲି ବାପା ଥରେ ୱାର୍ଧାରୁ ଫେରି ମତେ କହିଲେ । ଧୋତ୍ରେଜୀ କୁଆଡ଼େ ମନ୍ତବ୍ୟ କଲେ ଯେ ସେ କିନ୍ତୁ ସ୍କୁଲ କଲେଜରେ ପଢ଼ିନାହିଁ, ଏଥିରେ ଗାନ୍ଧୀଜୀ କୁଆଡ଼େ କହିଲେ - "ତା' ହେଲେ ତ ମୋର ସାର୍ଟିଫିକେଟ ଊଣା ହେଇଥିଲା ।"

ସେ ସମୟରେ ଭଗବତୀବାବୁ ମୋ ପିଛା ଖୁବ୍ ଲାଗିଥିଲେ । ସେ ଦୁଇଥର ବରୀକୁ ଖାସ୍ ମୋ ସହିତ କଥାବାର୍ତ୍ତା କରିବାକୁ ଆସିଥିଲେ । କଟକରେ ମଧ୍ୟ କେତେଥର ଆଲୋଚନା କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ମୋତେ କମ୍ୟୁନିଷ୍ଟ ଦଳପାଇଁ ରିକ୍ରୁଟ୍ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ବୋଲି ମନେହୁଏ । ମୋର ସେତେବେଳେ ବିକେନ୍ଦ୍ରିତ ଅର୍ଥ ବ୍ୟବସ୍ଥାର ଆବଶ୍ୟକତା ବିଷୟରେ ମୋଟାମୋଟି ଦୃଢ଼ ଧାରଣା ଥାଏ । ସେଥିପାଇଁ ସେ ଥରେ ସାମ୍ୟବାଦୀ ବ୍ୟବସ୍ଥାରେ ମଧ୍ୟ ବିକେନ୍ଦ୍ରିତ ଛୋଟ ଛୋଟ ଧନ୍ଦାର ସ୍ଥାନ ଅଛି ବୋଲି ମତେ ବୁଝେଇଥିଲେ । ସୋଭିଏତ୍ ଦେଶର ମଙ୍ଗୋଲିଆ କି କେଉଁ ଅଞ୍ଚଳର ଉଦାହରଣ ସେ ଦେଇଥିଲେ ।

## ଓଡ଼ିଶାରେ ମୌଳିକ ଶିକ୍ଷା

ଏସବୁ ଚାଲିଥିବା ଭିତରେ ଗାନ୍ଧୀଜୀ ଦେଶ ଆଗରେ ମୌଳିକ ଶିକ୍ଷାର ଯୋଜନା ରଖିଲେ । ତାହାର ସପକ୍ଷ ବିପକ୍ଷ ବହୁତ ଆଲୋଚନା ଚାଲିଲା । କାମଧନ୍ଦା ମାଧ୍ୟମରେ ବୌଦ୍ଧିକ ଶିକ୍ଷା କଥାଟା ଅଧିକାଂଶ ଲୋକ ବୁଝିପାରୁନଥାନ୍ତି ଓ ପସନ୍ଦ କରୁ ନ ଥାନ୍ତି । ମତେ କିନ୍ତୁ ଏଇ କଥାଟା ସ୍ୱାଭାବିକ ଓ ଠିକ୍ ବୋଲି ଜଣାଗଲା । ମୋର ନିଜର ଶିକ୍ଷା ଏପର୍ଯ୍ୟନ୍ତ ସେହି ଭାବରେ ହେଇ ଆସିଥିଲା ଓ ତାହାଦ୍ୱାରା ମୋର ଜ୍ଞାନଟା ତୁଚ୍ଛା ପୋଥିଗତ ବିଦ୍ୟା ହାସଲ କରିଥିବା

ବ୍ୟକ୍ତିଙ୍କଠାରୁ ଅଧିକ ପକ୍ୱ ଥିଲା ଓ ସେଥିରୁ ମୁଁ ଅଧିକ ରସ ଗ୍ରହଣ କରୁଥିଲି ବୋଲି ମୋର ସନ୍ଦେହ ନ ଥିଲା । ଏହାରି କିଛି ସମୟ ପୂର୍ବରୁ ସୋଭିଏତ୍ ସଂଘରେ ଶିକ୍ଷା ବ୍ୟବସ୍ଥା ବିଷୟରେ ଏକସମୟରେ ସେଠାର ଶିକ୍ଷାମନ୍ତ୍ରୀ ଥିବା ପିଙ୍କେଭିଚ୍‌ଙ୍କର (Pinkevich) ଖଣ୍ଡେ ଛୋଟ ବହି ପଢ଼ିଥିଲି । ପରେ ସେହି ବିଷୟରେ ଆଉ ଖଣ୍ଡେ ବଡ଼ ବହି ମଧ୍ୟ ପଢ଼ିଲି । ସେଥିରେ ବର୍ଣ୍ଣିତ ଶିକ୍ଷା ବ୍ୟବସ୍ଥାରେ ବୌଦ୍ଧିକ ଶିକ୍ଷା ଓ ହାତକାମ ଉଭୟର ସମାବେଶ ଥାଏ । ସେଥିରେ ବି ଆଠ ବର୍ଷରେ ପ୍ରବେଶିକାର ସମାନ ବା ତା'ଠୁଁ କିଛି ବେଶି ବୌଦ୍ଧିକ ଜ୍ଞାନ ମିଳିବାର ଯୋଜନା ଥାଏ । ଏସବୁ ପଢ଼ିବା ପରେ ମୌଳିକ ଶିକ୍ଷା ଯୋଜନା ପ୍ରତି ମୋର ଦୃଢ଼ ଆସ୍ଥା ଓ ଉତ୍ସାହ ଆସିଗଲା । ଏ ବିଷୟରେ କଟକ ଟାଉନ୍ ହଲ୍‌ରେ ହେଉଥିବା ଏକ ଆଲୋଚନା ସଭାରେ ଏକ ବକ୍ତୃତା ବି ମୁଁ ଦେଇଥିଲି ।

ଇତି ମଧ୍ୟରେ ଓଡ଼ିଶାର ମୌଳିକ ଶିକ୍ଷା ଆରମ୍ଭ ହେବ ବୋଲି ବିଚାର ହେଲା । ବାପା, ମହେଶବାବୁ ଓ ଆଚାର୍ଯ୍ୟ ମହାଶୟଙ୍କୁ ନେଇ ଏକ ସ୍ଥାନ ନିରୂପଣ ସମିତି ଓଡ଼ିଶା ସରକାର ଗଢ଼ିଲେ ଓ ଏ ସମିତି ବିଭିନ୍ନ ସ୍ଥାନ ଦେଖି ଶେଷକୁ ବରୀ ଅଞ୍ଚଳର ରାମଚନ୍ଦ୍ରପୁରକୁ ହିଁ ମୌଳିକ ଶିକ୍ଷାର ମୁଖ୍ୟ କେନ୍ଦ୍ର ଓ ଆଖପାଖ ଅଞ୍ଚଳରେ ପ୍ରଥମ କେତୋଟି ବିଦ୍ୟାଳୟ ଆରମ୍ଭ କରିବା ପାଇଁ ସୁପାରିଶ କଲେ । ସେହି ଅନୁସାରେ ରାମଚନ୍ଦ୍ରପୁରକୁ ବଛାଗଲା । ସେଠି ଲୋକେ ଉତ୍ସାହର ସହିତ ବିଦ୍ୟାଳୟ ପାଇଁ ଯଥେଷ୍ଟ ଜମି ଛାଡ଼ିଦେଲେ । ବ୍ରାହ୍ମଣୀ ନଈ କୂଳରେ ଏକ ରମଣୀୟ ପରିବେଶରେ, ଆମ୍ବ ପଣସ ତୋଟା ମଝିରେ ଏ ସ୍ଥାନ ମିଳିଲା । ବ୍ରାହ୍ମଣୀ ନଈର ଉତ୍ତର କୂଳରେ ଏ ସ୍ଥାନଟି ଲମ୍ବି ରହିଥାଏ । ଉତ୍ତରକୁ ଖଣ୍ଡେ ବିଲ ପରେ ରାମଚନ୍ଦ୍ରପୁର ଗାଁ । ନଈ ସେପାଖିରେ ରାମପୁର ଓ ଚନ୍ଦନପୁର ଗାଁ । ଏଇଠି ଆବଶ୍ୟକ ଘର ତିଆରି ହେଇ ଜୋର୍‌ସୋର୍‌ରେ କାମ ଆରମ୍ଭ ହେଲା । ଏଠି ପ୍ରଥମେ ଶିକ୍ଷକ ତାଲିମ ଆରମ୍ଭ ହେଲା । ଶରତବାବୁ ପ୍ରଭୃତି ୱାର୍ଧାରୁ ତାଲିମ ନେଇ ଆସିଥିଲେ । ପ୍ରଥମ ଦଫାରେ ରାମଚନ୍ଦ୍ରପୁର ସମେତ ପନ୍ଦରଟି ଗାଁରେ ମୌଳିକ ବିଦ୍ୟାଳୟ ଆରମ୍ଭ ହେଲା । ଏସବୁ ସ୍ଥାନରେ ମଧ୍ୟ ବିଦ୍ୟାଳୟ ଓ ତା'ର ବାଡ଼ି ବଗିଚା ପାଇଁ ଆବଶ୍ୟକ ଜମି ଲୋକଙ୍କଠାରୁ ଦାନରେ ମିଳିଥିଲା ।

ଏସବୁ ବିଦ୍ୟାଳୟର ମୁକ୍ତତାର ବାତାବରଣ ପିଲାମାନଙ୍କୁ ଖୁବ୍ ଭଲ ଲାଗୁଥିଲା । ଶିକ୍ଷକମାନଙ୍କ ସହିତ ସେମାନେ ନିର୍ଭୟ ବ୍ୟବହାର କରୁଥିଲେ । ଶିକ୍ଷକଙ୍କର ପିଠିରେ ଚଢ଼ିଯିବା ବା ବେକଧରି ଝୁଲି ପଡ଼ିବାକୁ ଡରୁ ନ ଥିଲେ । ମାଡ଼ ଗାଳି ଧମକଚମକର ତ ଲେଶ ମାତ୍ର ନ ଥିଲା । ଛୁଆଁ ଅଛୁଆଁ ନେଇ କେତେକ ଗାଁରେ ଲୋକେ ଆପତ୍ତି ଉଠାଇଥିଲେ । ସେଥିଯୋଗୁଁ ସାମାନ୍ୟ ଉତ୍ତେଜନା ବି ପ୍ରଥମେ ଉତ୍ପନ୍ନ ହେଇଥିଲା । ମାତ୍ର ତାହା କ୍ରମେ ଉଭେଇ ଯାଇଥିଲା । ବିଦ୍ୟାଳୟକୁ ହରିଜନ ପିଲା ଯଥେଷ୍ଟ ସଂଖ୍ୟାରେ ଆସୁଥିଲେ ଓ ସବୁପିଲା ଏକାବେଳେ ସମାନ ଭାବରେ ମିଳିମିଶି ଚଳୁଥିଲେ, ପଢୁଥିଲେ, କାମ କରୁଥିଲେ, ଖାଉ ବି ଥିଲେ । ଦେଖାଗଲା ଯେ ଏ ସବୁ ମୌଳିକ ବିଦ୍ୟାଳୟକୁ ଝିଅମାନେ ଅନ୍ୟ ସ୍କୁଲ ତୁଳନାରେ ଢେର ଅଧିକ ସଂଖ୍ୟାରେ

ଆସୁଛନ୍ତି । ତଳ ଶ୍ରେଣୀମାନଙ୍କରେ ତ ପୁଅମାନଙ୍କ ଅପେକ୍ଷା ଝିଅମାନଙ୍କର ସଂଖ୍ୟା କେତେକ ବିଦ୍ୟାଳୟରେ ଅଧିକ ହେଉଥିଲା । ଏଇଟା ଗୋଟାଏ ଶୁଭ ଲକ୍ଷଣ ଥିଲା ।

ଏ ସମୟର ଶିକ୍ଷକମାନଙ୍କ ଭିତରେ ଯେଉଁମାନଙ୍କର ନାମ ମନେପଡୁଛି ସେମାନେ ହେଲେ ମଧୁସୂଦନ ମିଶ୍ର, ଶ୍ୟାମସୁନ୍ଦର ପାଣିଗ୍ରାହୀ, ଗୋଲୋକ ବିହାରୀ ନାୟକ, ରାମଚନ୍ଦ୍ର ମିଶ୍ର, ନାରାୟଣ ମିଶ୍ର, ନବଘନ ରାୟ, ଆର୍ତ୍ତବନ୍ଧୁ ମହାନ୍ତି ।

ଏସବୁ ବିଦ୍ୟାଳୟରେ ତଳ ସୋପାନ ହିଁ ଆରମ୍ଭ ହେଉଥାଏ । ସେଥିରେ ସୂତାକଟା ଓ ବଗିଚା କାମ ମୁଖ୍ୟ ଧନ୍ଦା ଥାଏ । ତା'ଛଡ଼ା ସଫେଇ ପ୍ରଭୃତି ମଧ ଶିକ୍ଷକ ଛାତ୍ର ସମସ୍ତେ ମିଶି କରୁଥା'ନ୍ତି । ପଢ଼ା ଶୁଣାରେ 'ଅନୁବନ୍ଧ' ଅର୍ଥାତ୍ ବୌଦ୍ଧିକ ଶିକ୍ଷା ବ୍ୟାବହାରିକ ଅଭିଜ୍ଞତା ଆଧାରରେ ଦେବାର ପ୍ରଣାଳୀ ଉପରେ ଜୋର୍ ଥାଏ ଓ ଶିକ୍ଷକମାନେ ଏଥିପାଇଁ ବହୁତ ବୁଦ୍ଧି ଖର୍ଚ୍ଚ କରି ଉପାୟ ଉଦ୍‌ଭାବନ କରୁଥା'ନ୍ତି । ମୋଟ ଉପରେ ଏକ ଉତ୍ସାହ ଓ ବୁଦ୍ଧିଯୁକ୍ତ ଉଦ୍ୟମର ବାତାବରଣ ବିଦ୍ୟାଳୟମାନଙ୍କରେ ସୃଷ୍ଟି ହେଉଥିଲା ।

ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରୟୋଗ ୧୯୩୮ର ଶେଷ ଆଡ଼କୁ ବା ୧୯୩୯ ର ପ୍ରଥମ ପାଦରେ ଆରମ୍ଭ ହେଲା । ମହାଯୁଦ୍ଧ ୧୯୩୯ ସେପ୍ଟେମ୍ବରରେ ଆରମ୍ଭ ହେଲା ଓ ସେଥିରେ ଭାରତକୁ ବାଧ୍ୟତାମୂଳକ ଭାବରେ ଭର୍ତ୍ତି କରାଯିବାର ପ୍ରତିବାଦରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଅଳ୍ପଦିନ ପରେ ଇସ୍ତଫା ଦେଲେ । ତା' ପରେ ଓଡ଼ିଶାରେ ଲାଟ ଶାସନ ଚାଲିଲା । ଓଡ଼ିଶା ସରକାରଙ୍କର ମୁଖ୍ୟ ପରାମର୍ଶଦାତା ମ୍ୟାନ୍‌ସଫିଲ୍‌ଡ଼ ସାହେବ ଏହାପରେ ଦିନେ ହଠାତ୍ ଆସି ବରୀରେ ପହଞ୍ଚିଲେ । ସେ ଇନ୍ଦୁପୁରଯାଏ ମୋଟରରେ ଆସି ସେଠୁ ସାଇକେଲରେ ଆସିଥା'ନ୍ତି । ମୌଳିକ ବିଦ୍ୟାଳୟଗୁଡ଼ିକୁ ଚାଲୁ ରଖାଯିବ କି ନାହିଁ ସେ ବିଷୟରେ ପ୍ରତ୍ୟକ୍ଷ ଅନୁଧ୍ୟାନ କରି ସୁପାରିଶ କରିବାକୁ ସେ ଆସିଥିଲେ । ଏସବୁ ବିଦ୍ୟାଳୟ ବିଷୟରେ ସରକାର କେତେକ ଅଭିଯୋଗ ମଧ ଶୁଣିଥିବାରୁ ସେସବୁର ଅନୁସନ୍ଧାନ କରିବା ବି ତାଙ୍କ ଉଦ୍ଦେଶ୍ୟ ଥିଲା । ସେ କେତେକ ବିଦ୍ୟାଳୟ ବୁଲି ତନ୍ନ ତନ୍ନ କରି ସବୁ ଦେଖିଲେ ଓ ତାଙ୍କ ସୁପାରିଶ ଅନୁସାରେ ମୌଳିକ ଶିକ୍ଷାକୁ ସରକାରୀ ସାହାଯ୍ୟ ଚାଲୁ ରହିଲା ।

ମାତ୍ର ବର୍ଷେଖଣ୍ଡେ ପରେ ସରକାର ମୌଳିକ ଶିକ୍ଷାକୁ ସାହାଯ୍ୟ ବନ୍ଦ କରିଦେବା ସ୍ଥିର କଲେ । ଏ ସମ୍ବାଦ ପାଇ ସେ ଅଞ୍ଚଳରେ ଶିକ୍ଷକ ଓ ଗ୍ରାମବାସୀଙ୍କ ଭିତରେ ପ୍ରବଳ ଉତ୍ତେଜନା ଖେଳିଗଲା । ଅଧିକାଂଶ ଶିକ୍ଷକ ଯେକୌଣସିମତେ ମୌଳିକ ଶିକ୍ଷା ଚାଲୁ ରଖିବେ ବୋଲି ଅଣ୍ଟା ଭିଡ଼ିଲେ । ସେମାନଙ୍କୁ ନିୟମିତ ବେତନ ନ ମିଳିଲେ ବି ମୁଠାଏ ମୁଠାଏ ଖାଇ କାମ କରିବା ପାଇଁ ସେମାନେ ପ୍ରସ୍ତୁତ ହେଇଗଲେ ଏବଂ ତେଣେ ଲୋକେ ବି ଅଧିକାଂଶ ଗାଁରେ ପ୍ରସ୍ତୁତ ହେଲେ ନିଜେ ପାରୁପର୍ଯ୍ୟନ୍ତ ସାହାଯ୍ୟ କରିବାକୁ । ଏହି ବିଷୟରେ ଅନେକ ଆଲୋଚନା କରି ଶେଷପର୍ଯ୍ୟନ୍ତ ପନ୍ଦରଟିରୁ ନଅଟି ବିଦ୍ୟାଳୟ ଚାଲୁ ରଖିବା ସ୍ଥିର ହେଲା ଓ ତାହା ଚାଲୁ ରହିଲା । ଗାନ୍ଧୀଜୀ ଏହାର ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଇଥିଲେ ଓ ଆଶୀର୍ବାଦ ଜଣାଇଥିଲେ । ସେ ମଧ ଏସବୁ ବିଦ୍ୟାଳୟର ଖର୍ଚ୍ଚ ତୁଲାଇବା ପାଇଁ କିଛି ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରିଥିଲେ ।

# କଂଗ୍ରେସର ଅନୁଭୂତି

ମନ୍ତ୍ରୀମଣ୍ଡଳ ଗଠନ ପରେ ପରେ ଓଡ଼ିଶା କଂଗ୍ରେସରେ ଗୋଷ୍ଠୀ ବିବାଦ ମୁଣ୍ଡ ଟେକିଥିଲା । ଗୋଟାଏ ପାଖରେ ପଣ୍ଡିତ ନୀଳକଣ୍ଠ ଓ ଅନ୍ୟପକ୍ଷରେ ମହତାବବାବୁ ମୁଖ୍ୟ ଭାବରେ ଥା'ନ୍ତି । ବିବାଦର କାରଣଟା ସେତେବେଳେ ବି ମୋ ପାଖରେ ସ୍ପଷ୍ଟ ନ ଥିଲା, ପରେ ମଧ୍ୟ ମୁଁ ସେ ବିଷୟରେ ଜାଣିବା ପାଇଁ ଚେଷ୍ଟା କରିନାହିଁ । ଏତିକି ଧାରଣା ଏ ବିଷୟରେ ମୋର ଥାଏ ଯେ ନୀଳକଣ୍ଠବାବୁ ସ୍ୱାଧୀନତା ସଂଗ୍ରାମ ବିଷୟରେ ଯେତେ ଦୃଢ଼ପରିକର ନୁହଁନ୍ତି ଓ ମହତାବ ସଂଗ୍ରାମୀ । ଦାଦା ହେରିକା ସବୁ ମହତାବାବୁଙ୍କ ପକ୍ଷରେ ଥା'ନ୍ତି ଓ ମୁଁ ବି ଥାଏ । ଏହି ସମୟରେ, ବୋଧହୁଏ ୧୯୩୭ରେ, ନୀଳକଣ୍ଠବାବୁ ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକ ଜୟପୁର (କୋରାପୁଟ) ରେ ଡାକିଲେ । ସେ ସେତେବେଳେ ତା'ର ସଭାପତି ଥା'ନ୍ତି । ଏତେ ଦୂରରେ ଅଧିକ ସଂଖ୍ୟକ ସଦସ୍ୟ ଯୋଗ ଦେଇପାରିବେ ନାହିଁ ଓ ତାଙ୍କରି ପକ୍ଷର ଅଳ୍ପ ଲୋକ ହେବେ ଏହିପରି ଉଦ୍ଦେଶ୍ୟ ଥାଏ ବୋଲି ଆମେ ଶୁଣୁଥାଉ । ମୁଁ ସେତେବେଳେ ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟ ଥିଲି । ଆମେ ସବୁ ସଦଳବଳେ ଜୟପୁର ଚାଲିଲୁ । ଟ୍ରେନ୍‌ରେ ସାଲୁର ଓ ସେଠୁ ବସ୍‌ରେ ଜୟପୁର । ସାଲୁର ଘାଟି ଓ ବାଟଯାକର ପାହାଡ଼ ଓ ବଣର ମନୋରମ ଦୃଶ୍ୟ ଦେଖିବାର ପ୍ରଥମ ସୁଯୋଗ ସେଇଥର ମିଳିଲା । ତା' ପରେ; ମୁଁ ଅନେକ ଥର ସେବାଟେ ଯାଇଛି ମାତ୍ର ସେ ବାଟ ମତେ କେବେହେଲେ ଘଷରା ଲାଗିନାହିଁ । ପ୍ରତ୍ୟେକ ଥର ମୁଁ ତା'ର ସୌନ୍ଦର୍ଯ୍ୟ ଉପଭୋଗ କରିଛି ।

ସେଠା କଂଗ୍ରେସ କମିଟି ବୈଠକର ଗୋଟିଏ ଘଟଣା ମୋର ମନେଅଛି । କ'ଣ ଗୋଟାଏ ବିଷୟରେ ସଭାପତି ନୀଳକଣ୍ଠବାବୁ ଗୋଟାଏ କ'ଣ ମତ ପ୍ରକାଶ କଲେ । ଅନ୍ୟ ସଦସ୍ୟମାନେ ଧରିବସିଲେ ଯେ ସେହି କଥା ଅନୁସାରେ କାର୍ଯ୍ୟ ହେଉ । ସେଠୁ ନୀଳକଣ୍ଠବାବୁ କହିଲେ, "ମୁଁ ସେ କଥାଟା କହିଛି ସିନା, ଘୋଷଣା କରିନାହିଁ । ତେଣୁ ତାହା ଲାଗୁ ହେବ ନାହିଁ ।" ଏ କଥା ନେଇ ଅନେକ ବେଳ ଯାଏ ଟଣାଓଟରା ଚାଲିଲା ।

ସେଥର ଆମେ କୋରାପୁଟରୁ ଅଳ୍ପ ଦୂରରେ ଥିବା ବାଗଡ଼ା ଜଳପ୍ରପାତ ଦେଖି ଯାଇଥିଲୁ ।

ଏହି ଗୋଷ୍ଠୀ ବିବାଦକୁ ଶାନ୍ତ କରିବା ପନ୍ଥା ବିଷୟରେ ୧୯୩୮ରେ ଡେଲାଙ୍ଗରେ ଗାନ୍ଧୀ ସେବା ସଂଘ ସମ୍ମିଳନୀ ବେଳେ ଓଡ଼ିଶାର ନେତାମାନେ ଗାନ୍ଧୀଜୀ ଓ ସର୍ଦ୍ଦାର ପଟେଲ ପ୍ରଭୃତିଙ୍କ ସହିତ ଆଲୋଚନା କରିଥିଲେ । ଏହାଫଳରେ ଉଭୟ ପକ୍ଷଙ୍କ ସମ୍ମତିରେ କିଛିଦିନ ପାଇଁ ବାପା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଲେ । ମୋର ଯେତେଦୂର ମନେହୁଏ ସେ ଏ ପଦରେ ବର୍ଷେ ଖଣ୍ଡେ ଥିଲେ । ସେତେବେଳେ କଂଗ୍ରେସ ସଦସ୍ୟ ସଂଗ୍ରହରେ ଅନିୟମିତତା ନେଇ ପରସ୍ପର ଦୋଷାରୋପ ଚାଲିଥାଏ । ବାପା ସେସବୁ ବିଷୟରେ ଅନୁସନ୍ଧାନ କରି କାର୍ଯ୍ୟାନୁଷ୍ଠାନ କରିବା କଥା ଥାଏ । ସେ ମଝିରେ ମଝିରେ ଏ ବାବଦରେ ଯେଉଁସବୁ ପ୍ରକାରର

କାରବାର ଦୃଷ୍ଟିକୁ ଆସୁଥାଏ, ତାହା ପ୍ରତି ନିଜର ବିରକ୍ତି ପ୍ରକାଶ କରୁଥା'ନ୍ତି । ଅବଶ୍ୟ ଆଜି କାଲି କଂଗ୍ରେସ ଓ ତତ୍‌ତୁଲ୍ୟ ଅନ୍ୟ ଦଳମାନଙ୍କରେ ପ୍ରକାଶ କରୁଥା'ନ୍ତି । ଅବଶ୍ୟ ଆଜି କାଲି କଂଗ୍ରେସ ଓ ତତ୍‌ତୁଲ୍ୟ ଅନ୍ୟ ଦଳମାନଙ୍କରେ ଯେଉଁ ପ୍ରକାର କାରବାର ଚାଲିଛି ତାହା ତୁଳନାରେ ସେତେବେଳେ ସେ କାରବାର ମଶାକାମୁଡ଼ା ପରି ତୁଚ୍ଛ ମନେ ହେବ । ମାତ୍ର ଏବେ ଯାହା ମହୀରୂହ ହେଇ ଛିଡ଼ା ହେଲାଣି ତାର ବୀଜ ତାହାରି ଭିତରେ ଥିଲା । କ୍ଷମତାଲୋଲୁପତା ଓ ଶ୍ରେଣୀ ସ୍ୱାର୍ଥର ପରିଣାମ ଓଡ଼ିଶା ଅପେକ୍ଷା ଅନ୍ୟ ପ୍ରଦେଶରେ ଜଣା ନ ଥିଲା । ଗାନ୍ଧୀଜୀ ଏସବୁ ବୁଝୁଥିଲେ, ଏ ସବୁକୁ ରୋକିବା ଚେଷ୍ଟା କରୁଥିଲେ ଓ ଶେଷକୁ ଯେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଘୋଷଣା ପରେ କଂଗ୍ରେସ ମନ୍ତ୍ରୀମଣ୍ଡଳଯାକ ଇସ୍ତଫା ଦେଲେ ସେତେବେଳେ ସ୍ୱସ୍ତିର ନିଶ୍ୱାସ ପକେଇଥିଲେ ।

ବାପା ଏସବୁ ଦେଖି ତ୍ୟକ୍ତବିରକ୍ତ ହେଉଥାନ୍ତି, କିନ୍ତୁ ତାଙ୍କର ଖୁବ୍ ଟାଣୁଆ କୌତୁକ ବୋଧ ବି ଥାଏ । ଏସବୁ ନେଇ ଆମ ସାଙ୍ଗରେ ବସି ଖୁବ୍ ଥଟ୍ଟା ପରିହାସ ଚଳାନ୍ତି । ଦିନେ ସେବାଘରେ ବସି ଗୋଟାଏ ଜଣାଶୁଣା ଗୀତର ପ୍ୟାରଡୀରେ ଏକ ଗୀତ ରଚନାର ସାମୂହିକ ଉଦ୍ୟମ ଚାଲିଲା । ତାହାର ଗୋଟାଏ ପଦ ମନେ ଅଛି ।

ଜୟ ଜୟ ଜୟ ସେହି ଗଞ୍ଜାମ
ବିଶ୍ୱନାଥ ଯହିଁ ଜନ୍ମିତ
କନ୍‌ଷ୍ଟିଟିଉଶନ ପଣ୍ଡିତ ।
ବିପ୍ର ଦାସ ଯହିଁ, ପାଟ ମନ୍ତ୍ରୀଙ୍କ ଭାଇ
ଟଙ୍କା ନ ଦେବାରୁ ଦଣ୍ଡିତ ।
ଜୟ ଜୟ ଜୟ ସେହି ଗଞ୍ଜାମ ।

## ଡେଲାଙ୍ଗ ସମ୍ମିଳନୀ

୧୯୩୮ ଖରାଦିନେ ଡେଲାଙ୍ଗ (ପୁରୀ ଜିଲ୍ଲା) ଠାରେ ଗାନ୍ଧୀ ସେବା ସଂଘର ବାର୍ଷିକ ସମ୍ମିଳନୀ ହେବାର ସ୍ଥିର ହେଲା । ଗାନ୍ଧୀଜୀଙ୍କ ପନ୍ଥାରେ ଦୃଢ଼ ଆସ୍ଥା ରଖିଥିବା ସେବକମାନଙ୍କର ଏ ଗୋଟିଏ ସଂଘ, କେତେ ବର୍ଷ ପୂର୍ବରୁ ଆରମ୍ଭ ହେଇଥିଲା । କିଶୋରଲାଲ ମଶ୍ରୁୱାଲା ଏହାର ସଭାପତି ଥା'ନ୍ତି । ଏ ସଂଘରେ ସର୍ଦ୍ଦାର ପଟେଲ, ଆଚାର୍ଯ୍ୟ କୃପାଲାନୀ, ପ୍ରଫୁଲ୍ଲ ଘୋଷ ପ୍ରଭୃତି ସଦସ୍ୟ ଥା'ନ୍ତି । ଏହା ମୁଖ୍ୟତଃ ରଚନାତ୍ମକ କାମରେ ଲାଗିଥିଲେ ମଧ ଅଣରାଜନୀତିକ ନ ଥାଏ । ଓଡ଼ିଶାରେ ରଚନାତ୍ମକ କାମର କେନ୍ଦ୍ରସବୁ ଏଇ ଗାନ୍ଧୀ ସେବା ସଂଘ ପକ୍ଷରୁ ଚାଲିଥିଲା । ସେବାଘରକୁ ମଧ ସଂଘରୁ କିଛି ଆର୍ଥିକ ସାହାଯ୍ୟ ମିଳୁଥିଲା । ଜୀବରାମଜୀ କଲ୍ୟାଣୀ କୋଠରୀ ତାଙ୍କର ସାରା ଜୀବନର ସଞ୍ଚିତ ଧନ ଲକ୍ଷାଧିକ ଟଙ୍କା ଦେଶସେବା ପାଇଁ ଦାନ କରିଦେଇ ନିଜେ ମଧ ସସ୍ତ୍ରୀକ ନିଜକୁ ଦେଶସେବାରେ ଉତ୍ସର୍ଗ କରି ଦେଇଥିଲେ । ଗାନ୍ଧୀଜୀ ତାଙ୍କୁ ଓଡ଼ିଶାକୁ କାମ

କରିବା ପାଇଁ ପଠାଇ ଦେଇଥିଲେ ଓ ସେ ଆସି ଭଦ୍ରଖ ପାଖରେ ଗରଦପୁରଠାରେ ଆଶ୍ରମ କରି ବସିଥିଲେ । ତାଙ୍କର ଦଉ ପାଣ୍ଠି ଓଡ଼ିଶାରେ ଖଦୀ କାମ ପାଇଁ ଗାନ୍ଧୀ ସେବା ସଂଘ ମାରଫତ୍‌ରେ ରଖାଯାଇଥାଏ ଓ ସେଇଥିରୁ ସେବା ସଂଘ ତତ୍ତ୍ୱାବଧାନରେ ବିଭିନ୍ନ ଜିଲ୍ଲାରେ କେନ୍ଦ୍ର ଖୋଲି ଖଦୀ ଓ ଗ୍ରାମସେବା କାମ ଚଳା ହେଉଥାଏ । ସଂଘ ପକ୍ଷରୁ ବାପା ଏସବୁର ତତ୍ତ୍ୱାବଧାନ କରୁଥା'ନ୍ତି । ୧୯୩୭ ରେ କର୍ଣ୍ଣାଟକର ହୁଦଳୀଠାରେ ସଂଘର ସମ୍ମିଳନୀ ହୋଇଥିଲା ଓ ତା'ପରେ ସମ୍ମିଳନୀ ଓଡ଼ିଶାରେ କରିବା ପାଇଁ ଆମନ୍ତ୍ରଣ ଦିଆ ଯାଇଥିଲା ଓ ସ୍ୱୀକୃତ ହୋଇଥିଲା ।

ଏ ସମ୍ମିଳନୀର ଆୟୋଜନରେ ଆମେସବୁ ପ୍ରାଣପଣେ ଲାଗିଯାଇଥିଲୁ । ଡେଲାଙ୍ଗ ଷ୍ଟେସନର ଉତ୍ତରପଟକୁ ଅଳ୍ପ ଦୂରରେ ରେଳ ଲାଇନର ପୂର୍ବପଟେ ସମ୍ମିଳନୀର ସ୍ଥାନ ହୋଇଥାଏ । ପ୍ରଦର୍ଶନୀର ସ୍ଥାନ ଥାଏ ଲାଇନର ପଶ୍ଚିମପଟେ । ମୋର ମୁଖ୍ୟ ଦାୟିତ୍ୱ ଥିଲା ପ୍ରଦର୍ଶନୀର ସାଧାରଣ ସାଜସଜ୍ଜା ଓ ମହୁଚାଷର ମଣ୍ଡପ । ସାଜସଜ୍ଜା ପାଇଁ ବାଉଁଶ, ଛଣ, ଖଜୁରୀ, ପତ୍ର, ଚଟେଇ ଆଦି ସ୍ଥାନୀୟ ମାଲମସଲା ବ୍ୟବହାର କରାଯାଇଥିଲା । ପ୍ରଦର୍ଶନୀର ମୁଖ୍ୟ ତୋରଣ ହିଁ ଥିଲା ସାଜସଜ୍ଜା ଭିତରେ ପ୍ରଧାନ । ଏ ତୋରଣ ତିଆରି ଯଥାସମୟରେ ଶେଷ କରିବାପାଇଁ ଶେଷଦିନ ସନ୍ଧ୍ୟାରେ ଖୋଦ ଆଚାର୍ଯ୍ୟ ମହାଶୟ ତାର ଭାରା ଉପରେ ଚଢ଼ି ବନ୍ଧାବନ୍ଧି କାମରେ ଲାଗି ପଡ଼ିଥିଲେ । ଏହା ପୂର୍ବରୁ କୌଣସି ଗାଉଁଲି ମାଲମସଲାରେ ସାଜସଜ୍ଜାର ରୀତି ଚଳି ନ ଥିଲା । ଏହାପରେ ହରିପୁରା କଂଗ୍ରେସର ସାଜସଜ୍ଜା ଦାୟିତ୍ୱ ନେବାପାଇଁ ଗାନ୍ଧୀଜୀ ଶିଳ୍ପୀଗୁରୁ ନନ୍ଦଲାଲ ବସୁଙ୍କୁ ଅନୁରୋଧ କରିଥିଲେ ଓ ସେ ତାଙ୍କର ଛାତ୍ରମାନଙ୍କ ସାହାଯ୍ୟରେ ଏହିଭଳି ଗାଉଁଲି ମାଲମସଲାର ତୋରଣ ଓ ଚିତ୍ରଦ୍ୱାରା କଂଗ୍ରେସ ନଗରକୁ ଏକ ମାୟାପୁରୀରେ ପରିଣତ କରିଦେଇଥିଲେ ।

ନୀପେନଦା ଓ ମୁଁ ମିଶି ପ୍ରଦର୍ଶନୀ ପାଇଁ ଶହେ ଉପରେ ଚିତ୍ରପଟ ବା ଚାଟ୍ ବା ପୋଷ୍ଟର ଆଙ୍କିଥିଲୁ । ମୋର ପିଲାଦିନୁ ଥିବା ଛବି ଆଙ୍କିବା ଶୌକ ମଝିରେ ଶୋଇଯାଇଥିଲା । ୧୯୩୦ ଆନ୍ଦୋଳନବେଳେ ଓ ପରେ ପ୍ଲାକାର୍ଡ଼ ତିଆରି କରିବା କାମ ମୁଁ କରୁଥିଲି । ବଗୀରେ ନଳକୂଅ ଖୋଳା ହେବା ବେଳେ ତଳୁ ଖୁବ୍ ବଢ଼ିଆ କୁମ୍ଭାର ମାଟି ବାହାରିଲା । ସେ ମାଟି ଦେଖି ଗୋଟାଏ କିଛି କରିବାକୁ ମନହେଲା ଓ ବାଦ୍‌ଶାହ ଖାଁଙ୍କର ଏକ ଛୋଟ ପ୍ରତିକୃତି ତିଆରି କରିଥିଲି । ଡେଲାଙ୍ଗରେ ଚିତ୍ରପଟ ଅଙ୍କାବେଳେ ନୀପେନଦା ଯେପରି ଅବଲୀଳାକ୍ରମେ ତୂଳି ବୁଲେଇ ଅକ୍ଷର ଲେଖିପାରୁଥାଏ, ଚିତ୍ର ଆଙ୍କି ପାରୁଥାଏ ମୁଁ ସେପରି ପାରୁ ନ ଥାଏ । ତାହା ଦେଖି ମୋର ଈର୍ଷା ହେଲା ଓ ତୂଳି ବ୍ୟବହାରର କୁଶଳତା ହାସଲ କରିବାର ଆକାଂକ୍ଷା ମଧ୍ୟ । ହରିପୁରା କଂଗ୍ରେସର ସାଜସଜ୍ଜା ଦେଖି ଛବି ଆଙ୍କିବାର ସୁପ୍ତ ଅଭିଳାଷ ପୁଣି ହଲଚଲ ହୋଇ ଉଠିଥିଲା ।

ପ୍ରଦର୍ଶନୀ ଛୋଟ ଥିଲା କିନ୍ତୁ ଯୋଜନା ଓ ସାଜସଜ୍ଜା ଖୁବ୍ ସୁନ୍ଦର ଭାବରେ କରାଯାଇଥିଲା । ମହୁଚାଷ ମଣ୍ଡପଟିକୁ ଫୁଲ ଗଛ ଆଦି ଦେଇ ସୁନ୍ଦର କରି ସଜାଯାଇଥାଏ । ପ୍ରଦର୍ଶନୀ ଦେଖିବାକୁ ରୋଜ ହଜାର ହଜାର ଲୋକ ଆସୁଥିଲେ । ଦୁଇ ପଇସା ଟିକଟ ରଖାଯାଇଥିଲା । ଆଠ ଦିନରେ ହଜାରେ ଖଣ୍ଡେ ଟଙ୍କାର ଟିକଟ ବିକ୍ରି ହୋଇଥିଲା ।

କଂଗ୍ରେସ ମନ୍ତ୍ରୀମଣ୍ଡଳମାନ ସାଂପ୍ରଦାୟିକ ବା ଅନ୍ୟ ପ୍ରକାରର ଗଣ୍ଡଗୋଳକୁ ଆୟତ୍ତ କରିବା ପାଇଁ ଯେ ପୁଲିସ ଉପରେ କ୍ରମେ ବେଶି ବେଶି ନିର୍ଭରଶୀଳ ହେଇ ପଡ଼ୁଥିଲେ ତା'ର ପରିଣତି ବିଷୟରେ ଗାନ୍ଧୀଜୀ ଖୁବ୍ ଚିନ୍ତାନ୍ୱିତ ହେଇପଡ଼ିଥିଲେ ଓ ଏ ଡେଲାଙ୍ଗ ସମ୍ମିଳନୀରେ ଏ ବିଷୟରେ ଏକ ପ୍ରସ୍ତାବ ଦେଇଥିଲେ ଯେ ଏଭଳି ଘଟଣାର ମୁକାବିଲା ଅହିଂସା ଢଙ୍ଗରେ କରିବା ପାଇଁ ଗୋଟାଏ ସ୍ୱୟଂସେବକ ଦଳ ଗଠନ କରାଯାଉ । ସେତେବେଳେ ସେ ଶାନ୍ତି ସେନା ନାମଟା ବ୍ୟବହାର କରି ନ ଥିଲେ । ବୋଧହୁଏ ବର୍ଷେଖଣ୍ଡେ ପରେ କରିଥିଲେ ।

ଏତିକି ବେଳର ଗୋଟାଏ ମଜାର ଘଟଣା ମନେପଡ଼ୁଛି । ଗାନ୍ଧୀଜୀ ହେରିକା ରହୁଥିବା ତମ୍ବୁମାନଙ୍କରେ ଥଣ୍ଡା ରଖିବା ପାଇଁ ବେଣାଚେର ତାଟି ଦିଆହେଇଥାଏ । ସେଥିରେ ଖରାବେଳେ ପାଣି ଛିଞ୍ଚା ହୁଏ । ଦିନେ ମୁଁ ବାଲଟି ଓ ପିଚକାରୀ ନେଇ ମହା ଉତ୍ସାହରେ ପାଣି ଛିଞ୍ଚୁଛି ଆଉ ପାଖରୁ ପାଟି ଶୁଭିଲା - "ଏ ପାନିୱାଲା ! ରୋକୋ ରୋକୋ" ଦେଖେ ତ ସେପାଖରୁ ପର୍ଦ୍ଦା ଠେଲି ମହାଦେବ ଦେଶାଇ ବାହାରିଲେ । ପାଣିରେ ଏକାବେଳକେ ଜୁଡୁବୁଡୁ । ତାଟି ସେ ପାଖରେ ଶୋଇ ସେ ବହି ପଢୁଥିଲେ ।

ଗାନ୍ଧୀଜୀଙ୍କର ଦୁଇଜଣ ବିଶିଷ୍ଟ ସହକର୍ମୀ ତଥା ଏ ଗାନ୍ଧୀ ସେବା ସଂଘର ନେତୃସ୍ଥାନୀୟ ସଦସ୍ୟ ଧୋତ୍ରେଜୀ ଓ କାକା ସାହେବଙ୍କ ସହିତ ଆମ ପରିବାରର ଏହା ପୂର୍ବରୁ ହିଁ ଖୁବ୍ ଘନିଷ୍ଠ ସଂପର୍କ ହେଇଥିଲା । ଧୋତ୍ରେଜୀଙ୍କ ସହିତ ସଂପର୍କ ୧୯୩୦ରୁ । ଗାନ୍ଧିଜୀ ତାଙ୍କୁ ନିର୍ଦ୍ଦେଶ ଦେଇଥା'ନ୍ତି ଯେ ସେ ଆଇନ ଅମାନ୍ୟ ବା ସତ୍ୟାଗ୍ରହରେ ଯୋଗ ଦେବେ ନାହିଁ । ବାହାରେ ରହି ଆନ୍ଦୋଳନର ବିଶଦ ଖବର ରଖିବା ଓ ଜେଲ ଯାଇଥିବା କର୍ମୀମାନଙ୍କର ପରିବାରମାନଙ୍କର ଖୋଜଖବର ନେବା କାମ ସେ କରୁଥିଲେ । ୧୯୩୦ ରେ ପାପା ହେରିକା ସମସ୍ତେ ଜେଲ ଚାଲିଯିବା ପରେ ସେ ଥରେ କଟକ ଆସି ଆମମାନଙ୍କୁ ସଂଖୋଳି ଯାଇଥିଲେ । ତା'ପରେ ତାଙ୍କ ସହିତ ଘନିଷ୍ଠତା ବଢ଼ିଲା । ସେ ଗାନ୍ଧୀ ସେବା ସଂଘର ସଂପାଦକ ଭାବରେ ଏକାଧିକ ଥର ଓଡ଼ିଶା ଆସିଥିଲେ ଓ ସବୁ ଜିଲ୍ଲାର ସୁଦୂରତମ ରଚନାତ୍ମକ କର୍ମକେନ୍ଦ୍ରମାନ ବୁଲି ଦେଖିଥିଲେ । ଆମେ ୱାର୍ଧା ଗଲେ ତାଙ୍କ ଘରେ ରହୁଥିଲୁ । ସେ ଓ ତାଙ୍କ ସ୍ତ୍ରୀ ସରଯୁତାଈ ଆମକୁ ନିଜ ପରିବାରର ଲୋକପରି ସ୍ନେହ କରନ୍ତି । ମୋର ଏକ ଖରାପ ଅଭ୍ୟାସ ଅଛି, ଅନ୍ୟଜାଗାକୁ ଗଲେ ଅଧିକାଂଶ ସମୟରେ ମୁଁ ପୂର୍ବରୁ କୌଣସି ସୂଚନା ନ ଦେଇ ସେଠାର କୌଣସି ବନ୍ଧୁ ବା ପରିଚିତଙ୍କ ଘରେ ପହଞ୍ଚିଯାଏ । ଧୋତ୍ରେଜୀଙ୍କ ଘରେ ମଧ୍ୟ ମୁଁ ସେମିତି କେତେଥର ପହଞ୍ଚିଛି । ସେ ସେଥିରେ କେବେହେଲେ ବିବ୍ରତ ଅନୁଭବ କରିନାହାନ୍ତି । ଆମ ଓଡ଼ିଆଙ୍କର ଭାତଖିଆ ପରିମାଣ ଓ ବିଶେଷକରି ମୋର ଖାଇବା ପରିମାଣ ବିଷୟରେ ସରଯୁତାଈ ଏବେ ବି ପରିହାସ କରନ୍ତି । ତାଙ୍କର ପିଲାମାନେ ମୋଠାରୁ ବୟସରେ ଅନେକ ଛୋଟ । ସେଥିପାଇଁ ସେମାନଙ୍କ ସାଙ୍ଗରେ ବିଶେଷ ଘନିଷ୍ଠତା ହେଇ ନ ଥିଲା । ଧୋତ୍ରେଜୀଙ୍କଠାରେ ଗାନ୍ଧୀଜୀ ଓ ବିନୋବାଙ୍କ ବିଷୟରେ ଗଳ୍ପର ଅସରନ୍ତି ଭଣ୍ଡାର ଥିଲା । ସେ ବିନୋବାଙ୍କର ବାଲ୍ୟବନ୍ଧୁ ଥିଲେ । ତାଙ୍କଠିଁ

ଜାଣିଲି ଯେ ବିନୋବା ଷୋଳବର୍ଷର ନ ହେବା ଯାଏ ତାଙ୍କର ବାପା ତାଙ୍କୁ କଥା କଥାକେ ନିର୍ଘୃମ ଦେଉଥିଲେ । ଶାସ୍ତ୍ରର ବଚନ ମାନି ବୋଲି ସ୍ୱୀକାର କରିବାକୁ ହେବ । ଏହା ଜାଣିବା ପରେ ବିନୋବାଜୀଙ୍କ ଚରିତ୍ରର କେତେଟା ଦିଗର କାରଣ ମୋ ଠାରେ ସ୍ପଷ୍ଟ ହେଲା ।

କାକା ସାହେବଙ୍କର ପରିଚୟ ପ୍ରଥମେ ଗାନ୍ଧୀଜୀଙ୍କର ଲେଖାରୁ ପାଇଥିଲୁ । ବିବିଧ ବିଷୟରେ ତାଙ୍କର ରୁଚି ଓ ପାଣ୍ଡିତ୍ୟ ପ୍ରତି ମଧ ମୋର ସପ୍ରଶଂସ ଭକ୍ତି ଥିଲା । କଲିକତାରେ ଟ୍ୟାନେରୀ-କୁଟୀର କର୍ମଚାରୁଶାଳାରେ ଥିବାବେଳେ ଥରେ କାକା ସାହେବ ସେଠିକି ଆସିଥିଲେ । ଏଡ଼ିଂଟନ୍‌ଙ୍କର ମହାବିଶ୍ୱ ସମ୍ବନ୍ଧରେ ଗୋଟାଏ ବହି ମୁଁ ସେତେବେଳେ ପଢୁଥାଏ । ଲାବରେଟରୀରେ ସେ ବହି ଖଣ୍ଡକ ଆଖିରେ ପଡ଼ିବାରୁ କାକା ସାହେବ ମନ୍ତବ୍ୟ ଦେଲେ - "ଏଠି ବି ଏ ବହି ପଢ଼ିବା ଲୋକ ଅଛନ୍ତି ?" ତା' ପରେ ତାଙ୍କୁ ମୋର ପରିଚୟ ସତୀଶବାବୁ ଦେଲେ । ତା' ପୂର୍ବରୁ ତାଙ୍କର ସାନପୁଅ ବାଳ ସହିତ ଗାନ୍ଧୀଜୀଙ୍କର ପଦଯାତ୍ରାରେ ଖୁବ୍ ଘନିଷ୍ଠତା ହୋଇଥିଲା । ୧୯୩୭-୩୮ ରେ ୱାର୍ଧାରୁ ବାହାରୁଥିବା ସର୍ବୋଦୟ ମାସିକ ପତ୍ରିକାରେ କାକା ସାହେବ ଇଂରେଜୀ ଶବ୍ଦମାନଙ୍କର ହିନ୍ଦୀ ପ୍ରତିଶବ୍ଦ ବିଷୟରେ ଆଲୋଚନା କରୁଥିଲେ । ଚୁନୀ ଓ ମୁଁ ମଧ କେତେକ ପ୍ରତିଶବ୍ଦ ଗଢ଼ିବାର ଚେଷ୍ଟା କରିଥିଲୁ ଓ ସେ ବିଷୟରେ କାକା ସାହେବଙ୍କ ସହିତ ଚିଠିପତ୍ର କାରବାର କରୁଥିଲୁ । ଆମର ଗଢ଼ା କେତେକ ଶବ୍ଦ ସେ ପସନ୍ଦ କରିଥିଲେ । ତା' ପରେ ମୌଳିକ ଶିକ୍ଷା ଜୋରସୋର୍‌ରେ ଚାଲିଥିବାବେଳେ ସେ ଓଡ଼ିଶାକୁ, ଖାସ୍ କରି ବରୀ ଅଞ୍ଚଳକୁ, ଏକାଧିକ ଥର ଆସିଥିଲେ । ତା'ପରେ ତାଙ୍କ ସହିତ ସର୍ବୋଦୟ ସମ୍ମିଳନୀ ଆଦିରେ ବରାବର ଦେଖାହେଉଥାଏ । ଗାନ୍ଧୀଜୀଙ୍କର ପ୍ରୟାଣ ପରେ ସେଯାଇ ଦିଲ୍ଲୀରେ ରହିଲେ ଓ ସେଠାକୁ ଗଲେ ବରାବର ଦେଖାହୁଏ । ତାଙ୍କ ସହିତ ପ୍ରତ୍ୟେକ ଥର ସାକ୍ଷାତରେ ସେ କୌଣସି ନା କୌଣସି ଏଭଳି ପ୍ରସଙ୍ଗ ଉଠାନ୍ତି ଯାହା ମଣିଷର ସ୍ଥାଣୁ ହୋଇ ଆସୁଥିବା ବିଚାରଧାରାକୁ ଜୋରରେ ଧକ୍କା ଦେଇ ସଚଳ କରେ । ତାଙ୍କ ସହିତ ଶେଷ ଥର ସାକ୍ଷାତ୍‌ରେ ସେ ଗାନ୍ଧୀଜୀଙ୍କ ଶ୍ରେଷ୍ଠ ଅବଦାନ ପ୍ରତିରୋଧମୂଳକ ସତ୍ୟାଗ୍ରହକୁ ପୁଣି ଚାଲୁ କରିବା ଉପରେ ଜୋର୍ ଦେଇଥିଲେ ଓ ଏ ବାବଦରେ ବିନୋବାଙ୍କ ଭୂମିକାର ସମାଲୋଚନା କରିଥିଲେ । ମୁଁ ସେତେବେଳେ ବିନୋବାଙ୍କ ପକ୍ଷ ସମର୍ଥନ କରିଥିଲି । ମାତ୍ର ପରେ ଦେଖୁଛି ଯେ କାକା ସାହେବଙ୍କର ସମାଲୋଚନାରେ ଯଥେଷ୍ଟ ତଥ୍ୟ ଥିଲା ।

## ନାନା ଘଟଣା

ବୋଧହୁଏ ଡେଲାଙ୍ଗ ସମ୍ମିଳନୀ ପରେ ଚୁନୀ କିଛି ଦିନ ପାଇଁ ୱାର୍ଧାରେ ରହିଲା । ମଝିରେ ମୁଁ ବି ୱାର୍ଧା ଦୁଇ ତିନି ଥର ଯାଇଥିଲି । ଥରେ ସରଞ୍ଜାମ କାର୍ଯ୍ୟାଳୟ ଓ ପରେ ଟ୍ୟାନେରୀ ଦେଖିବା ପାଇଁ । ଆଉ କ'ଣ ପାଇଁ ବି ଥରେ ଅଧେ ଯାଇଥିଲି । ସେଇଠି ଥରେ ଚୁନୀଠାରୁ ପ୍ରଥମ ଶୁଣିଲି ଯେ ସେଠି ବିନୋବା ବୋଲି ଜଣେ ଅଛନ୍ତି, ଖୁବ୍ ପ୍ରଖର ବୁଦ୍ଧିଶାଳୀ ।

ସେ ସବୁ ଓଲଟା ଓଲଟା କଥା କହନ୍ତି । ବଜାରକୁ ଝାଡୁ କିଣିବାକୁ ଗଲେ ଯଦି ଝାଡୁବାଲୀ ତା'ର ଦାମ ଦୁଇଅଣା କହିବ ତେବେ ସେ ହିସାବ କରି ତାକୁ ବୁଝେଇବ ଯେ ଯା ଦାମ ଛଅ ଅଣା ହେବା ଚାହି । ଏମିତି ସବୁ କଥା । ମୌଳିକ ଶିକ୍ଷା ବିଷୟରେ ସେ ଲେଖିଥିବା ପ୍ରବନ୍ଧ ସବୁ ପଢ଼ି ମଧ୍ୟ ତାଙ୍କ ପ୍ରତି ଆକର୍ଷଣ ବଢ଼ିଲା । ଏଇଥର ଜମୁନାଲାଲାଜୀ ମତେ ଦିନକର ରାତିରେ ପଓନାରର ସେ ଲାଲକୋଠିକୁ ନେଇଗଲେ ଯେଉଁଟା ପରେ ପରମଧାମ ଆଶ୍ରମ ବା ବ୍ରହ୍ମବିଦ୍ୟା ମନ୍ଦିର ହେଲା । ସେଠି ବିନୋବା ଥା'ନ୍ତି । ରାତିରେ ସେଠି ଶୋଇବାବେଳେ ମୋ ପାଖରେ ଶୋଇଥିବା ବିନୋବାଙ୍କ ଶିଷ୍ୟମାନେ ତାଙ୍କ ବିଷୟରେ ଗପସପ ହେଉଥା'ନ୍ତି । ବିନୋବା କିପରି ବିଦ୍ୱାନ, କେତେ ଭାଷା ଜାଣନ୍ତି, କିପରି ଭଲ ଇଂରେଜୀ ଜାଣନ୍ତି କିନ୍ତୁ କହନ୍ତି ନାହିଁ ଇତ୍ୟାଦି ଇତ୍ୟାଦି । ପରେ ପରିଚୟ ହେଲା ଯେ ତାଙ୍କ ଭିତରୁ ଜଣେ ଥିଲେ ଅଚ୍ୟୁତରାଓ ଦେଶପାଣ୍ଡେ, ହାଇଦ୍ରାବାଦ ରାଜ୍ୟର କର୍ମୀ । ପରେ ସେ ବିନୋବାଙ୍କର କୋରାନସାର ବହିର ସଂପାଦନାରେ ବହୁତ କାମ କରିଥିଲେ ।

ଭୋରରୁ ପ୍ରାର୍ଥନା ପରେ ବିନୋବାଙ୍କ ପ୍ରବଚନ ମରାଠୀରେ ହେଲା । ପ୍ରବଚନ ପରେ ଯେତେବେଳେ ଜମନାଲାଲଜୀ ତାଙ୍କୁ ମୋର ପରିଚୟ ଦେଲେ ବିନୋବାଜୀ କହିଲେ- ଆରେ । ଏଠି କେହି ମରାଠୀ ନ ଜାଣିବା ଲୋକ ଅଛନ୍ତି ଜାଣିଥିଲେ ତ ମୁଁ ହିନ୍ଦୀରେ କହିଥା'ନ୍ତି । ତାଙ୍କ ସହିତ ସେତେବେଳେ ଆଉ କୌଣସି କଥାବାର୍ତ୍ତା ହେଇ ନ ଥିଲା । ପରେ ପୁଣି ଦେଖାହେଲା ଯାଇ ୧୯୪୯ ରେ ରାଓଠାରେ ସର୍ବୋଦୟ ସମ୍ମିଳନୀରେ ।

ବାପା ତ ଏଣେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହେଇଥା'ନ୍ତି ଓ ତାଙ୍କୁ ଘନ ଘନ କଟକ ଯିବା ଆସିବା  କରିବାକୁ ପଡୁଥାଏ । ଥରେ ପ୍ରାଦେଶିକ କମିଟି ବୈଠକ ପାଇଁ କଟକ ଯିବାବେଳେ ଗୋଟାଏ କ'ଣ ଜରୁରୀ ଫାଇଲ ବରୀରେ ଛାଡ଼ି ଦେଇଗଲେ । ବାଟରୁ ଖବର ଦେଲେ, ସେ ଫାଇଲଟା କାହାରି ହାତରେ ଶୀଘ୍ର ପଠେଇ ଦେବାକୁ । ସେତେବେଳେ ପାର୍ବତୀ ଗିରି ଗୁରୁତର ଅସୁସ୍ଥ ଥାଏ । ତାକୁ ଦେଖିବାକୁ ଯାଜପୁରରୁ ଡାକ୍ତର ଆସିଥା'ନ୍ତି ଓ ତାଙ୍କୁ ନେଇ ଏକ ସାନ ବସ୍ ଗୁଆଲୀ ଆସିଥାଏ । ଏଣେ ବର୍ଷାଦିନ ଓ ବଢ଼ି । ଡଙ୍ଗାରେ ଗୁଆଲୀ ଯାଇ ସେଠୁ ବସ୍ ଧରିଲୁ । ସେତେବେଳେ ବିରଜା ହାଟଠାରୁ ବିଞ୍ଝାରପୁର ଆଡ଼କୁ ରାସ୍ତା କଚା ଥାଏ ଓ ଅରେଇରୁ ଗୁଆଳୀଯାଏ ଦୁଇମାଇଲ ରାସ୍ତାର ଅବସ୍ଥା ତ କହିଲେ ନ ସରେ । ଆମେ ଆସୁ ଆସୁ ନଗଦ ଅସରାଏ ବର୍ଷା ହେଇ ଯାଇଥାଏ ଓ ରାସ୍ତାର ଚିକିଟା ମାଟିର ଗୁଣ ଷୋଳଅଣା ପ୍ରକଟ ହୋଇଥାଏ, ବସ୍‌ର ଏକ୍ସିଲରେଟର୍ ଦବେଇଲେ ଚକ ଘରଘର ବୁଲୁଥାଏ; କିନ୍ତୁ ଗାଡ଼ି ଯୋଉଠି ସେଇଠି । ଠେଲାଠେଲି କରି କିଛି ହେଲା ନାହିଁ । ଶେଷକୁ ଛଣ କେତେ ବିଡ଼ା ସଂଗ୍ରହ କରି ପଛ ଚକତଳେ ପକା ହେଲା । ଗାଡ଼ିତିନିଚାରି ହାତ ଆଗେଇଲେ ପଛରେ ରହିଯିବା ଛଣ ବିଡ଼ାକୁ ନେଇ ପୁଣି ଆଗରେ ପକାହୁଏ । ଏମିତି କରି ସବୁଠାରୁ ଖରାପ ଦୁଇମାଇଲ ରାସ୍ତା ପାରିହେବାକୁ ଅଢ଼େଇ ଘଣ୍ଟା ଖଣ୍ଡେ ଲାଗିଲା । ତା'ପରେ ଆଉ ଟିକେ ଅଧିକ

ବେଗରେ ଆଗେଇଲୁ । ମାତ୍ର "ଏକସ୍ୟ ଦୁଃଖସ୍ୟ ନଯାବଦଂତଂ..", ତେଣେ ଭଲ ରାସ୍ତାର ଆଶା ଦିଗ୍‌ବଳୟ ଉପରେ ଦେଖାଗଲା ବେଳକୁ ଏଣେ ଗାଡ଼ିରୁ ତେଲ ସରିଗଲା । ବିପିନ ଆମ ସାଙ୍ଗରେ ଥାଏ । ସେ ମତେ ଦୁଇଖଣ୍ଡ ଚିପା ଲେଖିଦେଲା । ଖଣ୍ଡେ ତା ହୋଟେଲକୁ, ଅନ୍ୟ ଖଣ୍ଡକ ଗୁଡ଼ିଆଠାରେ ବୁଢ଼ା ନଈର ଘାଟିଆକୁ । ମୁଁ ସେଠୁ ଚାଲି ଚାଲି ଯାଇ ଯାଜପୁରଠାରେ ଥିବା ବିପିନର ହୋଟେଲରୁ ଏକ ସାଇକେଲ ନେଇ ଡୋଲିପୁର ଷ୍ଟେସନକୁ ଚାଲିଲି । ମଝିରେ ମଝିରେ ବର୍ଷା ହେଉଥିଲା । ସେ ଦିନ ପୁନେଇଁ ପାଖାପାଖି ଏକ ତିଥି । ମେଘ ଭିତରୁ ଜହ୍ନ ଆଲୁଅର ଆଭା କିଛି କିଛି ଛାଣି ହେଇ ଆସୁଥାଏ ଓ ସେଥିରେ ବାଟଘାଟ ଝାପ୍‌ସା ଦେଖାଯାଉଥାଏ । ଇତିମଧ୍ୟରେ ଦେଖିଲି ଯେ ସାଇକେଲର ଆଗଚକ କଣା । ପବନ, ସବୁ ବାହାରି ଗଲାଣି । ସେଇଥିରେ ଠେଲି ଚାଲିଲି । ରାସ୍ତା ଜନମାନବଶୂନ୍ୟ । ବୁଢ଼ା ନଈ ଉପରେ ତ ପୋଲ ନ ଥାଏ ସେତେବେଳେ । ଏତେ ରାତିରେ ଘାଟ ବନ୍ଦ । ଘାଟିଆକୁ ଡକାହକା କରି ଉଠେଇଲି । ବିପିନର ଚିପାଦେଖି ସେ ମତେ ପାରି କରିଦେଲା ଓ ମନ୍ତବ୍ୟ କଲା - "କଣ ଏମିତି ଜରୁରୀ କାମ ଯେ ଏ ପାଗରେ ନ ଗଲେ ନ ଚଳେ ? ଏଥିରେ ତ ଯମ ବି ଘରୁ ବାହାରିବ ନାହିଁ ।"

ଗୁଡ଼ିଆ ସେପାରିଠାରୁ ସେ ବାଟରେ ସେତେବେଳେ ଭାଲୁ ଉପଦ୍ରବ ଖୁବ୍ ଥିଲା । ମାତ୍ର ମୁଁ ଭାଲୁ କଥା ଭାବିବାକୁ ବେଳପାଇ ନାହିଁ । ପବନ ନଥିବା ସାଇକେଲକୁ ପେଲିବାରେ ଦମ୍ ନିକିଳି ଯାଉଥାଏ । ଦିପହର ପରେ ଖାଇବା ହେଇ ନ ଥିଲା କି ସନ୍ଧ୍ୟାବେଳୁ ପାଣି ପିଆ ହେଇ ନ ଥିଲା । ପ୍ରବଳ ଶୋଷ । ଧାନ ବିଲରୁ ପାଣି ପିଇଲି ଓ ଚାଲିଲି । ଶୁଣିଥିଲି ଯେ ଧାନ ମୂଳ ପାଣି ଖୁବ୍ ସ୍ୱଚ୍ଛ ଥାଏ । ଆଜିକାଲିର ଏଣ୍ଡ୍ରେକ୍ସ, ଗାମେକସିନ୍ ଯୁଗ ହେଇଥିଲେ ତ ଆଉ କଥା ନ ଥିଲା । ମୋର ଲକ୍ଷ୍ୟ ଥାଏ ଷ୍ଟେସନ୍‌ରେ ଯାଇ ମାନ୍ଦ୍ରାଜ ମେଲ୍ ଧରିବି । ଷ୍ଟେସନରେ ରାତି ଦୁଇଟା ପାଖାପାଖି ପହଞ୍ଚି ବିପିନ୍‌ର କହାଦମତେ ସାଇକେଲ୍‌ଟି ଷ୍ଟେସନ୍ ମାଷ୍ଟରଙ୍କ ଜିମା ଦେଲି । ମାତ୍ର ଶୁଣିଲି ଯେ ନୂଆ ଟାଇମ୍ ଟେବୁଲ୍ ଅନୁସାରେ ମାନ୍ଦ୍ରାଜ ମେଲ୍ ଆଉ ଯାଜପୁର ରୋଡ଼ରେ ରହୁନାହିଁ । ଏଥିରୁ ଅନୁମାନ କରୁଛି ଏଇଟା ୧୯୩୮ର ଅକ୍ଟୋବର ମାସ ଥିଲା । ଅଳ୍ପ ସମୟ ପରେ ମେଲ୍ ମୋ ସାମନା ଦେଇ ଆକାଶ, ବତାସ ଓ ମାଟି କମ୍ପେଇ ଚାଲିଗଲା । ମୁଁ ଷ୍ଟେସନରେ ପଡ଼ିଥିବା କାଠର ବିରାଟ ଡାକ ସିନ୍ଦୁକ ଉପରେ ଉପାସରେ ରାତି କଟେଇ ସକାଳ ପାସେଞ୍ଜରରେ କଟକ ଗଲି । ଦଶବାର ମାଇଲ ବାଟ ବିନା ପବନରେ ଚାଲିବା ପରେ ସାଇକେଲର ଟାୟାର ଓ ଟିଉବ୍‌ର ଅବସ୍ଥା କ'ଣ ହେଇଥିଲା ସେ ବିଷୟରେ ମୁଁ ଆଉ ବିପିନକୁ ପଚାରି ନାହିଁ କି ସେ ମତେ କହି ନାହିଁ ।

ପାର୍ବତୀ ସେଥର ଗୁରୁତର ଅସୁସ୍ଥ ହେଇ ମର ମର ଅବସ୍ଥାରେ ପହଞ୍ଚିଲା । ସେ ଦିନ ଡାକ୍ତର ଆସି ତା'ର ରୋଗ ମେନିନ୍‌ଜାଇଟିସ୍ ବୋଲି ନିଦାନ କଲେ । ତା'ର ପୂର୍ବଦିନ ଦେହର ଉତ୍ତାପ ଶହେ ପାଞ୍ଚ କି ଛ' ଉପରକୁ ଉଠି ତା'ପରେ ସନ୍ନିପାତ ପରି ହେଇଯାଇଥିଲା । ନାଡ଼ୀ ଛାଡ଼ି ଛାଡ଼ ଅବସ୍ଥା । ଚେତା ନାହିଁ । ସମସ୍ତେ ଆଶା ଛାଡ଼ିଦେଇ ବସିଛନ୍ତି । ବାମନବାବୁ

କେଉଁଠୁ ଖବରପାଇ ସେଇ ଅଧରାତିରେ ଆସି ପହଞ୍ଚିଗଲେ । ଆସି ରୋଗୀକୁ ଦେଖି ସମସ୍ତଙ୍କୁ ଖୁବ୍ ହେମତ୍ ଦେଇ କହିଲେ; "କ'ଣ ହେଇଛି ? ଏଇକ୍ଷଣି ସବୁ ଠିକ୍‌ହେଇଯିବ । ଅସରପା ନଣ୍ଡି ଆଣିଲ ।" ସେବାଘରେ ତ ସବୁବେଳେ ଜୋରଦାର ଛାଡ଼ପୋଛ, ସେଠି ନଣ୍ଡି ତ ଦୂରର କଥା, ଅସରପାର ଦର୍ଶନ ପାଇବା କଷ୍ଟ । ସେଠୁ ସେ ବରାଦ କଲେ - "ଚିନ୍ତା ନାହିଁ । ଆମ ଘରକୁ ଦୌଡ଼ିଯାଅ । ସେଠି ଅମୁକ ବୋଉକୁ କହିବ ଅମୁକ ଘରେ କାଠ ସିନ୍ଦୁକରେ ଅସରପା ନଣ୍ଡି ଥିବ, ଖୋଜିକରି ଦେବ ।" ଲୋକ ଯାଇ ତୁରନ୍ତ ନଣ୍ଡି ଆଣିଲା ଓ ବାମନବାବୁ ତାକୁ ମହୁରେ ଘୋରି ପାର୍ବତୀର ଆଖିରେ କଜଳପରି ଲେପିଦେଲେ । ତା'ପରେ ପ୍ରକୃତରେ ତା'ର ଉଷ୍ଣତା ଓ ଚେତା କ୍ରମେ ଫେରି ଆସିଲା । ସେଠୁ ତାକୁ ବାମନବାବୁ ହୋମିଓପାଥି ନା ବାୟୋକେମିକ୍ ଔଷଧ ଦେଇ କହିଲେ - "ଏଲୋପାଥି ଔଷଧ ଖାଇଛି ତ ? ଚିନ୍ତା ନାହିଁ । ମୁଁ ସଲଫର୍ ଥାର୍ଟି ଦେଇ ବାଡ଼ ପକେଇ ଦେଉଛି । ଏ ପାଖରେ ହୋମିଓପାଥି ସେ ପାଖରେ ଏଲୋପାଥି କାମ କରିବ ।"

ବାମନବାବୁ ଗରିବ ପ୍ରଜାଙ୍କୁ ହଇରାଣ କରିବାବେଳେ ବିଶେଷ କରୁଣା ଅନୁଭବ କରୁ ନଥିଲେ । ମାତ୍ର କେହି ବେମାର ପଡ଼ିଛି ବୋଲି ଶୁଣିଲେ ବଢ଼ି, ବର୍ଷା ଓ ଦିନରାତି ନ ମାନି ଧାଇଁ ଯାଉଥିଲେ । ଏଥିରେ ତାଙ୍କର ପଇସା କମେଇବାର ଚିନ୍ତା ନ ଥିଲା । ନିଜର ଚିକିତ୍ସା ବିଦ୍ୟା ପ୍ରୟୋଗ କରି ରୋଗୀର ଉପକାର କରିବା ହିଁ ମୁଖ୍ୟ ଲକ୍ଷ୍ୟ ରହୁଥିଲା । ମଣିଷର ଚରିତ୍ର ଏହିପରି ଜଟିଳ । ତା'ର ଭଲ ଦିଗଟାର ଖିଅଧରି ଭଲ ଦିଗରେ ତା'ର ବିକାଶ ଘଟାଇବାରେ ହିଁ ସତ୍ୟାଗ୍ରହର ରହସ୍ୟ ରହିଛି । ବାପା ଏହିପରି କରିବାର ଉଦ୍ୟମ କରୁଥିଲେ ।

## କେତେଜଣ ଗୁରୁଜନ ଓ ସାଥୀ

ବରୀ ଅଞ୍ଚଳରେ କଂଗ୍ରେସ ପ୍ରଚାର ଓ ସଙ୍ଗଠନ କାମରେ ତିନିଜଣ କର୍ମୀ ବିଶେଷଭାବରେ ଲାଗିଥାନ୍ତି । ଭଗୀରଥ ମଉସା, ଗୋବିନ୍ଦ ସାମଲ ଓ ଗଙ୍ଗାଧରବାବୁ । ମୁଁ ବି ସେମାନଙ୍କ ସାଙ୍ଗରେ ଯୋଗ ଦେଉଥାଏ । ଭଗୀରଥ ମଉସା ଓ ନିନି ମାଉସୀ, ପ୍ରିୟଂବଦା ଦେବୀ, ୧୯୩୦ ଆନ୍ଦୋଳନବେଳେ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଓ ତା'ପରେ ବରାବର ନିଷ୍ଠାର ସହିତ କାମରେ ଲାଗିଥିଲେ । ଭଗୀରଥ ମଉସା ସେତେବେଳେ କଂଗ୍ରେସ ପକ୍ଷରୁ ଜିଲ୍ଲାବୋର୍ଡ଼ ସଦସ୍ୟ ହୋଇଥିଲେ ଓ ଆମେ ତାଙ୍କୁ ଜିତେଇବା ପାଇଁ ପ୍ରଚାର କାମ କରିଥିଲୁ । ବରୀ ଅଞ୍ଚଳରୁ ତ ୧୯୩୦-୩୨ ଆନ୍ଦୋଳନମାନଙ୍କରେ ବହୁତ ଲୋକ ଜେଲ୍ ଯାଇଥିଲେ । ସେମାନଙ୍କ ଭିତରେ ଗୋବର୍ଦ୍ଧନ ପୁହାଣ, ହରିଶ୍ଚନ୍ଦ୍ର ଦାସ, ଅଭିରାମ ସାହାଣୀ, ହଳଧର ସାହାଣୀ, ହାରାମଣି ଦେଈ, ହରପ୍ରିୟା ଦେଈ ହେଉିକା ବରାବର ସେ ଅଞ୍ଚଳର ସବୁ ପ୍ରକାରର ସାଧାରଣ କାମରେ ସହଯୋଗ କରୁଥିଲେ । ଗୋବର୍ଦ୍ଧନବାବୁଙ୍କ ଘର ତ ସେବାଘରର ଗୋଟାଏ ଶାଖାପରି ଥିଲା । ସେଠି ବାହାରୁ ଆସିଥିବା କେତେ କର୍ମୀଙ୍କର ରହିବା ବ୍ୟବସ୍ଥା ହେଉଥିଲା ।

ରଙ୍ଗାଧରବାବୁ ନୂଆ ବାହାରିଥିଲେ । ତାଙ୍କ ଘର ଅମଠପୁର । ସେ କୋଉ ଗଡ଼ଜାତରେ ଅମୀନ କାମ କରୁଥିଲେ । ଗାଁକୁ ଫେରି ସେବାଘରର କାମପ୍ରତି ଆକୃଷ୍ଟ ହେଲେ ଓ ସଙ୍ଗଠନ ଓ ପ୍ରଚାର କାମରେ ଲାଗିଲେ । ଗୋବିନ୍ଦ ସାମଲଙ୍କର ଘର ରାମପୁର । ସେ ପାଠ ଅଳ୍ପ ପଢ଼ିଥିଲେ । ବୟସବେଳେ ସେ କେମିତି ସହଯୋଗ ସମିତି ଆଦି ସହିତ ସଂପୃକ୍ତ ହେଇ ବାହାର ଦୁନିଆ ସହିତ ସଂପର୍କରେ ଆସିଥିଲେ । ତାଙ୍କର ବିଚାର ଓ ଦୃଷ୍ଟି ଖୁବ୍ ଯୁକ୍ତିବାଦୀ ଥିଲା । ଗାଁ ଗହଳରେ କ'ଣ ସହର ବଜାରରେ ବି ଏଭଳି ଅନ୍ଧ ସଂସ୍କାରରୁ ମୁକ୍ତ ବ୍ୟକ୍ତି ବିରଳ । ସେ କେବେ ଉଚ୍ଚ ସ୍ୱରରେ ବା ଉତ୍ତେଜିତ ହେଇ କଥାବାର୍ତ୍ତା କରନ୍ତି ନାହିଁ । ଏହା ସାଙ୍ଗକୁ ତାଙ୍କର ଖୁବ୍ ତୀବ୍ର ରସଜ୍ଞାନ ଥାଏ । ଗାଁରେ ହଇଜା ବା ବସନ୍ତର ପ୍ରାଦୁର୍ଭାବ ହେଲେ କାଳିସୀ ଲାଗନ୍ତି । ଗାଁରେ କେହିଜଣେ ହରିଜନ ସାଧାରଣତଃ କାଳିସୀ ହୁଏ । ସେ ନିଶାରେ ଆଚ୍ଛନ୍ନ ହେଲାପରି ନାଚି ନାଚି ଘୋଷଣା କରେ ଯେ ମତେ ଛେଳି ଦିଅ, କୁକୁଡ଼ା ଦିଅ, ନ ହେଲେ ମୁଁ ଗାଁରୁ ଏତେ ମୁଣ୍ଡ ଖାଇବି, ଇତ୍ୟାଦି । ଲୋକେ ତାକୁ ଭୟ ଓ ଭକ୍ତିରେ ପୂଜା କରନ୍ତି । ଭୋଗ ଦିଅନ୍ତି । ଗୋବିନ୍ଦ ସାମଲ କିନ୍ତୁ ଏ ସବୁକୁ ଭାଣ୍ଡିଆ କରିବାକୁ ଅଣ୍ଟା ଭିଡ଼ିଥା'ନ୍ତି । ଥରେ ସେ କାଳିସୀକୁ ଦେଖେଇ କହିଲେ - "ଏ ତୁ ଆମ ସେ ସାହିର ଅମୁକ ଜେନା । ମରଦଟାଏ । ତାକୁ ତମେସବୁ ମା' ମା' କାହିଁକି କହୁଛ ?" ଲୋକେ ରାଗି ପାଟିତୁଣ୍ଡ କରି କହିଲେ - "ଗୋବିନ୍ଦ ! ତୁ ଏମିତି କଥା କହୁଛୁ । ମା' ତତେ ଖାଇଯିବେ ।" ଗୋବିନ୍ଦ ଜବାବ ଦେଲେ - "ମା' କ'ଣ କେବେ ତା ପିଲାମାନଙ୍କୁ ଖାଏ ? ଗାଈ, କୁକୁର କି ବିଲେଇ କେହି ତ ନିଜ ଛୁଆକୁ ଖାଇବାର ଆମେ ଦେଖିନୁ ? ଆଉ ଏ ଯଦି ଆମ ସମସ୍ତଙ୍କର ମା' ତେବେ ଆମକୁ ଖାଇବ ବୋଲି କେମିତି କହୁଛ ? ଆଉ ମତେ ଯଦି ଖାଇବ ତ ଖାଉ । କେମିତି ଖାଇବ କଞ୍ଚା ଚୋବେଇ ନା ତରକାରୀ କରି ଖାଇବ ?" ଏହିପରି ବ୍ୟଙ୍ଗ ବିଦ୍ରୂପଦ୍ୱାରା ସେ ତାଙ୍କ ଗାଁ ଓ ପାଖ ଆଖରୁ କାଳିସୀଙ୍କର ପ୍ରଭାବ କ୍ରମେ ଲୋପ କରି ଦେଇଥିଲେ । କଂଗ୍ରେସ ପ୍ରଚାରରେ ମଧ୍ୟ ସେ ଏହିପରି ବ୍ୟଙ୍ଗ ଓ କୌତୁକର ବ୍ୟବହାର ଦ୍ୱାରା ବିରୋଧୀମାନଙ୍କୁ ନିରସ୍ତ କରୁଥିଲେ । ତାଙ୍କଦ୍ୱାରା ବାରଗାଁ ପ୍ରଗଣାରେ ଭଲ ଜନସଂପର୍କ ଗଢ଼ିଉଠିଥିଲା ।

ସୁଶୀଳା ଦେଈ-ଆମେସବୁ ତାଙ୍କୁ ବଡ଼ଦିଦି ଡାକୁଥିଲୁ - ଲବଣ ସତ୍ୟାଗ୍ରହରେ ଆସି ବୋଉ ପାଖରେ ପହଞ୍ଚିଥିଲେ । ସେ ଗୋବିନ୍ଦ ସାମଲଙ୍କର ଖୁଡ଼ୀ । ଅଳ୍ପ ବୟସରୁ ବିଧବା ହେଇଥିଲେ ଓ ନିଃସନ୍ତାନ ଥିଲେ । ତାଙ୍କର ବାପଘର ଗାଁ ନିକିରେଇ । ସେବାଘର ଆରମ୍ଭ ହେବାବେଳୁ ସେ ତାଙ୍କ ଗାଁରେ ସୂତାକଟା ଆଦି କାମ କରୁଥିଲେ । ତାଙ୍କର ସ୍ୱଭାବଟା ଖୁବ୍ ସରଳ ଓ ସବୁକଥା ସେ ତାଙ୍କର ସରଳ ବୁଦ୍ଧି ଦେଇ ବୁଝନ୍ତି । ତାଙ୍କର କଥାବାର୍ତ୍ତା ଓ ଚାଲିଚଳଣରେ କୌଣସି ଆଡ଼ମ୍ବର ନ ଥିଲା । ବରଂ ହାତ ହଲେଇ ସେ ମିଲିଟାରୀ ଢଙ୍ଗରେ ଚାଲୁଥିଲେ । ଆମେ ସମସ୍ତେ ତାଙ୍କୁ ଥଟା କରିବାକୁ ଭଲପାଉଥିଲୁ ଓ ସେଥିରେ ବିନୋଦ ନେତୃତ୍ୱ ନେଉଥିଲା । ବଡ଼ଦିଦି ଖୁବ୍ ନିର୍ଭୀକ ଥିଲେ । ଗାଁର ଲୋକ, ବିଶେଷକରି ସ୍ତ୍ରୀଲୋକମାନଙ୍କ

ଭିତରେ ନିର୍ଭୀକତାର ସଞ୍ଚାର କରିବାରେ ତାଙ୍କର ବିଶେଷ ଅବଦାନ ରହିଛି । ଥରେ ସେ ଟ୍ରେନ୍‌ରେ ବୋଉ ହେରିକାଙ୍କ ସାଙ୍ଗରେ ଯାଉଥିଲେ । ବୋଉର ସେ ଗୋଡ଼ଘଷି ଦେଉଥା'ନ୍ତି । ଅନ୍ୟ ଯାତ୍ରୀମାନେ ପଚାରିଲେ - ' ସେ ତମର କିଏ କି ?' ବଡ଼ଦିଦି ଉତ୍ତର ଦେଲେ - " ମୋର ବୋଉ ।' ପୁଣି ପ୍ରଶ୍ନ ହେଲା - 'ନିଜର ?" ବଡ଼ଦିଦି କହିଲେ 'ହଁ' । ସେଠୁ ପ୍ରଶ୍ନକର୍ତ୍ତା କହିଲେ - 'ତେବେ ସେ କ'ଣ ତମର କନିଆ ମା ?' ବଡ଼ଦିଦି ବୋଉଠୁଁ ବୟସରେ ବଡ଼ ଦେଖାଯାଉଥିଲେ । ହେଇଥିବେ ବା ।

ସେ ଥରେ ସର୍ବୋଦୟ ସମ୍ମିଳନୀ କି କେଉଁଠିକି ଯିବେ ବୋଲି ଏକା ହାଓଡ଼ା ଷ୍ଟେସନରେ ଓହ୍ଲେଇଲେ । ସେଠି ତ ପଦାକୁ ବାହାରି ଏତେ ଗାଡ଼ି ମୋଟର ଦେଖି ଏକାବେଳକେ ହକା ବକା ହେଇଗଲେ । ସେଠୁ ଛକ ଉପରେ ଦେଖିଲେ ଏକ ପୁଲିସବାଲା ଛିଡ଼ା ହେଇଛି । ତା' ପାଖକୁ ଯାଇ ଚିତ୍‌କାର କରି କହିଲେ - "ହମ୍ କୌନ୍ ହେ ।" ସେ ସେଠୁ ଆସି ତାଙ୍କୁ ପଚାରିଲା ଓ ବାଟଘାଟ ବତେଇଦେଲା ।

ତାଙ୍କ ବାପାଙ୍କ ବିଷୟରେ ସେ କହୁଥିଲେ ଯେ ତାଙ୍କ ନାଁ କୃଷ୍ଣ ସିଂହ । ସେ ସ୍କୁଲ ସବ୍-ଇନ୍‌ସପେକ୍ଟର ଥିଲେ । ଖୁବ୍ ଭାଗବତ ଓ ଅନ୍ୟ ଧର୍ମଗ୍ରନ୍ଥ ପଢ଼ନ୍ତି । ତାଙ୍କ ଘରବାଡ଼ିରେ ଯେଉଁ ମୂଲିଆ କାମ କରନ୍ତି ତାଙ୍କୁ ଡାକି କହନ୍ତି - " ଆରେ, ଖରାରେ କେତେ ଖଟିବ, ଆସ ଟିକିଏ ବସ । ଏ ଭାଗବତରୁ ଦି ପଦ ଶୁଣ । ଟିକିଏ ଝାଳମାର ।" ତା'ଙ୍କୁ ବସେଇ ପାଣି ପିଆଇବେ । ଭାଗବତ ବ୍ୟାଖ୍ୟା କରି ବୁଝାଇବେ ।

ବଡ଼ଦିଦିଙ୍କର ଗୀତ ଓ ଭଜନ ଲେଖିବାର ସୌକ ଥିଲା । ବହୁତ ଖାତା ସେ ଲେଖି ଭର୍ତ୍ତି କରିଥିଲେ ଓ ଆମକୁ ସବୁ ଧରି ଶୁଣାନ୍ତି । ତାଙ୍କର ଗୋଟାଏ ଆକାଂକ୍ଷା ଥିଲା ଯେ ଏ ସବୁ ଛପା ହେବ । ଗୋଟାଏ ଦୁଃଖ ରହିଗଲା ଯେ ଆମେ ସେଥିରେ ତାଙ୍କୁ ସାହାଯ୍ୟ କରିପାରିଲୁ ନାହିଁ । ମୋର ଜାଁଳା ପୁଅ ଝିଅ ନାନା ନାନୀ ଜନ୍ମ ହେବାପରେ ବଡ଼ଦିଦି ଆସି ସେମାନଙ୍କର ଛନ୍ଦୋମୟ ନାମକରଣ କଲେ - "ତ୍ରୈଲୋକ୍ୟ ମୋହନ ଅଟବିମାଳି, ସୁଧାଂଶୁବଦନା ପ୍ରେମ-ଦୁଲାଳୀ ।" ପରେ ସେ ଗେରୁଆ ପିନ୍ଧି ଜଟାରଖି ସନ୍ନ୍ୟାସିନୀ ବେଶ ଧରିଲେ ଓ କେନ୍ଦ୍ରପଡ଼ାଆଡ଼େ କୋଉ ମଠରେ ରହି ଧର୍ମକର୍ମ, ଭଜନ ପୂଜନରେ କାଳ କଟେଇଲେ । ତଥାପି ସେଠି ଥିଲାବେଳେ ବି ସେ ଚାରି ଛଅ ମାସରେ ଥରେ କଟକ ଭୂଦାନ ଅଫିସକୁ ଆସି ସମସ୍ତଙ୍କୁ ସଂଖୋଳିଯା'ନ୍ତି । ତା'ପରେ ସେ କୁଆଡ଼େ ଯେ ହଜିଗଲେ ଆଉ ପତ୍ତା ମିଳିଲା ନାହିଁ ।

ବରୀରେ ଥରେ ଆମେ ଏକ ନୂଆଧରଣର ନାଟକ କରିଥିଲୁ । ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳବେଳେ ନିରକ୍ଷରତା ଦୂରୀକରଣ ପାଇଁ ଗୋଟାଏ କ'ଣ ଉଦ୍ୟମ ଆରମ୍ଭ ହେଇଥାଏ । ସେଥିପାଇଁ ମାଉଣ୍ଡ ପଡ଼ିଆରେ ଏକ ସଭାର ଆୟୋଜନ ହୋଇଥିଲା । ସେଥିରେ ସେ ବିଷୟରେ ଗୋଟାଏ ନାଟକ ଅଭିନୟ କରାଯିବ ବୋଲି ସ୍ଥିର ହେଲା । ଗଙ୍ଗାଧରବାବୁ, ଆକୁଳି ମେକାପ, ଗଣେଶ, ମୁଁ ଓ ଆଉ ଦୁଇ ତିନି ଜଣ କିଏ ସେଥିରେ ଉଦ୍ୟୋଗୀ ଥାଉ । କୌଣସି ଲେଖକଙ୍କର

କୌଣସି ନାଟକ ହାତପାଖରେ ନ ଥିଲା । ବସି ଆଲୋଚନା କରି ନାଟକର ଗୋଟାଏ କାହାଣୀ ପ୍ରସ୍ତୁତ କରାହେଲା । ଏହାର କୌଣସି ଧରାବନ୍ଧା ସଂଳାପ ଲେଖା ଗଲା ନାହିଁ । ଅଭିନେତାମାନେ ଏକାଠି ବସି ନାଟକର ବିଭିନ୍ନ ଦୃଶ୍ୟର ଘଟଣାକ୍ରମ ଭଲ ରୂପେ ବୁଝିନେଲେ । ସ୍ଥିର ହେଲା ଯେ, ସେହି ଅନୁସାରେ ପ୍ରତ୍ୟେକ ନିଜ ନିଜର ବକ୍ତବ୍ୟ ନିଜେ କଳ୍ପନା କରି କହିବେ । ଏହି ରୀତିରେ ଥରେ ରିହର୍ସାଲ କରିବା ପରେ ସେଦିନ ସଭାରେ ନାଟକ ମଞ୍ଚସ୍ଥ କରାହେଲା, ଏଥିରେ ବୋଲଚାଲ ବେଶ୍ ସ୍ୱାଭାବିକ୍ ହେଉଥିଲା ଓ ଲୋକେ ପସନ୍ଦ କରିଥିଲେ ।

## ଜୱାହରଲାଲ ଓ ସୁଭାଷବାବୁ

୧୯୩୫ କି ୩୬ ରେ ଜୱାହରଲାଲଙ୍କର ଆତ୍ମକଥା ବାହାରିବା ମାତ୍ରେ ସେଥିରୁ ଖଣ୍ଡେ ସଙ୍ଗେ ସଙ୍ଗେ ସଂଗ୍ରହ କରି ମୁଁ ଗିଳିଦେଇଥିଲି । ତାହା ପୂର୍ବରୁ ବିଶ୍ୱ ଇତିହାସର ଝଲକ ମଧ୍ୟ ବାହାରିବା ସଙ୍ଗେ ସଙ୍ଗେ କିଣି ପଢ଼ିସାରିଥିଲି । ପୂର୍ବରୁ ମୋର ଗୋଟିଏ ଯେଉଁ ବିଶ୍ୱଦୃଷ୍ଟିର ବିକାଶ ହେଇସାରିଥାଏ ତାହା ସହିତ ଜୱାହରଲାଲଙ୍କର ବିଶ୍ୱବ୍ୟାପୀ ଦୃଷ୍ଟିକୋଣ ବେଶ୍ ଖାପଖାଇଲା । କଂଗ୍ରେସର ଅନ୍ୟ ନେତାଙ୍କ ଭିତରେ ମୁଁ ତାହାର ଅଭାବ ଦେଖୁଥାଏ । ସେଥିପାଇଁ ଜୱାହରଲାଲଙ୍କୁ ମୁଁ ଆଦର୍ଶ ବୋଲି ଧରିନେଇଥିଲି । ତାଙ୍କର ଝଲମଲ ବ୍ୟକ୍ତିତ୍ୱର ଆକର୍ଷଣ ଶକ୍ତି ବି କମ୍ ନ ଥିଲା । ଆତ୍ମକଥାରେ ସେ ଗାନ୍ଧୀଜୀଙ୍କର ଚିନ୍ତାଧାରାର ଯେଉଁ ପ୍ରଶଂସା ଓ ସମାଲୋଚନା କରିଥା'ନ୍ତି ସେସବୁ ମତେ ଭଲ ଲାଗିଥିଲା । କେବଳ ଅଳ୍ପ କେତେକ ସ୍ଥାନରେ ତାହା ମୋ ମନକୁ ପାଇ ନ ଥିଲା । ଗାନ୍ଧୀଜୀ ଓ ନେହେରୁ ଉଭୟଙ୍କ ପ୍ରତି ଆକର୍ଷଣ ମନରେ କିଞ୍ଚିତ୍ ଦ୍ୱନ୍ଦ୍ୱ ସୃଷ୍ଟି କରିଥିଲା । ସେତେବେଳେ ନେହେରୁ ନବ ଭାରତର ଯଥାର୍ଥ ନେତା ରୂପେ ପ୍ରତୀତ ହେଉଥା'ନ୍ତି । ତାଙ୍କର ଚିନ୍ତାଧାରାରେ ଥିବା ଉପରଠାଉରିଆ ପଣଟା ମୁଁ ଅନେକ ପରେ ଅନୁଭବ କଲି । ଏବେ ଗଡ଼ଜାତ ଆନ୍ଦୋଳନ ବେଳର ଗୋଟିଏ ପ୍ରସଙ୍ଗ ମନେପଡୁଛି । ଗଡ଼ଜାତ ଆନ୍ଦୋଳନର ସମସ୍ୟା ନେଇ ଦାଦା ନେହେରୁଙ୍କ ସାଙ୍ଗରେ ଆଲୋଚନା କରିବା ପାଇଁ ଏଲାହାବାଦ ଯାଇଥିଲା । ସେଠୁ ଫେରି ସେ ମନ୍ତବ୍ୟ କଲା – " ଲୋକଟା ଟିକିଏ ଅବଟ୍ୟୁଜ୍ (obtuse ମୋଟାବୁଦ୍ଧିଆ) ସମସ୍ୟାଗୁଡ଼ାକର ଭିତରକୁ ପଶିବା ଚେଷ୍ଟା ନ କରି ଖାଲି ସ୍ପେନ୍‌ରେ ଯା ହେଉଛି, ଇଟାଲିରେ ତା ହେଉଛି, ସେ ପରିପ୍ରେକ୍ଷୀରେ ଚିନ୍ତା କରିବାକୁ ହେବ ଇତ୍ୟାଦି, ଏମିତି ଗୁଡ଼ାଏ ଗପିଲେ ।" ପ୍ରକୃତରେ ଦାଦା ନେହେରୁଙ୍କଠାରୁ ଗଡ଼ଜାତ ଆନ୍ଦୋଳନ ସମ୍ବନ୍ଧରେ କୌଣସି ନୂଆ ଆଲୋକ ନେଇ ଫେରି ନ ଥିଲା ।

ଇତି ମଧ୍ୟରେ ସୁଭାଷବାବୁ ବିଦେଶରୁ ଫେରିଆସି ନୂଆ ଆଭିମୁଖ୍ୟର ପ୍ରଚାର କରୁଥା'ନ୍ତି । ତାଙ୍କର ବ୍ୟକ୍ତିତ୍ୱ ପ୍ରତି ମୋର ଶ୍ରଦ୍ଧା ଓ ଆକର୍ଷଣ ଥିଲେ ମଧ୍ୟ ତାଙ୍କର ଚିନ୍ତାଧାରା ମତେ ଛୁଇଁ ନ ଥିଲା । ସୁଭାଷବାବୁ ଗାନ୍ଧୀଜୀଙ୍କର ଆଶୀର୍ବାଦ ନେଇ କଂଗ୍ରେସର ହରିପୁରା ଅଧିବେଶନର ସଭାପତି ହେଲେ । ସେତେବେଳେ ବଙ୍କିମଚନ୍ଦ୍ରଙ୍କର 'ବନ୍ଦେମାତରମ୍' ରାଷ୍ଟ୍ରୀୟ ସଙ୍ଗୀତ ରୂପେ

ଲୋକସ୍ୱୀକୃତି ପାଇସାରିଥାଏ । ତେବେ ସାଧାରଣତଃ ତା'ର କେବଳ ପ୍ରଥମ ପଦଟି ହିଁ ବୋଲାହେଉଥିଲା । ସେଥିରେ ଆଗକୁ "ଦ୍ୱିତ୍ରିଂଶ କୋଟି ଭୁଜୈଃ ଧୃତ ଖରକରବାଳେ" ଆଦି କଥା ଥିବାରୁ ଅହିଂସା ଦୃଷ୍ଟିରୁ ମଧ୍ୟ ପୂରା ଗୀତ ବୋଲାହେବା ବାବଦରେ ଗୋଟାଏ ଆପତ୍ତି ଆପରି ଉଠିଥିଲା । ଏଭଳି ବିରୋଧର ବିରୋଧରେ ବଙ୍ଗଳାରୁ ଦାବି ଉଠୁଥିଲା ଯେ, ନାହିଁ ପୁରା ଗୀତଟା ବୋଲିବାକୁ ହେବ । ହରିପୁରା କଂଗ୍ରେସରେ ବଙ୍ଗଳାରୁ ଆସିଥିବା ଗାୟକଗାୟିକା ଦଳ ପୂରାଗୀତଟି ଗାଇ ଚାଲିଥିଲେ ଓ ଏହାକୁ ନେଇ ଟିକିଏ ଉତ୍ତେଜନା ସୃଷ୍ଟି ହେଉଥିଲା । ଏଇ କଂଗ୍ରେସରେ ମୌଳିକ ଶିକ୍ଷାର ପ୍ରସାର ପାଇଁ ହିନ୍ଦୁସ୍ତାନୀ ତାଲିମୀ ସଂଘ ଗଠନର ପ୍ରସ୍ତାବ ଗୃହୀତ ହେଉଥିଲା ।

ହରିପୁରାରୁ ଫେରିବାବେଳେ ଦାଦା, ଖୁଡ଼ୀ, ଗୌର, ମୁଁ ଓ ଆଉ ଜଣେ ଦୁଇଜଣ କିଏ ଅଜନ୍ତାର ଗୁମ୍ଫାମାନଙ୍କରେ ଥିବା ଭିତ୍ତି ଚିତ୍ର ଦେଖିଗଲୁ । ଏଲୋରା ମଧ୍ୟ ସେଇଠୁ ଯିବାକୁ ହୁଏ, ମାତ୍ର ଆମର ଯିବା ହେଲାନାହିଁ । ଅଜନ୍ତା ଦର୍ଶନ ମୋର ଏଇ ପ୍ରଥମ । ସେଠାର ପ୍ରାକୃତିକ ପରିବେଶ ତ ଖୁବ୍ ଭଲ ଲାଗିଥିଲା । ଅଳ୍ପ ସମୟ ଭିତରେ ଚିତ୍ରଗୁଡ଼ିକ ଭଲକରି ଦେଖିବାର ସୁଯୋଗ ତ ନ ଥିଲା । ତେବେ ତା'ର ଶୈଳୀର ବିଶେଷତ୍ୱ ଦ୍ୱାରା ଆକୃଷ୍ଟ ହେଉଥିଲି । ପରେ ସେସବୁର ଚିତ୍ରର ପ୍ରତିକୃତି ଦେଖି ସେ ସବୁରୁ ଅଧିକ ରସଗ୍ରହଣ କରିପାରିଛି ।

ସୁଭାଷବାବୁଙ୍କର ସଭାପତିତ୍ୱର ବର୍ଷେ ପୂରି ଆସିବାବେଳେ ଆସନ୍ତା ବର୍ଷ ପାଇଁ ଆଉଜଣେ କିଏ କଂଗ୍ରେସର ସଭାପତି ହେବା କଥା ଉଠିଲା । ମାତ୍ର ସୁଭାଷବାବୁ ପୁଣି ପ୍ରାର୍ଥୀ ହେଲେ । ତାଙ୍କ ବିରୋଧରେ ସର୍ଦ୍ଦାର ପଟେଲ ପ୍ରଭୃତିଙ୍କ ଦ୍ୱାରା ଗାନ୍ଧୀପନ୍ଥୀ ଭାବରେ ଡକ୍ଟର ପଟ୍ଟଭି ସୀତାରାମାୟାଙ୍କୁ ଛିଡ଼ାକରାଗଲା । ପଟ୍ଟଭୀଙ୍କ ବ୍ୟକ୍ତିତ୍ୱ ଆଦୌ ଆକର୍ଷକ ବୋଧ ହେଉ ନଥାଏ । ମୁଁ ସୁଭାଷବାବୁଙ୍କୁ ଭୋଟ ଦେଲି । ସୁଭାଷବାବୁ ଜିତିଲେ ଓ ତା'ପରେ ଗାନ୍ଧୀଜୀ ଲେଖିଲେ ଯେ ପଟ୍ଟଭୀଙ୍କର ପରାଜୟ ତାଙ୍କର ପରାଜୟ । ଏହା ପଢ଼ି ସୁଭାଷବାବୁଙ୍କୁ ଭୋଟ ଦେଇଥିବାରୁ ମୁଁ ଓ ଅନ୍ୟ କେତେକ ଟିକିଏ ବିବ୍ରତ ହେଇଗଲୁ ।

ଏଇ ପ୍ରସଙ୍ଗରେ ଗାନ୍ଧୀଜୀଙ୍କର ଭୂମିକାରେ ପରେ ଖୁବ୍ ସମାଲୋଚନା ହେଉଛି । ବଙ୍ଗଳାରେ ଗାନ୍ଧୀବିରୋଧୀ ହାୱାର ଯେ ବି ଏକ ଉପାଦାନ । ଗାନ୍ଧୀଜୀ କ'ଣ ଏତେ ସଂକୀର୍ଣ୍ଣ ଓ ଅସହିଷ୍ଣୁ ଥିଲେ ଯେ ସେ ସୁଭାଷବାବୁଙ୍କୁ ସହ୍ୟ କରିପାରିଲେ ନାହିଁ ? ଗାନ୍ଧୀଜୀ ତାଙ୍କ ଜୀବନରେ କେତେ କେତେ ହିଂସାବାଦୀ ବିପ୍ଳବୀଙ୍କୁ ନିଜ ପାଖକୁ ଟାଣି ପାରିଥିଲେ । ଆଉ ସୁଭାଷବାବୁଙ୍କ କ୍ଷେତ୍ରରେ ହାରିଗଲେ ?

ଏ ବିଷୟରେ ବିଶଦ ଆଲୋଚନା ଏଠି ସମ୍ଭବ ନୁହେଁ । ତେବେ କେତୋଟି କଥାର ବିବେଚନା ସଂକ୍ଷେପରେ କରାଯାଇପାରେ । ଗାନ୍ଧୀ ସେବା ସଂଘର ପରିଚୟ ପୂର୍ବରୁ ଦେଇଛି । ଏଇ ସୁଭାଷ-ପଟ୍ଟଭୀ ଲଢ଼େଇ ବେଳେ ସର୍ଦ୍ଦାର ବଲ୍ଲଭଭାଇ ସଂଘର ଅଧ୍ୟକ୍ଷ କିଶୋରଲାଲଭାଇଙ୍କୁ ଅନୁରୋଧ କଲେ ଯେ ସେ ଏକ ନିର୍ଦ୍ଦେଶ ବା ସୂଚନା ସଂଘ ପକ୍ଷରୁ ଜାରି କରନ୍ତୁ ଯେ

ଗାନ୍ଧୀପନ୍ଥୀମାନେ ପଟ୍ଟଭୀଙ୍କୁ ଭୋଟ ଦେବା ଉଚିତ । କିଶୋରଲାଲଭାଇ ତାହା କରିବାକୁ ଅସ୍ୱୀକାର କରିଥିଲେ ଓ ଏଥିଯୋଗୁଁ ସର୍ଦ୍ଦାରଙ୍କର ବିରାଗଭାଜନ ହୋଇଥିଲେ ।

ଗାନ୍ଧୀସେବା ସଂଘ ରାଜନୀତିର ସ୍ପର୍ଶ ଏଡ଼େଇ ଚଳୁଥିବା ସଂସ୍ଥା ନ ଥିଲା । ତା'ର ସଦସ୍ୟମାନଙ୍କ ଭିତରେ ସର୍ଦ୍ଦାର ବି ଥିଲେ ଓ କଂଗ୍ରେସର ଅନ୍ୟ ସକ୍ରିୟ କର୍ମୀ ଓ ନେତା ବି । ମାତ୍ର ସର୍ଦ୍ଦାର ପଟେଲ ଯେଉଁ ଭାବରେ କଂଗ୍ରେସ ଅନୁଷ୍ଠାନ ଭିତରେ ଆପଣାର ପ୍ରାଧାନ୍ୟ ସ୍ଥାପନ କରିବାକୁ ଚାହୁଁଥିଲେ ତାହା ସେତେବେଳର ଅନେକ ନିଷ୍ଠାବାନ ଗାନ୍ଧୀପନ୍ଥୀ ପସନ୍ଦ କରୁନ ଥିଲେ ।

ଏଥିରୁ ମନେହୁଏ ଯେ ସୁଭାଷବାବୁଙ୍କ ବିରୋଧରେ ସର୍ଦ୍ଦାର ହେଉିକା ଯେପରି ଲାଗିଥିଲେ ତାହା ସହିତ ହୁଏତ ଗାନ୍ଧୀଜୀ ପ୍ରଥମରୁ ସଂପୂର୍ଣ୍ଣ ଏକମତ ନ ଥିଲେ । ମାତ୍ର ଘଟଣାଟା ଯେପରି ଗତି କଲା ସେଥିରେ ହୁଏତ ସେ ପରେ ସେଭଳି କଥା କହିବାକୁ ବାଧ ହେଲେ । ସୁଭାଷବାବୁ ଦେଶ ଆଗରେ ଯେଉଁ କାର୍ଯ୍ୟକ୍ରମ ଓ ସଂଗ୍ରାମର କୌଶଳ ଆଣି ଥୋଇଲେ ତାହା ଭିତରେ ଗାନ୍ଧୀଙ୍କର ପନ୍ଥାର ଏକ କଠୋର ସମାଲୋଚନା ଥିଲା । ଯଦି ୧୯୨୨ ବା ୧୯୩୦ ଭଳି ଏକ ସଂଗ୍ରାମର ପୂର୍ବ ମୁହୂର୍ତ୍ତରେ ଏଭଳି ଅଧୈର୍ଯ୍ୟ ଓ ଭିନ୍ନ ଦୃଷ୍ଟି ପ୍ରକାଶ ପାଇଥା'ନ୍ତା ତେବେ ଗାନ୍ଧୀଜୀଙ୍କର  ରଣକୌଶଳର ପ୍ରତ୍ୟକ୍ଷ ପରିଚୟ ଲାଭ  ମତଭେଦ ବା ଦୃଷ୍ଟିଭେଦ ମେଣ୍ଟିଯିବା ସରଳ ଓ ସମ୍ଭବ ହୋଇଥା'ନ୍ତା । ଅତୀତରେ ସେପରି ହୋଇଥିଲା; କିନ୍ତୁ ୧୯୩୮-୩୯ ରେ ତ ସେଭଳି ପରିସ୍ଥିତି ନ ଥିଲା । କଂଗ୍ରେସ ମନ୍ତ୍ରିମଣ୍ଡଳର ପ୍ରୟୋଗ ଚାଲୁ ରହିଥିଲା । ଏହି ପରିପ୍ରେକ୍ଷୀରେ କଂଗ୍ରେସର ସାଙ୍ଗଠନିକ ଦୃଢ଼ତା ଓ ଅନୁଶାସନର ଗୁରୁତ୍ୱ ଅଧିକ ଥିଲା ଓ ଏହି ଦୃଷ୍ଟିରୁ ଗାନ୍ଧୀଜୀ ଦୁଇପକ୍ଷ ଭିତରୁ ସର୍ଦ୍ଦାର ପ୍ରଭୃତିଙ୍କୁ ପସନ୍ଦ କଲେ । ଏଣେ ସର୍ଦ୍ଦାର ପଟେଲ କଂଗ୍ରେସରେ ନିଜର ଆଧିପତ୍ୟ ରଖିବାକୁ ଚାହୁଁଥିଲେ ଓ ତେଣେ ସୁଭାଷବାବୁ ବି ସେ ଦିଗରେ କମ୍ ଆଗ୍ରହୀ ନ ଥିଲେ ଓ ସେଥିପାଇଁ ପେଞ୍ଚପାଞ୍ଚ କରିବାରେ କମ୍ ଧୁରନ୍ଧର ନ ଥିଲେ । ତାଙ୍କ ସହିତ ଯେଉଁ ଲୋକମାନେ ପ୍ରଧାନ ସମର୍ଥକ ଭାବରେ  ଜୁଟିଥିଲେ ସେମାନଙ୍କର ଢଙ୍ଗଢାଙ୍ଗ ବି କିଛି ଅଧିକ ଆକର୍ଷକ ନ ଥିଲା ।

ଗାନ୍ଧୀଜୀ ସୁଭାଷବାବୁଙ୍କର ବିଜୟକୁ ନିଜର ପରାଜୟ ବୋଲି କହିଲେ ମଧ ସେଥିଯୋଗୁଁ ତାଙ୍କ ପ୍ରତି ଗାନ୍ଧୀଜୀଙ୍କର ସ୍ନେହ ଓ ଆଦର ଊଣା ହୋଇ ନଥିଲା । ଜଣେ ପ୍ରତ୍ୟକ୍ଷଦର୍ଶୀ ବନ୍ଧୁ ମତେ କହିଛନ୍ତି ଯେ, ମାଲିକାଂଦାଠାରେ ଗାନ୍ଧୀ ସେବା ସଂଘର ସମ୍ମିଳନୀରେ ଯୋଗ ଦେବାକୁ ଯିବାବେଳେ ସିଆଲଦା ଷ୍ଟେସନ୍‌ରେ କର୍ମୀମାନେ 'ମହାତ୍ମା ଗାନ୍ଧୀଜୀ କୀ ଜୟ, ପଣ୍ଡିତ ଜୱାହରଲାଲ କୀ ଜୟ' ଆଦି ସବୁ ନେତାମାନଙ୍କର ଜୟଧ୍ୱନି କରୁଥା'ନ୍ତି । ସେସବୁ ଶୁଣି ଶୁଣି ଗାନ୍ଧୀଜୀ ଟିକିଏ ବ୍ୟଥିତ କଣ୍ଠରେ ମନ୍ତବ୍ୟ କଲେ, "ଏମାନେ ସୁଭାଷବାବୁଙ୍କ ଜୟ ବୋଲି ତ କହୁନାହାନ୍ତି ?" (ସୁଭାଷବାବୁକୀ ଜୟ ନହିଁ କହା ?)

# ଗୁରୁଦେବଙ୍କର ସାନ୍ନିଧ

୧୯୩୯ ଖରାଦିନେ ଗୁରୁଦେବ ରବୀନ୍ଦ୍ରନାଥ ଆସି ପୁରୀରେ ସର୍କିଟ ହାଉସରେ ବେଶ୍ କିଛିଦିନ ରହିଲେ । ତାଙ୍କୁ ଓଡ଼ିଶା ସରକାର ରାଜ୍ୟର ଅତିଥି କରିଥା'ନ୍ତି । ଆଜିକାଲି ତ ଯେ ଇଚ୍ଛା ସେ ରାଜ୍ୟ ଅତିଥି ହେଇଯାଉଛି; କିନ୍ତୁ ସେତେବେଳେ ସେପରି ନ ଥିଲା । ଗୁରୁଦେବ ନିଜେ ଏଇଟାକୁ ତାଙ୍କ ପ୍ରତି ଗୋଟାଏ ବଡ଼ ସମ୍ମାନ ଓ ଆଦରର ଅଭିବ୍ୟକ୍ତି ବୋଲି ପ୍ରସନ୍ନତା ପ୍ରକାଶ କରିଥିଲେ । ସେ ସମୟରେ ଦାଦା, ଖୁଡ଼ୀ, ବଡ଼ ମାମୁଁଜାନ୍ ହେରିକା ଯାଇ ବେଶ୍ କିଛିଦିନ ପୁରୀରେ ରହିଲେ । ମୁଁ ବି ସେମାନଙ୍କ ସାଙ୍ଗରେ ଗଲି । ସେଠି ଖୁବ୍ ଫୁର୍ତ୍ତିରେ ଥାଉ । ସମୁଦ୍ରରେ ଗାଧୁଆ, ସମୁଦ୍ର କୂଳରେ ବୁଲା ଖୁବ୍ ହେଉଥାଏ । ମଝିରେ ମଝିରେ ଯାଇ ଗୁରୁଦେବଙ୍କ ପାଖରେ ବସୁ । ପ୍ରଥମ ଦିନ ବଡ଼ ମାମୁଁଜାନ ସକାଳ ଓଳି ମତେ ଗୁରୁଦେବଙ୍କ ପାଖକୁ ପରିଚୟ କରାଇବାକୁ ନେଇଗଲେ । ଗୁରୁଦେବ ଗୋଟାଏ ଆରାମ କେଦାରାରେ ବସିଥା'ନ୍ତି । ପାଖରେ ପ୍ରତିମା ଠାକୁର ଓ ଆଉ କିଏ ଥା'ନ୍ତି । ଗୁରୁଦେବଙ୍କୁ ପ୍ରଣାମ କଲି ।

ମାମୁଁଜାନ ପରିଚୟ କରାଇଦେଲେ । ଗୁରୁଦେବ ମତେ ପଚାରିଲେ, "ତୁମେ କି ଗାନ କରୋ ?" ମୁଁ ଜବାବ ଦେଲି - "କରି କିନ୍ତୁ କେଉ ସୁନତେ ଚାୟନା ।"

ଗୀତ ଶିଖିବାରେ ମୋର କୃତିତ୍ୱ ବିଷୟରେ ପୂର୍ବରୁ କହିଛି । "ସାସା ଗାମା ପାପା ନିନି...." ଭାରତ ମୋ ମା..." " ଶରତ୍ ତୋମାର୍ ଅରୁଣ ଆଲୋକ ଅଞ୍ଜଳି... ।" ଏସବୁ ହାର୍‌ମୋନିୟମ୍‌ରେ ବଜାଉଥିଲି । ଶିବିର, ଶୋଭାଯାତ୍ରା ଆଦିରେ ସମବେତ ସଙ୍ଗୀତରେ ମୁଁ ବି ଗାଏ । ମୋର ନିଜର ଧାରଣା ଥାଏ ଯେ ମୋର ଖୁବ୍ ଭଲ ଗାଇବାର ଶକ୍ତି ଅଛି; କିନ୍ତୁ ଅନ୍ୟମାନେ ଓଲଟା ମତ ପୋଷଣ କରନ୍ତି । ଖୁଡ଼ୀ କହନ୍ତି ଯେ, ବୁଲୁ ଖାଲିପାଟି ପାକୁ ପାକୁ କରୁଥିଲା । ପୁରୀରେ କବିଙ୍କର ଜନ୍ମଦିନ ପାଳନ ପାଇଁ ଆୟୋଜନ ଚାଲିଥାଏ । ସେଦିନ ବୋଲାଯିବ ବୋଲି "ବସନ୍ତେ ବସନ୍ତେ ତୋମାର୍ କବିରେ ଦାଓ ଡାକ୍..." ଗୀତର ଖୁବ୍ ଜୋର ସମବେତ ଅଭ୍ୟାସ ଚାଲିଥାଏ । ମୁଁ ମଜା ଦେଖିବା ପାଇଁ କହିଲି ଯେ ମୁଁ ବି ଗାଇବି । ସମସ୍ତେ ଏକଦମ ବିବ୍ରତ ହୋଇ କେମିତି ମୋ' ହାତରୁ ରକ୍ଷାପାଇବେ ସେଥିପାଇଁ ବ୍ୟସ୍ତ ହୋଇପଡ଼ିଲେ ।

ସେତେବେଳେ ବୁଚୁ, ଖୁକୁ ହେରିକା ପିଲାମାନେ ଭାରି ଉତ୍ୟକ୍ତ ହେଉଥା'ନ୍ତି ଯେ ସମସ୍ତେ ଗୁରୁଦେବଙ୍କ ପିଛା ଲାଗିଛନ୍ତି, ପିଲାମାନଙ୍କ ପ୍ରତି କେହି ଦୃଷ୍ଟି ଦେଉନାହାନ୍ତି । ଏହାରି ପ୍ରତିବାଦରେ ସମସ୍ତେ ମିଶି ଗୋଟାଏ ବାରଭାୟା ପଦ୍ୟ ରଚନା କଲୁ -

"ବିଶ୍ୱେର କବି ତୁମି ଗ୍ରୀଷ୍ମେର୍ ବନ୍ଧେ
ଏସେଛୋ କି ବେଡ଼ାତେ ଆମାଦେର୍ ସ୍କନ୍ଧେ ?

# ବିଶ୍ୱଯୁଦ୍ଧର ଘନଘଟା

ତେଣେ ୟୁରୋପରେ ଯୁଦ୍ଧର ବାଦଲ ଘେରି ଆସୁଥାଏ । ୧୯୩୮ ରେ ହିଟଲର ଅଷ୍ଟ୍ରିଆ ଦଖଲ କଲା । ଚେକୋସ୍ଲୋଭାକିଆର ସୁଡ଼େନେଟ୍ ଅଞ୍ଚଳ ଦଖଲ କଲା । ବିଲାତର ପ୍ରଧାନମନ୍ତ୍ରୀ ଚେଂବରଲେନ, ହିଟଲର ସହିତ ମ୍ୟୁନିକ୍ ସନ୍ଧିକରି ଏହିସବୁ ଆକ୍ରମଣମୂଳକ ରାଜ୍ୟବିସ୍ତାରକୁ ସ୍ୱୀକୃତି ଦେଲେ । ସେତେବେଳେ ତ ଯୁଦ୍ଧ ଟଳିଗଲା ମାତ୍ର ୧୯୩୯ ରେ ଆଉ ଟଳିଲା ନାହିଁ । ସେତେବେଳେ ଗାନ୍ଧୀଜୀ 'ହରିଜନ' ପତ୍ରିକାରେ ବିଲାତ ସରକାରର ଏ ତୋଷଣ ନୀତିର ସମାଲୋଚନା କରିଥିଲେ ।

ଆମେସବୁ ସମାଜବାଦୀମାନେ ୟୁରୋପର ଯୁଦ୍ଧକୁ ଏକରକମ ଟାକି ବସିଥାଉ । ଆମର ବିଶ୍ୱାସ ଥାଏ ଯେ ତେଣେ ଯୁଦ୍ଧ ଆରମ୍ଭ ହେଲେ ବ୍ରିଟିଶ୍ ସାମ୍ରାଜ୍ୟ ବେକାଇଦାରେ ପଡ଼ିବ ଓ ଏଣେ ସ୍ୱାଧୀନତା ଯୁଦ୍ଧର ଶେଷପର୍ବ ଆରମ୍ଭ ହୋଇଯିବ । ଯୁଦ୍ଧ ଆରମ୍ଭ ହେବାର ଅଳ୍ପଦିନ ଭିତରେ କଂଗ୍ରେସ ମନ୍ତ୍ରୀମଣ୍ଡଳମାନେ ଇସ୍ତଫା ଦେଇଦେଲେ, ଭାରତର ଲୋକଙ୍କର ମତ ନ ନେଇ ତାକୁ ବାଧ କରି ଯୁଦ୍ଧରେ ସାମିଲ କରାଯିବାର ପ୍ରତିବାଦ କରି ।

କଂଗ୍ରେସ କାର୍ଯ୍ୟକାରୀ ସମିତିରେ ଗୋଟାଏ ଲମ୍ବା ପ୍ରସ୍ତାବ ହେଲା, ଯୁଦ୍ଧପ୍ରତି କଂଗ୍ରେସର ଆଭିମୁଖ୍ୟ ବୟାନ କରି । ସେଥିରେ ମୋଟାମୋଟି କଥା ଥିଲା ଯେ ଭାରତକୁ ସ୍ୱାଧୀନତା ଦିଆଗଲେ ଯାଇ ପ୍ରମାଣିତ ହେବ ଯେ ଗଣତନ୍ତ୍ର ରକ୍ଷା ପାଇଁ ଯୁଦ୍ଧ କରାଯାଉଛି ବୋଲି ଯେ କୁହାଯାଉଛି ତାହା ଯଥାର୍ଥ ଓ ତା' ହେଲେ ଭାରତ ଯୁଦ୍ଧରେ ସହଯୋଗ କରିବ; କିନ୍ତୁ ଗାନ୍ଧୀଜୀଙ୍କର ଆଭିମୁଖ୍ୟ ଭିନ୍ନ ଥିଲା । ସେ ଯୁଦ୍ଧର ଆରମ୍ଭରେ ଯେଉଁ ପ୍ରଥମ ବିବୃତି ଦେଲେ ସେଥିରେ ଲେଖିଥିଲେ ଯେ ଯୁଦ୍ଧର ପରିଣାମରେ ଲଣ୍ଡନ ଉପରେ ବୋମା ପଡ଼ିଲେ କି ଭୟାବହ ଦୃଶ୍ୟ ହେବ ତାହା କଳ୍ପନା କରି ତାଙ୍କର ପ୍ରାଣ କାନ୍ଦିଉଠୁଛି । ସେ ପୂର୍ଣ୍ଣ ଅହିଂସା ଉପରେ ଆସ୍ଥା ରଖିଛନ୍ତି ବୋଲି ମଧ୍ୟ ସେଥିରେ କହିଥିଲେ । ଗାନ୍ଧୀଜୀଙ୍କର ଆଭିମୁଖ୍ୟକୁ ମୁଁ ପ୍ରଥମେ ଠିକ୍‌ଭାବରେ ବୁଝିପାରି ନ ଥିଲି । ସେ ଯେଉଁ ଆଭିମୁଖ୍ୟ ନେଇଛନ୍ତି ସେଥିରେ ସେ ତୁରନ୍ତ ଯୁଦ୍ଧ ଉଦ୍ୟମର ବିରୋଧ କରିବେ ବୋଲି ମୋର ଧାରଣା ହେଲା । କଂଗ୍ରେସର ଉପରୋକ୍ତ ପ୍ରସ୍ତାବ ପରେ ତୁରନ୍ତ ସଂଘର୍ଷ ଆରମ୍ଭ ହୋଇଯିବ ବୋଲି ମୁଁ ଆଶା କରୁଥିଲି; କିନ୍ତୁ ଏ ସବୁ ଅତି ଉତ୍ସାହ ଯୋଗୁଁ ଭ୍ରମପୂର୍ଣ୍ଣ ଇଚ୍ଛାମୂଳକ ଚିନ୍ତା ଥିଲା ।

ଏ ଯୁଦ୍ଧ ପରିସ୍ଥିତିରେ ତିନୋଟି ଗୁରୁତ୍ୱପୂର୍ଣ୍ଣ ଦିଗ ଥିଲା । ଏକରେ ଭାରତ ଉପରେ ଇଂରେଜଙ୍କର ଆଧିପତ୍ୟ ଲୋପର ପ୍ରଶ୍ନ, ଯେଉଁ ଆଧିପତ୍ୟ ବଳରେ ଇଂରେଜ ସରକାର ଭାରତର ଲୋକମତକୁ ପରବାଏ ନ କରି ତାକୁ ଯୁଦ୍ଧରେ ପୂରାଇଲା । ଦୁଇରେ, ଏ ଯୁଦ୍ଧରେ ମିତ୍ର ପକ୍ଷରେ ଅଧିକ ନ୍ୟାୟ ଥିଲା । ନାତ୍‌ସୀବାଦ ଓ ଫାସୀବାଦ ମାନବ ସଭ୍ୟତା ପ୍ରତି ଏକ ଅତି ଭୟଙ୍କର ବିପଦ ହୋଇ ଛିଡ଼ା ହୋଇଥିଲା । ତିନିରେ, ଯୁଦ୍ଧର ଭୟାବହତା ଏତେ

ବଢ଼ିଯାଇଥିଲା ଯେ ଯୁଦ୍ଧ ଦ୍ୱାରା କୌଣସି ମହତ୍ ଲକ୍ଷ୍ୟ ଯେ ହାସଲ କରିବା ସମ୍ଭବ ନୁହେଁ, ଏହା ସ୍ପଷ୍ଟ ଦେଖା ଯାଉଥିଲା । ଅହିଂସା ଦୃଷ୍ଟିରୁ ସମସ୍ତ ଯୁଦ୍ଧରୁ ଅଲଗା ରହିବା ବା ସବୁ ଯୁଦ୍ଧର ବିରୋଧ କରିବାର ଶାନ୍ତିବାଦୀ ଆନ୍ଦୋଳନ ଦୁନିଆରେ ମୁଣ୍ଡ ଟେକିଥିଲା ।

ଗାନ୍ଧୀଜୀଙ୍କୁ ଏ ସବୁଗୁଡ଼ିକୁ ଦୃଷ୍ଟିରେ ରଖି ନିଜ ପାଇଁ ଓ ଦେଶ ପାଇଁ କର୍ତ୍ତବ୍ୟ ସ୍ଥିର କରିବାର ଥିଲା । ପୂର୍ଣ୍ଣ ଅହିଂସାରେ ତାଙ୍କର ଆସ୍ଥା ତ ଦୃଢ଼ ଥିଲା । ସେ ଚାହୁଁଥିଲେ ଯେ ଏଇ ପରିପ୍ରେକ୍ଷୀରେ କଂଗ୍ରେସ ମଧ୍ୟ ଅହିଂସା ଉପରେ ନିଜର ଆଧାର ରଖୁ । ଏହାର ଫଳିତାର୍ଥ ହେଲା ଯେ, ଇଂରେଜ ଓ ଜର୍ମାନ, ଏ ଉଭୟ ପକ୍ଷ ଭିତରୁ ଇଂରେଜ ପକ୍ଷରେ ଅଧିକ ନ୍ୟାୟ ଥିବାରୁ ସେମାନଙ୍କୁ ବିନା ସର୍ତ୍ତରେ ନୈତିକ ସମର୍ଥନ ଦିଆଯିବ, କିନ୍ତୁ ହିଂସା ଯୁଦ୍ଧରେ ପ୍ରତ୍ୟକ୍ଷ ସହଯୋଗ ଦିଆଯିବ ନାହିଁ । ମାତ୍ର ସେ ଏକଥା ମଧ୍ୟ କହିଥିଲେ ଯେ କଂଗ୍ରେସର ନୈତିକ ପ୍ରଭାବଟାକୁ ଇଂରେଜ ସରକାରଙ୍କୁ ଧାର ଦେଇ ହେବ ନାହିଁ । ଏହା ଯାନ୍ତ୍ରିକ ଭାବରେ ଦେଇହୁଏ ନାହିଁ । ସେଥିପାଇଁ ନେବା ପକ୍ଷକୁ ସାମର୍ଥ୍ୟ ଅର୍ଜନ କରିବାକୁ ପଡ଼େ । ଯୁଦ୍ଧ ଭିତରେ ଇଂରେଜ ସରକାରଙ୍କୁ ସେ ବିଡ଼ମ୍ବିତ କରିବେ ନାହିଁ ବୋଲି ମଧ୍ୟ ଘୋଷଣା କଲେ । ମାତ୍ର ଏହାର ଅର୍ଥ ନ ଥିଲା ଯେ ଭାରତରେ ନାଗରିକ ଅଧିକାର ଉପରେ ହସ୍ତକ୍ଷେପ ତଥା ସରକାରର ଅନ୍ୟାନ୍ୟ ଦମନମୂଳକ ପଦକ୍ଷେପର ବିରୋଧ କରାଯିବ ନାହିଁ । ଏ କଥାଟି ସେ ପ୍ରଥମେ ଖୋଲି କରି କହି ନ ଥିଲେ । ମାତ୍ର ଏହା ତାଙ୍କର ଚିନ୍ତାଧାରା ଭିତରେ ଗୃହୀତ ଥିଲା । ସରକାରଙ୍କୁ ଯେମିତି ବିନାସର୍ତ୍ତରେ ନୈତିକ ସମର୍ଥନ ଦିଆଯିବ ସେମିତି ତାହାଠାରୁ ନୈତିକ ଆଚରଣ ମଧ୍ୟ ଆଶା କରାଯିବାର କଥା ।

କିନ୍ତୁ କଂଗ୍ରେସ ନେତାମାନେ ଏ ଆଭିମୁଖ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସେମାନେ ଚାହୁଁଥିଲେ ଯେ ଏଇ ସୁଯୋଗରେ ଇଂରେଜଙ୍କ ସହିତ ଦର କଷାକଷି କରି ପୂରା ନ ହେଲେ ବି ଯେତେଟା ସମ୍ଭବ ଅଧିକାର ହାସଲ କରାଯିବ ଓ ଯୁଦ୍ଧରେ ସାହାଯ୍ୟ ବାବଦରେ ଇଂରେଜଙ୍କ ସହିତ ଗୋଟାଏ ଚୁକ୍ତି କରି ସେହି ଅନୁସାରେ ସାହାଯ୍ୟ କରାଯିବ । ଏମାନଙ୍କର ଦୃଷ୍ଟିଥିଲା କେବଳ ରାଜନୀତିକ କ୍ଷମତା ହସ୍ତାନ୍ତର ଉପରେ । ଏକ ଗତାନୁଗତିକ ଢଙ୍ଗର ପାର୍ଲିଆମେଣ୍ଟାରୀ ଗଣତନ୍ତ୍ରର ଆଗକୁ ସେମାନଙ୍କର ଦୃଷ୍ଟି ଯାଉନଥିଲା । ଗାନ୍ଧୀଜୀଙ୍କର ଦୃଷ୍ଟି ନିବଦ୍ଧ ଥିଲା ଜନତାକୁ ସଚେତନ, ସକ୍ରିୟ ଓ ବଳଶାଳୀ କରିବା ଉପରେ । ଏହା କେବଳ ଅହିଂସା ବାଟରେ ହିଁ ସମ୍ଭବ ଓ ଏହିଭଳି ଜାଗ୍ରତ ଜନତା ହିଁ ଏପରି ଏକ ନୂତନ ସମାଜର ମୂଳଦୁଆ ପକାଇବାକୁ ସକ୍ଷମ ହୋଇପାରେ ଯାହା ଦୁନିଆରୁ ଯୁଦ୍ଧର ଆବଶ୍ୟକତାକୁ ଲୋପ କରିବାର ବାଟ ଫିଟାଇବ ।

ଏଇ ଯୁଦ୍ଧ ଭିତରେ ଗାନ୍ଧୀଜୀ ଦେଶରକ୍ଷା ପାଇଁ ମଧ୍ୟ ଆମେ ଅହିଂସାର ପନ୍ଥା ଗ୍ରହଣ କରିବା ଉଚିତ ବୋଲି ମତବ୍ୟକ୍ତ କଲେ । 'ପ୍ରତ୍ୟେକ ବ୍ରିଟେନ୍‌ବାସୀ'ଙ୍କୁ ଏକ ଖୋଲା ଚିଠି ଲେଖି ହିଟଲର୍‌ର ବିରୋଧ ସେମାନେ ଅହିଂସା ପଥରେ କଲେ ଅଧିକ ଯଶସ୍ୱୀ ହେବେ ବୋଲି

ନିବେଦନ କଲେ । ଏ ଅହିଂସା ଦେଶରକ୍ଷା କଥାଟା ମୋ ମନକୁ ତତ୍କ୍ଷଣାତ୍ ପାଇଗଲା । ଅହିଂସା ଦେଶରକ୍ଷା ପାଇଁ ଯେ ବିକେନ୍ଦ୍ରିତ ଅର୍ଥନୀତି ଅତି ଜରୁରୀ ଏହା ବି ମୋର ସେତେବେଳେ ସଂପୂର୍ଣ୍ଣ ହୃଦ୍‌ବୋଧ ହେଇଯାଇଥିଲା । ମୋର ଏବେ ବି ସେ ବିଚାର ଦୃଢ଼ ରହିଅଛି । ଏ ବିଷୟରେ ମୁଁ ସେତେବେଳେ ଗୋଟିଏ ପ୍ରବନ୍ଧ ଓଡ଼ିଆ ଗାନ୍ଧୀ ସେବା ସଂଘ ପତ୍ରିକାରେ ଲେଖିଥିଲି । ମୁଁ ଲେଖିଥିଲି ଯେ ଭାରତ ଭଳି ଦେଶ ଯଦି ସଶସ୍ତ୍ର ଦେଶରକ୍ଷାର ଆୟୋଜନ କରିବସିବ ତେବେ ତାକୁ ଏଡ଼େନ୍‌ରୁ ସିଙ୍ଗାପୁରଯାଏ ଘାଟି ସ୍ଥାପନକରି ଏକ ନୂତନ ସାମ୍ରାଜ୍ୟବାଦର ମୂଳପତ୍ତନ କରିବାକୁ ହେବ । ମୋର ଏ ଅନୁମାନଟା ଭୁଲ ସାବ୍ୟସ୍ତ ହେଇଛି । ଭାରତ ଗୋଟାଏ ନୂଆ ସାମ୍ରାଜ୍ୟବାଦୀ ଶକ୍ତି ହୋଇ ଛିଡ଼ା ହୋଇପାରି ନାହିଁ, ନବ-ସାମ୍ରାଜ୍ୟବାଦୀମାନଙ୍କର ଆଶ୍ରିତ ରାଜ୍ୟରେ ପରିଣତ ହୋଇଛି । ମାତ୍ର ଏହା ନିଜ ଆତ୍ମରକ୍ଷା ପାଇଁ ଅନ୍ୟ ଉପରେ ନିର୍ଭରଶୀଳତାର ଆଉ ଏକ ପରିଣତି । ଅହିଂସା ଦୃଷ୍ଟିରୁ ନ ହେଲେ ମଧ୍ୟ ଗୋଟାଏ ବିସ୍ତୀର୍ଣ୍ଣ ଜନବହୁଳ ରାଷ୍ଟ୍ରର ସାମରିକ ସୁରକ୍ଷା ପାଇଁ ମଧ୍ୟ ଯେ ବିକେନ୍ଦ୍ରିତ ଅର୍ଥବ୍ୟବସ୍ଥାର ଗୁରୁତ୍ୱ ରହିଛି, ତାହା ପରେ ଚୀନ୍‌ର ନେତାମାନେ ବୁଝିଛନ୍ତି ଓ କେତେକ ପରିମାଣରେ କାର୍ଯ୍ୟରେ ପରିଣତ କରିଛନ୍ତି । ସେଠି କୃଷି, ଶିଳ୍ପ ଆଦିର ଯୋଜନା ଏପରି କରାଯାଇଛି ଯେପରି ଗୋଟାଏ ଜିଲ୍ଲା ବା ଟିକିଏ ବଡ଼ ଆୟତନର ଗୋଟିଏ ଗୋଟିଏ ଅଞ୍ଚଳ, ଖାଦ୍ୟ, ବସ୍ତ୍ର ଓ ଅନ୍ୟାନ୍ୟ ସମସ୍ତ ପ୍ରାଥମିକ ଆବଶ୍ୟକ ବାବଦରେ ସଂପୂର୍ଣ୍ଣ ସ୍ୱାବଲମ୍ବୀ ହୋଇ ରହିବ । ଯୋଗାଯୋଗ ବ୍ୟବସ୍ଥା ବିଚ୍ଛିନ୍ନ ହେଲେ ଲୋକେ ହଇରାଣ ହେବେ ନାହିଁ ।

ସେ ସମୟରେ ଥରେ ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକରେ ମଧ୍ୟ ମୁଁ ଅହିଂସାକୁ ଦେଶରକ୍ଷା ବାବଦରେ ଗାନ୍ଧୀଜୀଙ୍କର ପ୍ରସ୍ତାବକୁ ସମର୍ଥନ କରି କହିଥିଲି । ପିଲାଟା ବେଶ କହିଲା ଯାହାହେଉ, ଏହି ପ୍ରକାରର ବାତ୍ସଲ୍ୟଭାବ ନେଇ ମହତାବ ବାବୁ ପ୍ରଭୃତି ନେତାମାନେ ମୋ କଥା ଶୁଣିଥିଲେ ଓ ପରେ ପିଠି ଥାପୁଡ଼େଇ ଥିଲେ । ଏହାଛଡ଼ା ତା'ର କୌଣସି ପ୍ରକାରର ଅଧିକ ପ୍ରତିକ୍ରିୟା ହେଇନଥିଲା ।

## ଅହିଂସା ବିଚାର

ଯୁଦ୍ଧ ଆରମ୍ଭ ହେଇଯିବା ପରେ ବଜାରରେ ଯୁଦ୍ଧ ବିଷୟରେ ବହିସବୁ ମିଳିବାକୁ ଲାଗିଲା । ରିୟାଲିଟିଜ୍ ଅଫ୍ ୱାର୍ (ଯୁଦ୍ଧର ବାସ୍ତବ ରୂପ) ବୋଲି ଖଣ୍ଡେ ବହି ମୋ ହାତରେ ପଡ଼ିଲା । ତାହା ପ୍ରଥମ ମହାଯୁଦ୍ଧରେ କାମ କରିଥିବା ଜଣେ ସାମ୍ବାଦିକଙ୍କ ଦ୍ୱାରା ଲିଖିତ, ତାଙ୍କ ନାମ ଯେତେଦୂର ମନେପଡୁଛି ଫିଲିପ୍ ଜିବ୍‌ସ୍ । ସେଥିରେ ପ୍ରଥମ ମହାଯୁଦ୍ଧର ବହୁତ ପ୍ରତ୍ୟକ୍ଷଦର୍ଶୀ ଓ ଜୀବନ୍ତ ବର୍ଣ୍ଣନା ଥିଲା । ସେ ବହିଖଣ୍ଡ ପଢ଼ିବାପରେ ମୋର ଅହିଂସା ଓ ମାନବ ଚରିତ୍ର ପ୍ରତି ଆସ୍ଥା ଅଧିକ ଦୃଢ଼ ଓ ବିଶଦ ହେଲା ଓ ଯୁଦ୍ଧର ଅସ୍ୱାଭାବିକତାର ପ୍ରତୀତି ମଧ୍ୟ ତୀବ୍ର ହେଲା । ସେ ବହିର ଗୋଟାଏ ଗୋଟାଏ ବର୍ଣ୍ଣନା ମନରେ ଗୁନ୍ଥି ହେଇଯାଇଛି । ଗୋଟାଏ, ସାମ୍ମୁଖ୍ୟରେ

ଭଷ୍ଟର ବା ଖ୍ରୀଷ୍ଟମାସ ପର୍ବ ପଡ଼ିଲା । ଉଭୟ ପକ୍ଷରେ ସୈନ୍ୟ ସାମନାସାମନି ହେଇ ଖାତରେ ରହିଥା'ନ୍ତି । ପ୍ରତ୍ୟକ୍ଷ ସଂଗ୍ରାମ ବନ୍ଦ ଥାଏ । ସେ ପର୍ବ ଉଭୟ ପଟର ଖାତମାନଙ୍କରେ ପାଳିତ ହେବା ଆରମ୍ଭ ହେଲା । ସୈନିକମାନେ ଗୀତ ଇତ୍ୟାଦି ଗାଇଲାଗିଲେ । ଯାହା ମିଳିଲା ସେଥିରେ ବାଜା ବି ବାଜିଲା । କ୍ରମେ ଉଭୟପକ୍ଷ ପରସ୍ପରଙ୍କର ଗୀତବାଦ୍ୟ ଶୁଣିବାକୁ ଲାଗିଲେ ଓ ତା'ପରେ ଅମୁକ ଗୀତ ଗାଆ ବୋଲି ଗୋଟିଏ ପଟରୁ ଆର ପଟକୁ ବରାଦ ବି ହେବା ଆରମ୍ଭ ହେଲା । ଶେଷକୁ ଉଭୟ ପଟର ସୈନିକ ଖାତରୁ ପଦାକୁ ବାହାରି ଗୀତ, ଅଭିନୟ ଓ ନାଚ ପରସ୍ପରକୁ ଦେଖେଇ କଲେ । ଏହିପରି ଅନେକ ରାତିଯାଏ ଚାଲିଲା । ପରସ୍ପରର ସ୍ୱାସ୍ଥ୍ୟପାନ ହେଲା । ତା' ପରଦିନ ଅଗ୍ରସର ହେବା ପାଇଁ ଆଦେଶ ଆସିଲା ଓ ହଣାକଟା ଆରମ୍ଭ ହେଇଗଲା ।

ଏହିପରି ସବୁ ବର୍ଣ୍ଣନା ପଢ଼ି ମୋର ଏ ଧାରଣା ଦୃଢ଼ ହେଲା ଯେ ମଣିଷର ଜନ୍ମଜାତ ପ୍ରକୃତି ସ୍ନେହ ଓ ବନ୍ଧୁତା ଚାହେଁ । କଳି ବି ବେଳେବେଳେ କରିବାକୁ ଚାହେଁ, ମାତ୍ର ଯୁଦ୍ଧ ଭଳି ଅମାନୁଷିକ କାଣ୍ଡ ଚାହେଁ ନାହିଁ । ସମାଜର ବିକୃତ ଢାଁଚା ମଣିଷ ଉପରେ ଏ ସବୁ ଲଦିଦିଏ ଓ ଯୁଦ୍ଧକ୍ଷେତ୍ରର ସମସ୍ତ ବିଭୀଷିକା, ଉନ୍ମତ୍ତତା ଓ ବିଦ୍ୱେଷର ବାତାବରଣରେ ବି ମଣିଷର ଶାଶ୍ୱତ ସ୍ୱଭାବ ଟିକିଏ ଫାଙ୍କ ପାଇବାମାତ୍ରେ ନିଜକୁ ପ୍ରକାଶ କରେ । ଏହାର କେତେବର୍ଷ ପୂର୍ବରୁ ମୁଁ ଟ୍ରଟ୍‌ସ୍କିଙ୍କର ଲିଖିତ ରୁଷ୍ ବିପ୍ଳବର ଇତିହାସ ପଢ଼ିଥିଲି । ସେଥିରେ ବର୍ଣ୍ଣନା ଥିଲା ଯେ ମାର୍ଚ୍ଚ ୧୯୧୭ ବିପ୍ଳବବେଳେ ଯେତେବେଳେ ସେନାବାହିନୀକୁ ଶ୍ରମିକମାନଙ୍କ ଉପରେ ଦମନ ଚଳାଇବା ଉଦ୍ଦେଶ୍ୟରେ ପଠାଯାଉଥିଲା ସେତେବେଳେ ଶ୍ରମିକମାନେ, ସ୍ତ୍ରୀ ପୁରୁଷ ସମସ୍ତେ, ଖାଲିହାତରେ ସେମାନଙ୍କ ଆଡ଼କୁ ଆଗେଇଯାଇ ସେମାନଙ୍କୁ ସ୍ୱାଗତ କରୁଥିଲେ, ନିଜ ସାଙ୍ଗରେ ଯୋଗ ଦେବା ପାଇଁ ନିବେଦନ କରୁଥିଲେ । ଏହା ଫଳରେ ଜାର୍‌ଙ୍କର ନାମଜାଦା ସେନାବାହିନୀ - ରେଜିମେଣ୍ଟ ସବୁ ଶ୍ରମିକମାନଙ୍କ ପକ୍ଷରେ ଯୋଗ ଦେଇଥିଲେ । ଏହା ପଢ଼ି ମୁଁ ବିଚାରିଥିଲି ଯେ, ରୁଷ୍ ବିପ୍ଳବରେ ତ ଅହିଂସା ନୀତିର ପ୍ରଶ୍ନ ନ ଥିଲା, ମାତ୍ର ସେଠି ବି ଯଦି ଲୋକେ ସ୍ୱତଃସ୍ଫୂର୍ତ୍ତ ଭାବରେ ସେନାବାହିନୀର ଅହିଂସା ଭାବରେ ସମ୍ମୁଖୀନ ହୋଇପାରିଲେ ତେବେ ଅହିଂସା ନୀତି ଗ୍ରହଣ କରିଥିବା ଓ ସେଥିରେ ତାଲିମ ପାଇଥିବା ଜନତା କାହିଁକି ଦେଶରକ୍ଷା ପାଇଁ ତାହା ନ କରିପାରିବେ ? ଅହିଂସା ଦେଶରକ୍ଷାରେ ମୋର ଆସ୍ଥା ପଛରେ ଏ ମଧ୍ୟ ଏକ କାରଣ ଥିଲା ଓ ରହିଛି । ରୁଷ୍ ବିପ୍ଳବର ଇତିହାସରେ ଏକଥା ମଧ୍ୟ ମୁଁ ପଢ଼ିଛି ଯେ ଜର୍ମାନ ଆକ୍ରମଣ ସାମନା କରିବା ପାଇଁ ନିରସ୍ତ୍ର ଶ୍ରମିକମାନେ ଯା'ନ୍ତୁ ବୋଲି ଟ୍ରଟ୍‌ସ୍କି ପ୍ରସ୍ତାବ ଦେଇଥିଲେ । ଏ ବିଷୟରେ ମୁଁ ହରିଜନକୁ ଏକ ଛୋଟ ଟିପ୍‌ପଣୀ ପଠାଇଥିଲି ଓ ସେଥିରେ ତାହା ବାହାରିଥିଲା ।

## ଗାନ୍ଧୀ ସେବା ସଂଘ ସମ୍ମିଳନୀ

ଏଇ ଯୁଦ୍ଧ ଘନଘଟା ଭିତରେ ୧୯୪୦ ଖରାଦିନେ ତ୍ରିପୁରୀ କଂଗ୍ରେସ ପରେ, ପୂର୍ବବଙ୍ଗର ମାଲିକାଦାଠାରେ ଗାନ୍ଧୀ ସେବା ସଂଘର ସମ୍ମିଳନୀ ହେଲା । ସେଇଟା ପ୍ରଫୁଲ୍ଲ ଚନ୍ଦ୍ର ଘୋଷଙ୍କର

ଗାଁ ଓ ସେ ସେଠାର ସବୁ ଆୟୋଜନ କରିଥିଲେ । ପଦ୍ମାନଦୀର ଅନତିଦୂରରେ ଅତି ମନୋରମ ପରିବେଶରେ ସମ୍ମିଳନୀ ଓ ତାହା ସହିତ ଖଦୀ ଓ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀର ଆୟୋଜନ ହୋଇଥିଲା । ବାପା, ବୋଉ, ଚୁନୀ, ମାଉସୀ ଓ ମୁଁ ସେଥିରେ ଯୋଗ ଦେଇଥିଲୁ । ସୁଭାଷବାବୁଙ୍କର ଦ୍ୱିତୀୟଥର କଂଗ୍ରେସ ସଭାପତି ହେବାର ପ୍ରସଙ୍ଗ ନେଇ ଦେଶରେ ଯେଉଁ ବାଦବିବାଦ ଓ ତିକ୍ତତା ଉତ୍ପନ୍ନ ହୋଇଥାଏ ସେଥିରେ ଏ ଆକ୍ଷେପ ମଧ୍ୟ ଉଠୁଥାଏ ଯେ ଗାନ୍ଧୀ ସେବା ସଂଘ କଂଗ୍ରେସ ଭିତରେ ଏକ ଅଲଗା ଦଳ ସୃଷ୍ଟି କରୁଛି, ଯଦିଓ ମୁଁ ଆଗରୁ ଲେଖିଛି ଯେ ସଂଘର ଅଧ୍ୟକ୍ଷ କିଶୋରଲାଲଭାଇ ତା'ର ସଦସ୍ୟମାନଙ୍କୁ ପଟ୍ଟାଭୀଙ୍କୁ ଭୋଟ ଦେବାକୁ ନିର୍ଦ୍ଦେଶ ଦେବାକୁ ଅସ୍ୱୀକାର କରିଥା'ନ୍ତି । ସଂଘର ଏ ଅଧିବେଶନରେ ଗାନ୍ଧୀଜୀ ସଂଘକୁ ଏକପ୍ରକାର ବିସର୍ଜନ କରିଦେବାର ପ୍ରସ୍ତାବ ଦେଲେ । କେବଳ ଏଗାର ଜଣ ଏହାର ସଦସ୍ୟ ରହିଲେ । ସତ୍ୟ ଓ ଅହିଂସା ବିଷୟରେ ଅଧ୍ୟୟନ, ଗବେଷଣା ଆଦି କରିବା ଏହାର ଏକମାତ୍ର ସୀମିତ କାର୍ଯ୍ୟ ରହିଲା । ଏହାର ବାକି ସବୁ ସଙ୍ଗଠନ, ଯେଉଁଥିରେ ଶହ ଶହ ସଂଖ୍ୟାରେ ସଦସ୍ୟ ଥିଲେ, ଭାଙ୍ଗି ଦିଆଗଲା । ସମ୍ମିଳନୀ ମଧ୍ୟ ବର୍ଷକୁ ବର୍ଷ କରାଯିବାର ପରମ୍ପରା ବନ୍ଦ ହେଲା । ଏ ଉପଲକ୍ଷ୍ୟରେ ହୋଇଥିବା ପ୍ରଦର୍ଶନୀରେ କେହି ଅଜଣା ଲୋକ ନିଆଁ ଲଗେଇଦେବା ଚେଷ୍ଟା କରିଥିଲେ । ସେମାନେ ସୁଭାଷବାବୁଙ୍କ ସମର୍ଥକ ବୋଲି କୁହାଯାଇଥିଲା । ମାଲିକାଂଦାରୁ ଆମେ ସତ୍ୟନାରାୟଣ ବାବୁ, ମାସୀ ହେରିକାଙ୍କ ଗାଁ ସାଓଁଗା ବୁଲିଗଲୁ । ପୂର୍ବବଙ୍ଗ ବିଷୟରେ ଧାରଣା ଆଉଟିକିଏ ସ୍ପଷ୍ଟ ହେଲା । ଏହି ସମ୍ମିଳନୀରୁ ମୁଁ କିଶୋରଲାଲ ଭାଇଙ୍କ ପ୍ରତି ଆକୃଷ୍ଟ ହେଲି । ତାଙ୍କର କେତେକ ଲେଖା ଓ ବକ୍ତୃତା ପଢ଼ିଲି । ଅହିଂସା ବିଷୟରେ ତାଙ୍କର ଚିନ୍ତାଧାରା ଗାନ୍ଧୀଙ୍କ ସହିତ ସମାନ୍ତରାଳ ବୋଲି ସେ ଠାଏ ଲେଖିଥା'ନ୍ତି । ଅର୍ଥାତ୍ ତାଙ୍କର ସେ ବିଷୟରେ ନିଜସ୍ୱ ଦୃଷ୍ଟିକୋଣ ଥିଲା । ସେ କେବଳ ଗାନ୍ଧୀଜୀଙ୍କର ପଛରେ ଚାଲିବା ଲୋକ ନ ଥିଲେ । ଅହିଂସା ଦେଶରକ୍ଷା ବିଷୟରେ ଯେତେବେଳେ ମୋର ଦୃଢ଼ ପ୍ରତ୍ୟୟ ଜନ୍ମିଲା ମୁଁ ତାଙ୍କ ସହିତ ଅନେକ ଚିଠିପତ୍ର କାରବାର କରିଥିଲି । ଜେଲ୍‌ରେ ଥିବାବେଳେ ତାଙ୍କର ଅନେକଗୁଡ଼ିଏ ବହି ପଢ଼ିବାକୁ ମିଳିଥିଲା ଓ ସେ ସବୁରୁ ଚିନ୍ତାର ପ୍ରଚୁର ଖୋରାକ ମିଳିଥିଲା । ଧର୍ମଗତ ସଂସ୍କାର ଓ ସବୁପ୍ରକାରର ସଂକୀର୍ଣ୍ଣତାରୁ ମୁକ୍ତ ତାଙ୍କର ନିର୍ମଳ ବୁଦ୍ଧିଦୀପ୍ତ ଦୃଷ୍ଟିକୋଣ ମତେ ଖୁବ୍ ଭଲ ଲାଗିଥିଲା । ସମାଜବାଦ ଓ ସାମ୍ୟବାଦର ସେ ସମାଲୋଚନା କରି କେତେକ ଲେଖା ଲେଖିଥିଲେ; କିନ୍ତୁ ଏସବୁ ମତବାଦ ପ୍ରତି ସେ ଅନ୍ୟ କେତେକଙ୍କ ପରି ଭୟ ବା ଦ୍ୱେଷଭାବ ପୋଷଣ କରୁ ନ ଥିଲେ । ଏସବୁ ବିଷୟରେ ତାଙ୍କର କେତେକ ବିଚାର ସହିତ ମୁଁ ଏକମତ ନ ଥିଲି; କିନ୍ତୁ ସେଥିଯୋଗୁଁ ତାଙ୍କର ଉଦାରତା ବିଷୟରେ ମୋ ମନରେ ଶ୍ରଦ୍ଧା ଓ ଆଦର କଣା ହୋଇ ନଥିଲା । ତାଙ୍କର ସ୍ତ୍ରୀ ଗୋମତୀକାକୀ ମଧ୍ୟ ଆମମାନଙ୍କୁ ଖୁବ୍ ସ୍ନେହ କରୁଥିଲେ । କିଶୋରଲାଲଭାଇଙ୍କର ପ୍ରବଳ ଶ୍ୱାସରୋଗ ଥିଲା । ଯେତେବେଳେ ତାଙ୍କର ଧଇଁ ଉଠୁଥିଲା ସେତେବେଳେ ସେ ଏତେ କଷ୍ଟ ପାଉଥିଲେ ଓ ଛଟପଟ ହେଉଥିଲେ ଯେ ତାଙ୍କ ଆଡ଼କୁ ଅନେଇ ହୁଏ ନାହିଁ । ଅଥଚ ସେ

ଧର୍ମଘର ହସ୍ତାଟା ଚାଲିଗଲେ ପୁଣି ଏଭଳି ପ୍ରସନ୍ନତା ଓ ସ୍ୱାଭାବିକତାର ସହିତ ଲେଖାପଢ଼ି କାମରେ ଲାଗି ଯାଉଥିଲେ ଯେ ଯେମିତି ଜାଣି କିଛି ହେଇନାହିଁ ।

ଏଇ ୧୯୪୦ ରେ ମୁଁ ଗାନ୍ଧୀଜୀଙ୍କର ନେତୃତ୍ୱ ଓ ଅହିଂସାରେ ମୋର ଦୃଢ଼ ଆସ୍ଥା ତଥା କଂଗ୍ରେସ ସମାଜବାଦୀ ଦଳର ନୀତି ଓ ନେତୃତ୍ୱ ପ୍ରତି ଅନାସ୍ଥା ଯୋଗୁଁ ସେ ଦଳରୁ ଇସ୍ତଫା ଦେଇଦେଲି ।

କ୍ରମେ ଏକଥା ସ୍ପଷ୍ଟ ହେଇଗଲା ଯେ ଯୁଦ୍ଧକାଳ ଭିତରେ ବ୍ରିଟିଶ୍ ସାମ୍ରାଜ୍ୟ ଭାରତ ଉପରେ ତା'ର ଆଧିପତ୍ୟ କୋହଳ କରିବାକୁ ପ୍ରସ୍ତୁତ ନୁହେଁ । ଦେଶରେ ଯୁଦ୍ଧକାଳୀନ କଟକଣା ଥାଏ । ଭାବପ୍ରକାଶର ସ୍ୱାଧୀନତା ଅପହୃତ ନ ହେବା ଚାହି  ବୋଲି ଗାନ୍ଧୀଜୀ ବଡ଼ଲାଟଙ୍କୁ ଅନୁରୋଧ କରି ଚିଠି ଲେଖିଲେ । ଗାନ୍ଧୀଜୀଙ୍କ ପ୍ରସ୍ତାବ ଥିଲା ଯେ, ସେ ସରକାରଙ୍କୁ ବିବ୍ରତ କରିବାକୁ ଚାହାନ୍ତି ନାହିଁ । ସରକାର ଲୋକଙ୍କୁ ବୁଝେଇସୁଝେଇ, ଜୋର୍ ଜବରଦସ୍ତି ନ କରି ଯୁଦ୍ଧ ପାଇଁ ସାହାଯ୍ୟ ସଂଗ୍ରହ କରୁ । କଂଗ୍ରେସକୁ ଓ ଅନ୍ୟମାନଙ୍କୁ ମଧ୍ୟ ଯୁଦ୍ଧରେ ସାହାଯ୍ୟ ନ କରିବା କଥା ବୁଝାଇବାକୁ ସୁଯୋଗ ଦିଆଯାଉ । ତେଣିକି ଲୋକେ ଯାହାକଥା ଶୁଣିବେ । ସେଥିରେ  କାହାରି କିଛି କହିବାର ନଥିବ, କିନ୍ତୁ ଏ ପ୍ରସ୍ତାବ ସ୍ୱୀକୃତ ହେଲାନାହିଁ । ତେଣୁ ଗାନ୍ଧୀଜୀ ବାଣୀ ସ୍ୱାଧୀନତା ପାଇଁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ  କରିବାକୁ ସ୍ଥିର କଲେ । ପ୍ରଥମ ସତ୍ୟାଗ୍ରହୀ ରୂପେ ବିନୋବାଙ୍କୁ ବଛା ହେଲା । ସେ କେତେଗୁଡ଼ିଏ ବକ୍ତୃତା ଦେଇ ଗିରଫ ହେଲେ ଓ ତିନିମାସ ସଜା ପାଇଲେ । ତା' ପରେ ଦ୍ୱିତୀୟ ସ୍ଥାନ ମିଳିଲା ଜୱାହରଲାଲଙ୍କୁ । ସେ ସତ୍ୟାଗ୍ରହ କରିବା ପୂର୍ବରୁ ଗିରଫ ହେଇ ଚାରିବର୍ଷ ସଜା ପାଇଲେ । ତୃତୀୟରେ ସେବାଗ୍ରାମ ଆଶ୍ରମର ଜଣେ ସାଧାରଣ କର୍ମୀଙ୍କୁ ବଛା ହେଲା । ତାଙ୍କର ନାଁ ମୋର ମନେ ନାହିଁ । ତାଙ୍କୁ ଗାନ୍ଧୀଜୀ ନିର୍ଦ୍ଦେଶ ଦେଲେ ଯେ ସେ କେବଳ ଗୋଟିଏ ବାକ୍ୟ କହିବେ - "ଏ ଯୁଦ୍ଧରେ ଧନ ବା ଜନ ଦେଇ ସାହାଯ୍ୟ କରିବା ପାପ ଓ ହାରାମ ।"

ଏହାପରେ କଂଗ୍ରେସର ଅନ୍ୟ ବଡ଼ ବଡ଼ ନେତା, ପ୍ରଦେଶମାନଙ୍କର ଭୂତପୂର୍ବ ମନ୍ତ୍ରୀ ଓ ପ୍ରାଦେଶିକ ନେତାମାନଙ୍କର ପାଳି ପଡ଼ିଲା । ଏହା ପରେ ଏମ୍.ଏଲ୍.ଏ ମାନଙ୍କର ଓ ଶେଷକୁ ସାଧାରଣ କର୍ମୀଙ୍କର । ଗାନ୍ଧୀଜୀ ସତ୍ୟାଗ୍ରହୀମାନଙ୍କ ପାଇଁ ସର୍ତ୍ତ ରଖିଥାନ୍ତି ଯେ ସେମାନେ ନିୟମିତ ଖଦୀପିନ୍ଧାଳି ହେଉଥିବେ, ନିୟମିତ ସୂତା କାଟୁଥିବେ ଓ ଛୁଆଁଅଛୁଆଁ ମାନୁ ନ ଥିବେ । ଶୁଣାଯାଉଥାଏ ଯେ ପଣ୍ଡିତ ଜୱାହରଲାଲ ନିୟମିତ ସୂତା କାଟୁଥା'ନ୍ତି । ମୌଲାନା ଆଜାଦ ଗୋଟିଏ ଚରଖା କିଣି ସୂତା କାଟିବା ଦିଗରେ ସଦୁଦ୍ୟମର ପରିଚୟ ଦେଇଛନ୍ତି ବୋଲି ଶୁଣିବାକୁ ମିଳୁଥାଏ । ମନ୍ତ୍ରୀମାନଙ୍କ ଯାଏ ତ ଗାନ୍ଧୀଜୀ ସହଜରେ ଅନୁମତି ଦେଉଥିଲେ । ତା'ପରେ ସତ୍ୟାଗ୍ରହ କରିବାକୁ ଇଚ୍ଛୁକ ବ୍ୟକ୍ତିଙ୍କ ବିଷୟରେ ପ୍ରାଦେଶିକ କମିଟି ଯାଁଚକରି ତାଙ୍କ ପାଖକୁ ତାଲିକା ପଠେଇଲେ ଯାଇ ସେ ମଞ୍ଜୁର କରିବେ ବୋଲି ଜଣେଇ ଦେଲେ । କଂଗ୍ରେସର ଅନ୍ୟସବୁ ନେତାମାନେ ଯାଇସାରିବାରୁ ପଣ୍ଡିତ ପଡ଼ିଆରୀ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି

ହେଲେ ଓ ତାଲିକା ନେଇ ଗାନ୍ଧୀଜୀଙ୍କ ପାଖକୁ ଯିବା କାମରେ ମତେ ଲଗେଇଲେ । ମୁଁ ପ୍ରଥମ ଥର ଯେଉଁ ତାଲିକା ନେଇଗଲି ତାହା ବିଷୟରେ କ'ଣ ଅଳ୍ପ ପଚରାପଚରି କରି ଗାନ୍ଧୀଜୀ ତାକୁ ମଞ୍ଜୁର କରିଦେଲେ । ଦ୍ୱିତୀୟ ତାଲିକାକୁ ଏ କଥା କହି ଫେରେଇଦେଲେ ଯେ ସେଥିରେ ନାମ ଥିବା ସତ୍ୟାଗ୍ରହୀମାନଙ୍କୁ ସରଜମିନରେ ଭଲକରି ଯାଞ୍ଚକରି ପୁଣି ତାଲିକା ପଠାଅ । ଏ ତାଲିକାରେ କୋରାପୁଟର ହିଁ କେତେଶହ ଲୋକଙ୍କର ନାମ ଥିଲା ।

ଥରେ ତାଲିକା ନେଇ ସେବାଗ୍ରାମ ଯାଇଥାଏ ଓ ବଙ୍ଗଳାର ମଧ୍ୟ ଜଣେ ବିଶିଷ୍ଟ କର୍ମୀ - ଯେତେଦୂର ମନେପଡୁଛି ସେଠା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି - ସେଠା ତାଲିକା ନେଇ ଆସିଥା'ନ୍ତି । ସେ ଗାନ୍ଧୀଜୀଙ୍କୁ ଅନୁରୋଧ କରୁଥା'ନ୍ତି ଯେ ନିୟମିତ ସୂତାକଟା ସର୍ତ୍ତଟା ଉଠେଇ ଦିଆଯାଉ । ଗାନ୍ଧୀଜୀ ବୁଝାଉଥା'ନ୍ତି ଯେ ତାହା ହେଇପାରିବ ନାହିଁ । ଏହିପରି ଅନେକ ସମୟଯାଏ ସେଇ ଏକା ଯୁକ୍ତି ଓ ଜବାବ ଚାଲିବା ପରେ ସେ ନିରସ୍ତ ହେଲେ ।

ଏ ସତ୍ୟାଗ୍ରହରେ ଗାନ୍ଧୀଜୀଙ୍କର ରଣକୌଶଳ ଖୁବ୍ ବିଚକ୍ଷଣ ଥିଲା । ସେ ବାକ୍‌ସ୍ୱାଧୀନତାର ପ୍ରଶ୍ନ ଉଠେଇ ସତ୍ୟାଗ୍ରହ ଆରମ୍ଭ କଲେ । ଯୁଦ୍ଧର ବିରୋଧ ପାଇଁ ନୁହେଁ; କିନ୍ତୁ ବାକ୍‌ସ୍ୱାଧୀନତାର ଅଭିବ୍ୟକ୍ତି ପାଇଁ ଯେଉଁ ଗୋଟିଏ ବାକ୍ୟ ପ୍ରତ୍ୟେକ ସତ୍ୟାଗ୍ରହୀ ଘୋଷଣା କରିବେ ବୋଲି ନିର୍ଦ୍ଦେଶ ଦେଲେ ସେଥିରେ ଯୁଦ୍ଧ ଉଦ୍ୟମରେ ଅସହଯୋଗ ହିଁ କର୍ତ୍ତବ୍ୟ ବୋଲି ପ୍ରଚାର ହେଲା । ସୂତାକଟା ଆଦି ସର୍ତ୍ତ ସତ୍ୟାଗ୍ରହୀମାନଙ୍କ ପାଇଁ ରଖିବା ଦ୍ୱାରା ସେ ବିଶିଷ୍ଟ ଗାନ୍ଧୀ ଆଦର୍ଶ ଓ ନେତୃତ୍ୱର ଏକ ପ୍ରତୀକ ଲୋକଙ୍କ ଆଗରେ ଥୋଇଲେ । ଲୋକଙ୍କ ମନରେ ଦୃଢ଼ ଛାପ ପକାଇଲେ ଯେ ଆନ୍ଦୋଳନ ଏହି ଗାନ୍ଧୀ ପନ୍ଥାରେ ହିଁ ଚାଲିବ । କଂଗ୍ରେସ ମନ୍ତ୍ରୀମଣ୍ଡଳ ଅମଳରେ ଯେଉଁ ବୈଧାନିକତାର ହାୱା ଦେଶରେ ଉତ୍ପନ୍ନ ହେଇଥିଲା ତାହାକୁ ବଦଳାଇ ସଂଗ୍ରାମର ହାୱା ଉତ୍ପନ୍ନ କରିବା ପାଇଁ ଯେ ସମୟ ଲାଗିବ ଏକଥା ଗାନ୍ଧୀଜୀ ବୁଝୁଥିଲେ ଓ ତେଣୁ ହାୱା ବଦଳେଇବା ପାଇଁ ଗୋଟିଏ ଗୋଟିଏ ପଦକ୍ଷେପ ନେଉଥିଲେ । ମୁଁ ଲକ୍ଷ୍ୟ କରିଛି ଯେ ସଂଗ୍ରାମ ପାଇଁ ଅଧୀର ଅନେକ ନେତାଙ୍କର ଏ କୌଶଳ ଜ୍ଞାନ ନ ଥିଲା ଓ ନାହିଁ । ଭାରତ ପରି ଏତେ ବଡ଼ ଦେଶର ଜନତାକୁ ହଲେଇବାକୁ ଯେ ସମୟ ଲାଗିବ ତା'ର ଧାରଣା ଅନେକ ନେତାଙ୍କର ନ ଥିବା ପରି ଜଣାପଡ଼େ । ଏ ସତ୍ୟାଗ୍ରହ ଧୀର ସ୍ଥିର ଭାବରେ ଓ ଜଗିରଖି ଚଳାଗଲା ଓ ତଥାପି ଏଥିରେ ସାରା ଦେଶରେ ବହୁ ସହସ୍ର ଲୋକ କାରାବରଣ କଲେ । ଗାଁ ଗାଁରେ ଯୁଦ୍ଧ ବିରୋଧରେ ବାଣୀ ପହଞ୍ଚିଲା ।

କୋରାପୁଟର ସତ୍ୟାଗ୍ରହୀମାନଙ୍କର ଯାଞ୍ଚ ପାଇଁ ପଣ୍ଡିତ ପଢ଼ିଆରୀ ଓ ମୁଁ ସେଠାକୁ ଗଲୁ । ସାଲୁରରେ ପହଞ୍ଚିଲୁ । ସେତେବେଳେ ସାଲୁରରୁ କୋରାପୁଟକୁ ଖଣ୍ଡେ କି ଦୁଇଖଣ୍ଡ ବସ୍ ଚାଲୁଥାଏ । ବସ୍‌ରେ ଜାଗା ମିଳିଲା ନାହିଁ । କୋରାପୁଟରୁ ଧାନ ଓ ଅନ୍ୟାନ୍ୟ ମାଲ୍ ବୋହୁଥିବା ଟ୍ରକ୍ ସବୁ ଡ୍ରାଇଭର ଆସନ ପାଖରେ ଦୁଇ ତିନିଜଣ ଲେଖା ଯାତ୍ରୀ ନେବା ଆଣିବା କରୁଥା'ନ୍ତି । ଏହିପରି ଏକ ଟ୍ରକ୍‌ରେ ଆମେ ସ୍ଥାନ ପାଇଲୁ, ତେବେ ଡ୍ରାଇଭରର ପାଖରେ

ନୁହେଁ, ପଛରେ ମାଲବସ୍ତା ଉପରେ । ଡ୍ରାଇଭର ପାଖର ଲାଇନରେ ସବୁ ମହାଜନମାନେ ବେକରେ ସୁନା ଗୋପ ଓ ଦୁଇ ହାତରେ ପୁଞ୍ଜା ପୁଞ୍ଜା ମୁଦି ନାଇ ବସିଥା'ନ୍ତି । ସେତେବେଳେ ତ ପିଚୁ ରାସ୍ତା ନ ଥାଏ । ଆମେ  ଜୟପୁର ପହଞ୍ଚିବା ବେଳକୁ ଧୂଳିରେ ଲାଲ ଲାଲ ହୋଇଯାଇଥାଉ । ତା' ପରେ ବି ସେ ଡ୍ରାଇଭର କୋରାପୁଟ ସହର ପାରିହେବାବେଳେ କାଳେ ପୁଲିସ୍ ଦେଖିବ ବୋଲି ଆମକୁ ସହର ଆରମ୍ଭ ନ ହେଉଣୁ ଉତାରି ଦେଲା ଓ ଆମେ ଚାଲି ଚାଲି ଯାଇ ପୁଣି ସହରର ଶେଷ ମୁଣ୍ଡରେ ଟ୍ରକ୍‌ରେ ବସିଲୁ । ଏଥର ଆଉ କୋରାପୁଟ ବାଟର ସୌନ୍ଦର୍ଯ୍ୟ ଉପଭୋଗ କରି ହେଲା ନାହିଁ । ଏଭଳି ଟ୍ରକ୍‌ରେ ଯିବାର ଏକ ମଜାର ପରିଣତି ହେଲା ଯେ ପୁଲିସ୍ ଆମର ସନ୍ଧାନ ହରେଇ ବସିଲେ । ସେମାନେ ଆମର ଜୟପୁର ଆସୁଥିବା ଖବର ପାଇଥିଲେ; ମାତ୍ର ଆମକୁ ବସ୍‌ରୁ ନ ଓହ୍ଲାଇବାର ଦେଖି ବଣା ହେଇଯାଇଥିଲେ । ତା'ପର ଦିନ ସେଠି ଆମକୁ ସଭାରେ ଦେଖି କାବା ହେଇଗଲେ ।

କୋରାପୁଟ ଜିଲ୍ଲାରେ ଆମେ ସାତ ଦିନ ଖୁବ୍ ବୁଲିଲୁ । ନବରଙ୍ଗପୁର, ମାଲକାନଗିରି, ରାୟଗଡ଼ା ପ୍ରଭୃତି ପ୍ରାୟ ସବୁଆଡ଼େ ବୁଲିଲୁ । ଡୁଡୁମା ଜଳପ୍ରପାତ ମଧ୍ୟ ଦେଖି ଯାଇଥିଲୁ । ଆମେ ଯେଉଁଠିକି ଯାଉ ସେଠି ଦେଖୁ ଯେ ଗୋଟାଏ କଂଗ୍ରେସ ଅଫିସ୍ ବା ଆଶ୍ରମ ରହିଛି । ଲୋକେ ନିରାଡ଼ମ୍ବର ମାଟି ଘର ତିଆରି କରି ଦେଇଛନ୍ତି । ପ୍ରତ୍ୟେକ ଆଶ୍ରମରେ ସୂତାକଟା ଚାଲିଛି । ନିୟମିତ ପ୍ରାର୍ଥନା ହେଉଛି । ପ୍ରତ୍ୟେକ ଗାଁରେ ଲୋକେ ଆମକୁ ପାଛୋଟି ନେବା ପାଇଁ ଶୋଭାଯାତ୍ରା କରି ଗୀତ ଗାଇ ବାଜା ବଜେଇ ଆସୁଥା'ନ୍ତି । କର୍ମୀମାନଙ୍କ ମୁଣ୍ଡରେ ଗାନ୍ଧୀ ଟୋପି ଥାଏ । ସ୍ତ୍ରୀଲୋକମାନେ ବି ଗାନ୍ଧୀ ଟୋପି ପିନ୍ଧିଥିବାର ଦେଖି ଖୁବ୍ ମଜା ଲାଗୁଥାଏ । ଏ ଟୋପିଟା କର୍ମୀର ସଂତକ ହେଇଯାଇଥାଏ । ଆମେ ଦେଖିଲୁ ଯେ କେବଳ ରାୟଗଡ଼ା ଅଞ୍ଚଳକୁ ଛାଡ଼ିଦେଲେ ବାକି ସବୁଆଡ଼େ ବିପୁଳ ଉତ୍ସାହ । ଏ ଜାଗରଣର ମୁଖ୍ୟ ଶ୍ରେୟ କୋରାପୁଟ ଜିଲ୍ଲାର ତିନି ଆଦିନେତା : ରାଧାକୃଷ୍ଣ ବିଶ୍ୱାଳ ରାୟ, ରାଧା ମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କର । ଏହି ତିନିଜଣ ୧୯୩୦ ପୂର୍ବରୁ କୋରାପୁଟରେ ସ୍ୱାଧୀନତାର ଜ୍ୟୋତି ଜଳେଇଥିଲେ । ଫଳରେ ୧୯୩୦ରେ ଏ ଜିଲ୍ଲାରେ ଅଭୂତପୂର୍ବ ଜାଗରଣ ଦେଖାଦେଇଥିଲା । ଶହ ଶହ ଲୋକ ଜେଲ୍ ଯାଇଥିଲେ । ବାପା ବରୀରେ ବସିବା  ପରେ କୋରାପୁଟ ଜିଲ୍ଲାରେ ରଚନାତ୍ମକ କାମ ଆରମ୍ଭ କଲେ । ଗାନ୍ଧୀ ସେବା ସଂଘର କେତେକ କେନ୍ଦ୍ର ଖୋଲିଲା । ବିଶ୍ୱନାଥ ପଟ୍ଟନାୟକ ୧୯୪୦ ଆଡ଼କୁ ଯାଇ କୁଞ୍ଚେଂଦ୍ରୀରେ ବସିଲେ । ଏ ଗାଁଟି ଗୁଣୁପୁରୁରୁ ସାତ ମାଇଲ । ତାହାପୂର୍ବରୁ ରାମ ମୋହନ ନାୟକ ପ୍ରଭୃତି କର୍ମୀମାନେ ବାହାରୁ ଯାଇ ସେଠି କେନ୍ଦ୍ର ସ୍ଥାପନ କରିଥିଲେ । ବ୍ରଜବନ୍ଧୁ ମିଶ୍ର ମଧ୍ୟ ଗାନ୍ଧୀ ଆଦର୍ଶ ଅନୁସାରେ ନିଷ୍ଠାର ସହ କାମ ଆରମ୍ଭ କରିଥିଲେ ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ କୋରାପୁଟ ଜିଲା ଓଡ଼ିଶା ଓ ଭାରତ ଭିତରେ ଏକ ଶୀର୍ଷ ସ୍ଥାନ ଅଧିକାର କରିଥିଲା । ସେଠୁ ଦୁଇ ହଜାରରୁ ଅଧିକ ଜେଲ୍ ଯାଇଥିଲେ ।

ଲକ୍ଷ୍ମଣ ନାୟକ ଫାଶୀଖୁଣ୍ଟରେ ପ୍ରାଣ ଦେଇଥିଲେ ଓ ଗୁଳିରେ ତଥା ଜେଲ୍ ଭିତରେ ରୋଗରେ କେତେ ମରିଥିଲେ ତା'ର ସଠିକ ହିସାବ ନାହିଁ । ପାପଡାହାଣ୍ଡି ଗୁଳିକାଣ୍ଡପରେ ସେଠା ନଈର ପାଣି ରକ୍ତରେ ଲାଲ ହୋଇଯାଇଥିଲା ବୋଲି ଲୋକେ କହନ୍ତି । ସେଠି ୧୯୩୦ ର ପରମ୍ପରାକୁ ଧରି ୧୯୪୨ର ଆନ୍ଦୋଳନ ଭିତର ଦେଇ ଗତି କରି ଯେଉଁ କର୍ମୀଗୋଷ୍ଠୀ ସୃଷ୍ଟି ହେଲେ ପରେ ସେହିମାନେ ଭୂଦାନ-ଗ୍ରାମଦାନ ଆନ୍ଦୋଳନର ବି ମୂଳପିଣ୍ଡ ହେଲେ ।

ଉପକୂଳର ଜିଲ୍ଲାମାନଙ୍କୁ କୋରାପୁଟକୁ ଚାକିରୀ ଓ ଅନ୍ୟସୂତ୍ରରେ ଯାଉଥିବା ଭଦ୍ରଲୋକମାନେ ଆମକୁ ଦେଖିବା ମାତ୍ରେ ଉପଦେଶ ଦେଉଥିଲେ ଯେ ସେଠି ଥଣ୍ଡାପାଣି ପିଇବେ ନାହିଁ, ଗରମପାଣି ପିଇବେ, ଗରମ ପାଣିରେ ଗାଧୋଇବେ ଇତ୍ୟାଦି । ତାହା ନ କଲେ ମାଳଜ୍ୱର ଘୋଟିଆସିବ । କୋରାପୁଟରେ ସେତେବେଳେ ଖରାପ ଧରଣର ମ୍ୟାଲେରିଆ ବା ମାଳଜ୍ୱର ଖୁବ୍ ବ୍ୟାପକ ଭାବରେ ଥିଲା ସତ କିନ୍ତୁ ପାଣି ସହିତ ତା'ର କି ସମ୍ପର୍କ ? ଆମେଯତ୍ର ତତ୍ର କୂଅପାଣି, ପୋଖରୀ, ନଈ ଯାହାପାଉଥିଲୁ ସେଥିରେ ଗାଧୋଉଥିଲୁ । ଥଣ୍ଡାପାଣି ପେଟଭରି ପିଉଥିଲୁ । ମାତ୍ର ମଶାରି ଟାଙ୍ଗିବାରେ ହେଳା କରୁ ନ ଥିଲୁ । ଆମକୁ ଜ୍ୱର ବା ଅନ୍ୟ କୌଣସି ବେମାରୀ ଛୁଇଁପାରି ନ ଥିଲା ।

ରାୟଗଡ଼ାରେ ଓଡ଼ିଆ ଓ ତେଲୁଗୁ ସଂସ୍କୃତିରେ ଗୋଟିଏ ପାର୍ଥକ୍ୟ ଦୃଷ୍ଟି ଆକର୍ଷଣ କଲା । ସେତେବେଳେ ଖରାଦିନ, ରାୟଗଡ଼ାରେ ପାଣିର ଘୋର ଅଭାବ । ପାଖ ନଈରୁ ପାଣି ଆଣିବାକୁ ପଡୁଥାଏ । ତେଲୁଗୁ ମଧ୍ୟବିତ୍ତ ଘରର ସ୍ତ୍ରୀମାନେ ଯାଇ ନଈରୁ ପାଣି ଆଣୁଥା'ନ୍ତି, ମାତ୍ର ସେହି ସମାନ ସ୍ତରର ଓଡ଼ିଆ ଘରର ସ୍ତ୍ରୀଲୋକ ସେପରି କରିବାକୁ ନାରାଜ । ସେମାନେ ଭାରୁଆଙ୍କୁ ପଇସା ଦେଇ ପାଣି ଅଣାଉଥା'ନ୍ତି । ଲକ୍ଷ୍ମୀନାରାୟଣ ସାହୁ ସେତେବେଳେ ଯାଇ ସେଠି ଥିଲେ ଓ ଏକ ଆଦିବାସୀ ସେବା କେନ୍ଦ୍ର ଆରମ୍ଭ କରିଥିଲେ । ପରେ ତାହା ଠକ୍କର ବାପା ଆଶ୍ରମ ରୂପେ ନାମିତ ହେଲା ଓ ଏବେ ସେଠି ଆଦିବାସୀ ଛାତ୍ରବାସ ଚାଲୁଛି ।

କୋରାପୁଟ ଜିଲ୍ଲାର ଅଧିକାଂଶ ଅଞ୍ଚଳରେ ଆବହାୱା ବେଶ୍ ଭଲ । କୋରାପୁଟ ସହରର ଆଖପାଖ ଅଞ୍ଚଳ ତ ଖରାଦିନେ ବେଶ୍ ଥଣ୍ଡା ଓ ଏ ଗ୍ରୀଷ୍ମନିବାସ ହେବାର ଉପଯୁକ୍ତ ସ୍ଥାନ । ଅସଲ କଥା, ସେତେବେଳେ କୋରାପୁଟ ଏକ ଶାସ୍ତିମୂଳକ ଜିଲ୍ଲା ଥାଏ । ସରକାରୀ କର୍ମଚାରୀଙ୍କୁ ଦଣ୍ଡ ଦେବା ପାଇଁ ସେଠାକୁ ବଦଳି କରାଯାଉଥାଏ । ସେଥିପାଇଁ ସେଠା ବିଷୟରେ ଏକ କୋକୁଆଭୟ ସୃଷ୍ଟି ହୋଇଥିଲା ଓ ବିଶେଷ ଭତ୍ତା ପାଇବା ଉଦ୍ଦେଶ୍ୟରେ ସେ ଧାରଣାଟାକୁ ବଞ୍ଚେଇ ରଖାଯାଇଥିଲା ।

## ସତ୍ୟାଗ୍ରହରେ ଯୋଗଦାନ

ସତ୍ୟାଗ୍ରହୀମାନଙ୍କର ପରବର୍ତ୍ତୀ ତାଲିକାରେ ମୋର ନିଜ ନାଁଟି ଥାଏ । ବାପା ସତ୍ୟାଗ୍ରହ କରିବାର ଅନୁମତି ମାଗି ଗାନ୍ଧୀଜୀଙ୍କୁ ଚିଠି ଲେଖିଥିଲେ, କିନ୍ତୁ ଗାନ୍ଧୀଜୀ ତାଙ୍କୁ ଅନୁମତି ଦେଲେ

ନାହିଁ । ଏଣେ ସତ୍ୟାଗ୍ରହ ଚଳାଇବା ସାଙ୍ଗେ ସାଙ୍ଗେ ତେଣେ ରଚନାତ୍ମକ କାମ ମାଧ୍ୟମରେ ଦେଶକୁ ସଂଗ୍ରାମ ପାଇଁ ପ୍ରସ୍ତୁତ କରିବା କାମ ସେ ଅବ୍ୟାହତ ରଖିବାକୁ ଚାହୁଁଥା'ନ୍ତି । ଏହି ସମୟରେ ଗାନ୍ଧୀଜୀ 'ରଚନାତ୍ମକ କାର୍ଯ୍ୟକ୍ରମ' ପୁସ୍ତିକାଟି ଲେଖି ସ୍ୱରାଜ ସହିତ ରଚନାତ୍ମକ କାମର ସମ୍ବନ୍ଧ ବିଷୟରେ ଏକ ସାମଗ୍ରିକ ଦୃଷ୍ଟି ଦେଶ ଆଗରେ ରଖିଲେ । ଏଥିରେ ସେ ଆର୍ଥିକ ସମାନତାକୁ ଦେଶର ଏକ ଲକ୍ଷ୍ୟ ହିସାବରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଲେ ଓ ସ୍ୱାଧୀନ ଭାରତରେ ଦିଲ୍ଲୀର ପ୍ରାସାଦ ଓ ପଡ଼ିଶାରେ ଥିବା ଭଙ୍ଗା କୁଡ଼ିଆଗୁଡ଼ିକ ଦିନେ ବି ସେପରି ପାଖାପାଖି ତିଷ୍ଠିପାରିବ ନାହିଁ ବୋଲି ସେ ବହିରେ ସ୍ପଷ୍ଟ ଘୋଷଣା କଲେ ।

ମୁଁ ବରୀ ଅଞ୍ଚଳରେ ସତ୍ୟାଗ୍ରହ ଆରମ୍ଭ କଲି । ସେତେବେଳକୁ ସରକାର ଆଉ ସାଧାରଣ ସତ୍ୟାଗ୍ରହୀଙ୍କୁ ଗିରଫ କରୁ ନ ଥା'ନ୍ତି । ମୁଁ ବରୀ ଅଞ୍ଚଳରେ ବୁଲି ଅନେକଗୁଡ଼ିଏ ସଭାକରି କ୍ରମେ ଧର୍ମଶାଳା ଥାନାଆଡ଼କୁ ଚାଲିଲି । ମୁଁ ଚାଲି ଚାଲି ବୁଲୁଥାଏ । ଦୁଇ ତିନି ମାଇଲ ଅନ୍ତରରେ ସଭା ହେଉଥାଏ । ସଭାକୁ ଆଖପାଖ ଗାଁର ଲୋକ ଆସି ବେଶ୍ ଆଗ୍ରହର ସହିତ ମୋର କଥା ଶୁଣୁଥା'ନ୍ତି । ଧର୍ମଶାଳା ଥାନାରେ ବାହାଦଲାପୁରର ପରମାନନ୍ଦ ମହାନ୍ତି କଂଗ୍ରେସ ସୋଶାଲିଷ୍ଟ କର୍ମୀ ଥା'ନ୍ତି । ସେଠି ସେ ମୋ ସାଙ୍ଗରେ ବୁଲିଲେ ଓ ଅନେକଗୁଡ଼ିଏ ସଭାର ଆୟୋଜନ କଲେ । ଦିନେ ଧର୍ମଶାଳାରେ ସଭା ଥାଏ । ସେ ଦିନ ହାଟ ଥିଲା । ସେଥିପାଇଁ ବେଳଠୁଁ ସଭା ହେଇଗଲା । ଦିପହରବେଳକୁ ପରମାନନ୍ଦ ଆସି କହିଲା, "ଚାଇକୁ ଆଉଥରେ ସଭା କରିବା, ପୁଲିସ୍ କହୁଛି ଆପଣଙ୍କୁ ଗିରଫ କରିବ ।" ଗିରଫ୍ ନ ହେବା ଯୋଗୁଁ ମୁଁ ମନେ ମନେ ଟିକିଏ କ୍ଷୁଣ୍ଣ ହେଉଥାଏ, ମତେ ସରକାର ଖାତିର କରୁ ନାହାନ୍ତି ବୋଲି । ତେଣୁ ପରମାନନ୍ଦ କଥାରେ ଖୁସି ହେଲି । ସେ ବି ବୋଧହୁଏ ଥକିପଡ଼ିଥିଲା ଓ ମତେ ଗିରଫ କରିବା ପାଇଁ ସବ୍‌ଇନ୍‌ସପେକ୍ଟରଙ୍କୁ ଅନୁରୋଧ କରିଥିଲା । ମୁଁ ପୁଣି ସଭା କରିବାରୁ ପୁଲିସ୍ ସ.ଇ. ଆସି ମତେ ଗିରଫ କଲେ ।

ସେଠୁ ମତେ ଯାଜପୁର ପଠାହେଲା ଓ ସେଠା ଏସ୍. ଡ଼ି. ଓ. ପ୍ରଫୁଲ୍ଲଚନ୍ଦ୍ର ତ୍ରିପାଠୀଙ୍କର ଇଜଲାସରେ ମୋର ବିଚାର ହେଲା । ମୁଁ ଗୋଟାଏ ବିବୃତି କୋର୍ଟରେ ଦେବି ବୋଲି ଲେଖିନେଇ ଯାଇଥାଏ । ହାକିମ ମତେ କହିଲେ ଯେ, ତାହା ପଢ଼ିବା ଦରକାର ନାହିଁ, ମତେ ଦିଅନ୍ତୁ ରେକର୍ଡ଼ରେ ରହିବ । ମୁଁ ତାଙ୍କ କଥା ନ ମାନି ତାହା ପୂରା ପଢ଼ି ଶୁଣାଇଲି । କୋର୍ଟ ଲୋକାରଣ୍ୟ ହେଇଗଲା । ଅଳ୍ପଦିନ ପୂର୍ବରୁ ଗୁରୁଦେବ ରବୀନ୍ଦ୍ରନାଥ ଏ ଦେଶରେ ସାଧାରଣ ଲୋକ ଦୁଃଖ କଷ୍ଟରେ ଥିବାବେଳେ ଯୁଦ୍ଧରେ ଧନ ଖର୍ଚ୍ଚ କରାଯିବାର ଅବିବେକିତା ବିରୋଧରେ ଏକ ବିବୃତି ଦେଇଥିଲେ । ତାଙ୍କର ବକ୍ତବ୍ୟରୁ କିଛି କିଛି ଚୋରି କରି ମୋ ବିବୃତିରେ ପୂରେଇ ଦେଇଥିଲି । ମୋର 'ଅବାଧ୍ୟତା' ଯୋଗୁଁ ହାକିମ ବିରକ୍ତ ହେଲେ । ଯାହାହେଉ ମତେ ଆଠ ମାସର ସଶ୍ରମ କାରାଦଣ୍ଡ ମିଳିଲା । ପରେ ଜଣେ ବନ୍ଧୁ ମତେ କଥା ପ୍ରସଙ୍ଗରେ କହିଲେ ଯେ, ପ୍ରଫୁଲ୍ଲବାବୁ କୁଆଡ଼େ ପରେ କାହାକୁ କାହାକୁ କହିଲେ, "ଗୋପବାବୁଙ୍କର ପୁଅ ଏମିତି ଗୋଟାଏ ଗୁଣ୍ଡା ରକମର କ'ଣ ?

# କଟକ ଜେଲ୍‌ରେ

ମୁଁ ଦ୍ବିତୀୟ ଶ୍ରେଣୀ ବନ୍ଦୀ ରୂପେ କଟକ ଜେଲ୍‌କୁ ବଦଳି ହେଲି । ସେଠି ପନ୍ଦର ନମ୍ବର ଓ୍ବାର୍ଡ଼ରେ ସେତେବେଳକୁ ନରକ ଗୁଲଜାର, ପଣ୍ଡିତ ଲକ୍ଷ୍ମୀନାରାୟଣ, ସୁଧୀରବାବୁ, ବିପିନ ମହାନ୍ତି, ଆକୁଳି ବେହେରା, ପାଗଳା ବୈକୁଣ୍ଠ, ଗୋପୀନାଥ ମହାନ୍ତି (ପାଟକୁରା), ରଘୁନାଥ ପୁରୋହିତ, କୃତ୍ତିବାସ ଦାସ ପ୍ରଭୃତି କଟକର ଅନେକ ଆଗରୁ ଥା'ନ୍ତି ବା ମୁଁ ପହଞ୍ଚିବାର ଅଳ୍ପ ଦିନ ପରେ ଆସିଲେ । ଅନୁଗୁଳରୁ ହୃଷି ପ୍ରଧାନ, ଲୋକନାଥ ପ୍ରଧାନ, ଭଗବାନ ପ୍ରଧାନ, ବୃନ୍ଦାବନ ପ୍ରଧାନ ପ୍ରଭୃତି ଓ ବାଲେଶ୍ୱରରୁ ସର୍ଦ୍ଦାର ସୁରେନ୍ଦ୍ର, ବିପିନ ବିହାରୀ ବେହେରା, ସନ୍ଧିବିଗ୍ରହ (ନୀଳଗିରି) ପ୍ରଭୃତି ଅନେକ ଆସିଥା'ନ୍ତି । ଓ୍ବାର୍ଡ଼ ସରଗରମ ଥାଏ ।

ଗାନ୍ଧୀଜୀ ବରାବର ଜୋର୍ ଦେଉଥା'ନ୍ତି ଯେ ଜେଲ୍‌ର ସାଧାରଣ ଶୃଙ୍ଖଳା ମାନି ଚଳିବାକୁ ହେବ । ଆତ୍ମସମ୍ମାନରେ ଆଞ୍ଚ ଆସିବା ଭଳି କିଛି ହେଲେ ଯାଇ ତାହାର ବିରୋଧ କରିବ । ଏଥର ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭରେ ଏଇ କଥାକୁ ପୁଣି ଜୋରଦେଇ ଦୋହରେଇ ଥା'ନ୍ତି । ୧୯୩୦-୩୨ ରୁ ତ ଜେଲ୍‌ର କାରାଗାରତ୍ୱ ପୂରା ଲୋପ ହେଇଯାଇଥିଲା । ଫାଇଲରେ ବସିବା ଓ ଚାଲିବା ଆଦି ନିୟମ ରାଜନୀତିକ ବନ୍ଦୀମାନଙ୍କ ପାଇଁ ତ ଲାଗୁ ହେଉ ନ ଥାଏ । ଥିବା ଭିତରେ ଥାଏ ରାତିରେ ନମ୍ବର ବନ୍ଦ । ତାହାବି ୧୯୪୨ ରେ ଉଠିଗଲା । ଫାଇଲର ଅର୍ଥ ହେଲା ଯେ ସୁପରିଟେଣ୍ଡେଣ୍ଟ ଜେଲ୍ ପରିଦର୍ଶନରେ ଆସିବାବେଳକୁ କଏଦୀମାନେ ଜଂଘିଆ ଓ କୁର୍ତ୍ତା ପିନ୍ଧି, ମୁଣ୍ଡରେ ଟୋପି ଲଗେଇ ଧାଡ଼ିବାନ୍ଧି ଛିଡ଼ା ହେଇଥିବେ ବାଁ ହାତରେ ଟିକଟଟାକୁ କାନ୍ଧରେ ଡେରି ଧରିଥିବେ । ଏ ଟିକଟ ହେଲା ମନିଅର୍ଡ଼ର ଫର୍ମଠାରୁ ଟିକେ ବଡ଼ ଆକାରର ମୋଟା କାଗଜ ଯେଉଁଥିରେ କଏଦୀର ସବୁ ବିବରଣୀ ଓ ଇତିହାସ ଲେଖାଥାଏ । କେବେ ଆସିଲା, ଚିଠି ଲେଖିବା ଓ ପାଇବା ତାରିଖ, ବେମାରୀ, କି କାମ ଦିଆଗଲା, କି ସଜା ଇତ୍ୟାଦି ସବୁ । ପୁରୁଣା କଏଦୀଙ୍କର ଏ କାଗଜ ସଂଖ୍ୟା ବଢ଼ି ବଢ଼ି ଗୋଟାଏ ଗୋଟାଏ ବହି ହେଇଥାଏ । କଏଦୀର ନମ୍ବର ଲେଖା ଗୋଟାଏ କାଠ ତକ୍ତା ଡେଉଁରିଆ ପରି ତା' ବେକରେ ଝୁଲା ହେଇଥାଏ । ସୁପର ପାଖକୁ ଆସିବା ମାତ୍ରେ ଜମାଦାର ହୁକୁମ ଦେବ - "ସରକାର-ସଲାମ୍' ଓ ସମସ୍ତେ ସଲାମ୍ କରିବେ ଓ ଡାହାଣ ହାତରେ ଓଠକୁ ମେଲେଇ ଧରି ଦାନ୍ତନିକୁଟିବେ । ସୁପର ଦାନ୍ତ ଭଲ ଓ ସଫା ଅଛି କି ନାହିଁ ପରୀକ୍ଷା କରିବେ ।

ସୁପରଙ୍କର ଆଗମନ ଗୋଟାଏ ରୀତିମତ ଶୋଭାଯାତ୍ରା, ଆଗରେ ଦୁଇଜଣ ଓ୍ବାର୍ଡ଼ର ତା' ପଛକୁ ଜମାଦାର, ତା' ପଛକୁ ସୁପର, ତାଙ୍କ ମୁଣ୍ଡରେ ଜଣେ ପହରାଓ୍ବାଲା କି ମେଟ ଗୋଟାଏ ମସ୍ତ ଧଳା ଛତା ଧରିଥିବ, ଯାହାର ବ୍ୟାସ ତିନିହାତ ଉପରେ । ତା' ପଛକୁ ଜେଲର୍, ସହକାରୀ ଜେଲର୍, ଡାକ୍ତର ଓ ପୁଣି ଓ୍ବାର୍ଡର ।

ରାଜନୀତିକ ଓ୍ବାର୍ଡ଼ରେ ତ ଏ ଫାଇଲ ଓ ସରକାର ସଲାମ ନ ଥାଏ, ଓଲଟା ଏ ମତ

ଅନେକଙ୍କର ଥାଏ ଯେ ସୁପର ବା ଜେଲର୍ ଆସିଲେ ଭଦ୍ରତା ଦେଖେଇ ବି ଛିଡ଼ା ହେବା ଉଚିତ ନୁହେଁ । ସେଥିପାଇଁ ଅନେକଠିଁ ସୁପର ହେରିକା ରାଜନୀତିକ ବନ୍ଦୀଙ୍କ ୱାର୍ଡ଼କୁ ଆସୁନଥିଲେ । ଏଥର ଆମେ ପାରୁପର୍ଯ୍ୟନ୍ତ ଜେଲ୍ ଶୃଙ୍ଖଳା ମାନିବୁ ବୋଲି ସ୍ଥିରକଲୁ । ଏହାର ଫଳିତାର୍ଥ ହେଲା ଯେ ସୁପର ଆସିବା ବେଳେ ସମସ୍ତେ ଉଠି ଛିଡ଼ାହେବେ ଓ ଦିନବେଳେ ଖାଇ ସାରିବା ପରେ ଅନ୍ୟ କଏଦୀଙ୍କ ପରି ଘଣ୍ଟାଏ ନମ୍ବରରେ ବନ୍ଦ ହେବେ । ଏହା ଫଳରେ ସର୍ବଦା ଜେଲ୍ କର୍ତ୍ତୃପକ୍ଷଙ୍କ ସାଙ୍ଗରେ ଛୋଟ ଛୋଟ କଥା ନେଇ ଖିଟିମିଟି ଲାଗିବା ପରିବର୍ତ୍ତେ ସମସ୍ତଙ୍କର ବୁଦ୍ଧି ଓ ସମୟ ଆତ୍ମୋତ୍କର୍ଷ ଆଡ଼କୁ ଗଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ତାମିଲ ଧର୍ମଗ୍ରନ୍ଥ ତିରୁକୁରଲ୍‌ର ଓଡ଼ିଆ ଅନୁବାଦ କରୁଥା'ନ୍ତି । ସେ ତାହା ସମସ୍ତଙ୍କୁ ପଢ଼ି ବୁଝାଇବା ପାଇଁ ବର୍ଗ ଆରମ୍ଭ କଲେ । ରଘୁନାଥ ପୁରୋହିତ ହିନ୍ଦୀ ବର୍ଗ ଆରମ୍ଭ କଲେ । ଅନ୍ୟାନ୍ୟ ବିଷୟରେ ମଧ୍ୟ ବର୍ଗ ଓ ବକ୍ତୃତା ଆଦି ଚାଲିଲା ।

## ପାଠପଢ଼ା ଓ ଅଟାପେଷା

ଆଧୁନିକ ପଦାର୍ଥବିଜ୍ଞାନ ଓ ଜ୍ୟୋତିର୍ବିଜ୍ଞାନ ପ୍ରତି ମୋର ଆକର୍ଷଣ ଯୋଗୁଁ ମୁଁ ସାଧାରଣ ପାଠକଙ୍କ ପାଇଁ ଲେଖା ସରଳ ବହି ଯାହା ପାଉଥାଏ ପଢୁଥାଏ; କିନ୍ତୁ ମୁଁ ଦେଖିଲି ଯେ ଉଚ୍ଚତର ଗଣିତ ନ ଜାଣିଲେ ସେ ସବୁ ବିଷୟରେ ଗଭୀରକୁ ଯାଇହେବ ନାହିଁ । ତେଣୁ ମୋର ଅନେକ କାଳରୁ ଉଚ୍ଚତର ଗଣିତ ଅଧ୍ୟୟନର ଇଚ୍ଛା ଥିଲା । ଏଥର ଜେଲ୍‌ରେ ସମୟ ମିଳିବାରୁ ତା'ର ବିଧିବଦ୍ଧ ଅଧ୍ୟୟନ ଆରମ୍ଭ କଲି । ବହି ସଂଗ୍ରହ କରି ଡିଫରେନ୍‌ସିୟାଲ୍ ଓ ଇଣ୍ଟିଗ୍ରାଲ୍ କାଲକୁଲସ ଆୟତ୍ତ କରିଦେଲି । ଏହାଛଡ଼ା ଷ୍ଟାଟିକ୍ସ ଓ ଡାଇନାମିକ୍‌ସ୍ ମଧ୍ୟ ଅଧ୍ୟୟନ କଲି । ମତେ ସାହାଯ୍ୟ କରିବାକୁ ତ କେହି ନ ଥା'ନ୍ତି । ସେଥିପାଇଁ ବେଳେବେଳେ କୌଣସିଠି ଅଟକିଗଲେ ଆଉ ବାଟ ଦିଶେ ନାହିଁ । ସେଠୁ ମୁଁ ସେ ବିଷୟଟାକୁ ଅନେକ ସମୟ ଯାଏ ଛାଡ଼ିଦିଏ । ପରେ ହଠାତ୍ ଏକ ସମୟରେ ତା'ର ଅର୍ଥଟା ବା ସମାଧାନଟା ଦିଶିଯାଏ । ଏମିତି ଭାବରେ ମୁଁ ଆଗଉଥାଏ, କେବଳ ନିଜ ଚେଷ୍ଟାରେ । ଏହିସବୁ ବିଷୟ ଅଧ୍ୟୟନ କରିବାରେ ସମୟ ଟିକିଏ ବେଶି ଲାଗୁଥିଲା । କିନ୍ତୁ ଆତ୍ମବିଶ୍ୱାସ ବହୁତ ବଢ଼ିଯାଇଥିଲା ଓ ସମସ୍ତ ବିଷୟଗୁଡ଼ିକ ମୁଁ ଭଲ ଭାବରେ ଆୟତ୍ତ କରିବାରେ ସକ୍ଷମ ହେଉଥିଲି । ଯୌନ ସମସ୍ୟା ବିଷୟରେ ଫୋରେଲ୍‌ଙ୍କର ଖଣ୍ଡେ ପ୍ରାମାଣିକ ଗ୍ରନ୍ଥ ଟୁଙ୍ଗୁମାମୁଁଙ୍କଠାରୁ ମିଳିଥିଲା ଓ ସେଖଣ୍ଡ ବି ପଢ଼ିଥିଲି ।

ଆମେ ତ ସେଠି ସମସ୍ତେ ସଶ୍ରମ କଏଦୀ ଥାଉ । ଆମେ କାମକରିବୁ ବୋଲି ପ୍ରତିଦିନ ସକାଳୁ ଗୋଟାଏ ଚକି ଓ ଅଧବସ୍ତାଏ ଗହମ ଆଣି ଜଣେ ମେଣ୍ଟ ଥୋଇଦେଇଯାଏ । କିଏ ଟିକିଏ ଚକିରେ ହାତ ମାରନ୍ତି । ସେରେ ଅଧେ ଗହମ ପେଷା ହୁଏ କି ନାହିଁ । ସେ ବି ଦରଦରଭଙ୍ଗା ହେଇ ବାହାରେ । ସନ୍ଧ୍ୟାକୁ ସେ ଲୋକ ଆସି ସବୁ ପୁଣି ଉଠେଇ ନେଇଯାଏ । ସୁଧୀରବାବୁ ଓ ମୁଁ ଦିନେ ବିଚାର କଲୁ ଯେ ଅଟାପେଷା କାମଟା ଗୁରୁତ୍ୱର ସହିତ ଠିକ୍ ଭାବରେ

କରାଯାଉ । ସେହି ଅନୁସାରେ ଆମେ ଅଟାପେଷା କାମଟା ଆରମ୍ଭ କଲୁ । ଅନ୍ୟମାନେ ବି ଉତ୍ସାହିତ ହୋଇ ଯୋଗଦେଲେ । ଯେତକ ଗହମ ଦେଉଥିଲେ ସେତକ ପୂରା ପେଷା ହୋଇଯିବାକୁ ଲାଗିଲା । ଅଟା ପେଷାର ସବୁ କଳାକୌଶଳ ମଧ୍ୟ କ୍ରମେ ଆୟତ୍ତ ହୋଇଗଲା । ଗହମକୁ କେତେ ଶୁଖାଇବାକୁ ହେବ, ଚକିରେ କେତେ ପରିମାଣରେ ପକାଯିବ, ଚକିରେ ଉପର ପାଟିଟା କେତେ ଭାରୀ ବା ହାଲୁକା ଚାଲିଲେ ପେଷା ଭଲ ହେବ । ଏପରି ଭାରୀ ବା ହାଲୁକା କରିବା ପାଇଁ ଚକିକୁ କିପରି ସଜାଡ଼ିବାକୁ ପଡ଼ିବ, ଚୋକଡ଼ କିପରି କମ୍‌ରୁ କମ୍ ବାହାରିବ, ଇତ୍ୟାଦି ସବୁ ବିଷୟରେ ଆମେ ଶିଖିଗଲୁ । କ୍ରମେ ଆମକୁ କାମ ଅଣ୍ଟିଲା ନାହିଁ । ଅନେକ ଅନୁଭବ କଲେ ଯେ ନିୟମିତ ଅଟା ପେଷିବା ଦ୍ୱାରା ହଜମ ଭଲ ହେଉଛି, ଦେହ ଫୁର୍ତ୍ତି ଲାଗୁଛି । ସ୍ୱାସ୍ଥ୍ୟ ଭଲ ରହୁଛି । ସେଥିପାଇଁ ଅଟା ପେଷିବାକୁ ଠେଲାପେଲା ଲାଗିଲା । ସ୍ୱାସ୍ଥ୍ୟୋନ୍ନତିରେ ତ ରେକର୍ଡ଼ ସୃଷ୍ଟିକଲେ ପାଟପୁରାର ଗୋପୀନାଥ ବାବୁ ।

ସେ କେତେ ବର୍ଷ କେନ୍ଦ୍ରପଡ଼ା ଲୋକାଲ ବୋର୍ଡ଼ର ଭାଇସ୍- ଚେୟାରମ୍ୟାନ ଥିଲେ । ପ୍ରତିମାସରେ ନା ପକ୍ଷରେ ଥରେ କଏଦୀମାନଙ୍କର ଓଜନ ନିଆଯାଏ । ଦେଖାଗଲା ଯେ ଗୋପୀନାଥବାବୁଙ୍କର ଓଜନ ମାସକରେ ଆଠ ପାଉଣ୍ଡ ବଢ଼ିଛି । ହିସାବ ପଡ଼ିଲା ଘଣ୍ଟାକରେ ଅଧତୋଳା । ସମସ୍ତେ ତାଙ୍କ ପିଛା ଲାଗିଲେ ଯେ, ନିରେଖି କରି ଚାହିଁଲେ ଆଖିଆଗରେ ତାଙ୍କର ଓଜନ ବଢ଼ୁଥିବାର ଦେଖାଯିବ ।

ଗହମ ନିଅଣ୍ଟ ହେବାରୁ ଜେଲ କର୍ତ୍ତୃପକ୍ଷଙ୍କୁ କୁହାହେଲା । ସେ ଦୁଇଟା ଚକି ଓ ଅଧିକ ଗହମ ଦେଲେ । ଘଣ୍ଟାକୁ କେତେ ବେଶି ପେଷାଯାଇ ପାରିବ ତା'ର ପ୍ରତିଯୋଗିତା ଚାଲିଲା । ଦିନଯାକ ଏ ସାମୂହିକ ଉଦ୍ୟମ ଚାଲିଥାଏ । ଗହମରୁ ଗୋଡ଼ି ବାଛିବା, ଅଟା ଚଲେଇବା, ଗହମ ଓ ଚୋକଡ଼ ଖରାରେ ଶୁଖାଇବା, ଏହିପରି ସବୁ କାମରେ କେତେ ଲାଗିଥା'ନ୍ତି । ଆଖିକୁ ଭଲ ଦିଶୁ ନ ଥିବା ବୁଢ଼ାମାନେ, ଯଥା - ଭଗବାନ ପ୍ରଧାନ ଓ ବିପିନ ବିହାରୀ ବେହେରା, ବସି ପେଷିବାବାଲାଙ୍କୁ ପଙ୍ଖା କରୁଥା'ନ୍ତି । କିଏ କେତେ ପେଷିପାରିବ ଏଇ ପ୍ରତିଯୋଗିତାରେ ହଳେ ପେଷିବାବାଲା ବାର ପନ୍ଦର ସେର ଲେଖାଁ ଗହମ ପେଷିବାକୁ ସକ୍ଷମ ହେଲେ । ଜେଲରେ ସେତେବେଳେ କଠିନ ପରିଶ୍ରମ ହିସାବରେ ଅଠର ସେର ଗହମ ପେଷିବା ପାଇଁ ଦେବା ନିୟମ ଥିଲା । ଦିନେ ସୁଧୀରବାବୁ ଓ ମୁଁ ଲଗାତାର ପାଞ୍ଚଘଣ୍ଟା କୋଡ଼ିଏ ମିନିଟ୍ ଚକି ଚଳେଇ କୋଡ଼ିଏ ନା ବାଇଶି ସେର ପେଷିଦେଲୁ । ଏପରି ମେହନତ କରିବା ଦ୍ୱାରା ସମସ୍ତଙ୍କର ଆତ୍ମସମ୍ମାନବୋଧ ଓ ଆତ୍ମବିଶ୍ୱାସ ବଢ଼ିଲା । କିଛି ନ ହେଲେ ଅଟା ପେଶି ପେଟ ପୋଷିପାରିବୁ ବୋଲି କେହି କେହି ମତବ୍ୟକ୍ତ କଲେ । ଚକିଟା ଆୟତ୍ତ ହୋଇଯିବାରୁ ଆମେ ଜେଲ୍ ସୁପରଙ୍କୁ ଦରଖାସ୍ତ କଲୁ ଯେ ଆମକୁ ଏଥର ଘଣା ଠେଲିବା ପାଇଁ ଦିଆଯାଉ, କିନ୍ତୁ ସେ ତାହା ମଞ୍ଜୁର କଲେ ନାହିଁ ।

ଏ ସବୁ ଫଳରେ ରାଜନୀତିକ ବନ୍ଦୀଙ୍କ ପ୍ରତି ଜେଲ୍ କର୍ତ୍ତୃପକ୍ଷଙ୍କର ସମ୍ମାନ ବଢ଼ିଲା ଓ

ବହିପତ୍ର, ଖାଦ୍ୟ ବା ଅନ୍ୟ କୌଣସି ବିଷୟରେ ସମସ୍ୟା ଉଠିଲେ ସେମାନେ ତାହା ତୁରନ୍ତ ସମାଧାନ କରିବାକୁ ଆରମ୍ଭ କଲେ । ରାତିରେ ରୁଟି ଅନେକ ଖାଇବାକୁ ଚାହୁଁଥା'ନ୍ତି; କିନ୍ତୁ ଜେଲ୍ କର୍ତ୍ତୃପକ୍ଷ ସମସ୍ତଙ୍କର ଚାହିଦା ପୂରଣ କରିବାକୁ ଅନିଚ୍ଛୁକ ଥିଲେ । ଏଇ ନେଇ ମନ କଷାକଷି ଚାଲୁଥିଲା, କିନ୍ତୁ ଏହାପରେ ସେ ସମସ୍ୟା ଆଉ ରହିଲା ନାହିଁ । ଯେତେଲୋକ ଚାହିଁଲେ ସମସ୍ତଙ୍କୁ ରୁଟି ମିଳିଲା ।

ଏ ସବୁ ସାଙ୍ଗକୁ ଖେଳ କୁଦ, ଗୀତ ନାଟ ବି ଖୁବ୍ ଚାଲୁଥାଏ । ଉପରଓଳି ବାଗୁଡ଼ି, ଲୁଣଚୋରୀ ଆଦି ଖେଳରେ ସମସ୍ତେ ମାତନ୍ତି । ରାତିରେ ଗୀତାନ୍ତ, ବ୍ୟଙ୍ଗ କୌତୁକ, ପାଲା ନାଟକ ଆଦି ହୁଏ । ପାଗଳା ବୈକୁଣ୍ଠ ଏଥିରେ ଅଗ୍ରଣୀ ଥାଏ । ଅନୁଗୁଳର ଭାଇମାନେ ବି ଖୁବ୍ ଉତ୍ସାହରେ ପାଲା ଆଦି କରନ୍ତି । ମୁଁ ନିୟମିତ ଆସନ କରେ । ମୋ ଦେଖାଦେଖି ଅନ୍ୟ ଅନେକ ମଧ୍ୟ ଆସନ ଶିଖି ନିୟମିତ କରିବାକୁ ଲାଗିଲେ ।

ଆମେ ଏଇ କଟକ ଜେଲ୍‌ରେ ଥିବା ଭିତରେ ୧୯୪୨ ଅଗଷ୍ଟ ଆଠ ତାରିଖ ଦିନ ଗୁରୁଦେବ ରବୀନ୍ଦ୍ରନାଥଙ୍କର ଦେହାବସାନର ସମ୍ବାଦ ସକାଳଓଳି ମିଳିଲା । ମୁଁ ଓ ଅନ୍ୟ ଅନେକେ ସେ ଦିନ ଉପାସ କଲୁ । ଉପରଓଳି ପ୍ରାର୍ଥନା ସଭା ହେଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ଗୁରୁଦେବଙ୍କର ଅନନ୍ୟ ଭକ୍ତ ଥିଲେ । ସେ ତାଙ୍କ ବିଷୟରେ କହିଲେ । ମୁଁ ଗୁରୁଦେବଙ୍କର 'ମରଣ ମିଲନ୍' କବିତାଟି ଆବୃତ୍ତି କଲି- "ଅତି ଚୁପି ଚୁପି କେନ କଥା କଓ ଓଗୋ ମରଣ୍ ହେ ମୋର ମରଣ୍..." ଗୁରୁଦେବ ଚାଲିଯିବା ଦ୍ୱାରା ଯେମିତି ଦିନର ଆଲୁଅଟା ହଠାତ୍ ମ୍ଲାନ ହେଇଯିବାପରି ଲାଗିଲା । ବୋଧହେଲା ଯେମିତି ନିଜ ଜୀବନରୁ ଗୋଟାଏ ଟୁକୁରା ହଜିଗଲା ।

## ସତ୍ୟାଗ୍ରହରେ ବିରତି

ଇତିମଧ୍ୟରେ କଂଗ୍ରେସ ନେତାମାନଙ୍କୁ ଅପୋଷ ଆଲୋଚନାର ଆଉ ଏକ ସୁଯୋଗ ଦେବାପାଇଁ ଭାରତ ସରକାର ପ୍ରଥମେ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟମାନଙ୍କୁ ଓ ପରେ କ୍ରମେ ସବୁ ବନ୍ଦୀମାନଙ୍କୁ ଛାଡ଼ିଦେଲେ । ଗାନ୍ଧୀଜୀ ମଧ୍ୟ ବାଣୀ ସତ୍ୟାଗ୍ରହ ମୁଲତବୀ ରଖିଲେ । ଆମେ ସବୁ ଜେଲ୍‌ରୁ ବାହାରୁଣୁ ନ ବାହାରୁଣୁ ଜାପାନ ହାୱାଇ ଦ୍ୱୀପପୁଞ୍ଜର ପର୍ଲ ହାରବର୍ ଠାରେ ଥିବା ମାର୍କିନ ନୌବହରର ଘାଟି ଉପରେ ଅଚାନକ ଆକ୍ରମଣ କରି ତାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା ଓ ଜର୍ମାନୀ ଓ ଇଟାଲୀର ପକ୍ଷଧରି ଯୁଦ୍ଧରେ ପଶିଲା । ତେଣେ ଜର୍ମାନୀ ରୁଷ୍ ଉପରେ ଅତର୍କିତ ଆକ୍ରମଣ କରି ଆଗେଇ ଚାଲିଥାଏ ଓ ଆଫ୍ରିକାରେ ମଧ୍ୟ ଆସି ତା'ର ଉତ୍ତର ଉପକୂଳରେ ଘାଟି ଜମାଇଥାଏ । ଜାପାନ ଯୁଦ୍ଧରେ ପଶିବାମାତ୍ରେ ହୁ ହୁ କରି ଆଗେଇ ଚାଲିଲା ଓ ଚାହୁଁ ଚାହୁଁ ସିଙ୍ଗାପୁର ଓ ବର୍ମା ଦଖଲକରି ଆସାମଆଡ଼କୁ ଆଗେଇବାକୁ ଲାଗିଲା । ବର୍ମାରୁ ଅଗଣିତ ପଳାତକ ଅକଥ୍ୟ କଷ୍ଟ ସହି କୌଣସିମତେ ଆସି ଏ ଦେଶରେ ପହଞ୍ଚିବାକୁ ଲାଗିଲେ । କେତେ ପଳାତକ ଯେ ବାଟରେ ଜୀବନ ହରେଇଲେ ତା'ର ଇୟତ୍ତା ନାହିଁ ।

ଜାପାନର ଅଗ୍ରଗତି ଯୋଗୁଁ ଏକ ଚହଳ ପଡ଼ିଗଲା ଓ ଇଂରେଜ ସରକାର ଭାରତର ନେତାମାନଙ୍କ ସହିତ ଆଲୋଚନା ଚଳାଇବା ପାଇଁ ସାର୍ ଷ୍ଟାଫୋର୍ଡ଼୍ କ୍ରିପ୍‌ସଙ୍କୁ ପଠାଇଲେ । ଗାନ୍ଧୀଜୀ କ୍ରିପ୍‌ସଙ୍କ ସହିତ ଅଳ୍ପ କଥାବାର୍ତ୍ତା କରି ଫେରିଆସିଲେ ଓ ସେ ଯେଉଁ ପ୍ରସ୍ତାବ ଆଣିଥିଲେ ତାକୁ "ଦେବାଳିଆ ହେବାକୁ ବସିଥିବା ବ୍ୟାଙ୍କ ଉପରେ ଆଗୁଆ ତାରିଖ ପଡ଼ିଥିବା ଚେକ୍" ବୋଲି ବର୍ଣ୍ଣନା କଲେ । ଅର୍ଥାତ୍ ଏ ଚେକ୍‌ରେ ଆଗୁଆ ତାରିଖ ପଡ଼ିଥିବାରୁ ତାହା ତୁରନ୍ତ ଭଙ୍ଗାଇ ହେବ ନାହିଁ ଓ ପରେ ନିର୍ଦ୍ଦିଷ୍ଟ ତାରିଖ ବେଳକୁ ସେ ବ୍ୟାଙ୍କର ଅସ୍ତିତ୍ୱ ଆଉ ନ ଥିବ; କିନ୍ତୁ ଜୱାହରଲାଲଜୀ ଓ ମୌଲାନା ଆଜାଦ ପ୍ରଭୃତି ସେ ଫାନ୍ଦରେ ଗୋଡ଼ ଦେଇ ସାରିଥିଲେ । ପ୍ରସ୍ତାବ ଥାଏ ଯେ ଭାରତୀୟ ନେତାମାନଙ୍କୁ ବଡ଼ଲାଟଙ୍କ ପରାମର୍ଶଦାତା ମଣ୍ଡଳୀରେ ନିଆଯିବ ଓ ନାନାବିଧି ଦାୟିତ୍ୱ ଦିଆଯିବ, କିନ୍ତୁ ଅର୍ଥବିଭାଗ, ଯୁଦ୍ଧ ବିଭାଗ ଆଦି ଅସଲ ବିଭାଗଗୁଡ଼ିକ ଇଂରେଜଙ୍କ ହାତରେ ରହିବ । ଯୁଦ୍ଧପରେ ଭାରତକୁ ସ୍ୱାୟତ୍ତ ଶାସନ ମିଳିବ । ନେହେରୁ ହେଲିକା ଏ ବିଷୟରେ ପର୍ଯ୍ୟାପ୍ତ ଆଲୋଚନା ଆରମ୍ଭ କରିଦେଇଥିଲେ ଯେ କିଏ କି ଦାୟିତ୍ୱ ନେବ ଓ ସେ ସବୁର ପରିଚାଳନା ସୂଚାରୂପେ କରିବା ପାଇଁ କ'ଣ କ'ଣ କରିବାକୁ ହେବ । ଯାହାହେଉ ସୌଭାଗ୍ୟକ୍ରମେ ଏ ଆଲୋଚନା ବିଫଳ ହେଇଗଲା । ଏତେବେଳକୁ ଜିନ୍ନା ସାହେବ ପାକିସ୍ତାନ ଦାବି ଉପରେ ପୂରା ଜିଦ୍ ଧରି ବସିଲେଣି ଓ ହିନ୍ଦୁ ମହାସଭା ତା'ର ବିରୋଧ ଆରମ୍ଭ କଲାଣି ।

ଏଇ କ୍ରିପ୍‌ସଙ୍କ ଦୌତ୍ୟ ବିଫଳ ହେବା ପରେ ଗାନ୍ଧୀଜୀ କହିବାକୁ ଆରମ୍ଭ କଲେ ଯେ ଇଂରେଜ ଭାରତକୁ ତୁରନ୍ତ ଛାଡ଼ିଯାଅ । ଏଠି କ'ଣ ହେବ ସେ କଥା ଭଗବାନ ବୁଝିବେ । ସେ ଅନୁଭବ କରୁଥା'ନ୍ତି ଯେ ଜନତା ଭିତରେ ଇଂରେଜଙ୍କ ପ୍ରତି ବିଦ୍ୱେଷ ଯେପରି ବଢ଼ୁଛି ସେଥିରେ ତାଙ୍କ ଆଗରେ ସ୍ୱାଧୀନତାର ଲକ୍ଷ୍ୟ ଯଦି ତୁରନ୍ତ ନ ରଖାଯିବ ତେବେ ଏ ଇଂରେଜ ବିଦ୍ୱେଷ ଜାପାନ ପ୍ରତି ଆକର୍ଷଣରେ ପରିଣତ ହେବ ଓ ଲୋକେ ଜାପାନୀ ଗୋଲାମୀକୁ ସ୍ୱାଗତ କରିବେ ।

୧୯୪୨ ଏପ୍ରିଲ ପାଞ୍ଚ ତାରିଖ ଦିନ ମୁଁ ରାଷ୍ଟ୍ରୀୟ ସପ୍ତାହ ବିଷୟରେ ସଭା କରିବାକୁ ବରୁହାଁ କବୀରପୁର ଯାଇଥିଲି । ରାତିରେ ସେଠି ବିଶିଷ୍ଟ ଦେଶପ୍ରେମୀ ସୁରେନ୍ଦ୍ରଲାଲ ଘୋଷଙ୍କ ଘରେ ରହିଲି । ସେ ଓ ତାଙ୍କ ବଡ଼ଭାଇ ଦେବେନ୍ଦ୍ରଲାଲ ସେ ଅଞ୍ଚଳରେ କଂଗ୍ରେସର ଟାଣୁଆ ସମର୍ଥକ ଥିଲେ । ଛଅ ତାରିଖ ସକାଳେ ମୁଁ ସାଇକେଲ୍‌ରେ ବରୀ ଫେରୁଛି, ଦକ୍ଷିଣ-ପୂର୍ବ ଦିଗରୁ ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦ ବହୁ ସମୟ ଧରି ଚାଲୁଥିବାର ଶୁଣିବାକୁ ପାଇଲି । ଦିପହର ବେଳକୁ ବରୀ ଉପର ଦେଇ ଅଧଡ଼ଜନେ ଖଣ୍ଡେ ଉଡ଼ାଜାହାଜ ସେହି ଦିଗକୁ ଗଲା । ତା' ପରଦିନ ଖବର ମିଳିଲା ଯେ ଗୋଟାଏ ଜାପାନୀ ଯୁଦ୍ଧଜାହାଜ ଇଂରେଜ ପକ୍ଷର ଆଠଟା ମାଲବାହୀ ଜାହାଜକୁ କୂଳଙ୍ଗ ଉପକୂଳଠାରୁ ଅଳ୍ପଦୂରରେ ବୁଡ଼େଇ ଦେଇଛି । ସେଦିନ ଗୋଟାଏ ଜାପାନୀ ଉଡ଼ାଜାହାଜ କଟକ ସହର ଉପରେ ବି ଆସି ଘେରାଏ ଉଡ଼ିଯାଇଥିଲା ବୋଲି ଶୁଣିଲୁ । ପରେ ବୁଡ଼ନ୍ତା ଜାହାଜସବୁରୁ ଉଦ୍ଧାର ପାଇଥିବା ନାବିକ ସବୁ ଆସି କୂଳରେ ଲାଗିଲେ ଓ ସେମାନଙ୍କୁ କଟକକୁ ଅଣାହେଲା । ରେଭେନ୍‌ସା କଲେଜ ଛାତ୍ରବାସ ଆଦିରେ ସେମାନଙ୍କୁ ରଖାହେଲା ।

ଆହତମାନଙ୍କ ଦ୍ୱାରା କଟକ ବଡ଼ଡ଼ାକ୍ତରଖାନା ବୋଝେଇ ହେଇଗଲା । ଏମାନେ ସବୁ ଆମେରିକା ଓ ଅନ୍ୟାନ୍ୟ ଦେଶର ଲୋକ । ଇଂରେଜମାନେ ସେମାନଙ୍କର ଜାହାଜ ସବୁର ଉପଯୁକ୍ତ ସୁରକ୍ଷାର ବ୍ୟବସ୍ଥା ନ କରି ପଠେଇ ଦେଇଥିଲେ ବୋଲି ଏ ଲୋକମାନେ ଯେଉଁପରି ଗାଳି କରୁଥା'ନ୍ତି ତାହା କାନରେ ଶୁଣିହେବ ନାହିଁ ।

ଏ ଘଟଣାରେ ଓ ଜାପାନର ଅଗ୍ରଗତିର ଖବରରେ ଏକାଧାରରେ ଉତ୍ତେଜନା ଓ ଆତଙ୍କ ବ୍ୟାପିଲା । ଜାପାନ ଏଥର ଇଂରେଜଙ୍କୁ ସାବାଡ଼୍ କରିବ ବୋଲି ଲୋକେ ଖୁସି ବି ହେଲେ ଓ ତେଣେ କାଳେ କଟକ ଉପରେ ବୋମା ପଡ଼ିବ ବୋଲି ଭୟରେ କଟକ ଛାଡ଼ି ପଳେଇବାକୁ ଆରମ୍ଭ କଲେ । ସେତେବେଳେ ମୁଁ କଟକ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ଥାଏ । ଆମ ଅଫିସ୍ କଟକରୁ ମଫସଲକୁ ଉଠେଇ ନେବାକୁ ଆମେ ଠିକ୍ କଲୁ । ଲୋକେ ସହର ଛାଡ଼ି ଯାଆନ୍ତୁ ନାହିଁ ବୋଲି ସରକାରୀ ପ୍ରଚାର ହେଉଥାଏ ଓ ଆମର କେତେକ ନେତା ମଧ୍ୟ କହୁଥା'ନ୍ତି ଯେ ଏଭଳି କାପୁରୁଷତା ଠିକ୍ ନୁହେଁ । ଲୋକେ ଯୁଦ୍ଧର ବିପଦକୁ ସାହସର ସହିତ ସମ୍ମୁଖୀନ ହେବା ଉଚିତ । ଗାନ୍ଧୀଜୀ କିନ୍ତୁ ହରିଜନରେ ଗୋଟିଏ ଛୋଟ ଟିପ୍ପଣୀରେ ଲୋକେ ଶାନ୍ତିରେ ସହିତ ଶୃଙ୍ଖଳିତ ଭାବରେ ସହର ଛାଡ଼ିଯା'ନ୍ତୁ ବୋଲି ଇଶାରା ଦେଇଥିଲେ ।

ଆମକୁ ସହରରେ ରହିବା ପରାମର୍ଶଟା ଫମ୍ପା ବୀରତ୍ୱ ପରି ଲାଗୁଥାଏ । ଯେଉଁ ଯୁଦ୍ଧ ଆମର ନୁହେଁ ସେଥିରେ ତୁଚ୍ଛାଟାରେ ମରିବାର ବୀରତ୍ୱ ଆମେ କାହିଁକି ଦେଖେଇବା ? ଇଂରେଜଙ୍କ ବିରୋଧରେ ଆନ୍ଦୋଳନବେଳେ ପ୍ରକୃତ ବୀରତ୍ୱ ଦେଖେଇବାର ବେଳ ଆସିବ । ଜିଲ୍ଲା କଂଗ୍ରେସ ଅଫିସ୍ ସାଲେପୁର ଗଲା ।

ଆମେ ସେତେବେଳେ ଆସନ୍ନ ସଂଗ୍ରାମ ପାଇଁ ସଜବାଜ ହେଉଥାଉ । କ'ଣ କରିବାକୁ ହେବ, ଆନ୍ଦୋଳନଟା କି ପ୍ରକାରର ହେବ ସେ ବିଷୟରେ କିଛି ଜଣା ନ ଥାଏ । କେବଳ ଗାନ୍ଧିଜୀ ମଝିରେ ମଝିରେ ପଦେ ପଦେ କଥା କହି ଦେଉଥା'ନ୍ତି – "କର ବା ମର" ଆନ୍ଦୋଳନ ହେବ । ଏଥର ଆନ୍ଦୋଳନ 'ସର୍ଟ ଏଣ୍ଡ ସ୍ୱିଫ୍ଟ'- 'ସଂକ୍ଷିପ୍ତ ଓ କ୍ଷିପ୍ର' ହେବ । ଏଇଭଳି ପଦେ ପଦେ କଥାରେ ସେ ଛାତି ଭିତରେ ଉତ୍ସାହର ନିଆଁ ଜଳେଇ ହେଉଥା'ନ୍ତି । ଚାରିଆଡ଼େ କର୍ମୀମାନେ ବୁଲି ପ୍ରଚାର କାମରେ ଲାଗିଥା'ନ୍ତି । ଲୋକଙ୍କୁ ପରାମର୍ଶ ଦିଆଯାଉଥାଏ ଯେ ସଂଘବଦ୍ଧ ହେଇ ନିଜ ନିଜର ଗାଁର ଦାୟିତ୍ୱ ନିଅନ୍ତୁ, ସରକାର ଉପରେ ନିର୍ଭରଶୀଳତାରୁ ମୁକ୍ତ ହୁଅନ୍ତୁ ଓ ଯୁଦ୍ଧ ଉଦ୍ୟମରେ ସହଯୋଗ ନ କରନ୍ତୁ । ଏ ସବୁ ସାଙ୍ଗକୁ ଜିଲ୍ଲାସାରା ଖବର, ପରିପତ୍ର, ଚିଠି ଆଦି ନେବା ଆଣିବା କରିବା ପାଇଁ ଏକ ଗୁପ୍ତ ଡାକ ବ୍ୟବସ୍ଥାର ବି ସଙ୍ଗଠନ କରାଯାଉଥାଏ । ସ୍ୱୟଂସେବକମାନେ ଡାକ ନେଇ ଆଠ ଦଶ ମାଇଲରେ ପରବର୍ତ୍ତୀ ଲୋକଙ୍କୁ ଦେଇଆସନ୍ତି ଓ ଏହିପରି ହାତକୁ ହାତ ଡାକ ଚାଲେ ।

ଏଣେ ଶୁଣାଯାଉଥାଏ ଯେ ଭାରତ ସରକାର ଦେଶର ପୂର୍ବାଞ୍ଚଳଟାକୁ ଛାଡ଼ିଦେଇ ବନାରସଠାରୁ ତେଣିକି ଦେଶକୁ ରକ୍ଷା କରିବେ ବୋଲି ଠିକ୍ କରୁଛନ୍ତି । ଏ ପ୍ରକାରର ଜନରବକୁ

ସମର୍ଥନ ମିଳିଲା ଯେତେବେଳେ ସରକାର ଉପକୂଳ ଅଞ୍ଚଳରୁ ଡଙ୍ଗା, ସାଇକେଲ ଆଦି ସବୁ ଯାନବାହନ କାଢ଼ିନେବାକୁ ଲାଗିଲେ । ଏସବୁ ବଦଳରେ ମାଲିକମାନଙ୍କୁ ନୋଟ୍ ବିଡ଼ା ଧରେଇ ଦିଆଯାଉଥାଏ । ରେଳ ପୋଲମାନଙ୍କର ଗୋଟାଏ ଗୋଟାଏ ପାହିଆରେ ବନ୍ଧ କରି ଦରକାର ହେଲେ ସେଥିରେ ଡାଇନାମାଇଟ୍ ଖଞ୍ଜି ସେ ସବୁକୁ ଉଡ଼େଇ ଦେବାର ବ୍ୟବସ୍ଥା କରାଯାଇଥାଏ । ସରକାରୀ କର୍ମଚାରୀମାନେ ଆତଙ୍କିତ ହେଉଥା'ନ୍ତି । ବାଲେଶ୍ୱରର ଜଣେ ହାକିମ ଗୋଟାଏ କ'ଣ ଖବର ଶୁଣି ଦେଇ ଜାପାନୀ ଆସିଗଲେ ବୋଲି ବାଲେଶ୍ୱର ଛାଡ଼ି ପଳେଇଗଲେ ଓ ତାହା ପୂର୍ବରୁ ବାଲେଶ୍ୱର ପାଖରେ ରାସ୍ତାର ଏକ ସାନ ପୋଲକୁ ଭଙ୍ଗେଇଦେଲେ । ଦାଶରଥି ମହାନ୍ତି ନାମକ ଜଣେ କଂଗ୍ରେସ କର୍ମୀ ୱାଟରପ୍ରୁଫ୍ ଘୋଡ଼ି ହେଇ, ମୁଣ୍ଡରେ ଗୋଟାଏ ଟୋପର ଦେଇ ଯାଉଥିଲେ । ତାଙ୍କୁ ଜାପାନୀ ବୋଲି ସନ୍ଦେହ କରି ପୁଲିସ୍ ଗିରଫ କଲେ ।

ଆମେ ସବୁ ଜେଲ୍ ଭିତରେ ଥିବାବେଳେ ଯେଉଁ କରାଳ ଦୁର୍ଭିକ୍ଷ ୧୯୪୩ରେ ବଙ୍ଗଳା ପ୍ରଦେଶ ଓ ଉତ୍ତର ବାଲେଶ୍ୱରକୁ ଗ୍ରାସ କଲା ଓ ଯେଉଁଥିରେ ତିରିଶ ଲକ୍ଷ ସିରିକି ଲୋକ ପ୍ରାଣ ହରେଇଲେ ତାହା ପଛରେ ମଧ୍ୟ ଏକ ମୁଖ୍ୟ କାରଣ ଏହା ହିଁ ଥିଲା ଯେ ପୂର୍ବବଙ୍ଗରୁ ଡଙ୍ଗାଯାକ ହଟେଇ ନିଆଗଲା । ସେ ନଦୀମାତୃକା ଦେଶରେ ଡଙ୍ଗା ହିଁ ଯାତାୟତ ଓ ପରିବହନର ଏକମାତ୍ର ସାଧନ । ଏହା ଅଭାବରୁ ସେଠାରେ ଆର୍ଥିକ ଜୀବନ ଛିନ୍ନବିଚ୍ଛିନ୍ନ ହୋଇଗଲା । ଖାଦ୍ୟଶସ୍ୟ ମଧ୍ୟ ଯାହାକିଛି ସେସବୁ ଅଞ୍ଚଳରେ ମହଜୁଦ ଥିଲା ସେସବୁ ବି ଯେପରି ଜାପାନୀଙ୍କ ହାତରେ ନ ପଡ଼ିବ ସେଥିପାଇଁ ବାହାର କରି ଅଣାହେଲା । ଏସବୁ ପଦକ୍ଷେପରେ ଯାହା କିଛି କସର ରହିଲା ତାହା ଅର୍ଥଲୋଲୁପ ମହାଜନ ଓ ବେପାରୀମାନେ ପୂରା କରିଦେଲେ । ଆକାଶଚୁମ୍ବୀ ଲାଭ ଅର୍ଜିବା ଉଦ୍ଦେଶ୍ୟରେ ସେମାନେ ଖାଦ୍ୟଶସ୍ୟ ଲୁଚେଇ ରଖିଲେ, ଚୋରା ଚାଲାଣ କଲେ । ଏଇ ଦୁର୍ଭିକ୍ଷ ବଜାରରେ ଖାଦ୍ୟଶସ୍ୟରେ କଳାବଜାର ଓ ମୁନାଫାଖୋରୀ କରି ଯେଉଁମାନେ ଲକ୍ଷପତି ହେଇଥିଲେ, ସେହିମାନଙ୍କ ଭିତରୁ ପୁଣି କେଇଜଣ ସ୍ୱାଧୀନତା ପରେ ବଙ୍ଗଳା କଂଗ୍ରେସର ବଡ଼ପଣ୍ଡା ଓ ପଣ୍ଡିଆଣୀ ହେଉଥିଲେ ।

ଏ ପରିସ୍ଥିତିରେ କ'ଣ କରାଯିବ ଚାହି ସେ ବିଷୟରେ ଦେଖି ପରାମର୍ଶ ଦେବା ଉଦ୍ଦେଶ୍ୟରେ ଗାନ୍ଧୀଜୀ ମୀରାବେନ୍‌କୁ ଓଡ଼ିଶାକୁ ପଠେଇଥିଲେ । ଗାନ୍ଧୀଜୀ ପରାମର୍ଶ ଦେଉଥା'ନ୍ତି ଯେ ଜାପାନୀ ଆସି କୌଣସି ଅଞ୍ଚଳ ଦଖଲକଲେ ସେମାନଙ୍କ ସହିତ ଅହିଂସ ଅସହଯୋଗ କରିବାକୁ ହେବ । ଆମେ ଇଂରେଜମାନଙ୍କୁ ଯୁଦ୍ଧରେ ସମର୍ଥନ କରୁନାହୁଁ ଓ ଜାପାନୀମାନଙ୍କ ପ୍ରତି ଆମର ବିଦ୍ୱେଷ ନାହିଁ, ମାତ୍ର ଆମେ ସେମାନଙ୍କର ବଶ୍ୟତା ସ୍ୱୀକାର କରିବୁ ନାହିଁ । ଏଇକଥା ସେ କହୁଥା'ନ୍ତି । ମହତାବବାବୁଙ୍କ ମାରଫତ୍ ଖବର ମିଳିଲା ଯେ ଗାନ୍ଧୀଜୀ ବିଚାରୁଛନ୍ତି ଯେ ପୂର୍ବାଞ୍ଚଳରେ ଜାପାନୀ ପ୍ରବେଶ କରିବାର ସୂଚନା ମିଳିଲେ ସେ ସେ ଅଞ୍ଚଳର ସବୁ କର୍ମୀମାନଙ୍କୁ ନିଜ ପାଖକୁ ଡାକିନେବେ ।

ଏଇ ସବୁ ଭିତରେ ଦାଦା, ଜଗନ୍ନାଥ ମଉସା, ପଦ୍ମନାଭ ରାୟ, ମୁଁ ଓ ଆଉ କିଏ କିଏ

କଂଗ୍ରେସ ଚାନ୍ଦା ସଂଗ୍ରହ ଓ ପ୍ରଚାର ପାଇଁ ଦଳବାନ୍ଧି ବାହାରିଥାଉଁ ସ ଯାଜପୁରର ପୂର୍ବାଞ୍ଚଳରେ ବୁଲୁଥାଉଁ । ଦିନେ ଛତ୍ରପଡ଼ା ବା ତାହାରି ପାଖରେ କୌଣସି ଏକ ଗାଁରେ ସଭା ହେଲା । ଦାଦାର ଢଙ୍ଗ ହେଉଛି ଯେ ସେ ତା'ର ପୂରା ଥିସିସ୍‌ଟା ବୁଝାଇବା ପାଇଁ ଅଢ଼େଇ ଘଣ୍ଟା ତିନି ଘଣ୍ଟା ବକ୍ତୃତା ଦିଏ । ଏବେ ବି ସେ ଢଙ୍ଗ ଅଛି । ସେଦିନ ସଭାରେ ଯେତକ ଲୋକ ହୋଇଥିଲେ ରାତି ବଢ଼ିବା ସାଙ୍ଗେ ସାଙ୍ଗେ କ୍ରମେ କ୍ରମେ ଜଣ ଜଣ କରି ଉଠିଗଲେ । ଶେଷକୁ ଯଥାର୍ଥ ଶ୍ରୋତା ବାକୀ ରହିଲେ ମାତ୍ର ଜଣେ, ପାଖ ସ୍କୁଲର ଶିକ୍ଷକ ଓ ବାକୀ ଆମ ପ୍ରଚାରକ ଦଳର ବାଧ୍ୟତାମୂଳକ ଶ୍ରୋତା ତିନି ଚାରିଜଣ । ପ୍ରଚାରକ ଦଳର ଜଗନ୍ନାଥ ମଉସା ହେଉଛନ୍ତି ବି ପଳେଇ ଯାଇଥିଲେ । ଦାଦା ସେହି ଜଣେ ଶ୍ରୋତାକୁ ଅନ୍ତତଃ ଆଉ ଚାଳିଶ ପଇଁଚାଳିଶ ମିନିଟ୍ ଯାଏ ବକ୍ତୃତା ଶୁଣେଇ ନିଜର ଥିସିସ୍ ଶେଷ କଲା । ଆମେ ସମସ୍ତେ ସେତେବେଳକୁ ଛଟପଟ ହେଲୁଣି ଯେ, କାହିଁରେ କ'ଣ । ଏହାର ଅଳ୍ପଦିନ ପରେ ଅଗଷ୍ଟ ଆନ୍ଦୋଳନ ଆରମ୍ଭ ହୋଇଗଲା । ଆମେ ସବୁ ନଅ ଦଶ ତାରିଖକୁ କଟକ ଜେଲ୍‌ରେ ପହଞ୍ଚିଲୁ । ଯାଜପୁରରୁ ବନ୍ଦୀମାନେ ଆଉ ଦୁଇଚାରିଦିନ ପରେ ଆସି ପହଞ୍ଚିବାକୁ ଲାଗିଲେ । ଦେଖାଗଲା ଯେ ସେଠାର ପ୍ରଥମ ଦଳ ଭିତରେ ସେହି ଶିକ୍ଷକ ଜଣକ ଅଛନ୍ତି । ଦାଦା କହିଲା - "ଯାହାହେଉ ସେ ଦିନର ପରିଶ୍ରମଟା ସାର୍ଥକ ହେଲା ।" ଆମେ କହିଲୁ- "ହଁ ଶତକଡ଼ା ଶହେ ସାର୍ଥକ ।"

## ଚୁନୀ ବାହାଘର

ଆମେସବୁ ପିଲାଦିନେ ଚନ୍ଦ୍ରମୋହନ ମହାରଣାଙ୍କର ଲେଖା କଥାବଳୀ ଓ ଆଉସବୁ କ'ଣ ବହି ପଢ଼ିଥାଉଁ । କିନ୍ତୁ ସେତେବେଳେ ବହିର ଲେଖକମାନଙ୍କୁ ଆମ ହାତପାହାନ୍ତା ବାହାରର ଆଉ ଏକ ଦୁନିଆର ଲୋକବୋଲି ଭାବୁଥାଉଁ । ମଧୁସୂଦନ ରାଓ, ରାଧାନାଥ ରାୟ, ଚନ୍ଦ୍ରମୋହନ ମହାରଣା, ପ୍ୟାରୀମୋହନ ସରକାର ହେଉଛନ୍ତି ଯାହାଙ୍କର ବହି ଆମେ ପଢୁ ସେମାନେ କ'ଣ ଆମେ ଯାହାଙ୍କୁ ସବୁଦିନେ ଦେଖୁଛୁ ସେହିମାନଙ୍କ ଭଳି କେହି ହୋଇଥିବେ ? ବାପା ଚନ୍ଦ୍ରମୋହନବାବୁ କିପରି ଭଲ ଶିକ୍ଷକ ଥିଲେ ସେ ବିଷୟରେ କେତେକ ଗପ କହିଥିଲେ । ତା' ପରେ ମୌଳିକ ଶିକ୍ଷା କାମରେ ଶରତବାବୁ ଯେତେବେଳେ ଆସି ପହଞ୍ଚିଲେ ଲେଖକଙ୍କ ଦୁନିଆ ଓ ଆମ ଦୁନିଆ ଏକ ହୋଇଗଲା । ୧୯୪୦ ରେ ଯେତେବେଳେ ମୌଳିକ ଶିକ୍ଷାକୁ ସରକାରୀ ସାହାଯ୍ୟ ବନ୍ଦ ହେଲା ଓ ତାହା ସ୍ୱାଧୀନ ଭାବରେ ଚଳାଇବା ପାଇଁ ଶିକ୍ଷକ ତଥା ଗ୍ରାମବାସୀମାନେ ଅଣ୍ଟା ଭିଡ଼ିଲେ ସେତେବେଳେ ଶରତବାବୁ ବି ସରକାରୀ ଚାକିରୀରୁ ଇସ୍ତଫା ଦେଇ ମୌଳିକ ଶିକ୍ଷା କାମରେ ନିଜକୁ ନିୟୋଜିତ କରିବାର ସଙ୍କଳ୍ପ କଲେ ।

୧୯୪୨ ରେ ଚୁନୀ ସାଙ୍ଗରେ ଶରତବାବୁଙ୍କର ବାହାଘର ସ୍ଥିର ହେଲା ଓ ଫେବୃୟାରୀ ମାସରେ ବାହାଘର ହେଲା । ବାହାଘର ସ୍ଥିର ହେବା ଖବର ଶୁଣି କଟକରେ ଆମର ପିସୀ ପୁଅ ଭାଇ କୁଳନା, ବାଜି ହେଉଛନ୍ତି ବାହାଘର ପାଇଁ ଗୀତ ଲେଖିବା ଆରମ୍ଭ କଲେ । ସେମାନେ

"ଶରତ, ନେ କରତ" ଯାଏ ଆଗେଇଛନ୍ତି; ବୋଧେ ଯାଇ ତଥ୍ୟ ପରିବେଷଣ କଲା ଯେ ଶରତବାବୁ ବଡ଼େଇ ନୁହଁନ୍ତି, କମିଲା । ସେଠୁ ସେମାନଙ୍କର ବେଲୁନରୁ ହାୱା ବାହାରିଗଲା, କରତକୁ ବାଦଦେଲେ ଆଉ କୋଉଥିରେ ଯତି ମିଳିପାରିବ ତା'ର ବୁଦ୍ଧି ବୁଲେଇଲା ନାହିଁ ।

ବାହାଘର ଖୁବ୍ ସାଧାସିଧା ଢଙ୍ଗରେ ହେଲା । ବାହାଘରୁ ଆମର ନିକଟ ବନ୍ଧୁବାନ୍ଧବ ଓ କଂଗ୍ରେସ ତଥା ରଚନାତ୍ମକ କର୍ମୀଙ୍କ ଭିତରୁ ମୁଖ୍ୟ ମୁଖ୍ୟ ବ୍ୟକ୍ତିମାନେ ଆସିଥିଲେ ଓ ଆଖପାଖ ଗାଁ ଲୋକମାନେ, ମୌଳିକ ଶିକ୍ଷକମାନେ ସବୁଥିଲେ । ବରଯାତ୍ରୀ ଲୋକନାଥବାବୁ ପ୍ରଭୃତି ଅଳ୍ପ କେତେଜଣ ଆସିଥିଲେ । ଖାଇବା ପ୍ରକାର ଆଶ୍ରମ ଢଙ୍ଗରେ ହିଁ ହେଇଥିଲା । ବାହାଘର ଦିନବେଳେ କରାଗଲା । ଆଚାର୍ଯ୍ୟ ମହାଶୟ ମୁଖ୍ୟ ପୁରୋହିତ ହେଇଥିଲେ । ବରକନ୍ୟା ରାମଚନ୍ଦ୍ରପୁରରେ ଶରତବାବୁଙ୍କ ବସାକୁ ଚାଲି ଚାଲି ହିଁ ଗଲେ । ଏହାପରେ ସେମାନେ ରେମୁଣା, ଶରତବାବୁଙ୍କ ଗାଁକୁ, ଗଲେ । ଆଚାର୍ଯ୍ୟ ମହାଶୟ ଓ ମୁଁ ସେମାନଙ୍କ ସାଙ୍ଗରେ ଗଲୁ । ବରାରୁ ଯଥାବିଧି ରାତିରେ ବଳଦଗାଡ଼ିରେ ବାହାରିଲୁ, ହରିଦାସପୁରରେ ଯାଇ ତହିଁ ଆରଦିନ ରେଳଗାଡ଼ି ଧରିବୁ ବୋଲି । ସକାଳେ ଧର୍ମଶାଳା ପାଖରେ ଆଚାର୍ଯ୍ୟ ମହାଶୟ ଓ ମୁଁ ବସିଥିବା ଗାଡ଼ିଟି ବନ୍ଧଉପରୁ ଗଡ଼ିଯାଇ ଲେଉଟି ପଡ଼ିଲା । ଗାଡ଼ିର ଛଇ ଭିତରେ ଥାଇ ଆମେ ଦୁହେଁ ଗଡ଼ାଏ ଖାଇଲୁ । ମାତ୍ର ଭାଗ୍ୟକୁ କାହାରିକୁ କୌଣସି ବିଶେଷ ଆଘାତ ଲାଗିଥିବାର ଦେଖାଗଲା ନାହିଁ ।

## ଭାରତଛାଡ଼ ଆନ୍ଦୋଳନ

ଆନ୍ଦୋଳନ ବିଷୟରେ ଗାନ୍ଧୀଜୀଙ୍କର ପାଖଆଖରେ କ'ଣ କ'ଣ ବିଚାର ଚାଲିଛି ତା'ର ଟିକିଏ ଆଭାସ ନାନା ସୂତ୍ରରୁ ମିଳୁଥାଏ । ଗାନ୍ଧୀ ସେବା ସଂଘର ସଦସ୍ୟମାନଙ୍କର ବୈଠକ ସେବାଗ୍ରାମରେ ହେଲା । ବାପା ସେଠିକି ଯାଇଥିଲେ । ଆସି ସେଠାର ସବୁ ଆଲୋଚନା ବର୍ଣ୍ଣନା କଲେ । ମୋର କେବଳ ଏତିକି ମନେଅଛି ଯେ ଗାନ୍ଧୀଜୀ ପଚାରିଲେ ଯେ ଖଦୀ କର୍ମୀଙ୍କ ଭିତରୁ ଆନ୍ଦୋଳନ ପାଇଁ କେତେ ବାହାରିବେ ବୋଲି ଆଶା କରାଯାଉଛି ? ଜବାବ ମିଳିଲା - " ଏତେ ବାହାରିବେ ?" ମହତାବବାବୁଙ୍କଠାରୁ ଶୁଣିବାକୁ ମିଳିଥିଲା ଯେ ଆନ୍ଦୋଳନ ବେଳେ କ'ଣ କରାଯାଇପାରିବ କ'ଣ ନୁହେଁ ଏ ସବୁନେଇ ସେଠି ଆଲୋଚନା ଚାଲିଥାଏ । ଡାକବାକ୍ସ ପୋଡ଼ିଦେବା, ରେଳପୋଲ ଭାଙ୍ଗିଦେବାର କାର୍ଯ୍ୟକ୍ରମ ନିଆଯାଇପାରେ ବୋଲି କେହି କେହି ମତ ଦେଉଥା'ନ୍ତି । ଗାନ୍ଧୀଜୀ ସେ ସବୁ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ମତ ନ ଦେଇ ସେସବୁର ସପକ୍ଷ ବିପକ୍ଷ ଯୁକ୍ତି ଆଲୋଚନା କରୁଥା'ନ୍ତି ।

ଅଗଷ୍ଟ ସାତ ଓ ଆଠରେ ବମ୍ବେରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ବସି ସେଠି ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେଲା । ସେଠି ଗାନ୍ଧୀଜୀ ତାଙ୍କ ବକ୍ତୃତାରେ କହିଥିଲେ ଯେ ମୁଁ ଆନ୍ଦୋଳନ ଆରମ୍ଭ କରିବା ପାଇଁ ତରତର ନୁହେଁ । ମୁଁ ପ୍ରଥମେ ବଡ଼ଲାଟଙ୍କୁ ଚିଠି ଲେଖିବି । ତାଙ୍କ ସହିତ ଦେଖା କରିବି । ତାହା ପରେ ଯାହା ହେବ । ଏହା ଦ୍ୱାରା ସେ ନିଜ ହାତରେ

ଅତିକ୍ରମ ରଖିବାକୁ ଚାହୁଁଥିଲେ, କିନ୍ତୁ ସରକାର ତାହା କରେଇଦେଲେ ନାହିଁ । ଅଗଷ୍ଟ ନଅ ରାତି ଅନ୍ଧାର ଥାଉଁ ଥାଉଁ ଗାନ୍ଧୀଜୀଙ୍କ ସମେତ ସବୁ ନେତାଙ୍କୁ ଗିରଫକରି ନିଆଗଲା । ସାରାଦେଶରେ ଗିରଫଦାରୀମାନ, ଦମନ ଓ ଆନ୍ଦୋଳନର ନିଆଁ ହୁ ହୁ ହେଇ ଜଳିଉଠିଲା ।

ବାପା ହେଗିକା ନଅ ତାରିଖ ଦିନ କଟକରେ ଗିରଫ ହେଲେ । ଆମେ ସବୁ କେତେଜଣ ନଅ ତାରିଖ କୁମୁଡ଼ା ଜୟପୁର ହାଟରେ ସଭା କରିବାକୁ ଯାଇଥିଲୁ । ଅନେକ ରାତିରେ ଫେରିଲୁ । ମତେ ଦଶ ତାରିଖ ସକାଳେ ସାଲେପୁରରେ ଗିରଫ କରାହେଲା । କଟକ ଜେଲ୍‌ରେ ପହଞ୍ଚି ଦେଖିଲି ଯେ ସରକାର କାହାରିକୁ ଛାଡ଼ିନାହିଁ । ସମ୍ଭବ ଅସମ୍ଭବ ସବୁ ଲୋକଙ୍କୁ ଗୁଣ୍ଡେଇ ଆଣିଛି । ଯେଉଁମାନେ ୧୯୨୨ ରେ କେବେ ଆନ୍ଦୋଳନରେ ଯୋଗଦେଇ ତା'ପରେ ଏତେକାଳ ଘରେ ବସି ଯାଇଥିଲେ ସେମାନଙ୍କୁ ବି ଗୋଟେଇ ଅଣାଯାଇଛି । କ୍ରମେ କିଛି କାର୍ଯ୍ୟ କରି ଆସିଥିବା ଲୋକସବୁ ନାନାଆଡୁ ଆସିବାକୁ ଲାଗିଲେ । ସେମାନଙ୍କଠାରୁ ବାହାରର ଘଟଣାର ବିବରଣୀ ମିଳିବାକୁ ଲାଗିଲା । ଦେଖାଗଲା ଯେ ଯାଜପୁର ସବ୍‌ଡ଼ିଭିଜନ୍‌ରେ ହିଁ ସବୁଠୁ ଅଧିକ ବିକ୍ଷୋଭ ହୋଇଛି । ଯାଜପୁର ସହରରେ ପୂର୍ବଯାଜପୁରଆଡୁ ଆସିଥିବା ବହୁ ସହସ୍ର ଲୋକ କଚିରୀ ଘେରାଉକରି ସରକାରୀ କର୍ମଚାରୀମାନଙ୍କର ଇସ୍ତଫା ଦାବି କରିଥିଲେ । ବରୀ ଅଞ୍ଚଳରୁ ଦଳ ଦଳ ହେଇ କର୍ମୀ ଓ ଲୋକ ବାହାରି ପାଖଆଖ ଅଞ୍ଚଳରେ ବୁଲି ଡାକଘରମାନଙ୍କର କାଗଜପତ୍ର ନଷ୍ଟ କରିବା, ଅଫିମ ଗଞ୍ଜେଇ ଦୋକାନରୁ ନିଶାଦ୍ରବ୍ୟ ନେଇ ପୋଡ଼ିଦେବା, ଚୌକିଦାର ଓ ଦଫାଦାରମାନଙ୍କର ପୋଷାକ ପୋଡ଼ିଦେବା ଓ ସେମାନଙ୍କୁ ସରକାରୀ ଚାକିରୀ ଛାଡ଼ିବା ପାଇଁ ପ୍ରବର୍ତ୍ତେଇବା, ଏହିଭଳି ସବୁ କାମ କରିଥିଲେ । ମୌଳିକ ବିଦ୍ୟାଳୟମାନଙ୍କର ପ୍ରାୟ ସମସ୍ତ ଶିକ୍ଷକ ଏ ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲେ । ଅଗଷ୍ଟ ଛବିଶ ତାରିଖରେ କଳାମାଟିଆଠାରେ ଏକ ଜନସଭା ଉପରେ ଗୁଳି ଚଳାଇ ପୁଲିସ ଚାରିଜଣଙ୍କୁ ହତ୍ୟା କରିଥିଲା ।

ଏହି ସମୟରେ ଅରଙ୍ଗାବାଦରେ ଆଉ ଏକ କାଣ୍ଡ ହେଲା । ଆନ୍ଦୋଳନର ଉତ୍ତେଜନାର ସୁଯୋଗନେଇ ସେ ଗାଁର ଗୋଟିଏ ଦଳ ଏକ ବିରୋଧୀ ପରିବାର ଉପରେ ଦାଉସାଧିଲେ । ତାଙ୍କର ଘର ଓ ଦୋକାନ ଲୁଟିନେଲେ । ପରିବାରର ଲୋକଙ୍କୁ ମାରପିଟ୍ କଲେ । ଅଳ୍ପ ସମୟ ପରେ ବରୀ ଅଞ୍ଚଳରେ ଦମନଲୀଳା ଆରମ୍ଭ ହେଲା । ବହୁତ ଲୋକ ଗିରଫ ହେଲେ । ଗାଁ ଉପରେ ପିଟୁଣୀ ଟିକସ ବସିଲା । ବରୀ ସେବାଘରକୁ ସବୁ ଅନିଷ୍ଟର ମୂଳ ମନେକରାଯାଇ ତାକୁ ସମୂଳେ ଧ୍ୱଂସ କରିଦେବା ପାଇଁ ସରକାର ଆଦେଶ ଦେଲେ । ଡେପୁଟୀ ମାଜିଷ୍ଟ୍ରେଟ୍ ମୁସାଏବ ଖାଁ ପୁଲିସ ଫୌଜ ନେଇ ଏଥିପାଇଁ ଗଲେ । ପ୍ରଥମେ ଘରକୁ ପୋଡ଼ିବା ଚେଷ୍ଟାକଲେ । ମାତ୍ର ବର୍ଷାଯୋଗୁଁ ଚାଳ ଭିଜାଥିବାରୁ ନିଆଁ ଧରିଲା ନାହିଁ । ତେଣୁ ଘରକୁ କୁରାଢ଼ୀରେ ହାଣି ଭୂମିସାତ କଲେ, କାଗଜପତ୍ର ନଷ୍ଟଭ୍ରଷ୍ଟ କରିଦେଲେ । ଅନେକ ବହିପତ୍ର ଓ ଜିନିଷପତ୍ର ଲୁଟିନେଇଗଲେ । କିଛି ଜିନିଷ ଗାଁ ଲୋକେ ପାଇ ସାଇତି ରଖିଥିଲେ । ୧୯୪୫ ରେ ଆମେ ବରୀ ଫେରିବା ମାତ୍ରେ ଗୋଟି ଗୋଟି କରି ଆଣି ଫେରେଇ ଦେଇଗଲେ ।

ବାହାରେ ଆନ୍ଦୋଳନ ତା'ର ଗତିରେ ଚାଲିଥାଏ । ଆମେ ଜେଲ୍‌ଭିତରେ ଗୋଟାଏ ଅଲଗା ଦୁନିଆରେ ଥାଉ । କେଇଦିନ ଭିତରେ ଜେଲ୍ ଭରପୂର ହେଇଗଲା । କଟକରୁ ବହୁତ ଯୁବକ,ଛାତ୍ର ଧରାହେଇ ଆସିଲେ । ସାରାଦିନ ହୁଲସ୍ଥୁଲ ବ୍ୟାପାର ଚାଲିଥାଏ । ରାତିରେ ନମ୍ବର ବନ୍ଦ ହେବା ନାହିଁ । ଦିନବେଳେ ସବୁ ୱାର୍ଡ଼ ଭିତରେ ଯିବା ଆସିବା ବାଟ ଖୋଲାରହିବ । ଅମୁକ ଜିନିଷ ଖାଇବୁ ନାହିଁ, ଅମୁକ ଜିନିଷ ଦରକାର, ଇତ୍ୟାଦି ସବୁ ଦାବିରେ, ଜେଲ୍‌ରେ ଯେମିତି ସାଧାରଣତଃ ହୁଏ, ସେମିତି ଆନ୍ଦୋଳନ ଆରମ୍ଭ ହେଇଗଲା । ସବୁ ୱାର୍ଡ଼ର ବାଟ ଖୋଲା ରହିବା, ରାତିରେ ନମ୍ବର ବନ୍ଦ ନ ହେବା ଆଦି ଦାବି ପୂରଣ ବି ହେଇଗଲା । ଜେଲ୍‌ରେ ନିୟମ ମାନି ଚଳିବାର ଧାରାଟା ପୂରା ଓଲଟି ଗଲା ।

## ଅନୁଗୁଳ ବଦଳି

ଦିନେ ସକାଳେ ହଠାତ୍ ଆମକୁ ଖବର ଦିଆହେଲା ଯେ ଆମଭିତରୁ ଆଠଜଣ ଅନୁଗୁଳ ଜେଲ୍‌କୁ ବଦଳି ହେବେ, ତୁରନ୍ତ । ଏ ଆଠଜଣଙ୍କ ଭିତରେ ମୋର ବି ନାଁ ଥାଏ । ଅନ୍ୟମାନେ ହେଲେ ଦାଦା, ଟୁଙ୍ଗୁମାମୁଁ, ସୁଧୀରବାବୁ, ମଦନବାବୁ, ରାଜୁଦା, ସୁରେନ୍ଦ୍ର ପଟ୍ଟନାୟକ ଓ ପାଗଳା ବୈକୁଣ୍ଠ । ଜେଲ୍ ଭିତରେ ହେଉଥିବା ଆନ୍ଦୋଳନର ଆମେଇସବୁ ସୂତ୍ରଧର ବୋଲି ସରକାରଙ୍କର ଧାରଣା ହେଲା କି କ'ଣ । ଆମେ ଅନୁଗୁଳ ଯିବା ବାଟରେ ଯାହାସବୁ କାଣ୍ଡ କଲୁ ସେଥିରୁ ଏ ଧାରଣା ଆହୁରି ଦୃଢ଼ ହେଇଥିବ ।

ଆମେ ଜେଲ୍ ଫାଟକରୁ ପଦାକୁ ବାହାରି ଦେଖିଲୁ ଯେ ଆମପାଇଁ ଗୋଟାଏ ଛୋଟ ବସ୍ ଆସିଛି- ଯାହାକୁ କୁହାଯାଉଥିଲା ହାଫ୍ ଟନ୍ ବସ୍, ଓ ଜଣେ ହାବିଲଦାରଙ୍କ ନେତୃତ୍ୱରେ ସାତଜଣ ସଶସ୍ତ୍ର ସିପେହୀ । ସେ ପଚସ୍ତରୀ ମାଇଲ ବାଟ ଏଡ଼ିକି ବସ୍‌ଟିରେ ଷୋଳଜଣ ଲୋକ ଖୁନ୍ଦିହୋଇ ଯିବେ କେମିତି ? ଆଉ ଗୋଟାଏ ଏହିପରି ବସ୍ ନ ହେଲେ ଗୋଟାଏ ବଡ଼ ବସ୍, ମଗାଅ । ହାବିଲଦାର ଆମକୁ ବୁଝାବୁଝି କରିବାକୁ ଚେଷ୍ଟାକଲେ ଯେ, ଏବେ ଆଉ ବସ୍ କେଉଁଠୁ ଆସିବ । ଆପଣଙ୍କୁ ଅନୁଗୁଳ ପହଞ୍ଚେଇଦେଇ ଦୁଇଟାବେଳେ ଫେରାରେ ମହାନଦୀ ପାରିହେଇ ଫେରିଆସିବାକୁ ପୁଲିସ୍ ସାହେବ ଆମକୁ ହୁକୁମ୍ ଦେଇଛି- ଇତ୍ୟାଦି ଇତ୍ୟାଦି କହି ଅନୁନୟ କରିବାକୁ ଲାଗିଲେ । କିନ୍ତୁ ଆମେ ଜିଦ୍ ଧରି ବସିଲୁ ଓ ଟେଲିଫୋନ୍‌ରେ ପୁଲିସ୍ ସାହେବଙ୍କୁ ବସ୍‌କଥା ଜଣେଇବା ପାଇଁ କହିଲୁ । ସେ ଟେଲିଫୋନ୍ କଲେ । ପୁଲିସ ସାହେବ ବୋଧହୁଏ ତାଙ୍କୁ ହୁକୁମ୍ ଦେଲେ ଆମକୁ ଜୋରକରି ଗାଡ଼ିରେ ବସାଇବା ପାଇଁ । ହାବିଲଦାର ପୁଣି ଆସି ଆମକୁ ଗାଡ଼ିରେ ବସିବାକୁ ଅନୁରୋଧ କଲେ । ଜୋର୍ ଜବରଦସ୍ତି କରିବାକୁ ସାହସ କଲେ ନାହିଁ । ଆମେ ନ ମାନିବାରୁ ସେ ପୁଣି ପୁଲିସ ସାହେବଙ୍କୁ ଫୋନ୍ କଲେ ।

ସେଦିନ ରବିବାର ଥାଏ । ସେତେବେଳେ ପୁଲିସ୍ ସୁପରିଟେଣ୍ଡେଣ୍ଟ ଥା'ନ୍ତି ହାରଗ୍ରିଭ୍ ସାହେବ । ଆମେ ତାଙ୍କୁ କହୁଥାଉ 'ହୟଗ୍ରୀବ' । ଶନିବାର ରାତିରେ ଅନେକ ଡେରିଯାଏ

କ୍ଲବରେ ନାଚତାମସା କରି ବୋଧହୁଏ ସେ ସକାଳୁ ଡେରିରେ ଉଠି ଖିଅର ହେଉଥିଲେ । ଫୋନ୍ ପାଇ ଧାରମୁଣ୍ଡିଧରି ସେଇଠୁ ଉଠି ଆସିଲେ । ଗୋଟାଏ ଗାଲରେ ଖୁର ବୁଲିଛି, ଆରପାଖ ଗାଲରେ ସାବୁନ ବୋଳା । ସେ ପହଞ୍ଚିବା ମାତ୍ରେ ହୁକୁମଦେଲେ ଆମକୁସବୁ ଜୋରକରି ଟେକିନେଇ ବସ୍‌ରେ ପୁରାଇବା ପାଇଁ । ଆମେ ଆଗରୁ ଏହା ଅନୁମାନ କରିଥିଲୁ, ସେଥିପାଇଁ ସେ ଆସିବା ବେଳକୁ ସମସ୍ତେ ହାତ ଗୋଡ଼ ଛନ୍ଦାଛନ୍ଦି ହେଇ ତଳେ ବସିଯାଇଥିଲୁ, କେବଳ ଟୁଙ୍ଗୁମାମୁଁଙ୍କ ଛଡ଼ା । ପୁଲିସ ସିପାହୀମାନେ ଅଧାପନ୍ତରିଆ ଭାବରେ ଆମକୁ ଧରି ଟଣାଓଟରା ଆରମ୍ଭ କଲେ । ଆମେ ଜୋର୍‌ରେ ଧ୍ୱନିସବୁ ଦେବା ଆରମ୍ଭ କଲୁ । ରାସ୍ତାରେ ଲୋକେ ଜମିଗଲେ । ଜେଲ୍‌ର ୱାର୍ଡ଼ରମାନେ ବି ଘଟଣା ଦେଖିବାକୁ ବହୁ ସଂଖ୍ୟାରେ ଗୁଣ୍ଡ ହେଇଗଲେ ।

ଜେଲ୍ ଫାଟକ କଡ଼ରେ ରାଜବନ୍ଦୀମାନଙ୍କ ପାଇଁ ଆସିଥିବା ଗୁଡାଏ ନୂଆ କାଠ ଖଟ ଥାକମରାହେଇ ଗୋଟାଏ ଉଚ୍ଚ ମଞ୍ଚପରି ଜମା ହୋଇଥାଏ । ଇତି ମଧ୍ୟରେ ଟୁଙ୍ଗୁମାମୁଁ ତାହା ଉପରକୁ ଚଢ଼ିଯାଇ ହିନ୍ଦୀରେ ବକ୍ତୃତା ଆରମ୍ଭ କରି ଦେଇଥା'ନ୍ତି । ଦେଖ, ଏ ଇଂରେଜମାନେ ଏ ଦେଶକୁ ଆସି କିପରି ଆମ ଉପରେ ଅତ୍ୟାଚାର ଚଳେଇଛନ୍ତି ଆମେ ଏଠି ସମସ୍ତେ ଭାରତୀୟ, ଆମ ଭିତରେ ଗୋଟାଏ ଇଂରେଜ ଆସି କି କାଣ୍ଡ କରୁଛି, ଇତ୍ୟାଦି । ତାଙ୍କର ଅନର୍ଗଳ ଓ ଖଣ୍ଡି ହିନ୍ଦୀରେ ବକ୍ତୃତା ଚାଲିଥାଏ । ହୟଗ୍ରୀବ ସାହେବ ତାହା ବୁଝିପାରିଥିବେ ଓ ବୋଧହୁଏ ଟିକିଏ ଡରିଗଲେ । ସେଥିପାଇଁ ଟଣାଓଟରା ବନ୍ଦ କରିଦେଇ ସେ ଦାଦା ଓ ଟୁଙ୍ଗୁମାମୁଁଙ୍କ ସାଙ୍ଗରେ କଥାବାର୍ତ୍ତା ଆରମ୍ଭ କଲେ । ଆପଣମାନେ କାହିଁକି ଏମିତି କରୁଛନ୍ତି ବୋଲି ପଚାରିଲେ । ଏମାନେ କହିଲେ ଯେ ଏଇ କଥାଟା ତ ପ୍ରଥମରୁ ପଚାରିଲେ ହେଇଥା'ନ୍ତା । ଦାଦା ସାଙ୍ଗରେ ଢେର ସମୟଯାଏ ତାଙ୍କର ଯୁକ୍ତିତର୍କ ଚାଲିଲା । ଆମେ ଗଣତନ୍ତ୍ର ରକ୍ଷାପାଇଁ ଜୀବନମରଣ ସଂଗ୍ରାମରେ ପଶିଥିବାବେଳେ ଆପଣମାନେ ଏ ସବୁ ଗଣ୍ଡଗୋଳ ଆରମ୍ଭ କରୁଛନ୍ତି । ମୋ ଭଉଣୀ ଯାଇ ଯୁଦ୍ଧକ୍ଷେତ୍ରରେ ଜୀବନକୁ ପାଣି ଛଡ଼େଇ ନର୍ସ କାମ କରୁଛି । ଏହିପରି ସବୁ ଯୁକ୍ତି ହୟଗ୍ରୀବ କରୁଥା'ନ୍ତି । ଦାଦା ଜବାବ ଦେଉଥାଏ ଯେ ଆମେ ବି ଗଣତନ୍ତ୍ର ପାଇଁ ଲଢ଼ିବାକୁ ପ୍ରସ୍ତୁତ, କିନ୍ତୁ ତମ ସରକାର ଏଠି କୋଉ ଗଣତନ୍ତ୍ର ଚଳେଇଛି ? ଏହିପରି ଢେର ବେଳଯାଏ ଚାଲିବା ପରେ ସେ ଆଉ ଗୋଟାଏ ଗାଡ଼ି ମଗେଇଲେ । ଆମେ ଦୁଇଟା ଗାଡ଼ିରେ ବାଣ୍ଟିକରି ବୋଝେଇ ହେଲୁ । ଆମର ସାମାନ୍ୟ ଜିନିଷପତ୍ର ସାଙ୍ଗକୁ ଆଠ ଜଣଙ୍କର ଆଠଟା କମୋଡ୍ ବି ଗାଡ଼ି ଉପରେ ଲଦାହେଲା ।

ଚନ୍ଦଟା ଘାଟରେ ପୂରା ଜମିଦାରୀ ଥାଟରେ ମୋଟର ଲଞ୍ଚରେ ପାରିହେଇ ସେପାରିକୁ ଗଲୁ । ଗାଡ଼ିଗୁଡ଼ାକ ବି ଅବଶ୍ୟ ସାଙ୍ଗରେ ଗଲା । ସେପାରିରେ ପହଞ୍ଚି ସାମନାରେ ଥିବା ଚାହା ଜଳଖିଆ ଦୋକାନରେ ବସି ବରା ଗୁଲୁଗୁଲା ଆଦି ଖିଆ ହେଲା । ଚାହା ପିଆ ହେଲା । ଇତି ମଧ୍ୟରେ ସୁଧୀରବାବୁ ଆବିଷ୍କାର କଲେ ଯେ ବସ୍‌ଗୁଡାକର ପେଟ୍ରୋଲ ଟାଙ୍କିର ମୁହଁ ଗାଡ଼ିଭିତରେ ରହିଛି । ସେଇଠି ସୋରେଇ ବି ଥିଲା । ସୁଧୀରବାବୁ ପାଣି ଗଡ଼େଇ ଅଧଗିଲାସେ ପିଇ ବାକିତକ

ଟାଙ୍କି ଭିତରେ ଢାଳିଦେଲେ । ଗାଡ଼ି ଏହାପରେ ଅନ୍ତବାଟ ଯାଇଛି, ଏହାର ଫଳ ଫଳିଲା । ଆମର ଏ ଗାଡ଼ିଟି ପଛରେ ଥିଲା, ବାଟରେ ଠପ୍ ହେଲା । ଯେତେ ହେଣ୍ଡେଲ୍ ମାରିଲେ ଠେଲିଲେ, ଯାହା କଲେ ବି, ଚାଲିଲା ନାହିଁ । ଆଗରେ ଥିବା ଅନ୍ୟ ଗାଡ଼ିଟି ବହେ ବାଟ ମାଲସାରିଲା ପରେ ପଛରେ ଆମ ଗାଡ଼ିକୁ ନ ଦେଖି ଫେରିଆସିଲା । ଦିନ ବାରଟା ବାଜିବାର ଉପକ୍ରମ ହେବାରୁ ସୁଧୀରବାବୁ ଡ୍ରାଇଭରକୁ କହିଲେ - "ମତେ ଟିକିଏ ଦେଇ ମୁଁ ଦେଖେ । ବର୍ମାରେ ଥିବାବେଳେ ମୁଁ ଗାଡ଼ି ଚଳଉଥିଲି । ମରାମତି କାମ ବି ଟିକିଏ ଟିକିଏ ଜାଣେ ।"

ଥିଲା ଆଉ କ'ଣ ? କାର୍ବୁରେଟରକୁ ଫିଟେଇଲେ । ସେଥିରେ ପାଣି ଭର୍ତ୍ତି ହେଇଥିଲା । ପାଣିକୁ ପୋଛି ପାଛି ଦେବାରୁ ଗାଡ଼ି ଚାଲିଲା । ଯାଇ ଢେଙ୍କାନାଳ ବଜାର ମଝିରେ ପହଞ୍ଚିଲୁ । ଆଗରେ ଥିବା ଗାଡ଼ିରେ ଟୁଙ୍ଗୁମାମୁଁ ବସିଥା'ନ୍ତି । ସେ ଏକଦମ୍ ହାକିମି ସ୍ୱରରେ ହୁକୁମ ଦେଇଦେଲେ - "ଏ ଡ୍ରାଇଭର ! ଗାଡ଼ି ରୋକୋଃ ।" ସେ ତ ଅଳ୍ପଦିନତଳେ ମନ୍ତ୍ରୀ ଥିଲେ । ସେ ହାଓ୍ୱାଟା କଟି ନଥାଏ । ଡ୍ରାଇଭର ବିଚରା ବ୍ରେକ୍ ମାରିଦେଲା । ହାବିଲଦାର ସାହେବ - "ହାଁ ହାଁ, ଏଠି ଗାଡ଼ି ରହିବ ନାହିଁ । ଚଲା ଚଲା" କହୁ କହୁ ସମସ୍ତେ ଫଟଫଟ ଗାଡ଼ିରୁ ଓହ୍ଲେଇ ପଡ଼ିଲେଣି । ଆମ ଗାଡ଼ି ବି ସ୍ୱଭାବତଃ ଅ. କିଲା ।

ଆମେ ସମସ୍ତେ ପୁଲିସ୍ ପରିବେଷ୍ଟିତ ହେଇ ଢେଙ୍କାନାଳ ଦାଣ୍ଡରେ ଏକ ଶୋଭାଯାତ୍ରା କରି ଚାଲିଲୁ । କଥା ହେଲା ଯେ ଭୋକ ହେଲାଣି । କିଛି ଜଳଖିଆ ଖାଇବା । ଗୋଟାଏ ଜଳଖିଆ ଦୋକାନରେ ପଶିଲୁ । ଦାଦା ହେରିକାଙ୍କର ପରିଚିତ ସ୍ଥାନୀୟ ଲୋକେ ଖୁବ୍ ଆଦର ଆପ୍ୟାୟନ କରି ଖାଇବା ବରାଦ କଲେ । ଆମର ଏ ବିଚିତ୍ର ଗହଣ ଦେଖି ସେଠି ରାସ୍ତା ଉପରେ ବେଶ୍ ଭିଡ଼ ଜମିଗଲା । ଦାଦା ସେଠୁ ରୀତିମତ ଗରମାଗରମ ବକ୍ତୃତା ଆରମ୍ଭ କରିଦେଲା । "ଇଂରେଜ ସରକାରକୁ ତଡ଼ିବା ପାଇଁ ଏ ଶେଷ ଲଢ଼େଇ । ଆପଣମାନେ ବି ସାହାଯ୍ୟ କରନ୍ତୁ । ଢେଙ୍କାନାଳ ରାଜ୍ୟ ଭିତରଦେଇ ଯାଇଥିବା ଇଂରେଜ ସରକାରର ରେଳ, ତାର ରାସ୍ତାଆଦି ସବୁ ଅଚଳ କରି ଦିଅନ୍ତୁ । ଢେଙ୍କାନାଳ ରାଜାଙ୍କର ବି ଭିତରେ ଭିତରେ ଇଂରେଜଙ୍କ ଉପରେ ରାଗ ଅଛି । ସେ କେବଳ ଉପରେ ଧରପକଡ଼ କରିବେ ମାତ୍ର ସେଥିରେ ବ୍ୟସ୍ତ ହେବାର ବା ଡରିବାର ନାହିଁ" - ଏଇ ମର୍ମରେ ବକ୍ତୃତା ଅଧଘଣ୍ଟାଏ ଖଣ୍ଡେ ଚାଲିଲା ।

ଏଣେ ହାବିଲଦାର ସାହେବ ବ୍ୟସ୍ତ ହେଉଥା'ନ୍ତି, "ବାବୁ ଆଉ କହନ୍ତୁ ନାହିଁ, ଆଉ କହନ୍ତୁ ନାହିଁ" କିନ୍ତୁ ଶୁଣୁଛି କିଏ ? ସେଠି ଢେଙ୍କାନାଳ ରାଜ୍ୟ ଭିତରେ ତାଙ୍କର କର୍ତ୍ତୃତ୍ୱ କେତେ ସେ ବିଷୟରେ ବି ବୋଧହୁଏ ସେ ଟିକିଏ ବଣା ହେଇଯାଉଥା'ନ୍ତି । ତେଣେ ଢେଙ୍କାନାଳ ରାଜ୍ୟର ଜଣେ ପୁଲିସ କନେଷ୍ଟବଳ ଆସି ସେଠି ହାଜର ହେଇଥା'ନ୍ତି । ଚିରା କୁର୍ତ୍ତା, ମସିଆ ପଗଡ଼ୀ, ଖାଲି ଗୋଡ଼ରେ ଧଳାପଟୀ, କାନ୍ଧରେ ଗୋଟାଏ ପୁରୁଣା ବନ୍ଧୁକ, ବୋଧହୁଏ ମଜଲ୍‌ଲୋଡ଼ର । ବୈଷ୍ଣବ ପାଣିଙ୍କ ଯାତ୍ରାର ଦୁଆରୀପରି ରୂପଭେକ । ସରଜମିନ ଉପରେ ସେ ସେ ରାଜ୍ୟର ଆଇନ ଶୃଙ୍ଖଳାର ଏକମାତ୍ର ପ୍ରତିନିଧି । କିନ୍ତୁ ସେ ଆମକୁ ପ୍ରବଳପରାକ୍ରାନ୍ତ

ବ୍ରିଟିଶ ସରକାରର ପୁଲିସ ପରିବେଷ୍ଟିତ ହୋଇ ଏ ସବୁ ସୁଆଙ୍ଗ କରୁଥିବାର ଦେଖି ନିଜର କର୍ତ୍ତବ୍ୟ ସ୍ଥିର କରି ନ ପାରି ବଲ ବଲ ହୋଇ ଚାହିଁଥାଏ ।

ବକ୍ତୃତା ଓ ଖିଆପିଆ ସାରି ଆମେ ଗାଡ଼ିରେ ବସିଲୁ । ଗାଡ଼ି ହାସପାତାଳ ପାଖ ବାଙ୍କ ବୁଲି ପାଏ ବାଟ ଯାଇଛି କି ନାହିଁ ଟାଙ୍କିରେ ରହିଯାଇଥିବା ଅବଶିଷ୍ଟ ପାଣିତକ ତାର କରାମତି ଦେଖାଇଲା । ଗାଡ଼ି ଆଉ ପାଦମେକଂ ନ ଗଛତି । ଅନେକ ଚେଷ୍ଟାପରେ ଗାଡ଼ି ଗ୍ୟାରେଜକୁ ନେବା ଠିକ୍‌ହେଲା । ଇତି-ମଧ୍ୟରେ ସେଠି ଢେଙ୍କାନାଳର ପୁଲିସ୍ ସୁପରିଟେଣ୍ଡେଣ୍ଟ ନୀଳମଣି ଧଳ ଆବିର୍ଭୂତ ହେଲେ । ଏ ମହାଶୟଙ୍କ ଘର କଟକ ଜିଲ୍ଲା ବିଞ୍ଝାରପୁର ଥାନା ଗୁଆଳୀରେ । ଏକ ବୈଚିତ୍ର୍ୟମୟ ବ୍ୟକ୍ତିତ୍ୱ । ସେ ଆମକୁ ସାଦର ଅଭ୍ୟର୍ଥନା କରି ନେଇ ତାଙ୍କ ଅଫିସ୍ କୋଠାରେ ବସେଇଲେ । ପୁଣି ଚା-ଜଳଖିଆ ଆସିଲା । ଦୁଃଖ ସୁଖ ଗପସପ ଚାଲିଲା । ଏମିତିରେ ପାଞ୍ଚଟା ପାଖାପାଖି ହୋଇଯିବାରୁ ଦାଦା ନୀଳମଣି ବାବୁଙ୍କୁ ପ୍ରସ୍ତାବ ଦେଲା ଯେ ଆଜି ତ ଆଉ ଅନୁଗୁଳ ଯାଇପାରିବାର ଲକ୍ଷଣ ଦେଖାଯାଉନାହିଁ । ଆଜି ରାତିଟା ଆମକୁ ଏଇ ଢେଙ୍କାନାଳ ଜେଲ୍‌ରେ ରଖିଦିଅନ୍ତୁ । କାଲି ସକାଳେ ଯିବା । ତା'ର ମତଲବ ଆମକୁ କହିଲା ଯେ ଦେଖିବା ଏଠା ଜେଲ୍‌ରେ କିଏ କିଏ ସବୁ ଆମ ଲୋକ ଅଛନ୍ତି । କଥାବାର୍ତ୍ତା କରିବା । ଖବର ବୁଝିବା । ମାତ୍ର ନୀଳମଣିବାବୁ ତା'ର ଫୁସୁଲାଫୁସୁଲିରେ ମଜିଲେ ନାହିଁ । ଇତି ମଧ୍ୟରେ ଗାଡ଼ିଟାବି ସଜଡ଼ା ହୋଇ ଆସିଗଲା ଓ ଆମେ ବିଦାବିଦି ହୋଇ ଚାଲିଲୁ ।

ଇତି ମଧ୍ୟରେ ସୁଧୀରବାବୁ ଅନ୍ୟ ଗାଡ଼ିଟିରେ ତାଙ୍କ କାରବାର କରି ଦେଇଥା'ନ୍ତି । ଆମେ ଆଠ ଦଶ ମାଇଲ ଯାଇନ୍ଥୁ କି ନାହିଁ ସେ ଗାଡ଼ିକୁ ସନ୍ନିପାତ ଘୋଟିଲା । ବଣ ମଝିରେ ଗାଡ଼ି ଠପ୍ ହେଲା । ମୁହଁସଞ୍ଜ ହୋଇଆସୁଥାଏ । ସମସ୍ତେ ଓହ୍ଲେଇଲୁ । ଶୌଚ ଆଦି ସବୁ ସାରିଲୁ । ସୁଧୀରବାବୁଙ୍କ ମୁଣ୍ଡରେ ଏଇ ବିଚାର ପଶିଥାଏ ଯେ ଏଇ ସୁଯୋଗରେ ଜଣେ ଅଧେ କିଏ ପଳେଇଲେ କିପରି ହୁଅନ୍ତା ? ବଣ, ସଞ୍ଜ ଅନ୍ଧାର, ଡିଆଁଟାଏ ମାରିଦେଲେ କିଏ ଧରୁଛି ? ଏଣେ କିନ୍ତୁ ହଠାତ୍ ମେଘ ଘୋଟିଆସି ମୂଷଳଧାର ବର୍ଷା ଆରମ୍ଭ ହୋଇଗଲା । ଏଇ ବର୍ଷାରେ ସୁଧୀରବାବୁଙ୍କର ସବୁ ବୈପ୍ଳବିକ ଉଦ୍ଦୀପନା ଭିଜି କାଉନ୍ଦା ହୋଇଗଲା । ଆମେ ସେଇ ଗୋଟିଏ ଭଲ ଗାଡ଼ିରେ ଖୁନ୍ଦିଖାନ୍ଦି ହୋଇ ବାଟଯାକ ପାଣି ମାଡ଼ ଖାଇ ଖାଇ ଅନୁଗୁଳ ଚାଲିଲୁ ।

ତେଣେ ଅନୁଗୁଳ ଜେଲରେ କର୍ତ୍ତୃପକ୍ଷ ଆମପାଇଁ ଦିନ ଏଗାରଟାରୁ

"ଗୋଳି ଚୂଆ ଚନ୍ଦନ, ଭାଙ୍ଗି ବିଡ଼ିଆପାନ
ଆସିବେ ଶ୍ୟାମଘନ ଆଜ ଗୋ...."

ବୋଲି ଅପେକ୍ଷା କରି ବସିଛନ୍ତି । କିନ୍ତୁ କାହିଁ ?

"ବାନ୍ଧବୀ, କିସ ଭାଳି
ଆଜ ସେ ବନମାଳୀ
କାହା ପୁରତେ ତଳି ରହିଲେ ଆଗୋ ସଖୀ ?" - ଅବସ୍ଥା ।

କଟକକୁ ଫୋନ୍ କରୁଛନ୍ତି, କୌଣସି ଖବର ନାହିଁ । ଯାହାହେଉ ରାତି ନଅଟାରେ ଆମେ ବର୍ଷାରେ ତିନି ପହଞ୍ଚିଲାରୁ ସେମାନେ ଆଶ୍ୱସ୍ତ ହେଲେ । ଆମ ପାଇଁ ଗୋଟାଏ କଣିକିଆ ୱାର୍ଡ଼ରେ ଖଟ ବିଛଣାଆଦି ସବୁ ସଜହେଇ ରହିଥାଏ । ଖାଦ୍ୟ ବି ପ୍ରସ୍ତୁତ ଥାଏ । ଦିନଯାକର ଆଡ଼୍‌ଭେଂଚର୍ ଓ ଉତ୍ତେଜନାରେ କ୍ଳାନ୍ତହେଇ ଆମେ ଖୁବ୍ ଶୀଘ୍ର ଖଟ ଧରିଲୁ । ଆମ ପ୍ରହରୀମାନେ ତା' ପରଦିନ ସକାଳେ କଟକ ଫେରିଲେ । ବାଟରେ କୁଆଡ଼େ ଗାଡ଼ି ପୁଣି ବିଗିଡ଼ିଲା ଓ ଶେଷକୁ ତାକୁ ଟାଣିଟାଣି ନେଇ ଉପରଓଳି ମହାନଦୀ ପାରିହେଲେ ।

ଏ ଆଡ଼୍‌ଭେଂଚର୍‌ଏକ ବିସ୍ତୃତ ବର୍ଣ୍ଣନା ମୁଁ ବାପାଙ୍କୁ କଟକ ଜେଲ୍ ଠିକଣାରେ ଚିଠିଆକାରରେ ଲେଖି ପଠାଇଦେଲି । ତାହା ପାସ୍ ହେଇ ବାପାଙ୍କୁ ମିଳିବାର ସମ୍ଭାବନା ବହୁତ କମ୍ ବୋଲି ମୁଁ ଜାଣିଥିଲି । ତଥାପି ଏୟା ଭାବି ଲେଖିଲି ଯେ ଜେଲ୍‌ବାଲା ଓ ପୁଲିସବାଲା ତ ପଢ଼ିବେ ? ପରେ ଶୁଣିଲି ଯେ ସେ ଚିଠି ଓଡ଼ିଶା ସଚିବାଳୟରେ ପହଞ୍ଚିଥିଲା ଓ ସେଠାରେ ତାକୁ ବହୁ ଲୋକ ପଢ଼ି ଖୁବ୍ ଉପଭୋଗ କରିଥିଲେ ।

## କଲ୍ୟାଣବାଗ୍

ଅନୁଗୁଳ ଜେଲ୍‌ଟା ଛୋଟ । ତା' ଭିତରେ ଗୋଟାଏ ଅଲଗା ୱାର୍ଡ଼ରେ ଆମକୁ ରଖାହେଲା । ଘରଟା ଆମ ଆଠଜଣଙ୍କର ରହିବା ଦୃଷ୍ଟିରୁ ପର୍ଯ୍ୟାପ୍ତ ଥିଲା । ଚାରିପଟେ ଅଳ୍ପ ହତା ଥାଏ । ଆମେ ସେଠି କ୍ରମେ ସଜାଡ଼ି ସୁକୁଡ଼ି ହେଇ ବସିଲୁ । ବହିପତ୍ର ଆମ ପାଖରେ ବିଶେଷକିଛି ନ ଥାଏ । ଘରେ କିଏ ଆଉ ଥାଏ ଯେ ବହି ସଂଗ୍ରହ କରି ପଠେଇବ ? ଖବରକାଗଜ ସବୁ ବି ପ୍ରଥମ କେତେ ସପ୍ତାହ ଯାଏ ମିଳୁ ନ ଥାଏ । ତେଣୁ ଦିନଯାକ ଗପ, ଆଡ଼୍‌ଡ଼ା ଓ ତର୍କ ଛଡ଼ା ସମୟ କଟେଇବାର ଅନ୍ୟ ଉପାୟ ପାଉଥିବାକୁ ହେଉଥାଏ । ୟା' ଭିତରେ ଦିନେ ରାଲୁଦା କଥା ଉଠେଇଲେ ଯେ ଏଠି ତ ଆମକୁ 'ମନୋଟନୀ' – ଏକଘେୟାମୀ ଖାଇଯିବ । ତେଣୁ ତାକୁ ଭାଙ୍ଗିବାର ଉପାୟ ଲୋଡ଼ା । ସାତ ଦିନରେ ସାତପ୍ରକାରର ଜଳଖିଆ, ସାତପ୍ରକାରର ତରକାରୀ, ଏପରିକି ସାତପ୍ରକାରର ଦାନ୍ତକାଠି ବି ହେବା ଚାହିଁ । ଜଳଖିଆ ଓ ତରକାରୀର ପ୍ରକାର ତ ସହଜରେ ବାହାରିଲା, କିନ୍ତୁ ଦାନ୍ତକାଠି ଚାରିପାଞ୍ଚ ପ୍ରକାରରୁ ଉପରକୁ ଆଉ କାହାରି ମୁଣ୍ଡରୁ ବାହାରି ପାରିଲା ନାହିଁ ।

ଜଳଖିଆ ଭିତରେ ମାଣ୍ଡିଆଜାଉ ଖାଇବାର ଗୋଟାଏ ହୁଜୁଗ ସେଠି ଉଠିଲା । ମାଣ୍ଡିଆରେ ବହୁତ ଲୌହ ଓ ଆଉ କ'ଣ କ'ଣ ଅଛି ବୋଲି ଆଗରୁ ବାହାରେ ବହୁତ ପ୍ରଚାର ଚାଲିଥିଲା ଓ ମାଣ୍ଡିଆର ଭଦ୍ରସମାଜକୁ ପଦୋନ୍ନତି ହେଇଥିଲା । ସେଥିରେ କୋକୋ ଓ ଦୁଧ ଦେଇ ଜାଉ କରିବାର ଏକ ପ୍ରଣାଳୀ ଅନୁଗୁଳ ଜେଲରେ ଉଦ୍‌ଭାବିତ ହେଲା ଓ ତା'ର ନାମ ଦିଆହେଲା ମ୍ୟା' ଷୋଲେଟ୍ । ଆଚାର୍ଯ୍ୟ ନାମକ ଜଣେ ଆଜୀବନ କଏଦୀ ଆମ ରୋଷେଇ ଦାୟିତ୍ୱରେ ଥା'ନ୍ତି । ଖୁବ୍ ଯତ୍ନକରି ବରାଦ ମୁତାବକ ସବୁ କରୁଥା'ନ୍ତି । ସମସ୍ତଙ୍କ ଭିତରେ ମୁଁ ଏକା

ନିରାମିଷାଶୀ ଥାଏ । ବାକି ସମସ୍ତେ ସର୍ବଭୁକ୍ । ସବୁ ତ ମିଳୁଥାଏ, ମଦନବାବୁ ହେରିକାଙ୍କର ଶୁଖୁଆ ଖାଇବାର ଇଚ୍ଛା ହେଲା । ଜେଲରେ ଶୁଖୁଆ ସେତେବେଳେ ମନା ଥିଲା । ତାହା କେମିତି ଗୁପ୍ତ ବାଟରେ ଆସିଲା । ଜେଲ୍ କର୍ମଚାରୀଙ୍କର ସ୍ୱରାଜୀ କଏଦୀଙ୍କ ପ୍ରତି ଯେଉଁ ସହାନୁଭୂତି ଥାଏ ଏହିପରି ଛୋଟ ଛୋଟ କଥା ପାଇଁ ଆମେ ସେଥିରୁ ଫାଇଦା ଉଠାଇବାର ଦେଖାଯାଏ ଓ ତାହାଦ୍ୱାରା ଆମର ସମ୍ମାନ ସେମାନଙ୍କ ଆଖିରେ କିଛି କ୍ଷୁର୍ଣ୍ଣ ହିଁ ହୋଇଥାଏ । ସେଠି ସୁପରିଟେଣ୍ଡେଣ୍ଟ୍ ଥା'ନ୍ତି ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ ଓ ଜେଲ୍ ଡାକ୍ତର ଜୟକୃଷ୍ଣ ମହାନ୍ତି । ଏମାନେ ଆମର ଖୁବ୍ ହେପାଜତ୍ କରୁଥା'ନ୍ତି । ଜୟୀବାବୁ ଖୁବ୍ ଗପୁଡ଼ି ଲୋକ । ଘଣ୍ଟା ଘଣ୍ଟା ଧରି ବସି ଆଡ୍‌ଡ଼ା ଦିଅନ୍ତି । ଥରେ ମଦନବାବୁଙ୍କର ଶୁଖୁଆ ରନ୍ଧା ହେଉଛି । ତେଣେ ଦିପହର ଖାଇବାବେଳ ଗଡ଼ିଯାଉଛି । ଜୟୀବାବୁ କିନ୍ତୁ ଉଠୁନାହାନ୍ତି, ଗପ ଚଳେଇଛନ୍ତି । ଏଣେ ସେ ନ ଗଲେ ଶୁଖୁଆ ବାହାରୁଛି କେମିତି ? ଆଉ ଦିନେ କିଏ ସବୁ କଣ ଉପାସ କରି ବାହାରୁ ମିଠେଇ ମଗେଇଥା'ନ୍ତି ।  ଏ ସବୁ ଜେଲ୍ କର୍ତ୍ତୃପକ୍ଷ ଯୋଗେଇଥା'ନ୍ତି, କିନ୍ତୁ ଡାକ୍ତର ତାହା ଯାଞ୍ଚ କରି ନଥା'ନ୍ତି । ଖାଇବାବେଳକୁ ଜୟୀବାବୁ ଆସି ପହଞ୍ଚିଲେ ଓ ମିଠେଇ ଦେଖିଦେଇ କହିଲେ ଯେ ବାହାରେ ନାନା ପ୍ରକାରର ରୋଗ ବ୍ୟାପୁଛି ତେଣୁ ସେ ଆମକୁ ସେ ସବୁ ବାହାର ମିଠେଇ ଖାଇବାକୁ ଦେବେନି । ସେ ସବୁ ଉଠେଇ ନେଇ ନିଜେ ଠିଆହେଇ ତାକୁ ମାଟିରେ ପୋତେଇଲେ । ଉପବାସୀଙ୍କ ପ୍ରତି ସହାନୁଭୂତିଶୀଳ ହେଇ କିନ୍ତୁ ସେ ସାଙ୍ଗେ ସାଙ୍ଗେ ନିଜ ଘରୁ ଘରତିଆରି ପିଠା ହେରିକା ପଠେଇ ଦେଲେ ।

ଜୟୀବାବୁ ବହୁତ ପାଠ ଘୋଷିଥିଲେ । ଲମ୍ବା ଲମ୍ବା ପାରିଭାଷିତ ଶବ୍ଦ ସବୁ ଆଉଡେଇବାକୁ ତାଙ୍କୁ ଖୁବ୍ ଭଲ ଲାଗୁଥିଲା । ଥରେ ବାଗୁଡ଼ି ଖେଳୁ ଖେଳୁ ପଡ଼ିଯାଇ ମୋର ବାଁ ଗୋଡ଼ର ପଞ୍ଝା ମୋଡ଼ି ହେଇଗଲା । ଛ' ସାତ ଦିନ ଶଯ୍ୟାଶାୟୀ ହେଇ ରହିଲି । ଏଇଟାର ବୈଜ୍ଞାନିକ ନାମ କଣ ବୋଲି ତାଙ୍କୁ ପଚାରିବାରୁ ସେ କହିଲେ ସେ ସେଟା acute traumatic tenosynovitis of the tensor digitorum communis muscle at the tarso-metatarsal joint of the left foot. ସେ ସଂଜ୍ଞାଟା ମୁଁ ବି ମୁଖସ୍ତ କରିଦେଲି ।

ସେଠି ଟୁଙ୍ଗୁମାମୁଁ ଲମ୍ବା ବାବୁରି ବାଳ ରଖିଲେ ଓ ଗେରୁଆ ଲୁଙ୍ଗୀ ଚାଦର ବ୍ୟବହାର କରିବାକୁ ଆରମ୍ଭ କଲେ । ଆମେ ତାଙ୍କର ନାମକରଣ କଲୁ 'କଲ୍ୟାଣବାବା' ଓ ତାଙ୍କର ନାମ ଅନୁସାରେ ୱାର୍ଡ଼ର ନାମକରଣ ହେଲା 'କଲ୍ୟାଣବାଗ୍' ମଦନବାବୁ ଖାଇବା ବ୍ୟବସ୍ଥା ବୁଝିବାରେ ସମୟ ଦେଉଥାନ୍ତି । ବୈକୁଣ୍ଠ ତା'ର ପ୍ରହସନ ଓ ବ୍ୟଙ୍ଗ କୌତୁକ ଦ୍ୱାରା ସମସ୍ତଙ୍କୁ ହସଉଥାଏ । ଦାଦା ଓ ମୁଁ ଦିନାକେତେ ପିମ୍ପୁଡ଼ି, ସାଁବାଲୁଆ ଓ ଅନ୍ୟ ପୋକଜୋକଙ୍କର ଗତିବିଧି ଅଧ୍ୟୟନ କରିବା ଚେଷ୍ଟା କଲୁ । ଇତି ମଧ୍ୟରେ କେଉଁଠୁ ଖଣ୍ଡେ ପ୍ରାଣୀବିଜ୍ଞାନର ପାଠ୍ୟପୁସ୍ତକ ହାତରେ ପଡ଼ିଲା । ସେ ଖଣ୍ଡ ମୁଁ ପଢ଼ିବା ଆରମ୍ଭ କଲି ଓ ମୂଷା, ଅସରପା ଆଦି ଧରି ବ୍ୟବଚ୍ଛେଦ କରିବା ଅଭ୍ୟାସ କଲି । ଥରେ କିଏ ଗୋଟାଏ ଏଣ୍ଡୁଅ ମାରିଦେଇଥିଲା । ତାକୁ ବି ଆଣି କାଟିଲି ଓ ତାହାର ରଙ୍ଗ ବଦଳାଇବା ପାଇଁ ଥିବା ଦୁଇଟା ବଡ଼ ବଡ଼ ଗ୍ରନ୍ଥି ଦେଖିବାକୁ ପାଇଲି ।

ଅନୁଗୁଳର ସ୍ଥାନୀୟ ଆନ୍ଦୋଳନକାରୀମାନେ ଆସି ଜେଲ୍‌ର ଅନ୍ୟ ୱାର୍ଡ଼ରେ ଇତିମଧ୍ୟରେ ଭର୍ତ୍ତି ହେଇଗଲେ । ଅଳ୍ପଦିନ ସଜା ବାକି ଥିବା ସାଧାରଣ କଏଦୀଙ୍କୁ ଖଲାସ କରିଦିଆହେଲା । ହୃଷି ତ୍ରିପାଠୀ, ବୃନ୍ଦାବନ, ଲୋକନାଥ ହେରିକା ସବୁ ପୁରୁଣା ଦଳଟା ଆସିଗଲେ । ଅନେକ ନୂଆ ବି ଥା'ନ୍ତି । ଖୁବ୍ ହୋ ହୋ ଚାଲିଥାଏ । ପ୍ରତିଦିନ ଉପରଓଳି ବାଗୁଡ଼ି ଖେଳରେ ଜେଲ୍ ସରଗରମ ହେଇଉଠେ । ରାତିରେ ପାଲା, ନାଟକ ଗୀତ ଆଦି ସେମାନେ କରନ୍ତି । କଂଗ୍ରେସ ମନ୍ତ୍ରୀମଣ୍ଡଳ ଅମଳରେ ଜେଲ୍‌ମାନଙ୍କରେ ସୂତାକଟା ଚାଲୁହେଇଥିଲା । ସେଇ ବେଳର ଗୁଡ଼ାଏ କିଷାନ ଚରଖା ସେଠି ଭଙ୍ଗା ଦଦରା ହେଇ ପଡ଼ିଥିଲା । ଆମର ସବୁ କାହାରି କାହାରି ଚରଖା ଥାଏ । ତାକୁ ଦେଖି ସୂତା କାଟିବା କୋହର ଉଠିଲା । ଭଙ୍ଗା ଚରଖାଗୁଡ଼ାକ ଆଣି ସଜଡ଼ା ହେଲା । ସବୁତ ସଜଡ଼ା ହେଇ ପାରିଲା ମାତ୍ର ଯେଉଁ ଚରଖାଗୁଡ଼ିକର ସ୍ପ୍ରିଂ ହଜି ଯାଇଥିଲା ସେଗୁଡ଼ିକ ପାଇଁ ନୂଆ ସ୍ପ୍ରିଂ ମିଳିବାର ଉପାୟ ନ ଥିଲା । ତେଣୁ ଇସ୍ପାତ୍ ତାରର ସ୍ପ୍ରିଂ ପରିବର୍ତ୍ତେ ବାଉଁଶ ପାତିଆର ସ୍ପ୍ରିଂ ବ୍ୟବହାର କରିବାର ଉପାୟ ବାହାର କରାଗଲା ଓ ତାହାଦ୍ୱାରା ବେଶ୍ ଭଲ କାମ ଚାଲିଲା । ଜେଲ୍‌ରେ କିଛି ପୁରୁଣା ତୁଳା ଥିଲା । ସେତକ ସରିଯିବା ପରେ ଯେତକ ଗଦି ଓ ତକିଆ ଜେଲ୍‌ରେ ଥିଲା ସେ ସବୁର କୋଉ କାଳର ପୁରୁଣା ତୁଳାକୁ ବାହାର କରି କାଟି ଶେଷ କରି ଦିଆହେଲା ।

ଏହି ସୂତାକଟା ଧୂମ ଚାଲିଥିବାବେଳେ ସୂତାର ନମ୍ବର ଜାଣିବା ପାଇଁ ଗୋଟାଏ କିଛି ସହଜ ଉପାୟ ବାହାରି ପାରିଲେ ଭଲ ହୁଅନ୍ତା ବୋଲି ଦିନେ କଲ୍ୟାଣବାବା କହିଲେ । ସେଥିପାଇଁ ନାନା ପ୍ରକାରର ପରଖ କଲାପରେ ଖଣ୍ଡେ ବାଉଁଶ କାଠିର ଗୋଟାଏ ମୁଣ୍ଡରେ କିରାସିନି ଟିଣର ଖଣ୍ଡେ ଟୁକୁରା ଗଡ଼େଇ ସୂତାର ନମ୍ବର ମାପିବା ପାଇଁ ଏକ ସାନ ଯନ୍ତ୍ର ତିଆରି ହେଲା । କଲ୍ୟାଣବାବାଙ୍କ ସମ୍ମାନରେ ଯାର ନାମ ଦିଆ ହେଲା କଲ୍ୟାଣମାନ । ଏଇଟିର ପରେ ବାହାରେ ଖୁବ୍ ପ୍ରଚାର ହେଲା ଓ ସୂତାକଟାଳିଙ୍କର ଏଇଟି ଖୁବ୍ କାମରେ ଆସିଥିଲା । ଜେଲ୍‌ରେ ସେତେବେଳେ ମାପ ସ୍କେଲ୍ ଖଣ୍ଡେ ଥିଲା । ସେଟ୍ ସ୍କୋୟାର୍, ପ୍ରୋଟ୍ରୋକ୍‌ଟର ଆଦି ମିଳିବାର ସୁବିଧା ନ ଥିଲା । କିରାସିନି ଟିଣର ଟୁକୁରାରୁ ଏ ସବୁ ସାଙ୍ଗକୁ ଇଞ୍ଚକର ୧/୧୦୦ ଭାଗ ମାପିବାର ଏକ ସ୍କେଲ୍ ମୁଁ ସେଠି ତିଆରି କରିଥିଲି ।

ସେଠି ମନୋବିଜ୍ଞାନର ବି ଖଣ୍ଡେ ଭଲ ବହି ମିଳିଯାଇଥିଲା ଓ ତାହା ପଢ଼ି ମନୋବିଜ୍ଞାନ ବିଷୟରେ ମୋର ଅଧିକ ଜାଣିବାର ଆଗ୍ରହ ବଢ଼ିଗଲା । ଏଚ୍.ଜି.ୱେଲ୍‌ସ୍‌ଙ୍କର "ଦୀ ସାଏନ୍‌ସ୍ ଅଫ୍ ଲାଇଫ୍" ରେ ମନୋବିଜ୍ଞାନର ଯେତକ ଅଂଶ ଥିଲା ସେତକ ତ ଅନେକ ଦିନ ଆଗରୁ ପଢ଼ି ସେ ବିଷୟରେ କେତେକ ଧାରଣା ଓ ଆକର୍ଷଣ ହେଇଥିଲା । ଆମ ଘରେ ମନୋବିଜ୍ଞାନର କେତେଖଣ୍ଡ ବହି ଦାଦା କେଉଁଠୁ ଆଣିଥିଲା । ସେସବୁ ମଧ୍ୟ ନେଉଟାଇ ପାଉଟେଇ ରଖିଥିଲି । ଫ୍ରଏଡ଼ଙ୍କର ମନୋବିଶ୍ଳେଷଣ ବିଷୟରେ ଗୋଟିଏ ବହି ଥିଲା । ସେଥିରେ ଥିବା ଯୌନ ବିଷୟକ

ଖୋଲଖୋଲି ଆଲୋଚନା ଖୁବ୍ କୌତୂହଳ ସୃଷ୍ଟି କରିଥିଲା । ଏଠି ପଢ଼ିଥିବା ବହି ଖଣ୍ଡକରୁ ମନୋବିଜ୍ଞାନର ଅନ୍ୟସବୁ ବିଭବ ବିଷୟରେ ଗୋଟାଏ ସମ୍ୟକ୍ ଧାରଣା ମିଳିଲା ।

ଏଇ ବହି ଖଣ୍ଡକରେ ଗୋଟାଏ ନୂଆ ସୂତ୍ରର ସୂଚନା ପାଇଲି । କୌଣସି କଥା ମୁଖସ୍ଥ କରିବାକୁ ହେଲେ ସାଧାରଣତଃ ସେଥିରୁ ପଦପଦ କରି ବା ଧାଡ଼ି ଧାଡ଼ି କରି ମୁଖସ୍ଥ କରିବା ଚେଷ୍ଟା କରାଯାଇଥାଏ । ଏ ବହିରୁ ଜାଣିଲି ଯେ ସେ ପନ୍ଥା ଭୁଲ । ଯାହା ମୁଖସ୍ଥ କରିବାର କଥା ସେ ପଦ୍ୟ ବା ବିଷୟକୁ ପୂରା ମୁଖସ୍ଥ କରିବା ଚେଷ୍ଟା କଲେ ତାହା ସହଜରେ ଓ ଠିକ୍ ଭାବରେ ମନରେ ରହେ । ମୋର ମନେ ପଡ଼ିଲା ଯେ ଗାନ୍ଧୀଜୀ ଗୀତାର ଗୋଟିଏ ଲେଖା ଶ୍ଳୋକ ପ୍ରତିଦିନ ମୁଖସ୍ଥ କରିବା ଆରମ୍ଭ କଲି ଓ ଅଳ୍ପ ଦିନରେ ଅଠରଟିଯାକ ଅଧ୍ୟାୟ ମୁଖସ୍ଥ ହୋଇଗଲା ।

ଆମେସବୁ ଏଇ ଅନୁଗୁଳ ଜେଲ୍‌ରେ ଥିବା ଭିତରେ ଗାନ୍ଧୀଜୀ ଫେବୃୟାରୀ ଦଶ ତାରିଖ ୧୯୪୩ ଦିନ ତାଙ୍କର ଏକୋଇଶ ଦିନିଆ ଅନଶନ ଆରମ୍ଭ କଲେ । ସେ ଆଗା ଖାଁ ପ୍ରାସାଦରେ ବନ୍ଦୀଥା'ନ୍ତି । ବୟାଳିଶ ଆନ୍ଦୋଳନର ଦାୟିତ୍ୱ ନେଇ ବଡ଼ଲାଟଙ୍କ ସାଙ୍ଗରେ ତାଙ୍କର ବହୁତ ଚିଠିପତ୍ର କାରବାର ଚାଲିଥିଲା ଓ "ଗଣ୍ଡଗୋଳ ପାଇଁ କଂଗ୍ରେସର ଦାୟିତ୍ୱ" ନାମ ଦେଇ ଏକ ପୁସ୍ତିକାରେ ସରକାର ଗାନ୍ଧୀଜୀଙ୍କ ସହିତ ତାଙ୍କର ସମଗ୍ର ପତ୍ରବ୍ୟବହାର ଓ ବୟାଳିଶ ଆନ୍ଦୋଳନରେ ଦେଶର ବିଭିନ୍ନ ସ୍ଥାନରେ କ'ଣ କ'ଣ ଘଟିଥିଲା ତାର ବିବରଣୀ ପ୍ରକାଶ କରିଥିଲେ । ଏହି ପୁସ୍ତିକାରୁ ଜଣାପଡ଼ିଲା ଯେ ବିହାର ପ୍ରଦେଶ ଓ ଅନ୍ୟ କେତେକ ସ୍ଥାନରେ ଜନବିକ୍ଷୋଭ କି ବିଶାଳ ରୂପ ଧରିଥିଲା ! ବିହାରରେ ଲୋକେ ପ୍ରାୟ ୧୪ ଶହ ମାଇଲ ରେଲ୍‌ଲାଇନ୍ ଉପାଡ଼ି ଫିଙ୍ଗି ଦେଇଥିଲେ ବୋଲି ସେ ସରକାରୀ ବିବରଣୀରେ ଥିଲା ।

ଗାନ୍ଧୀଜୀଙ୍କର ବକ୍ତବ୍ୟ ଥିଲା ଯେ ତାଙ୍କୁ ବା କଂଗ୍ରେସକୁ ଆନ୍ଦୋଳନ ଆରମ୍ଭ କରିବା ପାଇଁ ଅବସର ଦିଆଯାଇ ନଥିଲା । ସରକାର ତାଙ୍କର ସିଂହଭଳି ବିପୁଳ (Leonine) ହିଂସା ଶକ୍ତି ବଳରେ ଯେତେବେଳେ ଦମନଲୀଳା ଚଳାଇଲେ ସେତେବେଳେ ସେଥିଦ୍ୱାରା ପେଷି ହୋଇ ଯାଉଥିବା ଜନତା ତା' ବିରୋଧରେ ଉଠି ଛିଡ଼ା ହେଲେ ଓ କାଁ ଭାଁ ହିଂସାକାଣ୍ଡ ଘଟିଲା । ଯେଉଁ ପର୍ଯ୍ୟନ୍ତ ସରକାରର ହିଂସାକାଣ୍ଡର ନିନ୍ଦା କରିବାର ସ୍ୱାଧୀନତା ତାଙ୍କର ନାହିଁ ସେ ପର୍ଯ୍ୟନ୍ତ ସେ ଜନତାର ସମାଲୋଚନା କରିପାରିବେ ନାହିଁ । ଗାନ୍ଧୀଜୀଙ୍କର ଏଥରର ଅନଶନ ବେଳେ ତାଙ୍କର ସ୍ୱାସ୍ଥ୍ୟର ଅବସ୍ଥା ବଡ଼ ସଙ୍କଟଜନକ ହୋଇଥିଲା । ଗାନ୍ଧୀଜୀଙ୍କର ଅନଶନକୁ ସମର୍ଥନ ଜଣାଇ ମୁଁ ବି ସାତଦିନ ଅନଶନ କରିବସିଲି । ସାତଦିନର ଅନଶନ ମତେ କିଛି କଠିନ ଜଣାପଡ଼ିଲା ନାହିଁ । ପ୍ରଥମ ଦୁଇଦିନ ଖଣ୍ଡେ ଭୋକ ହେଉଥିଲା । ତା' ପରେ ଆଉ ଭୋକ ରହିଲା ନାହିଁ । ପାଣି ପ୍ରଚୁର ପିଉଥିଲି ।

# ବ୍ରହ୍ମପୁର ଜେଲ୍

ଅଳ୍ପଦିନ ପରେ ଦାଦାଙ୍କୁ ପୁରୀ ଜେଲ୍‌କୁ ବଦଳି କରାହେଲା । ଆଉ କିଛିଦିନ ପରେ ଟୁଣ୍ଡୁମାମୁଁ, ମଦନବାବୁ, ମୁଁ, ସୁରେନ୍ଦ୍ର ପଟ୍ଟନାୟକ ହେଲିକା ସମସ୍ତେ ବ୍ରହ୍ମପୁର ଜେଲ୍‌କୁ ବଦଳି ହେଲୁ । ବ୍ରହ୍ମପୁର ଜେଲ୍‌ର ଏକ ବର୍ଦ୍ଧିତ ହତାରେ ଲମ୍ବ ଲମ୍ବ ଅସ୍ଥାୟୀ ଧରଣର ବ୍ୟାରାକ ଘର ତିଆରି କରାଯାଇ ସେଥିରେ ରାଜନୀତିକ ବନ୍ଦୀମାନଙ୍କୁ ରଖାଯାଇଥାଏ । ଏହିପରି ନଅଟି ଲମ୍ବା ଘରଥାଏ ଓ ପ୍ରତ୍ୟେକଟି କ ଓ ଖ ଏହିପରି ଦୁଇଟି ଭାଗରେ ବିଭକ୍ତ ହୋଇଥାଏ । ପ୍ରତ୍ୟେକ ଘରେ କୋଡ଼ିଏ ପଚିଶ ଜଣ ଲେଖାଁ ବନ୍ଦୀଥା'ନ୍ତି । ନିଜ ନିଜର ରୁଚି ଓ ସାଙ୍ଗସୁଖ ଅନୁସାରେ ବନ୍ଦୀମାନେ ବିଭିନ୍ନ ୱାର୍ଡ଼ରେ ଥା'ନ୍ତି । ରୁଚି ଅନୁସାରେ ଅଲଗା ଅଲଗା ମେସ୍ ମଧ୍ୟ ହୋଇଥାଏ । ରୋଷେଇବାସ ନିଜ ତତ୍ତ୍ୱାବଧାନରେ ହେଉଥାଏ ।

ବାପା, ଆଚାର୍ଯ୍ୟ ମହାଶୟ, ଚାଟୁବାବୁ ହେଲିକା ମିଶି ମୋଟାଏ ମେସ୍ କରିଥା'ନ୍ତି । ଏ ତିନିଜଣଙ୍କର ନାମର ପ୍ରଥମ ଅକ୍ଷର ଅନୁସାରେ ତାକୁ 'ଗୋଆଚା' ମେସ୍ କୁହାଯାଉଥାଏ । ଏହାର ଅଧିକାଂଶ ସଦସ୍ୟ ଗୋଟିଏ ୱାର୍ଡ଼ରେ, ଆଠ 'କ' ରେ ଥା'ନ୍ତି । ଏଠି ସବୁ କାରବାର ଆଶ୍ରମ ନିୟମ ଅନୁସାରେ ଚାଲୁଥାଏ । ରୋଷେଇ କରିବା ପାଇଁ ସାଧାରଣ କଏଦୀ ଦୁଇଜଣ ଥା'ନ୍ତି,କିନ୍ତୁ ବାକିସବୁ କାମ ଆମେ ହାତରେ କରୁଥାଉ । ଜେଲ୍‌ରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ରାଜବନ୍ଦୀଙ୍କର ସବୁକାମ କରିବାପାଇଁ ସାଧାରଣ କଏଦୀଙ୍କୁ ନିଯୁକ୍ତ କରାଯାଇଥାଏ । ରୋଷେଇବାସ, ବାସନମଜା, ଘରସଫା, ଲୁଗାକଚା ଇତ୍ୟାଦି ଏପରି କୌଣସି ଫରମାସ ନଥାଏ ଯାହା ଖଟିବା ପାଇଁ ଲୋକ ନଥା'ନ୍ତି । ଯେଉଁମାନଙ୍କର ସ୍ୱାସ୍ଥ୍ୟ ବା ବୟସ ଯୋଗୁଁ ଅନ୍ୟର ସେବା ନ ହେଲେ ନ ଚଳେ ସେମାନଙ୍କର କଥା ଅଲଗା, କିନ୍ତୁ ସାଧାରଣ କର୍ମୀଙ୍କର ଅଭ୍ୟାସ ଏସବୁ ଦ୍ୱାରା ଖରାପ ହେଇଯାଏ । ଦେଶସେବା ଓ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ ଜୀବନପଣ କରିଥିବା କର୍ମୀର ନିଜକୁ ସାଧାରଣ ଗରିବ ଲୋକସହିତ ମିଶାଇ ଦେବାର ଯେଉଁ ମନୋଭାବ ଆସିବା ଆବଶ୍ୟକ ତାହା ପରିବର୍ତ୍ତେ ଏ ଭଳି ସେବା ଦ୍ୱାରା ଅଭିଜାତ ଓ ସୁବିଧାପ୍ରାପ୍ତ ଶ୍ରେଣୀର ମନୋବୃତ୍ତିଟା ହିଁ କାଏମ୍ ହେଇଯାଏ । ଉଚ୍ଚ ଜାତିର ବାହାଘରମାନଙ୍କରେ "ସାଆନ୍ତ କୁଣିଆ"ଙ୍କର ଯେଉଁ ମନୋଭାବ ଦେଖାଯାଏ ତାହାକୁ ହିଁ ଆମେ ନିର୍ବିଚାରରେ "ଆତ୍ମସମ୍ମାନବୋଧ" ବୋଲି ବିଚାରୁ ଓ ଜେଲ୍‌ରେ ବି ତାହାହିଁ ଅନେକ ସମୟରେ ଦେଖାଉ । ଏଇଟା ଯେ ଗୋଟାଏ ପତନଶୀଳ ଓ ଅବାଞ୍ଛନୀୟ ସଂସ୍କୃତିର ଅଭିବ୍ୟକ୍ତି ତାହା ଆମେ ବୁଝୁନାହିଁ ।

ସେ ଯାହାହେଉ ଆମ ମେସ୍‌ରେ ବାପା ଓ ଚାଟୁବାବୁଙ୍କ ମାର୍ଗଦର୍ଶନରେ ସବୁ କାମ ଚାଲୁଥାଏ । ପ୍ରାର୍ଥନା ଦୁଇଓଳି ହୁଏ । ସକାଳୁ ଉଠି ବାସନମଜାର ଧୂମ ଲାଗେ । ପିତଳ ବାସନକୁ ବାରମ୍ବାର ମାଜି ସଫା ରଖିବା ଗୋଟାଏ ରୀତିମତ ପରିଶ୍ରମର କାମଥାଏ । ଜଳଖିଆ ଖାଇସାରି ଚାଉଳ ବଛା ବର୍ଗ ବସେ । ସମସ୍ତେ ଚାଉଳ ବାଛନ୍ତି ଓ ଜଣେ କେହି ଗାନ୍ଧୀଜୀ, ବିନୋବାଜୀ ବା ଅନ୍ୟ କାହାରି କୌଣସି ଭଲ ବହିରୁ କିଛି ପଢ଼ନ୍ତି । ଅଟାପେଷା ଖଟଣୀ ବି

ଚାଲେ । ଆମ ମେସ୍‌ରେ ଆମେ ଅଟା ନ ନେଇ ଗହମ ନେଉ, ତାହାକୁ ବାଛି ଧୋଇ ସଫାକରି ନିଜେ ପେଷିନେଉ । ସକାଳ ଓ ଦୁଇ ପ୍ରହରରେ ନଡ଼ିଆକୋରା ଖଟଣୀଟା ବି ଗୁରୁତ୍ୱପୂର୍ଣ୍ଣ ଥିଲା । ଘିଅ ଓ ତେଲରେ ଭେଜାଲକୁ ଏଡ଼େଇ ହେବ ନାହିଁ, ଆମେ ମେସ୍‌ରେ ଆମେ ତାହା ବଦଳରେ ନଡ଼ିଆ ନେଉଥାଉ । ଦିନକୁ ମୁଣ୍ଡପିଛା ଗୋଟାଏ ଲେଖାଁ ନଡ଼ିଆ ମିଳୁଥାଏ । ତରକାରୀରେ ନଡ଼ିଆକୋରା ପଡ଼େ । ଜଳଖିଆରେ ଓ ରାତିରେ ରୁଟି ସାଙ୍ଗରେ ନଡ଼ିଆକୋରା ଖାଉ । ନଡ଼ିଆରୁ ଖାଣ୍ଟି ତେଲ ପେଟକୁ ଯାଉଥାଏ । ଭେଜାଲର ପ୍ରଶ୍ନ ନ ଥାଏ । ଦିନକୁ ଗୋଟାଏ ଲେଖାଁ ବା ତାଠୁଁ ବେଶୀ ନଡ଼ିଆ ଖାଇ କାହାରି କେବେ ପେଟ ଖରାପ ହେଲାନାହିଁ ।

ଦାଦା ତ ନଡ଼ିଆ କୋରାକୁ ନାଁ ଦେଇଥିଲେ ଇଣ୍ଟେଷ୍ଟାଇନାଲ୍ ବ୍ରଶ୍‌ଅନ୍ତ ସଫାକରିବାର ବ୍ରୁସ୍ । ତା'ର ପୁରୁଣା ଆମାତିସାର ରୋଗ ଥିଲା, କିନ୍ତୁ ନଡ଼ିଆ ଖାଇ ତା'ର ଉପକାର ହିଁ ହେଲା । ଦାଦା ପୁରୀ ଜେଲ୍‌ରୁ ପରେ ବ୍ରହ୍ମପୁରକୁ ବଦଳି ହେଇ ଆସିଥିଲା । ୧୯୪୩ ଅକ୍ଟୋବର ମାସରେ ଯେଉଁ ପ୍ରବଳ ଝଡ଼ ତୋଫାନ ବା ବାତ୍ୟା ହେଇଥିଲା ତାହାଦ୍ୱାରା ପୁରୀ ଜେଲ୍‌ର ସବୁ ବ୍ୟବସ୍ଥା ଅକାମୀ ହେଇଯାଇଥିଲା । ଖାଦ୍ୟପେୟ ମିଳୁ ନ ଥିଲା । ଏ ଅବସ୍ଥାରେ ରାଜନୀତିକ ବନ୍ଦୀମାନେ ଜେଲ୍ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଜେଲ୍ କାନ୍ଥ ଖୋଳିବା ଆରମ୍ଭ କଲେ । ଯେଉଁ କାନ୍ଥଟା ଖୋଳୁଥିଲେ ସେଟା ବାହାର କାନ୍ଥ ନୁହେଁ, ଜେଲ୍‌ର ଭିତର ଆଡ଼ର । ତଥାପି ଜେଲ୍ ଭାଙ୍ଗି ପଳେଇବା ଚେଷ୍ଟା ଅପରାଧରେ ଦାଦା ଓ ଅନ୍ୟ କେତେଜଣଙ୍କୁ ସଜା ହେଇ ତୃତୀୟ ଶ୍ରେଣୀରେ ରଖା ହେଇଥିଲା । ଦାଦା ଅନ୍ୟପାଖରେ ତୃତୀୟଶ୍ରେଣୀ ୱାର୍ଡ଼ରେ ଥିଲା କିନ୍ତୁ ଆମେ ମେସ୍‌ରେ ଖାଉଥିଲା ଓ ଦିନଯାକ ଏଇ ପାଖରେ ରହୁଥିଲା । ଆମ ମେସ୍‌ରେ ମୋଟ ପଇଁତ୍ରିଶଜଣ ଖଣ୍ଡେ ସଦସ୍ୟ ଥା'ନ୍ତି ।

ଉପରଓଳି ଆମର ରୁଟି ଖଟଣୀ ଖୋଲେ । ଯେ ବି ଗୋଟାଏ କାରଖାନା ସମ୍ବଲପୁରର ଶୁକ୍ଳଜୀ ବି ଆମ ମେସ୍‌ରେ ଖା'ନ୍ତି ମାତ୍ର ଅନ୍ୟତ୍ର ରହୁଥା'ନ୍ତି । ସେ ଦଶଟା ଏଗାରଟାବେଳେ ଆସି ଅଟାଦଳି ରଖିଯା'ନ୍ତି । ଆଠ ନଅ ସେର ଖଣ୍ଡେ । ଦୁଇତିନିଟା ଉଠା କୋଇଲା ଚୁଲି ଥାଏ । ଆଚାର୍ଯ୍ୟ ମହାଶୟଙ୍କ ଜିମା ଚୁଲି ଲଗେଇବା କାମ ଥାଏ । ବେଲିବା, ସେକିବା ପାଇଁ ଦୁଇତିନି ଜଣ ଲାଗିଥାନ୍ତି । ଆଚାର୍ଯ୍ୟ ମହାଶୟ ରୁଟିକୁ ନିଆଁରେ ପକେଇ ଫୁଲେଇବା କାମଟା କରନ୍ତି । ଚୁଲିକୁ ବିଞ୍ଚୁ ବିଞ୍ଚୁ ଦିନେ ଦିନେ ତାଙ୍କ ଗାମୁଛା ପୋଡ଼ିଯାଏ । ରୁଟିବେଲା, ସେକା ଇତ୍ୟାଦିର ପଞ୍ଜା କଳାକୌଶଳ ମଧ ଏଠି ରୁଟି ଖଟଣୀରେ ସାହାଯ୍ୟ କରୁଥିବା ସମସ୍ତ କର୍ମୀ ଆୟତ୍ତ କରି ନେଇଥିଲେ । ସେ ଏକଦମ୍ ବଢ଼ିଆ ରୁଟି ହେଉଥାଏ । ତେବେ ଏତେ ଲୋକଙ୍କୁ ଗରମ ଗରମ ରୁଟି ତିଆରିକରି ପତରରେ ପରଷିବା ତ ସମ୍ଭବ ନୁହେଁ । ରୁଟି ଆଗରୁ ତିଆରି ହେଇ ରହି ଥଣ୍ଡା ହେଇଯାଏ । ଶେଷକୁ ଗୋଟିଏ କାଠ ବାକ୍ସରେ କାଗଜ ଓ କମ୍ବଳର ଅସ୍ତର ଦେଇ ଏକ ତାପରକ୍ଷକ ବାକ୍ସ ତିଆରି ହେଲା । ସେଥିରେ ରୁଟି ରଖା ହେଉଥିଲା ଓ ଖାଇବା ବେଳ ପର୍ଯ୍ୟନ୍ତ ତାହା ଗରମ ରହିପାରୁଥିଲା ।

## ସମୟର ଉପଯୋଗ

କଟକ ଜେଲ୍‌ରେ ଆୟତ୍ତ କରାଯାଇଥିବା କଳାକୌଶଳଗୁଡ଼ିକ ଏଠି ମଧ୍ୟ ପ୍ରୟୋଗ କରାଗଲା ଓ ଚକିକୁ ଭାରି ହାଲୁକା କରିବାର ଉନ୍ନତ ଧରଣର ବ୍ୟବସ୍ଥା ଉଦ୍‌ଭାବନ କରାଗଲା । ବାପା ଗୋଟିଏ ସେଟ୍ ବଢ଼େଇ ହତିଆର ଜୋଗାଡ଼ କରିଥା'ନ୍ତି । ଆମ ଭିତରୁ ଅକ୍ରୁର ଜେନା ବଢ଼େଇ କାମ ଭଲ ଜାଣିଥା'ନ୍ତି । ମୁଁ ବି କିଛି କିଛି ଜାଣିଥାଏ । ତେଣୁ ନାନା ପ୍ରକାରର ପ୍ରୟୋଗ କରାଯାଇ ପାରୁଥାଏ । ଏଠି ମଧ୍ୟ ସୂତାକଟା ଜୋର୍‌ସୋର୍‌ରେ ଚାଲିଥାଏ ଓ ପୁରୁଣା ଦଦରା ଜେଲ୍ ଅରଟସବୁକୁ ମରାମତି କରି ଓ ସେଥିରେ ବାଉଁଶ କମାଣି ଲଗେଇ କାମରେ ଲଗାଯାଇଥାଏ । ଷ୍ଟେସନମାନଙ୍କରେ ଭାରୀ ମାଲ୍ ଓଜନ କରିବା ପାଇଁ ଯେଉଁ ଓଜନକଳ ଥାଏ, ତା'ର ନିର୍ମାଣ ପଦ୍ଧତିଟା ମୁଁ କେଉଁଠି ଗୋଟାଏ ଲକ୍ଷ୍ୟ କରିଥିଲି । ତା'ର ଗାଣିତିକ ସୂତ୍ରର କଳନା କରି କାଠ, ଟିଣ ପତର, ତାର ଓ କଣ୍ଟା ସାହାଯ୍ୟରେ ମୁଁ ଏକ ସେହି ଧରଣର ଓଜନ ଯନ୍ତ୍ର ସେଠି ତିଆରି କଲି । ସେଥିରେ ଓଜନ ଘଣ୍ଟା ଭଳି ଗୋଲ ମୁଖପଟ ଉପରେ ଦେଖାଯାଉଥିଲା, ୧୮୦ ପାଉଣ୍ଡ ଯାଏ ଓଜନ ହେଇପାରୁଥିଲା ଓ ୧୫୦ ପାଉଣ୍ଡ ଭିତରେ ଓଜନ ଶତକଡ଼ା ପାଞ୍ଚଭାଗ ଖଣ୍ଡେ ଏ ପାଖ ସେପାଖ ହେଉଥିଲା ।

ଗୋଟିଏ ତନ୍ତ ବି ଜୋଗାଡ଼କରି ଆମରି ୱାର୍ଡ଼ରେ ପକାଯାଇଥାଏ । ସେଥିରେ ଆମେସବୁ ବୁଣା ଅଭ୍ୟାସ କରୁଥାଉ । ବିଶ୍ୱଦା ଓ ଶୁକଦେବ ସାହୁ ଲୁଗା ବୁଣାରେ ପ୍ରବୀଣ ଥା'ନ୍ତି । ଜେଲ୍‌ରେ କଟା ସୂତା ସେଇଠି ବୁଣି ନେଉଥାଉ । ମୋର ଅନ୍ତତଃ ସେଥିରେ ଲୁଗାବୁଣାରେ ହାତ ବସିଗଲା । ଶୁକଦେବ ଓ ମୁଁ ମିଶି ମଶୁରି କନା ବୁଣିବାର ପ୍ରଣାଳୀଟାକୁ ସେଠି ନୂଆକରି ଆବିଷ୍କାର କଲୁ ଓ ଆଚାର୍ଯ୍ୟ ମହାଶୟଙ୍କ ପାଇଁ ଗୋଟିଏ ମଶୁରି ଥାନ ବୁଣିଦେଲୁ ।

ମୁଁ ଏଠି ପୁଣି ଗଣିତ ଓ ମେକାନିକସ୍ ପଢ଼ିବା ଚାଲୁକଲି । ସ୍ପେରିକାଲ୍ ଏଷ୍ଟ୍ରୋନମି ବା ଗୋଲାକାର ଜ୍ୟୋତିବିଜ୍ଞାନ ବିଷୟରେ ଖଣ୍ଡେ ବହି ଜୋଗାଡ଼ କରିଥିଲି । ତାକୁ ପଢ଼ିଲି ଓ ସେଥିପାଇଁ ଆବଶ୍ୟକ କନିକ୍ ସେକସନ୍ ଓ କୋଅର୍ଡ଼ିନେଟ୍ ଜ୍ୟାମିତି ମଧ୍ୟ ପଢ଼ିଗଲି । ପରମାଣୁର ରଚନା ସମ୍ବନ୍ଧରେ ଆଂଦ୍ରେଦଙ୍କର ଲେଖା ଖଣ୍ଡେ ବହି ମଧ୍ୟ ପାଇଥିଲି । ସେ ଖଣ୍ଡ ବୁଝିବା ଏଣିକି କଠିନ ହେଲାନାହିଁ । ସେଇଥିରୁ ମୁଁ ଜାଣିବାକୁ ପାଇଲି ଯେ ପରମାଣୁର ମୂଳପିଣ୍ଡ ବା ମଞ୍ଜ ଭିତରେ କି ପ୍ରଚଣ୍ଡ ଶକ୍ତି ଆବଦ୍ଧ ହେଇ ରହିଛି । ତେଣୁ ଦୁଇ ବର୍ଷ ପରେ ଯେତେବେଳେ ଜାପାନ ଉପରେ ପରମାଣୁ ବୋମାର ବିସ୍ଫୋରଣ ହେଲା ସେତେବେଳେ ମୁଁ ବିଶେଷ ବିସ୍ମିତ ହେଇ ନ ଥିଲି ।

ତେବେ ଏଠି ମୁଁ ବେଶି ସମୟ ଦେଇଥିଲି ଭାଷା ଶିଖିବାରେ । ବ୍ରହ୍ମପୁରର ମାଷ୍ଟର ସାନ୍ନୟା ଆମପାଇଁ ଘଣ୍ଟାଏ ଲେଖା ସମୟ ଦେଉଥା'ନ୍ତି । ମୁଁ, ବୈଦ୍ୟନାଥ ଓ ଆଉ ଜଣେଅଧେ କିଏ ତେଲୁଗୁ ଶିଖୁଥାଉ । ମାଷ୍ଟର ସାନ୍ନୟା ଦେବତୁଲ୍ୟ ଲୋକ । ସେ ଅସୁସ୍ଥ ହେଇ ସେହି ବନ୍ଦୀ

ଅବସ୍ଥାରେ ଅଳ୍ପଦିନ ପରେ ବ୍ରହ୍ମପୁର ଡାକ୍ତରଖାନାରେ ଦେହତ୍ୟାଗ କଲେ । ମୁଁ ଦିନକୁ ଚାରିଘଣ୍ଟା ଖଣ୍ଡେ ତେଲୁଗୁ ପାଇଁ ଦେଉଥାଏ । ପଢ଼ିବା, ଲେଖିବା ଓ କଥାବାର୍ତ୍ତା ଅଭ୍ୟାସ, ଏସବୁ ନିୟମିତ କରୁଥାଏ । କଥାବାର୍ତ୍ତା ଅଭ୍ୟାସ କରିବାକୁ ସଦାଶିବ ବାବୁ (ତ୍ରିପାଠୀ) ଓ ଉମା ବାବୁ- ବ୍ରହ୍ମପୁରର ଉମାଚରଣ ପଟ୍ଟନାୟକ - ଯଥେଷ୍ଟ ସମୟ ଦେଉଥା'ନ୍ତି ଓ ସାହାଯ୍ୟ କରୁଥା'ନ୍ତି । ମୁଁ ଅନୁଭବ କରିଛି ଯେ କୌଣସି ଭାଷା ଶିଖିବାରେ ଶୁଣିବାର ଅଭ୍ୟାସଟା ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ବହି ବଢ଼ି ଭାଷା ଶିଖିଲେ ଏଇ ଅଭ୍ୟାସଟା ହୁଏ ନାହିଁ ଓ ବ୍ୟାବହାରିକ କ୍ଷେତ୍ରରେ ଅସୁବିଧା ହୁଏ । ତାହା ଉପରକୁ ତେଲୁଗୁରେ ସାଧୁଭାଷା ଓ କଥିତଭାଷାର ଶୈଳୀରେ ପାର୍ଥକ୍ୟ ଓଡ଼ିଆ, ବଙ୍ଗଳା ଆଦି ଅପେକ୍ଷା ଯଥେଷ୍ଟ ବେଶି । ପାଠ୍ୟପୁସ୍ତକରେ ଥିବା ଭାଷା ଲୋକମୁଖରେ ଶୁଣିବାକୁ ମିଳେ ନାହିଁ । ତେବେ ଖବରକାଗଜ ଓ ଗଳ୍ପ ଉପନ୍ୟାସରେ କଥିତ ଶୈଳୀର ବ୍ୟବହାର ବେଶ୍ ବ୍ୟାପକ । ସଦାଶିବ ବାବୁ ପ୍ରଭୃତିଙ୍କଠାରୁ ତେଲୁଗୁର ଯେଉଁ ବୋଲି ଶୁଣି ଶିଖିଥିଲି ତାହା କଟକର ରିକ୍ସାବାଲାଙ୍କଠାରୁ ଭିନ୍ନ । ସେଥିପାଇଁ ଏ ଶେଷୋକ୍ତିଙ୍କର କଥା ବୁଝିବାକୁ ଯଥେଷ୍ଟ କଷ୍ଟ ହୁଏ ।

କଟକ ଜେଲ୍‌ରେ ଥିବାବେଳେ ମୋର ଛବି ଆଙ୍କିବାର ସଉକ ପୁଣି ଜାଗିଉଠିଥିଲା । ଖଣ୍ଡେ ଡ୍ରଇଂ ଖାତା ଜୋଗାଡ଼ କରି ପେନ୍‌ସିଲ୍ ସ୍କେଚ୍ କରୁଥିଲି । ବ୍ରହ୍ମପୁରରେ କବି ବୀରକିଶୋରଙ୍କ ସମ୍ପାଦନାରେ ଗୋଟିଏ ହାତଲେଖା ମାସିକ ପତ୍ର ବାହାରୁଥିଲା । ସେଥିରେ ମୁଁ ପ୍ରତିମାସରେ ଗୋଟିଏ ଲେଖାଁ ବ୍ୟଙ୍ଗଚିତ୍ର ଦେବା ଆରମ୍ଭ କଲି ଓ ତା'ର ପ୍ରଚ୍ଛଦପଟ ବି ଆଙ୍କୁଥିଲି ।

ଆମ ମେସ୍‌ରେ କଟକର ଦାଶରଥି ବେହେରା ଥା'ନ୍ତି । ଆମେ ତାଙ୍କୁ ମଉସା ଡାକୁ । ସେ ଓ ବାପା ଦୁହେଁ ଦାଢ଼ି ରଖିଥା'ନ୍ତି ଓ ଲମ୍ବବାଳ ରଖି ତାଙ୍କୁ ତାଳୁ ଉପରେ ଗଣ୍ଠି ପକାଉଥା'ନ୍ତି , ଠିକ୍ ଯେମିତି ଋଷିଙ୍କର ଚିତ୍ର ପିଲାଙ୍କ ବହିରେ ଥାଏ । ଆମ ମେସ୍‌ରେ ଗହମ ଆଦି ପଦାରେ ଶୁଖା ହେଉଥାଏ । ବଢ଼ି ବି କିଛି ବୋଧହୁଏ ବିଶ୍ୱଦା ପାରିଥାଏ । ବାପା ଓ ମଉସା କାଉ ହୁରୁଡ଼େଇବା କାମ ନେଇଥା'ନ୍ତି । ଦୁଇଖଣ୍ଡ ବାଟୁଳିଖଡ଼ା ତିଆରି ହୋଇଥାଏ । ଯେତେବେଳେ ଦୁହେଁ ତାକୁ ଧରି ବାହାରି ପଡ଼ନ୍ତି, ଆମେ ସବୁ କହୁ - ହେଇ ରାମ ଲକ୍ଷ୍ମଣ ତାଡ଼କା ବଧକରି ବାହାରିଲେ ।

ଦାଶରଥି ମଉସା ତ୍ରିପଣ୍ଡ କଳା ଓ ତା' ସାଙ୍ଗକୁ ପ୍ରକାଣ୍ଡ ଦାଢ଼ି ଓ ଜଟା । ଜଣେ ଓ୍ୱାର୍ଡ଼ର ଥା'ନ୍ତି । ସେ ବି ସେମିତି କୃଷ୍ଣକାୟ ଓ ବିରାଟ ଦାଢ଼ିର ଅଧିକାରୀ । ସେତେବେଳେ ଗୋଟିଏ ଗୀତ ଭାରି ଚାଲୁ ହେଇଥାଏ - "ହେଲା ନିରଜନ ପଥେ ଦେଖା" ଗୀତଟା ଅବଶ୍ୟ ପ୍ରେମରସାତ୍ମକ, କିନ୍ତୁ ମୁଁ ତାକୁ ଗୋଟାଏ ବ୍ୟଙ୍ଗ ଚିତ୍ରର ଶୀର୍ଷକରୂପେ ବ୍ୟବହାର କଲି-ମଉସା ଓ ସେ ଓ୍ୱାର୍ଡ଼ର କିଟି କିଟି ଅନ୍ଧାରରେ ପରସ୍ପରକୁ ହଠାତ୍ ଭେଟି ଆତଙ୍କିତ ହେଇ ପଡ଼ିଛନ୍ତି ।

ଜେଲ୍‌ରେ ଯେମିତି ଖାଇବା ରୁଚି ସେମିତି ରାଜନୀତିକ ମତ ଭିତ୍ତିରେ ମଧ୍ୟ ଭିନ୍ନ ଭିନ୍ନ ଗୋଷ୍ଠୀ ଥାଏ । ନଅ ନମ୍ବର 'ଖ' ରେ କମ୍ୟୁନିଷ୍ଟଙ୍କର ଆଡ୍ଡା ଥାଏ । ଜେଲକୁ କେହି ନୂଆ ଲୋକ ଆମଦାନୀ ହେଲେ ସମସ୍ତେ ଆମ ହତାର ଫାଟକ ପାଖକୁ ଦୌଡ଼ନ୍ତି, କିଏ ଆସିଲା

ଦେଖିବାକୁ ଓ ନିଜ ନିଜର ଗୋଷ୍ଠୀକୁ ଟାଣିବାକୁ । ଏ କାମ ପାଇଁ ଆମର ଥା'ନ୍ତି ଚାଟୁବାବୁ । ଏ ଟଣାଟାଣି ପାଇଁ ଗୋଟିଏ ବ୍ୟଙ୍ଗଚିତ୍ର ସାଙ୍ଗକୁ ଧାଡ଼ିଏ ଗୀତ ଯୋଡ଼ା ହେଉଥିଲା - "ଦେଖିବା ଏ ଗାଡ଼ିଆ ଗୋଳାରୁ କିଏ ସେ ଧରିବ ବଡ଼ ଶେଉଳ ।"

ଆମ ୱାର୍ଡ଼ରେ ଯେମିତି ସେମିତି ଅନ୍ୟ ୱାର୍ଡ଼ରମାନଙ୍କରେ ବି ନାନା କାର୍ଯ୍ୟକ୍ରମ ଚାଲିଥାଏ । କମ୍ୟୁନିଷ୍ଟମାନେ ନୂଆ ସଂଗୃହୀତ ଚେଲାମାନଙ୍କୁ ମାର୍କ୍ସ, ଲେନିନ୍ ଘୋଷଉଥା'ନ୍ତି । ଅନ୍ୟତ୍ର ରାଜନୀତି ଓ ଅର୍ଥନୀତିର ବହିପଢ଼ା ହେଉଥାଏ । ସମାଜବାଦ ବିଷୟରେ ମଧ୍ୟ ପଢ଼ାଶୁଣା ଚାଲିଥାଏ । କେଉଁଠି ଭାଗବତ, କେଉଁଠି ଗୀତାପାଠ ହେଉଥାଏ । ଏଇଠି ବାପା, ଆଚାର୍ଯ୍ୟ ମହାଶୟ, ଜଗନ୍ନାଥ ମଉସା ଓ ଭାଗୁବାବୁ ମିଶି ଗୀତାର ଗୋଟାଏ ସମଶ୍ଳୋକୀ ଓଡ଼ିଆ ଅନୁବାଦ କରିଥିଲେ । କେଉଁଠି ଖଡ଼ି ପକେଇ ଜ୍ୟୋତିଷ ଗଣନା ଚାଲିଥାଏ ଯେ କାହାର କେବେ ଖଲାସ ହେବାର ଯୋଗ ଅଛି ।

ରାଜନୀତି, ଅର୍ଥନୀତି ଆଦିର ପଢ଼ାଶୁଣା ଛଡ଼ା ଅନ୍ୟ କେତେକ ବିଷୟରେ ବି ପଢ଼ାପଢ଼ି ଗୋଟିଏ ସମୟରେ ଆରମ୍ଭ ହେଇଗଲା । ରବିଦା (ଘୋଷ) ଶରୀରବୃତ୍ତ ଓ ପ୍ରାଥମିକ ଚିକିତ୍ସା ବିଷୟରେ ପଢ଼େଇବାକୁ ଆରମ୍ଭ କଲା । ତା' ପାଖରେ ବହୁତ ଛାତ୍ର ଜୁଟିଲେ । ମୁଁ ଯେତକ ଯନ୍ତ୍ରବିଜ୍ଞାନ ଜାଣିଥିଲି ତାକୁ ଭିତିକରି କେତେ ଜଣଙ୍କୁ ନେଇ ତାହା ପଢ଼େଇବାକୁ ଆରମ୍ଭ କରିଦେଲି । ଏ ସବୁ ବିଷୟରେ ପୁଣି ପରୀକ୍ଷା ଦେଇ ଛାତ୍ରଙ୍କୁ ପାସ୍ ଫେଲ୍ ବି କରାହେଲା । ଶରତବାବୁ, ବିନୋଦ କାନୁନ୍‌ଗୋ ହେରିକା କେତେଜଣ ସମ୍ବଲପୁରର କବିରାଜ ଘନଶ୍ୟାମ ପାଣିଗ୍ରାହୀ ମହାଶୟଙ୍କ ସାହାଯ୍ୟରେ ଚରକ ସଂହିତା ଓ ଶୁଶ୍ରୁତ ସଂହିତା ଅଧ୍ୟୟନ ଆରମ୍ଭ କରିଦେଲେ । ରୀତିମତ ଗୋଟିଏ ଜେଲ୍ ବିଶ୍ୱବିଦ୍ୟାଳୟ ଜାଣି ସେଠି ଚାଲିଲା ।

ଏ ସବୁ ଭିତରେ ରାଷ୍ଟ୍ରୀୟ ପର୍ବସବୁ ପାଳିତ ହେଉଥାଏ । ୧୯୩୪ ଅକ୍ଟୋବର ଗାନ୍ଧୀ ଜୟନ୍ତୀ ଖୁବ୍ ସରଗରମରେ ପାଳିତ ହେଲା । ପ୍ରତି ୱାର୍ଡ଼ରେ ଗାନ୍ଧୀଙ୍କ ଛବି ଖୁବ୍ ସଜାସଜି କରି ରଖାଯାଇ ପ୍ରତିଦିନ ତାହା ସାମନାରେ ପ୍ରାର୍ଥନା ହେଲା ଓ ଦଶଦିନ କି କେତେ ଧରି ୱାର୍ଡ଼ମାନଙ୍କରେ ପାଳିକରି ଅଖଣ୍ଡ ସୂତ୍ରଯଜ୍ଞ ଚାଲିଲା । ଆମ ୱାର୍ଡ଼ରେ ଯେଉଁଦିନ ପାଳିପଡ଼ିଲା ଚାଟୁବାବୁ ପ୍ରସ୍ତାବ ଦେଲେ ଯେ ଦେଖାଯାଉ ଲଗାତାର କେତେ ଘଣ୍ଟା କାଟି ହେଉଛି । ସେ ଓ ମୁଁ ସାଙ୍ଗହେଇ ବସିଲୁ । ମଝିରେ କେବଳ ଶୌଚ ପାଇଁ ଓ ଥରେ ଲେଖାଁ ଖାଇବା ପାଇଁ ଯାହା ଉଠିଥିଲୁ । ପୂରା ବାଇଶି ଘଣ୍ଟା କାଟିଲୁ । ବାପା କିନ୍ତୁ ଏ ପ୍ରକାର ହୁଜୁଗକୁ ପସନ୍ଦ କରି ନ ଥିଲେ ଓ କହିଥିଲେ ଯେ ଏହାଦ୍ୱାରା କେବଳ ଅନ୍ଧ ଭକ୍ତିର ପ୍ରଚାର ହେଉଛି ।

ଥରେ ସଚ୍ଚିବାବୁ, ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତି ବୈଷ୍ଣବମାନେ ଚବିଶ ପ୍ରହରୀ ସଂକୀର୍ତ୍ତନ କଲେ । ଏହାର ଶେଷରେ ନଗରକୀର୍ତ୍ତନ ହେଲା ଓ ରୀତିମତ ଦହିନଉତି- ଅଛ ଘୋଳମିଶା ପାଣି ମାଠିଆ - ଭଙ୍ଗା ହେଇ ସେଥିରେ ସମସ୍ତେ ଗଡ଼ାଗଡ଼ି ହେଲେ ।

୧୯୪୪ ଜାନୁୟାରୀ ଛବିଶ ଦିନ ଜେଲ୍ ଭିତରେ ପତାକା ଉତ୍ତୋଳନ କରାଯିବାର

ସ୍ଥିର ହେଲା । କେଉଁଠୁ ରଙ୍ଗୀନ କନା ଯୋଗାଡ଼ କରି ଏକ ପତାକା ତିଆରି କରାଗଲା ଓ ଭୋରରୁ ଖୁଣ୍ଟ ପୋତି ବିଧିଅନୁସାରେ ରାଷ୍ଟ୍ରୀୟ ସଙ୍ଗୀତ ଗାଇ ପତାକା ଉତ୍ତୋଳନ ହେଲା । ଜେଲ୍ କର୍ତ୍ତୃପକ୍ଷ ଖବର ପାଇ ସଦଳବଳେ ପତାକା ଜବତ କରିବାକୁ ଆସିଲେ । ପଚାଶ ଜଣ ଖଣ୍ଡେ ତାକୁ ଘେରିଯାଇ ରକ୍ଷା କରିବାକୁ ଚେଷ୍ଟା କଲେ । କିଛି ସମୟ ଧସ୍ତାଧସ୍ତି ପରେ କର୍ତ୍ତୃପକ୍ଷ ପତାକାଟି ନେଇଯିବାରେ ସମର୍ଥ ହେଲେ ।

ଏ ଜେଲ ପାଖରେ ଗୋଟିଏ ରାତିରେ ଜାପାନୀ ବୋମା ପଡ଼ିଲା । ରାତି ଦେଢ଼ଟା ଦୁଇଟା ହେବ । ଅଠାତ୍ ଭୀଷଣ କଡ଼ାତ୍-କଡ଼ାତ୍-କଡ଼ାତ୍ ଶବ୍ଦରେ ସମସ୍ତଙ୍କର ନିଦ ଭାଙ୍ଗିଗଲା । ଆଚାର୍ଯ୍ୟ ମହାଶୟ ବାହାର ବାରଣ୍ଡାରେ ଶୋଇଥିଲେ । ଭିତରେ ଥିବା ଆମେସବୁ ଉଠିପଡ଼ି ପଦାକୁ ଧାଇଁଗଲୁ । ଉପରେ ଗୋଟାଏ ଉଡ଼ାଜାହାଜର ଗର୍ଜନ ଶୁଣାଗଲା । ଗୋଟାଏ ରେଲ୍‌ଇଞ୍ଜିନ ସିଟି ବଜେଇ ପାଖରେ ଅଟକି ଯିବା ପରି ଜଣାଗଲା । ବାପା ପ୍ରଥମେ କହିଲେ- "ବୋଧହୁଏ ବୋମା ପଡୁଛି, ପଦାକୁ ଯାଅନାହିଁ ।" ଅବଶ୍ୟ ଆମର ୱାର୍ଡ଼ ଯେଉଁ ପ୍ରକାରର ମାଲମସଲାରେ ତିଆରି ସେଥିରେ ବୋମା ସାମନାରେ ବାହାରେ ଭିତରେ ଖାସ୍ ଫରକ ନଥା'ନ୍ତା । ଯାହାହେଉ ଅନେକ ସମୟ କଳ୍ପନା ଜଳ୍ପନା ଚାଲିଲା । ସକାଳୁ ଖବର ମିଳିଲା ଯେ ପ୍ରକୃତରେ ଜାପାନୀ ବୋମା ପଡ଼ିଛି । ମାନ୍ଦ୍ରାଜ କଲିକତା ରେଲ୍‌ଲାଇନ୍‌ଟା ଜେଲ୍‌ର ଆମେ ରହୁଥିବା ପାଖର ଗୋଟିଏ କୋଣର ଖୁବ୍ ନିକଟ ଦେଇ ଯାଇଛି ଓ କଲିକତା ଆଡ଼କୁ ଟିକିଏ ଆଗକୁ ଯାଇ ଅଳ୍ପ ବାଙ୍କି ଯାଇଛି । ଲାଇନ୍ ଉପରେ ଥିବା ଏକ ମାଲଗାଡ଼ିକୁ ଲକ୍ଷ୍ୟ କରି ବୋମା ପକାଯାଇଥିଲା । କିନ୍ତୁ ସେ ଗୁଡାକ ଟିକିଏ ବେଶୀ ଆଗକୁ ଚାଲି ଯାଇ ବାଙ୍କକୁ ଟପି ଲାଇନ୍ ବାହାରେ ପଡ଼ିଥିଲା । ବୋମାର ଖୋଳର କେତେଗୁଡ଼ିଏ ଟୁକୁରା ବି ୱାର୍ଡ଼ରମାନେ ଆଣି ଦେଖେଇଲେ । ବୋମାଗୁଡାକ ଆଉ ଟିକିଏ ଲକ୍ଷ୍ୟଭ୍ରଷ୍ଟ ହେଇଥିଲେ ନିଧାଯ୍ୟ ଜେଲ୍ ଉପରେ ପଡ଼ିଥା'ନ୍ତା । ସ୍ୱଭାବତଃ ଏ ଘଟଣାପରେ ଯୁଦ୍ଧର ଗତି ଓ ଆମର ଖଲାସର ସମ୍ଭାବ୍ୟ ତାରିଖ ବିଷୟରେ କଳ୍ପନା ପ୍ରବନ୍ଧ ହେଇ ଉଠିଲା ।

## ଲକ୍ଷ୍ମଣ ନାୟକଙ୍କ ଫାଶୀ

କୋରାପୁଟର ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇ ବ୍ରହ୍ମପୁର ଜେଲ୍‌ରେ ଫାଶୀ ଆସାମୀଙ୍କ ପାଇଁ ନିର୍ଦ୍ଦିଷ୍ଟ କୋଠରୀରେ ରଖାଯାଇଥାଏ । ଫାଶୀ ଆସାମୀକୁ ଦିନରାତି ଗୋଟିକିଆ କୋଠରୀରେ ବନ୍ଦକରି ରଖାଯାଏ । ଖାଇବା ସେହି କୋଠରୀ ଭିତରେ ଦିଆଯାଏ । ଗାଧୋଇବା ଆଦି ପାଇଁ ଜମାଦାରର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଳ୍ପ ସମୟ ପାଇଁ ବାହାରକୁ ଅଣାଯାଏ ।

ଲକ୍ଷ୍ମଣ ନାୟକଙ୍କ ପାଇଁ ହାଇକୋର୍ଟରେ ଅପିଲ ଓ ଦୟାଭିକ୍ଷା ଦରଖାସ୍ତ ଆଦି କରାଯାଇଥିଲା, କିନ୍ତୁ ଏ ସବୁ ତଦବିରର ଭଲ ବ୍ୟବସ୍ଥା ହେଇ ପାରି ନଥିଲା । ଦଣ୍ଡ ବହାଲ ହେଲା । ଦୟାଭିକ୍ଷା ଆବେଦନର ମଧ୍ୟ ଫଳ ହେଲା ନାହିଁ । ଫାଶୀର ତାରିଖ ଠିକ୍ ହେଇଗଲା ।

ତା'ର ପୂର୍ବଦିନ ଖୋଦ୍ ଜେଲର୍ ଆସି ସବୁ ୱାର୍ଡ଼ ଖାନତଲାସ କରାଇଲେ, କାଳେ କୌଣସି ଅସ୍ତ୍ରଶସ୍ତ୍ର ଥିବ ବୋଲି । ସେ ଦିନକ ପାଇଁ ବଢ଼େଇ ହତିଆରତକ ମଧ୍ୟ ନେଇଗଲେ । ସେ ଦିନ ରାତିରେ ନମ୍ବର ବନ୍ଦ ହେଲା, ଅର୍ଥାତ୍ ୱାର୍ଡ଼ରମାନଙ୍କରେ ତାଲା ପଡ଼ିଲା । ଘର ଭିତରେ ସମସ୍ତେ ତାଲା ପଡ଼ି ରହିଲେ । ରାତିରେ କାହାରିକୁ କ୍ୱଚିତ ନିଦ ହେଇଥିବ । ସେ ଦୁଃସ୍ୱପ୍ନର କାଳରାତ୍ରି । ଆମରି ଜଣେ ଭାଇଙ୍କୁ ଶିକ୍ଷିତ ସଭ୍ୟ ଲୋକମାନେ ଘେରି ଥଣ୍ଡା ମିଜାସରେ ହତ୍ୟା କରିବେ । ଆମେ ଅସହାୟ ସାକ୍ଷୀ ହେଇ ରହିବା ? ଭାବିଲା ବେଳକୁ ମନ ବିଦ୍ରୋହ କରି ଉଠୁଥାଏ । କିନ୍ତୁ ଉପାୟ କ'ଣ ? ହିଂସାର ଯେଉଁ ନାଗପାଶ ଏ ଦେଶକୁ ଆବଦ୍ଧ କରି ରଖିଛି, ଆମ ସମସ୍ତଙ୍କୁ ଜବଳିତ କରି ରଖିଛି, ଏହିପରି ମୁହୂର୍ତ୍ତରେ ତାହାର ନଗ୍ନରୂପ ପ୍ରକଟ ହୁଏ ।

ହୁଏତ ବିଦ୍ରୋହ କରିବାର ବିଚାର କାହାରି କାହାରି ମନକୁ ଆସିଥିବ । ପରେ ବାହାରେ ଗୋଟାଏ କୌଣସିଠାରେ ଏକ କର୍ମୀ ବୈଠକରେ ଦାଦା କାନ୍ଦିପକେଇ କହିଲା ଯେ ଆମେସବୁ କାପୁରୁଷ, ଲକ୍ଷ୍ମଣ ନାୟକକୁ ବଞ୍ଚେଇବା ଚେଷ୍ଟାକରିବା ଉଚିତ ଥିଲା । ମରିଥା'ନ୍ତୁ ତ ମରିଥା'ନ୍ତୁ । ସେପରି ଉଦ୍ୟମ ସଫଳ ତ କେବେ ହେଇ ନ ଥା'ନ୍ତା, ତେବେ ଏ ପ୍ରତିବାଦ, ବିକ୍ଷୁବ୍ଧ ଆତ୍ମାର ଏକ ତୀବ୍ର ଓ ବ୍ୟାକୁଳ ଅଭିବ୍ୟକ୍ତି ହେଇଥା'ନ୍ତା । ଲକ୍ଷ୍ମଣ ନାୟକ ଗଲେ । ତାଙ୍କ ସାଙ୍ଗରେ ଆହୁରି ବି କେତେଜଣ ପ୍ରାଣ ଦେଇଥା'ନ୍ତି । ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ଜ୍ୱଳନ୍ତ ଆଦର୍ଶ ଓ ପ୍ରେରଣା ହେଇ ସେ ଘଟଣା ରହିଥା'ନ୍ତା । ମାତ୍ର ତାହା ତ ହେଲା ନାହିଁ । କେବଳ ସେ ଦିନର ହୃଦୟର କୋହ ଓ କ୍ରୋଧକୁ ହୃଦୟରେ ଚାପି ଅନେକେ ସେ ଦିନ ମନେ ମନେ ଏଇ ସଙ୍କଳ୍ପ କଲେ ଯେ ଯେଉଁ ଶାସନ ଲକ୍ଷ୍ମଣ ନାୟକର ପ୍ରାଣ ନେଇଛି ସେ ଶାସନକୁ ମୂଳପୋଛ ନିପାତ କରି ଛାଡ଼ିବୁ । ଲେନିନ୍‌ଙ୍କର ବଡ଼ ଭାଇ ଜାରଙ୍କୁ ହତ୍ୟା କରିବା ଉଦ୍ୟମ କରି ପ୍ରାଣଦଣ୍ଡ ପାଇଥିଲେ । ଲେନିନ୍ ପ୍ରତୀକାତ୍ମକ ପ୍ରତିବାଦରେ ନିଜର ପ୍ରାଣ ଦେଲେ ନାହିଁ । ଜାର୍ ଶାସନକୁ ମୂଳପୋଛ କରି ନୂଆ ସମାଜର ମୂଳପତନ କରିବାର ସଂକଳ୍ପ କଲେ ଓ ସେ ସଂକଳ୍ପ ଜଣାଅଧିକେ ସିଦ୍ଧ ହେଲା ।

କିନ୍ତୁ ଆମର ସେ କାଳରାତ୍ରିର ଅନୁଭୂତି କେତେଦିନ ମନେରହିଲା ? ସେ ସଂକଳ୍ପ କେତେ ବାଟ ଗଲା ? ଯେନତେନ ପ୍ରକାରେଣ ସ୍ୱଭାବ ହେଲା । ଯେଉଁମାନେ ସେ କାଳରାତ୍ରିର ସାକ୍ଷୀ ଥିଲେ ସେହିମାନଙ୍କ ଭିତରୁ ହିଁ କେତେ ନା କେତେ ବାହାରିଲେ ଲକ୍ଷ୍ମଣ ନାୟକ ଯେଉଁ ଜନତାର ପ୍ରତିନିଧି ତାହାରି ରକ୍ତମାଂସ ଶୋଷିବାକୁ । ଯେଉଁ ରାମନଥନ୍ ଅନ୍ୟାୟରେ, ଲକ୍ଷ୍ମଣ ନାୟକଙ୍କ ଅପରାଧର କୌଣସି ନିର୍ଭରଯୋଗ୍ୟ ସାକ୍ଷ୍ୟ ପ୍ରମାଣ ନ ଥାଇ ମଧ୍ୟ, ଉପରିସ୍ଥ କର୍ତ୍ତୃପକ୍ଷଙ୍କର ନିର୍ଦ୍ଦେଶରେ ତାକୁ ମୃତ୍ୟୁଦଣ୍ଡ ଦେଇଥିଲେ, ସେଇ ପରେ କଂଗ୍ରେସ ଶାସନର ସୁନାପୁଅ ହେଲେ । କଂଗ୍ରେସ ଲୋକେ ତାଙ୍କର ପାପବୋଧରୁ ଫାଇଦା ଉଠେଇ ଯାବତ୍ ଦୁର୍ନୀତିରେ ତାକୁ ହାତବାରସୀ କଲେ ।

ପୂର୍ବଦିନ ଲକ୍ଷ୍ମଣ ନାୟକ ସଦାଶିବ ବାବୁଙ୍କୁ ଭେଟିବାକୁ ଚାହିଁବାରୁ ଉପରଓଳି ସଦାଶିବ

ବାବୁଙ୍କୁ ତାଙ୍କ ପାଖକୁ ନିଆ ହେଲା । ଲକ୍ଷ୍ମଣ ନାୟକ ତାଙ୍କୁ କହିଲେ - "ବାବୁ, ମୁଁ ଯାଉଛି ସ୍ୱରାଜ ସତରେ ହେବ ନାଁ ? ଲୋକେ ସୁଖରେ ଶାନ୍ତିରେ ରହିବେ ନାଁ ?" ସଦାଶିବବାବୁ ବାଷ୍ପରୁଦ୍ଧ କଣ୍ଠରେ ଜବାବ ଦେଲେ - "ନିଶ୍ଚୟ ହେବ । ଏଥିରେ ଆଉ ସନ୍ଦେହ ଅଛି ?" ନାୟକ କହିଲେ - "ହଉ ! ଗାନ୍ଧୀ ମହାତ୍ମାଙ୍କ ଜୟ ।"

ରାତିଯାକ ଦୁଶ୍ଚିନ୍ତା । ଟିକେଟିକେ କଥାରେ ଚାଉଁକିନା ନିଦ ଭାଙ୍ଗିଯାଉଛି । ହେଇ ଚାରିଟା ବାଜିଲା ପରା । ଚାରିଟା କେତେରେ ଅନ୍ଧାର ଥାଉଁ ଥାଉଁ ଫାଶୀ ହେବ । ଲକ୍ଷ୍ମଣ ନାୟକଙ୍କୁ ଗାଧୁଆ ଗାଧୋଇ କରି ଦୁଇହାତକୁ ପଛପଟେ ହାତକଡ଼ିରେ ଆବଦ୍ଧ କରି ଚାରିଜଣ ୱାର୍ଡ଼ର ଧରି ଏକରକମ ଦୌଡ଼ିଲା ପରି ଫାଶୀ ମଞ୍ଚକୁ ନେଇଯିବେ । ସେଠି ଫୁଟବଲ୍ ପଡ଼ିଆର ଗୋଲପୋଷ୍ଟ ପରି ଗୋଟାଏ ଲୁହାର ଫାର୍ମା ଖଞ୍ଜା ଯାଇଥିବ । ସେଥିରେ ଫାଶୀ ରଶିର ଗୋଟାଏ ମୁଣ୍ଡ ଗୋଟାଏ ଲୁହାମୁଦିଆ ଭିତରେ ଗଳା ହୋଇ ମଜବୁତ ହେଇ ଗଣ୍ଠି ପଡ଼ିଥିବ । ଅନ୍ୟ ମୁଣ୍ଡରେ ଫାସ । ସେ ରଶି ଏକ ଅଳ୍ପ ସମୟ ପୂର୍ବ ଯାଏ ଜେଲରଙ୍କ ଖାସ୍ ଲୁହା ସିନ୍ଦୁକରେ ବନ୍ଦ ଥିଲା, ଯାହାର ଚାବି ଜେଲରଙ୍କ ଛଡ଼ା ଆଉ କାହା ହାତକୁ ଯାଏ ନାହିଁ । ରଶିରେ ଚର୍ବି ଓ ପାଚିଲା କଦଳୀ ଚକଟା ବୋଲି ତାକୁ ଖସଡ଼ା କରା ହେଇଥିବ । ଆସାମୀର ଉଚ୍ଚତା ଓ ଓଜନ ହିସାବ କରି ବହୁତ ସୂକ୍ଷ୍ମ ବୈଜ୍ଞାନିକ ଗଣନା ଦ୍ୱାରା ନିର୍ଦ୍ଧିଷ୍ଟ କରାଇ 'କାରା ସଂହିତା'ରେ ଲିପିବଦ୍ଧ ହେଇ ରହିଛି ଯେ ଅମୁକ ଓଜନ ଓ ଅମୁକ ଉଚ୍ଚତାର ଆସାମୀ ପାଇଁ କେତେ ଲମ୍ବ ରଶି ଲୋଡ଼ା ହେବ । ଏ ରଶିକୁ ସେହି ମାପ ଅନୁସାରେ ଖୁଣ୍ଟରେ ଝୋଖାଯାଇଥିବ । ଫାଶୀ ଦିନର ପୂର୍ବଦିନ ଦିନେ ଆସାମୀର ସମାନ ଓଜନର ବାଲିବସ୍ତାକୁ ଫାଶୀରେ ଝୁଲେଇ ସେ ରଶିର ପରୀକ୍ଷା ନିଆ ହେଇଥିବ ।

ସେ ଫାଶୀ ଫାର୍ମା ତଳେ ଦଶ ବାର ଫୁଟ ଖଣ୍ଡେ ଗହୀର ଗୋଟାଏ ଚୌଖୁଣ୍ଟିଆ କୂଅ ଭଳି ଗାତ । ସେ ଗାତ ଉପରେ ପାଖପାଖ ହେଇ ଦୁଇଟା ଲୁହାପଟା କବାଟ ପରି କବ୍‌ଜା ଦେଇ ଲଗା ହେଇଛି । କବ୍‌ଜାଗୁଡ଼ାକ ବାହାର ପାଖକୁ । ପଟାର ମଝି ମୁଣ୍ଡ ଦୁଇଟା ଲୁହାଖିଲ ଉପରେ ଥୁଆ । ସେ ଖିଲ ସହିତ ଗୋଟାଏ ଲୁହା ହେଣ୍ଡେଲ ଲାଗିଛି । ହେଣ୍ଡେଲ ଟାଣିଦେଲେ ଖିଲ ଖସିଯିବ । ପଟା ଦୁଇଟା ତଳକୁ ଝୁଲି ପଡ଼ିବ । ଦୁଇ ପଟାରେ ଏକା ସାଙ୍ଗରେ ଦୁଇଜଣଙ୍କୁ ଛିଡ଼ା କରି ଦୁଇଜଣଙ୍କର ପ୍ରାଣ ଏକ ସାଙ୍ଗରେ ନେବାର ବ୍ୟବସ୍ଥା । ଦୁଇ ପଟା ସିଧାରେ ଦୁଇଟା ରଶି ବନ୍ଧାର ବ୍ୟବସ୍ଥା ଉପରେ ଆଡୁଆ କଡ଼ିରେ ଅଛି । ଥରେ କଟକ ଜେଲ୍‌ରେ ସାତଜଣଙ୍କର ଫାଶୀ ଏକାଦିନରେ ଲଗାତାର ହେଇଥିଲା - ଏମିତି ଦୁଇ ଦୁଇ ଜଣ କରି । ବେଶି ଲୋକଙ୍କର ପ୍ରାଣ ନେବାର ଥିବ ତ ମୋଟା ଦରମା ପାଉଥିବା ଉଚ୍ଚପଦସ୍ଥ ହାକିମଙ୍କର ବହୁମୂଲ୍ୟ ସମୟ ବଞ୍ଚେଇବା ପାଇଁ ସରକାର ବାହାଦୂରଙ୍କର ବୈଜ୍ଞାନିକ ତାଲିମପ୍ରାପ୍ତ ବିଶେଷଜ୍ଞମାନେ ଏ ପ୍ରକାରର ସୁବ୍ୟବସ୍ଥା ଖଞ୍ଜିଛନ୍ତି ।

ଲକ୍ଷ୍ମଣ ନାୟକଙ୍କୁ ନେଇ ସେଇଥିରୁ ଗୋଟିଏ ପଟା ଉପରେ ଛିଡ଼ା କରାଇବେ ।

ତାଙ୍କର ଦୁଇ ଗୋଡ଼କୁ ଏକାଠି ଭିଡ଼ି ରଶିରେ ବାନ୍ଧି ଦେବେ । ତାଙ୍କ ମୁଣ୍ଡରେ ଗୋଟାଏ କଳା ବା ନୀଳ ରଙ୍ଗର ଟୋପି ପିନ୍ଧେଇ ଦିଆଯିବ ଯାହାର ଅଗପାଖର ଲମ୍ବା ଝୁଲ ତାଙ୍କର ମୁହଁକୁ ଢାଙ୍କି ଦେବ । ସେଠୁ ସବୁ ବଡ଼ ବଡ଼ ହାକିମ, ଜିଲ୍ଲା କଲେକ୍ଟର, ପୁଲିସ୍ ସୁପରିଟେଣ୍ଡେଣ୍ଟ, ସିଭିଲ ସର୍ଜନ, ଜେଲ ସୁପରିଟେଣ୍ଡେଣ୍ଟ,ଜେଲର୍ ବାହାରର ଦୁଇଜଣ ସାକ୍ଷୀ, ଜେଲ୍ ଡାକ୍ତର,ପୁଲିସ୍ ସିପାହୀ, ୱାର୍ଡ଼ର, ଜମାଦାର ଆଦି ଘେରି ରହିଥିବେ । ସେମାନେ ଯେବେ ଆସାମୀର ମୁହଁକୁ ଦେଖିପାରିବେ ତେବେ ଏ କୃତ୍ୟ ସେମାନଙ୍କ ଦ୍ୱାରା ହେଇ ପାରିବ ନାହିଁ ପରା । କିମ୍ବା ସେମାନଙ୍କର ଭଦ୍ର ସଂସ୍କୃତିରେ ଲାଳିତ ହୃଦୟରେ ଧକ୍କାଟାଏ ଲାଗିଯିବ ପରା । ସେଥିପାଇଁ ସେମାନଙ୍କର ଭଦ୍ରତାକୁ ଢାଙ୍କିବା ପାଇଁ ଏ ଟୋପି । ଏ ଟୋପି ପିନ୍ଧି ସାରିବା ପରେ ଲକ୍ଷ୍ମଣ ନାୟକ, ନିର୍ଜୀବ, ଅମୁହାଁ ବାଲିବସ୍ତା ପାଲଟି ଯିବ । ତେଣିକି ତାକୁ ଝୁଲେଇ ଦେବାଦ୍ୱାରା ଏ ସବୁ ସୁସଭ୍ୟ ଭଦ୍ରଲୋକମାନଙ୍କର ସଭ୍ୟତାରେ, ଭଦ୍ରପଣିଆରେ, କୌଣସି ଆଞ୍ଚ ଆସିବ ନାହିଁ ।

ଏହାପରେ ଲକ୍ଷ୍ମଣ ନାୟକଙ୍କ ବେକରେ ଫାଶୀ ଗଳାଇ ଦିଆଯିବ ଓ ହାତରେ ଭିଡ଼ି କସିକରି ବସେଇ ଦିଆଯିବ । ସେ ଫାଶର ମୁଦିଆ କେଉଁ ପାଖକୁ ରହିବ, ରଶିଟା ଯେମିତି ଘୁଞ୍ଚିଯିବ ନାହିଁ, ମୁହଁର ଢାଙ୍କୁଣୀ ଖୋଲି ଯିବ ନାହିଁ, ଏ ସବୁ ବିଷୟ ବୈଜ୍ଞାନିକ ଢଙ୍ଗରେ ଗବେଷଣା କରାଯାଇ ତାର ଟିକିନିଖି ନିର୍ଦ୍ଦେଶ 'କାରା ସଂହିତା'ରେ ଲେଖା ହେଇ ରହିଛି । ସେ ସବୁରେ ଗୋଟାଏ ଚୁଳ ପ୍ରମାଣେ ଏ ପାଖ ସେ ପାଖ କରିବାର ଭୁ କାହାରି ନାହିଁ । ଏସବୁ ଆୟୋଜନ ଚାଲିଥିବା ବେଳେ ଜେଲ୍ ସୁପରିଟେଣ୍ଡେଣ୍ଟ ଘଣ୍ଟା ଦେଖୁଥିବେ । ନିର୍ଦ୍ଦିଷ୍ଟ ଲଗ୍ନ ଆସିଗଲେ ରୁମାଲ ହଲେଇ ଦେବେ । ହେଣ୍ଡେଲ୍ ଧରି ଛିଡ଼ା ହେଇଥିବା ଲୋକ ତାକୁ ଟାଣିଦେବ । ଲୁହାପଟା ଝୁଲି ପଡ଼ିବ । ଲକ୍ଷ୍ମଣ ନାୟକ ତଳକୁ ଖସି ପଡ଼ିବେ । ରଶିର ହୁଗୁଳାତକ ସରିଯାଇ ରଶି ଝିଙ୍କି ହେଇଗଲେ ଲକ୍ଷ୍ମଣ ନାୟକଙ୍କ ତଣ୍ଟି ଚିପି ହେବା ସାଙ୍ଗେ ସାଙ୍ଗେ ତାଙ୍କ ମେରୁଦଣ୍ଡ ବେକ ପାଖରୁ ଭାଙ୍ଗିଯିବ, ମୁହୂର୍ତ୍ତକରେ ସବୁଶେଷ ।

ବିହାର ଓଡ଼ିଶା ଜେଲ୍ ନିୟମରେ ଫାଶୀ ପିନ୍ଧେଇବା ଓ ହେଣ୍ଡଲ ଟାଣିବା ପାଇଁ କଏଦୀମାନଙ୍କୁ ବ୍ୟବହାର କରିବା ନିୟମ ଥିଲା । ଉତ୍ତର ଓଡ଼ିଶାରେ ଏ ନିୟମ ଚଳୁଥାଏ । ସାଧାରଣତଃ ଯାବଜ୍ଜୀବନ କାରାଦଣ୍ଡ ପାଇଥିବା କେତେକ କଏଦୀ ଏ କାମରେ ବିଶେଷଜ୍ଞତା ଅର୍ଜନ କରିଥା'ନ୍ତି । ଥରେ ଏ କାମ କଲେ ସେ ଲୋକ ତିନି କି ପାଞ୍ଚଟଙ୍କା ପାରିଶ୍ରମିକ ଓ ପନ୍ଦର ଦିନ କି କେତେ 'ମାର୍କା' - ଅର୍ଥାତ୍ ତା'ର ସଜାରୁ ରିଆତି ପାଏ । ଦୀର୍ଘ ମିଆଦୀ କଏଦୀ ପକ୍ଷରେ ଶେଷୋକ୍ତିଟା ଅଧିକ ମୂଲ୍ୟବାନ୍ । ମାନ୍ଦ୍ରାଜ ପ୍ରଦେଶରେ ନିୟମ ଥିଲା ଖୋଦ୍ ଜେଲ୍‌ର୍ ଏ ସବୁ କାମ କରିବ । ବ୍ରହ୍ମପୁରଟା ମାନ୍ଦ୍ରାଜରୁ ଆସିଥିବାରୁ ସେଠି ସେଇ ନିୟମ ଖାଟୁଥାଏ । ଆମର ସେଠାର ଜେଲର ରାଓ ଦକ୍ଷିଣୀ ଲୋକ । ସେ ମାନ୍ଦ୍ରାଜ କେଡ଼ର୍‌ରେ ଥିଲେ ଫାଶୀ ଦେବାରେ ଦକ୍ଷତା ହାସଲ କରିଥିଲେ । ଲୋକଟାର ଚେହେରା ଓ ଚାଲିଚଳଣରେ ଗୋଟାଏ ପୈଶାଚିକ ଭାବ ପ୍ରକାଶ ପାଉଥିଲା । କଥାଭାଷାବି ସେହିଭଳି ଅମାର୍ଜିତ ଥିଲା ।

ଫାଶୀ ଦେବାରେ ସେ ଏକ ପୈଶାଚିକ ଆନନ୍ଦ ଅନୁଭବ କରନ୍ତି ବୋଲି ଶୁଣିଥିଲୁ । କୋଡ଼ି କୋଡ଼ି ଲୋକ ତାଙ୍କ ହାତରେ ଭବ ବୈତରଣୀ ପାର ହେଉଛନ୍ତି । ଥରେ କୁଆଡ଼େ ଜଣେ ଆସାମୀ ଠିକ୍ ଭାବରେ ଝୁଲିଲା ନାହିଁ । ତା'ର ପ୍ରାଣ ଗଲା ନାହିଁ । ରାଓସାହେବ ଦୁଇ ହାତରେ ରଶିକୁ ମୁଠେଇ ଧରି ତା କାନ୍ଧ ଉପରେ ଚଢ଼ିଗଲେ । ତା'ର ନାକ, କାନ, ପାଟିରୁ ରକ୍ତରୁ ଛିଟିକା ମାରି ସାହେବଙ୍କ ଗୋଡ଼ ଲାଲେଲାଲ ହେଇଗଲା । କିନ୍ତୁ ଲୋକଟା ମଲା ତ ! ଜଣେ ଆଦିବାସୀ ମୁହୂର୍ତ୍ତକର ରାଗ ମୁଣ୍ଡରେ କାହାରିକୁ ପାହାରେ ପିଟିଦେଲେ ସେ ହେଲା ପାପୀ, ଅପରାଧୀ, ମଣିଷ ସମାଜରେ ବଞ୍ଚି ରହିବାର ଅଯୋଗ୍ୟ । ଆଉ ଏଇଭଳି ନରପିଶାଚ ଏ ସମାଜ ଓ ଶାସନର ସମ୍ମାନିତ ଆଧାରସ୍ତମ୍ଭ, ଛାତି ଫୁଲେଇ ବାଟ ଚାଲିବେ । ତାଙ୍କ ଘରେ ଝିଅ ଦେବା ପାଇଁ ଲୋକେ ଧରାପରା ହେବେ ।

ରାଓସାହେବ ଆଜି ଲକ୍ଷ୍ମଣ ନାୟକଙ୍କୁ ଆରପାରିକୁ ପଠେଇ ପଚିଶ ବା ତିରିଶ ଟଙ୍କା ଓ ବୋତଲେ ମଦ ପୁରସ୍କାର ପାଇବେ । ଦିନଟା ଛୁଟି ପାଇବେ, ସେ ବୋତଲଟାର ସଦ୍‌ବ୍ୟବହାର କରିବାକୁ ।

ଭୋର ତିନିଟା ଖଣ୍ଡେକୁ ସମସ୍ତେ ଉଠିପଡ଼ିଲୁ । ପ୍ରାର୍ଥନା କଲୁ । ବୈଦ୍ୟନାଥ ଭଜନ ଗାଇଲା :

| | |
|---|---|
| କରଲେ ସିଙ୍ଗାର ଚତୁର ଅଲୱେରୀ | ସାଜନ କେ ଘର ଜନା ହୈ |
| ମିଟୀ ବିଛାୱାନ ମିଟୀ ଓଢାୱନ | ମିଟୀ ମେଁ ମିଲ୍‌ଜାନା ହୈ ।" |

ବୈଦ୍ୟନାଥର ସ୍ୱରରେ ମାଧୁର୍ଯ୍ୟ ନ ଥାଏ କିନ୍ତୁ ସେଦିନ ତା'ର ପ୍ରାଣର ସମସ୍ତ ବ୍ୟାକୁଳତା ସେ ଭଜନରେ ଆପଣାକୁ ଅଜାଡ଼ି ଦେବାକୁ ଚାହୁଁଥାଏ । କେତେଜଣ ରାଜବନ୍ଦୀ ସଜା ପାଇ ଆସି ସେପଟେ ଫାଶୀ ଆସାମୀଙ୍କ କୋଠରୀ ପାଖ ୱାର୍ଡ଼ରେ ଥା'ନ୍ତି । କିଛିକ୍ଷଣ ପରେ ସେ ପାଖରୁ ଗୋଟାଏ ଧ୍ୱନି କ୍ଷୀଣ ଭାବରେ ଶୁଣାଗଲା । ବୈଦ୍ୟନାଥ ଧ୍ୱନି ଆରମ୍ଭ କଲା 'ଇନ୍‌କିଲାବ୍ ଜିନ୍ଦାବାଦ୍', ସାର କ୍ୟାମ୍ପ ଜେଲ୍ ତା'ର ପ୍ରତିଧ୍ୱନି ହେଲା - 'ଇନ୍‌କିଲାବ୍ ଜିନ୍ଦାବାଦ୍' । ପ୍ରତ୍ୟେକ ୱାର୍ଡ଼ରେ ସେହିପରି ରାତି ଅନିଦ୍ରା, ସେହିପରି ଅକ୍ଷମ କ୍ଷୋଭ ।

'ଇନ୍‌କିଲାବ୍ ଜିନ୍ଦାବାଦ୍'- ଇନ୍‌କିଲାବ୍ ଜିନ୍ଦାବାଦ୍'- ଇନ୍‌କିଲାବ୍ ଜିନ୍ଦାବାଦ୍'- ଦେଇ ସାରା ଜେଲ୍ କାନ୍ଦି ଚାଲିଲା । ଇନ୍‌କିଲାବ୍ ଜିନ୍ଦାବାଦ-ଇନ୍‌କିଲାବ୍ ଜିନ୍ଦାବାଦ୍-ଇନ୍‌କିଲାବ୍ ଜିନ୍ଦାବାଦ୍- କେତେ ସମୟ ଗାଇ ଚାଲିଲୁ ଖିଆଲ ନାହିଁ । ଫାଶୀଘରଟା ଆମ ହତା ବାହାରେ ୱାର୍ଡ଼ ଫାଟକଠୁଁ ପଚାଶ ହାତ ଦୂରରେ ହେବ । ସେଆଡୁ ଗୋଟାଏ ବାପା ଆୱାଜ ଶୁଭିଲା - ଦୁମ୍ ! ବାପା ବାଷ୍ପରୁଦ୍ଧ କଣ୍ଠରେ କହିଲେ - "ଆଉ କାହିଁ ? ଯାହା ପାଇଁ କହୁଥିଲ ସେ ଆଉ ଶୁଣିବ ନାହିଁ ।"

ସେ ଦିନ ସାରା ଜେଲ୍ ଖାଡ଼ାଉପାସ । ତା'ର ଦୁଇଦିନ ପରେ ପୁଣି ସେଇ ପଚା ଆଳୁ ଓ ବୁଢ଼ା ଭେଣ୍ଡି ନେଇ ଝକଝକ ।

## ଦୁର୍ଭିକ୍ଷର ଛାୟା

ପୂର୍ବବଙ୍ଗରୁ ସମସ୍ତ ଯାନବାହନ ଓ ବଳକା ଖାଦ୍ୟଶସ୍ୟ ସେସବୁ ଯେପରି ଜାପାନୀ ଫୌଜର କାମରେ ନ ଆସିବ ସେ ଉଦ୍ଦେଶ୍ୟରେ ଇଂରେଜ ସରକାର କାଢ଼ି ନେବାରୁ ଓ ଯୁଦ୍ଧବେଳେ ବ୍ୟାପିଥିବା ମହଜୁଦଖୋରୀ ଓ କଳାପୋତେଇ ଫଳରେ ବଙ୍ଗଳାରେ ଯେଉଁ ଦାରୁଣ ଦୁର୍ଭିକ୍ଷ ବ୍ୟାପିଲା ତା'ର ଖବର ଆମେ ଜେଲ୍ ଭିତରେ ପାଉଥାଉ । ଗାଁ ଗହଳରୁ ଅସଂଖ୍ୟ ଲୋକ ମୁଠାଏ ଖାଦ୍ୟ ପାଇବା ଆଶାରେ ସହରମାନଙ୍କୁ ଆସୁଥା'ନ୍ତି ଓ ପ୍ରତିଦିନ କଲିକତା ସହରର ରାସ୍ତାଘାଟରେ ଶହ ଶହ ଲୋକ ମରିପଡୁଥା'ନ୍ତି । "ବାପା, ଏକଟୁ ଫ୍ୟାନ୍ (ପେଜ) ଦାଓ ବାବା" ବୋଲି ଅନୁନୟ କରି ଏ କଙ୍କାଳସାର ଜନତା ଗୃହସ୍ଥ ଘରକୁ ପଶିଆସିଲେ ଘରର ଲୋକେ ସେମାନଙ୍କ ମୁହଁରେ କବାଟ କିଳି ଦେଉଥା'ନ୍ତି । ଗାଁ ଗାଁର ଗରିବ ଭୂମିହୀନ ଓ ଛୋଟ ଚାଷୀ ହିଁ ଏ କରାଳ ମୃତ୍ୟୁର କବଳରେ ପଡ଼ିଲେ । ତିରିଶ ଲକ୍ଷ ଲୋକ ସେଥିରେ ମଲେ ବୋଲି ଅଟକଳ ଶୁଣିବାକୁ ମିଳିଲା । ସରକାରୀ ହିସାବରେ ପରେ ଏହାର ଅଧା ସଂଖ୍ୟା ସ୍ୱୀକାର କରାଗଲା । ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଓ ମୟୂରଭଞ୍ଜ ରାଜ୍ୟରେ ମଧ୍ୟ ଏହିପରି ଦୁର୍ଭିକ୍ଷ ବ୍ୟାପିଲା । ଅନ୍ୟ ସର୍ବତ୍ର ମଧ୍ୟ ଏତେ ପ୍ରକଟ ଭାବରେ ଦେଖା ନ ଗଲେ ବି ଖାଦ୍ୟାଭାବ ଓ ଅନାହାର ତା'ର ବଳି ନେଇ ଚାଲିଲା । ବାହାର ପରିସ୍ଥିତି ବହୁତ ବାଧୁଥାଏ । ବାପା ଶ୍ଳେଷକରି କହୁଥାନ୍ତି – "ଆମର କ'ଣ ଅଛି ? ଆମେ ସବୁ ସରକାରଙ୍କର କୃପାରେ ଖାଇପିଇ ଆରାମରେ ଅଛୁ । ଆମର ଘିଅ, ଦୁଧ କୋଉ ଜିନିଷର ଅଭାବ ପଡୁଛି କି ?" ଏହି ସମୟରେ ଯେଉଁମାନେ ଖଲାସ ହେଲେ ସେମାନଙ୍କ ହାତରେ ବାପା ବାହାରକୁ ଖବରଦେଲେ ଯେ, ଭୋକଉପାସରେ ଥିବା ଲୋକେ ଦଳ ବାନ୍ଧି ଜମିଦାର ମହାଜନଙ୍କର ଧାନ ଅମାରକୁ ଶାନ୍ତିପୂର୍ଣ୍ଣ ଢଙ୍ଗରେ ଦଖଲ କରି ଧାନ ବାଣ୍ଟି ନିଅନ୍ତୁ । ମାତ୍ର ବାହାରେ ଥିବା ଲୋକେ ଏହା କରାଇ ପାରିଲେ ନାହିଁ ।

## ବିଲେଇ ମୂଷା ଖେଳ

୧୯୪୪ ରେ ଅଟକବନ୍ଦୀମାନେ କ୍ରମେ ଖଲାସ ହେବା ଆରମ୍ଭ ହେଲା । ମୁଁ ବି ଗୋଟାଏ ସମୟରେ ଖଲାସ ହେଲି । ବାପା ହେରିକା କେତେକ ପରେ କଟକ ଜେଲ୍‌କୁ ବଦଳିହେଲେ । ମୋ ଉପରେ ଏକ କଟକଣା ଜାରି କରାହେଲା ଯେ ମତେ ଯାଇ ଜଗତ୍‌ସିଂହପୁରରେ ରହିବାକୁ ହେବ, ମୁଁ ଏ ଆଦେଶକୁ ଅମାନ୍ୟ କଲି ଓ କଟକରେ ଯାଇ ପହଞ୍ଚିବାର ଦିନେ ଦୁଇଦିନ ଭିତରେ ଗିରଫ ହେଲି । ସରକାରୀ ଆଦେଶ ଅବମାନନା ଯୋଗୁଁ ଏଥର ମତେ ସଜା ମିଳିବାର କଥା । ତେଣୁ ମତେ ନେଇ କଟକ ଜେଲ୍‌ରେ ବିଚାରାଧୀନ ବନ୍ଦୀ ଭାବରେ ପୁରୁଣା ସେଲ୍‌ରେ ନେଇ ରଖାହେଲା । ଦୁଇ ଚାରିଦିନ ପରେ ପଦ୍ମନାଭ ରାୟ ଆଦି ପାଖ କୋଠରୀରେ ରହିଲେ । ଅନେକ ଦିନ ଫେରାର ରହିବା ପରେ ସେ ଗିରଫ

ହେଉଥା'ନ୍ତି । ଆମକୁ ଦିନବେଳେ ବି ବହୁତ ସମୟ ବନ୍ଦ ରଖାଯାଉଥାଏ । ଯାହାହେଉ ଅଳ୍ପଦିନ ଭିତରେ ମୋର ସଜା ହେଇଗଲା ଓ ମୁଁ ଅନ୍ୟ ବନ୍ଦୀମାନଙ୍କର ସାଙ୍ଗକୁ ଗଲି । ପଦବାବୁ ବି କେତେଦିନ ପରେ ସଜା ପାଇଗଲେ । ମୋର ଯେତେଦୂର ମନେ ପଡୁଛି ଛଅ ମାସ ସଜା ହେଇଥିଲା । କିନ୍ତୁ ମୋର ଏହାର ସ୍ମୃତି ବହୁତ ଝାପ୍‌ସା । ମୁଁ କେବେ ବ୍ରହ୍ମପୁରରୁ ଖଲାସ ହେଲି, କଟକରେ କେଉଁଦିନ ଧରାହେଲି, କେବେ ସଜା ପାଇଲି ଆଦି ସବୁ କଥା ଯେତେ ମନେପକାଇବା ଚେଷ୍ଟା କଲେ ବି ସଠିକ ମନେ ପଡୁନାହିଁ । ଏ ପ୍ରଥମ ଥର ସଜା ଭୋଗିବା ପରେ ଯେତେବେଳେ ଖଲାସ ହେଲି ପୁଣି ମୋ ଉପରେ ସେହି କଟକଣା ଜାରି ହେଲା, ଜଗତ୍‌ସିଂହପୁରରେ ଯାଇ ରହିବାକୁ । ସେଥର ବି ମୁଁ ତାକୁ ଭଙ୍ଗ କଲି, ତେବେ ତାହା ପୂର୍ବରୁ ମୋର ଚିକିତ୍ସା ପାଇଁ କିଛି ଦିନ, ପ୍ରାୟ ଦୁଇମାସ, କଲିକତା ପାଖ ସୋଦପୁରଠାରେ ଖଦୀ ପ୍ରତିଷ୍ଠାନରେ ଯାଇ ରହିଲି । ଅନେକ ଦିନୁଁ ମୋର କେତେକ ଉପସର୍ଗ ଦେଖାଦେଇଥିଲା ।ଯାହା ହାର୍ନିଆର ପୂର୍ବାଭାସ ବୋଲି ସନ୍ଦେହ କରାଯାଉଥିଲା । ଖଦୀ ପ୍ରତିଷ୍ଠାନରୁ ଫେରି ପୁଣି ତୁରନ୍ତ ଗିରଫ ହେଲି ଓ ବୋଧହୁଏ ଆଉ ଛ ମାସ ସଜା ପାଇଲି । ଏ ସବୁ ତାରିଖ ବି ମୋର ମନେ ନାହିଁ । ସେତେବେଳେ ଜେଲଟା ହିଁ ନିତିଦିନଆ ଜୀବନ ଓ ବାହାରଟା କେବଳ ଗୋଟାଏ ମଧ୍ୟବର୍ତ୍ତୀ ବିରାମ ପରି ମନେ ଦେଉଥିଲା । ସେଥିପାଇଁ ବୋଧହୁଏ ଯିବାଆସିବାରେ ଦିନଗୁଡାକର କୌଣସି ଗୁରୁତ୍ୱ ଅନୁଭବ କରିନାହିଁ । ଦୁଇଥର ଯେ ସଜା ପାଇ କଟକ ଜେଲ୍‌ରେ ରହିଲି ତା'ର ସ୍ମୃତି ମଧ୍ୟ ମିଶିଯାଇଛି । ସହଜରେ ଅଲଗା କରି ହେଉନାହିଁ । ତେବେ ମୁଁ କଟକ ଜେଲ୍‌ରେ ଯାଇ ପନ୍ଦର ନମ୍ବର ହତାରେ ତିଆରି ହେଇଥିବା ନୂଆ ସେଲ୍‌ରେ ରହିଲି ସେଇଟା ପ୍ରଥମ ଥର ସଜା ପାଇବା ପରେ । ବାପା ଓ ଟୁଣ୍ଟୁମାମୁଁ ସେ ନୂଆ ସେଲ୍‌ରେ ଥା'ନ୍ତି । ଭାଗୁଭାଇ ବି ଷୋଳ ନମ୍ବରରେ ଥା'ନ୍ତି । ସେମାନଙ୍କୁ ବ୍ରହ୍ମପୁରରୁ ଅଣାହେଇଥାଏ । ମତେ ପ୍ରଥମ କି ଦ୍ୱିତୀୟ ଶ୍ରେଣୀ ମିଳିଥାଏ । ସେତେବେଳେକୁ ବ୍ରହ୍ମପୁର କ୍ୟାମ୍ପ ଜେଲ୍‌ର ବନ୍ଦୀମାନଙ୍କୁ ଜିଲ୍ଲା ଜେଲ୍‌ମାନଙ୍କୁ ବଦଳି କରିଦେଇ କ୍ୟାମ୍ପ ଜେଲ୍‌କୁ ବନ୍ଦ କରିବା ବ୍ୟବସ୍ଥା ସରକାର କରୁଥା'ନ୍ତି । କଟକ ଜେଲ୍‌ର ପନ୍ଦର ଓ ଷୋଳ ନମ୍ବରରେ ରାଜନୀତିକ ବନ୍ଦୀ ଭରପୂର ରହିଥା'ନ୍ତି । ଦାଦା, ବାଙ୍କ, ନିଶାମଣି, ରଙ୍ଗାଧର ଦାସ, ମହାଦେବ ସିଂହ ପ୍ରଭୃତି ଅନେକ ସେ ସବୁ ୱାର୍ଡ଼ରେ ଥା'ନ୍ତି । ସେଲ୍‌ରେ ବାପା, ଟୁଣ୍ଟୁମାମୁଁ ଓ ମୋ ଛଡ଼ା ଗଞ୍ଜାମର ଘନଶ୍ୟାମ ପଟ୍ଟନାୟକ, କଟକ ଜିଲ୍ଲା ବଡ଼ଚଣା ଥାନାର କୃଷ୍ଣଚନ୍ଦ୍ର ରାଉତ ଓ ଛତ୍ରପଡ଼ାର ପଦ୍ମନାଭ ରାୟ ଥା'ନ୍ତି । କୃଷ୍ଣବାବୁଙ୍କୁ ଡାକଘର ପୋଡ଼ା ମାମଲାରେ ଚାରି ବର୍ଷ ନା ପାଞ୍ଚ ବର୍ଷ ସଜା ମିଳିଥାଏ । ପଦବାବୁଙ୍କୁ ମଧ୍ୟ ସେହିପରି ନାନା ଦଫାରେ ବହୁତ ଲମ୍ବା ସଜା ଦିଆଯାଇଥାଏ । ରଙ୍ଗାଧରବାବୁ ହେରିକା ମଧ୍ୟ ଖବ୍ ଲମ୍ବା ଲମ୍ବା ସଜା ପାଇଥା'ନ୍ତି ।

ଯେତେଦୂର ମନେପଡୁଛି ମୋର ଦ୍ୱିତୀୟ ଦଫା ସଜା ବେଳକୁ ପ୍ରାୟ ସବୁ ଅଟକବନ୍ଦୀ ଖଲାସ ହେଇ ସାରିଥା'ନ୍ତି । କେବଳ ଦୀର୍ଘ ସଜା ପାଇଥିବା ଅଳ୍ପ ବନ୍ଦୀ ଷୋଳ ନମ୍ବରରେ ଥା'ନ୍ତି । ଏଥର ମୁଁ ଷୋଳ ନମ୍ବରରେ ରହିବା ପରି ମନେହେଉଛି ।

ଦ୍ୱିତୀୟ ଦଫାରେ କଟକ ଜେଲ୍‌ରେ ସମୟ ପୂର୍ବଭଳି ଖୁବ୍ ଫୁର୍ତ୍ତିରେ କଟିଲା । ମୋର ଗଣିତ, ଜ୍ୟୋତିର୍ବିଜ୍ଞାନ ଆଦିର ପଢ଼ାପଢ଼ି ମୁଁ ଚାଲୁ ରଖିଥାଏ । ତା'ପରେ ଗୁଜରାଠୀଟା ପଢ଼ିବା ଅଭ୍ୟାସକଲି । ପୂର୍ବରୁ ଅକ୍ଷର କିଛି କିଛି ଚିହ୍ନିଥିଲି । ଅଭିଧାନ ସାହାଯ୍ୟରେ ପଢ଼ିଯିବା କଠିନ ହେଲା ନାହିଁ । ତେବେ ଉଚ୍ଚାରଣରେ ଟିକିଏ ଦୋଷ ରହିଗଲା । ଗଙ୍ଗାଧର ଦାସ ହେରିକା କେତେଜଣ ତେଲୁଗୁ ପଢ଼ିଲେ । ଆଉ କେତେଜଣ ଗୁଜରାଠୀ ପଢ଼ିବା ଆରମ୍ଭ କଲେ । ନିଜେ ଶିଖୁ ଶିଖୁ ଅନ୍ୟକୁ ମଧ୍ୟ ଶିଖେଇଲେ ଜ୍ଞାନଟା ବେଶି ପକ୍‌କା ହୁଏ, ଏଇଟା ମୁଁ ଅନୁଭବରୁ ଦେଖୁଛି । ଏଥିରେ ଅହଙ୍କାରର କଥା ନାହିଁ । ପୂର୍ବେ ଚାଟଶାଳୀରେ ଅବଧାନେ ପ୍ରଥମ ଶ୍ରେଣୀରେ ଚାଟଙ୍କୁ ପଢ଼େଇବା ପାଇଁ ତା'ର ଉପର ଶ୍ରେଣୀ ପିଲାଙ୍କୁ ଲଗେଇ ଦେଉଥିଲେ । ଏଇଟା ତାଙ୍କୁ କେବଳ ଘୁଙ୍ଗୁଡ଼ି ମାରିବା ପାଇଁ ଅବସର ଦେଉ ନ ଥିଲା, ଏହାଦ୍ୱାରା ଉପର ସ୍ତରର ଚାଟଙ୍କର ବି କିଛି ପ୍ରକୃତ ଲାଭ ହେଉଥିଲା ।

ଏଥର ମୁଁ କଟକ ଜେଲ୍‌ରେ ଚୈତନ୍ୟ ଚରିତାମୃତ ଖଣ୍ଡକ ପୁରା ପଢ଼ିବାକୁ ସୁବିଧା ପାଇଲି । ଏଇଟା ମତେ ଖୁବ୍‌ଭଲ ଲାଗିଲା । ଚାରିଆଡ଼େ ଭକ୍ତିମାର୍ଗର ନମୁନା ଦେଖି ଚୈତନ୍ୟ ଦେବଙ୍କର ଚରିତ୍ର ଯେଉଁ ପ୍ରକାରର ହୋଇଥିବ ବୋଲି ଧାରଣା ହେଉଥିଲା ଦେଖିଲି ଯେ ତାହା ସେପରି ନୁହେଁ । କାଜୀଙ୍କର ନିଷେଧାଜ୍ଞା ବିରୋଧରେ ଯେ ଯେଉଁ ପ୍ରକାରର ସାମୂହିକ ଅବଜ୍ଞା ଆନ୍ଦୋଳନ ଚଳେଇଲେ, ପୁରୀରେ ଗୁଣ୍ଡିଚାବାଡ଼ିର ଅପରିଚ୍ଛନ୍ନ ଅବସ୍ଥା ଦେଖି ତାକୁ ଯେଉଁପରି ପରିଚ୍ଛନ୍ନ କରିବା ପାଇଁ ସାମୂହିକ ପରିଶ୍ରମ ଦ୍ୱାରା ଉଦ୍ୟମ କଲେ ଏ ସବୁଥିରୁ ତାଙ୍କର ସାହସ, ମନୋବଳ ଓ ବ୍ୟାବହାରିକତାର ପରିଚୟ ପାଇଲି । ତାଙ୍କର ଟାଣୁଆ ଓ ତୀକ୍ଷ୍ଣ ସାଧାରଣ ବୁଦ୍ଧିର ପରିଚୟ ଦେଉଥିବା ଗୋଟିଏ ପ୍ରସଙ୍ଗ ମତେ ଖୁବ୍ ଆମୋଦଜନକ ବୋଧ ହେଉଥିଲା । ସେ ମଥୁରାରେ ଥିବାବେଳେ ଦିନେ ଗୋଟାଏ ଗୁଜବ ରଟିଲା ଯେ ଶ୍ରୀକୃଷ୍ଣ ପୁଣି ଅବତୀର୍ଣ୍ଣ ହୋଇ କାଳିନ୍ଦୀ ହ୍ରଦରେ ପୁଣି କାଳୀୟ ଦଳନ ଲୀଳା କରୁଛନ୍ତି । ଲୋକେ ସବୁ ଦେଖିବାକୁ ଧାଇଁଲେ । ସେତେବେଳକୁ ରାତି ହେଇଗଲାଣି । ଅନ୍ଧାରରେ କେତେଟା ଆଲୁଅ ଦେଖି, ହେଇ ! ସେଇଟା କୃଷ୍ଣଙ୍କର କୌସ୍ତୁଭମଣି, ହେଇ ! ସେଇଟା କାଳୀୟ ନାଗ ମୁଣ୍ଡର ମଣି, ଏମିତି ସବୁ କଳ୍ପନା ଲୋକେ କରିଲାଗିଲେ । ଜଣେ ଶିଷ୍ୟ ଧଇଁସଇଁ ହେଇ ଧାଇଁ ଆସି ଚୈତନ୍ୟଦେବଙ୍କୁ ଖବର ଦେଲେ ଓ ଅନୁରୋଧ କଲେ ଯେ, ଚାଲନ୍ତୁ କୃଷ୍ଣଲୀଳା ଦେଖିବେ । ମହାପ୍ରଭୁ ତାଙ୍କୁ ଠାଇଁ କରି ଗୋଟାଏ ଚଟକଣା ଲଗେଇ କହିଲେ - କୃଷ୍ଣଲୀଳା ! କେଉଟମାନେ ଡଙ୍ଗା ଲଗେଇ ମାଛ ଧରୁଛନ୍ତି, ତାକୁଇ ଦେଖିବାକୁ ଯେତକ ବୋକା ଲୋକ ଧାଇଁଛନ୍ତି । ଭାଗ୍ ।

ସେ ମାୟାବାଦକୁ ପ୍ରତ୍ୟାଖ୍ୟାନ କରି ସୃଷ୍ଟିଟା ଈଶ୍ୱରଙ୍କର ଲୀଳା, ଗୋଟାଏ ଖେଳ ବୋଲି ଯେଉଁ ଦର୍ଶନ ବୟାନ କଲେ ସେଇଟା ବି ମୋ ମନକୁ ବେଶି ପାଇଲା । ଏଥିରେ ସୃଷ୍ଟିଟାକୁ କେବଳ ଗୋଟାଏ ମନର ଭ୍ରମ ବୋଲି କରିଦେଇ ଦାୟିତ୍ୱକୁ ଖସିଯିବାର ଚେଷ୍ଟା ନ ଥିଲା । ଚୈତନ୍ୟ ମହାପ୍ରଭୁଙ୍କର ଜୀବନ ଓ ବାଣୀକୁ ମୁଁ ମୋ ନିଜ ଢଙ୍ଗରେ ଯେପରି ବୁଝିଲି

ତାହା ମତେ ଖୁବ୍ ଭଲ ଲାଗିଲା । ଜୀବନକୁ ସାର୍ଥକ କରିବାରେ ପ୍ରେମର ମହତ୍ତ୍ୱକୁ ମୁଁ ଅଧିକ ଉପଲବ୍ଧି କଲି । ଏଇ ସମୟରେ ମୁଁ ଶ୍ରୀ ଅରବିନ୍ଦଙ୍କର "ଦି ଲାଇଫ୍ ଡିଭାଇନ୍" ବହିଖଣ୍ଡେ ମଧ୍ୟ ବହୁତ ପରିଶ୍ରମ କରି ପଢ଼ି ପକେଇଲି । ତାଙ୍କର ଅତିମାନସର କଳ୍ପନାଟା ମୋଟାମୋଟି ବୁଦ୍ଧିଗମ୍ୟ ହେଲା ।

## ଜେଲ୍‌ରେ ଜୀବଜନ୍ତୁ

କଟକ ଜେଲ୍‌ରେ ଆଉ ମେସ୍ କାମ ବା ଶାରୀରିକ ଶ୍ରମର ସୁବିଧା ନଥିଲା । ଏଠି ସେତେବେଳେ ଭଲି ଖେଳ ଖୁବ୍ ଜୋର୍ ହେଉଥିଲା । ଏସବୁ ଛଡ଼ା ଏଠି ଏଥର ଜୀବଜନ୍ତୁ ପାଳିବାର ଉପଲକ୍ଷ୍ୟ ଅନେକ ଜୁଟିଥିଲା । ସେତେବେଳେ ପନ୍ଦର, ଷୋଳ ନମ୍ବରର ପୂର୍ବପଟ ବଡ଼ ପାଚିରୀ ପାଖେ ପାଖେ ଧାଡ଼ିଏ ଦେବଦାରୁ ଗଛ ଥିଲା । କେତେଟା ଆମ୍ବଗଛ ବି ହତା ଭିତରେ ଥିଲା । ଏ ସବୁଥିରେ ବହୁତ ବଗ ଆସି ବସା କରନ୍ତି । ସେମାନଙ୍କର ଲଣ୍ଡି ଯୋଗୁଁ ବହୁତ ଦୁର୍ଗନ୍ଧ ହୁଏ । ମଝିରେ ମଝିରେ ଜେଲ୍‌ବାଲା ବନ୍ଧୁକ ଫୁଟେଇ ସେମାନଙ୍କୁ ହୁରୁଡ଼େଇ ଦିଅନ୍ତି । ଥରେ ଗୋଟାଏ ବଗର ଡେଣାରେ ଛରରା ବାଜି ତା'ର ଗୋଟିଏ ଡେଣା ଭାଙ୍ଗିଗଲା । ତାକୁ ସବୁ ଆମର କିଏ ଆଣି ହଳଦୀ ପ୍ରଭୃତି ଲଗେଇ ସୁସ୍ଥ କଲେ । ତା'ର ଭଙ୍ଗା ଡେଣାଟା କାଟି ଦେବାକୁ ହେଲା । ସେ ଆମ ସାଙ୍ଗରେ ରହିଗଲା । ସେ ତ ଆଉ ଉଡ଼ିପାରେ ନାହିଁ । ଦିନଯାକ ୱାର୍ଡ଼ ଭିତରେ ଚରି ବୁଲି ମାଛି ସଫା କରିବା କାମ କରେ । ତା'ର ମାଛି ଶିକାର ଗୋଟାଏ ଦେଖିବା ଜିନିଷ । ମାଛିକୁ ଲକ୍ଷ୍ୟ କରି ପ୍ରଥମେ 'ବକଧ୍ୟାନ' ରେ ଛିଡ଼ା ହୋଇଯିବ । ଥଣ୍ଟି ମାଛି ଆଡ଼କୁ ସିଧା ସ୍ଥିର ରଖି ବେକଟାକୁ ଥରେ ବାଁକୁ ଥରେ ଡାହାଣକୁ ଦୁଇ ଚାରିଥର ହଲେଇ ନିଷ୍ପି ଠିକ୍ କରି ନେବ ଓ ହଠାତ୍ ବିଦ୍ୟୁତ୍ ବେଗରେ ଖୁମ୍ପା ମାରି ମାଛିକୁ ଚଞ୍ଚୁସାତ୍ କରିବ । ଗୌରୀମାମୁଁଙ୍କ ଅନୁସାରେ ତା'ର ନାମ ଦିଆ ହେଇଥିଲା ହାତଖଣ୍ଡି । ସନ୍ଧ୍ୟାବେଳେ ତାକୁ ପନ୍ଦର ନମ୍ବର ହତାରେ ଥିବା ଗୋଟାଏ ଛୋଟ କଲମୀ ଆମ୍ବ ଗଛର ତଳ କେନାରେ ବସେଇ ଦିଆଯାଏ । ସେ ତା'ର ଗୋଟାଏ ଡେଣାରେ ଗଛଡ଼ାଳକୁ ଆଙ୍କୁଡ଼ି ଧରି ଧରି ସବା ଉପର ଡାଳକୁ ଚଢ଼ିଯାଇ ସେଇଠି ରାତି କଟାଏ । ସକାଳୁ ଡିଆଁ ମାରି ସେଇ ଗୋଟାଏ ଡେଣାରେ ଭାସି ଭାସି ତଳକୁ ଓହ୍ଲେଇ ଆସେ ।

ଥରେ ସେହିପରି ହୁରୁଡ଼େଇବାକୁ ଯାଇ ଗୋଟାଏ ପାରା ଛୁଆ ପଡ଼ିଗଲା । ମହାଦେବ ସିଂହ ହେରିକା ତାକୁ ନେଇ ଯତ୍ନରେ ପାଳିଲେ । ଓଠରେ ମୁଗ ଚିରି ଆଦି ଗୋଟିଏ ଲେଖାଁ ଧରି ତାକୁ ଦେଖାନ୍ତି, ସେ ଖୁଣ୍ଟି ନେଇଯାଏ । ଏମିତି ହେଇ ସେ ବଡ଼ ହେଲା ଓ ସେଇ ୱାର୍ଡ଼ରେ ମଣିଷ ମେଳରେ ରହିଲା । ଲୋକଙ୍କ କାନ୍ଧ ବା ମୁଣ୍ଡ ଉପରେ ବସି ବୁଲିବାକୁ ସେ ଭଲ ପାଉଥିଲା । କ୍ରମେ ଅନ୍ୟାନ୍ୟ ଆଡ଼େ ବି ଉଡ଼ି ବୁଲିଲା । ବେଳେବେଳେ ଆସି ମୋ କାନ୍ଧ ଉପରେ ବା ଶୋଇଥିବା ବେଳେ ପେଟ ବା ପିଠି ଉପରେ ବସିଯାଏ । ତା'ର ନାଁ ଦିଆହେଇଥିଲା

ପକ୍ଷୀରାଜ । ସେ ଯେତେବେଳେ ସାବାଳକ ହେଇଗଲା ବେଶି ଦୂରକୁ ଉଡାଉଡ଼ି କଲା ଅନ୍ୟ ପାରାମାନେ ବି ଆସି ତା'ର ସାଙ୍ଗ ହେଲେ । ଦିନେ ସେ କୁଆଡ଼େ ଚାଲିଗଲା, ଆଉ ଫେରିଲା ନାହିଁ । ନିଶ୍ଚୟ ତା'ର ମନମୁତାବକ ସାଥୀ ପାଇ ବସା ବାନ୍ଧିବାକୁ ଚାଲିଗଲା ।

ଜେଲ୍‌ରେ ଅସଂଖ୍ୟ ଗୁଣ୍ଡୁଚିମୂଷା ଥାଆନ୍ତି । ପନ୍ଦର ନମ୍ବରରେ ଜଣେ ପହରାବାଲା ଥାଏ । ସେ ଖାଇବାକୁ ବସିଲେ ତାକୁ ଆସି ଡଜନେ ଖଣ୍ଡେ ଘେରି ଯାଆନ୍ତି । ସେ ଭାତ ବିଞ୍ଚିଦିଏ । ସେମାନେ ସବୁ ଖାଆନ୍ତି । କେତେକ ତା'ର ଥାଳିରୁ ଖାଇବାକୁ ଲାଗିଯା'ନ୍ତି । ତା'ର ଦେଖାଦେଖି ଆମେ ସବୁ ବି ଗୁଣ୍ଡୁଚିମୂଷାଙ୍କ ସାଙ୍ଗରେ ବନ୍ଧୁତ୍ୱ କରିବା ଚେଷ୍ଟା କଲୁ । ଆମକୁ ସକାଳୁ ଚିନାବାଦାମ ଜଳଖିଆ ଦିଆଯାଏ । ଗୁଣ୍ଡୁଚିମାନଙ୍କ ପାଇଁ ଚିନାବାଦାମ ତଳେ ବିଞ୍ଚିଦେଇ ଚୁପ୍ ହେଇ ବସୁ ଅଳ୍ପ ଦୂରରେ । ସେମାନେ ତ୍ରସ୍ତ ଭାବରେ ଏଣିକି ତେଣିକି ଚାହିଁ ଚାହିଁ ଆସି ଚିନାବାଦାମ ଉଠେଇ ନିଅନ୍ତି ଓ ଟିକିଏ ଦୂରକୁ ପଳେଇଯାଇ କୁଟୁରୁକୁଟୁର କରି ଖା'ନ୍ତି । କ୍ରମେ ସେମାନଙ୍କର ଭୟ କମିଲା । ମଣିଷଙ୍କ ପାଖରେ ବି ନିର୍ଭୟରେ ବସି ଖାଇଲେ । ଶେଷକୁ ହାତରୁ ଚିନାବାଦାମ ନେଇ ଯିବାକୁ ଲାଗିଲେ ଓ ଛିଡ଼ା ହେଇ ରହିଥିବା ଲୋକର ଗୋଡ଼ବାଟେ ଚଢ଼ି ଆସି ହାତରୁ ଚିନାବାଦାମ ନେଇଯିବାକୁ ବି ପଛେଇଲେ ନାହିଁ ।

ଥରେ ତିନିଟା ଗୁଣ୍ଡୁଚିମୂଷା ଛୁଆ ଗଛରୁ ଖସିପଡ଼ିଲେ । ଦାଦା ସେମାନଙ୍କୁ ନେଇ ପୋଷିଲା । ସଳିତାରେ ଦୁଧ ଖୁଆଏ । ଗୋଟାଏ ପାଚିଆରେ କନା ଓ ତୁଳା ଦେଇ ସେମାନଙ୍କୁ ରଖାଯାଇଥାଏ । କ୍ରମେ ସେମାନେ ବଡ଼ ହେଇ ଚାଲବୁଲ କରିବାକୁ ସକ୍ଷମ ହେବାରୁ ସେମାନଙ୍କ ପାଇଁ ଗୋଟାଏ ଖାସ୍ ପିଞ୍ଜରା ତିଆରି ହେଲା । ସେଥିରେ ଦୁଇଟା ମାହାଲା ଥାଏ । ତଳ ଉପର ହେବା ପାଇଁ ସାନ ସାନ ଡାଳ ଖଞ୍ଜା ହେଇଥାଏ । ପରେ ପିଞ୍ଜରା ଖୋଲା ରଖା ହେଲା । ସେମାନେ ବାହାରେ ବୁଲାବୁଲି କରନ୍ତି । ଗଛରେ ଚଢ଼ି ଖେଳନ୍ତି, ଥକିଗଲେ ଖାଇବାବେଳ ହେଲେ ଓ ରାତିରେ ଆସି ପିଞ୍ଜରାରେ ପଶନ୍ତି । ସେମାନେ ବି କ୍ରମେ କ୍ରମେ ବେଶି ସମୟ ବାହାରେ ରହିଲେ ଓ ଗଛବାଲାଙ୍କ ସାଙ୍ଗରେ ମିଶି ଶେଷକୁ ଯାଇ ଗଛରେ ରହିଲେ ।

## ରଙ୍ଗରସ

ସେତେବେଳକୁ ନମ୍ବର ହେବା ନିୟମ ଚାଲୁ ହେଇଗଲାଣି । ଆମେ ତ ସେଲ୍‌ରେ ଥାଉ । ସେଥିପାଇଁ ପନ୍ଦର, ଷୋଳ ନମ୍ବରରେ ରାତିରେ ହେଇଥିବା ଆମୋଦ ପ୍ରମୋଦରେ ଯୋଗଦେଇ ପାରୁନଥାଉ । ତା' ବୋଲି ରଙ୍ଗରସର କିଛି ଅଭାବ ନଥାଏ । ବାପା ବରାବର ଭାଗୁଭାଇ, ଟୁଲୁମାମୁଁ ଓ ଅନ୍ୟ ଅନେକଙ୍କୁ ପରିହାସରେ କହନ୍ତି ଯେ, ତମର ପୁଣି ଗୋଟାଏ ଖାଇବାରେ ରୁଚି କ'ଣ ? ଘାସକୁଟା ଯାହା ମସଲା ଦେଇ ସିଝେଇ ଦେବ ତମକୁ ଭଲ ଲାଗିବ । ଏଇ କଥାକୁ ଦିନେ ବାପା ଓ ଟୁଲୁମାମୁଁ ବସି ଷଡ଼ଯନ୍ତ୍ର କଲେ ଯେ ଭାଗୁଭାଇଙ୍କୁ ଛଣ ଖୁଆଇବାକୁ ହେବ । ଅନେକ ଭାବିଚିନ୍ତି ଛଣର ବରା ତିଆରି ଠିକ୍ ହେଲା । ମତେ ରସାୟନ

ବିଶେଷଜ୍ଞ ଭାବରେ କନସଲଟ୍ କରାଗଲା । ମୁଁ ଦେଖେଇଲି ଯେ ଛଣକୁ ସାନ ସାନ ଟୁକୁରାରେ କାଟି ଚବିଶ ଘଣ୍ଟା ଲୁଗାଧୂଆ ସୋଡ଼ା ପାଣିରେ ଭିଜେଇ ରଖି ତା' ପରେ ଭଲକରି ଧୋଇ ବାଟିଦିଅ । ଦିନେ ଭାଗୁଭାଇଙ୍କୁ ଖାଇବାକୁ ନିମନ୍ତ୍ରଣ କରାହେଲା ଓ ଅନ୍ୟାନ୍ୟ ଖାଦ୍ୟ ଭିତରେ ଛଣବରା ବି ତିଆରି କରାହେଲା । ଏପରି ନିମନ୍ତ୍ରଣରେ ଅସ୍ୱାଭାବିକ କିଛି ନଥିଲା । କାରଣ ବାପାହେରିକାଙ୍କର ରୋଷେଇ ସେଇ ସେଲ୍ ହତାରେ ଉଠାଚୁଲୀରେ ହେଉଥାଏ ।

ଛଣବରା କେତୋଟି ହେଉଥାଏ, ତାଛଡ଼ା ଏମିତି ଭଲ ବେସନବରା ବି ସମସ୍ତଙ୍କ ପାଇଁ ହେଉଥାଏ । ଭାଗୁଭାଇ ଓ ବାପା ଖାଇ ବସିଲେ । ଟୁଣ୍ଡୁମାମୁଁ ଯଥାସମୟରେ ଦିଓଟି ଛଣବରା ଓ ଦିଓଟି ଭଲ ବରା ଭାଗୁଭାଇଙ୍କ ପତ୍ରରେ ପରଷି ଦେଲେ । ଭାଗୁଭାଇ ତ ଯେତେହେଲେ କରଣ ପିଲା । ଏ ହଠାତ୍ କୁଣିଆ ଚର୍ଚ୍ଚା ପଛରେ କିଛି ଗୋଟାଏ କୁମତଲବ ଅଛି ବୋଲି ତରକା ହେଉଥା'ନ୍ତି । ସେ ସନ୍ଦିଗ୍ଧ ଭାବରେ ସେଇ ଛଣବରାରୁ ହିଁ ଗୋଟିଏ ଉଠାଇ ନେଇ ଖାଇଦେଲେ ଓ ସେଠୁ ଖୁବ୍ ହସ ଉଠିଲା ।

ଷୋଳ ନା ସତର ନମ୍ବରରେ ଥିବାବେଳେ ଆମେ ଗୋଟାଏ ଖେଳ ବାହାର କରିଥିଲୁ । 'ଦରୀ ଫାୟାର' । ଜେଲ ପକ୍ଷରୁ ଆମକୁ ମିଳିଥିବା ମଜବୁତିଆ ସତରଞ୍ଜି ବା ଦରୀକୁ ଜୋର୍‌ରେ ଝାଡ଼ିଲେ ଫଟାସ୍‌କରି ଏକ ତୀକ୍ଷ୍ଣ ଶବ୍ଦ ହୁଏ । ଅନେକେ ସନ୍ଧ୍ୟାବେଳେ ବିଛଣା ସଜାଡ଼ିବାବେଳେ ସତରଞ୍ଜି ଝାଡ଼ନ୍ତି । ଦିନେ ଗୋଟାଏ ବୁଦ୍ଧି ବାହାରିଲା । ସମସ୍ତେ ନିଜ ନିଜର ପିଣ୍ଡି ଉପରେ ସତରଞ୍ଜି ନେଇ ଛିଡ଼ା ହେଲେ ଓ 'ଏକ ଦୁଇ ତିନି- ଫାୟାର' ବୋଲି ହୁକୁମ ଦିଆଯିବା ମାତ୍ରେ ଏକା ସାଙ୍ଗରେ ସମସ୍ତେ ସତରଞ୍ଜି ଝାଡ଼ିଲେ । ଏକାବେଳେକେ କୋଡ଼ିଏ ପଚିଶଟା ସତରଞ୍ଜି ଝଡ଼ାର ଶବ୍ଦ ଗୋଟାଏ ବମ୍ ବାଜି ଫୁଟିଲା ପରି ଶୁଣାଗଲା । ଶବ୍ଦ ଶୁଣି ୱାର୍ଡ଼ର, ଜମାଦାର ହେରିକା ସମସ୍ତେ ଧାଇଁ ଆସିଲେ । ଆମର ଏମିତି ତିନିଥର ଫାଏର୍ ହେଲା । ସେମାନେ ବ୍ୟାପାରଟା ବୁଝିପାରି ବୋକା ବନି ଚାଲିଗଲେ । ଏମିତି ସନ୍ଧ୍ୟାବେଳିଆ 'ଦରୀ ଫାୟାର' ଅନେକ ଦିନଯାଏ ଚାଲିଥିଲା ।

ଏ ଦୁଇଥର ଜେଲ୍‌ଦଣ୍ଡ ମଝିରେ ମୁଁ ଚିକିତ୍ସା ପାଇଁ ଯାଇ ଯେତେବେଳେ ପ୍ରଥମେ କଲିକତାରେ ପହଞ୍ଚିଲି ସେଠିକାର ଗାଡ଼ି ମଟର କାରବାର ଦେଖି ତ ମତେ ପ୍ରଥମେ ତାଟଙ୍ଗା ଲାଗିଲା । ଦୁଇବର୍ଷ କାଳ ବନ୍ଦ ରହିବା କାରଣରୁ ବୋଧହୁଏ ବାହାରର ବ୍ୟସ୍ତ ଓ କୋଳାହଳପୂର୍ଣ୍ଣ ଜୀବନ ମତେ ଅଡୁଆ ଲାଗୁଥାଏ । ତା'ଛଡ଼ା ଯୁଦ୍ଧ ଭିତରେ କଲିକତାରେ ଯାନବାହନ ଚଳାଚଳ ଓ ସେଥିରେ ଭିଡ଼ ମଧ୍ୟ ବହୁତ ବଢ଼ିଯାଇଥାଏ । ସୋଦପୁରରେ ଖଦୀ ପ୍ରତିଷ୍ଠାନରେ ପହଞ୍ଚି ତ ମୁଁ ପ୍ରଥମେ ସେଠାର ଲୋକାଲ ଟ୍ରେନ୍‌ରେ ଭିଡ଼ ଦେଖି ସେଥିରେ ଚଢ଼ିବାର ସାହସ ବି କରିପାରିଲି ନାହିଁ ଓ ସେଥିପାଇଁ କୁଆଡ଼େ ପଦାକୁ ବାହାରିଲି ନାହିଁ । କ୍ରମେ ମୋର ଦ୍ୱିଧା କଟିଗଲା ଓ ଆଉ ଟ୍ରେନ୍‌ରେ ଓ ବସ୍‌ରେ ଯିବା ଆସିବା କରିବା ଅଡୁଆ ଲାଗିଲା ନାହିଁ । ସେଠି ଥିବାବେଳେ କଲିକତାରେ ଏକ ଚିତ୍ର ପ୍ରଦର୍ଶନୀ ହେଉଥିବାର ଖବର ପଢ଼ି ପ୍ରଦର୍ଶନୀ ଦେଖିଗଲି ।

ସେଠି ଚିତ୍ରକର ଜୟନାଲ ଆବେଦିନ୍‌ଙ୍କର ଅଙ୍କିତ ବଙ୍ଗଳାର ଦୁର୍ଭିକ୍ଷପୀଡ଼ିତ ନରନାରୀଙ୍କର କେତେଗୁଡ଼ାଏ ଚିତ୍ର ମତେ ଗଭୀର ଭାବରେ ସ୍ପର୍ଶ କରିଥିଲା ।

## ବିବାହ

ମୁଁ ୧୯୪୫ ର ମଝିଆମଝି କୌଣସି ଏକ ସମୟରେ ଶେଷ ଥର ପାଇଁ ଜେଲରୁ ଖଲାସ ହେଲି । ସେତେବେଳକୁ ଗାନ୍ଧୀଜୀ ଖଲାସ ହୋଇ ସାରିଥା'ନ୍ତି । ଯୁଦ୍ଧ ମଧ ସରିଆସୁଥାଏ । ଆଗକୁ କ'ଣ କରାଯିବ ସେ ବିଷୟରେ ବିଚାର ଆଲୋଚନା ଚାଲିଥାଏ । ସାରା ଦେଶ ସେତେବେଳକୁ ପୂରାପୂରି ଥଣ୍ଡା ପଡ଼ିଗଲାଣି । ବାପା ଓ ବୋଉ ଯାଇ ବରୀରେ ରହିବା ଆରମ୍ଭ କରିଥା'ନ୍ତି । ସେବାଘର ତ ଭଙ୍ଗା ହୋଇଯାଇଥାଏ । ଗୋବର୍ଦ୍ଧନବାବୁଙ୍କ ଡିହରେ ଦି'ବଖରା ସାନ ଘର ଥାଏ । ସେମାନେ ଯାଇ ସେଇଠି ଥା'ନ୍ତି । ଏ ଘର ଖଣ୍ଡକରେ ପୂର୍ବରୁ ବରୀରେ କାମ କରିବାକୁ ଆସୁଥିବା କର୍ମୀମାନେ ରହୁଥିଲେ । ସେତେବେଳେ କଣ୍ଟ୍ରୋଲରେ କିରାସିନି ମିଳିବା କଠିନ ହେଉଥାଏ । ତେଣୁ ବାପା ଓ ବୋଉ ବିନା ଆଲୁଅରେ ସୂତାକଟା ଅଭ୍ୟାସ କରୁଥା'ନ୍ତି । ଦିନ ଥାଉଁ ଥାଉଁ ଖାଇଦିଅନ୍ତି । ରାତିରେ ଅନ୍ଧାରରେ ସୂତାକଟା ଅଭ୍ୟାସ କରୁଥା'ନ୍ତି । ମୁଁ ବି ଜେଲ୍‌ରୁ ବାହାରିବା ପରେ ଯାଇ ସେଠି ରହିଲି । ଏଣେ ବନ୍ଦ ରହିଥିବା ମୌଳିକ ଶିକ୍ଷା ଅନୁଷ୍ଠାନଗୁଡ଼ିକୁ ମଧ ପୁଣି ଚାଲୁ କରିବା ଉଦ୍ୟମରେ ଶରତ ବାବୁ ହେରିକା ଲାଗିଥା'ନ୍ତି । ସରକାରୀ କାମ ଛାଡ଼ି ସ୍ୱାଧୀନ ମୌଳିକ ଶିକ୍ଷାରେ ଲାଗିଥିବା ଅଧିକାଂଶ ଶିକ୍ଷକ ତ ୧୯୪୨ରେ ଜେଲ୍ ଯାଇଥିଲେ । ସେମାନେ ଫେରି ପୁଣି ଶରତବାବୁଙ୍କ ସାଙ୍ଗରେ ଆସି ଯୋଗ ଦେଉଥା'ନ୍ତି । କେତେକ ନୂଆ ବି ଆସିଥା'ନ୍ତି । ସେମାନଙ୍କ ଭିତରେ ଫକୀର ମିଶ୍ର, ରାମଚନ୍ଦ୍ର ମିଶ୍ର, ଭୁବନାନନ୍ଦ ସ୍ୱାଇଁ, ଗୋଲକ ନାୟକ, ମଧୁସୂଦନ ମିଶ୍ର, ଆର୍ତ୍ତବାବୁ, ବାସୁଦେବ ମହାନ୍ତି ପ୍ରଧାନ ।

ଏଇ ସମୟରେ ବାପା ପନିପରିବା ଚାଷରେ ନିଜେ ମେହନତ କରିବା ଆରମ୍ଭ କଲେ । ନୂଆ ନଈ ପାଳରେ ଖଣ୍ଡେ ଜମି ନେଇ - ପ୍ରାୟ ପାଏ ଏକର ହେବ- ସେଠି ଟମାଟୋ ଆଦି ଲଗେଇଲେ ଓ ନିଜେ କୋଡ଼ି ଧରି ଦୈନିକ ଆଠଘଣ୍ଟା ବା ବେଶି ମେହନତ କରିବା ଆରମ୍ଭ କଲେ । ସକାଳୁ ଜଳଖିଆ ଖାଇ ଚାଲିଯା'ନ୍ତି । ଦିପ୍ରହର ପାଇଁ ଖାଇବା ସାଙ୍ଗରେ ନେଇଯା'ନ୍ତି ଓ ଉପରଓଳିକୁ ଫେରନ୍ତି । ନୂଆ ନଈପାଳ ଆମ ଗାଁରୁ ତିନିପା ମାଇଲ୍ ବାଟ ହେବ ।

ଜେଲ୍‌ରୁ ବାହାରି ଦାଦା ଓ ଖୁଡ଼ୀ ପୁଣି ଯାଇ ଅନୁଗୁଳରେ ତାଙ୍କର ମୁଖ୍ୟ କେନ୍ଦ୍ର କଲେ । ଅଳ୍ପଦିନ ପରେ ସେଠି ବାଜି ରାଉତ ଛାତ୍ରବାସର ସ୍ଥାପନ ହେଲା ଓ ବାପା, ଦାଦା, ଖୁଡ଼ୀ ଓ ସାରଙ୍ଗବାବୁ ମିଶି ଆଦିବାସୀମାନଙ୍କର ସେବା ଉଦ୍ଦେଶ୍ୟରେ ଉତ୍କଳ ନବଜୀବନ ମଣ୍ଡଳ ସ୍ଥାପନ କଲେ ।

ଇତିମଧ୍ୟରେ ମୋର ବାହାଘର କଥା ଉଠିଲା । ବାହା ନ ହେବାର କୌଣସି ବିଚାର ମୋର ମନରେ ନ ଥାଏ । ବରଂ ଦାମ୍ପତ୍ୟ ଜୀବନ ବିଷୟରେ କେତେଗୁଡ଼ିଏ ବିଶେଷ ବିଚାର

ବା ଆଦର୍ଶ ଥାଏ । ମୁଁ ପୂର୍ବରୁ ଲକ୍ଷ୍ୟ କରିଥିଲି ଯେ କେତେକ ସାଥୀ ବିବାହଟାକୁ ଗୋଟାଏ ପତନ ବୋଲି ବିଚାରୁଥା'ନ୍ତି । ଗାନ୍ଧୀଜୀ ବ୍ରହ୍ମଚର୍ଯ୍ୟ ଉପରେ ଯେଉଁ ଅତ୍ୟଧିକ ଗୁରୁତ୍ୱ ଦେଉଥିଲେ ତାହା ଫଳରେ କେତେକ ପ୍ରଥମ ଉତ୍ସାହରେ ଅବିବାହିତ ରହି ଦେଶ ସେବା କରିବାକୁ ମନସ୍ଥ କରି ଯେତେବେଳେ ସେପରି ରହିବା କଠିନ ଜଣାପଡ଼ିଲା ବାହା ହେବାକୁ ବାଧ ହେଉଥିଲେ ଓ ଏଇଟାକୁ ମନେ ମନେ ଗୋଟାଏ ପତନ ବୋଲି ବିଚାରୁଥିଲେ । ଏଇଟା ମୁଁ ଲକ୍ଷ୍ୟ କରିଥିଲି । ମାତ୍ର ମୁଁ ତାହାକୁ ସେପରି ବିଚାରୁ ନଥିଲି । ଗାନ୍ଧୀଜୀ ମଧ ଯେ ତାଙ୍କର ବ୍ରହ୍ମଚର୍ଯ୍ୟ ବିଷୟରେ ବିଚାର ଗୋଟାଏ ସମ୍ପୂର୍ଣ୍ଣ ନୂତନ ପରିପ୍ରେକ୍ଷୀରେ ବାଢ଼ିଥିଲେ, ପରଂପରାଗତ ରକ୍ଷଣଶୀଳ ପରିପ୍ରେକ୍ଷୀରେ ନୁହେଁ, ତାହା ମୁଁ ଅବଶ୍ୟ ଅନେକ ପରେ ଭଲଭାବରେ ବୁଝିପାରିଲି ।

ବିବାହ ବିଷୟରେ ମୋର ବହୁତ ରୋମାଣ୍ଟିକ୍ ବିଚାର ଥାଏ । ଭଲପାଇ ନିଜେ ବାହାହେବି ବୋଲି ବିଚାର ଥାଏ । କୌଣସି କୌଣସି ଝିଅକୁ ଦେଖି ସମୟ ସମୟରେ ମନରେ ରଙ୍ଗ ଧରିଯାଉଥିଲା । ମାତ୍ର ମୋର ଭବିଷ୍ୟତ ଜୀବନସାଥୀ ବିଷୟରେ ଯାହା କଳ୍ପନା ଥିଲା, ତାକୁ ଚାହିଁ ଏ ସବୁକୁ ଖାତିର କରୁ ନଥିଲି । ଅନ୍ତତଃ ପଚିଶ ବର୍ଷ ବୟସ ପୂର୍ବରୁ ବାହା ହେବି ନାହିଁ ବୋଲି  ମନେ ମନେ ଠିକ୍ କରିଥିଲି । କେହି କେହି କନ୍ୟାପିତା ଯେ ମତେ ଆଖେଇ ଥିଲେ ତାହା ବି ଜାଣୁଥିଲି । ଅବଶ୍ୟ ଆମର ଘରର ଜୀବନ ଆଦର୍ଶ, ମୋର ନିଜର ଗତାନୁଗତିକ ପାଠର ଅଭାବ ଯୋଗୁଁ ଯେଉଁ ଶ୍ରେଣୀରେ ପରିବାର ମୋ ବିଷୟରେ ସ୍ପୃହା ଦେଖେଇବାର କଥା ସେମାନେ ତାହା ଦେଖାଉ ନ ଥା'ନ୍ତି ବୋଲି ମୋର ଧାରଣା । ସେତେବେଳେ ଅବଶ୍ୟ ମୁଁ ଏସବୁ ଦିଗକୁ ଦୃଷ୍ଟି ଦେଉ ନଥିଲି । ତେବେ ମୋ ମନରେ ସାଧାରଣ ମଧ୍ୟବିତ୍ତ ପରିବାରର ଭୀରୁ ଆରାମ-ସର୍ବସ୍ୱ ଜୀବନଧାରା ପ୍ରତି ଗୋଟାଏ ତୀବ୍ର ଅବଜ୍ଞା ଥିଲା । ଏବେ ସେ ଅବଜ୍ଞାଟା ବଦଳି ଗୋଟାଏ ପ୍ରକାରର ଦୟାଭାବରେ ପରିଣତ ହେଇଛି ।

ବୋଧହୁଏ ଅର୍ଥର କ୍ୟସଲର୍, ଯେକି କମ୍ୟୁନିଷ୍ଟ ପାର୍ଟିର ଏକ ସଦସ୍ୟ ଥିଲେ, ନିଜର ପାର୍ଟି ଅନୁଭୂତି ବର୍ଣ୍ଣନାକରି ଲେଖିଛନ୍ତି ଯେ, ଥରେ ଏ ପ୍ରକାରର ପାର୍ଟିର ଯେ କାମ କରିଥିବ ସେ ତା'ର ମାଦକତା ବା ଆକର୍ଷଣ ସାରା ଜୀବନ ଭୁଲି ପାରିବ ନାହିଁ । କଥାଟା କେବଳ କମ୍ୟୁନିଷ୍ଟ ଦଳପ୍ରତି ପ୍ରଯୋଜ୍ୟ ନୁହେଁ । ମଣିଷ ଯେତେବେଳେ କୌଣସି ଗୋଟିଏ ବଡ଼ ଲକ୍ଷ୍ୟ ଧରି ସଂକଟମୟ ପଥରେ ଚାଲେ ସେତେବେଳେ ତା'ର ଅନୁଭୂତି, ସଂବେଦନଶୀଳତା, ଜୀବନକୁ ଉପଭୋଗ କରିବାରେ ଶକ୍ତି ଅନେକ ବେଶୀ ତୀବ୍ର ହୋଇଯାଏ । ସେ ଜୀବନକୁ ଅଧିକ ପୂର୍ଣ୍ଣତର ରୂପରେ ବଞ୍ଚି ଶିଖେ । ସାଧାରଣ ଗତାନୁଗତିକ ଭୀରୁ ଜୀବନରେ ମଣିଷର ଅନୁଭୂତି, ଭାବନା, ସଂବେଦନଶୀଳତା, କର୍ମଶକ୍ତି, ଧୀଶକ୍ତି ଆଦି ତାହାକୁ ଯେତେ ପରିମାଣରେ ମିଳିଥାଏ ଯେ  ସବୁର କାଣିଚାଏ ମାତ୍ର କାମରେ ଲାଗେ । ତାର ଜୀବନଟାର ହିଁ ପନ୍ଦର ପଣ ସୁପ୍ତ ରହିଯାଏ । ସମାଜର ଗତାନୁଗତିକ ଜୀବନର ଚକିରେ ପଡ଼ି ତା'ର ସେହି ଅବସ୍ଥା ହୁଏ ଯାହା ରବୀନ୍ଦ୍ରନାଥ ବର୍ଣ୍ଣନା କରିଛନ୍ତି :

ଐ ଯେ ପ୍ରବୀଣ ଐ ଯେ ପରମ୍ ପାକା
ଚକ୍ଷୁ କର୍ଣ୍ଣ ଦୁଇଟି ତାନାୟ ଢାକା
ଝିମୋୟେ ଯେନ ଚିତ୍ରପଟେ ଆଁକା
ଅନ୍ଧକାରେ ବନ୍ଧ କରା ଖାଁଚାୟ ।

ସେଥିପାଇଁ ସ୍ୱାଧୀନତା ଆନ୍ଦୋଳନ ଭିତରେ, ଗାଁରେ ରହି ସମାଜର ଜଡ଼ତା ବିରୋଧରେ ଲଢ଼ିବା ଭିତରେ ଜୀବନର ଯେଉଁ ବହୁଗୁଣରେ ତୀକ୍ଷ୍ଣିକୃତ ସ୍ୱାଦ ମୁଁ ଅନୁଭବ କରୁଥିଲି, ଅନ୍ୟମାନେ ମଧ୍ୟ ଅନୁଭବ କରିଥିବେ, ତାହା ସାଧାରଣ ଆରାମପ୍ରିୟ ଜୀବନର ସ୍ୱାଦଠାରୁ ବହୁତ ଭିନ୍ନ । ଏ ତୀବ୍ରତର ଗଭୀରତର ଓ ବ୍ୟାପକତର ଜୀବନର ସ୍ୱାଦୁ ଯେ ପାଇଛି ସେ ତାକୁ ଆଉ ଛାଡ଼ିପାରିବ ନାହିଁ । ମେରୁ ଅଭିଯାତ୍ରୀ ଓ ହିମାଳୟ ଶୃଙ୍ଗ ଆରୋହଣକାରୀ ମଧ୍ୟ ସେହିପରି ଅନୁଭବ କରୁଥିବେ । ସେଥିପାଇଁ ସେମାନେ ଚୁପ୍‌ହୋଇ ବସି ପାରନ୍ତି ନାହିଁ । ମେରୁର ତୁଷାର ଓ ଏଭରେଷ୍ଟର ଶୃଙ୍ଗ ସେମାନଙ୍କୁ ବାରମ୍ବାର ଠାରେ । ସେଇଥିପାଇଁ ତ :

ବିପଦ୍ ଆଛେ ଜାନି ଆଘାତ ଆଛେ ।
ତାଇ ଜେନେ ତୋ ବକ୍ଷେ ପରାନ୍ ନାଚେ,
ଘୁଚିୟେ ଦେ ଭାଇ ପୁଁଥି-ପଡ଼ୋର କାଛେ,
ପଥେ, ଚଲାର ବିଧିବିଧାନ୍ ଯାଚା ।

ଏଇ ମୋର ଜୀବନର ଦର୍ଶନ ହେଇ ଯାଇଥିଲା । ବାପା, ବୋଉ, ଦାଦା, ଖୁଡ଼ୀଙ୍କ ଠୁଁ ମୁଁ ଯାହା ସବୁ ଠୁଁ ବଡ଼ କଥା ପାଇଛି ତାହା ହେଉଛି ଏୟା । ଜୀବନଟା ଗୋଟାଏ ଏଡ଼ଭେଂଚର, ଗୋଟିଏ ସାହସିକ ଅଭିଯାନ । ବିପଦ ଓ ଆଘାତର ସମ୍ମୁଖୀନ ହେଇ ହିଁ ମଣିଷ ଜୀବନକୁ ପ୍ରକୃତରେ ଉପଭୋଗ କରି ଶିଖେ । ମୁଁ ଯେ ପାଦ ପାଦ କରି ମୋର ଜୀବନର ଏଇ ବାଟରେ ଆଗେଇ ଆସିଛି ସେଥିରେ ମୁଁ ନିଜକୁ କେବେ କୌଣସି ମୂଲ୍ୟବାନ୍ ଅନୁଭୂତି ବା ପ୍ରାପ୍ୟରୁ ବଞ୍ଚିତ କରିଛି ବୋଲି କ୍ୱଚିତ୍ ଅନୁଭବ କରିଥିବି । ଛୋଟ ଛୋଟ କଥାରେ କରିଛି, ମୋଟ୍ ଉପରେ ଜୀବନର ସମସ୍ତ ଗତି ଓ ଦିଗ ବିଷୟରେ ନୁହେଁ । ଲୋକେ କହନ୍ତି – ଆପଣ ବହୁତ ତ୍ୟାଗ କରିଛନ୍ତି । ମୁଁ ସେପରିକିଛି ତ୍ୟାଗ କରିଥିବାର ଅନୁଭବ କରେ ନାହିଁ । ଓଲଟା ମୁଁ ଅନୁଭବ କରେ ଯେ ମୁଁ ଯାହା କରିଛି, ଯାହା ହେଇଛି, ତାହା ନ କରିଥିଲେ,ନ ହେଇଥିଲେ ବରଂ କ୍ଷୁଦ୍ର ଓ ଖର୍ବ ହେଇଯାଇଥା'ନ୍ତି । ଜୀବନରେ ବହୁତ କିଛି ପାଇବାର, ଅନୁଭବ କରିବାର ବାକି ଅଛି । ସେଥିପାଇଁ ମନ ହାଇଁପାଇଁ ହୁଏ । କିନ୍ତୁ ସେ ସବୁର ସନ୍ଧାନ ପଛରେ ପଡ଼ିଥିବା ଭୀରୁ, ନିଶ୍ଚଳ, ନିସ୍ପନ୍ଦ, ଜୀବନର ପିଞ୍ଜରା ଭିତରେ ମିଳିବ ନାହିଁ । ମିଳିବ ଆଗରେ ଦିଶୁଥିବ ପର୍ବତଶିଖରର ସେପାରିରେ, ସମନାରେ ବିସ୍ତୃତ ସୀମାହୀନ ମହାସାଗରର ପରପାରିରେ । ଏ ସବୁ କଥା ଏବେ ମୁଁ ଯେପରି ସଜେଇ ସାଜେଇ ଲେଖି ପାରିଲି ତିରିଶ ବର୍ଷ ତଳେ ସେପରି

ପାରି ନ ଥା'ନ୍ତି । କିନ୍ତୁ ସେତେବେଳେ ବି ଭାବଟା ମୋଟାମୋଟି ଏହିପରି ଥିଲା । ତେଣୁ ବାହାହେବା ଅର୍ଥ ଗତାନୁଗତିକ ଅର୍ଥରେ ଗୋଟିଏ ଶାନ୍ତଶିଷ୍ଟ ଗୃହସ୍ଥ ହେଇ ବସିବାର କଳ୍ପନା ମୋର ନ ଥିଲା । ମୋର ଜୀବନ ଶୈଳୀକୁ ଯେ ପସନ୍ଦ କରିପାରିବ, ତା'ର ସ୍ୱାଦ ଯେ ପସନ୍ଦ କରିପାରିବ, ତା'ର ସ୍ୱାଦ ଯେ ଉପଭୋଗ କରିପାରିବ ସେହିଭଳି ସାଥୀ ମୁଁ ଚାହୁଁଥିଲି ।

ତେବେ ମୋର ପରିବେଶ ଓ ଢଙ୍ଗଢାଙ୍ଗ ଯେପରି ଥିଲା ସେଥିରେ ରୋମାଣ୍ଟିକ୍ ଗତିବିଧିର ସମ୍ଭାବନା କମ୍ ଥିଲା । ଝିଅମାନଙ୍କ ସହିତ ମିଶାମିଶି କରିବାର ଅଭ୍ୟାସ ମୋର କମ୍, କଥା କହିବା ଅଭ୍ୟାସ କମ୍ । ତେଣୁ ବାହାଘରଟା ମିଶ୍ରିତ ଢଙ୍ଗରେ ସ୍ଥିର ହେଲା । ଜେଲ୍‌ରୁ ବାହାରିବା ପରେ ଗୁରୁଜନମାନେ ପାତ୍ରୀ ଖୋଜାଖୋଜି ଆରମ୍ଭ କଲେ । ଶରତବାବୁ ମତେ ଚିଠି ଲେଖି ଏ ବିଷୟରେ ମୋର ମତାମତ ବୁଝିନେଲେ । ମାସୀମାଆଶାଦେବୀ ଆର୍ଯ୍ୟନାୟକମ୍- ତାଙ୍କର ଛାତ୍ରୀ ସୁମିତ୍ରାଙ୍କର ପ୍ରସ୍ତାବ ପଠେଇଲେ । ସେ ମୌଳିକ ଶିକ୍ଷାର ତାଲିମ ପାଇଁ ସେବାଗ୍ରାମ ଯାଇଥିଲେ । ମୁଁ ସେବାଗ୍ରାମରେ ଯାଇ ମାସେ ଖଣ୍ଡେ ରହିଲି । ଆମ ଭିତରେ ପରିଚୟ ଓ ବହୁତ ଆଳାପ ଆଲୋଚନା ହେଲା ଓ ଶେଷକୁ ଉଭୟେ ସମ୍ମତ ହେଇ ବାହାଘର ଠିକ୍ ହେଇଗଲା । ସୁମିତ୍ରାଙ୍କ ସହିତ ପ୍ରଥମ ଆଳାପରେ ସେ ଆଠ ଭଉଣୀ ଓ ଚାରିଭାଇ ବୋଲି ଶୁଣି ପ୍ରଥମେ ତାଟଙ୍ଗା ହେଇଯାଇଥିଲି । ପରେ ଏ ଶ୍ୟାଳକ ଶ୍ୟାଳିକା ସଂପଦରେ ଗୌରବ ଉପଲବ୍ଧି କଲି । ବନ୍ଧୁମାନେ ମତେ ଶାଳିବାହନ ଉପାଧି ଦେଲେ ।

ବାହାଘର ସେବାଗ୍ରାମରେ ଫେବୃୟାରୀ ୧୬,୧୯୪୬ ରେ ହେବା ସ୍ଥିର ହେଲା । ଏ ତାରିଖ ଠିକ୍ କରିବାର କାରଣ ହେଲା ଯେ ସେ ଦିନ ମାଘ ପୂର୍ଣ୍ଣମୀ ଥିଲା ଓ ସେ ଦିନ ଓ ତା' ପରଦିନ ହିନ୍ଦୁସ୍ତାନୀ ତାଲିମୀ ସଂଘର ବୈଠକ ସେବା ଗ୍ରାମରେ ଡକାଯାଇଥିଲା । ଏ ପଟରୁ ବାପା, ବୋଉ, ଦାଦା, ଖୁଡ଼ୀ ଓ ମୁଁ ସେବାଗ୍ରାମ ଗଲୁ । ସେ ପଟରୁ ସୁମିତ୍ରାଙ୍କ ବାପା, ସୁମିତ୍ରା ଓ ମିଠୁ ସୁମିତ୍ରାଙ୍କର ତଳ ଭଉଣୀ, ଆସିଲେ । ତାଲିମୀ ସଂଘ ବୈଠକ ଯୋଗୁଁ ଅନେକ ବିଶିଷ୍ଟ ଲୋକ ଉପସ୍ଥିତ ଥା'ନ୍ତି । ଡ. ଜାକିର୍ ହୁସେନ୍, ସୁଚେତା କୃପାଲାନୀ, ଜି. ରାମଚନ୍ଦ୍ରନ୍, ମୃଦୁଲା ସରାଭାଇ ଓଗେର । ଏମାନଙ୍କ ଛଡ଼ା ନାୟକମଙ୍କୀ ପ୍ରଭୃତି ତ ଥା'ନ୍ତି । ଗାନ୍ଧୀଜୀ ସ୍ଥିର କରିଥା'ନ୍ତି ଯେ, ଯେଉଁ ବାହାଘରରେ ପାତ୍ରପାତ୍ରୀଙ୍କ ଭିତରୁ ଜଣେ ହରିଜନ ଓ ଅନ୍ୟଜଣକ ବର୍ଣ୍ଣ ହିନ୍ଦୁ ହେଇଥିବ କେବଳ ସେଇଥିରେ ସେ ଯୋଗ ଦେବେ । ତେଣୁ ଆମ ବାହାଘରବେଳେ ସେ ଉପସ୍ଥିତ ରହି ନ ଥିଲେ । ଆମେ ଯାଇ ତାଙ୍କର ଆଶୀର୍ବାଦ ଲୋଡ଼ିଥିଲୁ ।

ବାହାଘର ପାଇଁ ଗୋଟିଏ ଆଶ୍ରମୀ ପଦ୍ଧତି ଥିଲା । ସେଟା ବାହାର କରାଗଲା । ସେଥିରେ କେତେଗୁଡ଼ାଏ ସଂକଳ୍ପ କରିବାର ଏକ ବିଧି ଥାଏ । ତାହା ଭିତରେ ଏକ ସଂକଳ୍ପ ବି ଥାଏ ଯେ ସନ୍ତାନ ଉତ୍ପାଦନ ଛଡ଼ା ଅନ୍ୟଥା ସଂଯମ ପାଳନ କରିବାକୁ ହେବ । ସେ ସବୁ ସଂକଳ୍ପ ଆମେ

କଲୁ ନାହିଁ । ବାହାଘର ଦିନ ସକାଳ ଓଳି ସପ୍ତଯଜ୍ଞ ହେଲା । ବର କନ୍ୟା ଦୁହେଁ ସାତ ପ୍ରକାରର ସେବାକାର୍ଯ୍ୟ କଲୁ । ସେଥିରେ ଥିଲା : ସୂତ୍ରଯଜ୍ଞ, ଗୀତାପାଠ, ଗୋସେବା, ବୃକ୍ଷରୋପଣ, ପାଇଖାନା ସଫେଇ, କୂଅମୂଳ ସଫେଇ ଓ ଅତିଥି ସେବା । ଦୁଇଟି ଗଛ ଯେ ଆମେ ଲଗେଇଥିଲୁ, ତାହା ଭିତରୁ ଗୋଟିକୁ ଦୁଇଚାରିମାସ ଭିତରେ ଗାଈ ଖାଇ ସଫା କରି ଦେଇଥିବାର ଦେଖିଲି ।

ବାହାଘର ସନ୍ଧ୍ୟାପରେ ହେଲା । ସେଇଠିକାର ଜଣେ ବ୍ରାହ୍ମଣ ପୁରୋହିତ ହେଲେ । ମୋଟାମୋଟି ମହାରାଷ୍ଟ୍ରରେ ପ୍ରଚଳିତ ବୈଦିକ ପଦ୍ଧତି ହିଁ ଅନୁସରଣ କରାହେଲା । ତେବେ ଯେଉଁ ସବୁ ଅଦ୍ଭୁତ ଗୁଡ଼ାଏ ସ୍ତ୍ରୀଆଚାର ଓ ଲୌକିକ ଆଚାର ଥାଏ ସେଗୁଡ଼ିକ ବାଦ ଦିଆହେଲା । ବାହାଘରବେଳେ ତ ସେଠି ଜାକିର ହୁସେନ୍ ସାହେବଙ୍କଠାରୁ ଆରମ୍ଭ କରି ସେଠାର ବହୁ ସଂସ୍ଥାର ପ୍ରାୟ ସମସ୍ତ ଲୋକ ଜମା ହେଇଥିଲେ । ବାହାଘର ବିଧି ସରିବା ପରେ ମାସୀମା ସେମାନଙ୍କୁ ତିଳ ଓ ଗୁଡ଼ ମେଞ୍ଚାଏ ମେଞ୍ଚାଏ ବାଣ୍ଟିଲେ ।

ଗାନ୍ଧୀଜୀଙ୍କର ପାଖକୁ ସମସ୍ତେ ଗଲୁ, ବାହାଘର ଦିନ ଭୋର ପ୍ରାର୍ଥନାବେଳେ । ସେ ମତେ ଓ ସୁମିତ୍ରାକୁ ବୟସ ପଚାରିଲେ । କହିଲେ "ମୋର ନିଷ୍ପତ୍ତି କଥା ତ ଜାଣ । ସେଥିପାଇଁ ବାହାଘରେ ଯୋଗଦେଲି ନାହିଁ । ଉଭୟେ ମିଶି ଦେଶର ସେବାକର ।" ଏହା କହି ଆମକୁ ଆଶୀର୍ବାଦ କଲେ । ପୁଣି ଆସିବା ପୂର୍ବରୁ ଗାନ୍ଧୀଜୀଙ୍କୁ ଦେଖାକଲୁ ବାପାଙ୍କୁ ପଚାରିଲେ – "ଏଥିରେ କେତେ ଖର୍ଚ୍ଚ କଲ ?" ଖର୍ଚ୍ଚ ତ କେବଳ ରେଲ୍ ଭଡ଼ା ଛଡ଼ା ଆଉ ବିଶେଷ କିଛି ହେଇ ନ ଥିଲା । ଭୋଜିର ତ ପ୍ରଶ୍ନ ନାହିଁ । ସେଇ ଯୋଉ ପାଞ୍ଚସାତ ସେର ତିଳ ଗୁଡ଼ ବଣ୍ଟା ହେଇଥିଲା ତାହା ବି ଆଶାଦେବୀ ଦେଇଥିଲେ ।

କଟକ ଫେରି ନଈକୂଳ ଘରେ ଗୋଟିଏ ବନ୍ଧୁମିଳନ ହେଲା । ସେଥିରେ ସେଓଗାଁଠିଆ ଓ ଡାଲବୁଟ, ଚା' ସରବତର ବ୍ୟବସ୍ଥା ହେଇଥିଲା । ଦୁଇ ଝୁଡ଼ି ଖଣ୍ଡେ ସେଓଗାଁଠିଆ, ଡାଲବୁଟ ମଝିଘରେ ଥୁଆ ହେଇଥିବାର ଦେଖି ଟୁଲୁମାମୁଁ କହିଲେ – "ଏ ଜିନିଷ ଏତେ ଏକାଠି ମୁଁ କେବେ ଦେଖିନାହିଁ ।" ଏହା କହି କବାଟ ଆଉଜେଇ ଦେଇ ସପାସପ କରିବାକୁ ଲାଗିଗଲେ । କହିଲେ – "ଯାହାପାରେ ଖାଇନିଏ ।"

ମୋ ବାହାଘର ଠିକ୍ କରିବାରେ ବୁବୁର ଅବଦାନର ଉଲ୍ଲେଖ ନ କଲେ ସେ ହଲ୍ଲା କରିବ । ବୁବୁ ସେତେବେଳେ ସେବାଗ୍ରାମରେ ଆଶାଦେବୀଙ୍କ ପାଖରେ ରହୁଥାଏ । ଆଶାଦେବୀ ପ୍ରସ୍ତାବ ଦେବା ପୂର୍ବରୁ ତାହା ସହିତ ବି ପରାମର୍ଶ କରିଥିଲେ । ତା' ବାହାଘରେ ମୋର ଅବଦାନ ଥିଲା ଗଣ୍ଡଗୋଳ ସୃଷ୍ଟି କରିବା । ନାରାୟଣ ତ ସେତେବେଳେ ସେବାଗ୍ରାମରେ ରହୁଥାଏ । ବୁବୁ ଓ ସେ ନିଜ ନିଜ ଭିତରେ ସବୁ ଠିକ୍ କରି ନେଇଥିଲେ । ନାରାୟଣ ମତେ ସେ କଥା ଦିନେ ଜଣେଇଲା । ମୁଁ ସେମାନଙ୍କୁ ମୋର ଶୁଭେଚ୍ଛା ଜଣାଇ ଦେଲି । ସେମାନଙ୍କ

ଭିତରୁ କେହି ଦାଦା ବା ଖୁଡ଼ୀଙ୍କୁ କିଛି ଜଣାଇବା ପୂର୍ବରୁ ମୁଁ ଖୁଡ଼ୀଙ୍କୁ ଏ ବିଷୟରେ ଖଣ୍ଡେ ଚିଠିରେ ସବୁ ଲେଖି ଦେଲି ଓ ତା' ବି ଏକ ପୋଷ୍ଟକାର୍ଡ଼ରେ । ସେ ଖଣ୍ଡକ ଡାକଘରକୁ ଆଣିବା ବେଳେ ବାବାଜୀ - ବଳଭଦ୍ର ମିଶ୍ର -ପଢ଼ି ପଢ଼ି ଓ ଉଚ୍ଚସ୍ୱରରେ ଘୋଷଣା କରି କରି ଆସିଲେ । ଖବରଟାକୁ ଏପରି ଘୋଷଣା କରାଯିବାର ହଠାତ୍ ଶୁଣି ଦାଦା ଓ ଖୁଡ଼ୀ ବିସ୍ମିତ ଓ ବିବ୍ରତ ହେଇଗଲେ । ସେଥିପାଇଁ ମତେ କିଞ୍ଚିତ୍ ଭର୍ତ୍ସନା ଶୁଣିବାକୁ ପଡ଼ିଲା ।

ବିବାହ ବିଷୟରେ ପକ୍କା କଥାବାର୍ତ୍ତା କରିବାକୁ ଟୁଙ୍ଗୁମାମୁଁ ଓ ମୁଁ ସୁମିତ୍ରାଙ୍କର ଘରକୁ ଯାଇଥିଲୁ । ସେତେବେଳେ ସେମାନେ କୃଷ୍ଣନଗରରେ (ନଦିଆ ଜିଲ୍ଲା) ରହୁଥା'ନ୍ତି । ମୋର ଶ୍ୱଶୁର ବିଭୂତି ବାବୁଙ୍କ ବାପା ଧନପତି ବନ୍ଦୋପାଧ୍ୟାୟ ପୁରୀରେ ଖ୍ୟାତନାମା ଓକିଲ ଥିଲେ । ବୋଉ, ଟୁଙ୍ଗୁମାମୁଁ ଓ ବାବା ପୂର୍ବସ୍ମୃତି ମନେପକେଇ ଚିହ୍ନାଚିହ୍ନି ହେଲେ । ବାବା- ମୋର ଶ୍ୱଶୁର- ଛାତ୍ର ଅବସ୍ଥାରୁ ହିଁ ସ୍ୱାଧୀନତାପ୍ରେମୀ ଥିଲେ ଓ ହିଂସାବାଦୀ ସଙ୍ଗଠନ ତଥା ସୁଭାଷବାବୁଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ସେ ଏକ ସମୟରେ ଘରୁ ଚାଲିଯାଇ ସ୍ୱାଧୀନ ଭାବରେ ଟିଉସନ ଇତ୍ୟାଦି କରି ଚଳୁଥିଲେ ଓ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଅନେକ ଥର ଜେଲ୍ ଭୋଗିଥିଲେ । ତାଙ୍କର ଅଧ୍ୟୟନ ଖୁବ୍ ବ୍ୟାପକ ଥିଲା ଓ ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କର ନାନା ବିଷୟରେ ଅଧ୍ୟୟନର ରୁଚି କାଏମ ରହିଥିଲା । ତାଙ୍କର ଦୃଷ୍ଟିଭଙ୍ଗୀ ନିଜସ୍ୱ ଥିଲା । ସେଥିପାଇଁ ତାଙ୍କୁ କୌଣସି ଗୋଟିଏ ଛାଞ୍ଚରେ ପକେଇ ହେବ ନାହିଁ । ଏକ ସମୟରେ ସେ କବି ବିଜୟଲାଲ ଚଟ୍ଟୋପାଧ୍ୟାୟ ପ୍ରଭୃତିଙ୍କ ସହିତ ମିଶି "ଚାରଣ ଦଲ୍" ବୋଲି ଏକ କର୍ମୀ ସଂଘ ଗଢ଼ିଥିଲେ, ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବା ପାଇଁ । ଗାନ୍ଧୀଜୀଙ୍କର ପନ୍ଥାପ୍ରତି ତାଙ୍କର ଶ୍ରଦ୍ଧା ଥିଲା କିନ୍ତୁ ସେ ଅନ୍ଧ ସ୍ତାବକ ନ ଥିଲେ । ଏ ସବୁ ପଟ୍ଟଭୂମି ଯୋଗୁଁ ତାଙ୍କ ପରିବାରର ଜୀବନ ଦୃଷ୍ଟିରେ ଓ ବାତାବରଣରେ ବହୁତକିଛି ଉପାଦାନ ଏପରି ଥିଲା ଯାହା ଆମ ସହିତ ଖାପ ଖାଉଥିଲା । ସେଥିପାଇଁ ସୁମିତ୍ରା ଓ ମୁଁ ପରସ୍ପର ଖାପ ଖାଇବା ସହଜ ହେଲା । ତେବେ ଅସୁବିଧା ବି ଅନେକ ଥିଲା । ବାହାଘର ପରେ ଆମେ ଆସି ରାମଚନ୍ଦ୍ରପୁରରେ ରହିଲୁ । ସୁମିତ୍ରା ପୂର୍ବରୁ କେବେ ଗାଁରେ ରହି ନଥିଲେ । ତା'ଛଡ଼ା ଗାଁରେ ଆମେ ଜୀବନରେ ଯେଉଁ ପ୍ରକାର ସ୍ତରରେ ଅଭ୍ୟସ୍ତ ହେଇ ଯାଇଥିଲୁ ସେଥିରେ ନୂଆ ଲୋକ ଅଭ୍ୟସ୍ତ ହେବା ବେଶ୍ କଷ୍ଟସାଧ୍ୟ କଥା । ଆଉ ଗୋଟିଏ ଥିଲା ମୋର ସ୍ୱଭାବ, ଯେଉଁଥିରେ ଗୋଟିଏ ଉପାଦାନ ବେଶ୍ ଅଧିକ ପରିମାଣରେ ରହିଛି ଯାହାକୁ 'ମୂର୍ଖ ଜିଦ୍' ଆଖ୍ୟା ଦିଆଯାଇପାରେ । ତା'ଛଡ଼ା ଭଦ୍ର ସମାଜରେ ଚଳିବା ପାଇଁ ଆବଶ୍ୟକ ଅନେକ ସୂକ୍ଷ୍ମ ବିବେଚନାର ମୋର ଅଭାବ ଥିଲା । ଉଦାହରଣ ସ୍ୱରୂପ ଗୁରୁଜନମାନଙ୍କୁ ବାଧ୍ୟତାମୂଳକ ନମସ୍କାର କରିବା ବିରୋଧରେ ମୋର ବିଦ୍ରୋହଟା ଏତେ ହୋଇ ଯାଇଥିଲା ଯେ ମୁଁ କାହାରିକୁ କେବେ କ୍ୱଚିତ ନମସ୍କାର କରୁଥିଲି । ମୋର ଏ ସବୁ ଓ ଅନ୍ୟାନ୍ୟ ଅବାଗିଆପଣ ସହାଡ଼ିବାରେ ସୁମିତ୍ରାଙ୍କର କୃତିତ୍ୱ କମ୍ ନୁହେଁ । ତେବେ ମୋର ଜିଦିଟାକୁ ସେ କେତେକ

ପରିମାଣରେ ଦୋହନ କରାଇବାରେ ସମର୍ଥ ହେଉଥିଲେ ମଧ୍ୟ ଏବେ ବି ତାହା ଯଥେଷ୍ଟ ରହିଛି । ସେ ବି ଟାଣୁଆ ମନୋବଳ ଥିବା ଲୋକ ଓ ସେଥିପାଇଁ ଆମ ଭିତରେ ବେଳେବେଳେ ବେଶ୍ ଟାଣୁଆ ସଂଘର୍ଷ ଲାଗିଥାଏ । କିନ୍ତୁ ସେ ସବୁ ନ ଥିଲେ ବାକି ଜୀବନର ସ୍ୱାଦଟା ଜଣା ହେଉଥା'ନ୍ତା ।

## ଖଦୀ କାମ

ଏଇ ସମୟରେ ମୁଁ ଚରଖା ସଂଘର ଉତ୍କଳ ଶାଖାର ସମ୍ପାଦକ ଦାୟିତ୍ୱ ମୁଣ୍ଡେଇଲି । ସେଥିରୁ ମୁଁ ମାସିକ ପଚାଶ ଟଙ୍କା ଭତ୍ତା ନେଉଥାଏ । କାମର ଦାୟିତ୍ୱ ନେବାପରେ ମୋର ପ୍ରଥମ ଅବଦାନ ହେଲା ସଂସ୍ଥାର କର୍ମୀ ଛଟେଇ କରିବା । କାମ ତୁଳନାରେ ସେଥିରେ ବହୁତ ଅଧିକ କର୍ମୀ ରହିଯାଇଥିଲେ ଓ ଅନେକ କର୍ମୀ ଆଦୌ ଖଦୀ କାମ କରୁ ନ ଥିଲେ । ଚରଖା ସଂଘର ମୁଖ୍ୟ କାର୍ଯ୍ୟାଳୟ ନିର୍ଦ୍ଦେଶ ଦେଲେ ଯେ କର୍ମୀମାନଙ୍କର ସୂତାକଟା ଓ ଅନ୍ୟ ଆନୁଷଙ୍ଗିକ ଜ୍ଞାନର ପରୀକ୍ଷା କରିବାକୁ ହେବ । ସେହି ପରୀକ୍ଷାର ସୂତ୍ର ଧରି କର୍ମୀ ସଂଖ୍ୟା କମେଇ ଦିଆଗଲା ।

୧୯୪୫ ରେ ଗାନ୍ଧୀଜୀ ଖଦୀ ସଂସ୍ଥା ଓ କର୍ମୀମାନଙ୍କ ଆଗରେ ଚରଖା ସଂଘର ନବ ସଂସ୍କରଣର ଯୋଜନା ବାଢ଼ିଥିଲେ । ତାର ଉଦ୍ଦେଶ୍ୟ ଥିଲା ଯେ ଖଦୀକର୍ମୀ କେବଳ ଖଦୀ ଉତ୍ପାଦନ ଓ ବିକ୍ରିର ବେପାରୀ ନ ହୋଇ ଗାଁ ଲୋକଙ୍କର ଜୀବନ ସହିତ ଓତପ୍ରୋତ ହୋଇ ମିଶିଯିବ ଓ ଜନସାଧାରଣଙ୍କୁ ଅହିଂସା ବିପ୍ଳବ ପାଇଁ ପ୍ରସ୍ତୁତ କରିବ । ସେ ତା'ର ନିଜର ଭରଣପୋଷଣ ପାଇଁ କୌଣସି ଉପରିସ୍ଥ ସଂସ୍ଥା ଉପରେ ନିର୍ଭର କରିବ ନାହିଁ । ତା'ର ଅଞ୍ଚଳର ଲୋକେ ହିଁ ସେ ଦାୟିତ୍ୱ ତୁଲେଇବେ । ସେ ନିଜର ପରିଶ୍ରମ ଦ୍ୱାରା ନିଜର ଲୁଗା ତିଆରି କରିନେବ, ଖାଦ୍ୟ ମଧ୍ୟ କିଛିଟା ଉତ୍ପାଦନ କରିବ ।

ଏ ବିଚାର ଅନୁସାରେ ସାରାଦେଶରେ କେତେଗୁଡ଼ିଏ ଗ୍ରାମ-ସେବା-କେନ୍ଦ୍ର ସେତେବେଳେ ଆରମ୍ଭ ହେଲା । ଓଡ଼ିଶାରେ ମଧ୍ୟ ସେ ଭଳି ତିନି ଚାରୋଟି କେନ୍ଦ୍ର ଚାଲିଲା । ସେଥିରେ ବ୍ୟବସ୍ଥା ଥିଲା ଯେ ପ୍ରଥମ ତିନି ବର୍ଷ ନା କେତେ ଚରଖା ସଂଘରୁ ଏ ଗ୍ରାମସେବା କର୍ମୀମାନଙ୍କୁ କିଛି କିଛି ଆର୍ଥିକ ସାହାଯ୍ୟ ଦିଆଯିବ । ତା'ପରେ ତାହା ବନ୍ଦ କରି ଦିଆଯିବ । ଓଡ଼ିଶାର କେନ୍ଦ୍ରମାନଙ୍କ ଭିତରୁ ବିନୋଦ (କାନୁନ୍‌ଗୋ) ର କେନ୍ଦ୍ରଟି ସବୁଠାରୁ ଭଲ ବିକାଶ ଲାଭ କରିଥିଲା । କିନ୍ତୁ ସେ ପରେ ଅନ୍ୟାନ୍ୟ କାମରେ ଲିପ୍ତ ହୋଇ ଆଉ ଏ ସମଗ୍ର ଗ୍ରାମ ସେବା କାମରେ ଆଗେଇଲା ନାହିଁ । ଅନ୍ୟାନ୍ୟ କେନ୍ଦ୍ରରେ ସାଧାରଣ ରକମର କାମ ଚାଲିଲା । ଗାନ୍ଧୀଜୀଙ୍କର କଳ୍ପନା ଖୁବ୍ ଅଳ୍ପ ଅଂଶରେ କାର୍ଯ୍ୟକାରୀ ହେଲା ।

ଗାନ୍ଧୀଜୀ ଅଖିଳ ଭାରତ ଚରଖା ସଂଘର କାମକୁ ବିକେନ୍ଦ୍ରିତ କରି ପ୍ରାଦେଶିକ ଶାଖାମାନଙ୍କୁ ସ୍ୱତନ୍ତ୍ର କରିଦେବା ପାଇଁ ପରାମର୍ଶ ଦେଇଥିଲେ । ଓଡ଼ିଶା ଶାଖାକୁ ଏହିପରି ସ୍ୱାଧୀନ କରିବାର ବିଚାର କରି ଚରଖା ସଂଘର ଓଡ଼ିଶାରେ ଲଗାଣ ହେଇଥିବା ପାଣ୍ଠି ସୁଝି ଦେବାର ବିଚାର ବାପା କଲେ । ସେଥିପାଇଁ ୧୯୪୬ ଗାନ୍ଧୀ ଜୟନ୍ତୀ ଉପଲକ୍ଷ୍ୟରେ ତାଙ୍କୁ ଭେଟି ଦେବା ପାଇଁ ଚାନ୍ଦା ସଂଗ୍ରହ କରାଗଲା । ଗାନ୍ଧୀଜୀଙ୍କର ୭୮କ ଜନ୍ମଦିନ ଆସୁଥାଏ । ସେଥିପାଇଁ ୭୮ ପଇସା, ୭୮ ଅଣା ବା ୭୮ ଟଙ୍କା ଲେଖା ଚାନ୍ଦା ସଂଗ୍ରହ କରାଗଲା । ଲୋକେ ଖୁବ୍ ଖୁସି ହେଇ ଦେଲେ । ଲକ୍ଷାଧିକ ଟଙ୍କା ଅଳ୍ପ ଆୟାସରେ ଆଦାୟ ହେଲା ଓ ଚରଖା ସଂଘର ପୁଞ୍ଜି ସୁଝି ଦେଇ ଉତ୍କଳ ଶାଖାକୁ ସ୍ୱାଧୀନ କରି ନିଆହେଲା । ଏହାର ନାମକରଣ ଉତ୍କଳ ଖଦୀ ମଣ୍ଡଳ କରାହେଲା । ଗ୍ରାମସେବକ ମାସିକ ପତ୍ରର ମଧ ଏହି ସମୟରେ ମୋର ସମ୍ପାଦନାରେ ପ୍ରଥମ ପ୍ରକାଶ ଆରମ୍ଭ ହେଲା ।

ଇତିମଧ୍ୟରେ ଦ୍ୱିତୀୟ ମହାଯୁଦ୍ଧ ଶେଷ ହେଇଯାଇଥାଏ । ଯୁଦ୍ଧପରେ ଇଂଲଣ୍ଡର ନିର୍ବାଚନ ହେଇ ଟୋରୀ ଦଳ ହାରିଯାଇଥାଏ ଓ ଶ୍ରମିକଦଳ କ୍ଷମତାକୁ ଆସିଥାଏ । ଅଟ୍‌ଲୀ ପ୍ରଧାନମନ୍ତ୍ରୀ ହେଇଥା'ନ୍ତି । ନୂଆ ସରକାର ଭାରତ ସମସ୍ୟା ସମାଧାନ କରିବାକୁ ବଦ୍ଧପରିକର ଥା'ନ୍ତି । ୧୯୪୬ ରେ ପ୍ରଦେଶମାନଙ୍କରେ ଲାଟସଭା ଗଢ଼ା ହେଇଥାଏ । ଓଡ଼ିଶାରେ ମଧ ମହତାବ ବାବୁଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ା ହେଲା । ସେଥିରେ ଦାଦା ରାଜସ୍ୱ ମନ୍ତ୍ରୀ ହେଲା । ଏ ନିର୍ବାଚନରେ ମଧ ୧୯୩୭ ପରି କଂଗ୍ରେସ ଅନେକଗୁଡ଼ିଏ ଆସନ ବିନା ପ୍ରତିଦ୍ୱନ୍ଦ୍ୱିତାରେ ଦଖଲ କରିଥିଲା ।

ଇତିମଧ୍ୟରେ ବହୁତ ଆଲୋଚନା ଓ ଦର କଷାକଷି ପରେ ଓ ବ୍ରିଟିଶ ସରକାର ପକ୍ଷରୁ ସ୍ପଷ୍ଟୀକରଣ ମିଳିବା ପରେ କଂଗ୍ରେସ କ୍ୟାବିନେଟ ମିଶନ ଯୋଜନାକୁ ଗ୍ରହଣ କଲା ଓ ତେଣେ ମୁସଲିମ୍ ଲିଗ୍ ତାକୁ ପ୍ରତ୍ୟାଖ୍ୟାନ କଲା । ଇଂରେଜ ସରକାର ଚାହୁଁଥା'ନ୍ତି ଯେ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ କଂଗ୍ରେସ ଓ ମୁସଲିମ୍ ଲିଗ୍ ଉଭୟେ ଯୋଗ ଦିଅନ୍ତୁ । କିନ୍ତୁ ମୁସଲିମ୍ ଲିଗ୍‌ର ବାଟ ଓଗାଳିବା ନୀତି ଯୋଗୁଁ ଏ ବିଷୟରେ ଅନେକ ଦିନ ଯାଏ କୌଣସି ନିଷ୍ପତ୍ତି ହେଇ ପାରିଲା ନାହିଁ । ଗାନ୍ଧୀଜୀ କହୁଥାନ୍ତି ଯେ ଇଂରେଜ ସରକାର ଭାରତ ଛାଡ଼ି ଚାଲିଯିବେ ବୋଲି ସ୍ପଷ୍ଟ ଘୋଷଣା କରିଦେଇ କଂଗ୍ରେସ ବା ମୁସଲିମ୍‌ଲିଗ୍ ଯାହାକୁ ହେଲେ କ୍ଷମତା ଦେଇ ଚାଲିଯା'ନ୍ତୁ । ଆମେ ନିଜ ଭିତରେ ମିଳାମିଶା କରିନେବୁ । ଇଂରେଜ ମଝିରେ ଥାଇ ବିଲେଇକୁ ପିଠା ବାଣ୍ଟିବା କାମ କରୁଥିବା ଯାଏ ଏକଥା କେବେହେଲେ ଆସିବ ନାହିଁ ।

ଯାହାହେଉ କଂଗ୍ରେସକୁ ହିଁ ଏକୁଟିଆ ନେଇ କେନ୍ଦ୍ର ମନ୍ତ୍ରୀମଣ୍ଡଳ ଗଢ଼ାହେଲା । ସେଥିରେ ମୁସଲିମ୍‌ଲିଗ୍ ପରେ ଯୋଗଦେବ ବୋଲି ବାଟ ଖୋଲା ରହିଲା । ଏ ବ୍ୟାପାର ଓ ଅନ୍ୟ ସବୁ ଆଳାପ ଆଲୋଚନା ଭିତରେ ଗାନ୍ଧୀଜୀ ଖୁବ୍ ସତର୍କ ଓ ସୂକ୍ଷ୍ମ ଦୃଷ୍ଟି ରଖି ବିଚାର କରିବା ବେଳକୁ

କଂଗ୍ରେସ ନେତାମାନେ କୌଣସିମତେ କ୍ଷମତାକୁ ଯିବା ପ୍ରଲୋଭନରେ ନାନା ପ୍ରମାଦ କରି ଚାଲିଥା'ନ୍ତି । ମୌଲାନା ଆଜାଦ ତ ଗାନ୍ଧୀଜୀଙ୍କ ମୁହଁ ଉପରେ ମିଛ କହିବାକୁ ପଛେଇ ନ ଥିଲେ । ସେ କ୍ୟାବିନେଟ୍ ମିଶନ୍‌କୁ ଲେଖିଦେଇଥିଲେ ଯେ, କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଜଣେ କଂଗ୍ରେସପନ୍ଥୀ ମୁସଲମାନ ରହିବା ଦାବି କଂଗ୍ରେସ ଛାଡ଼ିଦେବ । କଂଗ୍ରେସର ଏ ଦାବୀକୁ ମୁସଲିମ୍ ଲିଗ୍ ଗ୍ରହଣ କରୁ ନ ଥିଲା । ଏହା କିନ୍ତୁ ମୌଲାନା ଆଜାଦ କଂଗ୍ରେସ କାର୍ଯ୍ୟକାରୀ ସମିତି ଓ ଗାନ୍ଧୀଜୀଙ୍କର ଅଗୋଚରରେ ଲେଖିଥିଲେ । ଗାନ୍ଧୀଜୀ ଏ ଚିଠି କଥା ଜାଣି ଓ ତାହାକୁ ହାତରେ ପାଇ ଯେତେବେଳେ ମୌଲାନା ଆଜାଦଙ୍କୁ ପଚାରିଲେ ସେ ସଫା ମନା କରିଦେଇ କହିଲେ ଯେ ସେ ଏପରି ଚିଠି ଲେଖିନାହାନ୍ତି । ଅବଶ୍ୟ ଏସବୁ ଭିତିରି କଥା ପରେ ଧୀରେ ଧୀରେ ଜଣା ପଡ଼ିଥିଲା ।

ଭାରତର ରଙ୍ଗମଞ୍ଚରେ ଏସବୁ ଐତିହାସିକ ଘଟଣାର ଅଭିନୟ ଚାଲିଥିବାବେଳେ ଏଣେ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳମାନେ କିଛି ନିଦା କାମ କରି ଦେଖାଇବା ପାଇଁ ବ୍ୟଗ୍ର ଥା'ନ୍ତି । ବାପା ମଧ୍ୟ ଏଇ ନୂତନ ସନ୍ଧିକ୍ଷଣରେ ମିନ୍‌ହା ପ୍ରଜାଙ୍କର ଅବସ୍ଥା ସୁଧାରିବା ପାଇଁ ଗୋଟାଏ ତୁରନ୍ତ ପଦକ୍ଷେପ ନେଲେ । ମିନ୍‌ହା ଅର୍ଥ ଯାହାଙ୍କର ନିଜ ଘରଡ଼ିହ ଓ ବାଡ଼ି ତଳି ଜମିରେ ମଧ୍ୟ ଅଧିକାର ନ ଥିଲା । ସେମାନେ ସେଠି ପୁରୁଷ ପୁରୁଷ ଧରି ଘର କରି ରହିଥିଲେ ମଧ୍ୟ ସେ ଜମି ଜମିଦାରର ସମ୍ପତ୍ତି ଓ ସେ ଚାହିଁଲେ ମିନ୍‌ହା ପ୍ରଜାଙ୍କୁ ଯେକୌଣସି ମୁହୂର୍ତ୍ତରେ ଘରୁ ଉଠେଇ ଦେଇ ପାରୁଥିଲେ । ଏ ପ୍ରଜାମାନେ ସାଧାରଣତଃ ହରିଜନ ଓ ଭୂମିହୀନ ମଧ୍ୟ । ଲକ୍ଷ୍ମୀନାରାୟଣ ସାହୁ, ବିନୋଦ କାନୁନ୍‌ଗୋ ଓ ସୁଧୀର ଘୋଷଙ୍କୁ ନେଇ ବାପା ଗୋଟିଏ ଅନୁସନ୍ଧାନ କମିଟି ଗଠନ କରିଦେଲେ । ଏ କମିଟି ଯାଜପୁର ଓ ବିଞ୍ଝାରପୁର ଥାନାର କେତେକ ଅଞ୍ଚଳ ବୁଲି ଏକ ରିପୋର୍ଟ ଦେଲେ ଓ ସେଥିରେ ସୁପାରିଶ କଲେ ଯେ ମିନ୍‌ହା ପ୍ରଜାମାନଙ୍କୁ ତାଙ୍କର ଘରବାଡ଼ି ଜମିରେ ମାଲିକାନା ଅଧିକାର ଦିଆଯାଉ । ଏ ସୁପାରିଶ ଓଡ଼ିଶା ମନ୍ତ୍ରୀମଣ୍ଡଳଙ୍କୁ ପଠାହେଲା ଓ ତାହାରି ଭିତରେ ଆଇନ୍ ପ୍ରଣୟନ କରାଯାଇ ମିନ୍‌ହା ପ୍ରଜାଙ୍କୁ ଡିହବାଡ଼ି ଜମିରେ ସ୍ୱତ୍ୱ ଦିଆଗଲା । ଭାରତରେ ବୋଧହୁଏ ଏଭଳି ଆଇନ୍ ଏଇ ପ୍ରଥମ । ଏତେକାଳୁ ଏ ଆଇନ୍ ହୋଇଥିଲେ ମଧ୍ୟ ଏବେ ବି ଓଡ଼ିଶାର ବହୁ ଅଞ୍ଚଳରେ ଲୋକେ ସେ ଆଇନ୍‌ର ଲାଭ ପାଇ ନାହାନ୍ତି । ଏତେ ବର୍ଷର ଶାସନର ଅପାରଗତାର ଏ ଏକ ନମୁନା ।

ଖଦୀ ଓ ଗ୍ରାମଶିଳ୍ପର ବିକାଶ ପାଇଁ ପ୍ରାଦେଶିକ କଂଗ୍ରେସ ମନ୍ତ୍ରୀମଣ୍ଡଳମାନ ବିଶେଷ ଉଦ୍ୟମ କରିବେ ବୋଲି ଆଶା କରାଯାଉଥାଏ । ୧୯୪୬ ରେ ହରିଜନରେ ଏକ ପ୍ରବନ୍ଧରେ ଗାନ୍ଧୀଜୀ ପ୍ରାଦେଶିକ ମନ୍ତ୍ରୀମଣ୍ଡଳମାନଙ୍କୁ ପରାମର୍ଶ ଦେଲେ ଯେ ସେମାନେ ଗାଁ ଲୋକଙ୍କୁ କହି ଦିଅନ୍ତୁ ଯେ ସେମାନଙ୍କୁ ନିଜର ଲୁଗା ନିଜେ ତିଆରି କରି ନେବାକୁ ହେବ । ସେଥିପାଇଁ

ସରକାର ଗାଁ ଲୋକଙ୍କୁ ସୂତାକଟା, ଲୁଗାବୁଣା ଶିଖାଇବା ତଥା ସରଞ୍ଜାମ, ତୁଳା ଓ ଆବଶ୍ୟକ ପୁଞ୍ଜି ଯୋଗାଇବା ବ୍ୟବସ୍ଥା କରିବେ । ଏଥିପାଇଁ ବର୍ଷେ ସମୟ ଦିଆଯିବ । ବର୍ଷକ ପରେ ସରକାର ଗାଁମାନଙ୍କୁ ମିଲ୍ ଲୁଗା ଯୋଗାଣ ବନ୍ଦ କରିଦେବେ । ଏହାପରେ ଦେଶରେ ଥିବା ଲୁଗା କଳଗୁଡ଼ିକ କେବଳ ସହରର ଚାହିଦା ମେଣ୍ଟାଇବେ ଓ ବଳକା ଲୁଗା ବିଦେଶକୁ ମଧ୍ୟ ରପ୍ତାନି କରିବେ । ଦେଶରେ ନୂଆ ଲୁଗାକଳ ବସିବାକୁ ଦିଆଯିବ ନାହିଁ ଓ ଯେଉଁସବୁ ଲୁଗାକଳ ପୁରୁଣା ଓ ଘଷରା ହେଇଯିବ ସେସବୁ ପୁଣି କାର୍ଯ୍ୟକ୍ଷମ କରିବା ପାଇଁ ନୂଆ କଳକବ୍ଜା ମଗାଇବାକୁ ଅନୁମତି ଦିଆଯିବ ନାହିଁ ।

ଏ ଲେଖା ପଢ଼ି ତ ମୁଁ ପ୍ରବଳ ଭାବରେ ଉଦ୍ଦୀପିତ ହେଇଉଠିଲି । ଏଇଟା ମତେ ଗୋଟାଏ ଅତି ପ୍ରଚଣ୍ଡ ବୈପ୍ଲବିକ କାର୍ଯ୍ୟକ୍ରମ ପରି ଜଣାଗଲା । ବିନୋଦ ହେରିକାଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା କଲି । ବିନୋଦ ବି ଖୁବ୍ ଉତ୍ସାହ ଅନୁଭବ କଲା । ଏହି ସମୟରେ ଖଦୀ ଗ୍ରାମୋଦ୍ୟୋଗ ବିଷୟରେ ଆଲୋଚନା କରିବା ପାଇଁ ପୁନାରେ ଏକ ବୈଠକ ହେଲା । ଗାନ୍ଧୀଜୀ ସେଠି ଥା'ନ୍ତି । ସେଠିକି ଟୁଙ୍ଗୁମାମୁଁ ଓ ମୁଁ ଯାଇଥାଉ । ସେଠି ମୁଁ କେତେଜଣ ବିଶିଷ୍ଟ ଖଦୀ କର୍ମୀଙ୍କ ସହିତ ଗାନ୍ଧୀଜୀଙ୍କର ଏ ପ୍ରସ୍ତାବ ବିଷୟରେ ଆଲୋଚନା କଲି । ସେମାନଙ୍କ ଭିତରେ ଚରଖା ସଂଘର ପୂର୍ବତନ ସଂପାଦକ ଲକ୍ଷ୍ମୀଦାସ ଆସର ବି ଥିଲେ । ମୁଁ ଦେଖିଲି ଯେ ସେମାନେ ଏ ପ୍ରସ୍ତାବଟାର ସେମିତି କିଛି ଗୋଟାଏ ପ୍ରକାଣ୍ଡ ଗୁରୁତ୍ୱ ବା ବୈପ୍ଲବିକ ତାତ୍ପର୍ଯ୍ୟ ଅଛି ବୋଲି ବିଚାରୁ ନାହାନ୍ତି । ରଚନାତ୍ମକ କର୍ମୀ ଗୋଷ୍ଠୀରେ ସେତେବେଳର ନେତୃତ୍ୱରେ ଏଇ ଗୋଟାଏ ଟ୍ରାଜେଡ଼ି ବୋଲି ମୋର ମନେ ହେଲା । ଗାନ୍ଧୀଜୀ କୌଣସି ଗୋଟାଏ ନୂଆ କାର୍ଯ୍ୟକ୍ରମ ଦେଲେ ତା'ର ସାମାଜିକ ଓ ବୈପ୍ଲବିକ ପ୍ରଭାବ କ'ଣ ହେବ ତାହା ଉପଲବ୍ଧି କରିବାକୁ ସେମାନେ ଅକ୍ଷମ ଥିଲାପରି ଜଣା ଯାଉଥିଲେ । ସେମାନେ ତା'ର କର୍ମକାଣ୍ଡ ଦିଗଟାର ସ୍ଥୂଳ ତଫସିଲକୁ ଧରି ନୀତିଗତ ଆଲୋଚନା କରି ଢିରାରୁ ଶିରା କାଢ଼ିବା ଓ ତାକୁ ତ୍ରୁଟି ରଖିବା ବା ଅମୁକ ପ୍ରକାରର ଚିଡାଚେଡିନ କରିବା ଭଳି ଶୁଷ୍କ ଆଚାର ବିଧିରେ ପରିଣତ କରିବାରେ ସିଦ୍ଧହସ୍ତ ଥିଲେ ।

ଗାନ୍ଧୀଜୀ ପ୍ରସ୍ତାବ ଦେଲେ ଯେ, ଯେ ଖଦୀ ପିନ୍ଧିବ, ସେ ସୂତା କାଟିବା ଉଚିତ । ତେଣୁ ଯେ ଖଦୀ କିଣିବାକୁ ଆସିବ ସେ ଖଦୀର ଦାମର ଚଉଠ ହାତ କଟା ସୂତା ଆକାରରେ ହେବ । କିନ୍ତୁ ଏ କଥା ନେଇ ଛେନାରୁ ଚୋପା ଛଡ଼ା ଆରମ୍ଭ ହେଲା, ସେ ନିଜେ କାଟିବାକୁ ହେବ ନାଁ ତା' ପରିବାରର ଅନ୍ୟମାନେ କାଟିଦେଲେ ଚଳିବ ? ଗାନ୍ଧୀଜୀ କହିଦେଲେ ଯେ, କେହି ଅନ୍ୟ କଟାଳିଠୁଁ ସୂତା କିଣି ଆଣି ଦେବ ତ ଦେଉ । ତା' ଦ୍ୱାରା ସୂତାକଟାକୁ ତ ସେ ସିଧା ସଳଖ ଉତ୍ସାହିତ କରିବ ? ମୁଁ କଥାଟାକୁ ଏଇପରି ବୁଝିଲି ଯେ ଖଦୀ ପିନ୍ଧାଳିକୁ ସୂତା ଆଣି

ଦେବାକୁ ହେବ, ଏ କଥାଟା ଚାଲିଲେ ଗାଁ ଗହଳର ଲୋକେ ନିଜ ଘରେ କଟା ସୂତା ଆଣି ହିଁ ଦେବେ । ସହରବଜାରର ଲୋକ ସୂତା କିଣି ଆଣି ବା ମାଗି ଆଣି ଦେବେ ତ ଦେବେ । ଆଖିରେ ଖଦୀର ଭବିଷ୍ୟତ ଗାଁ ଲୋକେ ତାକୁ ଆଦରିବା ଉପରେ ହିଁ ନିର୍ଭର କରୁଛି । କିନ୍ତୁ ନାହିଁ । ଖଦୀର କର୍ମୀମାନେ ଏହିସବୁ କଥାର ସୂକ୍ଷ୍ମ ବିଚାରରେ ତାଙ୍କର ଶକ୍ତି ଲଗେଇଥିଲେ ଯେ ଅନ୍ୟର କଟା ସୂତା ଜଣେ ଜଣେ ଆଣିଦେବ ତ କୌଣସି କଟାଳିଠାରୁ କିଣି ଆଣିଲେ ଚଳିବ ନା ନିଜର ଚାକରବାକରଙ୍କ ଦ୍ୱାରା କଟାଇଥିଲେ ଯାଇ ଚଳିବ ଇତ୍ୟାଦି ।

ଏ ପୁନା ବୈଠକ ପରେ ପୁଣି ଦିଲ୍ଲୀରେ ଖଦୀ ଗ୍ରାମୋଦ୍ୟୋଗବାଲାଙ୍କର ଆଉ ଏକ ବୈଠକ ୧୯୪୬ ଶେଷଆଡ଼କୁ କି ୧୯୪୭ ଆରମ୍ଭରେ ହେଲା । ଏଥିରେ ମୁଁ ବି ଯୋଗ ଦେଇଥିଲି । ଏଥିରେ ଖଦୀ ଗ୍ରାମୋଦ୍ୟୋଗର ପ୍ରସାର ପାଇଁ ସରକାରୀ ସାହାଯ୍ୟ କି ପ୍ରକାରେ ନିଆଯିବ ତାହା ଏକ ବିଚାରର ବିଷୟ ଥାଏ । ସେତେବେଳକୁ ପ୍ରାଦେଶିକ କଂଗ୍ରେସ ସରକାରମାନେ "ବର୍ଷକରେ ଗାଁର ଖଦୀ ଗାଁରେ" ପ୍ରସ୍ତାବ ପ୍ରତି ବିଶେଷ କିଛି ଉତ୍ସାହ ଦେଖାଉ ନ ଥା'ନ୍ତି କି ଖଦୀ ଜଗତର ମୁଖ୍ୟ କର୍ମୀମାନେ ତା'ଉପରେ ଜୋରଦେଉ ନଥା'ନ୍ତି । ତେବେ ଖଦୀକୁ ଅଧିକ ବ୍ୟାପକ କରିବା ପାଇଁ ସରକାରୀ ସାହଯ୍ୟ କଟାଳିଙ୍କୁ ତୁଳା ଓ ସରଞ୍ଜାମ ରିଆତି ଦାମରେ ଯୋଗାଇବା ଆକାରରେ ମିଳୁ ବୋଲି ପ୍ରସ୍ତାବ ଆସିଥାଏ । ମୁଁ ମତ ଦେଇଥିଲି ଯେ ବ୍ୟକ୍ତିଗତ କଟାଳିକୁ ଏପରି ରିହାତି ନ ଦେଇ ଯେଉଁ ଗାଁଟା ଖଦୀରେ ସ୍ୱାବଲମ୍ବୀ ହେବା ଦିଗରେ ଆଗେଇବ ତାକୁ ସମୂହ ଭାବରେ କୌଣସି ପ୍ରକାରର ସାହାଯ୍ୟ ଦିଆଯିବା ଅଧିକ ଭଲ ହେବ । ମୁଁ ତ ସେତେବେଳେ ଖଦୀ ଜଗତରେ ନୂତନ ଆଗନ୍ତୁକ । ମୋର ଏ ପ୍ରସ୍ତାବ ସେମିତି ରହିଗଲା ।

ଏଇ ସମୟରେ ଆଫଗାନ ସରକାରଙ୍କର ଏକ ପ୍ରତିନିଧିମଣ୍ଡଳୀ ଦିଲ୍ଲୀ ଆସିଥା'ନ୍ତି । ସେମାନେ ଗାନ୍ଧୀଜୀଙ୍କ ସହିତ ମଧ ଦେଖାକଲେ । ସେମାନଙ୍କ ଦେଶରେ ଲୁଗାପଟାର ଅଭାବ ଘଟିଥାଏ । ଲୁଗା ଯୋଗାଣ ବ୍ୟବସ୍ଥା ଭାରତରୁ ହେଇ ପାରିବ କି ନାହିଁ ତାହାର ସନ୍ଧାନ ନେବା ମଧ ସେମାନଙ୍କର ଅନ୍ୟତମ ଉଦ୍ଦେଶ୍ୟ ଥାଏ । ଗାନ୍ଧୀଜୀ ସେମାନଙ୍କୁ ଜଣେଇଲେ ଯେ ସେମାନେ ଯଦି ଖଦୀଲୁଗା ନେବାପାଇଁ ସମ୍ମତ ହୁଅନ୍ତି ତେବେ ଏଠୁ ଖଦୀ ଯୋଗାଯାଇ ପାରିବ । ଆଫଗାନିସ୍ତାନ ସହିତ ଏକ ମୈତ୍ରୀସୂତ୍ର ଯୋଡ଼ିବା ବୋଧହୁଏ ଗାନ୍ଧୀଜୀଙ୍କର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ଖଦୀ ଉତ୍ପାଦନ ମଧ ବଢ଼ିଥାନ୍ତା, କିନ୍ତୁ ଖଦୀ କର୍ମୀମାନେ ଗାନ୍ଧୀଜୀଙ୍କୁ ପଚାରି ନେଇ ଖଦୀ ବିକିବୁ, ଆଫଗାନିସ୍ତାନକୁ ଆମେ କେମିତି ବିକିପାରିବୁ ? ସେମାନେ ସୂତା କେଉଁଠୁ ଦେବେ ?

# ସ୍ୱାଧୀନତାର ପୂର୍ବାଭାଷ

ଏଣେ ଏସବୁ ଚାଲିଥାଏ ଓ ତେଣେ ଇଂରେଜ ସରକାର ଯୁଦ୍ଧୋତ୍ତର ଆର୍ଥିକ ପୁନର୍ନିର୍ମାଣର ଏକ ମନଭୁଲାଣିଆ ଯୋଜନା ଭାରତ ପାଇଁ ଗଢ଼ି ଥା'ନ୍ତି । ସେ ଯୋଜନା ଖୁବ୍ ଲମ୍ବ ଚଉଡ଼ା ହୋଇଥାଏ ଓ ସେଥିରେ ଥାଏ ଯେ ଏ ଦେଶରେ ୩୦୦ ନୂଆ ଲୁଗା କଳ ବସାଯିବ । ସେଥିରୁ ଓଡ଼ିଶା ଭାଗରେ ବି କେତେଟା ପଡ଼ିଥାଏ । ମହତାବ ବାବୁ ଓ ବିଜୁ ପଟ୍ଟନାୟକ ମିଶି ସେହି ଅନୁସାରେ ଚୌଦ୍ୱାରରେ ଏକ ଲୁଗାକଳ ବସେଇବା ଯୋଜନା କଲେ । ଆମେ ସବୁ ଖଦୀବାଲାଙ୍କୁ ଏ ଯୋଜନା ପ୍ରତିକ୍ରିୟାଶୀଳ ପନ୍ଥା ପରି ଜଣାପଡ଼ିଲା । ବିନୋଦ ଓ ମୁଁ ଏହାର ବିରୋଧ କରି ଖବର କାଗଜରେ ଲେଖିଲୁ, ଖଦୀର ପ୍ରସାଦ ଉପରେ ଜୋର ଦେବା ପାଇଁ ସରକାରଙ୍କୁ ଅନୁରୋଧ କଲୁ । ଡକ୍ଟର ଜେ.ସି. କୁମାରପ୍ପା 'ହରିଜନ'ରେ ଗୋଟିଏ ପ୍ରବନ୍ଧ ଲେଖି ଏ ଲୁଗାକଳ ବସାଇବା ଉଦ୍ୟମର ସମାଲୋଚନା କଲେ । କୁମାରପ୍ପାଙ୍କର ଏ ଲେଖାଟାକୁ ଓଡ଼ିଆମାନଙ୍କ ପ୍ରତି ପାତରଅନ୍ତର ବିଚାରର ଏକ ନମୁନା ବୋଲି ଚିତ୍ରିତ କରି ଅସଲ ପ୍ରଶ୍ନଟାକୁ ଗୋଳେଇ ଦେବାର ଉଦ୍ୟମ ହେଲା । ଯୁକ୍ତି ହେଲା ଯେ, ଅନ୍ୟ ପ୍ରଦେଶରେ ଏତେ ଲୁଗାକଳ ଅଛି, ନୂଆ ହେବାକୁ ଯାଉଛି ସେ ବିଷୟରେ କାହିଁକି କୁମାରପ୍ପା କିଛି ନ କହି ଓଡ଼ିଶାରେ ଯେଉଁଠି ଲୁଗାକଳ ଆଦୌ ନାହିଁ ସେଇଠି ଗୋଟିଏ ହେବା କଥାର ବିରୋଧ କରୁଛନ୍ତି ? ଅସଲରେ ସେ ବମ୍ବେ ନାଗପୁରର ମିଲ୍ ମାଲିକଙ୍କର ସ୍ୱାର୍ଥର ହିଁ ପୁଷ୍ଟି କରୁଛନ୍ତି । ସେମାନେ ଚାହାନ୍ତି ଓଡ଼ିଶାରେ ଲୁଗାକଳ ନ ହେଉ, ତାଙ୍କରି ଲୁଗା କଟୁ ।

ଯାହା ହେଉ ଆମେ ମହତାବ ବାବୁଙ୍କୁ ଓଡ଼ିଶାରେ ଖଦୀ ପ୍ରସାର ଯୋଜନାର ଗୋଟିଏ ଚିଠା ବି କରି ପଠେଇଲୁ । ସେ ବିଷୟରେ ତାଙ୍କ ସାଙ୍ଗରେ ଥରେ ଅନେକ ଆଲୋଚନା ବି ହେଲା । କିନ୍ତୁ ସେଇଳି ବୃହତ୍ ଯୋଜନାକୁ ଅବାସ୍ତବ ମନେ କରାଗଲା ଓ ଖଦୀ ଗ୍ରାମୋଦ୍ୟୋଗ କାମକୁ କିଛି ହାତଟେକା ଦାନ ଦେବାର ରୀତି ଚାଲୁ କରାହେଲା । ସେତେବେଳେ ଗୋଟାଏ ଖୁବ୍ ମୋଟା ଟଙ୍କା ବଜେଟ୍‌ରେ ଖଦୀ ଗ୍ରାମୋଦ୍ୟୋଗ କାମ ପାଇଁ ରଖିଦିଆ ହେଲା । ଏ ବିଷୟରେ ଖଦୀ ସଂସ୍ଥାମାନଙ୍କ ସହିତ ପରାମର୍ଶ କରି ଯୋଜନା ଗଢ଼ା ହେଇ ନ ଥିଲା । ମନେହେଲା ଯେପରି ଉଦ୍ଦେଶ୍ୟ ଥିଲା ଏକଥା ପ୍ରମାଣ କରିବା ଯେ ସରକାର ଯେତେ ଟଙ୍କା ଦେବାକୁ ଚାହୁଁଛି ତାକୁ ନେଇ କାମ କରିବାର ଶକ୍ତି ଖଦୀବାଲାଙ୍କର ନାହିଁ, ତାଙ୍କ ଦେହି କି କାମ ହେବ ?

ଏଣେ ସର୍ବଭାରତୀୟ ସ୍ତରରେ ଘଟଣାପ୍ରବାହ କ୍ଷିପ୍ର ଗତିରେ ଏକ ଐତିହାସିକ ପରିଣତି ଦିଗରେ ଗତି କରୁଥାଏ । ଭାରତୀୟ ନୌସେନାରେ ବିଦ୍ରୋହ ଓ ତେଣେ ନେତାଜୀଙ୍କର ଗଢ଼ା ଆଜାଦ୍ ହିନ୍ଦ୍ ଫୌଜର ସଦସ୍ୟମାନଙ୍କର ବିଚାର ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କରିଥାଏ ।

ପ୍ରଥମୋକ୍ତ ଘଟଣାଟିର ଯେ ଗୁରୁତର ରାଜନୀତିକ ପରିଣତିର ସମ୍ଭାବନା ଥିଲା ଏକଥା କାହାରିକୁ ଅଛପା ନ ଥାଏ । ଭାରତର ଭବିଷ୍ୟତ ନେଇ କ୍ୟାବିନେଟ୍ ମିଶନ୍ ସାଙ୍ଗରେ ତୁହାକୁତୁହା ଆଲୋଚନା ଚାଲିଥାଏ । ପାକିସ୍ତାନ ପାଇଁ ଜିନ୍ନାଙ୍କ ଜିଦିରେ ସବୁକଥା ଆସି ଅଟକୁ ଥାଏ । ଦେଶର ଅଖଣ୍ଡତା ରକ୍ଷା ପାଇଁ କ୍ୟାବିନେଟ୍ ମିଶନ୍ ପ୍ରସ୍ତାବ ଦେଇଥା'ନ୍ତି ଯେ ପ୍ରଦେଶ ଓ ଦେଶୀୟ ରାଜ୍ୟଗୁଡ଼ିକ ମୁସ୍‌ଲିମ୍ ଓ ଅଣମୁସଲିମ୍ ସଂଖ୍ୟାଗରିଷ୍ଠତା ଅନୁସାରେ କେତେଗୁଡ଼ିଏ ଗୋଷ୍ଠୀରେ ସଂଗଠିତ ହେଇ ଗୋଷ୍ଠୀ-ସମ୍ବିଧାନ ଗଢ଼ନ୍ତୁ, ଓ ପୁଣି ସମସ୍ତେ ମିଶି ଭାରତର ସମ୍ବିଧାନ । ଏହିପରି ତିନି ଥାକ ସରକାର ରହିବ, ପ୍ରଦେଶ, ଗୋଷ୍ଠୀ ଓ ସାରା ଭାରତର । କେନ୍ଦ୍ର ସରକାର ହାତରେ ବୈଦେଶିକ ନୀତି, ଦେଶରକ୍ଷା, ମୁଦ୍ରାନୀତି ଓ ଯୋଗ ଯୋଗ ବ୍ୟବସ୍ଥା ଓ ଏସବୁ ଚଳାଇବା ପାଇଁ ଆବଶ୍ୟକ କର ଆଦାୟ କରିବା ଅଧିକାର, ଏତିକି ରହିବ । ଏହା ସାଙ୍ଗକୁ ଦ୍ୱିତୀୟ ପ୍ରସ୍ତାବ ଥିଲା ଯେ, ମୁଖ୍ୟ ଦଳମାନଙ୍କର ପ୍ରତିନିଧିଙ୍କୁ ନେଇ ବଡ଼ଲାଟଙ୍କର ନୂଆ ପରାମର୍ଶଦାତା ମଣ୍ଡଳୀ ଗଢ଼ାଯିବ । ଏହା କାର୍ଯ୍ୟତଃ ମନ୍ତ୍ରୀମଣ୍ଡଳପରି କାମ କରିବ । ବଡ଼ଲାଟ ତା'ର ସ୍ୱାଧୀନ କର୍ତ୍ତୃତ୍ୱରେ ହସ୍ତକ୍ଷେପ କରିବେ ନାହିଁ ।

ମୁସଲିମ୍ ଲିଗ୍ ଏ ଯୋଜନାକୁ ଗ୍ରହଣ କରିନେଲା, କିନ୍ତୁ ଏ ଯୋଜନା ଅନୁସାରେ ପ୍ରଦେଶମାନେ ଅମୁକ ଗୋଷ୍ଠୀରେ ଯୋଗ ଦେବାକୁ ବାଧ୍ୟ ନା ନିଜ ନିଜର ଇଚ୍ଛା ଅନୁସାରେ କାମ କରିବେ, ଦେଶୀୟ ରାଜ୍ୟମାନଙ୍କର ସ୍ଥାନ ଏଥିରେ କ'ଣ ହେବ, ଦେଶୀୟ ରାଜ୍ୟମାନଙ୍କ ଉପରେ ଭାରତର ବ୍ରିଟିଶ୍ ଶାସନର ଯେଉଁସବୁ କର୍ତ୍ତୃତ୍ୱ ଥିଲା ତାହା ଏକ ନୂଆ କେନ୍ଦ୍ର ମନ୍ତ୍ରୀମଣ୍ଡଳ ହାତକୁ ଆସିବ ନା ନାହିଁ, ଏହିସବୁ ଓ ଅନ୍ୟ କେତେକ ପ୍ରଶ୍ନ ନେଇ ଗାନ୍ଧୀଜୀ ଓ କଂଗ୍ରେସ କ୍ୟାବିନେଟ୍ ମିଶନ୍‌ଠାରୁ ସ୍ପଷ୍ଟୀକରଣ ଚାହିଁଲେ । ଏହିପରି ଅନେକ ଆପୋଷ ଆଲୋଚନା ଓ ବ୍ରିଟିଶ୍ ସରକାରଠାରୁ କେତେକ ପ୍ରତିଶ୍ରୁତି ଓ ସ୍ପଷ୍ଟୀକରଣ ମିଳିବା ପରେ କଂଗ୍ରେସ କ୍ୟାବିନେଟ୍ ମିଶନ୍‌ର ପ୍ରସ୍ତାବକୁ ଗ୍ରହଣ କଲା ଓ ତେଣେ ମୁସଲିମ୍ ଲିଗ୍ ତାକୁ ପ୍ରତ୍ୟାଖ୍ୟାନ କଲା । ବ୍ରିଟିଶ୍ ସରକାର କଂଗ୍ରେସ୍ ତୋଷଣ ନୀତି ଧରିଛି ବୋଲି କ୍ରୁଦ୍ଧ ମତ ପ୍ରକାଶ କରି ମୁସ୍‌ଲିମ୍ ଲିଗ୍ ପକ୍ଷରୁ ଅଗଷ୍ଟ ଷୋଳ ତାରିଖରେ ପ୍ରତ୍ୟକ୍ଷ ପ୍ରତିରୋଧ ଦିବସ ପାଳନ କରାଯିବ ବୋଲି ଘୋଷଣା କରାଗଲା ।

ଏହାର ପ୍ରାୟ ସପ୍ତାହକ ପୂର୍ବରୁ ମୁଁ କଲିକତା ଯାଇଥାଏ । ସେଠି ଅଗଷ୍ଟ ନଅ ପାଳନ ପାଇଁ ହେଇଥିବା ଏକ ସାଧାରଣ ସଭାରେ ଯୋଗ ଦେଲି । କଲିକତାର ବହୁତ କଂଗ୍ରେସ କର୍ମୀ ଓ ବିଶିଷ୍ଟ ନାଗରିକ ସେ ସଭାରେ ଥିଲେ । କଥାବାର୍ତ୍ତା ପ୍ରସଙ୍ଗରେ ମୁସଲିମ୍ ଲିଗ୍‌ର ଏ ପ୍ରତିରୋଧ ଦିବସ ମଧ୍ୟ ପଡ଼ିଲା । କିନ୍ତୁ ଏହା ଏପରି ଭୟଙ୍କର ରୂପ ଧରିବ ବୋଲି ସେତେବେଳେ ସେମାନେ କେହି କଳ୍ପନା କରିଥିବାର ଦେଖାଯାଇ ନଥିଲା । ଗୋଟାଏ ଆଇନ୍ ଅମାନ୍ୟ ଆନ୍ଦୋଳନ

ଚାଲିବ ବୋଲି ସମସ୍ତେ ସେଠି ବିଚାରୁଥିଲୁ । ମାତ୍ର ଅଗଷ୍ଟ ଷୋଳ ଦିନ ଯେଉଁ ନାରକୀୟ ହତ୍ୟାକାଣ୍ଡ ସେଠି ଆରମ୍ଭ ହେଲା ତାହା ସେପର୍ଯ୍ୟନ୍ତ ଭାରତରେ ଘଟିଥିବା ସମସ୍ତ ସାଂପ୍ରଦାୟିକ ହତ୍ୟାକାଣ୍ଡକୁ ଭୟାବହତାରେ ଟପି ଯାଇଥିଲା । ସେତେବେଳେ ବଙ୍ଗାଳାର 'ପ୍ରଧାନମନ୍ତ୍ରୀ' ଥିବା ଶହୀଦ୍ ସୁରାବର୍ଦ୍ଦୀ ସାହେବ ଏ ହତ୍ୟାକାଣ୍ଡର ଯୋଜନା ଗଢ଼ିଥିଲେ ଓ ତା'ର ପରିଚାଳନା କରିଥିଲେ । ପ୍ରଥମ କିଛି ସମୟ ହତଚକିତ ହେଇ ରହିବା ପରେ ହିନ୍ଦୁ ଓ ଶିଖମାନେ ପାଲଟା ଆକ୍ରମଣ ଆରମ୍ଭ କଲେ ଓ ହତ୍ୟାର ସଂଖ୍ୟାରେ ମୁସଲମାନଙ୍କୁ ଟପିଗଲେ । କଲିକତାର ସହର ଏକ ନରକ କୁଣ୍ଡରେ ପରିଣତ ହେଲା ।

ଏହାପରେ ନୋଆଖାଲୀ ଅଞ୍ଚଳରେ ହିନ୍ଦୁମାନଙ୍କ ଉପରେ ଚଢ଼ାଉ ଆରମ୍ଭ ହେଲା ଓ ଏସବୁ ପ୍ରତିକ୍ରିୟାରେ ସାରା ଦେଶରେ ସାଂପ୍ରଦାୟିକ ଉତ୍ତେଜନା ବ୍ୟାପିଲା । ନୋଆଖାଲୀର ପ୍ରତିଶୋଧ ବିହାରରେ ନିଆଗଲା ଓ ସେଠାରେ ପୈଶାଚିକତା ନୋଆଖାଲୀ ଓ କଲିକତାକୁ ଟପିଗଲା । ଏହାର ଛିଟିକା ଓଡ଼ିଶାରେ ମଧ୍ୟ ବ୍ୟାପିଥିଲା । ମାତ୍ର ସୌଭାଗ୍ୟକ୍ରମେ କୌଣସି ଗଣ୍ଡଗୋଳ ଘଟି ନଥିଲା । ବରୀ ଗାଁରେ ମୁସଲମାନମାନଙ୍କର ଗୋଟାଏ ବଡ଼ ବସ୍ତି ଅଛି । ସେଠୁ ସାତ ଆଠ ମାଇଲ୍ ଦୂର ବରମବର୍ଦ୍ଦା, ପାଞ୍ଚ ମାଇଲ୍‌ରେ ବିଞ୍ଝାରପୁରରେ ଓ ଆଉ କେଉଁଠି କେମିତି ମଧ୍ୟ ବେଶ୍ ବଡ଼ ବଡ଼ ମୁସଲମାନ୍ ବସ୍ତି ରହିଛି । ବରୀରେ ମୁସଲମାନମାନେ ତ ଦେଶର ସାଂପ୍ରଦାୟିକ ଉତ୍ତେଜନାର ଆବହାଓ୍ୱାରେ ଏକାବେଳକେ ଆତଙ୍କିତ ହୋଇପଡ଼ିଥିଲେ । କିନ୍ତୁ ବାପା ସେମାନଙ୍କୁ ଆଶ୍ୱାସନା ଦେଇଥିଲେ ଓ ଗାଁର ମୁଖ୍ୟ ଲୋକମାନଙ୍କ ସହିତ କଥାବାର୍ତ୍ତା କରି ଶାନ୍ତି ରକ୍ଷା କରିବାର ଆବଶ୍ୟକତା ଓ ଗୁରୁତ୍ୱ ବୁଝେଇଥିଲେ । ଅନ୍ୟାନ୍ୟ ଆଡ଼ର କଂଗ୍ରେସ ଓ ରଚନାତ୍ମକ କର୍ମୀମାନଙ୍କୁ ମଧ୍ୟ ସଚେତ କରି ଦେଇଥିଲେ । ଏହାଫଳରେ ବରୀ ଓ ତା'ର ଆଖପାଖ ଅଞ୍ଚଳରେ କୌଣସି ପ୍ରକାରର ଅପ୍ରୀତିକର ଘଟଣା ଘଟି ନଥିଲା ବା ବିଶେଷ ଉତ୍ତେଜନା ମଧ୍ୟ ଦେଖାଯାଇ ନ ଥିଲା ।

କଟକରେ ମହରମ ତାଜିଆ ଚୌଧୁରୀବଜାର ବାଟେ ଯିବାକୁ ଦିଆଯିବ ନାହିଁ ବୋଲି ସେ ବଜାରବାଲା ଜିଦି ଧରି ବସିଥିଲେ । ଏହା ଫଳରେ ଏକ ବିସ୍ଫୋଟକ ପରିସ୍ଥିତି ଉପୁଜି ହେଇଥିଲା । କିନ୍ତୁ ଦାଦା ଓ ଖୁଡ଼ୀ ନିଜେ ଯାଇ ସେଠି ଜମାହେଇଥିବା ଭିଡ଼ ସାମନାରେ ଛିଡ଼ାହେଲେ ଓ କୌଣସି ଗଣ୍ଡଗୋଳ ଭିଆଇ ଦେଲେ ନାହିଁ । ବହୁତ ସମୟଯାଏ ଭିଡ଼ ଜମି ରହିବା ପରେ କ୍ରମେ ଅବସ୍ଥା ଥଣ୍ଡା ପଡ଼ିଗଲା ।

ଗାନ୍ଧୀଜୀ ସାଂପ୍ରଦାୟିକ ଗଣ୍ଡଗୋଳକୁ ରୋକିବା ଚେଷ୍ଟାରେ ଲାଗିପଡ଼ିଲେ ଓ ନୋଆଖାଲୀ କାଣ୍ଡର ଅଳ୍ପଦିନ ପରେ ସେଠାକୁ ଯାଇ ସେଠାରେ ସ୍ୱାଭାବିକ ଅବସ୍ଥା ଫେରାଇ ଆଣିବା ପାଇଁ ଆପ୍ରାଣ ଚେଷ୍ଟା କଲେ । ସେତେବେଳେ ଖୁଡ଼ୀ ମଧ୍ୟ ଯାଇ ସେଠି ଗାନ୍ଧୀଜୀଙ୍କ କାମରେ ସାହାଯ୍ୟ

କରିବା ପାଇଁ ଅନେକ ଦିନ ରହିଥିଲେ । ବାପା ମଧ୍ୟ ଯାଇ ପୂର୍ବବଙ୍ଗର ଅନେକ ଅଞ୍ଚଳରେ ବୁଲିଥିଲେ ।

ଦିଲ୍ଲୀରେ ତ ଜୱାହରଲାଲଙ୍କର ନେତୃତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର କାଳମ କରୁଥାଏ । କିନ୍ତୁ ବଡ଼ଲାଟ ୱାଭେଲ୍ ଓ ବ୍ରିଟିଶ ସିଭିଲିଆନ୍ କର୍ମଚାରୀ ଗୋଷ୍ଠୀ ତ କଂଗ୍ରେସକୁ ହଇରାଣ କରିବା ମତଲବରେ ଥା'ନ୍ତି । ୱାଭେଲ୍ ଜିନ୍ନାଙ୍କ ସହିତ କଥାବାର୍ତ୍ତା ଚଳେଇ ମୁସଲିମ୍ ଲିଗ୍ ସରକାରରେ ଯୋଗଦେବ ବୋଲି ରାଜି କରେଇଲେ ଓ ଏଣେ କଂଗ୍ରେସ ନେତାଙ୍କୁ ମୌଖିକ ଭାବରେ ଜଣାଇଲେ ଯେ, ଲିଗ୍ କ୍ୟାବିନେଟ୍ ମିଶନ୍ ପ୍ରସ୍ତାବ ଗ୍ରହଣ କରିବ ବୋଲି ଜିନ୍ନା ସାହେବ ପ୍ରତିଶ୍ରୁତି ଦେଇଛନ୍ତି । କଂଗ୍ରେସ ନେତାମାନେ କୌଣସି ଦଲିଲପତ୍ର ନ ଥାଇ ଏ ମୁହଁ କଥାକୁ ମାନିନେଲେ । ଲିଗ୍ ମନ୍ତ୍ରୀମଣ୍ଡଳରେ ଯୋଗଦେବା ପରେ ପରେ ଜିନ୍ନା କହିଲେ ଯେ, କ୍ୟାବିନେଟ୍ ମିଶନ୍ ଯୋଜନାକୁ ଗ୍ରହଣ କରିବେ ବୋଲି ସେ ଆଦୌ ପ୍ରତିଶ୍ରୁତି, ଦେଇନାହାନ୍ତି । ୱାଭେଲ୍ ମୁହଁ ବନ୍ଦକରି ବସିରହିଲେ । କେନ୍ଦ୍ର ମନ୍ତ୍ରୀମଣ୍ଡଳ ଦୁଇଫାଙ୍କ ହେଇ କାମ କଲା ଓ ୱାଭେଲ୍ ମଝିରେ ବସି ବିଲେଇଙ୍କ ଭିତରେ ପିଠା ବଣ୍ଟା ଧନ୍ଦା ଚଳେଇଲେ ।

ଏଇଟା ଗୋଟାଏ ଅନିଶ୍ଚିତତାର ସମୟ ଥାଏ । କୌଣସି ବିଷୟରେ ଗୋଟାଏ ସ୍ପଷ୍ଟତା ଆଖିଆଗରେ ଥିବାଭଳି ଜଣାପଡୁ ନ ଥାଏ । ପାକିସ୍ତାନ ହେବା ନ ହେବା ନେଇ ଏକ ଦ୍ୱନ୍ଦ୍ୱ ଗାନ୍ଧୀଜୀ ଓ କଂଗ୍ରେସ ନେତାଙ୍କ ଭିତରେ ଚାଲିଥିବାର ଦେଖାଯାଉଥାଏ । ଗାନ୍ଧୀଜୀ ଏହା ମଧ୍ୟ ଘୋଷଣା କରିଥା'ନ୍ତି ଯେ ଭାରତ ତାଙ୍କର ମୃତଦେହ ଉପରେ ଦେଇ ହିଁ ଦୁଇଭାଗ ହେବ । ମାତ୍ର ଶେଷକୁ ଦେଖାଗଲା ଯେ, ଦେଶ ଦୁଇଭାଗ ହେବା ହିଁ ସ୍ଥିର ହେଲା ଓ ଗାନ୍ଧୀଜୀ ତାକୁ ମାନିନେଲେ । କଂଗ୍ରେସ ନେତାମାନେ ଯେମିତି ଭାବିଥିଲେ ଯେ, ଦେଶ ବିଭାଗ ମାନିନେଲେ ତେଣ୍ଟା ଯିବ, ତା'ପରେ ଆମେ ଦେଶର ଆମ ପାଳକୁ ଶାନ୍ତିରେ ରହି ସଜାଡ଼ି ପାରିବା ଓ ବିକଶିତ କରିପାରିବା, ମୋର ପ୍ରତିକ୍ରିୟା ମଧ୍ୟ ସେହିଭଳି ଏକ ଆଶ୍ୱସ୍ତିର ହେଇଥିଲା ।

## ଭାରତ ସ୍ୱାଧୀନ ହେଲା

ଅଗଷ୍ଟ ପନ୍ଦର ତାରିଖର ଆରମ୍ଭ କ୍ଷଣ, ରାତି ବାରଟାରେ, ସ୍ୱାଧୀନତା ଘୋଷଣା ଓ କ୍ଷମତା ହସ୍ତାନ୍ତର ହେବ ବୋଲି ସ୍ଥିର ହେଲା । ସେ ପର୍ଯ୍ୟନ୍ତ ବରୀ ଅଞ୍ଚଳରେ ଏ ବିଷୟ ନେଇ ଖୁବ୍ ଗୋଟାଏ ଚହଳ ଦେଖାଯାଉ ନ ଥିଲା । ହଠାତ୍ ଅଗଷ୍ଟ ଚଉଦ ଦିନ ଗୋଟାଏ ଉନ୍ମାଦନା ଖେଳିଗଲା । ଘରେ ଘରେ ଜାତୀୟ ପତାକା ଉଡ଼ାଯିବ ବୋଲି ଏକ ହାୱା ଚାଲିଲା । ବରୀର ଯଦୁ ଦରଜୀ ସକାଳୁ ରାତି ଏଗାରଟା ଯାଏ ସିଲେଇ କଳ ଧରି ପତାକା ତିଆରିରେ ଲାଗିଲେ । ସାରା ବରୀ ଅଞ୍ଚଳ ଭିତରେ ସେତେବେଳେ ଲୋକସମ୍ପର୍କ ବିଭାଗରୁ ମିଳୁଥିବା ଗୋଟିଏ ମାତ୍ର

ରେଡ଼ିଓ ଆମ ଜିମାରେ ଥାଏ । କ୍ଷମତା ହସ୍ତାନ୍ତର ବେଳର ବକ୍ତୃତା ଶୁଣିଲୁ ବୋଲି ଆଖପାଖର ବହୁଲୋକ ଜମା ହୋଇ ରେଡ଼ିଓକୁ କାନଡ଼େରି ବସିଥାନ୍ତି । ତା'ର ପୁଣି ବ୍ୟାଟେରୀ ଡାଉନ୍ ହୋଇଯାଇଥାଏ । ସେଥିରେ ଡକ୍ଟର ରାଧାକୃଷ୍ଣନ୍ ଓ ନେହେରୁଙ୍କ ବକ୍ତୃତାରୁ କେତୋଟି ମାତ୍ର ଶୁଭିଲା । ରାତି ବାରଟାରେ ଗାଁମାନଙ୍କରେ ଢୋ ଢା ବମ୍ବାଜି ଫୁଟାଯିବାର ଆୱାଜ ମଧ୍ୟ ହେଲା । ସ୍ୱାଧୀନତାର ଆନନ୍ଦ ଓ ଆଶା ଆକାଂକ୍ଷା ଏହିପରି ଭାବରେ ସେଦିନ ଗାଁଗହଳର ଲୋକଙ୍କ ଭିତରେ ପ୍ରକାଶ ପାଇଲା ।

ସ୍ୱାଧୀନତାର ଉନ୍ମାଦନା, ଉତ୍ସାହ, କଳରବ ଓ ବାଣ ରୋଷଣିକୁ ପ୍ରତ୍ୟାଖ୍ୟାନ କରି ଗାନ୍ଧୀଜୀ ଯାଇ ନୋଆଖାଲିରେ ଶାନ୍ତି ସ୍ଥାପନ କରିବେ ବୋଲି ବାହାରିଲେ, ମାତ୍ର ବାଟରେ କଲିକତାରେ ଅଟକି ଗଲେ । ସେଠିକାର ସାଂପ୍ରଦାୟିକ ପରିସ୍ଥିତି ଅତି ଉତ୍କଟ ରୂପ ଧରିଥାଏ । ସେଠି ସମ୍ପ୍ରଦାୟମାନଙ୍କ ଭିତରେ ସୌହାର୍ଦ୍ଦ୍ୟ ଫେରାଇ ଆଣିବା ପାଇଁ ତାଙ୍କୁ ଉପବାସ କରିବାକୁ ପଡ଼ିଲା ଓ ଏହାର ଏକ ଐନ୍ଦ୍ରଜାଲିକ ପ୍ରଭାବ ପଡ଼ିଲା । ମାଉଣ୍ଟ୍‌ବ୍ୟାଟେନ୍ କହିଲେ ଯେ " ଗାନ୍ଧୀଜୀ ଆମର ଜଣକିଆ ସୀମାରକ୍ଷୀ ବାହିନୀ" ।

ଏହାପରେ ଗଡ଼ଜାତ ମିଶ୍ରଣ ପ୍ରଶ୍ନ ଉଠିଲା । ଷଡେଇକଳା, ଖରସୁଆଁ ଓଡ଼ିଶାରେ ମିଶିବ କି ବିହାରରେ, ତାହାନେଇ ବିବାଦ,ସଂଘର୍ଷ ଓ ଲୋକକ୍ଷୟ ଘଟିଲା । ମୟୂରଭଞ୍ଜ ରାଜା ଅଲଗା ରହିବା ପାଇଁ ଚକ୍ରାନ୍ତ ଚଳାଇଲେ ।

ସେତେବେଳର ଏସବୁ ଘଟଣା ପ୍ରବାହ ବିଷୟରେ ଶୁଣୁଥାଉ, ଜାଣୁଥାଉ, ମାତ୍ର ଆମର ରଚନାତ୍ମକ କାମର ଦୁନିଆଟା ରାଜନୀତିର ପ୍ରବାହରୁ ଅଲଗା ହୋଇ ଯାଇଥାଏ । ଆମେ ସେତେବେଳକୁ ଗାନ୍ଧୀଜୀଙ୍କର ଗ୍ରାମ ସ୍ୱରାଜର ମାପକାଠିରେ ସ୍ୱରାଜ ଶାସନକୁ ମାପିବା ଆରମ୍ଭ କରିଥାଉ ।

୧୯୪୫ ରେ ଜେଲ୍‌ରୁ ବାହାରିବା ପରେ ଡ ଶରତବାବୁ ହେରିକା ମୌଳିକ ଶିକ୍ଷାକୁ ସ୍ୱାଧୀନ ଭିତ୍ତିରେ ସଜାଡ଼ିବାକୁ ଲାଗିଯାଇଥିଲେ । ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ା ହେବାପରେ ସରକାର ମୌଳିକ ଶିକ୍ଷା ଚଳେଇବେ ବୋଲି ସ୍ଥିର କଲେ ଓ ବାପାଙ୍କ ଅଧ୍ୟକ୍ଷତାରେ ମୌଳିକ ଶିକ୍ଷା ବୋର୍ଡ଼ ଗଢ଼ାଗଲା । ରାମଚନ୍ଦ୍ରପୁରରେ ପୁଣି ଶିକ୍ଷକ ତାଲିମ କେନ୍ଦ୍ର ଆରମ୍ଭ ହେଲା । ବରୀ ଅଞ୍ଚଳ ଛଡ଼ା ଅନୁଗୁଳ, ରାଜସୁନାଖଳା ଓ ସୋରୋ ଅଞ୍ଚଳମାନଙ୍କୁ ସଘନ ଅଞ୍ଚଳରୂପେ ନିଆଯାଇ ବହୁ ସଂଖ୍ୟାରେ ବିଦ୍ୟାଳୟ ଖୋଲାଗଲା । ମୌଳିକ ଶିକ୍ଷାର ପୁନଃପ୍ରବର୍ତ୍ତନ ଉଦ୍ୟମରେ ଆମେ ସମସ୍ତେ ଲାଗିପଡ଼ିଲୁ । ସେତେବେଳେ ବାପା ଅଧିକାଂଶ ସମୟ ରାମଚନ୍ଦ୍ରପୁରରେ ରହୁଥା'ନ୍ତି । ବୋଉ କସ୍ତୁରବା ସ୍ମାରକ ନିଧିର ଓଡ଼ିଶାର ପ୍ରତିନିଧି ହୋଇଥାଏ

ଓ କସ୍ତୁରବା ନିଧିର ମୁଖ୍ୟ କେନ୍ଦ୍ର ଓ ମହିଳା କର୍ମୀ ତାଲିମ ଶିବର ମଧ୍ୟ ରାମଚନ୍ଦ୍ରପୁରରେ ଆରମ୍ଭ ହେଇଥାଏ । ସବୁ ମିଶି ରାମଚନ୍ଦ୍ରପୁର ଓଡ଼ିଶାର ରଚନାତ୍ମକ କାମର ଶକ୍ତିକେନ୍ଦ୍ର ହେଇପଡ଼ିଥାଏ ।

୧୯୪୨ ରୁ ୪୫ ଯାଏ ଯେ ଓଡ଼ିଶାରେ ମୌଳିକ ଶିକ୍ଷା ଅନୁଷ୍ଠାନ ସବୁ ସଂପୂର୍ଣ୍ଣ ବନ୍ଦ ହୋଇଗଲା । ଏଥିପାଇଁ ନାୟକମ୍‌ଜୀ ଓ ଆଶାଦେବୀ ଦୁଃଖ ପ୍ରକାଶ କରିଥିଲେ । ମାତ୍ର ଆମେ ସମସ୍ତେ ଅନୁଭବ କରୁଥିଲୁ ଯେ, ମୌଳିକ ଶିକ୍ଷକମାନେ ଓ ଏପରିକି କେତେକ ଛାତ୍ର ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବାଫଳରେ ମୌଳିକ ଶିକ୍ଷାର ତେଜସ୍ୱିତା ଯେତେ ବଢ଼ିଲା ସ୍ୱାଧୀନତା ଆନ୍ଦୋଳନ ବିଷୟରେ ଅଲିପ୍ତ ରହି, ସରକାରୀ ଦମନକୁ ସଭୟରେ ଏଡ଼େଇ ବିଦ୍ୟାଳୟଗୁଡ଼ିକ ଚାଲୁରଖିଥିଲେ ତାହା ହେଇନଥା'ନ୍ତା । ବରୀ ଅଞ୍ଚଳରେ ମୌଳିକ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ଭିତରେ ଯେଉଁ ତେଜସ୍ୱିତା ଥିଲା, ଗାଁ ଲୋକଙ୍କର ଜୀବନ ସହିତ ସେମାନେ ଯେତେ ପରିମାଣରେ ଓତଃପ୍ରୋତଃ ହେଇ ଯାଇଥିଲେ ତାହା ମୁଁ ଓଡ଼ିଶା ବାହାରର ମୌଳିକ ଶିକ୍ଷା ଅନୁଷ୍ଠାନମାନଙ୍କରେ କ୍ୱଚିତ୍ ଦେଖିଛି ।

ପ୍ରଥମ କେତେବର୍ଷ ମୌଳିକ ଶିକ୍ଷା ବେଶ୍ ଉତ୍ସାହର ସହିତ ଆଗେଇଲା । କିନ୍ତୁ ତାହା କ୍ରମେ ଅମଲାତନ୍ତ୍ର ଭିତରେ ଥିବା ଗତାନୁଗତିକ ଶିକ୍ଷାର ସମର୍ଥକମାନଙ୍କ ବିରୋଧ ଯୋଗୁଁ କିପରି କ୍ରମେ କ୍ରମେ ବାଧାପ୍ରାପ୍ତ, ସୀମାବଦ୍ଧ ଓ ଶେଷକୁ ଖଣ୍ଡିତ ହେଇ ଏକ ପ୍ରହସନରେ ପରିଣତ ହେଲା ତାହା ବର୍ଣ୍ଣନା କରିବାର ସ୍ଥାନ ଏ ନୁହେଁ । ତେବେ ଗୋଟାଏ ପ୍ରସଙ୍ଗର ଉଲ୍ଲେଖ କରିବା ଉଚିତ । ସେତେବେଳର ଶିକ୍ଷା ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀଙ୍କର ଚରିତ୍ରହୀନତା ବିଷୟରେ ଦାଣରେ ହାଟରେ ଧେଣ୍ଡୁରା ବାଜୁଥାଏ । ସେତେବେଳେ ପଣ୍ଡିତ ଲିଙ୍ଗରାଜ ମିଶ୍ର ଶିକ୍ଷାମନ୍ତ୍ରୀ ଥା'ନ୍ତି । ବାପା ତାଙ୍କୁ ସୂଚନା ଦେଲେ ଯେ ଶିକ୍ଷାବିଭାଗ ଯେତେବେଳେ ଦେଶର ଭବିଷ୍ୟତ ନାଗରିକମାନଙ୍କର ଶିକ୍ଷା ଓ ଚରିତ୍ର ଗଠନର ଦାୟିତ୍ୱ ନେଇଛି ସେ ବିଭାଗର କର୍ମକର୍ତ୍ତାମାନେ ଯଥାସମ୍ଭବ ସଚ୍ଚରିତ୍ର ହେବା ଚାହି । ଜଣାଶୁଣା ଦୁଷ୍ଚରିତ୍ର କର୍ମଚାରୀ ଅନ୍ତତଃ ସେଥିରେ ବଡ଼ପାହ୍ୟାରେ ରହିବା ଉଚିତ ନୁହେଁ । ବାପାଙ୍କର ଏ ସୂଚନାରେ ଶିକ୍ଷାମନ୍ତ୍ରୀ ଓ ସରକାର ଏକମତ ହେଇ ପାରିଲେ ନାହିଁ । ତେଣୁ ମୌଳିକ ଶିକ୍ଷା ବୋର୍ଡ଼ରୁ ବାପା, ଶରତବାବୁ ଓ ଆମେ ଆଉ କେଇଜଣ ଇସ୍ତଫା ଦେଇଦେଲୁ । ସେତେବେଳେ ଆମର ଇସ୍ତଫାର କାରଣ ଦର୍ଶାଯାଇ ନ ଥିଲା ଓ ମତଭେଦଟା ଭିତରେ ଭିତରେ ରହିଲା । ସେତେବେଳେ ମୋର ମତ ଥିଲା ଓ ଏବେ ବି ଅଛି ଯେ ଏଇଟା ସାଧାରଣ ଜନସ୍ୱାର୍ଥର ବିଷୟ । ତେଣୁ ସର୍ବସାଧାରଣରେ ମଧ୍ୟ ଏ ବିଷୟରେ ଆଲୋଚନା ହେବା ଉଚିତ ଥିଲା । ସର୍ବସାଧାରଣଙ୍କୁ ବିଶ୍ୱାସକୁ ନ ନେବାଫଳରେ ଆମର ଇସ୍ତଫାକୁ ଗୋପବାବୁଙ୍କର ଗୋଟାଏ ଖାମଖିଆଲି କାରବାର ବୋଲି ଚିତ୍ରିତ କରିବାର ସୁଯୋଗ ଦିଆଗଲା ।

# କେତେକ ପାରିବାରିକ ପ୍ରସଙ୍ଗ

ମୋର ବିଭାଘର ପରେ ଗୋଟାଏ ସମୟରେ ମୋର ଶ୍ୱଶୁର ମହାଶୟ ଓଡ଼ିଶା ସରକାରଙ୍କର ଗ୍ରାମମଙ୍ଗଳ ଅଫିସର ହେଇ ଆସିଲେ ଓ ପ୍ରଥମେ ଆସି ବାଖରାବାଦରେ ଆମ ଘରେ ରହିଲେ । ଆମେ ତ ସବୁ ସେତେବେଳେ ସେଠି କେହି ରହୁ ନଥାଉ । ଦାଦା ହେରିକା କେଉଁଝରେ କୋଠୀରେ ରହୁଥା'ନ୍ତି । ତା'ପରେ ସେ ଅନେକ ବର୍ଷ ଯାଏ କଟକ ଓ ଭୁବନେଶ୍ୱରରେ ରହିଲେ । ସେତେବେଳେ ଆମେ ଯେଉଁସବୁ କାମ କରୁଥିଲୁ ସେ ସବୁକୁ ସେ ମୋଟାମୋଟି ସମର୍ଥନ କରୁଥିଲେ । ଗାଁ କାମ ବିଷୟରେ ତାଙ୍କର ମଧ୍ୟ କେତେକ ଖାସ୍ ବିଚାର ଥିଲା । ଗ୍ରାମମଙ୍ଗଳ ବିଭାଗ ମାଧ୍ୟମରେ ସେସବୁକୁ କାର୍ଯ୍ୟକାରୀ କରିବାକୁ ସେ ଉଦ୍ୟମ କରିଥିଲେ ଓ ବିଭିନ୍ନ ଜିଲ୍ଲାରେ କେତେଗୁଡ଼ିଏ ଭଲ ଗ୍ରାମକେନ୍ଦ୍ର ସଙ୍ଗଠିତ କରି ତୋଳିଥିଲେ । ବିଭିନ୍ନ ବିଷୟରେ ତାଙ୍କର ବ୍ୟାପକ ଅଧ୍ୟୟନ ଥିଲା ଓ ସେ ଯୁକ୍ତିତର୍କ କରିବାକୁ ଭଲପାଉଥିଲେ । ଯେଉଁସବୁ ବିଷୟରେ ତାଙ୍କ ସହିତ ମତଭେଦ ହେଉଥିଲା ସେସବୁକୁ ନେଇ ବା ସେ କୌଣସି ନୂଆ ଚିନ୍ତାଧାରା ବା ଦୃଷ୍ଟିକୋଣର ସନ୍ଧାନ ପାଇଲେ ସେସବୁକୁ ନେଇ ତାଙ୍କ ସାଙ୍ଗରେ ମୋର ଖୁବ୍ ଯୁକ୍ତିତର୍କ ହେଉଥିଲା । ଏହାଦ୍ୱାରା ମୋର ଚିନ୍ତା ଓ ତର୍କ କରିବାର ଶକ୍ତିର ବିକାଶରେ ସାହାଯ୍ୟ ହେଇଛି ।

ସେପ୍ଟେମ୍ବର ବାର ତାରିଖ ୧୯୪୭ ବୁବୁ ବାହାଘର ହେଲା । ଦାଦା ରାଜସ୍ୱ ମନ୍ତ୍ରୀ ଥାଏ । କେଉଁଝରେ କୋଠୀରେ ବସା । ବାହାଘର ତ ସରଳ ଭାବରେ ହେଉ ବୋଲି ସମସ୍ତେ ଚାହୁଁଥାନ୍ତି, ତଥାପି କଂଗ୍ରେସର ବନ୍ଧୁମାନେ ସ୍ନେହ ଓ ଆଗ୍ରହର ଅତିଶଯ୍ୟରେ ଅନେକ ପ୍ରକାରର ଆୟୋଜନ କରିଗଲେ ଯାହାକୁ ମନା କରିବା ସହଜ ହେଲା ନାହିଁ । ଯେମିତି ରଙ୍ଗୀନ ଆଲୁଅର ହାର ଟାଙ୍ଗି ସାଜସଜ୍ଜା କରିବା, ଗୋଟିଏ ନାଟକ ବା ଭେରାଇଟି ଶୋ'ର ଆୟୋଜନ କରିବା, ଇତ୍ୟାଦି । ତଥାପି ଗତାନୁଗତିକ ବାହାଘରର ବହୁତ କିଛି ଆଡ଼ମ୍ବର ଏଡ଼େଇ ହେଇଗଲା । ବାହାଘରର ବେଦୀ କର୍ମ ଚାଲିଥିବାବେଳେ ବୁବୁ ପ୍ରଶ୍ନ ଉଠେଇଲା ଯେ ତାକୁ ସଂପ୍ରଦାନ କିଏ କରିବ ? ସେ କ'ଣ କାହାର ସଂପତ୍ତି ଯେ ତାକୁ କିଏ ଦାନ କରିବ ? ବାହାଘରକୁ ନାୟକମ୍ଜୀ, ଆଶାଦେବୀ, ନରହରି ପରୀଖ ହେରିକା ଆସିଥିଲେ । ଆଶାଦେବୀ ବେଦରୁ ଗୋଟାଏ ଅନ୍ୟ ମନ୍ତ୍ର ବାହାର କଲେ । କନ୍ୟା ସଂପ୍ରଦାନ ବିଧି ଓ ମନ୍ତ୍ର ପରିବର୍ତ୍ତରେ ସେଇ ମନ୍ତ୍ର ସେଠି ବ୍ୟବହାର କରାଗଲା ।

ଗାନ୍ଧୀଜୀ ଏ ବାହାଘର ଉପଲକ୍ଷେ ବରକନ୍ୟାଙ୍କୁ ଆଶୀର୍ବାଦ ସାଙ୍ଗରେ ତାଙ୍କର ଖଣ୍ଡେ ପୁରୁଣା ଲୁଗା ପଠେଇ ଦେଇଥିଲେ ଓ କହି ଦେଇଥିଲେ ଯେ, "ନାରାୟଣର ପିଲା ହେଲେ ଏଇଥିରେ ଶୁଆଇବ ।"

ଅକ୍ଟୋବର ସାର ତାରିଖ ସନ୍ଧ୍ୟାରେ କଟକରେ ଆମର ଛୋଟା ପୁଅଝିଅ ଜନ୍ମ ହେଲେ । ଦୁହେଁଯାକ ଅତି ସାନ ସାନ ହେଇଥାନ୍ତି । ଗୋଟିଏ ପିଲାର ଯେତେ ହେବାର କଥା ଦୁଇଜଣଙ୍କର

ଓଜନ ମିଶି ସେତିକି ହେଉଥାଏ । ବିଜୁଳି ଆଲୁଅର ବଲ୍‌ବ ତାଙ୍କ ବିଛଣା ତଳେ ଦେଇ ତାଙ୍କୁ ଉଷୁମ ରଖିବା ବ୍ୟବସ୍ଥା ହେଉଥିଲା । ଦାଦା ତୁରନ୍ତ ସେମାନଙ୍କର ନାମକରଣ କଲା, ନାନା, ନାନୀ । ଗୁଜୁରାଠୀରେ ସାନକୁ କହନ୍ତି ନାନା, ସେଇଥିରୁ । ସେମାନଙ୍କର ଜୀବନର ପ୍ରଥମ କେତେ ସପ୍ତାହ ଉଦ୍‌ବେଗ ଭିତରେ କଟିଲା ।

ଆଗରୁ କହିଛି ଯେ ଦାଦା ଓ ଖୁଡ଼ୀ ଯେତେବେଳେ ବୁବୁକୁ ବିଜ୍ଞାନସମ୍ମତ ଆଧୁନିକ ଢଙ୍ଗରେ ଲାଳନପାଳନ କରିଥିଲେ ସେଇଟା ଆମ ମାନଙ୍କ ପକ୍ଷରେ ଏକ ଅଭିନବ ଓ ଆକର୍ଷକ ବ୍ୟାପାର ଥିଲା । ନିଜର ପିଲା ହେଲେ ସେହିପରି ମଣିଷ କରିବାର କଳ୍ପନା ଅନେକ ଦିନୁଁ ମନ ଭିତରେ ଥାଏ । ଦାଦା ହେରିକାଙ୍କ ଯୁଗରେ ଶିଶୁପାଳନ ବିଧିରେ ଯାହାଙ୍କ କଥା ପ୍ରମାଣିତ ବୋଲି ଧରାଯାଉଥିଲା ସେ ହେଲେ ସର୍ ଟ୍ରୁବୀ କିଙ୍ଗ୍ । ତାଙ୍କର ପଦ୍ଧତି ତ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ଖୁବ୍ ଭଲ, କିନ୍ତୁ ଏ ପଦ୍ଧତିର ମନୋବୈଜ୍ଞାନିକ ଦିଗଟା ଖୁବ୍ କଚା । ସେ ଯେଉଁ ଯୁଗରେ ଏସବୁ ପରଖର ପରଖ କରିଥିଲେ ସେଥିରେ ଶିଶୁମନୋବିଜ୍ଞାନର ଏତେ ବିକାଶ ହୋଇ ନଥିଲା ଓ ସେଥିରେ ଫ୍ରଏଡ଼ଙ୍କର ଅବଦାନର ମଧ୍ୟ ଏତେ କଦର ହେଇ ନଥିଲା ।

ଏ ପଦ୍ଧତିରେ ପୂର୍ବରୁ ଉଲ୍ଲେଖ କରିଛି । ପିଲାଙ୍କୁ ନିର୍ଦ୍ଦିଷ୍ଟ ସମୟରେ ଖୋଇବା, ଯଥା- ସମ୍ଭବ କମ୍ ଲୋକ କାଖକୋଳ କରିବା ଓ ମୂଳରୁ ଅଲଗା ଶୋଇବା ଅଭ୍ୟାସରେ ପକାଇବା, ଏହାର ଏ ତିନୋଟି ନୀତି ବିଷୟରେ ଆଧୁନିକ ମନୋବିଜ୍ଞାନରୁ ଭିନ୍ନ ଦୃଷ୍ଟି ମିଳେ । ଟିକିଏ କାନ୍ଦିଲେ କ୍ଷୀରଖୋଇ ଶାନ୍ତ କରିବା ଚେଷ୍ଟା ଯେମିତି ଉଚିତ ନୁହେଁ, ସେମିତି ସମୟର ଅତି କଡ଼ାକଡ଼ି ମଧ୍ୟ ଉଚିତ ନୁହେଁ । ଭୋକ ହେଲାଣି ଜାଣିଲେ ଖାଇବାକୁ ଦେବା ଉଚିତ । ସେହିପରି ସବୁବେଳେ କୋଳରେ ଧରି ବୁଲିବା ଯେମିତି ଠିକ୍ ନୁହେଁ, ସେମିତି କୋଳ କାଖ ହେବା ଓ ମା' ବା ଅନ୍ୟ ବଡ଼ ମଣିଷଙ୍କ ପାଖରେ ଶୋଇବାରେ ଯେଉଁ ସ୍ନେହର ସ୍ପର୍ଶ ଓ ସୁରକ୍ଷାର ଅନୁଭୂତି ମିଳେ ସେଇଟାର ମଧ୍ୟ ଶିଶୁର ଭାଗବତ ବିକାଶ ପାଇଁ ଖୁବ୍ ବଡ଼ ମୂଲ୍ୟ ଅଛି । ଯାହାହେଉ ଏ ଟ୍ରୁବୀ କିଙ୍ଗ୍ ପଦ୍ଧତି ତ ଚାଲିଲା । ପ୍ରଥମେ ତ ସେମାନେ ଦିନରାତି ପ୍ରତି ଅଢ଼େଇ ତିନି ଘଣ୍ଟା ଅନ୍ତରରେ ଖାଉଥିଲେ । କ୍ରମେ ଅଧରାତିରେ ଖାଇବା ପାଳିଟା ବନ୍ଦ କରାହେଲା । ସେଇଟା ବୋଧହୁଏ ଆମେ ତରତର ହେଇ ଶୀଘ୍ର କଲୁ । ଆହୁରିତ କିଛି ଦିନ ଅପେକ୍ଷା କରିବା ଉଚିତ ଥିଲା । ରାତିରେ ଖାଇବା ସମୟରେ ଉଠି କାନ୍ଦିବା ଆରମ୍ଭ କଲେ ମିଶ୍ରିପାଣି ଦିଆହେଉଥିଲା । ଏହାଛଡ଼ା ସେମାନଙ୍କର ଲାଳନପାଳନରେ କୌଣସି ଖାସ୍ ଭୁଲ ପ୍ରଥମ କେତେମାସରେ ହେଉଥିଲା ବୋଲି ମନେହୁଏ ନାହିଁ । କେତେମାସରେ ସେମାନଙ୍କୁ ନେଇ ଆମେ ବରୀ ଗଲୁ । ଅତି ସାନ ପିଲା, ପୁଣି ସ୍ୱାଭାବିକ ଶିଶୁଙ୍କ ଠୁଁ ବି ସାନ, ସେପରି ଜାଗାରେ ରହିବାଟା କେତେ ଠିକ୍ ହେବ, କିଛି ରୋଗହେଲେ ଚିକିତ୍ସାର ବ୍ୟବସ୍ଥା କିପରି ହେବ, ଏସବୁର ପ୍ରଶ୍ନ ତ ଅନେକଙ୍କ ମନରେ ଥାଏ । କିନ୍ତୁ ସହରକୁ ଛାଡ଼ି ଗାଁ ଜୀବନକୁ ବରଣ କରିବାର ଯେଉଁ ଧ୍ୟେୟ ଆମେ ଗ୍ରହଣ କରିଥାଉ ସେଥିରେ ପିଲାଙ୍କୁ ସହରରେ ମଣିଷ କରିବା କଥା କୁଆଡୁ ଆସିବ ? ବାବୁଲି ଜନ୍ମ

ହେବାର ଦୁଇମାସ ବି ନପୁରୁଣୁ ତାକୁ ରାମଚନ୍ଦ୍ରପୁର ନିଆଯାଇଥିଲା । ନାନା ନାନୀ ଅବଶ୍ୟ ତାଠୁ ଅଧିକ ଦିନ କଟକରେ ରହିଥିଲେ । ସେତେବେଳେ ଏତେ ବେଶୀ ଲାଗୁ ନଥିଲା, ମାତ୍ର କେତେକ ଘଟଣା ଏବେ ଭାବିବାବେଳକୁ ଦେହହାତ କୋଲ୍ହ ମାରିଗଲା ପରି ଲାଗୁଛି । କେତେ କେତେ ଗୁରୁତର ରୋଗ ବ୍ୟାଧିରୁ ସେମାନେ ସେଠି ଉଦ୍ଧାର ନ ପାଇଛନ୍ତି । ନାନାର ଥରେ ଜ୍ୱର ହେଇ ୧୦୫ ଯାଏ ତାପ ଉଠିଲା । ଅଚେତନ ଅବସ୍ଥା । ସେତେବେଳକୁ ତାକୁ ତିନି ବର୍ଷ ହେବ । ବାପା ଉଦ୍‌ବେଗରେ ଘରଛାଡ଼ି ଆସି ରାସ୍ତା ଉପରେ ଅଶାନ୍ତ ଭାବରେ ବୁଲୁଥାନ୍ତି । ସୌଭାଗ୍ୟକ୍ରମେ ସେତେବେଳକୁ ରାମଚନ୍ଦ୍ରପୁରରେ ଡାକ୍ତରଖାନା ଆରମ୍ଭ ହୋଇଥାଏ ଓ ଡାକ୍ତର କାଳିପଦ ଚୌଧୁରୀ ସେଠି ଥାଆନ୍ତି। କାଳିପଦ ବାବୁ ପୂର୍ବବଙ୍ଗର ବାସିନ୍ଦା ଥିଲେ ଓ ଶରଣାର୍ଥୀ ଭାବରେ ଏ ଦେଶକୁ ଆସିଥିଲେ । ତାଙ୍କପରି ହୃଦୟବାନ ଲୋକ କମ୍ ଦେଖିଛି । ତାଙ୍କରି ଚିକିତ୍ସାରେ ନାନାର ସଙ୍କଟ କଟିଗଲା ।

ନାନୀର ଥରେ ହେଲା ମିଳିମିଳା ଓ ଆଉଥରେ କଠିନ ଆମାତିସାର । ମିଳିମିଳା ବେଳେ ସେ ଘଣ୍ଟା ଘଣ୍ଟା ଧରି ଏପରି ରାହାଧରି କାନ୍ଦିଲା ଯେ ତାକୁ ଶାନ୍ତ କରିବା ପାଇଁ ଆମର ବୁଦ୍ଧି ବଣା ହେଇଗଲା । ଆକୁଳି, ଗଣେଶ, ଆଉ କିଏ କିଏ ସମସ୍ତେ ଆସି ନିଜ ନିଜର ବୁଦ୍ଧି ଖଟେଇଲେ । ଆମାତିସାର ବେଳେ ତା'ର କଷ୍ଟ ଦେଖି ହେଉ ନ ଥାଏ । ସେମାନଙ୍କୁ ତ ମେଲେରିଆ ଧରିଥିଲା ଓ ସେଥିରେ ତ ସେମାନେ ବରାବର ଭୋଗୁଥିଲେ ।

ନାନାକୁ ଯେତେବେଳେ ଡିପ୍‌ଥେରିଆ ହେଲା ସେତେବେଳେ ବାପା ଓ ମୁଁ ସର୍ବୋଦୟ ସମ୍ମିଳନୀକୁ ଯାଇଥାଉ । ୧୯୪୯ ରେ ଇନ୍ଦୋର ନିକଟ ରାଓ ଗାଁରେ ଏ ସମ୍ମିଳନୀ ହେଇଥିଲା । ସେଠୁ ବାପା, ଗୁଣନିଧିବାବୁ ଓ ମୁଁ ଗୁଜରାଟ୍ ଯାଇଥାଉ, ସେଠାର ସବୁ ରଚନାତ୍ମକ କାମ ଦେଖିବୁ ବୋଲି । ଆମେ ଡେଣ୍ଟୁ ଫେରି ୱାର୍ଦ୍ଧାରେ ପହଞ୍ଚି ତାର ପାଇଲୁ ଯେ ନାନାର ଡିପ୍‌ଥେରିଆ । କାଳିପଦ ବାବୁହିଁ ତାହା ଡିପ୍‌ଥେରିଆ ବୋଲି ଠିକ୍ ଭାବରେ ଚିହ୍ନିଥିଲେ ଓ ବୋଉ ଆଉ ସୁମିତ୍ରା ନାନାକୁ ନେଇ ରାତାରାତି ସୁଆରୀରେ କେନ୍ଦ୍ରାପଡ଼ା ଯାଇ ସେଠୁ ଏସ୍.ଡ଼ି.ଓଙ୍କ ମୋଟର୍ ମାଗିନେଇ କଟକ ପହଞ୍ଚି ତା'ର ଚିକିତ୍ସା କରାଇଲେ । ଏପରି ପରିସ୍ଥିତିରେ ମୁଁ ଅନୁଭବ କରିଛି ଯେ, ମୋର ସମବେଦନଶୀଳତା ବୋଧହୁଏ କମ୍ । ବାପା, ବୋଉ, ଖୁଡ଼ୀ, ସୁମିତ୍ରା ଯେତେ ଶୀଘ୍ର ଏଭଳି ପରିସ୍ଥିତିରେ ବ୍ୟାକୁଳ ହେଇପଡ଼ନ୍ତି, ମୁଁ ହୁଏ ନାହିଁ । ଯେଉଁଟାକୁ ମୁଁ ମାନସିକ ସମତା ବୋଲି ଭାବିବାକୁ ଅଭ୍ୟସ୍ତ ସେଇଟା ବୋଧହୁଏ ପ୍ରକୃତରେ ତାହା ନୁହେଁ । କଳ୍ପନାଶକ୍ତିର ଅଭାବର ପୁଟ ମଧ୍ୟ ସେଥିରେ ଥାଇପାରେ ।

ପିଲାଙ୍କୁ ବାଡ଼େଇ, ମିଛ କଥା କହି, ଭୁଲେଇ ଭାଲେଇ ବା ଡରେଇ ଧମକେଇ କୌଣସି କାମ ଆଦାୟ ନ କରିବା ପାଇଁ ସ୍ଥିର କରିଥାଉ । ଏପରିକି ଔଷଧ ଖୋଇବାବେଳେ ମଧ୍ୟ ଆମେ ସେମାନଙ୍କୁ ମିଛ କଥା କହି ଭୁଲେଇବା ଚେଷ୍ଟା କରୁ ନଥିଲୁ । ଔଷଧ ପିତା ଓ ଖରାପ ଲାଗିବ ବୋଲି ଆମେ ତାକୁ କହିଦେଉ, କିନ୍ତୁ ଦେହ ଭଲ ହେବା ପାଇଁ ଖାଇଦେବା

ଦରକାର ବୋଲି ବୁଝାଉ । ଏହାଦ୍ୱାରା ସେମାନେ ଅଢ଼େଇ ତିନି ବର୍ଷ ବେଳୁ ମଧ ତରଳ କୁଇନାଇନ୍ ମିକ୍ସଚର ପରି ଅତି ଉତ୍କଟ ପିତା ଔଷଧ ବିନା ଜୋରଜବରଦସ୍ତିରେ ରାଜିହୋଇ ଖାଇ ଦେଉଥିଲେ । ପିଲାଙ୍କର ବାପାମା'ଙ୍କ ଉପରେ ଅଗାଧ ବିଶ୍ୱାସ ଥାଏ । ବାପା ମା' ନିଜକୁ ସେ ବିଶ୍ୱାସର ଉପଯୁକ୍ତ ପାତ୍ର କରିବା ହିଁ ହେଲା ସବୁଠାରୁ ବଡ଼ ସାଧନା ।

ପିଲାମାନେ ବରୀ-ରାମଚନ୍ଦ୍ରପୁରରେ ମଣିଷ ହେବାଦ୍ୱାରା ଯେତେ ସଂକଟ ଭିତରଦେଇ ଗତି କରିଛନ୍ତି ଓ ଆମେ ଯେତେ ଉଦ୍‌ବେଗ ସହିଛୁ ତାହା ତୁଳନାରେ ସେମାନେ ଜୀବନକୁ ପୂର୍ଣ୍ଣତା ଦେବାଭଳି ଯେଉଁ ଆନନ୍ଦ ଓ ଅନୁଭୂତି ପାଇଛନ୍ତି ତାହାର ମୂଲ୍ୟ ଅନେକ ଗୁଣରେ ବେଶି ବୋଲି ମୋର ବିଶ୍ୱାସ । ସେମାନେ ସେଠି ଯେଉଁ ମୁକ୍ତ ଆକାଶ, ସ୍ୱଚ୍ଛ ବତାସ ଓ ପୁଣ୍ୟ ମାଟିର ସ୍ପର୍ଶ ପ୍ରାଣଭରି ପାଇଲେ ସହରରେ ତାହା କେଉଁଠୁ ପାଇଥା'ନ୍ତେ ? ସେଠି ସେମାନେ ବର୍ଷା, ବଢ଼ି, ବତାସ, ତୋଫାନକୁ ଭୟ ନ କରି ସେସବୁ ଦ୍ୱାରା ବିବ୍ରତ ନ ହୋଇ, ଉପଭୋଗ କରି ଶିଖିଲେ । ସେସବୁର ସମନା କରି ଶିଖିଲେ । ଖୁବ୍ ଅଳ୍ପ ବୟସରୁ ସେମାନେ ପହଁରି ଶିଖିଗଲେ । ବାବୁଲି, ନାନୀ, ଓ ନାନା ତ ବେଶ୍ ଦକ୍ଷ ପହଁରାଳି । ଏମାନଙ୍କୁ ଡଙ୍ଗା ବାହିବା ବି ଆସିଗଲା । ବଡ଼ ବଢ଼ିରେ ରାମଚନ୍ଦ୍ରପୁର ଅନୁଷ୍ଠାନ ହତାରେ ପାଣି ପଶିଲା ତ ପିଲାମାନେ କେଉଁଠୁ କଦଳୀଭେଳା ସଂଗ୍ରହକରି କାତମାରି ବୁଲିଲେ । ଗାଁରେ ରହିଲେ ଗଛରେ ଚଢ଼ିବା ତ ଧରାବନ୍ଧା କଥା ।

ଏଇ ସମୟରେ ମୋର ପକ୍ଷୀ ପର୍ଯ୍ୟବେକ୍ଷଣ କରିବାର ସୌକ ବଡ଼ ମାମୁଁଜାନ୍‌ଙ୍କ ସମ୍ପର୍କରେ ଆସି ପ୍ରବଳ ହେଲା । ସେ ଏ ବିଷୟରେ ଜଣେ ବିଶେଷଜ୍ଞ ଭାବରେ ସୁପରିଚିତ ଓ ପରେ କଲିକତା ଚିଡ଼ିଆଖାନାରେ ପରିଚାଳନାମଣ୍ଡଳୀରେ ମଧ ସେଥିପାଇଁ ନିଆହୋଇଥିଲେ । ବିଦେଶୀ ବହିମାନଙ୍କରେ ସେସବୁ ଦେଶର ପକ୍ଷୀଙ୍କର ଚମତ୍କାର ରଙ୍ଗୀନ ଛବି ଦେଖି ମୁଁ ପୂର୍ବରୁ କେତେଥର ଭାବିଛି ଯେ, ଆମ ଦେଶରେ ବି କ'ଣ ଏମିତି ସୁନ୍ଦର ଓ ଏତେ ପ୍ରକାରର ପକ୍ଷୀ ନାହାନ୍ତି ? ମାମୁଁଜାନ୍‌ଙ୍କର ସାହାଯ୍ୟରେ ମୋର ଆଖି ଖୋଲିଲା । ସେଇ ବରୀ ଅଞ୍ଚଳରେ କେତେ ନା କେତେ ଚମତ୍କାର ସୁନ୍ଦର ପକ୍ଷୀଙ୍କର ସନ୍ଧାନ ମିଳିଲା ଯାହାର କଳ୍ପନା ହିଁ କେବେ ନଥିଲା । ପକ୍ଷୀଙ୍କ ବିଷୟରେ ଏତେ ଭଲ ବହି ଅଛି ତାହା ବି ବଡ଼ ମାମୁଁଜାନ୍‌ଙ୍କର ସଂଗ୍ରହ ଦେଖି ଜାଣିଲି । ପିଲାମାନେ ବି ସେତେବେଳେ ପକ୍ଷୀମାନଙ୍କ ବିଷୟରେ କିଛି କିଛି ଜାଣିଲେ ଓ ବଣବୁଦାରେ ରହୁଥିବା ଜୀବଜନ୍ତୁଙ୍କ ବିଷୟରେ ବି । ଗଛବୃକ୍ଷଙ୍କ ସହିତ ବି ପରିଚୟ ବଢ଼ିଲା । ବାଡ଼ିବଗିଚା କାମରେ ସାହାଯ୍ୟ କଲେ ।

ଗାଁରେ ରହି ସେମାନେ ଏ ଦେଶର ଗରିବ ଲୋକଙ୍କର ସୁଖଦୁଃଖର ପ୍ରତ୍ୟକ୍ଷ ଅନୁଭବ ପାଇଲେ । ବରୀରେ ଥିବାବେଳେ ଆମ ଘର ପାଖରେ ଥିବା ବାଗ୍‌ଦୀ ହରିଜନ ସାହିର ପିଲାମାନେ ସେମାନଙ୍କର ସାଙ୍ଗ ଥିଲେ । ସେମାନେ ଗାଈ ଜଗିବାବେଳେ ନାନା ସେମାନଙ୍କ ସାଙ୍ଗରେ ଯାଇ ବୁଲେ ଖେଳେ । ରାମଚନ୍ଦ୍ରପୁରରେ ରହି ମୌଳିକ ବିଦ୍ୟାଳୟରେ ପଢ଼ିବାବେଳେ ସେମିତି ଗାଁର ସାଧାରଣ ପିଲାମାନେ ସେମାନଙ୍କର ସାଙ୍ଗସାଥୀ ହେଲେ । ସେମାନଙ୍କ ମନରେ ମଧବିର

ସୁଲଭ ଉନ୍ନାସିକ ଭାବ, ଉଚ୍ଚନୀଚ ଭେଦଭାବର ପ୍ରବେଶ ହେଇନାହିଁ, ସାଧାରଣ ଗରିବ ଲୋକଙ୍କ ପ୍ରତି ସଂବେଦନଶୀଳତା ଏହାଦ୍ୱାରା ବଢ଼ିଛି ବୋଲି ମୋର ବିଶ୍ୱାସ ।

ଇତିମଧ୍ୟରେ ମୁଁ ସାଧାରଣ ମନୋବିଜ୍ଞାନ ଅଧ୍ୟୟନ କରିବା ଆରମ୍ଭ କରିଥାଏ ଓ ଶିଶୁପାଳନ, ବାଳମନୋବିଜ୍ଞାନ, ଶିଶୁ ଶିକ୍ଷା ଆଦି ବିଷୟରେ ଯାହା ବହିପତ୍ର ପାଉଥାଏ, ସଂଗ୍ରହ କରି ପଢୁଥାଏ । ଏସବୁ ଦ୍ୱାରା ଗୋଟିଏ ଦିଗରେ ମୋର ଧାରଣା କ୍ରମେ ଦୃଢ଼ ହେଲା ଯେ, ଅହିଂସା ଶକ୍ତିର ବିକାଶ ଓ ଅହିଂସା ସମାଜ ରଚନା ପାଇଁ ମନୋବିଜ୍ଞାନ, ସାମାଜିକ ମନୋବିଜ୍ଞାନ ଓ ସମାଜ ବିଜ୍ଞାନର ଗଭୀର ଅନୁଶୀଳନ ଆବଶ୍ୟକ । ଅନ୍ୟ ଦିଗରେ ପିଲାଙ୍କୁ ମୁକ୍ତ ଓ ନିର୍ଭୀକ କରି ଗଢ଼ିତୋଳିବାର ଗୁରୁତ୍ୱ ବିଷୟରେ ପୂର୍ବରୁ ଯାହାକିଛି ଧାରଣା ଥିଲା, ତାହା ପରିମାର୍ଜିତ ଓ ସ୍ପଷ୍ଟତର ହେଲା ।

ପିଲାମାନେ ବାପାମାଆଙ୍କୁ 'ଭୟଭକ୍ତି' କରି ଚଳିବାଟା ଭୁଲ, ପିଲା ଓ ବାପା ମା' ପରସ୍ପର ସାଥୀ ଭଳି ଚଳିବେ, ଏଇ ବିଚାର ଧରି ଆମେ ଚାଲିଥାଉ । ସଂସ୍କୃତରେ ସୂତ୍ର ଅଛି 'ଲାଳୟେତ୍ ପାଞ୍ଚ ବର୍ଷାଣି, ଦଶବର୍ଷାଣି ତାଡ଼ୟେତ୍ । ପ୍ରାପ୍ତେତୁ ଷୋଡ଼ଶ ବର୍ଷେ ମିତ୍ରବଦାଚରେତ୍ ।' ଏଥିରେ ତାଡ଼ୟେତ କଥାଟା ଏକାବେଳେ ଭୁଲ ଓ ମିତ୍ରପରି ଆଚରଣ କରିବା କଥାଟା ଷୋଡ଼ଶ ବର୍ଷରୁ ନୁହେଁ, ଏକାବେଳେ ପିଲାବେଳୁ ଆରମ୍ଭ ହେବା ଚାହି । ଆଉ "ପୁତ୍ର ମିତ୍ରବଦାଚରେତ୍' ତ କୁହାଗଲା । କନ୍ୟାଙ୍କ କଥା କ'ଣ ? ଆମେ ପୁଅ ଓ ଝିଅଙ୍କୁ ବିଲକୁଲ ସମାନଭାବରେ ବ୍ୟବହାର କରୁଥାଉ । ଆମ ସମାଜରେ ଝିଅମାନଙ୍କୁ ଯେ କମ୍ ଦରର ମନେକରାଯାଏ ସେ କଥାଟାକୁ ଆମେ ସମ୍ପୂର୍ଣ୍ଣରୂପେ ପ୍ରତ୍ୟାଖ୍ୟାନ କରିଥାଉ । ପିଲାମାନେ ଆମକୁ 'ତୁ ତା' କରି ଶିଖିଲେ ଓ ସେଇଟାକୁ ଆମେ ପସନ୍ଦ କଲୁ । ବଡ଼ ମଣିଷଙ୍କର କଥା ଉପରେ କଥା କହିଲେ ପିଲାଙ୍କୁ ଆକଟ କରାଯାଏ । ଆମେ ପାରୁପର୍ଯ୍ୟନ୍ତ ସେମାନଙ୍କର ମତାମତ ନିର୍ଭୟରେ ଜାହିର କରିବା ପାଇଁ ସେମାନଙ୍କୁ ଉତ୍ସାହିତ କରିଛୁ । ତେବେ ବେଳେବେଳେ ଗୁରୁଜନତ୍ୱର ଓଜନଟାକୁ ବ୍ୟବହାର କରିବାର ଲୋଭରେ ଯେ ନ ପଡ଼ିଯାଉ ତାହା ନୁହେଁ ।

ନିଷେଧ ଓ ଭୟ ଏ ଦୁଇଟି ଆମ ଦେଶରେ ପିଲାଙ୍କୁ ମଣିଷ କରିବାର ପ୍ରଧାନ ସାଧନ । ବିଶେଷକରି ଭଦ୍ର ସମାଜରେ । କାହାରି ଘରକୁ ବୁଲିଗଲେ ସେଠି କ୍ରମାଗତ ସାନପିଲାମାନଙ୍କୁ ଦିଆଯାଉଥିବା ହୁକୁମ ଯା' କରନାହିଁ, ତା' କରନାହିଁ, ସେଥିରେ ହାତ ଦିଅ ନାହିଁ, ଚୁପ୍‌ହେଇ ବସ, ଗୋଳମାଳ କରନାହିଁ ଆଦି ଶୁଣି ଶୁଣି କାନ ପଚିଯିବ । ଆଉ ନିଷେଧକୁ ମଜବୁତ କରିବା ପାଇଁ ହେଇ ବାୟା ଆସିଲା, ପୁଲିସ୍ ଧରିନେବ, କକମିନା ଚାରିଆଡ଼େ ବସିଛି... । ଆମେ ପିଲାଙ୍କୁ ଯେତେ କମ୍ ନିଷେଧ କରିପାରୁ କରୁଥିଲୁ । ସେମାନଙ୍କୁ ଯେତେ ଅଧିକ ଉତ୍ସାହିତ କରିପାରୁ ତାହା କରିବା ଆମର ଲକ୍ଷ୍ୟ ଥିଲା । ଜିନିଷପତ୍ରରେ ହାତ ଦେବାକୁ କ୍ୱଚିତ ମନା କରୁଥିଲୁ ଓ ମୂଲ୍ୟବାନ ଘଣ୍ଟା କ୍ୟାମେରା ଆଦି ମଧ୍ୟ କାରବାର କରିବାକୁ ଦେଉଥିଲୁ । ଏହାଦ୍ୱାରା ସେମାନଙ୍କର ଆତ୍ମବିଶ୍ୱାସ ବଢ଼ିଲା ।

ମୁଁ ତ ଗୋଟିଏ ଦିଗରେ ବଡ଼ ବଡ଼ ତତ୍ତ୍ୱ ପଢ଼ାଶୁଣା ଓ ଆଲୋଚନା କରୁଥାଏ ଓ ଅନ୍ୟ ଦିଗରେ ବେଳେବେଳେ ମୋର ଚିଡ଼୍‌ଖୋର ସ୍ୱଭାବଟା ପ୍ରବଳ ହେଉଉଠେ । ସବୁ ତତ୍ତ୍ୱକଥା କୁଆଡ଼େ ଉଡ଼ିଯାଏ ଓ ସେଇ ଚିଡ଼୍‌ଟା ହିଁ ତତ୍ତ୍ୱର ମୁଖା ପିନ୍ଧି ବାହାରେ । ଏସବୁ ଘଟଣାରେ ସୁମିତ୍ରାଙ୍କର ଟାଣୁଆ କାଣ୍ଡଜ୍ଞାନ କାମରେ ଆସେ । ଅବସ୍ଥା ସମ୍ଭାଳିବା ଚେଷ୍ଟା କରନ୍ତି । କେତେବେଳେ ବା ସଫଳ ହୁଅନ୍ତି । କେତେବେଳେ ନିଜେ ଶିକାର ହୁଅନ୍ତି, ତେବେ ଆମ ପିଲାମାନେ ଯେ ମତେ ପ୍ରାୟ ଡରନ୍ତି ନାହିଁ ଓ ମୋର ଢଙ୍ଗଢାଙ୍ଗକୁ ଖୋଲାଖୋଲି ଥଟା କରନ୍ତି ସେଥିରୁ ମୁଁ ବିଚାରେ ଯେ ମୋର ଦୁର୍ଗୁଣଗୁଡ଼ାକ ସେମାନଙ୍କର ବ୍ୟକ୍ତିତ୍ୱକୁ ଖର୍ବ କରିନାହିଁ ।

ଆମ ଭଳି ପିଲାମାନେ ମଧ୍ୟ ସାନବେଳୁ ସୁକୁମାର ରାୟ ଓ ଅନ୍ୟ ସେଭଳି ଭଲ ଲେଖକମାନଙ୍କ ଲେଖା ସହିତ ପରିଚିତ ହେଲେ, ଯେଉଁମାନଙ୍କର କଳ୍ପନାଶକ୍ତି ଗତାନୁଗତିକ ଜୀବନର ଉତ୍ତାପରେ ଶୁଖିଯାଇନାହିଁ ଓ ଯାହାଙ୍କର ପ୍ରାଣର ଶିଶୁସୁଲଭ ସରସତା ଅତୁଟ ରହିଛି । ଯେ ସୁକୁମାର ରାୟଙ୍କ ଲେଖା ପିଲାଦିନେ ପଢ଼ିଥିବ ସେ ଜଗତଟାକୁ ହସର ତେପାଖା କାଚ (ପ୍ରିଜମ୍) ଦେଇ ରଙ୍ଗବେରଙ୍ଗ ରୂପରେ ଦେଖି ଓ ଉପଭୋଗ କରି ଶିଖିବ । ମୋ ଭଣଜା ବାବୁଲି ଦିନେ ଠିକ୍ ହିଁ କହିଲା ଯେ, ବାର ତେର ବର୍ଷ ବୟସ ପୂର୍ବରୁ ଯେ ସୁକୁମାର ରାୟଙ୍କର ଆବୋଲ ତାବୋଲ ଓ ହଯବରଲ ନ ପଢ଼ିଛି ତା'ର ଆଉ ବିଶେଷ ଉନ୍ନତିର ଆଶା ନାହିଁ ।

ରିଡ଼ର୍ସ ଡାଇଜେଷ୍ଟରେ ପ୍ରକାଶିତ ଏକ ଭଦ୍ରଲୋକଙ୍କ ଅନୁଭୂତିର ବର୍ଣ୍ଣନାରେ ମୁଁ ପଢ଼ିଥିଲି ଯେ, ସେ ମହାଶୟ ଥରେ ତାଙ୍କ ସାନପୁଅଟିକୁ ପଚାରିଲେ - "ତୋର କ'ଣ ଦରକାର ?" ସେ ଜବାବ ଦେଲା - "ମୁଁ ତୁମକୁ ଚାହେଁ ।" ପ୍ରକୃତରେ ବାପାମା' ମାନେ ନିଜର ସନ୍ତାନଙ୍କୁ ଯେଉଁ ସବୁଠାରୁ ମୂଲ୍ୟବାନ ଉପହାର ଦେଇ ପାରନ୍ତି ତାହା ହେଉଛି ନିଜର ସଙ୍ଗ । ଅବଶ୍ୟ ସେଥିପାଇଁ ନିଜକୁ ଯୋଗ୍ୟ କରିବାକୁ ହେବ । ଆମେ ଧରିନେଇଥିଲୁ ଯେ ପିଲାଙ୍କୁ ମଣିଷ କରିବା ଅର୍ଥ ତାହା ସାଙ୍ଗରେ ନିଜେ ବି ମଣିଷ ହେବା, ପିଲାଙ୍କର ଅସରନ୍ତି, ଉଦ୍ୟମ ପ୍ରାଣରସରେ ବୁଡ଼ମାରି ନିଜର ଜୀବନରେ ଜମିଯାଇଥିବା ଜଡ଼ତା ଓ ନିରସତାର କଳଙ୍କ ଛଡ଼ାହବା । ବର୍ତ୍ତମାନର ଭେଦ, ଶୋଷଣ ଓ ଅନ୍ୟାୟମୂଳକ ସମାଜର ଲକ୍ଷ୍ୟ ହେଲା ତା'ର ସନ୍ତାନମାନଙ୍କୁ ସେହି ବୈଷମ୍ୟ, ଶୋଷଣ ଓ ଅନ୍ୟାୟକୁ ମାନିନେବା ପାଇଁ ତିଆରି କରିବା । ସେମାନଙ୍କୁ ପୁରୁଣା ସମାଜର ଦାସ କରି ଗଢ଼ିବା । ଆମେ ଯେଉଁମାନେ ଏ ପୁରୁଣା ସମାଜ ବିରୋଧରେ ବିଦ୍ରୋହ କରିଛୁ, ସେମାନେ ବି ସେ ସମାଜର ଦାସତ୍ୱମୂଳକ ସଂସ୍କୃତିର କବଳରୁ ପୂରାପୂରି ମୁକ୍ତ ହେଇନାହୁଁ । ସେଥିପାଇଁ ଜୀବନର ଅନ୍ୟସବୁ କ୍ଷେତ୍ରପରି ପାରିବାରିକ ଜୀବନରେ, ପିଲାଙ୍କୁ ମଣିଷ କରିବା କାମରେ ବି, ନିଜକୁ ସେସବୁ ପୁରୁଣା ସମାଜର ସଂସ୍କାରରୁ ମୁକ୍ତ କରିବାର ଉଦ୍ୟମ ଚଳାଇ ଯିବାକୁ ହେବ । ପିଲାଙ୍କ ବିକାଶ ସାଙ୍ଗରେ ନିଜର ବି କରିଯିବାକୁ ହେବ । ପିଲାଙ୍କର ଲାଳନପାଳନର ଦାୟିତ୍ୱ ମଧ୍ୟ ନିଜକୁ ବିପ୍ଳବର ମାଧ୍ୟମରୂପେ ପ୍ରସ୍ତୁତ କରିବାର ଓ ସମାଜରେ ନୂଆ ମୂଲ୍ୟବୋଧ ଦାଖଲ କରିବାର ଏକ ସୁବର୍ଣ୍ଣ ସୁଯୋଗ ।

ଭକ୍ତିମାର୍ଗରେ ଭଗବାନଙ୍କୁ ଶିଶୁରୂପରେ ବି ପୂଜା କରାଯାଏ । ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳାର ବର୍ଣ୍ଣନା କବିମାନେ ଉଚ୍ଛ୍ୱସିତ ଭାବରେ କରିଛନ୍ତି । ରୋମାନ କ୍ୟାଥୋଲିକ୍‌ମାନେ ଶିଶୁ ଯୀଶୁ ଓ ମେରୀ ମାତାଙ୍କୁ ଆରାଧନା କରନ୍ତି । ତେବେ ରବୀନ୍ଦ୍ରନାଥ ପଚାରିଲାପରି "ସୁଧୁ ବୈକୁଣ୍ଠର୍ ତରେ ବୈଷ୍ଣବେର ଗାନ୍ ?" ନା ଏସବୁଦ୍ୱାରା ଆମେ "ଦେବତାରେ ପ୍ରିୟ କରି ପ୍ରିୟେରେ ଦେବତା ?" ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳାର କୀର୍ତ୍ତନ ଶୁଣିବାବେଳେ, ପଢ଼ିବାବେଳେ, କ'ଣ ଭକ୍ତ ତାହା ଭିତରେ ନିଜ ପିଲାଙ୍କର ଲୀଳା ଦେଖୁ ନଥିବେ । ନିଜର ପିଲାଙ୍କର ଭିତରେ, ସାହି ପିଲାଙ୍କ ଭିତରେ କୃଷ୍ଣ ବଳରାମ ଓ ଗୋପବାଳକମାନଙ୍କର ଆବିର୍ଭାବ ଅନୁଭବ କରୁ ନଥିବେ । ଓଡ଼ିଶାରେ ବାତ୍ସଲ୍ୟ ରସର ଯେଉଁସବୁ ଚମତ୍କାର ଗୀତ ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି ଲେଖିଯାଇଛନ୍ତି, ସେସବୁର ପ୍ରେରଣା ସେମାନେ ଦେବଲୋକରୁ ପାଇଥିଲେ ନା ନିଜ ଘର ଅଗଣାରୁ ? ନିତିଦିନିଆ ଜୀବନର ଅନୁଭୂତିକୁ ସମୃଦ୍ଧ ଓ ଗଭୀର କରିବାରେ ଭକ୍ତିମାର୍ଗର ଯେଉଁ ଅବଦାନ ଅଛି ସେଥିପାଇଁ ମୁଁ ତାହା ପ୍ରତି ଆକୃଷ୍ଟ ।

କୋଉ କଥାରୁ ଯାଇ କୋଉଁଠି ପହଞ୍ଚିଲିଣି । ପିଲାଙ୍କ ସାଙ୍ଗରେ ସମୟ ଦେବାପାଇଁ ଯେତେ ଚେଷ୍ଟା କଲେ ବି ମୋର ଆଶଙ୍କା ଯେ ମୁଁ ଯଥେଷ୍ଟ ସମୟ ଦେଇପାରିନାହିଁ । ଭୂଦାନ କାମରେ, ଖାସକରି ପଦଯାତ୍ରାରେ, ମତେ ଲଗାତର ବାହାରେ ବୁଲିବାକୁ ହେଲା । କାମର ନିଶା କମ୍ ନୁହେଁ । ତାହାରି ଭିତରେ ସମୟ ପାଇଲେ ଘରେ ମୁହଁମାରିଯାଏ ।

ମୁଁ ଲକ୍ଷ୍ୟ କରିଛି ଯେ, ଆଦର୍ଶବାଦୀ ନିଷ୍ଠାପର ଲୋକେ ସାଧାରଣତଃ ନିଜ ପିଲାମାନଙ୍କୁ ନିଜ ଛାଞ୍ଚରେ ପକେଇବା ଚେଷ୍ଟା କରନ୍ତି । ଛାଞ୍ଚରେ ପକେଇବା ଅର୍ଥ କେତେଗୁଡ଼ାଏ ବାହ୍ୟ ଆଚାର ମାନିବା ପାଇଁ ବାପାମା'ଙ୍କର ସ୍ୱାଭାବିକ ପ୍ରଭାବ ଓ ଓଜନକୁ ବ୍ୟବହାର କରିବା ବୁଝାଇଥାଏ । ସାଧାରଣତଃ ସେମାନଙ୍କର ବିଚାରବୁଦ୍ଧିର ବିକାଶ ଦିଗରେ କମ୍ ଦୃଷ୍ଟି ଦିଆଯାଇଥାଏ । ଦେଖାଯାଏ ଯେ, ପିଲାମାନେ ବଡ଼ ହୋଇଗଲେ ପ୍ରାୟ ଏପରି ବାହ୍ୟ ଅନୁବର୍ତ୍ତିତା ହାସଲ କରିବାର ମୋହ ଥିଲା, ଯଦିଓ ଆମେ ପ୍ରଥମରୁ ଏକଥା ଏକରକମ ସ୍ଥିର କରିନେଇଥିଲୁ ଯେ, ପିଲାଙ୍କ ଉପରେ କୌଣସି କଥା ଚପେଇବୁ ନାହିଁ । ତଥାପି ମନରେ ତ ଏ ପ୍ରତ୍ୟାଶା ଥାଏ ଯେ ଆମେ ଯେମିତି ବାପାବୋଉଙ୍କ କାମରେ ସାହାଯ୍ୟ କରି ଲାଗିଲୁ ସେମାନେ ବି ସେମିତି ଆମ କାମରେ ପଶିବେ । କିନ୍ତୁ ପିଲାଙ୍କର ପାଠପଢ଼ା, ଭବିଷ୍ୟତ ବିଷୟରେ ସେମାନଙ୍କର ଇଚ୍ଛା ଅନିଚ୍ଛା, ଏସବୁକୁ ବିଚାରକୁ ନେଇ ଅନେକ ଚିନ୍ତା ଅନେକ ଘାଣ୍ଟଚକଟ ପରେ ମୁଁ ଧୀରେ ଧୀରେ ସ୍ପଷ୍ଟ ଭାବରେ ଉପଲବ୍ଧି କଲି ଯେ, ବାହ୍ୟ ଆଚରଣର ଅନୁବର୍ତ୍ତନଟା ଅସଲ କଥା ନୁହେଁ । ଅସଲ କଥା ହେଲା କେତେଗୁଡ଼ାଏ ମୌଳିକ ମୂଲ୍ୟବୋଧ । ଗୋଟାଏ ଏପରି ଜୀବନ ଦୃଷ୍ଟିର ବିକାଶ ଯାହାକୁ ମାନବବାଦୀ କୁହାଯିବ । ସବୁ ମଣିଷଙ୍କୁ ସମାନ ମଣିବା, ଜାତି, ଧର୍ମ ଭାଷା ଆଦିର ସଂକୀର୍ଣ୍ଣତାର କବଳରେ ନ ପଡ଼ିବା, ନିର୍ଭୀକହେବା, ସଚେତନ ଓ ସଂବେଦନଶୀଳ ହେବା, ଜୀବନର ବହୁମୁଖୀ ପରିପ୍ରକାଶକୁ ଅନୁଭବ ଓ ଉପଭୋଗ କରିବାର ଶକ୍ତି ଆଦିକେତେ ଗୁଡ଼ାଏ କଥା ହିଁ ଏହା ଭିତରେ ପ୍ରଧାନ ।

ପୁଣି ଅନେକ ଦେଶରେ ପେଣ୍ଡୁଲମ୍ ଯାଇ ଓଲଟା ମୁଣ୍ଡରେ ପହଞ୍ଚିଛି । ପିଲାଙ୍କ ଉପରେ ସଂସ୍କାର ଲଦିବାର ଚେଷ୍ଟା ପରିବର୍ତ୍ତେ ସେମାନଙ୍କୁ ଯାହା ଇଚ୍ଛା କରିବାକୁ ଛାଡ଼ି ଦିଆଯାଉଛି । ଏହାକୁ ପରମିସିଭ୍‌ନେସ୍ କୁହାଯାଉଛି । ଏଇଟା ବି ଭୁଲ । ସାନପିଲା ବଡ଼ମଣିଷର ଅନୁଭୂତିର ଲାଭ ପାଇବାର ଅପେକ୍ଷା ରଖେ । ମାତ୍ର ଏ ଲାଭଟା ପିଞ୍ଜରା ନ ହେବା ଚାହି । କେଉଁ କାମଟା ଠିକ୍ କେଉଁଟା ଭୁଲ ସେ ବିଷୟରେ ସାନପିଲାର ଦୃଢ଼ ମାର୍ଗଦର୍ଶନ ଲୋଡ଼ା, ଜୋର୍‌ର ଶାସନ ନୁହେଁ । ଆମେ କେଉଁଟାକୁ ଠିକ୍ ବୋଲି ବିଚାରୁଛୁ, ତାହା ନିଜ ଆଚରଣରେ ଦେଖାଇବା ଓ ସବୁ ବିଷୟରେ ପିଲାମାନଙ୍କ ସାଙ୍ଗରେ ଆଲୋଚନା କରିବା ଚାହ, ଯାହାଦ୍ୱାରା ବି ସେ ଆମର ଅଭିଜ୍ଞତାର ଲାଭ ପାଇ ପାରିବେ ।

ପିଲାମାନଙ୍କର ଯେ ବେଶ୍ ଦୃଢ଼ ବ୍ୟକ୍ତିତ୍ୱ ଅଳ୍ପ ବୟସରୁ ହିଁ ବିକାଶ ଲାଭ କରୁଥିଲା, ତା'ର ଉଦାହରଣ ଦେଖି ଆମେ ପ୍ରସନ୍ନ ହେଉଥିଲୁ । ରବୀନ୍ଦ୍ରନାଥଙ୍କ ନାଟକ, 'ଅଚଲାୟତନ' ସେମାନଙ୍କୁ ଖୁବ୍ ପିଲାବେଳେ ପଢ଼ି ଶୁଣାଯାଇଥିଲା ଓ ସେମାନେ ଖୁବ୍ ଉପଭୋଗ କରିଥିଲେ । 'ଅଚଲାୟତନ' ଏକ ପୁରୁଣା ସ୍ଥାଣୁ ସମାଜର ଚିତ୍ର ଓ ସେ ସମାଜର ଅଧିପତି, ସବୁ ବିଧିନିଷେଧ ଓ ବନ୍ଧ ସଂସ୍କାରର ଅଧିକର୍ତ୍ତାଙ୍କ ନାମ ମହାପଞ୍ଚକ । ଥରେ ଆମେ କିଏ ପିଲାମାନଙ୍କୁ କୌଣ କଥାରେ ବାଧାଦେବାରୁ ସେମାନେ ମନ୍ତବ୍ୟ କଲେ ତୁ ଗୋଟାଏ ମହାପଞ୍ଚକ ।

ଆଉ ଥରେ କିଏ ଜଣେ ନାନାକୁ କହିଲେ, 'ତୁ ବାପାଙ୍କୁ ଗୋଟାଏ 'ତୁ-ତା କ'ଣ କରୁଛୁ ?' ସେ ଜବାବ ଦେଲା – 'ତୁ କହିବା କ'ଣ ଖରାପ ? ଭକ୍ତମାନେ ଭଗବାନଙ୍କୁ ବି ତ 'ତୁ' କହନ୍ତି ।

## ଗାନ୍ଧୀଜୀଙ୍କର ମହାପ୍ରୟାଣ ଓ ତାହାପରେ

୧୯୪୮ ଜାନୁୟାରୀ ୩୧ ତାରିଖ, ସକାଳ ଦଶଟା ହେବ । ମୁଁ ଗୋଟାଏ ମଧୁଚୋରା ଚଢ଼େଇର ବସା ତିଆରି କାମର ଛବି ଉଠେଇବା ଚେଷ୍ଟାରେ ଥାଏ । ଆମ ଡିହକଡ଼ରେ ଥିବା ବୋଗନ୍‌ଭିଲା ଗଛରେ ସେ ବସା କରୁଥାଏ । ମୁଁ ତା' ପାଖରେ କ୍ୟାମେରା ସଜ କରି ତା'ର ଶଟର୍‌ରେ ଡୋର ବାନ୍ଧି ଦୂରରେ ଜଗିବସିଥାଏ ଯେ ସେ ଚଢ଼େଇ ଆସି ବସାରେ ବସିଲେ ଶଟର୍ ଟାଣିବି । ଏମିତିବେଳେ ଭଗୀରଥ ମଉସାଙ୍କ ଘରଆଡୁ ଗୋଟାଏ ହୋହା ରୋଳ ଶୁଣାଗଲା । ଗଣେଶ ମହାନ୍ତି ଧାଇଁଆସି ଅସଂଲଗ୍ନ ଭାବରେ କହିଲେ – "ବାବୁ ! ଗାନ୍ଧୀଜୀ ମରିଗଲେ ?" କ'ଣ ହେଲା ବୋଲି ମୁଁ ଦଉଡ଼ି ଗଲି । ଦେଖିଲି ଯେ ସମାଚାର ବିଶେଷ ସଂଖ୍ୟାରେ ଗାନ୍ଧୀଜୀଙ୍କର ବଡ଼ ଛବି ଓ ଖବର । ବାରମ୍ବାର ପଢ଼ି ମଧ ବିଶ୍ୱାସ ହେଉନଥାଏ ।

ଭଗୀରଥ ମଉସାଙ୍କ ଘର ପାଖରେ ଜମା ହୋଇଥିବା ଗାଁଯାକ ଲୋକ କାନ୍ଦୁଥାନ୍ତି । ମୁଁ ବି କାନ୍ଦି କାନ୍ଦି ଫେରିଆସିଲି । କିନ୍ତୁ କଥାଟାର ପୂରା ତାତ୍ପର୍ଯ୍ୟ ମସ୍ତିଷ୍କରେ ଭେଟିବାକୁ ଢେର ସମୟ ଲାଗିଲା । ମୁଁ ଫେରିଆସି ପୁଣି ସେଇ ଫଟୋଉଠା କାମକୁ ପୂରା କରିବାରେ ଲାଗିଗଲି ।

ଘଣ୍ଟାଏ ଦୁଇ ଘଣ୍ଟା ପରେ ଯାଇ ଅନୁଭୂତି ହେଲା ଯେ ସବୁ ସରିଗଲା । ସବୁକଥା, ସବୁ କାମ ବୃଥା, ଅର୍ଥଶୂନ୍ୟ, ଅବାନ୍ତର ଓ ପୀଡ଼ାଦାୟକ ବୋଧହେଲା । ଗାଁମାନଙ୍କରେ ସବୁଆଡ଼େ ସବୁକାମ ବନ୍ଦ ହେଇଗଲା । ଗୋଟାଏ ନିଃସ୍ପନ୍ଦତା ସର୍ବତ୍ର ବ୍ୟାପିଗଲା ।

ବାପା ହଠାତ୍ ବାହାରିଲେ କହିଲେ, "ଉଡ଼ାଜାହାଜରେ ଯେମିତି ହେଉ ଦିଲ୍ଲୀ ଯିବି ।" ପୁଣି ହତାଶ ହେଇ ବସିଗଲେ - କହିଲେ, "ଆଉ ଯାଇ କ'ଣ ହେବ ?" ଗୋଟାଏ କିଂକର୍ତ୍ତବ୍ୟବିମୂଢ଼ତା ସମସ୍ତଙ୍କୁ ଗ୍ରାସିଗଲା । ଅନେକ ଦିନ ଲାଗିଲା ସେଇଟା କଟେଇ ଉଠିବାକୁ ।

ଗାନ୍ଧୀଜୀଙ୍କର ଅନ୍ତ୍ୟେଷ୍ଟିକ୍ରିୟାର ସମ୍ବାଦ ଆସିଲା । ଗାନ୍ଧୀଜୀଙ୍କୁ ପୂରା ସାମରିକ ସମ୍ମାନ ସହିତ ନିଆହେଲା - ଅସ୍ତ୍ରବାହୀ ଗାଡ଼ିରେ । ଜଳ, ସ୍ଥଳ, ଆକାଶବାହିନୀର ସୈନ୍ୟମାନେ ସେ ଗାଡ଼ି ଟାଣିଲେ । ଆଗରେ ପଛରେ ଚାଲିଲେ । ମନରେ ଗୁରୁତର ଧକ୍‌କା ଲାଗିଲା । ଅହିଂସାର ଦୂତ ଗାନ୍ଧୀଜୀଙ୍କ ପ୍ରତି କ'ଣ ଏଇ ଯୋଗ୍ୟ ସମ୍ମାନ ? ଏହା ସମ୍ମାନ ବା ଅପମାନ ?

ଗାନ୍ଧୀଜୀଙ୍କର ମହାପ୍ରୟାଣ ପରେ ଭୂଦାନ ଯଜ୍ଞର ଆରମ୍ଭ ପର୍ଯ୍ୟନ୍ତ ସମୟଟା ଥିଲା ମୋ ପକ୍ଷରେ ଗୋଟାଏ ସଂଶୟ ଓ ଅସନ୍ତୋଷର ସମୟ । କଂଗ୍ରେସ କର୍ମୀ ଓ ନେତାମାନଙ୍କ ଭିତରେ ଯେଉଁ ଆଦର୍ଶଗତ ଅବନତି ଆରମ୍ଭ ହୋଇଯାଇଥିଲା ବା ଯଥାର୍ଥ ଭାବରେ ଦେଖିବାକୁ ଗଲେ ଗାନ୍ଧୀଜୀଙ୍କର ଚାଲିଯିବା ପରେ ନିଲଜ୍ଜ ଭାବରେ ପ୍ରକଟ ହେବାକୁ ଆରମ୍ଭ କରିଥିଲା ତାହା ମତେ କ୍ଷୁବ୍ଧ କରୁଥାଏ । ଗାନ୍ଧୀଜୀଙ୍କର ପରିକଳ୍ପିତ ଆର୍ଥିକ ରଚନାକୁ ବାଦ୍‌ଦେଇ ପୂରାପୂରି କେନ୍ଦ୍ରିତ ଯନ୍ତ୍ରଶିଳ୍ପ ଉପରେ ଝୁଁକ, 'ରାଷ୍ଟ୍ରର ମର୍ଯ୍ୟାଦା ରକ୍ଷା' ନାଁରେ ଦିଲ୍ଲୀ ଦରବାରରେ ସମସ୍ତ ମୋଗଲାଇ ଥାଟ କାଏମ୍ ରଖିବା, ନିଶାନିବାରଣ ବିଷୟରେ କେବଳ ଉଦାସୀନତା ନୁହେଁ ବିରୂପ ଭାବ, ଏହିପରି ଅନ୍ୟାନ୍ୟ ପ୍ରାୟ ସବୁ ବିଷୟରେ ମଧ୍ୟ । ଏସବୁ ଦେଖି ମୋର ପୂରା ଧାରଣା ହେଇଗଲା ଯେ, କଂଗ୍ରେସ ଗାନ୍ଧୀଜୀଙ୍କ ବାଟରୁ ଅଲଗା ହେଇ ସାରିଲାଣି ଓ ତାହାଠାରୁ ଆଉ କୌଣସି ଆଶା ନାହିଁ । ତେଣୁ ମୁଁ କଂଗ୍ରେସରୁ ଅଲଗା ହୋଇଗଲି । କମିଟି ଆଦିରେ ରହିବା ତ ଦୂରର କଥା ସାଧାରଣ ସଦସ୍ୟ ମଧ୍ୟ ହେଲିନାହିଁ । ବାପା ମଧ୍ୟ ସେହିଭଳି ଅସନ୍ତୁଷ୍ଟ ଥା'ନ୍ତି, ମାତ୍ର ତାଙ୍କର ବୋଧହୁଏ କଂଗ୍ରେସ ପ୍ରତି ଟିକିଏ ନରମ ଭାବ ତଥାପି ଥାଏ ।

ସେତେବେଳେ ମୁଁ କଂଗ୍ରେସ ପ୍ରତି ଏତେ ବିରୂପ ହୋଇପଡ଼ିଥିଲି ଯେ, କଂଗ୍ରେସ ଲୋକ ଖଦୀ ପିନ୍ଧିବେ ବୋଲି ଆମ୍ଭେ ସହରରେ ନେଇ ଖଦୀ ବିକ୍ରିବାର ଏତେ ଆୟୋଜନରେ କାହିଁକି ପଶିବୁ ବୋଲି ମୋର ମନରେ ପ୍ରଶ୍ନ ଉଠୁଥାଏ । ଖଦୀ ସଂସ୍ଥାମାନେ 'ମେଣ୍ଢା ଛାଲ ଉତ୍ପାଦନ କମ୍ପାନୀ' ହେଇ କାହିଁକି ରହିବେ ବୋଲି ମୁଁ କହୁଥାଏ । କ'ଣ ଗଧିଆ ମେଣ୍ଢା ଛାଲ ଘୋଡ଼ି ହୋଇ ମେଣ୍ଢା ପଲରେ ପଶିଲା ପରି କଂଗ୍ରେସବାଲା ଖଦୀ ପିନ୍ଧି ଲୋକଙ୍କ ମେଳରେ ପଶିବେ ସେଥିପାଇଁ ? ଜାତୀୟ ବା ରାଷ୍ଟ୍ରୀୟ ପତାକା ତ ଅଶୋକଚକ୍ରବାଲା ତ୍ରିରଙ୍ଗା ହେଲା, ମାତ୍ର କଂଗ୍ରେସ ଯେ ଭୂତପୂର୍ବ ଅରଟ ଚିହ୍ନିତ ପତାକାଟାକୁ ନିଜ ଦଳର ପତାକା କରି ରଖିଲା

ଏଇଟା ମଧ୍ୟ ଗୋଟାଏ ରାଜନୀତିକ ଅସାଧୁତା ଓ ଲୋକଙ୍କୁ ଭଣ୍ଡାଇବା ପାଇଁ କରାଯାଇଛି ବୋଲି ସେତେବେଳେ ମୁଁ ଅନୁଭବ କରିଥିଲି ଓ 'ଗ୍ରାମସେବକ' ପତ୍ରିକାରେ ଲେଖିଥିଲି ମଧ୍ୟ ।

ମୁଁ ଦେଖୁଥାଏ ଯେ ରଚନାତ୍ମକ କାମର ସଂସ୍ଥାମାନେ ସେଇ କଂଗ୍ରେସର ନେତାମାନଙ୍କୁ ହିଁ ଗାନ୍ଧୀଜୀଙ୍କର ଉତ୍ତରାଧିକାରୀ ମାନି ଚାଲିଛନ୍ତି । ତାହା ଭିତରେ ପୁଣି ସେମାନେ ସର୍ଦ୍ଦାର ପଟେଲଙ୍କୁ ଗାନ୍ଧୀଜୀଙ୍କର ଚିନ୍ତାଧାରା ଓ ଆଦର୍ଶର ପ୍ରତିନିଧି ମନେ କରୁଛନ୍ତି ଏବଂ ପ୍ରତ୍ୟେକ ନିଜ ନିଜର କାମକୁ ଅଲଗା ଅଲଗା ଦେଖୁଛନ୍ତି, ସମସ୍ତ ପରିସ୍ଥିତିଟାକୁ ଦେଖିବାର ଦୃଷ୍ଟି ନାହିଁ । ଏସବୁ ଯୋଗୁଁ ମୋ ଭିତରେ ଅସନ୍ତୋଷ ଭାବ ବଢ଼ି ଚାଲିଥାଏ । କ'ଣ କରିବାକୁ ହେବ, କୁଆଡ଼େ ଯିବାକୁ ହେବ ତା'ର କିଛି ବାଟ ଦେଖାଯାଉ ନଥାଏ ।

ସମାଜବାଦ ଓ ସାମ୍ୟବାଦ ପ୍ରତି ସେତେବେଳେ ରଚନାତ୍ମକ କର୍ମୀ ଓ ନେତୃମହଲରେ ଯେଉଁ ବିରୂପ ଭାବ ଥାଏ, ତାହା ମୂଳରେ ଅସ୍ପଷ୍ଟ ଧାରଣା, ପୁରୁଣା ସମାଜର କେତେକ ସଂସ୍ଥା ପ୍ରତି ମୋହ ଓ ଗାନ୍ଧୀଜୀଙ୍କର ବିଚାର ବିଷୟରେ ଭୁଲ ଧାରଣା ରହିଛି ବୋଲି ମୋର ଧାରଣା ଥାଏ । ୧୯୪୮ କି ୪୯ ରେ କିଶୋରଲାଲ୍ ମଶ୍ରୁୱାଲା ଗାନ୍ଧୀବାଦ ଓ ମାର୍କ୍ସବାଦ ଉପରେ ଗୋଟିଏ ପ୍ରବନ୍ଧମାଳା ହରିଜନରେ ଲେଖିଲେ । ସେଥିରେ ସେ ମାର୍କ୍ସବାଦ ପ୍ରତି ପୂର୍ବଗ୍ରହ ଓ ବିଦ୍ୱେଷ ନ ରଖିବା ପାଇଁ ନିବେଦନ କରିଥିଲେ, କିନ୍ତୁ ସେ ଲେଖା ମତେ ଉପରଠାଉରିଆ ଲାଗିଲା । ସେଥିରେ ହିଂସା ଅହିଂସାର ବିଚାର ସ୍ଥୂଳଭାବରେ କରାଯାଇଛି ଓ ଗାନ୍ଧୀଜୀଙ୍କର ଚିନ୍ତାଧାରାକୁ ମଧ୍ୟ ଏକ ସଂକୀର୍ଣ୍ଣ ଫାର୍ମାରେ ପକାଯାଇଛି ବୋଲି ମୁଁ ଅନୁଭବ କଲି । ଏ ଲେଖା ବହି ଆକାରରେ ପ୍ରକାଶିତ ହେବାରୁ ବିନୋବା ତା'ର ଯେଉଁ ମୁଖବନ୍ଧ ଲେଖିଥିଲେ ତାହା ମତେ ଅଧିକ ସନ୍ତୋଷଜନକ ଲାଗିଥିଲା । ମାତ୍ର ତଥାପି ପୂରା ହୃଦ୍‌ବୋଧ ହୋଇ ନଥିଲା । ସମାଜର ବୈଜ୍ଞାନିକ ଅଧ୍ୟୟନର ଅଭାବ  ଗାନ୍ଧୀପନ୍ଥୀ ମହଲରେ ରହିଛି ବୋଲି ମୁଁ ଅନୁଭବ କଲି । ଏହି ସମୟରେ ମୁଁ ମନେ ମନେ ସଙ୍କଳ୍ପ କଲି ଯେ, ମୁଁ ଆଉ କୌଣସି ବ୍ୟକ୍ତିଙ୍କର ବିଚାରକୁ ପ୍ରାମାଣ୍ୟ ବୋଲି ଆଖିବୁଜି ଗ୍ରହଣ କରିବି ନାହିଁ । ମୋର ସ୍ୱତନ୍ତ୍ର ବିଚାରବୁଦ୍ଧିରେ ଚାଲିବି । ଏହାର ତାତ୍ପର୍ଯ୍ୟ ବୁଝିବା ପାଇଁ ଏଠି କହି ରଖିବା ପ୍ରୟୋଜନ  ଯେ, ଯଦିଓ ମୁଁ ନିଜର ବିଚାରବୁଦ୍ଧିର ସ୍ୱତନ୍ତ୍ରତା ଉପରେ ମୂଳରୁ ଜୋର ଦେଉଥିଲି ତଥାପି ଅହିଂସାରେ ଓ ରଚନାତ୍ମକ କାମରେ ମୋର ବିଶ୍ୱାସ ଦୃଢ଼ ହେବା ସଙ୍ଗେ ସଙ୍ଗେ ଗାନ୍ଧୀଜୀଙ୍କର ଉକ୍ତିକୁ ମାନିନେବାରେ ବୁଦ୍ଧି  ଅପେକ୍ଷା ବିଶ୍ୱାସ ହିଁ ଅଧିକ ପ୍ରବଳ ହେଉଥିଲା । ଗାନ୍ଧୀଜୀଙ୍କର ନିକଟ ସାଥିମାନଙ୍କର ବିଚାରକୁ ମଧ୍ୟ ସେହିପରି ବିଶ୍ୱାସର ସହିତ ମାନି ନେବାର ଏକ ଟାଣୁଆ ଝୁଙ୍କ ମଧ୍ୟ ମନ ଭିତରେ ଉତ୍ପନ୍ନ ହୋଇଥିଲା । ଗାନ୍ଧୀଜୀଙ୍କୁ ଅବିସମ୍ବାଦୀ ନେତା ଭାବରେ ମାନି ନେଇ ମୁଁ କାମ  କରିବାକୁ ଲାଗିଥିଲି । ସେ ଚାଲିଯିବା ପରେ ତାଙ୍କ ଆସନରେ ଆଉ କାହାରିକୁ ବସାଇବାର ପ୍ରେରଣା ଅତି ପ୍ରବଳ ହୋଇଥିଲା । ତେଣୁ ସେପରି ନ କରିବା ପାଇଁ ଦୃଢ଼ ସଂକଳ୍ପ କରିବାକୁ ପଡ଼ିଲା । ତଥାପି ବିନୋବା ଆସି ସେଠି ଅନେକ ବର୍ଷ ଯାଏ ବସିଗଲେ ।

ଏଇ ନେତୃତ୍ୱ ପରମ୍ପରାର ପ୍ରଶ୍ନ ନେଇ ସେବାଗ୍ରାମର ପ୍ରଥମ ସର୍ବୋଦୟ ସମ୍ମିଳନୀରେ ବେଶ୍ ଘାଣ୍ଟଚକଟ ଦେଖିବାକୁ ମିଳିଲା । ୧୯୪୮ ଫେବୃୟାରୀ ପ୍ରଥମ ସପ୍ତାହରେ ଗାନ୍ଧୀଜୀ ସେବାଗ୍ରାମ ଯାଇ ରଚନାତ୍ମକ କର୍ମୀମାନଙ୍କର ବୈଠକରେ ଯୋଗ ଦେବାର ଥିଲା ମାତ୍ର ତାହା ତ ହେବାର ନଥିଲା । ପରେ ପୁଣି ମାର୍ଚ୍ଚ ବାର ତାରିଖରେ ବଡ଼ ଆକାରରେ ସମ୍ମିଳନୀ ହେଲା । ସେଥିରେ କଂଗ୍ରେସ ନେତାମାନେ ବି ଯୋଗ ଦେଲେ । ସେଠି ପ୍ରଶ୍ନ ଉଠିଲା ଯେ, ଗାନ୍ଧୀଜୀଙ୍କର ବିଚାରର ଅଧିକୃତ ବ୍ୟାଖ୍ୟା ଏଣିକି କିଏ କରିବ ? କାହାରି କାହାରି ମନରେ ଥିଲା ଯେ, ପୋପ୍ ବା ଶଙ୍କରାଚାର୍ଯ୍ୟଙ୍କ ପରି ଗୋଟାଏ ଗାଦୀର ପରମ୍ପରା ସୃଷ୍ଟି କରାଯାଉ । ଅନ୍ୟମାନେ ପ୍ରସ୍ତାବ ଦେଲେ ଯେ, ପାଞ୍ଚସାତ ଜଣଙ୍କୁ ନେଇ ଏକ ଉଚ୍ଚସ୍ତରୀୟ ସମିତି ବା ମଣ୍ଡଳୀ ଏଥିପାଇଁ ଗଢ଼ିଦିଆଯାଉ । ବିନୋବା ଏହାର ବିରୋଧ କଲେ । ଗାନ୍ଧୀ ବିଚାରଧାରାକୁ ଏକ ବନ୍ଧ ଜଳାଶୟରେ ପରିଣତ ହେବାକୁ ନ ଦେବାରେ ତାଙ୍କର ଏ ଅବଦାନ ମୂଲ୍ୟବାନ । ସେ କହିଲେ ଯେ, ଗାନ୍ଧୀଜୀଙ୍କର ଚିନ୍ତାଧାରାର ବ୍ୟାଖ୍ୟା ପ୍ରତ୍ୟେକ ନିଜ ନିଜର ବୁଦ୍ଧି ଅନୁସାରେ କରିବେ । ଆଳାପ ଆଲୋଚନା ଓ ଅଭିଜ୍ଞତା ଭିତ୍ତିରେ କେଉଁ ବ୍ୟାଖ୍ୟା କେତେ ଠିକ୍ ତାହା କାଳକ୍ରମେ ସ୍ପଷ୍ଟ ହେବ । କାହାରିକୁ ସେଥିପାଇଁ କ୍ଷମତାପତ୍ର ଦେଇଦେଲେ ଯେ, ତା'ର ବ୍ୟାଖ୍ୟାଟା ଅଭ୍ରାନ୍ତ ହୋଇଯିବ ଏମିତି କିଛି କଥା ନାହିଁ । ଏସବୁ ସତ୍ତ୍ୱେ ବିନୋବା ଗାନ୍ଧୀଙ୍କ ଗାଦୀରେ ବସିଲେ ବୋଲି ଅନେକେ ବିଚାରିଲେ ଓ ବିନୋବାଙ୍କ ସହିତ ସେହିପରି ବ୍ୟବହାର କରିବାକୁ ଲାଗିଲେ । ବିନୋବାଜୀ ଏଥିରୁ ନିଜକୁ ରକ୍ଷା କରିବା ପାଇଁ ଯଥେଷ୍ଟ ଉଦ୍ୟମ କରିବା ସତ୍ତ୍ୱେ ତାଙ୍କର ଚରିତ୍ର ଉପରେ ତାଙ୍କୁ ଏକ ମହନ୍ତ ଭଳି ଦେଖିବା ପ୍ରବୃତ୍ତିର ପ୍ରଭାବ କିଛି କିଛି ପଡ଼ିଛି ।

ଏଇ ସମ୍ମିଳନୀରେ ଆଉ ଗୋଟିଏ କଥା ହେଲା । ସେଠି ରଚନାତ୍ମକ ନେତାମାନେ କଂଗ୍ରେସ ନେତାମାନଙ୍କୁ ଏକ ଆବେଦନପତ୍ର ଦେବା କଥା ଉଠିଥିଲା । ସେ ପତ୍ରରେ ରଚନାତ୍ମକ କାମର ନାନା ଅଭାବ ଅସୁବିଧା ଓ ସରକାରଠାରୁ ନାନା ମାଗୁଣିର ଉଲ୍ଲେଖ ଥା'ନ୍ତ । ଏହା ପରିବର୍ତ୍ତେ ବିନୋବା କହିଲେ, ଯେ ଆମେ ସେମାନଙ୍କୁ କିପରି ସାହାଯ୍ୟ କରିପାରିବା ସେ କଥା ପଚରାଯାଉ । ସେୟା ହେଲା ଓ ଏହାଦ୍ୱାରା ଏକ ବଳିଷ୍ଠ ମୋନଭାବର ପରିଚୟ ମିଳିଲା ।

## ଦୁଃଖର ଦାରୁଣ ଆଘାତ

ଏଣେ ଏ ସମ୍ମିଳନୀ ଆରମ୍ଭ ହେବା ବେଳକୁ ତେଣେ ଆମ ପରିବାରକୁ ଏକ ଦାରୁଣ ଦୁଃଖ ଗ୍ରାସ କଲା । ସମ୍ମିଳନୀକୁ ଏକା ବାପା ଯାଇଥା'ନ୍ତି । ଦାଦା ଓ ଆଉସବୁ କିଏ ମାର୍ଚ୍ଚ ବାର ତାରିଖ ଦିନ ଉଡାଜାହାଜରେ ଯାଇ ଯୋଗ ଦେବେ ବୋଲି ମସୁଧା ହୋଇଥାଏ । ମୁଁ କଟକରେ ଥିଲି । ସେଇଦିନ ସକାଳୁ ଆସନସୋଲ୍ ଗାଡ଼ିକୁ ବାହାରିଲି ବରୀ ଫେରିବି ବୋଲି । ଦାଦା ସେତେବେଳେ କ୍ୟାଣ୍ଟନମେଣ୍ଟର ସାତ ନମ୍ବର କୋଠରୀରେ ଥାଏ । ସେଠୁ ବାହାରି ଗଲା ବେଳକୁ ବାଟରେ କାଲୁ ସାଇକେଲ୍‌ରେ ଆସୁଥିବାର ଦେଖିଲି । ତା'ର ଦିନେ କି ଦୁଇଦିନ ଆଗରୁ ମୋତିଲାଲ ପଣ୍ଡିତ ଏକ ସାଂଧଭୋଜନକୁ ବହୁ ଲୋକଙ୍କୁ ଡାକିଥିଲେ । କାଲୁକୁ ଅଲଗା

କରି ଡାକି ନଥିଲେ ବୋଲି ସେ ଯାଇ ନଥିଲା । ତା'ର ମିଜାଜଟା ଭଲ ନାହିଁ, ଏତିକି ମୁଁ ଜାଣିଥାଏ ।

ମୁଁ ଆସନସୋଲ୍ ଧରି ଯାଜପୁରରୋଡ୍ ଦେଇ ଅପରାହ୍ଣରେ ଘରେ ପହଞ୍ଚିଲି । ଇତି ମଧ୍ୟରେ ଯେ ସର୍ବନାଶ ଘଟିଯାଇଛି, ତାହା ମୋର ଆଗୋଚର । ମୁଁ ପହଞ୍ଚିବାର ଅଳ୍ପ ସମୟରେ ଯାଜପୁର ବା କେନ୍ଦ୍ରାପଡ଼ା ଏସ୍.ଡ଼ି.ଓଙ୍କ ଅଫିସରୁ ଜଣେ ଲୋକ ଏକ ତାରବାର୍ତ୍ତା ନେଇ ଧଇଁସଇଁ ହେଇ ପହଞ୍ଚିଲା । ସେଥିରେ ଖବର -କାଲୁର ଦେହାନ୍ତ ହୋଇଯାଇଛି । ବୋଉ ଓ ସୁମିତ୍ରା ବରୀରେ ଥା'ନ୍ତି । ଆମେ ପ୍ରଥମେ ଖବରଟାରେ ବିଶ୍ୱାସ କରିପାରିଲୁ ନାହିଁ ବା ବିଶ୍ୱାସ କରିବାକୁ ମନ ବଳିଲା ନାହିଁ । ଆଉ କ'ଣ ବାହାରିବ ବୋଲି ବାରମ୍ବାର ପଢ଼ିଲୁ । ମାତ୍ର ତା'ର ଅଳ୍ପ କେତୋଟି ଶବ୍ଦରୁ ଆଉ କିଛି ଅର୍ଥ ବାହାରିବାର ଅବକାଶ ନଥାଏ । ବୋଉ ଓ ମୁଁ ସେହିପରି ବାହାରି କେନ୍ଦ୍ରପଡ଼ା ବାଟେ ସେଠା ଏସ୍.ଡ଼ି.ଓ. ଙ୍କ ଗାଡ଼ି ନେଇ ଭୋର ନ ହେଉଣୁ କଟକରେ ପହଞ୍ଚିଲୁ ।

କାଲୁ ବିଷ ଖାଇ ଆତ୍ମହତ୍ୟା କରିଦେଇଥିଲା, ମୁଁ କଟକରୁ ବାହାରି ଆସିବାର ଅଳ୍ପ ସମୟପରେ । କେତେବାସ ତଳୁ ସେ ବହୁତ ଅଶାନ୍ତ ଅବସ୍ଥାରେ ଥିଲା । କଲେଜରେ ନାଁ ଥାଏ କିନ୍ତୁ ପଢ଼ାପଢ଼ିରେ ମନ ନଥାଏ । ବୁବୁ ବାହାଘର ପୂର୍ବରୁ କାହାକୁ କିଛି ନ ଜଣେଇ କଲିକତା ପଳେଇ ଯାଇଥିଲା । ବାହାଘରକୁ ଆସିବ କି ନାହିଁ ତାହା ବି ଜାଣିବାର ଉପାୟ ନଥିଲା । ହଠାତ୍ କିନ୍ତୁ ଆସି ଦିନକ ଆଗରୁ ପହଞ୍ଚିଲା । ସେତେବେଳେ କଲିକତାରେ ସାମ୍ପ୍ରଦାୟିକ ଦଙ୍ଗାଗୋଳ ଚାଲିଥାଏ । ସେ ସେଠି ବୁଲାବୁଲି କରି ପରିସ୍ଥିତି ଦେଖି ଆସିଥିଲା । ତାର ଭାବପ୍ରବଣତା ବହୁତ ଅଧିକ ଥିଲା ଓ ସାଧାରଣ ସେବା କାର୍ଯ୍ୟରେ ବହୁତ ଆଗ୍ରହ ଥିଲା । କଟକର ମେହେନ୍ତର ବସ୍ତିକୁ ଯାଇ ସେମାନଙ୍କ ସହିତ ମିଳାମିଶା ଓ ମେହେନ୍ତର ସଂଘ ସଂକ୍ରାନ୍ତ କାମ କରିବାରେ ସେ ସମୟ ଦେଉଥିଲା । ତା'ର ମୃତ୍ୟୁ ଖବର ପାଇ ସାରା କଟକର ସମସ୍ତ ମେହେନ୍ତର ଆସି ସାତନମ୍ବର କୋଠୀରେ ଜମା ହୋଇ କାନ୍ଦିଥିଲେ ।

ତା'ର ମାନସିକ ଅଶାନ୍ତି ବାପା ପୂର୍ବରୁ ଲକ୍ଷ୍ୟ କରିଥିଲେ ଓ ତାକୁ ସ୍ଥିରତା ହାସଲ କରିବାରେ ସାହାଯ୍ୟ କରିବା ଓ ଗୋଟାଏ କିଛି କାମରେ ଲଗାଇବାର ଚେଷ୍ଟାକରିବା ଆବଶ୍ୟକ ବୋଲି ବୋଧହୁଏ ମତେ ବି ଥରେ କହିଥିଲେ । ମାତ୍ର ସେକଥା ଯଥାସମୟରେ ହେଇ ପାରିଲା ନାହିଁ । ତା' ମନରେ ଗୋଟାଏ ଅନୁଯୋଗ ଥିବାପରି ଜଣାଯାଇଥିଲା ଯେ, ତାକୁ ଅବହେଳା କରାଯାଇଛି । କାଲୁ ଆମ ସମସ୍ତଙ୍କ ହୃଦୟରେ ଯେଉଁ ଦାଗ ଦେଇଗଲା ତାହା କେବେ ଲିଭିବାର ନୁହେଁ । ବାପା ୱାର୍ଧାରୁ ଫେରି ଦୁଇଦିନ ଭିତରେ ଆସି ପହଞ୍ଚିଲେ । ଯା' ପରେ ଦାଦା ଓ ଖୁଡ଼ୀ କିଛିଦିନ ଆସି ବରୀରେ ରହିଲେ । ଆତ୍ମହତ୍ୟା କରିଥିବା ବ୍ୟକ୍ତିପାଇଁ କୌଣସି ଶ୍ରାଦ୍ଧ ଆଦି ନ କରାଯିବାର ବିଧି ରହିଛି । ମାତ୍ର ଆମେସବୁ ଏଗାର ଦିନ ପ୍ରାର୍ଥନା କରିଥିଲୁ ଓ ପୁରୁଷ ସମସ୍ତେ ମୁଣ୍ଡ ଲଣ୍ଡା ହେଇଥିଲୁ ।

# ବରୀର ଅନୁଭୂତି

ବରୀରେ ଆମେ ଟ୍ୟାନେରୀ ଡିହରେ ରହୁଥିଲୁ । ସେଠି ସରଞ୍ଜାମ କାର୍ଯ୍ୟାଳୟର ଟିଣ ଘରଟା ଥାଏ । ଟ୍ୟାନେରୀର ଚାଳଘର ଭାଙ୍ଗିରୁଜି ଯାଇଥିଲା । ତାକୁ ମରାମତି କରି ଦେଇଥିଲୁ । ୧୯୪୭ ବେଳକୁ ବାପାଙ୍କର ନୂଆନଈ ପାଳରେ ଚାଷବାସ କାମ ଆଉ ଚାଲୁ ନଥାଏ । ମୌଳିକ ଶିକ୍ଷାପାଇଁ ବେଶି ସମୟ ଦେଉଥା'ନ୍ତି । ସେବାଘର ଡିହରେ କସ୍ତୁରବା ନିଧି ପକ୍ଷରୁ ମାତୃମଙ୍ଗଳ କେନ୍ଦ୍ର ଆରମ୍ଭ ହୋଇଥାଏ । ବୋଉ ମୌଳିକ ଶିକ୍ଷା ଓ କସ୍ତୁରବା ଏଇଥିରେ ସମୟ ଦେଉଥାଏ । ମୁଁ ତ ଖଦୀକାମ ସଂକ୍ରାନ୍ତରେ ବୁଲାବୁଲି କରୁଥାଏ । ସୁମିତ୍ରା ଏକରକମ ସ୍ଥାୟୀ ଭାବରେ ପିଲାଙ୍କୁ ଧରି ବରୀରେ ରହିଥା'ନ୍ତି । ମା' ବି ଦିନାକେତେ ଆସି ଆମପାଖରେ ରହିଥିଲା ।

ଆମ ପିଲାଙ୍କର ଲାଳନପାଳନ କାମର ଗୋଟାଏ ସମ୍ପ୍ରସାରଣ ରୂପେ ଗାଁ ପିଲାଙ୍କର ସେବାର ବି ଏକ କାମ ସେଠି ଖୋଲିଗଲା । ନାନା ନାନୀଙ୍କର ଖାଦ୍ୟପେୟରେ ତ ଆମେ ଯଥାସାଧ୍ୟ ଆଧୁନିକ ଖାଦ୍ୟତତ୍ତ୍ୱ ଓ ସ୍ୱାସ୍ଥ୍ୟର ନିୟମ ଅନୁସରଣ କରୁଥାଉଁ । ଆଖପାଖ ସାହିର ସାନପିଲାଙ୍କ ସ୍ୱାସ୍ଥ୍ୟ ବିଷୟରେ ପରାମର୍ଶ ନେବାକୁ ସୁମିତ୍ରାଙ୍କ ପାଖକୁ ମା' ମାନେ ଆସିବାକୁ ଆରମ୍ଭ କଲେ । ଏହିପରି ଭାବରେ ସ୍ୱାସ୍ଥ୍ୟରକ୍ଷା, ଖାଦ୍ୟ ଆଦି ବିଷୟରେ କେତେକ ଉନ୍ନତ ଧରଣ ଜ୍ଞାନ ଓ ପିଲାଙ୍କୁ ମଣିଷ କରିବାର ଉନ୍ନତ ଢଙ୍ଗର ପ୍ରଚାର ଆଖପାଖରେ ହେଲା । ପାଖ ଆଖର କେତୋଟି ଅତି ଦୁର୍ବଳ-ରିକେଟ୍‌ଗ୍ରସ୍ତ- ଶିଶୁଙ୍କର ସମସ୍ୟା ମଧ୍ୟ ପଡ଼ିଥିଲା । ଆମ ପିଲାଙ୍କୁ କଡ୍ ଲିଭର ତେଲ ମାଲିସ କରାହୋଇ ଖରାରେ ରଖାଯାଉଥାଏ । ଏ ପିଲାଗୁଡ଼ିକୁ ମଧ୍ୟ ସେହିପରି କରାହେଲା ଓ ସେମାନଙ୍କର ଉପଯୁକ୍ତ ଖାଦ୍ୟର ମଧ୍ୟ ବ୍ୟବସ୍ଥା ହେଲା । ଏହା ଫଳରେ ସେ ପିଲାଗୁଡ଼ିଙ୍କର ସ୍ୱାସ୍ଥ୍ୟ ଦୁଇମାସ ଖଣ୍ଡେ ଭିତରେ ସ୍ୱାଭାବିକ ହେଇଗଲା ।

କିନ୍ତୁ ଆହୁରି କଠିନ ରୋଗ ମଧ୍ୟ ତ ଥିଲା । ରାମଚନ୍ଦ୍ରପୁର ଡାକ୍ତରଖାନାର କାଳୀପଦବାବୁଙ୍କ ପାଖରେ ମଧ୍ୟ ସେ ସବୁର ଔଷଧ ନ ଥାଏ । ଅରଂଗାବାଦର ଛୁଆବୋଉ କଥା ମନେପଡୁଛି । ତା'ର ଅନେକ ଗୁଡ଼ିଏ ପିଲା । ଭାରି ଗରିବ, ତା'ର ସ୍ୱାମୀ ମୂଲ ମଜୁରୀ ଲାଗି ଚଳେ । ତା'ର ବର୍ଷେ ଖଣ୍ଡକର ପିଲାର କଠିନ ରୋଗ ହେଲା । ଡାକ୍ତର ଦେଖି ସେରିବ୍ରାଲ୍ ମ୍ୟାଲେରିଆ କି ସେହିପରି କ'ଣ ଗୋଟାଏ କହିଲେ । ତା' ପାଇଁ ଯାଜପୁରରୁ ଓଷଦ ଆଣିଲେ ଯାଇ କ'ଣ କିଛି ହେଇପାରେ । ଓପରଓଳି ମତେ ସୁମିତ୍ରା ଆସି ଧରିଲେ - ପନ୍ଦର ଟଙ୍କା ଦେଲେ ତା' ପାଇଁ ଓଷଧ ଆସିବ । ସେତେବେଳେ ବଢ଼ି ବର୍ଷା ପାଗ, ଯାଜପୁରକୁ କିଏ ଓଷଧ ପାଇଁ ଯିବ ତ ଯାଇ ତା' ପରଦିନ ଭୋରରୁ, ମୁଁ କହିଲି, ହଉ କାହାକୁ ପଠାଇବା । କିନ୍ତୁ ସେ ପିଲା ଆଉ ସକାଳ ଯାଏ ବଞ୍ଚିଲା ନାହିଁ । ପୁଣି ଛୁଆବୋଉର ଦେଢ଼ଶୁର ଅନ୍ଧାରରେ ସେ ପିଲା ଶୋଇଥିବା ଘରବାଟେ ଯାଉ ଯାଉ ତା' ଉପରେ ଗୋଡ଼ ପକେଇ ଦେଇଥିଲା । ତା' ଘରେ ଡିବିଟିଏ ଜାଳିବାର ବି ସମ୍ବଳ ନଥିଲା ।

ସେ ଅଞ୍ଚଳରେ କି ପରିସ୍ଥିତିରେ ଲୋକ ରହିଛନ୍ତି ତା'ର ଆଉ ଏକ ନମୁନା । ମୌଳିକ ଶିକ୍ଷକ ତାଲିମ ବିଦ୍ୟାଳୟର ଜଣେ ଛାତ୍ର ଯତୀନ ରୋଗରେ ପଡ଼ିଲେ । ଡାକ୍ତର ଦେଖି କହିଲେ ଯେ ଅନ୍ତରେ ଅବରୋଧ ସୃଷ୍ଟି ହୋଇଛି - ଇଂଷ୍ଟେସ୍ଟାଇନାଲ୍ ଅବ୍‌ଷ୍ଟ୍ରକ୍‌ଶନ୍ । ସେଠି ତା'ର ଯଥୋଚିତ ଚିକିତ୍ସା ପାଇଁ ବ୍ୟବସ୍ଥା କୁଆଡୁ ଆସିବ ? କଟକ ଲୋକ ଗଲେ ପରାମର୍ଶ ଆଣିବାକୁ । ଫେରି ଖବର ଦେଲେ ଯେ ରୋଗୀକୁ କଟକ ନେଲେ ସିନା ଅସ୍ତ୍ରଚିକିତ୍ସା କି କ'ଣ କରିହେବ, ରୋଗୀ ଏଠି ଥାଇ ସେଠୁ ସେମାନେ କି ପରାମର୍ଶ ଦେଇପାରିବେ ? ସେତେବେଳେ ବି ସେମିତି ବଢ଼ିବର୍ଷା ବେଳ । ଇନ୍ଦୁପୁର-କେନ୍ଦ୍ରାପଡ଼ା ରାସ୍ତା ଏପରି ଚିକିଟା କାଦୁଅ ଯେ ବର୍ଷାଦିନେ ସେଥିରେ ଯମ ବି ସେତେବେଳେ ଚାଲିବାକୁ ପଛେଇବ । ରୋଗୀର ସେତେବେଳକୁ ଅବସ୍ଥା ଅତି ସଂଗୀନ ହେଲାଣି । ଏ ଅବସ୍ଥାରେ ତାକୁ କେମିତି କୋଉବାଟେ କଟକ ନେଇ ହେବ ? ଯାଜପୁର ବାଟେ ତ ଠାକୁଠା ଘାଟ ପାରି । ସେବାଟେ ତ ଖାଲି ନଈ ଡଙ୍ଗାରେ ଚାରି ପାଞ୍ଚଘଣ୍ଟା ଲାଗିଯିବ । ଭଗବାନ ଭରସା କରି ଡାକ୍ତରବାବୁଙ୍କ ତତ୍ତ୍ୱାବଧାନରେ ସେଇଠି ସମସ୍ତେ ଲାଗିପଡ଼ି ତା'ର ଯେତେ ଯତ୍ନ ନେବା ସମ୍ଭବ ନେଲେ, କିନ୍ତୁ ତାକୁ ବଞ୍ଚେଇ ପାରିଲେ ନାହିଁ ।

ଏଇ ଅବସ୍ଥା ଭିତରେ ରାମଚନ୍ଦ୍ରପୁରରେ ଜିଲ୍ଲା ବୋର୍ଡ଼ ଡାକ୍ତରଖାନା ଓ ବରୀରେ କସ୍ତୁରବା ମାତୃମଙ୍ଗଳ କେନ୍ଦ୍ର ଲୋକଙ୍କ ପକ୍ଷରେ ଖୁବ୍ ବଡ଼ ଭରସାର ସ୍ଥଳ ହୋଇଥିଲା । ମୁଁ ତ ପୂର୍ବରୁ ଡାକ୍ତର କାଳୀପଦ ଚୌଧୁରୀଙ୍କର କଥା କହିଛି । ତାଙ୍କର ନିଃସ୍ୱାର୍ଥ ସେବାଭାବ ଓ ହୃଦୟବତ୍ତା ହିଁ ଥିଲା ରାମଚନ୍ଦ୍ରପୁରର ଡାକ୍ତରଖାନାର ଶ୍ରେଷ୍ଠ ସମ୍ବଳ । ସେବାଘର ମାତୃମଙ୍ଗଳ କେନ୍ଦ୍ରରେ ମୋର ପିଇସୀଝିଅ ଭଉଣୀ ଡାକ୍ତର ତୁଙ୍ଗବିଦ୍ୟା ସରକାରୀ ଚାକିରୀ ଛାଡ଼ି ଆସି ରହିଲା । ସେ ବି ଲୋକଙ୍କ ସେବାରେ ନିଦରାତି ଭୂତପରି ଖଟେ । ତାକୁ ସାହାଯ୍ୟ କରିବାକୁ ଆଉ କେତେଜଣ କର୍ମୀ ବି ସେଠି ଥା'ନ୍ତି ।

"ଚାଟୁବାବୁଙ୍କ କ୍ୟାମ୍ପ" ରେ ଖଦୀ ମଣ୍ଡଳ ପକ୍ଷରୁ କର୍ମୀ ତାଲିମ କେନ୍ଦ୍ର ଚାଲୁଥାଏ । ଚାଟୁବାବୁ ତ ସେତେବେଳେ ଆଉ ସେଠି ନଥା'ନ୍ତି । ବୃନ୍ଦାବନ ଜେନା ୱାର୍ଧାରୁ ଖଦୀ କାମରେ ଉଚ୍ଚ ତାଲିମ ପାଇ ଆସିଥାନ୍ତି ଓ ଏ କେନ୍ଦ୍ରର ତତ୍ତ୍ୱାବଧାନ କରୁଥାନ୍ତି । ଖଦୀ ମଣ୍ଡଳର ମୁଖ୍ୟ କାର୍ଯ୍ୟାଳୟ ତ କେନ୍ଦୁପାଟଣାରେ ଥାଏ କିନ୍ତୁ ମୋର ମୁଖ୍ୟ ବାସସ୍ଥାନ ବରୀ ହେବା ଯୋଗୁଁ ସେଠି ମଧ୍ୟ କାର୍ଯ୍ୟାଳୟର ଅନେକ କାମ ଥାଏ । ଏଇ ସମୟରେ ମୁଁ ମୋର ସରଳ ବିଶ୍ୱାସ ବା ଅସାବଧାନତା ଯୋଗୁଁ ଟଙ୍କା ପଇସା ବ୍ୟାପାରରେ ଦୁଇଥର ଗୁରୁତର ଠକେଇରେ ପଡ଼ିଥିଲି । ଥରେ ତାଲିମ କେନ୍ଦ୍ରରେ ଗୋଟିଏ ପିଲାକୁ ଡାକଘରୁ ହଜାର ଟଙ୍କାରେ ଏକ ଇନ୍‌ସିଓର୍ ଚିଠି ଆଣିବାକୁ ବରାଦ ଦେଇଦେଲି ଓ ସାଙ୍ଗେ ସାଙ୍ଗେ ତା'ଠୁଁ ସେଟା ବୁଝିନେବାରେ ହେଳା କଲି । ସେ ସୁଯୋଗ ପାଇ ପ୍ରଲୋଭନରେ ପଡ଼ିଗଲା ଓ ଟଙ୍କାତକ ଧରି ଚମ୍ପଟ ଦେଲା । ତା'ର ଘର ବାଲେଶ୍ୱରଆଡ଼େ କୋଉଠି । ସବୁଆଡ଼େ ଖବର ଦିଆ ହେଲା । ଏଇ ଘଟଣା ପରେ ପରେ ବାପା ଯାଇଥା'ନ୍ତି । ଦୁଇ ତିନି ଦିନ ପରେ ସେ ହଠାତ୍ ଲକ୍ଷ୍ୟ କଲେ ଯେ ପିଲାଟି ଆମ ଘର

ସାମନା ନଣ୍ଡକୂଳ ରାସ୍ତାରେ ଏପାଖ ସେପାଖ ହୋଇ ବୁଲୁଛି । ତାକୁ ଯାଇ ଧରି ଅଣାହେଲା । ତା' ପାଖରୁ ସାତଶହରୁ କିଛି ଅଧିକ ନଗଦ ଟଙ୍କା ବାହାରିଲା । ବାକିତକ ସେ ନୂଆ ଲୁଗା, ଜୋତା ଆଦି କିଣିବାରେ ଖର୍ଚ୍ଚ କରିଥିଲା । ସବୁଯାକ ଖର୍ଚ୍ଚ କରିବାର ବୁଦ୍ଧି ତାକୁ ଦିଶି ନଥିଲା । ଟଙ୍କା ନେଇ ଘରକୁ ଗଲେ ସେଠି ତାକୁ କ'ଣ କହିବେ, କ'ଣ କରିବେ ବୋଲି ଭୟ ବି ଥିଲା ଓ ଟିକିଏ ବିବେକର ଦଂଶନ । ସେଥିପାଇଁ ବୋଧହୁଏ ବାପା ହେରିକାକୁ ଦେଖେଇ ହେଇ ସେଠି ବୁଲୁଥିଲା ।

ଆଉଥରେ ସେମିତି ଜଣକୁ ମୁଁ ତାଲିମ ଶିବିରରେ ଦେଇ ଦେବାପାଇଁ ଛଅଶହ ଟଙ୍କା ଖୁବ୍ ସକାଳୁ ଦେଇ ବାହାରକୁ କୁଆଡ଼େ ଚାଲିଗଲି । ତେଣେ ଖବର ପାଇଲି ଯେ, ସେ ଲୋକଟି ଟଙ୍କାତକ ନେଇ ପଳେଇ ଯାଇଛି । ଏ ଟଙ୍କା ଆଉ ଉଦ୍ଧାର ହୋଇ ପାରିନଥିଲା । ଏସବୁ ବୁଦ୍ଧି ଶିଖିବା ପରେ ଟଙ୍କା ପଇସା ବିଷୟରେ ମୁଁ ଅଧିକ ସାବଧାନ ହେଲି । ନ ହେଲେ ତ ପୂର୍ବରୁ ସେବାଘର ଟଙ୍କା ପଇସା ସବୁ ସେମିତି ସେ ମେଲା ଘରେ ଏଠି ସେଠି ଥୁଆ ହୋଇଥାଏ । ଥରେ ହେଲେ କେବେ ଚୋରି ଯିବାର ଜଣାନାହିଁ । ସାଧାରଣ ଭାବରେ ଲୋକଙ୍କ ଉପରେ ବିଶ୍ୱାସ ରଖିଲେ ଲୋକେ ବିଶ୍ୱାସର ପାତ୍ର ହୁଅନ୍ତି । ଏଇଟା ଅଭିଜ୍ଞତାର କଥା । କିନ୍ତୁ ଲୋକଙ୍କୁ ପ୍ରଲୋଭନରେ ପକେଇବା ଭଳି ଅବସ୍ଥା ମଧ୍ୟ ଉତ୍ପନ୍ନ ହେବାକୁ ଦେବାର ନୁହେଁ । ଏଇଟା ମୁଁ ଶିଖିଲି । ସେବାଘର ଆଖପାଖର ସ୍ଥାୟୀ ବାସିନ୍ଦା ଆଶ୍ରମର ବିଶ୍ୱାସର ବାତାବରଣ ଦ୍ୱାରା ପ୍ରଭାବିତ ହେଇଯାଇଥିଲେ । ଏସବୁ ଦୁର୍ଘଟଣା ବାହାରୁ ନୂଆ ଆସିଥିବା ଲୋକଙ୍କ ଦ୍ୱାରା ହିଁ ଘଟିଥିଲା ।

ବାପାଙ୍କର ତ ନିଜେ ଖଟି ଚାଷ କରିବା ପାଇଁ ଯଥେଷ୍ଟ ଫୁରସତ୍ ନଥାଏ କିନ୍ତୁ ଚାଷବାସରେ ତାଙ୍କର ସ୍ପୃହା ତ ପୂରାଥାଏ । ରାମଚନ୍ଦ୍ରପୁରର ଚାଷବାସ, ବଢ଼ିବଗିଚା, ଗୋଶାଳାରେ ସେ ପୂରା ଧ୍ୟାନ ଦେଉଥା'ନ୍ତି । ବରୀରେ ଆମ ଘର ଡିହ ଓ ସେବାଘର ବାଡ଼ିର ସାମାନ୍ୟ ଜମିରେ ବି ଆମେ କଦଳୀ, ଅମୃତଭଣ୍ଡା, ପିଜୁଳି, ସପେଟା ଲଗେଇ ଥାଉ, ଟମାଟୋ, କୋବି ଆଦି ମଧ୍ୟ କରୁଥାଉ । ପାଚିଲା କଦଳୀ କେତେ କାନ୍ଧି ବିକ୍ରି ବି କଲୁ । ସୁମିତ୍ରା ଥରେ ପାଚିଲା ପିଜୁଳି ବିକି ସାତ ଟଙ୍କା ଆୟ କଲେ । ଏମିତି ଭାବରେ ଆମର ବି ବାଡ଼ିବଗିଚା ଓ ଚାଷବାଷର ସୌକ ବଢୁଥାଏ । ଆଦର୍ଶ ଗ୍ରାମ୍ୟ ଜୀବନର ଭିତ୍ତି ଚାଷ ହେବା ଉଚିତ ବୋଲି ବିଚାର ଥାଏ । ତେଣୁ କିଛି ଅଧିକ ଜମି ନେଇ ଚାଷବାସ କରିବା ବିଚାର ଆମ ଭିତରେ ପଡ଼ିଲା । ତେଣେ ବିନୋବା ବି ପଉନାର ଆଶ୍ରମରେ "ଋଷି କୃଷି" ଅର୍ଥାତ୍ ବଳଦ ବ୍ୟବହାର ନକରି କେବଳ ମଣିଷର ଶରୀର ପରିଶ୍ରମରେ ଚାଷ କାମରେ ଲାଗିଥା'ନ୍ତି । ଚାଷ କାମରେ ସାତ ଆଠ ଘଣ୍ଟା ଲେଖା ପରିଶ୍ରମ କରୁଥା'ନ୍ତି । ସେଥିରୁ ମଧ୍ୟ ଆମକୁ ପ୍ରେରଣା ମିଳିଲା ।

# ଚାଷର ପ୍ରୟୋଗ

ଆମଘର, ଟ୍ୟାନେରୀ ଡିହର, ଦକ୍ଷିଣକୁ ଶହେ ଦେଢ଼ଶହ ଗଜ ଦୂରରେ ବ୍ରାହ୍ମଣୀ ନଈର ବାମ କୂଳର ବନ୍ଧ । ନଈଟା ଅବଶ୍ୟ ସେଠି ବନ୍ଧଠାରୁ ଅଧମାଇଲିଏ ଉପର ଦୂର । ସେଇ ବନ୍ଧ ସେପଟର ଜମି ଦୁଧେଇପାଳ ବୋଲି ପରିଚିତ । ଏକ ସମୟରେ ସେଠି ବ୍ରାହ୍ମଣୀର ଏକ କ୍ଷୁଦ୍ର ଶାଖା ଦୁଧେଇନାଳ ଥିଲା । ସେଠି ଆମେ ବିଭିନ୍ନ ଲୋକଙ୍କଠାରୁ ସାଢ଼େ ଚାରଏକର ଖଣ୍ଡେ ଜମି କିଣିଲୁ । ତା' ଭିତରେ ଦୁଇ ଏକର ଖଣ୍ଡେ ଏକ ବଣ ବି ଥିଲା । ଏଇ ଜମିକୁ ବାଡ଼ାବନ୍ଦି କରି ଚାଷବାସ ଆରମ୍ଭ କରାହେଲା । ବାପା କୋଉଠୁ ସେଇ ସମୟରେ 'ଆଇଜିରିଆ' ଡାଳ ଆଣିଲେ ଓ ବାଡ଼ ପାଇଁ ତାହା ବ୍ୟବହାର କରାହେଲା । ବାଡ଼ ସେଥିରେ ଭଲ ହେଲା, କିନ୍ତୁ ପରେ ତାହା ଚାରିଆଡ଼େ ପ୍ରବଳ ଭାବରେ ବ୍ୟାପିଯାଇ ଏକ ସମସ୍ୟା ବି ସୃଷ୍ଟିକଲା । ତା'ର ଓଡ଼ିଆ ନାଁ ହେଇଗଲା 'ଅମରୀ' ।

ସେ ଜମିରେ ଅନେକଗୁଡ଼ାଏ, ତିରିଶ ଖଣ୍ଡେ, ଶିମୁଳି ଗଛ ଥିଲା । ଆମେ ସେ ଜମିକୁ ନେବାପରେ ଦିନେ କବି ନବ ସେ ବାଟେ ଗଲାବେଳେ ମତେ ଦେଖି କହିଲେ - "କିଓ ବୁଲୁ, ତମେ ଟଏଥର ଏ ଶିମୁଳ ଗଛଗୁଡ଼ାକ ସବୁ ହାଣି ସଫା କରିଦେବ ।" କଥାଟା ମୋ ମନରେ ଲାଗିଲା । ଗଛ ଗୁଡ଼ାକରୁ ଆଠ ଦଶଟା ଆମେ ନକାଟି ରଖିଦେଲୁ । ଚୈତ୍ର ବୈଶାଖ ମାସରେ ଶିମୁଳି ଗଛରୁ ସବୁପତ୍ର ଝଡ଼ିଯାଇ ଯେତେବେଳେ ଖାଲି ଫୁଲରେ ଭର୍ତ୍ତି ହେଇଯାଏ ସେତେବେଳେ ବଣରେ ନିଆଁ ଲାଗିଲା ପରି ଦେଖାଯାଏ । ଶିମୁଳି ଫୁଲରେ ଏତେ ମହୁଥାଏ ଯେ ଲକ୍ଷ ଲକ୍ଷ ମହୁମାଛି ଓ ଭଅଁରଙ୍କ ସାଙ୍ଗକୁ ଶହଶହ ନାନା ଜାତିର ପକ୍ଷୀ ବି ଆସି ସେଥିରୁ ମହୁ ଲୁଟ୍ କରିବାରେ ଲାଗନ୍ତି - ବଣି, ଗୁହ୍ଲାଳିକା, ବୁଲ୍‌ବୁଲ୍ ଓ କାଉ ସୁଦ୍ଧା । ସମସ୍ତଙ୍କ ଭିତରେ ଯେମିତି ଗୋଟାଏ ଉନ୍ମାଦନା ବ୍ୟାପିଯାଏ - ଏମିତି ସେମାନେ ଦିନଯାକ ସେସବୁ ଗଛରେ ଆସି ପଡ଼ିରହନ୍ତି। ପୂର୍ବରୁ କେବେ ସେ ଅଞ୍ଚଳରେ ବା ଅନ୍ୟ କେଉଁଠି ମୋ ଆଖିରେ ପଡ଼ି ନଥିବା "ରୋଜୀ ପାସ୍ତର" ପକ୍ଷୀ ବି କୋଉଠୁ ଶହ ଶହ ସଂଖ୍ୟାରେ ଚାଲିଆସନ୍ତି । ଗଛଗୁଡ଼ାକ ପୂରା ନିର୍ମୂଳ କରି ଦେଇଥିଲେ ତ ବସନ୍ତର ଏ ଆନନ୍ଦ ମହୋତ୍ସବ ଲୁପ୍ତ ହେଇଯାଇଥାନ୍ତା ।

ଥରେ ଆମ ବାଡ଼ିରେ ବୁଲ୍‌ବୁଲ୍ ଆସି ପାଚିଲା ଟୋମାଟୋ ଖାଉଥିଲା । ଜଣେ କିଏ ସେମାନଙ୍କୁ ହୁରୁଡ଼େଇବାକୁ ଗଲା । ମୋର କେମିତି ମନେହେଲା ଯେ, ବୁଲ୍‌ବୁଲ୍ ଆସି ଆମ ବାଡ଼ିରେ ଫଳ ଖାଉଛନ୍ତି ଏଇଟା ତ ଆମର ସୌଭାଗ୍ୟ । ବୁଲ୍‌ବୁଲ୍ ଦିନକୁ ଖୁବ୍‌ହେଲେ ଗୋଟାଏ ଦୁଇଟା ଟୋମାଟୋ ଖାଇବେ କିନ୍ତୁ ଆମ ବାଡ଼ିର ଶୋଭା ଏହାଦ୍ୱାରା କେତେ ବଢ଼ୁଛି । ମୁଁ ଚଢ଼େଇ ହୁରୁଡ଼େଇବାକୁ ମନାକଲି ଓ ମୋର ବିଚାର କହିଲି । ବାପା ବି ଏକମତ ହେଲେ । ସେଇଦିନୁ ଚଢ଼େଇ ହୁରୁଡ଼େଇବା ବନ୍ଦ ହେଲା ।

ଏ ଜମିରେ ଗୋଟାଏ ସାନ ପୋଖରୀ ଖୋଳାହୋଇ ସେଥିରେ ରାହଟ ବସିଲା, ପାଣି

ମଡେ଼ଲବାକୁ ଓ ଚାଷକାମ ପୂରା ଦମ୍‌ରେ ଚାଲିଲା । ୧୯୫୦ ଓ ୫୧ ଏ ଦୁଇବର୍ଷ ସେଥିରେ ଆମେ ଅଧିକାଂଶ ସମୟ ଦେଇ ଲାଗିଥିଲୁ ।

ପଚାଶ ମସିହା ଶ୍ରାବଣ କି ଭାଦ୍ର ମାସ । ସବୁ ବର୍ଷପରି ନଈବଢ଼ି ହେଇ ବିଲବାଡ଼ିସବୁ ପାଣିରେ ବୁଡ଼ିଛି, ବରୁହାଁ-କଳାମାଟିଆ ରାସ୍ତାକୁ ପାଣି ଲାଗିଛି । ସମସ୍ତେ ଖୁବ୍ ଉତ୍ସାହରେ ନୂଆ ବଢ଼ିପାଣିର ଗତିବିଧି ଦେଖିବାରେ ଲାଗିଛନ୍ତି । ଦେଖାଗଲା ଯେ ପାଣି କ୍ରମାଗତ ବଢ଼ି ଚାଲିଛି । ସକାଳୁ ପାଣି ରାସ୍ତା ତଳକୁ ହାତେ ଖଣ୍ଡେ ଥିଲା, ଉପରଓଳି ରାସ୍ତା ବୁଡି ଚାଖଣ୍ଡେ ପାଣି ଚାଲିଲା । ପାଞ୍ଚଟା ବେଳକୁ ଘରସାମନା ରାସ୍ତା ଉପରେ ସୁଅ ଚାଲିଲା । ଜାଳକାଠ ଆସି ସବୁ ଗୋଟାଗୋଟିକରି ସାଇତି ରଖାହେଲା । କିଏ ଜଣେ ପ୍ରସ୍ତାବ ଦେଲେ ଯେ, ପିଲାମାନଙ୍କୁ ସେବାଘରକୁ ପଠେଇ ଦିଆଯାଉ । ସେ ଡିହଟା ଆମ ଡିହଠାରୁ ଦୁଇହାତ ଖଣ୍ଡେ ଉଚ୍ଚଥିଲା । କିନ୍ତୁ ବଢ଼ି ଏତେ ଦୂର ବଢ଼ିବ ଯେ ଡିହ ଉପରକୁ ଉଠିବ ଏ ଆଶଙ୍କା ଆମେ ସେତେବେଳେ କଲୁନାହିଁ । ପିଲାଙ୍କୁ ନେଇ ସୁମିତ୍ରା ଓ ମୁଁ ସେଇଠି ରହିଲୁ । ସୁମିତ୍ରାର ସାହାଯ୍ୟକାରୀ ଆଉ ଜଣେ ଭଉଣୀ ଥା'ନ୍ତି । ବାପା ଆଉ ବୋଉ ସେତେବେଳେ ରାମଚନ୍ଦ୍ରପୁରରେ । ବଢ଼ିପାଣି କିନ୍ତୁ କ୍ରମଶଃ ବଢ଼ିଚାଲିଲା ଓ କ୍ରମେ ଆସି ଡିହକୁ ଛୁଇଁଲା । ସେତେବେଳକୁ ସେବାଘରକୁ ଆଉ ଚାଲିଯିବା ଉପାୟ ନାହିଁ, ରାସ୍ତା ଉପରେ ଛାତିଏ ପାଣି । ରାତିରେ ପିଲାଙ୍କୁ ନେଇ ସେବାଟେ ଯିବା ଅସମ୍ଭବ ରାତିସାରା ଆଉ ନିଦ ନଥାଏ । ଘଣ୍ଟାକୁ ଘଣ୍ଟା ଉଠି ଦେଖୁଥାଉ ଯେ ବଢ଼ିପାଣିର ସ୍ତର ବଢ଼ିଚାଲିଛି । ଝପ କରି ଗୋଟାଏ ଶବ୍ଦଶୁଣି ଯାଇ ଦେଖେ ତ ଘର କ'ଣରେ ଥିବା ଗୋଟାଏ ମହୁବାକ୍ସ ପାଣିରେ ଭାସି ଯାଉଛି । ଅନ୍ୟଗୁଡ଼ାକୁ ରସିବାନ୍ଧି ଘରଓଳିରୁ ଓହଳେଇ ଦିଆହେଲା । ପାଣି ଯେତେବେଳେ ଆସି ଘର ପିଣ୍ଡା ଉପରକୁ ଲାଗିଲା ଆମେ ନାନା ନାନୀଙ୍କୁ ନେଇ ଟିଣ ଘରେ ଶୁଆଇଲୁ । ସେ ଡିହ ଚାଖଣ୍ଡେ ଖଣ୍ଡେ ଉଚ୍ଚ ଥାଏ ଓ ସେଥିରେ ଦୁଇଟା ବଡ଼ ଭାରି ଟେବୁଲ୍ ଥାଏ - ସରଂଜାମ କାର୍ଯ୍ୟାଳୟ ବେଳର । ସେଇ ଟେବୁଲ୍ ଉପରେ ପିଲାଏ ରହିଲେ । ଏଣେ ପାଣି ବଢ଼ିଚାଲି ଭୋରବେଳକୁ ଘର ଡିହରେ ସୁଅ ପଡ଼ିଲା, ଘର ଭିତରୁ ହାତେ ଦେଢହାତ ମାଟି ତାଡ଼ିନେଇ ଗୋଟାଏ ଧାର କରିଦେଲା । କାନ୍ଥସବୁ ବସି ଗଲା ।

ଭୋରରୁ ଗଣେଶ ଆସି ପହଞ୍ଚିଲେ ଖଣ୍ଡେ କାଠୁଆ ନେଇ । ଏଣେ ସେ ଟିଣଘରେ କାନ୍ଥ ପୂରା ନଥାଏ । ପବନ ବେଶ୍ ହେଉଥାଏ । କାଳେ ବର୍ଷା ଆସିବ ବୋଲି ଗଣେଶ ଓ ମୁଁ ଠିକ୍ କଲୁ ଯେ, ସେବାଘରୁ କେତେ ଖଣ୍ଡ କରଗେଟ ଟିଣ ଆଣି ସେ ଘରକୁ ଆପଟ କରିବୁ । କାଠୁଆରେ ଟିଣ ବୋଝେଇ କରି ଆଣୁ ଆଣୁ ଡଙ୍ଗା ଉପରେ ଆଡ଼ବାଗରେ ଥୁଆହେଇଥିବା ଟିଣ ଗୋଟାଏ ମୁଣ୍ଡ ପାଣିରେ ଲାଗିଯିବାରୁ କାଠୁଆ ଖଣ୍ଡ ଅଣେଇ ହେଇଗଲା ଓ ଆଉ ସମ୍ଭଳା ନପଡ଼ି ବୁଡ଼ିଗଲା । ଟିଣଯାକ ପାଣିରେ ପଡ଼ିଲା । ଅବଶ୍ୟ ବଢ଼ି ଛାଡ଼ିବାପରେ ସବୁଯାକ ସେଠୁ ଉଦ୍ଧାର କରାଯାଇଥିଲା । ଗଣେଶ ଓ ମୁଁ ପାଖରେ ଥିବା ଏକ ସାନ ଆମ୍ବଗଛରେ ଲାଗିଲୁ । ପାଣିରେ ପଡ଼ିଲେ ବି ଡଙ୍ଗାର ରସି ଖଣ୍ଡ ଗଣେଶ ହାତରୁ ଛାଡ଼ି ନ ଥା'ନ୍ତି । ଗଛର ତଳ ଡାଳରେ ବସି

ସେ ଡଙ୍ଗାକୁ କେମିତି ପୁଣି ପାଣି ଉପରକୁ ଉଠେଇ ଜାମିନା ଅବସ୍ଥାକୁ ଆଣିବୁ ତା'ର ଉପାୟ ଚିନ୍ତାକଲୁ । ମୁଣ୍ଡକୁ ଗୋଟାଏ ବୁଦ୍ଧି ଆସିଲା ଯେ ଡଙ୍ଗାକୁ ଆଗପଛ କରି ହଲେଇଲେ ଗୋଟାଏ ମୁଣ୍ଡ ପାଣିରୁ ଉପରକୁ ଉଠିବ ଓ ପୁଣି ଆରମୁଣ୍ଡ ଉପରକୁ ଉଠିବା ବେଳକୁ ଡଙ୍ଗାରୁ କିଛି ପାଣି ଚହଲି ବାହାରିଯିବ, ଡଙ୍ଗା ଆଉ ପୁରା ପାଣିତଳକୁ ଯିବ ନାହିଁ । ଏମିତି ହଲାହଲି କରୁ କରୁ ପ୍ରକୃତରେ ଡଙ୍ଗାରୁ ପାଣି କମିଯାଇ ତା'ର ପଟ୍ଟ ପାଣି ଉପରକୁ ଦୁଇତିନି ଆଙ୍ଗୁଳି ଉଠିଲା । ତା' ପରେ ସେହି ଉପାୟରେ ବାକିତକ ପାଣି ସଫା କରିଦେବା କଠିନ ହେଲା ନାହିଁ । କାଠ ଖଣ୍ଡ ବି ମାଟିରେ ଲାଖି ରହିଯାଇଥିଲା ତାକୁ ଉଦ୍ଧାର କଲୁ ଓ ସେ ବୃକ୍ଷାରୋହଣ ପର୍ବ ସମାପ୍ତ ହେଲା । ତେଣେ ଖଣ୍ଡେ ବଡ଼ ପଟେଇ ସେ ବାଟେ ଯାଉଥିବାର ଦେଖାଗଲା ଓ ତା'ରି ସାହାଯ୍ୟରେ ନାନାନାନୀ,ସୁମିତ୍ରା ହେରିକା ସେବାଘରକୁ ଗଲେ ।

ଏ ଘରଭଙ୍ଗା ବଢ଼ିପରେ 'ସମାଜ'ର ସମ୍ପାଦକ ରାଧାନାଥ ରଥ ସେ ଅଞ୍ଚଳ ଦେଖି ଯାଇଥିଲେ ଓ ବନ୍ୟାପୀଡ଼ିତ ଲୋକଙ୍କୁ ସୂତାକଟା  ମାଧ୍ୟମରେ ସାହାଯ୍ୟ ଦେବାପାଇଁ କିଛି ପାଣ୍ଠି ଖଦୀ ମଣ୍ଡଳ ହାତରେ ଦେଇଥିଲେ ଓ ଆମର ଭଙ୍ଗା ଘର ମରାମତି ପାଇଁ ବି କିଛି ସାହାଯ୍ୟ ଦେଇଥିଲେ ।

ଏହାପରେ ଆମେ ଯାଇ ଅପେକ୍ଷାକୃତ ଉଚ୍ଚ ଢୁଧେଇ ଜମିରେ ଘରକରି ରହିବାକୁ ସ୍ଥିରକଲୁ ଓ ଏ ଘରର ଖୁଣ୍ଟ, ଚାଳ ପ୍ରଭୃତି ସବୁ ସେଇଠିକୁ ଉଠେଇ ନେଲୁ । ଏଠି ବାପା ଓ ମୁଁ ବିଲମାଡ଼ି କାମରେ ଯେତେ ପାରୁ ସମୟ ଦେଉଥାଉ । ବାପା ତ ପରେ ସର୍ବ ସେବା ସଂଘର ସମ୍ପାଦକ ହେଲେ ଓ ତାଙ୍କୁ ବହୁତ ବୁଲାବୁଲି କରିବାକୁ ପଡ଼ିଲା । ତେବେ ମୁଁ ସେଠି ବେଶି ସମୟ ରହୁଥାଏ । ଇନ୍ଦୁପୁରର କୃଷ୍ଣ ଜେନା, ଯେ ପୂର୍ବେ ସରଞ୍ଜାମ କାର୍ଯ୍ୟାଳୟରେ ଥିଲେ, ଆସି ସେଠି ଆମ ସାଙ୍ଗରେ ରହିଥା'ନ୍ତି ଓ ସେ ଓ ମୁଁ ଦୁହେଁ ଦୈନିକ ଆଠଦଶ ଘଣ୍ଟା ଲେଖା ଚାଷ କାମରେ ପରିଶ୍ରମ କରୁଥାଉ । ଆଳୁ ଚାଷର ମଧ୍ୟ ପରଖ ସେଇଠି ଆମେ ଆରମ୍ଭ କଲୁ । ବିଭିନ୍ନ ପ୍ରକାରର କଲମି ଆମ୍ବ, ଭଲ ପଣସ, ସପେଟା, ପିଜୁଳି ଓ କେତୋଟି ନଡ଼ିଆ ଗଛ ମଧ୍ୟ ଜମିର ପୋଖରୀ ଚାରିପାଖ ଅଂଶରେ ଲଗାହେଲା । ବରୀ-ରାମଚନ୍ଦ୍ରପୁର ଅଞ୍ଚଳରେ କେତେଗୁଡ଼ିଏ ଅତି ଉତ୍କୃଷ୍ଟ ଜାତିର ପଣସ ଅଛି । ଆମ୍ବକୁ ଯେପରି କଲମୀ କରାଯାଇ ତା'ର ଉତ୍କର୍ଷ ସାଧନ କରାଯାଇଛି ପଣସକୁ ସେପରି କରାଗଲେ ନିଶ୍ଚୟ ଉତ୍କୃଷ୍ଟତର ପ୍ରକାର ସୃଷ୍ଟି କରାଯାଇପାରନ୍ତା, କିନ୍ତୁ ଆମ୍ବଟା ବାଦଶାହୀ ଫଳ, ପଣସର ଜାତି ଛୋଟ । ଜାତିଭେଦ ଏ ଦେଶର ଫଳଫୁଲ, ପନିପରିବା ଓ ଖାଦ୍ୟଶସ୍ୟକୁ ବି ତ ବ୍ୟାପିଛି । ସେଥିପାଇଁ ତା' ପ୍ରତି କେହି ଦୃଷ୍ଟି ଦେଇ ନାହାନ୍ତି । ଆମେ ସବୁ ତ ଆମ୍ବ ଅପେକ୍ଷା ପଣସକୁ ସ୍ୱାଦରେ ଶ୍ରେଷ୍ଠ ମନେକରୁ, କିନ୍ତୁ ବୁଢ଼ୀମା' ଥିଲାବେଳେ ପଣସ ଖାଇବାଟାକୁ ନିରୁତ୍ସାହିତ କରୁଥିଲା । ଆମେ ତ ସବୁ ପିଲାମାନଙ୍କ ସାଙ୍ଗରେ ବସିଗଲେ ଭାତ ଖାଇବା ବନ୍ଦକରିଦେଇ କେବଳ ଗୋଟା ଗୋଟା ପଣସ ସାଫ କରିଦେଉ । ( ଏ 'ଆମେ' ଭିତରୁ ସୁମିତ୍ରା ବାଦ୍) ।

ଆଳୁ ଆମର ପ୍ରଥମ ବର୍ଷ ବିଶେଷ ଭଲ ହେଲାନାହିଁ, ମାତ୍ର ଦ୍ୱିତୀୟ ବର୍ଷକୁ ବେଶ୍ ଆଶାନୁରୂପ ଫସଲ ହେଲା । ଆଳୁ ଏତେ ବେଶୀ ହେଇ ନଥିଲା ଯେ କେଉଁଠି ନେଇ ବିକ୍ରିବା ଚେଷ୍ଟା କରିବା ଅଥଚ ବେଶ୍ କିଛି ହେଉଥାଏ । ବେଶି ଦିନ ରଖିଲେ ତ ପଚିଯିବ । ମୁଁ ପ୍ରସ୍ତାବ ଦେଲି ଯେ ଚାଲ ଭାତ, ରୁଟି ଆଦି ବନ୍ଦ କରିଦେଇ କେବଳ ଆଳୁ ଖାଇବା । ସେତେବେଳେ ସୁମିତ୍ରା ଓ ପିଲାମାନେ କିଛିଦିନ ପାଇଁ କଟକ କି ଭୁବନେଶ୍ୱର ଯାଇଥାନ୍ତି । କୃଷ୍ଣ ଜେନା ଓ ମୁଁ ଥାଉ । କୃଷ୍ଣ ମୋ କଥାରେ ରାଜି ହେଲେ । ସକାଳୁ ଆଳୁ ସିଝାରେ ଦହି, ଗୁଡ଼ ଦେଇ ଚଳଟି ଜଳଖିଆ, ଦି ପହର ବେଳେ ଓ ରାତିରେ ଆଳୁ ସିଝା ସହିତ ଡାଲି, ତରକାରୀ, ଖଟା । ଏମିତି ଚାଲିଲା । ତିନି ଦିନ କି ଚାରି ଦିନ ପରେ କୃଷ୍ଣ କହିଲେ -ମତେ ଏଣିକି ଆଉ ଆଳୁ ଦେଖିଲେ ବାନ୍ତି ମାଡୁଛି । ମୁଁ ତାକୁ ଥଟା କଲେ ଓ ସାହସ ଦେଲେ ବି ମତେ ବି ଆଳୁ କେମିତି କେମିତି ଲାଗିବା ଆରମ୍ଭ କରିଥିଲା ଓ ତେଣୁ ଏ ପରଖ ଆଉ ଦିନେ ଖଣ୍ଡେ ଅଧିକା ଚାଲି ବନ୍ଦ ହେଇଗଲା ।

ବରୀ ବା ଦକ୍ଷିଣ ବିଞ୍ଝାରପୁର ଅଞ୍ଚଳର ଗାଈ ବଳଦଙ୍କର ଆକୃଷ୍ଟ କିସମ କଥା ଆଗରୁ କହିଛି । ୧୯୩୬-୩୯ ଯୁଗରେ ହରିୟାନା ଷଣ୍ଢ କେତୋଟି ଅଣାଯାଇ ବରୀ ପାଖ ଆଖ ପାଞ୍ଚସାତ ଖଣ୍ଡ ଗାଁରେ ରଖାଯାଇ ଉତ୍କୃଷ୍ଟତର ମିଶ୍ରଜାତି ଉତ୍ପନ୍ନ କରିବା ପରଖ ସଫଳ ହେଇଥିଲା । ଏଥର ଓଡ଼ିଶା ସରକାରଙ୍କର ପଶୁପାଳନ ବିଭାଗ ଆନୁକୂଲ୍ୟରେ ସେ ସାରା ଅଞ୍ଚଳରେ ନବେରୁ ଅଧିକ ହରିୟାନା ଷଣ୍ଢ ଆଣି ସବୁ ଗାଁରେ ରଖା ହେଲେ ଓ ପୂରା ଅଞ୍ଚଳରେ ଗୋରୁଙ୍କର ଜାତି ଉନ୍ନତତର ହେଲା । ଏବେ ତ ଖାଦ୍ୟାଭାବ ଯୋଗୁଁ ସେଠା ଗୋରୁଗାଈଙ୍କର ଅବସ୍ଥା ଦିଅଣ୍ଡା ଦିକଡ଼ା ହେଲାଣି ।

## ସର୍ବୋଦୟ ଆନ୍ଦୋଳନର ସୂତ୍ରପାତ

୧୯୪୯ ର ଖରାଦିନେ ଇନ୍ଦୋର ପାଖ ରାଉ ଗାଁରେ ସର୍ବୋଦୟ ସମ୍ମିଳନୀର ଦ୍ୱିତୀୟ ବାର୍ଷିକ ଅଧିବେଶନ ବସିଲା । ବାପା, ଗୁଣନିଧିବାବୁ, ଆଚାର୍ଯ୍ୟ ମହାଶୟ ହେରିକାଙ୍କ ସାଙ୍ଗରେ ମୁଁ ବି ସେଥିରେ ଯୋଗଦେଲି । ଏ ସମ୍ମିଳନୀ ସେବାଗ୍ରାମ ତୁଳନାରେ ବହୁତ ସାନ ହେଇଥିଲା । କଂଗ୍ରେସ ନେତାମାନେ ତ ଏଥର ଆସି ନଥା'ନ୍ତି । ଦୁଇ ଶହ ଖଣ୍ଡେ ଲୋକ ହେଇଥାନ୍ତି । ଏଇଠି ବିନୋବାଙ୍କର ବକ୍ତୃତା ପ୍ରଥମ ଶୁଣିଲି । ଏଠି ସେ ଦେଶର ପରିସ୍ଥିତି ଓ ସମସ୍ୟାର ଯେଉଁ ବିଶ୍ଳେଷଣ କଲେ ତାହା ମୋର ମନକୁ ଖୁବ୍ ପାଇଥିଲା । ଏହାର ପର ବର୍ଷର ସମ୍ମିଳନୀ ଓଡ଼ିଶାରେ କରିବା ପାଇଁ ନିମନ୍ତ୍ରଣ ଦେଲେ ଓ ତାହା ସ୍ୱୀକୃତ ହେଲା ।

ଏଠୁ ବାପା, ଗୁଣନିଧିବାବୁ ଓ ମୁଁ ଗୁଜରାଟର ରଚନାତ୍ମକ କାମର କେନ୍ଦ୍ରସବୁ ଦେଖିବାପାଇଁ ଗଲୁ । ସେତେବେଳେ ନାରାୟଣ ବେଡ଼ଛୀରେ ଜୁଗତରାମ ଦଣ୍ଡେଙ୍କ ମାର୍ଗଦର୍ଶନରେ ଚାଲୁଥିବା ମୌଳିକ ବିଦ୍ୟାଳୟରେ ଶିକ୍ଷକତା କରୁଥାଏ । ଏଇଟା ଆଦିବାସୀ ପ୍ରଧାନ ଅଞ୍ଚଳ ଓ ଆଦିବାସୀଙ୍କ ଭିତରେ ଜୁଗତରାମଭାଇଙ୍କର କାମର ଚେର ଖୁବ୍ ଗଭୀରକୁ ମାଡ଼ିଥାଏ । ଆମେ ସାବରମତୀ

ଆଶ୍ରମ, ସେତେବେଳେ ସେଠି ହରିଜନ ଛାତ୍ରାବାସ ଚାଲିଲାଣି, ବୋଚାସଣରେ ଗଙ୍ଗାବେନଙ୍କ ଗୋପାଳନ କେନ୍ଦ୍ର ଓ କରାଡ଼ିରେ ଦିଲଖୁଶ୍ ଦିୱାନଜୀଙ୍କ କେନ୍ଦ୍ର ଓ ଖେଡ଼ା ଓ ତା' ପାଖ ଜିଲ୍ଲାରେ ମରୁଡ଼ି ଅଞ୍ଚଳରେ ଚାଲିଥିବା ସେବାକାର୍ଯ୍ୟ ବୁଲି ଦେଖିଥିଲୁ । ସେ ସେବାକାର୍ଯ୍ୟ ବେସରକାରୀ ସାହାଯ୍ୟ ସମିତି ପକ୍ଷରୁ ସଂତବାଲଜୀଙ୍କର ମାର୍ଗଦର୍ଶନରେ ଚାଲିଥାଏ । ଏ କାମର ଢଙ୍ଗ ଆମକୁ ଖୁବ୍ ପ୍ରଭାବିତ କରିଥିଲା । ସେ ଅଞ୍ଚଳରେ ଭୀଷଣ ମରୁଡ଼ି ଯୋଗୁଁ ଫସଲ ନଷ୍ଟ ହେବା ସାଙ୍ଗକୁ ପିଇବା ପାଣିର ସୁଦ୍ଧା ଅଭାବ ଦେଖା ଦେଇଥାଏ । ବାହାରୁ ଟ୍ରକ୍‌ରେ ପାଣି ନେଇ ଗାଁମାନଙ୍କରେ ବଣ୍ଟା ଯାଉଥାଏ । ଗୋଟିଏ ଗୋଟିଏ ପରିବାର ଦିନକ  ପାଇଁ ବାଲ୍‌ଟିଏ କି ଗରାଏ ଲେଖା ପାଣି ପାଉଥାନ୍ତି ।  ଖାଦ୍ୟ ଓ ପାଣି ଅଭାବରୁ ଗୋରୁଗାଈ ମରି ସଫା ହେଇଯାଇଥାନ୍ତି । ପ୍ରତି ଗାଁମୁଣ୍ଡରେ ସଦ୍ୟ ମରିବା ଗୋରୁଙ୍କର ହାଡ଼ର କୁଢ଼  ଜମା ହୋଇଥାଏ ଯେ ଦେଖିଲେ ଆଖି ଖୋସି ହୋଇଯିବ । ଏଇ ପରିସ୍ଥିତି ଭିତରେ ଖାଦ୍ୟ ଓ ପାଣି ଯୋଗାଣ ସାଙ୍ଗକୁ ନଳକୂଳମାନଙ୍କରେ ପମ୍ପ ଦ୍ୱାରା ପାଣି ଯୋଗେଇ ସଫଲ ଆମଦାନୀରେ ସାହାଯ୍ୟ କରାଯାଉଥାଏ । ଗୋଟାଏ ନଳକୂଳରେ ଦେଖିଲୁ ଯେ ପ୍ରତି ଦୁଇ ତିନି ଫର୍ଲଙ୍ଗରେ କୂଳଯାକ ଡିଜେଲ୍ ପମ୍ପ ବସିଛି ଓ ଦିନରାତି ଚବିଶ ଘଣ୍ଟା ଅନବରତ ଚାଲିଛି । ପ୍ରତ୍ୟେକ ଗାଁ ଓ ଗାଁର ପ୍ରତ୍ୟେକ ଜମିବାଲା କେତେବେଳେ ପାଣି ପାଇବେ ତା'ର ପାଳି ଠିକ୍ ହେଇ ରହିଛି ଓ ରାତି ଅଧରେ ବି ଲୋକ ଆସି ନିଜ ପାଳି ଅନୁସାରେ ପାଣି ନେବାର ବ୍ୟବସ୍ଥା କରୁଛନ୍ତି । ଏ କାମର ଦାୟିତ୍ୱରେ ଥିବା ଜଣେ ରଚନାତ୍ମକ କର୍ମୀ ଏସବୁ କାମର ଓ ପମ୍ପର ତଦାରଖ କରିବା ପାଇଁ ଖଣ୍ଡେ ଜିପ୍ ଧରି ଦିନରାତି ବୁଲୁଛନ୍ତି, ସେଇ ଜିପ୍‌ରେ ତାଙ୍କର ରହିବା, ଖାଇବା, ଶୋଇବା ସବୁ । କୌଣସି ପମ୍ପ ଟିକେ ଅସଜ ହେଲେ ତୁରନ୍ତ ମରାମତ ପାଇଁ ମିସ୍ତ୍ରୀ ପହଞ୍ଚି ଯାଉଛନ୍ତି, ସରଞ୍ଜାମ ଯୋଗେଇ ଦିଆଯାଉଛି । ଏ ବେସରକାରୀ ସାହାଯ୍ୟ ସମିତି ହାତରେ ଗୋଟାଏ ନଳକୂଅ ଖୋଳିବା 'ରିଗ୍' ଥିଲା ଓ ସେମାନେ ଅନେକ ଗୁଡ଼ିଏ ନଳକୂଅ ଲଗାତାର ଖୋଳି ଚାଲିଥାନ୍ତି । ମାତ୍ର ସରକାରର ସେହିପରି 'ରିଗ୍' ଗୁଡ଼ିକ ସବୁ ଅନେକ ଦିନୁଁ ଅସଜ ହେଇ ରହିଥିବାରୁ ଅଳ୍ପ କେତୋଟି ନୂଆ ଖୋଳି ଦେଇ ବସିଯାଇଥିବାର ଶୁଣିଲୁ । ଲୋକଙ୍କର ଦୁଃଖ ଦୂର କରିବା ପାଇଁ 'ଯୁଦ୍ଧଭିତ୍ତି' ରେ କିପରି କାମ କରାଯାଇପାରେ ତା'ର ଉତ୍କୃଷ୍ଟ ନମୁନା ଦେଖି ଖୁବ୍ ସନ୍ତୋଷ ଓ ଉତ୍ସାହ ମିଳିଲା । ଆମେ ସନ୍ତବାଲଜୀଙ୍କ ସହିତ ମଧ୍ୟ ଦେଖାକଲୁ । ସେ ଜୈନସାଧୁ, ଗାନ୍ଧୀଜୀଙ୍କ ପନ୍ଥାରେ ବିଶ୍ୱାସ ଓ ରଚନାତ୍ମକ କାମରେ ଅଗ୍ରଣୀ ।

୧୯୫୦ ର ସର୍ବୋଦୟ ସମ୍ମିଳନୀ ଓଡ଼ିଶାରେ ହେବାର ସ୍ଥିର ହେଇଥିଲା । ସେଥିପାଇଁ ଅନୁଗୁଳରେ ବାଜି ରାଉତ ଛାତ୍ରାବାସ ପାଖରେ ଥିବା ବଡ଼ ଆମ୍ବତୋଟା ବଛାଗଲା । ଖଦୀ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ ହେଲା ଛାତ୍ରାବାସ ସାମନାରେ ଥିବା ବଡ଼ ପଡ଼ିଆରେ । ସମ୍ମିଳନୀ ପାଇଁ  ବାପା ହେରିକା ବୁଲି ସାରା ଓଡ଼ିଶାରୁ ଟଙ୍କା ଓ ଜିନିଷ ଆକାରରେ ଚାନ୍ଦା ସଂଗ୍ରହ କରିଥିଲେ । ସେତେବେଳେ ସମ୍ମିଳନୀରେ ପାଞ୍ଚଶହ ଭିତରେ ପ୍ରତିନିଧି ଯୋଗ ଦେଇଥିଲେ ଓ ଖାଇବା ପାଇଁ ପ୍ରତିନିଧିଙ୍କଠାରୁ କୌଣସି ଖର୍ଚ୍ଚ ନିଆଯାଉନଥିଲା । ସମ୍ମିଳନୀ ଆଠଦିନ ଧରି

ଚାଲିଥାଏ । ଏଠିକି ବିନୋବା ଆସି ନଥିଲେ । ଏ ସମ୍ମିଳନୀରେ ନାରାୟଣ ପ୍ରଭୃତି ଯୁବ ଗୋଷ୍ଠୀ ସର୍ବୋଦୟ କାମର ନୂଆ ଦିଗ୍‌ଦର୍ଶନ ଦାବି କରିଥିଲେ ଓ ସେହିମାନଙ୍କ ଆଗ୍ରହରେ ବାପା ସର୍ବ ସେବା ସଂଘର ସଂପାଦକ ହେବାକୁ ରାଜି ହେଲେ । ଏ ସଂଘ ୧୯୪୮ ର ସମ୍ମିଳନୀ ପରେ ଗଢ଼ା ଯାଇଥିଲା । ରଚନାତ୍ମକ କାମ କରିବା ପାଇଁ ଗାନ୍ଧୀଜୀ ବିଭିନ୍ନ ସମୟରେ ଖଦୀ, ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା, ହିନ୍ଦୁସ୍ତାନୀ ପ୍ରଚାର, ହରିଜନ ସେବା ଆଦି ପାଇଁ ଅଲଗା ସଂସ୍ଥା ଗଢ଼ିଥିଲେ । ଏ ସଂସ୍ଥାଗୁଡ଼ିକ ନିଜ ନିଜ କ୍ଷେତ୍ରରେ ବିଶେଷଜ୍ଞ ଭାବରେ କାମ କରୁଥିଲେ । ସ୍ୱାଧୀନତା ପରେ ଗାନ୍ଧୀଜୀ ଚାହୁଁଥିଲେ ଯେ, ଏ ସବୁ ସଂସ୍ଥାର ନେତା ଓ କର୍ମୀମାନେ ନିଜ ନିଜ କାମ ବିଷୟରେ କେବଳ ଏକତରଫା ଭାବରେ ଚିନ୍ତା ନ କରି ସମସ୍ତେ ମିଶି ସର୍ବୋଦୟର ସମଗ୍ର ଲକ୍ଷ୍ୟକୁ ଆଖିଆଗରେ ରଖି କାମ କରନ୍ତୁ । ଏ ଅନୁସାରେ ପ୍ରଥମେ ଖଦୀ, ଗ୍ରାମୋଦ୍ୟୋଗ ଓ ହିନ୍ଦୁସ୍ତାନୀ ପ୍ରଚାର ସଂସ୍ଥା ଗୁଡ଼ିକ ମିଶି ସର୍ବ ସେବା ସଂଘ ଗଢ଼ାହେଲା । ମୌଳିକ ଶିକ୍ଷାର ସଂସ୍ଥା ହିନ୍ଦୁସ୍ତାନୀ ତାଲିମୀ ସଂଘ ସେଥିରେ ପରେ ମିଶିଲା ।

ସମାଜର ନିମ୍ନତମ ସ୍ତର ପର୍ଯ୍ୟନ୍ତ ଜନସଂପର୍କ, ସାଧାରଣ ଲୋକଙ୍କୁ ଜଗେଇ କାମରେ ଲଗେଇ ପାରିବାର ଶକ୍ତି ଓ ସର୍ବୋଦୟ କାମକୁ ଜନଆନ୍ଦୋଳନ ରୂପରେ ଦେଖିବାକୁ ଦୃଷ୍ଟି ବାପାଙ୍କର ଯେତେ ଥିଲା ମୁଖ୍ୟ ରଚନାତ୍ମକ କର୍ମୀମାନଙ୍କ ଭିତରେ ବହୁତ କମ୍ ବ୍ୟକ୍ତିଙ୍କର ସେଭଳି ଥିଲା ବୋଲି କୁହାଯାଇପାରେ । ବାପା ଜନଆନ୍ଦୋଳନକୁ ଯେପରି କଳ୍ପନା ଚକ୍ଷୁରେ ଦେଖିପାରୁଥିଲେ ବିନୋବା ତାଙ୍କର ଅସାଧାରଣ ପ୍ରତିଭା ସତ୍ତ୍ୱେ ବି ସେପରି ଦେଖିପାରୁନଥିଲେ ବୋଲି ମୋର ଧାରଣା ।

ସେତେବେଳେ ରଚନାତ୍ମକ ମହଲର ହାଓ୍ୱାର ଏକ ନମୁନା ଦିଏ । ସର୍ବୋଦୟ ସମ୍ମିଳନୀ ସାଙ୍ଗକୁ 'ସର୍ବୋଦୟ ସମାଜ' ବୋଲି ଏକ ଭାଇଚାରୀ ମଧ୍ୟ ଗଢ଼ା ହୋଇଥାଏ । ଯେ ସର୍ବୋଦୟର ଲକ୍ଷ୍ୟ ଓ ତାହା ହାସଲ କରିବାର ପନ୍ଥାରେ ନିଜର ବିଶ୍ୱାସ ପ୍ରକାଶ କରିବ ସେ ଏ ଭାଇଚାରାର ସଦସ୍ୟରୂପେ ତାଲିକାଭୁକ୍ତ ହେବ ଓ ତା' ପାଖକୁ ସମ୍ମିଳନୀର ନିମନ୍ତ୍ରଣ ଓ ଅନ୍ୟାନ୍ୟ ସୂଚନା, ସମାଚାର ଆଦି ପଠାଯିବାର ବ୍ୟବସ୍ଥା ଥାଏ । ଏ ସମାଜ ଓ ସମ୍ମିଳନୀର ବ୍ୟବସ୍ଥା ବୁଝିବା ପାଇଁ ଗୋଟିଏ ଛୋଟ ସମିତି ଗଢ଼ା ହେଇଥାଏ । ସେଥିରେ କିଶୋରଲାଲଭାଇଙ୍କ ପରାମର୍ଶ ଅନୁସାରେ ସଦସ୍ୟରୂପେ ସାତଜଣ ନୂଆ, ଅପେକ୍ଷାକୃତ ଅପରିଚିତ କର୍ମୀ ନିଆହେଇଥାନ୍ତି । ତା' ଭିତରେ ମୁଁ ଥାଏ । ଅନ୍ୟ, ସଦସ୍ୟମାନେ ହେଲେ ବିହାରର ରାମଦେବ ଠାକୁର, ତାମିଲନାଡୁର ଦେବରତ୍ନମ ପିଲ୍ଲେ, କର୍ଣ୍ଣାଟକର ତିମାପ୍ପା ନାୟକ, ଗୁଜରାଟ୍‌ର ବବଲଭାଇ ମେହତା ଆଦି ।

ଏ ସମିତିର ବୈଠକ ବସିଲେ ସେଥିରେ କିଶୋରଲାଲଭାଇ, କାକୁଜୀ, ଧୋତ୍ରେଜୀ ପ୍ରଭୃତି ଯୋଗ ଦିଅନ୍ତି । ଆଲୋଚନାରେ ସେହିମାନେ ହିଁ ମୁଖ୍ୟ ଅଂଶଗ୍ରହଣ କରନ୍ତି । ଥରେ ସର୍ବୋଦୟ ସମ୍ମିଳନୀର କାର୍ଯ୍ୟକ୍ରମ ବିଷୟରେ ବିଚାର ପଡ଼ିଥାଏ । ଜଣେ କେହି ପ୍ରସ୍ତାବ କଲେ ଯେ ସାଧାରଣ କର୍ମୀ ବା ପ୍ରତିନିଧି ନିଜ ନିଜର ମତ ବ୍ୟକ୍ତ କରିବା ପାଇଁ ସମୟ ରଖାଯାଉ । କାକୁଜୀ ଆପତ୍ତି କରି କହିଲେ ଯେ, ସେଥିପାଇଁ ସମୟ ଦେବା କ'ଣ ଦରକାର ? ଆମେସବୁ

ଯାହା ସ୍ଥିର କରିବୁ ତାହା ସମ୍ମିଳନୀରେ ପ୍ରକାଶ କରିବୁ । କର୍ମୀମାନେ ତାହା ସବୁ ଶୁଣିବେ ଓ ସେହି ଅନୁସାରେ କାମ କରିବେ । ସେମାନଙ୍କର ମତ ଶୁଣି କ'ଣ ହେବ ? ସମସ୍ତେ ଅବଶ୍ୟ କାକୁଜୀଙ୍କର ମତର ନଥିଲେ, କିନ୍ତୁ ଖଦୀ ସଂସ୍ଥାମାନଙ୍କରେ ଏ ମୁରବି ପ୍ରଧାନ ମନୋଭାବ ପ୍ରବଳ ଥିଲା ଓ ସର୍ବୋଦୟ ଆନ୍ଦୋଳନ ଭିତରେ ତା'ର ପ୍ରଭାବ ଭାଙ୍ଗିବାକୁ ବହୁତ ବର୍ଷ ଲାଗିଥିଲା । କେତେକ ପ୍ରଦେଶର ଖଦୀ ସଂସ୍ଥାମାନଙ୍କରେ ଏବେ ବି ତାହା ପ୍ରବଳ ରହିଛି ।

ଅନୁଗୁଳ ସମ୍ମିଳନୀରେ କିନ୍ତୁ ମୁଁ ଆଦୌ ଅଂଶ ଗ୍ରହଣ କରିପାରି ନଥିଲି । ପ୍ରଦର୍ଶନୀର ଦାୟିତ୍ୱ ମୁଁ ବିଶେଷ ଭାବରେ ନେଇଥାଏ । ଗୁଣନିଧିବାବୁ ବହୁତ ପରିଶ୍ରମ କରି ନାନାଆଡୁ କୁଟୀର ଶିଳ୍ପର କାରିଗରସବୁ ସଂଗ୍ରହ କରି ଆଣିଥା'ନ୍ତି, ସେମାନଙ୍କର କାମର ପ୍ରତ୍ୟକ୍ଷ ପ୍ରଦର୍ଶନ କରାଯିବ ବୋଲି । ସୌର ଓ କନ୍ଧମାନଙ୍କର ଘରର ଦୁଇଟି ନମୁନା କୋରାପୁଟରୁ ଆସିଥିବା ଗାଁର ପୁରୁଷ ଓ ସ୍ତ୍ରୀମାନେ ତିଆରି କରିଥା'ନ୍ତି, ଆଦିବାସୀ ସଂସ୍କୃତିର ପ୍ରତ୍ୟକ୍ଷ ପରିଚୟ ସେଥିରୁ ଲୋକେ ପାଇବେ ବୋଲି । ପ୍ରଦର୍ଶନୀ ଭିତରେ ବହୁତ ଖାଲି ଜାଗା ଛଡ଼ାଯାଇ ସେଥିରେ ଶ୍ୟାମଳିମା ସୃଷ୍ଟିପାଇଁ ଶାଗ ଓ ସୋରିଷ ବୁଣାଯାଇଥାଏ, ଏମିତି ଅନେକ କିଛି ପରିକଳ୍ପନା କରାଯାଇଥାଏ । ମୁଁ କିନ୍ତୁ ସମ୍ମିଳନୀର ପ୍ରାୟ ତିନି ସପ୍ତାହ ପୂର୍ବରୁ ବସନ୍ତରେ ପଡ଼ିଲି । ମତେ ଦୂରରେ ଗୋଟିଏ ଏକ କଣିକିଆ ଘରେ ରଖାଗଲା । ବୋଉ, କୁନ ଓ ବିନୋଦ ସେବା ଶୁଶ୍ରୂଷାରେ ଲାଗିଥା'ନ୍ତି । ମତେ ପେନିସିଲିନ୍ ଇଂଜେକ୍‌ସନ୍ ଦିଆଗଲା ଓ ସେଇଥିରେ ମୁଁ ସୁସ୍ଥ ହେଲି । ମାତ୍ର ସମ୍ମିଳନୀ ଆରମ୍ଭ ବେଳକୁ ବସନ୍ତ ଭଲ ହେଲେ ବି ତିନି ସପ୍ତାହ ଯାଏ ତା'ର ଖୋଳପା ସଂକ୍ରାମକ ଥାଏ ବୋଲି ଡାକ୍ତରମାନେ ମତେ ସମ୍ମିଳନୀରେ ଯୋଗ ଦେବାକୁ ଦେଲେ ନାହିଁ । ଅନେକ ଜିଗର କରିବା ପରେ ଦିନେ ସାରା ଦେହରେ କାର୍ବଲିକ୍ ଲୋଶନ୍ ବୋଳି ହୋଇ ଯାଇ ଦୂରରେ ବସି ଦେଖିଥିଲି ।

ବସନ୍ତରେ ପଡ଼ି ମୁଁ ଖୁବ୍ କଷ୍ଟ ପାଉଥାଏ । ସେଥିପାଇଁ ମୋର ଶୁଶ୍ରୂଷାରେ ଲାଗିଥିବା ସମସ୍ତଙ୍କର ମନ ଖୁବ୍ ବିଷଣ୍ଣ ଓ ଭାରାକ୍ରାନ୍ତ ଥାଏ । ଏହାର ପ୍ରଭାବ ମୋ ଉପରେ ଖୁବ୍ ଜୋରରେ ପଡ଼ିଥାଏ । ଏହାରି ଭିତରେ ଦିନେ ସକାଳୁ ସମ୍ବଲପୁରରୁ ଡାକ୍ତର ଆଇଜାକ୍ ସାନ୍ତରା ଆସି ପହଞ୍ଚି ମତେ ଦେଖିବା ପାଇଁ ଆସିଲେ । ସେ ଆସି ବେଶି କିଛି କଥା କହି ନଥିଲେ, କିନ୍ତୁ ସେ ଘରେ ଯେଉଁ ଭଙ୍ଗୀରେ ପଶିଲେ ଓ "'କ'ଣ ହେଉଛି ? ସବୁ ଠିକ୍ ହେଇଯିବ । ଝରକାଗୁଡାକ କାହିଁକି ବନ୍ଦ ରଖିଚ, ଖୋଲିଦିଅ ।" ଏହି ଧରଣର କେତେଟା କଥା କହିଲେ ସେଥିରେ ମୋର ମନର ମଧ୍ୟ ଯେମିତି ଜାଣି କବାଟ ଝରକା ଖୋଲିଗଲା ଓ ବିଶ୍ୱାସ, ପ୍ରସନ୍ନତା ଓ ଆଶାର ଉଜ୍ଜ୍ୱଳ ଆଲୋକ ମନ ଭିତରେ ପଶି ମୋର ରୋଗ ଯନ୍ତ୍ରଣା ଓ ମାନସିକ ଅବସାଦ ବାରପଣ ଉଭେଇଗଲା । ଅନ୍ୟର ବଳିଷ୍ଠ ଓ ଆଶାବାଦୀ ମାନସିକତାରୁ ଯେ ମଣିଷ କେତେ ବଳ ପାଇପାରେ ତାହା ମୁଁ ସେଇଥର ତୀବ୍ର ଭାବରେ ଅନୁଭବ କଲି, ଚିକିତ୍ସକର ମନୋଭାବ ଓ ବ୍ୟବହାର ବି ଯେ ରୋଗର ବଡ଼ ଔଷଧ ଏ ଉକ୍ତିର ଯଥାର୍ଥତା ମଧ୍ୟ ।

# ଶ୍ରମ ଶିବିର

ଓଡ଼ିଶା ରଚନାତ୍ମକ କର୍ମୀମାନଙ୍କର ଏକ ବାର୍ଷିକ ଶ୍ରମ ଶିବିରର କାର୍ଯ୍ୟକ୍ରମ ୧୯୪୯ରେ ଆରମ୍ଭ ହୋଇଥିଲା । ଏଥିରେ ଏକ ଭିନ୍ନ ପ୍ରକାରର ପରମ୍ପରା ସୃଷ୍ଟି ହୋଇଥିଲା । ଶିବିର ମାର୍ଚ୍ଚ, ଏପ୍ରିଲ ମାସରେ ହେଉଥିଲା । ଏଥିରେ ଓଡ଼ିଶାର ସବୁ ରଚନାତ୍ମକ ସଂସ୍ଥାର ଶହେଯାଏ ନାରୀ ଓ ପୁରୁଷକର୍ମୀ ଯୋଗ ଦେଇଥିଲେ । ଶିବିର ସାତ ବା ଆଠ ଦିନ ଚାଲୁଥିଲା । ଏଥିରେ ସକାଳ ଓଳି ଚାରିଘଣ୍ଟା ଶରୀର ଶ୍ରମପାଇଁ ରଖାଯାଇଥାଏ ଓ ଉପରଓଳି ଚାରିଘଣ୍ଟା ଆଲୋଚନା ପାଇଁ । ସକାଳୁ ଛଅଟା ସାଢ଼େ ଛଅଟା ଭିତରେ ଜଳଖିଆ ଖାଇଦେଇ ସମସ୍ତେ ଶ୍ରମଦାନ କାମରେ ଲାଗିଯା'ନ୍ତି । ଉପରଓଳି ଆଲୋଚନାରେ ପ୍ରତ୍ୟେକ ଯେପରି ଭାଗ ନେବେ ସେଥିପାଇଁ ସମସ୍ତଙ୍କୁ ଉତ୍ସାହିତ କରାଯାଏ । ପ୍ରତ୍ୟେକ କର୍ମୀ ନିଜର କାମର ଅଭିଜ୍ଞତା ବେଶ୍ ବିଶଦ ଭାବରେ ବର୍ଣ୍ଣନା କରୁଥିଲେ ଓ ଏସବୁ ଭିତରୁ ବାହାରୁଥିବା ପ୍ରଶ୍ନ ଉପରେ ପୁଣି ଆଲୋଚନା ଚାଲୁଥିଲା । ଏଥିପାଇଁ ଆଠ ଦିନରେ ପର୍ଯ୍ୟାପ୍ତ ସମୟ ମିଳୁଥିଲା । ଓଡ଼ିଶାରେ ବି ରଚନାତ୍ମକ କାମର ମୁରବିପ୍ରଧାନ ପରମ୍ପରା ଟାଣୁଆ ଥିଲେ ବି ଏ ଶିବିର ମାଧ୍ୟମରେ କର୍ମୀଙ୍କର ଚିନ୍ତାଶକ୍ତିର ବିକାଶ ଓ ଆତ୍ମପ୍ରକାଶ ଦିଗରେ ଖୁବ୍ ପ୍ରେରଣା ମିଳୁଥିଲା । ଏହାଛଡ଼ା, ଗୋଟାଏ ପ୍ରଗାଢ଼ ଭାଇଚାରା ଓ ପାରିବାରିକ ଭାବ ମଧ୍ୟ ଗଢ଼ି ଉଠିଥିଲା । ମୋର ମନେହୁଏ ଯେ, ଭାରତର ଅନ୍ୟ ଯେକୌଣସି ରାଜ୍ୟ ଅପେକ୍ଷା ଓଡ଼ିଶାରେ ରଚନାତ୍ମକ କର୍ମୀମାନେ ଅଧିକ ସଂଘବଦ୍ଧ ଓ ଏକମତ ଏକପ୍ରାଣ ଥିଲେ ।

ସାଧାରଣ ଶିବିରମାନଙ୍କରେ ଶ୍ରମଦାନ ଅନଭ୍ୟସ୍ତ ଅନାଡ଼ି ଲୋକଙ୍କ ଦ୍ୱାରା ଏମିତି ଚାଲେ ଯେ ସାଧାରଣ ଖଟିଖିଆ ଲୋକେ ତାଙ୍କୁ ଧୋବଧାଉଳିଆ ଲୋକଙ୍କର ଏକ ଖେଳ ବୋଲି ବିଚାରନ୍ତି । ଆମର ଏ ଶିବିରମାନଙ୍କରେ ଶ୍ରମଦାନକୁ ବ୍ୟବସ୍ଥିତ ଭାବରେ ଗୁରୁତ୍ୱର ସହିତ କରିବା ସ୍ଥିର ହେଲା । ଅଭ୍ୟସ୍ତ ମୂଲିଆମାନେ ମାଟି ବୋହିବା କାମ ଯେଉଁ ଢଙ୍ଗରେ ସଙ୍ଗଠିତ କରିଥା'ନ୍ତି ଠିକ୍ ସେହି ଢଙ୍ଗରେ ଏ କାମର ସଙ୍ଗଠନ ମଧ୍ୟ କରାଗଲା । ମାଟି ଖୋଳିବା, ମୁଣ୍ଡକୁ ଦେବା ଓ ବୋହିବା କାମ ଅଲଗା ବାଣ୍ଟି ଦିଆଗଲା । ସୀରା ବା ଗାଣ୍ଡୁଆରେ ମାଟି ବୋଝ ମୁଣ୍ଡରେ ବୁହା ହେଲା । କର୍ମୀସଂଖ୍ୟା ଅନୁସାରେ କୋଡ଼ି, କୋଦାଳ, ସୀରା, ଗାଣ୍ଡୁଆ ଆଦି ମଧ୍ୟ ଯେମିତି ଠିକ୍ ସଂଖ୍ୟାରେ ଥାଏ, ଉପକରଣ ଅଭାବରୁ କାମ ଖଇଚା ନ ହୁଏ, ସେଥିପ୍ରତି ଦୃଷ୍ଟି ଦିଆଗଲା । ଦୁଇଘଣ୍ଟା ଲଗାତାର କାମ କରିବା ପରେ ପନ୍ଦର ମିନିଟ୍ ବିଶ୍ରାମ ଓ ତା'ପରେ ପୁଣି ପୁରା ଦୁଇଘଣ୍ଟା କାମ । ବିଶ୍ରାମବେଳେ ଗୁଡ଼ପଣା ପିଇବାକୁ ଦିଆଯାଏ । କୂତରେ କାମ କରୁଥିବା ମୂଲିଆଙ୍କର ମାଟି କାମର ସାଧାରଣ ପ୍ରଚଳିତ ଦର ଅନୁସାରେ ପ୍ରତିଦିନ କାମର ହିସାବ କରାଯାଇ କେତେ ରୋଜଗାର ହେଲା ତାହା କଳନା କରାଯାଇଥାଏ । ଏହାଦ୍ୱାରା ଉତ୍ସାହ ବଢୁଥାଏ ଓ ପ୍ରତିଦିନ ତା' ପୂର୍ବଦିନ ଅପେକ୍ଷା ଅଧିକ କାମ ଦେଖେଇବା ପାଇଁ ସମସ୍ତେ ଉତ୍ସାହର ସହିତ ଚେଷ୍ଟା କରୁଥା'ନ୍ତି । ଅଭ୍ୟାସ ହେବା ସାଙ୍ଗେ ସାଙ୍ଗେ ବୋଝରେ ଟିକିଏ ଟିକିଏ ଅଧିକ ମାଟି ସମସ୍ତେ ବୁହନ୍ତି ।

ପ୍ରଥମ ଶିବିର ବେରବୋଇରେ ହୋଇଥିଲା । ଗାନ୍ଧୀ ସେବା ସଂଘ ସମ୍ମିଳନୀବେଳେ ଶ୍ରମଦାନରେ ଆରମ୍ଭ ହୋଇ ଅସମ୍ପୂର୍ଣ୍ଣ ହୋଇ ପଡ଼ିରହିଥିବା ପୋଖରୀକୁ ଗହୀର କରାହେଲା । ତୃତୀୟ ଶିବିର ଟାଙ୍ଗିରେ ଏକ ପୋଖରୀ ଖୋଳାକାମ ହେଲା । ବେରବୋଇରେ ପ୍ରଥମ ଶିବିରରେ କାମ ବ୍ୟବସ୍ଥିତ ହେବାକୁ ଟିକିଏ ସମୟ ନେଲା । ଯେତେଦୂର ମନେପଡ଼େ ସେଠି ଶିବିରର ଖାଇବା ଖର୍ଚ୍ଚରୁ ପ୍ରାୟ ତିନିପା ଯାଏ ଶ୍ରମଦାନର ମଜୁରୀ ହିସାବ ପହଞ୍ଚିଥିଲା । ପର ଶିବିରମାନଙ୍କରେ କାମ ମୂଳରୁ ବ୍ୟବସ୍ଥିତ ଚାଲିଲା । ଶିବିରମାନଙ୍କରେ ଅଧିକାଂଶତଃ ସେହିସବୁ ଏକା କର୍ମୀ ହିଁ ଯୋଗ ଦେଉଥିଲେ । ତେଣୁ ସେମାନଙ୍କର ଶ୍ରମର ଅଭ୍ୟାସ ମଧ୍ୟ କ୍ରମଶଃ ବଢୁଥିଲା । ଫଳରେ ଉତ୍କଳ ଶିବିରରେ ଦୁଇଦିନ ଖଣ୍ଡେ ପରେହିଁ ଆମଦାନୀ ଖାଇବା ଖର୍ଚ୍ଚର ସମାନ ହୋଇଗଲା । ସେତେବେଳେ ଖର୍ଚ୍ଚ ମୁଣ୍ଡପିଛା ଦୈନିକ ତେର ଚୌଦ ଅଣା ପଡୁଥିଲା । ବ୍ୟୟର ସମାନ ଆୟ ହେବାର ହିସାବ ଯେତେବେଳେ ଘୋଷଣା କରାଗଲା ସେତେବେଳେ କର୍ମୀଙ୍କର ଆନନ୍ଦ ଦେଖେ କିଏ ?

ଏହାଦ୍ୱାରା କର୍ମୀଙ୍କର ଆତ୍ମବିଶ୍ୱାସ ବଢ଼ିଲା । ସେମାନେ ଯେ ଯେକୌଣସି ପରିଶ୍ରମ ଶ୍ରମିକ ପରି କୋଦାଳ ଧରି ଓ ମୁଣ୍ଡରେ ମାଟିବୋଝ ବୋହି ପୂରା ମେହନତ୍ କରିବାକୁ ସକ୍ଷମ ଏ ପ୍ରତୀତିଟା ଆସିବା ସାମାନ୍ୟ କଥା ନଥିଲା । ୧୯୫୨କୁ ଭୂଦାନ ଆରମ୍ଭ ହେବାରୁ ଶ୍ରମ ଶିବିର ପରମ୍ପରା ବନ୍ଦ ହୋଇଗଲା ଓ ଭୂଦାନ ସଂଗ୍ରହ ଉଦ୍ଦେଶ୍ୟରେ ଶିବିର ଚାଲିଲା ।

ଅନୁଗୁଳର ପରବର୍ଷ ସର୍ବୋଦୟ ସମ୍ମିଳନୀ ହାଇଦ୍ରାବାଦ ନିକଟ ଶିବରାମପଲ୍ଲୀ ଗାଁରେ ହେଲା । ବିନୋବା ସେଠାକୁ ପଉନାରଠାରୁ ଚାଲି ଚାଲି ଗଲେ ଓ ତାହାପରେ ତେଲେଙ୍ଗାନା ଅଞ୍ଚଳରେ ପଦଯାତ୍ରା କଲେ ଓ ଭୂଦାନ ଯଜ୍ଞ ଆନ୍ଦୋଳନ ଆରମ୍ଭ ହେଲା । ଏ ସମ୍ମିଳନୀରେ ମୁଁ ପ୍ରଥମ ଥର ପାଇଁ ଆଲୋଚନାରେ ଅଂଶଗ୍ରହଣ କଲି । ସର୍ବୋଦୟ ପ୍ରେମୀମାନେ ଶୁଦ୍ଧ ଆଚରଣର ସଂକଳ୍ପ ଗ୍ରହଣ କରିବା ଉଚିତ ବୋଲି ଏକ ପ୍ରସ୍ତାବ ଆସିଥାଏ । ସେଥିରେ ଥାଏ ଯେ ଲୋକେ ସରକାରୀ କଣ୍ଟ୍ରୋଲ ନିୟମ ଠିକ୍ ଭାବରେ ପାଳିବା ଉଚିତ, ଅଧିକ ଦରରେ ଜିନିଷ କିଣିବା ଉଚିତ ନୁହେଁ ଇତ୍ୟାଦି । ଏଇଟା ମତେ ହେରଂବ ମୈତ୍ର ମାର୍କା ନୀତିବାଦ ପରି ଜଣାଗଲା । ହେରମ୍ବ ମୈତ୍ର ମହାଶୟ ଖୁବ୍ ନୈଷ୍ଠିକ ବ୍ରାହ୍ମ ଓ କଲିକତାର କୌଣସି ଏକ କଲେଜର ଅଧ୍ୟକ୍ଷ ଥିଲେ । ତାଙ୍କ ବିଷୟରେ ବହୁତ ବ୍ୟଙ୍ଗାତ୍ମକ କାହାଣୀ ପ୍ରଚଳିତ ଅଛି । ସେ ଥରେ ତାଙ୍କ ପୁଅ ସାଙ୍ଗରେ ଟ୍ରାମ୍‌ରେ ଗଲାବେଳେ ଦୁଇଖଣ୍ଡ ଟିକଟ କିଣିଲେ ଓ ଦେଖିଲେ ଯେ ସେଥିରେ ଲେଖା ଅଛି -ହସ୍ତାନ୍ତର ନିଷିଦ୍ଧ -ନଟ୍ ଟ୍ରାନ୍ସଫରେବଲ୍ । ତା' ହେଲେ ସେ ପୁଅକୁ ତା ଟିକଟଟା ଦେଉଛନ୍ତି କେମିତି ? ତେଣୁ ପୁଅ ପୁଣି ଅଲଗା ଟିକଟ କିଣିଲା । ଥରେ ବାଟରେ ଜଣେ ଯୁବକ ପଚାରିଲା, "ମହାଶୟ, ଷ୍ଟାର ଥିଏଟର୍‌ଟା କୋଉଆଡ଼େ କହିପାରିବେକି ?" ନାଟକ ଦେଖିବା ତ ସେ ଅନୈତିକ ବୋଲି ବିଚାରୁଥିଲେ । ତେଣୁ ବିରକ୍ତ ହୋଇ କହିଦେଲେ, 'ଜାଣେ ନାହିଁ ।' କିନ୍ତୁ ପର ମୁହୂର୍ତ୍ତରେ ମନେପଡ଼ିଲା ଯେ ସେ ତ ବାଟ ଜାଣନ୍ତି, ମିଛରେ 'ଜାଣେନାହିଁ'

କହିଦେଲେ । ତେଣୁ ସେ ଯୁବକକୁ ପଛରୁ ଡାକି କହିଲେ - "ଶୁଣ ! ମୁଁ ଷ୍ଟାର ଥିଏଟରର ବାଟ ଜାଣେ, କିନ୍ତୁ କହିବି ନାହିଁ ।" ଏଭଳି ମାଛିମରା ନୀତି ବିଷୟରେ ସେ ଏତେ ନିକିଟା ଥିଲେ ବି ଦେଶରେ ସେତେବେଳେ ଚାଲିଥିବା ବ୍ରିଟିଶ ରାଜତ୍ୱର ଅନୈତିକତା, ଦମନ, ଶୋଷଣ ଆଦି ବିଷୟରେ ସେ ତିଳେମାତ୍ରେ ସଚେତନ ଥିଲେ ବୋଲି ଜଣାନାହିଁ ।

ସର୍ବୋଦୟ ଆନ୍ଦୋଳନ ଏହିପରି ଅସଲ ବଡ଼ ବଡ଼ ନୈତିକ ସମସ୍ୟାକୁ ଛାଡ଼ିଦେଇ ବା ଭୁଲିଯାଇ ମାଛିମରା ନୀତିବାଦରେ ପଶୁଛି ବୋଲି ମୋର ଧାରଣା ହେଲା ଓ ସେଥିପାଇଁ ମୁଁ ଏ ପ୍ରସ୍ତାବର ସମାଲୋଚନା କରି ଖୁବ୍ ଜୋରରେ ଦୁଇଚାରି ପଦ କହିଲି । ମୋ କଥାକୁ କେତେକ ପସନ୍ଦ କଲେ ଓ ଆଉ ଅନେକ କଲେ ନାହିଁ । ସର୍ବୋଦୟ ଆନ୍ଦୋଳନର ସେତେବେଳର ପରିସ୍ଥିତିର ଏକ ଉଦାହରଣ ଦିଏ । ବୋଧହୁଏ ଅନୁଗୁଳ ସମ୍ମିଳନୀ ପରେ ଗୁଜରାତରେ ସମ୍ମିଳନୀ କରିବା ପାଇଁ ନିମନ୍ତ୍ରଣ ଦିଆଯାଇଥିଲା । କିନ୍ତୁ ସର୍ଦ୍ଦାର ପଟେଲ ତାହା ବିରୋଧରେ ଥିଲେ । ତେଣୁ ସେଠି ସମ୍ମିଳନୀ ହୋଇପାରିଲା ନାହିଁ । ସର୍ଦ୍ଦାର ବଞ୍ଚିଥିବାଯାଏ ଗୁଜରାତରେ ସମ୍ମିଳନୀ ହୋଇପାରିନଥିଲା ଓ ତା' ପରେ ବି ଦଶବର୍ଷ ଯାଏ ସର୍ଦ୍ଦାରଙ୍କର ଉତ୍ତରାଧିକାରୀମାନଙ୍କର ଡାଉରୁ ସେଠା କର୍ମୀମାନେ ସମ୍ମିଳନୀ ଡାକିବାର ସାହସ କରିପାରିନଥିଲେ । ସର୍ବୋଦୟ ମଣ୍ଡଳରେ ଯେଉଁ ନୂଆ ଚିନ୍ତାଧାରା ଓ ସ୍ୱାଧୀନ ଭୂମିକାର ଉନ୍ମେଷ ହେଉଥିଲା ତାହା ସର୍ଦ୍ଦାର ପଟେଲ ପସନ୍ଦ କରୁନଥିଲେ । ସେ ଚାହୁଁଥିଲେ ଯେ, ସର୍ବୋଦୟ ଆନ୍ଦୋଳନ ରାଜନୀତିକ ନେତାଙ୍କର ହାତବାରସୀ ହୋଇ ରହିବ । ଗୁଜରାତରେ ସେ ସେପରି କରି ରଖିଥିଲେ । ତାଙ୍କ ସହିତ ମତଭେଦ ହେଲେ ଯେତେ ବଡ଼ କର୍ମୀ ହୋଇଥାନ୍ତୁ ପଛକେ ଗୁଜରାତରେ ତିଷ୍ଠିବା ଅସମ୍ଭବ ଥିଲା । କାକା କାଲେଲକରଙ୍କୁ ସୁଦ୍ଧା ଏଥିପାଇଁ ଗୁଜରାତ୍ ଛାଡ଼ିବାକୁ ପଡ଼ିଥିଲା । ଏହା ଫଳରେ ଗୁଜରାତର ରଚନାତ୍ମକ କର୍ମୀଙ୍କର ଚିନ୍ତାଧାରା ସୀମାବଦ୍ଧ ଓ ସ୍ଥାଣୁ ହୋଇଯାଇ ଥିଲା । ଉପରୁ ଆସୁଥିବା ନିର୍ଦ୍ଦେଶ ପାଳନ କରିବାହିଁ ସେମାନେ ଆପଣାର କର୍ତ୍ତବ୍ୟ ମଣୁଥିଲେ । ଭୂଦାନ ଯଜ୍ଞ ଆରମ୍ଭ ହେବାପରେ ଯାଇ ଏ ନିଦା ପାଚିରୀରେ ଟିକିଏ ଫାଟ ଧରିଲା ।

## ଭୂଦାନ ଆନ୍ଦୋଳନ ଆରମ୍ଭ

ସର୍ବ ସେବା ସଂଘର ସଂପାଦକ ହେବାପରେ ବାପା ଦେଶରେ ଖୁବ୍ ବୁଲାବୁଲି କଲେ । ଥରେ ସେ ଆସାମ, ଉତ୍ତର ବଙ୍ଗ ଆଦି ବୁଲିଆସି କହିଲେ ଯେ ପୂର୍ବ ଭାରତରେ କମ୍ୟୁନିଷ୍ଟ ପ୍ରଭାବ ଯେପରି ବଢ଼ିଚାଲିଛି ଓ ଲୋକଙ୍କ ଭିତରେ ଯେପରି ଅସନ୍ତୋଷ ରହିଛି ତା'ର ଯଦି କିଛି ପ୍ରତିକାର ନକରାଯିବ ତେବେ ପୂର୍ବାଞ୍ଚଳ ଦିନେ ଭାରତରୁ ବିଚ୍ଛିନ୍ନ ବି ହୋଇଯାଇପାରେ । ଏ କଥା ସେ ସେତେବେଳେ ରାଷ୍ଟ୍ରପତି ରାଜେନ୍ଦ୍ରବାବୁଙ୍କୁ ମଧ୍ୟ ଜଣାଇଥିଲେ । ସେହି ସମୟରେ ସେ ଏସବୁ ବିଷୟରେ ବିନୋବାଙ୍କ ସହିତ ତାଙ୍କର ଏକ ଦୀର୍ଘ ଆଲୋଚନା ସାରାଂଶ ଶୁଣାଇ କହିଲେ ଯେ, ବିନୋବା ତାଙ୍କୁ କହିଲେ, "ଗୋପବାବୁ ଯଦି ବର୍ତ୍ତମାନ ଆମେ କିଛିନ କରିପାରିବା ତ ଆମ ହାତରୁ ଖୁବ୍ ଶୀଘ୍ର ବାହି ଚାଲିଯିବ ।"

ଏହାରି ପରେ ପରେ ଭୂଦାନ ଯଜ୍ଞ ଆନ୍ଦୋଳନର ସୂତ୍ରପାତ ହେଲା । ଗାନ୍ଧୀଜୀଙ୍କର ମହାପ୍ରୟାଣ ପରେ ଆମର ମାନସିକ ସ୍ଥିତିର ବର୍ଣ୍ଣନା ପୂର୍ବରୁ କରିଛି । ତେଣେ କଂଗ୍ରେସ ଓ ତା'ର ଶାସନର କ୍ରମ ଅବନତି ଓ ଏଣେ ରଚନାତ୍ମକ କାମର ଧରାବନ୍ଧା ଗତ ଯୋଗୁଁ ଏ ଅସନ୍ତୋଷ ଅଧିକ ତୀବ୍ର ହିଁ ହେଇ ଚାଲିଥାଏ । ଆମର ବିରକ୍ତି ଓ ଅନାସ୍ଥା କେତେ ଦୂରକୁ ଯାଇଥିଲା ତା'ର ଏକ ଉଦାହରଣ ଦିଏ । ଟାଇଁସୀ ରଚନାତ୍ମକ କର୍ମୀ ଶିବିରକୁ ଦାଦା ଯାଇଥିଲା । ଶିବିରର ସବୁ କାମରେ ସେ ପୂରା ଯୋଗ ଦେଉଥାଏ, କିନ୍ତୁ ତା' ସାଙ୍ଗରେ ଆମେ କେହି ଭଲକରି କଥା ବି କହିଲୁ ନାହିଁ । ସେଠୁ ସେ ଏତେ ଦୁଃଖିତ ହେଇ ଫେରିଲା ଯେ, ଭୁବନେଶ୍ୱରରେ ପହଞ୍ଚି ଅନଶନ କରିବ ବୋଲି ବିଚାର କରୁଥିଲା ।

୧୯୫୨ ରେ ସାଧାରଣ ନିର୍ବାଚନ ପୂର୍ବରୁ ସେଥିରେ ସର୍ବୋଦୟ କର୍ମୀଙ୍କର ଭୂମିକା କ'ଣ ହେବା ଉଚିତ ସେ ବିଷୟରେ ବିଚାର କରି ବାପା, ଫକୀର ମିଶ୍ର, ରାମଚନ୍ଦ୍ର ମିଶ୍ର, ମୁଁ ଓ ଆଉ ତିନି ଚାରି ଜଣ ଗୋଟିଏ ବିବୃତି ଏକ ପ୍ରଚାର ପତ୍ର ଆକାରରେ ଛାପି ବଣ୍ଟେଇଥିଲୁ । ଏହାର ଶୀର୍ଷକ ଥିଲା – "ଆମେ ଭୋଟ ନ ଦେବୁ କାହିଁକି ?" ଏଥିରେ ଆମେ ଘୋଷଣା କରିଥିଲୁ ଯେ କଂଗ୍ରେସ ଜନସ୍ୱାର୍ଥ ରକ୍ଷା କରିବାକୁ ସମର୍ଥ ଥିବା ଭଳି ଦିଶୁଥିବାରୁ ଆମେ କାହାରିକୁ ଭୋଟ ଦେବୁନାହିଁ ବୋଲି ସ୍ଥିର କରିଛୁ । ଏ ପ୍ରଚାର ପତ୍ର ପାଇ ଓଡ଼ିଶାର କଂଗ୍ରେସ ନେତାମାନେ ଖୁବ୍ କ୍ରୁଧ ହେଇଥିଲେ । ସେମାନେ ଧରି ନେଇଥିଲେ ଯେ ସର୍ବୋଦୟ କର୍ମୀମାନେ କଂଗ୍ରେସକୁ ବିନାବାଡ଼େ ସମର୍ଥନ କରିବେ । ଆମେ ଏଭଳି ଏକ ଭୂମିକା ଗ୍ରହଣ କରିବାର କିଛିଦିନ ପରେ ଅଖିଳ ଭାରତ ସ୍ତରରେ ସର୍ବ ସେବା ସଂଘ କଂଗ୍ରେସରୁ ଅଲଗା ନିଜର ସ୍ୱତନ୍ତ୍ର ଅବସ୍ଥିତି ସାବ୍ୟସ୍ତ କଲେ ।

୧୯୫୧, ଏପ୍ରିଲ ୧୮ ରେ ତ ଭୂଦାନ ଯଜ୍ଞ ଆରମ୍ଭ ହେଲା । ସେତେବେଳେ ସର୍ବୋଦୟ ହିନ୍ଦୀ ମାସିକ ବାହାରୁଥାଏ । ସେଥିରେ ବିନୋବାଙ୍କର ବକ୍ତୃତାର ବିବରଣୀ ବାହାରୁଥାଏ । ସେସବୁ ପଢ଼ି ମୋର ହୃଦବୋଧ ହେଲା ଯେ ବିନୋବା ଠିକ୍ ସମସ୍ୟା ହାତକୁ ନେଇଛନ୍ତି ଓ ଠିକ୍ ଦିଗରେ ଗୋଡ଼ ବଢ଼େଇଛନ୍ତି । ତାଙ୍କ ବକ୍ତୃତା ପଢ଼ି ଲାଗୁଥାଏ ଯେମିତିକି ମୋର ମନରେ ଯେଉଁ କଥାଗୁଡାକ ଥିଲା ଓ ଯାହାକୁ ମୁଁ ସ୍ପଷ୍ଟ ଭାବରେ ରୂପ ଦେଇ ପାରୁ ନଥିଲି ତାହାହିଁ ବିନୋବା ଭଲ କରି ସଜାଡ଼ି ଥୋଉଛନ୍ତି । ଜମି ସମସ୍ୟାଟା ହିଁ ଏ ଦେଶର ମୌଳିକ ପ୍ରଶ୍ନ ବୋଲି ମୋର ମୋଟାମୋଟି ହୃଦ୍‌ବୋଧ ହେଇଥାଏ । ବିନୋବା ଯେପରି ଭାବରେ ଆନ୍ଦୋଳନ ଆରମ୍ଭ କରିଥାନ୍ତି ଓ ତାଙ୍କର ଚିନ୍ତାଧାରା ତ ଠିକ୍ ମନେହେଉଥାଏ । କିନ୍ତୁ ଜମି ସମସ୍ୟାର ସମାଧାନ ପାଇଁ ଆଗକୁ ସତ୍ୟାଗ୍ରହ ଆବଶ୍ୟକ ହେବ ବୋଲି ମୁଁ ଅନୁଭବ କରୁଥାଏ । ଭୂଦାନ ଯଜ୍ଞ ଆରମ୍ଭ ହେବାର ଅଳ୍ପଦିନପରେ ମୁଁ ବିନୋବାଜୀଙ୍କୁ ଚିଠି ଲେଖି ପଚାରିଥିଲି ଯେ ଜମିର ପୁନର୍ବଣ୍ଟନରେ ଭୂମିହୀନଙ୍କର ସକ୍ରିୟ ଭୂମିକା କ'ଣ ହେବ ? ସେ ଜବାବ ଦେଇଥିଲେ ଯେ ଏ ଆନ୍ଦୋଳନର ବାର୍ତ୍ତା ପ୍ରଥମେ ଭାରତର କୋଣ କୋଣରେ ପହଞ୍ଚି ଯାଉ, ତା'ପରେ ଭୂମିହୀନମାନେ ସେଥିରେ କ'ଣ କରିବେ ତାହା ଦେଖାଯିବ ।

ସେତେବେଳେ କ୍ଷମତାରେ ଥିବା ନେତାମାନେ କହିବାକୁ ଆରମ୍ଭ କରିଥାନ୍ତି ଯେ, ଗଣତନ୍ତ୍ରରେ ସତ୍ୟାଗ୍ରହର ସ୍ଥାନ ନାହିଁ । ଗଣତନ୍ତ୍ରରେ ସତ୍ୟାଗ୍ରହର ଆବଶ୍ୟକତା କମ୍ ପଡ଼ିବ ସତ, ମାତ୍ର ତଥାପି ସେଥିରେ ତା'ର ଆବଶ୍ୟକତା ରହିଛି ବୋଲି ବିନୋବା କହୁଥିବାରୁ ମଧ୍ୟ ସନ୍ତୋଷ ଅନୁଭବ କରୁଥାଏ । ରାଷ୍ଟ୍ରପତିଙ୍କର ଓ କେନ୍ଦ୍ର ମନ୍ତ୍ରୀଙ୍କର ଠାଟବାଟ ଓ ମୋଟା ଦରମା ବିରୋଧରେ କିଛି କରିବା ଉଚିତ୍ ବୋଲି ମୋ ମନରେ ଉଠୁଥାଏ । ବେଳେବେଳେ ତୀବ୍ର ଭାବାବେଗରେ ତାହା ବିରୋଧରେ ଅନଶନ କରିବା କଥା ବି ମନରେ ଉଠୁଥାଏ । ଏ ବିଷୟରେ ମୁଁ ବିନୋବାଙ୍କୁ ପଚାରିଥିଲି ଓ ସେ ନାନା ବକ୍ତୃତାରେ ଏ ବିଷୟରେ ଆଲୋଚନା କରି ପ୍ରଥମେ ଦେଶରେ ସମତା ପାଇଁ ହାୱା ସୃଷ୍ଟି କରିବାର ଆବଶ୍ୟକତା ବିଷୟରେ ଯାହା କହିଥିଲେ ତାହା ମଧ୍ୟ ମୋର ମନକୁ ପାଉଥିଲା ।

ତେଣେ ୧୯୪୯ ଚୀନ୍‌ରେ କମ୍ୟୁନିଷ୍ଟ ରାଜ୍ୟ ସ୍ଥାପିତ ହେଉଥାଏ ଓ ସେଠାରେ ଜମି ବଣ୍ଟନ, ଲୋକଙ୍କର ଶ୍ରମ ଶକ୍ତିକୁ କାମରେ ଲଗାଇବା ଉଦ୍ୟମ ଆଦିର କିଛି କିଛି ଖବର ପହଞ୍ଚୁଥାଏ । ବିନୋବା ମଧ୍ୟ ସର୍ବୋଦୟ ମାସିକରେ ଭୂଦାନ ଆରମ୍ଭ ପୂର୍ବରୁ ଲେଖିଥିଲେ ଯେ ଚୀନ୍‌ର ଏ ବିପ୍ଲବ ଯୋଗୁଁ ଉଦ୍‌ବେଗ ବା ଆଶଂକା ଜନ୍ମିବା ପରିବର୍ତ୍ତେ ମନରେ ଉତ୍ସାହ ଆସୁଛି, ଆମେ ବି ନୂଆ ସମାଜ ପାଇଁ ଆହୁରି ଲାଗିପଡ଼ି କାମ କରିବା ପାଇଁ । ଉତ୍ତର ପ୍ରଦେଶର ବିଶିଷ୍ଟ ଜନସେବୀ ଓ ବିଦ୍ୱାନ ପଣ୍ଡିତ ସୁନ୍ଦରଲାଲ ଚୀନ୍‌ରେ ଘେରାଏ ବୁଲିଆସି ଖଣ୍ଡେ ବହି ଲେଖିଥିଲେ । ସେ ସେବାପୁରୀ ସର୍ବୋଦୟ ସମ୍ମିଳନୀରେ ଚୀନ୍ ବିଷୟରେ କେତେକ ବିବରଣୀ ମଧ୍ୟ ଦେଇଥିଲେ । ଚୀନ୍ ବିଷୟରେ କିନ୍ତୁ କିଶୋରଲାଲ୍‌ଭାଇ ଓ ଅନ୍ୟ କେତେକଙ୍କର ମତ ମତେ ଭଲ ଲାଗୁ ନଥାଏ । କିଶୋରଲାଲ୍‌ଭାଇ ତାଙ୍କର ଏ ବିଷୟରେ ଲେଖାମାନଙ୍କର ହିଂସା ଓ ଅହିଂସାର ସ୍ଥୂଳ ପ୍ରଶ୍ନ ଉଠେଇ ଜାଣି କହୁଥାନ୍ତି ଯେ ଆମେ ଅହିଂସାବାଲା, ଚୀନ୍‌ରେ କ'ଣ ହେଲା ନ ହେଲା ସେ ଆଡ଼କୁ ମନ ଦେଲେ ଚଗଲା ହେଇଯିବା । ସେ ଅହିଂସାର ଯେପରି ବ୍ୟାଖ୍ୟା କରୁଥାନ୍ତି ଯେ, ଜମିର ପୁନର୍ବଣ୍ଟନ ଅହିଂସା ସହିତ ଖାପ ଖାଇବ ନାହିଁ, ବ୍ୟକ୍ତିଗତ ମାଲିକାନା ଲୋପ ବି ନୁହେଁ ଇତ୍ୟାଦି, ସେସବୁ ବି ମୋ ତଣ୍ଟିରେ ଗଳୁନଥାଏ । କୁମାରାପ୍ପା ସୋଭିଏତ୍ ଦେଶ ବୁଲି ଆସିଥିଲେ ଓ ସେ ସାମ୍ୟବାଦୀ ଅର୍ଥନୀତିର ଟିକିଏ ପ୍ରଶଂସା କରିବାରୁ ତାଙ୍କୁ ଏକପ୍ରକାର ଏକଘରିକିଆ କରି ଦିଆଗଲା । ତାଙ୍କର ଲେଖା, ବକ୍ତୃତା ଆଦିକୁ ସର୍ବୋଦୟର ପତ୍ରପତ୍ରିକାରେ ବହୁତ କମ୍ ସ୍ଥାନ ଦିଆ ହେଲା । ରବିଶଙ୍କର ମହାରାଜ ମଧ୍ୟ ଚୀନ୍ ସରକାରଙ୍କ ନିମନ୍ତ୍ରଣରେ ସେଠାକୁ ଯାଇଥିଲେ ଓ ସେଠୁ ଫେରିଆସି ସେଠାରେ ଗାଁ ଗହଳରେ ହେଉଥିବା ପରିବର୍ତ୍ତନ ବିଷୟରେ ବିଚାରିପଦ ପ୍ରଶଂସାସୂଚକ କଥା କହିଛନ୍ତି କି ନାହିଁ ତାଙ୍କୁ ଯେପରି ଘେରରେ ପକେଇ ଆଉ କଥା କୁହାଇ ଦିଆଗଲାନାହିଁ ତାହା ବି ମତେ ଖରାପ ଲାଗିଥିଲା । ମୋର ଧାରଣା ଏଗୁଡାକ ସବୁ କଂଗ୍ରେସ ନେତାଙ୍କର ଇଶାରାରେ ହେଉଥାଏ ।

ଚୀନ୍‌ରେ ଭୂସଂସ୍କାର ଓ ଲୋକଙ୍କର ବେକାର ଶ୍ରମକୁ କାମରେ ଲଗାଇବାର ଯେଉଁସବୁ

ଉଦ୍ୟମ ହେଉଥାଏ ତାକୁ ମୁଁ ସ୍ୱାଗତ କରି ଗ୍ରାମସେବକରେ ଲେଖିଥିଲି ଯେ ଏଥିରେ ହିଂସା ଅହିଂସାର ପ୍ରଶ୍ନ ଉଠେଇବା ଅବାନ୍ତର । ମେଲେରିଆ ଯଥାର୍ଥ ଔଷଧରୂପେ ଯେ କୁଇନାଇନ୍ ଆବିଷ୍କାର କଲା ସେ ହିଂସାରେ ବିଶ୍ୱାସ କରୁଥିଲା କି ଅହିଂସାରେ - ଏ ପ୍ରଶ୍ନ ଉଠେଇବାର କି ଆବଶ୍ୟକତା ଅଛି ? ସେହିପରି ଜନବହୁଳ, ଅଳ୍ପ ଜମି ଥିବା, ଦରିଦ୍ର ଦେଶର ଅର୍ଥନୀତି ଗରିବ ଲୋକଙ୍କର କଲ୍ୟାଣ ଦୃଷ୍ଟିରୁ କିପରି ହେବା ଉଚିତ ତାହାର ଯଥାର୍ଥ ରୂପ ଅହିଂସବାଦୀ ଗାନ୍ଧୀ ଯାହା ଦେଖିଥିଲେ ହିଂସାବାଦୀ ଚୀନ୍‌ର ନେତାମାନେ ବି ପ୍ରାୟ ତାହାହିଁ ଦେଖିପାରିଛନ୍ତି । ସେ ସମାଧାନକୁ କାର୍ଯ୍ୟରେ ଲଗାଇବା ପନ୍ଥା ବିଚାରିଲାବେଳକୁ ହିଂସା ଅହିଂସାର ପ୍ରଶ୍ନ ଉଠିବ, ରୋଗୀକୁ କୁଇନାଇନ୍ ଜବରଦସ୍ତି ଗିଳାଯିବ କି ବଝେଇ ସୁଝେଇ ।

ଏ ବିଷୟରେ ମୋର ଦୃଷ୍ଟିକୋଣ ପରେ ଆଉଟିକିଏ ସ୍ପଷ୍ଟ ହେଉଛି, ଲୋକଙ୍କର ଆତ୍ମନିୟନ୍ତ୍ରଣର ଅଧିକାର ସ୍ୱୀକାର କରିବାଟା ଅହିଂସା ନୀତିର ଏକ ମୁଖ୍ୟ ଅଙ୍ଗ । ସୋଭିଏତ୍ ମାର୍କା ସାମ୍ୟବାଦରେ ହିଂସାର ମଞ୍ଜି ଏଇଥିରେ ରହିଛି ଯେ, ସେଥିରେ ଏକଛତ୍ର ଶାସନ ମାଧ୍ୟମରେ ଲୋକଙ୍କ ଉପରେ ଉପରଆଡ଼ୁ ସବୁ ଲଦିଦେବାରେ ବିଶ୍ୱାସ ରହିଛି । ଚୀନ୍‌ରେ ମଧ୍ୟ ଉପରସ୍ତରରେ ଏକଛତ୍ର ଶାସନ ରହିଛି ମାତ୍ର ତାହା ଭିତରେ ବି କମ୍ୟୁନ୍‌ମାନଙ୍କର ସ୍ୱାୟତ୍ତ ତା'ର ଅଧିକାର ସ୍ୱୀକୃତ ହେବାର ଅହିଂସାର ଟିକିଏ ଝଲକ ରହିଥିଲା । ଏବେ ମାଓ-ସେ-ତୁଙ୍ଗଙ୍କର ମୃତ୍ୟୁପରେ ଯେଉଁସବୁ ସଂସ୍କାର ଚାଲିଛି ସେଥିରେ କମ୍ୟୁନ୍‌ମାନଙ୍କର ଏ ସ୍ୱାଧୀନତା କେତେଦିନ ରହିବ ତାହା ଦେଖିବାର କଥା ।

ମାଓ-ସେ-ତୁଙ୍ଗଙ୍କର ଖଣ୍ଡେ ଜୀବନୀ- ଆନ୍ନା ଲୁଇସ୍ ଷ୍ଟ୍ରଙ୍ଗ ବା ଏଡ୍‌ଗାର୍ ସ୍ନୋ'ଙ୍କ ଲେଖା -ସେତେବେଳେ ଆମ ହାତରେ ପଡ଼ିଥିଲା । ସେଥିରେ ଚୀନ୍‌ର ବିପ୍ଳବ ପ୍ରଚେଷ୍ଟାର ମୋଟାମୋଟି ଇତିହାସ ଥାଏ । ଫକୀରବାବୁ ଓ ମୁଁ ସେତେବେଳେ ସାଙ୍ଗହେଇ ଭୂଦାନ ପ୍ରଚାରରେ ବୁଲୁଥାଉ ଓ ଚୀନ୍ ସାଙ୍ଗରେ ଭାରତର ତୁଳନା କରି ବହୁତ ଆଲୋଚନା କରୁଥାଉ । ଚୀନ୍‌ର ବିପ୍ଳବ ପ୍ରଚେଷ୍ଟା ଓ ମାଓଙ୍କ ଜୀବନରୁ ଆମକୁ ବହୁତ ଉତ୍ସାହ ମିଳୁଥାଏ । ମାଓଙ୍କର ନାମରଗୋଟିଏ ଅର୍ଥ ସେ ବହିରେ ଦିଆହୋଇଥିଲା । ତା'ର ଭାରତୀୟ ଅନୁବାଦ ବି ଆମେ କରିଥିଲୁ । ସେଥିରେ 'ଉଷାର ବାହନ' କି 'ଉଷାର ରଥ' ଏମିତି ଗୋଟାଏ ପଦ ଥିବାର ମନେପଡୁଛି ।

୧୯୫୦ ଶେଷ କି ୧୯୫୧ ଆରମ୍ଭରେ ବାପା ବିଭିନ୍ନ ଜିଲ୍ଲାରେ ଖଦୀଧାରୀ ସମ୍ମିଳନୀ କରେଇଥିଲେ । ଜିଲ୍ଲାର ସମସ୍ତ ଖଦୀ ପିନ୍ଧାଳିଙ୍କୁ ସେଥିକୁ ନିମନ୍ତ୍ରଣ କରାଯାଉଥିଲା ଓ ରଚନାତ୍ମକ କାମର ପ୍ରସାର ବିଷୟରେ ଆଲୋଚନା କରାଯାଉଥିଲା । ଖଦୀ ପିନ୍ଧିବାରେ ନିଷ୍ଠାଥିବା ବିଭିନ୍ନ ମତର ଲୋକଙ୍କୁ ଏକାଠି କରିବାର ଏ ଏକ ଉଦ୍ୟମ ଥିଲା । ସମ୍ବଲପୁରର ସମ୍ମିଳନୀ ସହରଠାରୁ ପାଞ୍ଚ ସାତ ମାଇଲ୍ ଦୂରରେ କୋଉ ଏକ ଗାଁରେ ହେଇଥିଲା । ସେଠି ଡାକ୍ତର ଆଇଜାକ୍ ସାନ୍ତ୍ରା କେବଳ ଖଣ୍ଡେ ପାଇଜାମା ପିନ୍ଧି ଖାଲି ଦେହରେ ସାଇକେଲ୍ ଚଢ଼ି ପହଞ୍ଚିଥିଲେ । ଏହାର କୈଫିୟତ୍ ସେ ଦେଲେ ଯେ, ତାଙ୍କର ଖଦୀ କୁର୍ତ୍ତା ନଥିଲା । କିନ୍ତୁ ସମ୍ମିଳନୀରେ ଯୋଗ

ଦେବାର ପ୍ରବଳ ଆଗ୍ରହ ଥିଲା । ତେଣୁ ସେ କୁର୍ଶୀ ନପିନ୍ଧି ଚାଲି ଆସିଲେ । କଟକରେ ହେବାର ଥିବା ସମ୍ମିଳନୀରେ ସଭାପତିରୂପେ ଜଣେ ବିଶିଷ୍ଟ ବିଚାରପତିଙ୍କୁ ମୋ ଅଜାଣାରେ ବାପା ହେରିକା ବାଛିଥିଲେ । ସେ ଅବଶ୍ୟ ଅଭ୍ୟସ୍ତ ଖଦୀ ପିନ୍ଧାଳି, ମାତ୍ର କ୍ଷମତା ସହିତ ସଂପୃକ୍ତଥିବା କୌଣସି ବ୍ୟକ୍ତିଙ୍କୁ ଏସବୁ କାମରେ ପ୍ରାଧାନ୍ୟ ଦେବାର ମୁଁ ଏତେ ତୀବ୍ର ବିରୋଧୀ ଥିଲି ଯେ, ଏକଥା ଜାଣିବା ମାତ୍ରେ ମୁଁ ବରୀ ପଳେଇ ଯାଇଥିଲି । ସମ୍ମିଳନୀରେ ମୋର ଯୋଗଦେବା ହେଇ ନ ଥିଲା । ଅବଶ୍ୟ ପରେ ବୁଝୁଛି ଯେ ବିଚାରପତିଙ୍କୁ ଶାସନକର୍ତ୍ତାଙ୍କ ଠାରୁ ଅଲଗା କରି ଦେଖିବା ଉଚିତ ।

ବାପାଙ୍କ ମନରେ ଅସନ୍ତୋଷଟା ଆହୁରି ଗଭୀର ସ୍ତରଯାଏ ବ୍ୟାପିଥାଏ । ଦେଶରେ ଯାହା ଚାଲିଥାଏ ସେଥିରେ ଯେମିତି ସେମିତି ନିଜ କାମରେ ବି ସନ୍ତୋଷ ତ ମିଳୁନଥାଏ । ପୁରୁଣା ଜୀବନକୁ ପିଙ୍ଗିଦେଇ ଗୋଟାଏ ନୂଆ ବାଟ ଖୋଜିବାର, ନୂଆ ପ୍ରକାର ଜୀବନ ଆରମ୍ଭ କରିବାର ଏକ ଉତ୍‌କଟ ଆକାଂକ୍ଷା ତାଙ୍କ ଭିତରେ ଜାଗିଥିଲା । ୧୯୫୨ ଜାନୁୟାରୀରେ ବାପା ଓ ବୋଉ ପଦଯାତ୍ରାରେ ବାହାରିବେ ବୋଲି ସ୍ଥିର କଲେ । ଏ ପଦଯାତ୍ରା ଆରମ୍ଭରେ ବାଲିବିଲ ଓ ରାମଚନ୍ଦ୍ରପୁରରୁ କିଛି ଭୂଦାନ ମିଳିଲା । କିନ୍ତୁ ତାଙ୍କର ଏ ପଦଯାତ୍ରା ଭୂଦାନପାଇଁ ଆରମ୍ଭ ହେଇଥିଲା ବୋଲି କହିହେବ ନାହିଁ । ପୁରୁଣା ଜୀବନକୁ ତ୍ୟାଗ କରିବାର ପ୍ରତୀକ ସ୍ୱରୂପ ସେ ମହତାବ ବାବୁଙ୍କ ଠାରୁ ଉପହାର ପାଇଥିବା ଘଣ୍ଟାଟି ଓ ନରିମାମୁଁ ଦେଇଥିବା ପାର୍କର କଲମଟି ସେମାନଙ୍କୁ ଫେରସ୍ତ ପଠେଇ ଦେଲେ । ଯାତ୍ରା ଆରମ୍ଭ କରିବା ପୂର୍ବରୁ କହିଲେ ଯେ, ଧେ ସାଧାରଣ ସେବାକ୍ଷେତ୍ରକୁ ଆସିବା ବେଳେ ଯେଉଁ ଗୀତା ଓ ଗୀତାଂଜଳିରୁ ପ୍ରେରଣା ପାଇଥିଲେ ତାହାକୁହିଁ ପୁଣି ଏକମାତ୍ର ପାଥେୟ କରି ସେ ନୂଆ ବାଟକୁ ଗୋଡ଼ କାଢୁଛନ୍ତି । ବାପା ବୋଉ ଏ ଦୁଇ ଜଣଙ୍କ ସାଙ୍ଗରେ ଜଣେ ଭାରୁଆ ଜିନିଷପତ୍ର ଧରି ଚାଲିଲା ଓ ସେମାନେ ସାତ ତାରିଖ ଭୋରରୁ ସୃଜନପୁର ଆଡ଼କୁ ଯାତ୍ରା ଆରମ୍ଭ କଲେ ।

ବାପା ଭୂଦାନ କଥା କହୁଥା'ନ୍ତି କିନ୍ତୁ ପ୍ରଥମ ପ୍ରଥମ ଭୂଦାନ ମାଗୁ ନ ଥା'ନ୍ତି । ତାଙ୍କର ବକ୍ତୃତାର ଗୋଟିଏ ମୁଖ୍ୟ ଧ୍ୱନି ଥିଲା ଯେ, ବଳଦକୁ ଅଡ଼େଇବା ପାଇଁ ଯେମିତି ଚାଷୀ ହାତରେ ପାଞ୍ଚଣ ଲୋଡ଼ା ହୁଏ, ସେମିତି ସରକାରକୁ ଅଡ଼େଇବା ପାଇଁ ଲୋକଶକ୍ତିର ପାଞ୍ଚଣ ଲୋଡ଼ା । ପୁରୀ, ଗଞ୍ଜାମ, କୋରାପୁଟ୍ ଦେଇ ଯାଇ ସମ୍ବଲପୁର ଜିଲ୍ଲାରେ ପହଞ୍ଚି ଯାଇ ସେମାନେ ଭୂଦାନ ମାଗିବାର ପରିବେଶ ପାଇଲେ । ସେଠାରେ ଗାଁଗହଳର ମହିଳାମାନଙ୍କର ଉତ୍ସାହ ଓ ଭାବନା ଦେଖି ସେମାନେ ଖୁବ୍ ପ୍ରଭାବିତ ହେଇଥିଲେ । ଗାଁ ପରେ ଗାଁରେ ମହିଳାମାନେ ସଭାରେ ସମସ୍ୱରରେ କହିଥିଲେ ଯେ ଆମ ହାତରେ ଭାତ ହାଣ୍ଡି ଅଛି, ଆମେ ଆମ ଗାଁରେ କାହାକୁ ଉପାସ ଭୋକରେ ରହିବାକୁ ଦେବୁ ନାହିଁ । ସେଇଠି ସେ ଭୂଦାନ ମାଗିବା ଆରମ୍ଭ କଲେ ଓ ତାହା ମିଳିଲା ମଧ୍ୟ ।

ବାଟରେ କୋରାପୁଟ୍ ଜିଲ୍ଲାରେ ତାଙ୍କର ମାଗିବା ଆରମ୍ଭ କରିବାର ଇଚ୍ଛା ଥିଲା, ମାତ୍ର

ସେଠାର ମୁଖ୍ୟ କର୍ମୀ ବିଶ୍ୱନାଥ ପଟ୍ଟନାୟକ ଓ ରତନ୍ ଦାସ ହେରିକା ସାହୁକାରଙ୍କ କବଳରୁ ଆଦିବାସୀଙ୍କର ଜମି ମୁକ୍ତ କରିବା ପାଇଁ ସତ୍ୟାଗ୍ରହ ଆରମ୍ଭ କରିବାକୁ ସଜବାଜ ହେଉଥିବାରୁ ସେ ଜିଲ୍ଲାରେ ଆଉ ବେଶି ସମୟ ନ ଦେଇ ଆଗେଇ ଯାଇଥିଲେ ।

ପଦଯାତ୍ରାବେଳେ ଯେଉଁ ପ୍ରତ୍ୟକ୍ଷ ଓ ବ୍ୟାପକ ଲୋକ ସମ୍ପର୍କ ହେଲା ଓ ଲୋକଙ୍କଆଡୁ ଯେଉଁ ପ୍ରତିସ୍ପନ୍ଦ ମିଳିଲା ସେଥିରେ ବାପାଙ୍କର ଅସ୍ଥିର ଭାବଟା କଟିଗଲା ଓ ସେ ନୂଆ ଉତ୍ସାହ ନେଇ ବର୍ଷା ଆରମ୍ଭ ପୂର୍ବରୁ କଟକ ଫେରିଲେ । ଓଡ଼ିଶାରେ ଭୂଦାନ ଆନ୍ଦୋଳନ ରୀତିମତ ଆରମ୍ଭ କରିବା ବିଚାର ପଡ଼ିଲା ଓ ସେଥିପାଇଁ ଖଣ୍ଡସାହିଠାରୁ ଏକ ବୈଠକ ହୋଇ ଏକ ସମିତି ମଧ୍ୟ ଗଢ଼ାହେଲା । ଏହାପରେ ବାପା ଆସି କିଛିଦିନ ବରୀରେ ରହିଲେ । ୧୯୫୨ ବର୍ଷା ଚାରିମାସ ବିନୋବା କାଶୀରେ ରହିଥା'ନ୍ତି । ବର୍ଷାଦିନ ଯୋଗୁଁ ପଦଯାତ୍ରା ବନ୍ଦ ରଖୁଥା'ନ୍ତି । ଏହାପରେ ଅବଶ୍ୟ ସେ ବର୍ଷାକୁ ନମାନି ଲଗାତାର ପଦଯାତ୍ରା ଚଳେଇଲେ । ଖରା, ବର୍ଷା ବା ଶୀତ କୌଣସି କାରଣରୁ ସେ ତାହା ବନ୍ଦ କରୁ ନଥିଲେ । ବ୍ୟାସଜୀ ଓ ମୁଁ.ତାଙ୍କ ସାଙ୍ଗରେ ଦେଖା କରି ଗଲୁ । ସେତେବେଳକୁ ଉତ୍ତରପ୍ରଦେଶରେ ପାଞ୍ଚଲକ୍ଷ ଏକର ଭୂଦାନ ସଂଗ୍ରହ କରାଯିବ ବୋଲି ଏକ ଲକ୍ଷ୍ୟ ଭୂଦାନ କାମରେ ଲାଗିଥିବା କର୍ମୀମାନେ ଗ୍ରହଣ କରିଥାନ୍ତି ଓ ତାପରେ ସାରାଦେଶରୁ ଦୁଇ ବର୍ଷ ଭିତରେ ପଚିଶ ଲକ୍ଷ ଏକର ଜମି ସଂଗ୍ରହ କରାଯିବ ବୋଲି ଉତ୍ତରପ୍ରଦେଶର ସେବାପୁରୀଠାରେ ହୋଇଥିବା ସର୍ବୋଦୟ ସମ୍ମିଳନୀରେ ସଙ୍କଳ୍ପ ଗ୍ରହଣ କରାଯାଇଥାଏ । ଓଡ଼ିଶାରେ କେତେ ସଂଗ୍ରହ କରାଯିବ ବୋଲି ବିନୋବା ଆମକୁ ପଚାରିଲେ ଓ ବ୍ୟାସଜୀ ଓ ମୁଁ ପରାମର୍ଶ କରି ଦେଢ଼ଲକ୍ଷ ଏକର ଲକ୍ଷ୍ୟାଙ୍କ ତାଙ୍କୁ ଜଣାଇଦେଲୁ । ଏହି ଲକ୍ଷ୍ୟାଙ୍କ ହିଁ ଓଡ଼ିଶାର ଭୂଦାନ ସମିତି ଗ୍ରହଣ କରିନେଲେ ।

## ଭୂଦାନ କାମର ଅଭିଜ୍ଞତା

ଏହାପରେ ଭୂଦାନ କାମ କାଁ ଭାଁ ଚାଲିଲା । କର୍ମମାନେ ନିଜ ପ୍ରେରଣାରୁ ସକ୍ରିୟ ହେବେ ବୋଲି ବାପା ଆଶା ଓ ଅପେକ୍ଷା କରୁଥା'ନ୍ତି । ବାଉନ ମସିହାର ବର୍ଷାଦିନ ପରେ ମୁଁ କଟକ ଜିଲ୍ଲାରେ ପଦଯାତ୍ରା ଆରମ୍ଭ କଲି । ଏହା ପୂର୍ବରୁ ଫକୀରବାବୁ ଓ ମୁଁ ଦିନାକେତ ଏକାଠି ବୁଲାବୁଲି କରିଥିଲୁ । ଏଥର ମୁଁ ବରୀକୁ ମୁଖ୍ୟ କେନ୍ଦ୍ର କରି ଦୁଇ ତିନି ସପ୍ତାହରେ ଗୋଟାଏ ଗୋଟାଏ ଘେର ପକେଇବା ଆରମ୍ଭ କଲି । ଭୂଦାନ ପ୍ରଚାରରେ ବହୁତ ପ୍ରକାରର ବିଚିତ୍ର ଅନୁଭୂତି ମିଳିବାକୁ ଲାଗିଲା । ବରୀ ପାଖ ଆନନ୍ଦପୁରରେ ମୁଁ ଯେଉଁ ଦିନ ପ୍ରଥମ ଭୂଦାନ ସଭା କଲି ମୁଁ ଆଶା କରୁଥିଲି ଯେ, ସଭାକୁ ହରିଜନମାନେ ଅନ୍ତତଃ ସମସ୍ତେ ଆସିବେ । କିନ୍ତୁ ଦେଖିଲି ଅନେକ ଜଣାଶୁଣା ଲୋକ ଆସିନାହାନ୍ତି । ଘଟଣା କ'ଣ ? ବୁଝାଗଲା ଯେ, ଯେଉଁମାନଙ୍କର ପାଞ୍ଚ ସାତ ଗୁଣ୍ଠ ବି ଜମି ଅଛି ସେମାନେ କେହି ଆସି ନାହାନ୍ତି, କାଳେ ଜମି ଦେବାକୁ ପଡ଼ିବ ବୋଲି । ଆମେ ସିନା ବିଚାରୁଥାଉ ଯେ ଜମି ବାଣ୍ଟକୁଣ୍ଟ କଥାରେ ଗରିବ

ଲୋକେ ଉତ୍ସାହିତ ହେଇ ବାହାରିବେ, କିନ୍ତୁ ଯାହାଙ୍କର ଧାପେନାକରୁ ଜମିଥାଏ ସେ ବି ନିଜକୁ ମାଲିକ ଶ୍ରେଣୀର ବିଚାରୁଥା'ନ୍ତି । ଏ ଭାବ କଟିବାକୁ ସମୟ ଲାଗିଥିଲା ।

ଆଉ ଠାଏ ଗାଁର ବଡ଼ ଜମିମାଲିକଙ୍କ ସାଙ୍ଗରେ ଆମେ କଥାଭାଷା ହେଉଥାଉ । ଆମେ ଦାଣ୍ଡପିଣ୍ଡାରେ ବସିଥାଉ ଓ ସେ ମହାଶୟଙ୍କର କେତେଜଣ ମୂଲିଆ ପିଣ୍ଡାତଳେ ବସିଥା'ନ୍ତି । ଆମ ଯୁକ୍ତିର ଉତ୍ତରରେ ସାଆନ୍ତେ ମତଦେଲେ, "ଏମାନେ ଜମି ନ ଥାଇ ଆମ ଅପେକ୍ଷା ବହୁତ ଭଲରେ, ଶାନ୍ତିରେ ଅଛନ୍ତି ନା । ଜମି ଥାଇ ଆମର ସିନା ଖାଲି ଦୁଶ୍ଚିନ୍ତା ବଢ଼ିଛି । ଆଜି ଧୋଇ ତ କାଲି ମରୁଡ଼ି । ହେଇ ! ପୋକ ଲାଗିଲେ ତ ସବୁ ମେହନତ ପାଣିରେ ପଡ଼ିଲା । କୋଉଠୁ କରଜ କର, ବଳଦ ସଜକର, ସାର କୋଉଠୁ ମିଳିବ, କେତେ ଧନ୍ଦା । ଏମାନଙ୍କର କ'ଣ ଅଛି, ଆସିଲେ ଦିଓଳି ଟିକିଏ ହାତ ହଲେଇ ଦେଲେ, ମଜୁରିତକ ଅଣ୍ଟିରେ ଖୋସି ଘରକୁ ଗଲେ । ଜମି ନେଇ ଏତେ ଝାମେଲା । କ'ଣ ସେମାନେ ସମାଳି ପାରିବେ ? ହଇରେ ! ତମେ ସବୁ କ'ଣ କହୁଛ କୁହନା ।" ମୂଲିଆମାନେ କହିଲେ - "ଆଜ୍ଞା ! ହଜୁରେ ଯାହା କହିଲେ ସେଇ ସାର କଥା । ହଜୁରଙ୍କର ଜମି ଅଛି ବୋଲି ସିନା ଆମେ ଖଟିକରି ଦିମୁଠା ଖାଉଛୁ । ଆମେ ଆଜ୍ଞା ଜମି ନେଇ ଏତେ ଧନ୍ଦା କୁଆଡୁ କରିପାରିବୁ ?" ସେମାନେ କେବଳ ସାଆନ୍ତଙ୍କ ମୁହଁକୁ ଚାହିଁ ସେପରି କଥା କହୁ ନଥିଲେ । ପ୍ରକୃତରେ ସେମିତି ଭାବିବାକୁ ଅଭ୍ୟସ୍ତ ହେଇଥିଲେ ମଧ ଭୂଦାନ ପ୍ରଚାର ଭିତରେ ଏ ଭାବ ବି ଧୀରେ ଧୀରେ କଟିଲା ।

ଥରେ ଫକୀରବାବୁ ଓ ମୁଁ ଯାଇ ଜଣେ ପୂର୍ବ ପରିଚିତ ଜମିଦାରଙ୍କ ଘରେ ପହଞ୍ଚିଲୁ । ସେ ଆମକୁ ଖୁବ୍ ଖାତିର ଯତ୍ନ କରି ଦିନ ଯାକ ଘରେ ରଖିଲେ । ପହଞ୍ଚିବା ମାତ୍ରେ ଆମେ ସନ୍ଧ୍ୟାକୁ ଗାଁରେ ଗୋଟିଏ ସଭା କରିବୁ ବୋଲି ତାଙ୍କୁ ଜଣେଇଥାଉ । ସେ ବି ଖୁବ୍ ଉତ୍ସାହର ସହିତ କହିଥାନ୍ତି ସେଥିପାଇଁ ଆୟୋଜନ କରିବେ ବୋଲି । ଉପରଓଳିକୁ ଆମେ ସଭା କଥା ମନେପକାଇବାରୁ ସେ କହିବାକୁ ଆରମ୍ଭ କଲେ ଯେ ଏ ଗାଁ ଲୋକଗୁଡ଼ା କ'ଣ କିଛି ଭଲ କଥା ଶୁଣିବା ଅବସ୍ଥାରେ ଅଛନ୍ତି ? ସଭାକୁ କ'ଣ କିଏ ଆସିବେ ? ସନ୍ଧ୍ୟାବେଳକୁ ସଭାକୁ ଯିବାକୁ ଅପେକ୍ଷା କରି କରି ଶେଷକୁ ଶୁଣିଲୁ ଯେ କେହି ଲୋକ ଆସିନାହାନ୍ତି, ସଭା କେମିତି ହେବ ? ସେଥର ତ ପ୍ରକୃତରେ ତାହା ହେଇଥିବ ବୋଲି ମାନିନେଇଥିଲୁ କିନ୍ତୁ ପରେ ଆହୁରି ଏହି ଧରଣର ଅଭିଜ୍ଞତା କେତେ ହେଲା ଓ ସେଥିରୁ ଜାଣିଲୁ ଯେ ସଭା ନ ହେବାଟା ଲୋକଙ୍କର ସଭା ଶୁଣିବାର ଅନିଚ୍ଛା ଯୋଗୁଁ ନୁହେଁ, ଗାଁ ବଡ଼ଲୋକଙ୍କର ସୁଚିନ୍ତିତ ବ୍ୟବସ୍ଥା ଯୋଗୁଁ । ସେମାନେ ଆମକୁ ଖୁବ୍ ଆଦର ଯତ୍ନ କରି ଖୁଆଇ ପିଆଇ ଖୁସି କରିବା ସାଙ୍ଗେ ସାଙ୍ଗେ ତେଣେ ଗାଁରେ ସଭା ନ ହେବାର ଯୋଗାଡ଼ କରନ୍ତି । ଯେଉଁଠି ସେ ସଭାର ଦାୟିତ୍ୱ ନିଜେ ନେଇଥା'ନ୍ତି ସେଠି ତ ସହଜ, ସଭାପାଇଁ ପ୍ରଚାର ନ କଲେ ଗଲା । ଅନ୍ୟଠି ଲୋକଙ୍କୁ ସଭାକୁ ନଯିବାକୁ ଇଶାରା ଦେଇଥାଆନ୍ତି । କେତେ ଜାଗାରେ ଗାଁ ଗରିବ ଲୋକେ ବଡ଼ଲୋକଙ୍କ କଥାରେ ଏପରି ବାନ୍ଧି ହେଇଥାନ୍ତି ଯେ, ବଡ଼ଲୋକଙ୍କର ଇଶାରାକୁ ଅମାନ୍ୟ କରି ସଭାକୁ ଯିବାର ସାହସ କରିପାରନ୍ତି ନାହିଁ ।

ଭୂଦାନବାଲା ତନ୍ତ୍ରମନ୍ତ୍ର ବଳରେ ମଣିଷକୁ ବଶ କରିନେଇ ଜମି ଦାନ ଲେଖେଇ ନେବେ । ଏ ଭୟ ବି କେଉଁଠି କେଉଁଠି ଥିଲା । ଆମକୁ ଦେଖିଲେ ଜମିବାଲାମାନେ ଲୁଚୁଥିଲେ । ଠାଏ ତ ଜଣଙ୍କର ସ୍ତ୍ରୀ ଆମକୁ ଦେଖି ସେ ଲୋକକୁ ଦାଣ୍ଡରୁ ଓଟାରି ନେଇ ଘରେ ପୁରେଇ ଦାଣ୍ଡ କବାଟ କିଳିଦେଲା ।

କିନ୍ତୁ ସାଧାରଣ ମଧ୍ୟବିତ୍ତ ଚାଷୀମାନଙ୍କଠାରୁ ଏହାର ଓଲଟା ଆଚାରଣ, ଶ୍ରଦ୍ଧା ଓ ଉଦାରତାର ଉଦାହରଣ ଢେର ବେଶି ପରିମାଣରେ ମିଳୁଥିଲା ଓ ତାହା ଆମମାନଙ୍କର ବିଶ୍ୱାସ ଓ ଉତ୍ସାହକୁ ଦୃଢ଼ କରୁଥିଲା । ମୋ ପଦଯାତ୍ରା ଭିତରେ ଏମିତି ଶହ ଶହ ଶ୍ରଦ୍ଧାବାନ ଓ ଉଦାର ଜମିମାଲିକ ସେମାନଙ୍କର ଜମିର ଭାଗ ଆଗ୍ରହର ସହିତ ଦେଇଥିଲେ । ସେଇମାନେ ହିଁ ଥିଲେ ଏ ଆନ୍ଦୋଳନର ମେରୁଦଣ୍ଡ । ଏମାନଙ୍କ ଭିତରେ କେତେକ ସ୍ୱାଧୀନତା ଆନ୍ଦୋଳନର ପୁରୁଣା କର୍ମୀ ବି ଥା'ନ୍ତି । ଜମି ଦେବା ସାଙ୍ଗେ ସାଙ୍ଗେ ସେମାନେ କାମ ବି କରିବାକୁ ବାହାରୁଥା'ନ୍ତି । କେତେକ ନୂଆ କର୍ମୀ ବି ବାହାରୁଥା'ନ୍ତି । କଂଗ୍ରେସ ଓ ସମାଜବାଦୀ ଦଳର ସ୍ଥାନୀୟ କର୍ମୀମାନେ ବି ଆକୃଷ୍ଟ ହେଉଥା'ନ୍ତି । ଦାତାମାନେ ବି କର୍ମୀ ହେଇ କାମ କରିବାକୁ ବାହାରୁଥା'ନ୍ତି । ଯେମିତି କେନ୍ଦ୍ରାପଡ଼ା ଥାନା ନହଙ୍ଗର ଶ୍ୟାମାନା, ଶ୍ୟାମସୁନ୍ଦର ପଣ୍ଡା । ସେ କେବଳ ଯେ ନିଜର ଭଲ କେନାଲ କୂଳିଆ ଧାନ ଜମିରୁ ଛଅକ ଭାଗ ଦେଲେ ସେତିକି ନୁହେଁ, ଭୂଦାନ ଆନ୍ଦୋଳନ ବିଷୟରେ ଅଜସ୍ର ଗୀତ ଲେଖିଲେ ଓ ପ୍ରଚାର କରି ମଧ୍ୟ ବାହାରିଲେ ।

ଭୂଦାନ ପ୍ରଚାର ତ ମୁଁ କରୁଥାଏ ମାତ୍ର ଭୂଦାନର ବିଚାରକୁ ଦେଶର ସମଗ୍ର ରାଜନୀତିକ, ଆର୍ଥିକ ଓ ସାମାଜିକ ପରିପ୍ରେକ୍ଷୀରେ ରଖିବାର ଚେଷ୍ଟା କରୁଥାଏ । ବିନୋବାଙ୍କ ଲେଖା ଓ ବକ୍ତୃତାରୁ ଅଧିକାଂଶ ବିଚାର ନେଇ ମୋ ଭାଷାରେ ବୁଝେଇବା ଚେଷ୍ଟା କରୁଥାଏ । ଗାଁ ପରିସ୍ଥିତି ଯାହା ନଜରରେ ପଡୁଥାଏ ତାହା ବିଶ୍ଳେଷଣ କରି ତାହାରି ପରିପ୍ରେକ୍ଷୀରେ ଏ ଆନ୍ଦୋଳନର ଗୁରୁତ୍ୱ ବୁଝାଇବା ଚେଷ୍ଟା ମଧ୍ୟ କରୁଥାଏ । ଓଡ଼ିଶା ଭିତରେ କଟକ ଜିଲ୍ଲା ଓ ତା' ଭିତରେ ଯାଜପୁର ମାଲିମକଦ୍ଦମା ପାଇଁ ପ୍ରସିଦ୍ଧ । ମୁଁ ଗାଁ ଗାଁରେ କୋଡ଼ କୋଡ଼ ମକଦ୍ଦମା ବର୍ଷ ବର୍ଷ ଧରି ଚାଲିଥିବାର ଦେଖିଲି । ଏପରି ଅନେକ ମକଦ୍ଦମାର ଇତିହାସ ଶୁଣିଲି ଓ ଦେଖିଲି ଯେ ସେ ସବୁଥିରେ ଆର୍ଥିକ ବା ବୈଷୟିକ ଲାଭର ଆଶା ପରିବର୍ତ୍ତେ ଅଧିକାଂଶ କ୍ଷେତ୍ରରେ ଜିଦି ଓ ପ୍ରତିଷ୍ଠାର ପ୍ରଶ୍ନ ହିଁ ମୁଖ୍ୟ । ନିଜର ଜିଦ୍ ବଜାୟ ରଖିବା ପାଇଁ, ଅକସ ସାଧିବା ପାଇଁ ଲୋକେ ଯେତେ ଖର୍ଚ୍ଚ କରୁଛନ୍ତି, ଯେତେ ତ୍ୟାଗ ସହୁଛନ୍ତି, ତାହା ତ୍ୟାଗୀ ବୋଲଉଥିବା ଦେଶବାସୀ ଓ ବିପ୍ଳବୀମାନଙ୍କ ତ୍ୟାଗଠାରୁ କିଛି ଊଣା ନୁହେଁ । ଏଇଟା ମୋର ବକ୍ତୃତାର ଗୋଟାଏ ଉପଜୀବ୍ୟ ଥିଲା । ଲୋକଙ୍କ ଭିତରେ ଜିଦ୍ ଓ ଅଧ୍ୟବସାୟର ଅଭାବ ନାହିଁ । ସେଥିପାଇଁ ତ୍ୟାଗ ସହିବାର ଶକ୍ତିବି ଊଣା ନାହିଁ । ତ୍ରୁଟିପୂର୍ଣ୍ଣ ସମାଜ ଓ ଅର୍ଥ ବ୍ୟବସ୍ଥାରେ ସେସବୁର ସର୍ଜନାତ୍ମକ ବ୍ୟବହାର ପାଇଁ ବାଟ ନାହିଁ । ତେଣୁ ତାହା ବ୍ୟର୍ଥ, କ୍ଷତିକାରକ ପନ୍ଥାରେ ଆତ୍ମପ୍ରକାଶ କରୁଛି । ଲୋକେ ଚାହିଁଲେ ତାକୁ ଭଲ ବାଟରେ ଲଗାଇ ପାରିବେ ।

ଭୂଦାନର ସମାଲୋଚନା କମ୍ୟୁନିଷ୍ଟମାନଙ୍କ ପକ୍ଷରୁ ହେଉଥାଏ । ପଦ୍ମଚରଣ ନାୟକ ଏହାର ଖୁବ୍ ତୀବ୍ର ସମାଲୋଚନା କରି ଖଣ୍ଡେ ପୁସ୍ତିକା ଲେଖିଥା'ନ୍ତି । ସେ ସେତେବେଳେ କମ୍ୟୁନିଷ୍ଟ ଦଳରେ ଥିଲେ । ଥରେ କୋଠପଡ଼ା ଥାନାର ନେମ୍ପରାଠାରେ ଥିବା ମଧୁସାଗର ବିଦ୍ୟାପୀଠରେ ମୋର ରହଣୀବେଳେ ତାଙ୍କ ସାଙ୍ଗରେ ଭେଟ ହେଲା । ଦିନଯାକ ତାଙ୍କ ସାଙ୍ଗରେ ବହୁତ ଯୁକ୍ତିତର୍କ ହେଲା । ତାଙ୍କର ମୁଖ୍ୟ ବକ୍ତବ୍ୟ ଥିଲା ଯେ ଭୂମିହୀନ ଯଦି ନିଜ ବଳରେ ଜମି ନ ନେବେ ତେବେ ଜମି ସେମାନେ ରଖିପାରିବେ ନାହିଁ ।

ସେଦିନ ସନ୍ଧ୍ୟାରେ ଭଲ ସଭା ହେଲା । କେତେଜଣ ଦାତା ଜମିଦାନ କଲେ । ଜଣେ ଚାଷୀ ତାଙ୍କର ଭଲ ଜମିର ଛ ଭାଗରୁ ଭାଗେ ଦେଲେ । ସଭାରେ ମୁଁ ପଦବାବୁଙ୍କର ଯୁକ୍ତିର ଉଲ୍ଲେଖ କରି ପଚାରିଲି ଯେ, ଏ ମହାଶୟ ତ ଭୂମିହୀନଙ୍କ ଦାବିକୁ ମାନିନେଇ ତାଙ୍କ ଜମିରୁ ଭାଗ ଛାଡ଼ି ଦେଲେ । ବର୍ତ୍ତମାନ ଭୂମିହୀନମାନେ କ'ଣ କରିବା ଉଚିତ ବୋଲି  ପଦବାବୁ ପରାମର୍ଶ ଦେବେ ?  ଯେ ଆଗେ ଭୂମିହୀନମାନେ ଦାତାଙ୍କୁ ଦି ପାହାର ପିଟିବେ ଓ ତା'ପରେ ଜମି ନେବେ ? ମୋର ଏ ଯୁକ୍ତି ତ ଠିକ୍ ଥିଲା, କିନ୍ତୁ ପଦବାବୁଙ୍କ କଥାରେ ବି ଗୋଟାଏ ସତ୍ୟାଂଶ ଥିଲା, ଯାହା ଅନେକ ପରେ ମୋର ଧ୍ୟାନକୁ ଆସିଲା । ଭୂମିହୀନ ମଧ୍ୟ ନିଜର ଶକ୍ତି ବିଷୟରେ ସଚେତନ ଓ ସକ୍ରିୟ ହେବା ଚାହିଁ । ଏ ଶକ୍ତି ବିନା ସେ ପରର ଆଶ୍ରିତ ହୋଇ ରହିଯିବ । ଜମି ମାଲିକର ଉଦାରତା ସହିତ ଏ ଶକ୍ତିର ବିରୋଧ ନାହିଁ–ଯଦି ତାହା ଅହିଂସ ରୂପରେ ପ୍ରକଟ ହୁଏ ।

ବରୀ ଅଞ୍ଚଳ ଭଳି ସମସ୍ୟାଗ୍ରସ୍ତ ମଫସଲରେ ବାର ତେର ବର୍ଷ ବିତେଇଥିଲେ ମଧ୍ୟ ଗାଁମାନଙ୍କର ଅଭାବ ଅନଟନ ଓ ସମସ୍ୟାର ନୂଆ ନୂଆ ରୂପ ଏ ବୁଲା ଭିତରେ ଦେଖିବାକୁ ମିଳିଲା । କଟକ ଭଳି ଉନ୍ନତ ବୋଲଉଥିବା ଜିଲ୍ଲାରେ ଯେ, ପାଣି ଅଭାବ ଏତେ ଥାଇପାରେ ତାହାର ମୋର କଳ୍ପନା ସୁଦ୍ଧା ନଥିଲା । ପୂର୍ବ ଯାଜପୁରରେ ଅନେକ ଗାଁରେ ଦେଖାଗଲା ଯେ, ଖରାଦିନେ ପୋଖରୀମାନଙ୍କରୁ ପାଣି ସରିଗଲେ ସାମାନ୍ୟ ଯାହା ବଳିଥାଏ ତାକୁ ନେବାପାଇଁ ଗାଁ ଗାଁ ଭିତରେ କଳିତକରାଳ ଓ ବେଳେବେଳେ ମାଡ଼ ଫୌଜଦାରୀ ହୋଇଥାଏ । ପୋଖରୀରେ ଯେଉଁ ତଳିଆ ପଙ୍କୁଆ ପାଣି ମୁଣ୍ଡିଏ ଲେଖା ଥାଏ,ତାକୁ ହିଁ ନେଇ ଲୋକେ ରଖି ଦିଅନ୍ତି ଓ ମାଟିତକ ତଳକୁ ବସିଗଲେ ଉପରୁ ସ୍ୱଚ୍ଛପାଣିକୁ ନିଗାଡ଼ି ନେଇ ପିଇବା ପାଇଁ ବ୍ୟବହାର କରନ୍ତି ।

ଭିତର କନିକାରେ ବୁଲୁଥିବାବେଳେ ଗୋଟିଏ ଗାଁରେ ଦ୍ୱିପ୍ରହର ବେଳେ ପହଞ୍ଚିଲୁ । ଦ୍ୱିପ୍ରହର ଖାଇବା ପରେ ଯେଉଁ ପାଣି ପିଇବାକୁ ମିଳିଲା ତା'ର ରଙ୍ଗ ଦୁଧ ନ ମିଶିଥିବା ବାହା ପାଣି ପରି ଓ ଜେଲ୍ ଡାକ୍ତରଖାନାର ଏଲକାଲାଇନ୍ ମିକ୍ସଚର ସହିତ ତାହାର ସ୍ୱାଦର ସାଦୃଶ୍ୟ ଥାଏ । ତା'ର ଗନ୍ଧ ମନେପକେଇ ଦେଉଥାଏ ଯେ ପଙ୍କ ଓ ଏ ପାଣି ଉଭୟଙ୍କର  ଜନ୍ମସ୍ଥାନ ଏକ  । ସେଇ ଯେ ଆଖି ନାକ ବୁଜି ସେ ପାଣିରୁ ଅଧଗିଲାସ ପିଇଦେଲି ଆଉ ପରଦିନ ସକାଳୁ ସେଠୁ ବାହାରିବା ଯାଏ ପାଣି ପିଇନାହିଁ । ପରଦିନ ସକାଳୁ ଏ ପାଣିର ଉତ୍ସର ଦର୍ଶନ ମିଳିଲା । ଗୋଟାଏ ଦଳୁଆ ପୋଖରୀ, ସେଥିରେ ପାଣି ସେତେବେଳେ ଥାଏ ମୋଟେ ଇଞ୍ଚେ ଖଣ୍ଡେ ।

ଏହିପରି ପରିସ୍ଥିତିରେ ଲୋକଙ୍କର ଭଲପଣିଆର ବି ଅନେକ ଦର୍ଶନ ମିଳିଲା ଓ ମଣିଷ ସ୍ୱଭାବ ପ୍ରତି ଆସ୍ଥା ଦୃଢ଼ ହେଲା । ଆଳି ଓ ଯାଜପୁରର ସୀମା ପାଖରେ ଗୋଟାଏ ଗାଁରେ ପାଣି ଅଭାବ ତ ପଡ଼ିଥାଏ । ବର୍ଣ୍ଣ ହିନ୍ଦୁଙ୍କ ସାହିରେ ଗୋଟିଏ କୂଅରେ ପାଣିଥାଏ । ସାହିବାଲା ଗାଁରି ହରିଜନଙ୍କୁ କୂଅ ଛୁଇଁବାକୁ ତ ଦେଉ ନଥା'ନ୍ତି । କିନ୍ତୁ ଗାଁର ଯୁବକମାନେ ସାରାଦିନ ନିଜେ ପରିଶ୍ରମ କରି ପାଣି କାଢ଼ି ସେମାନଙ୍କୁ ଯୋଗାଉଥା'ନ୍ତି । ଦିନେ ଆଳି ଥାନାର ଭାମଣ୍ଡା ଆଡୁ ଦେଉଳତରା, ନମତରା ଆଡ଼କୁ ଯାଉଥାଉ । ମଝିରେ ଏକ ମସ୍ତ ବଡ଼ ପାଟ ପଡ଼େ । ଚାରି ମାଇଲ ଯାଏ ଓସାର ହେବ । ଦେଖିଲୁ ପାଟ ମଝିରେ ଜଣେ ଅଧାବୟସୀ ଲୋକ ବାଟୋଇମାନଙ୍କ ପାଇଁ ଜଳଛତ୍ର ଖୋଲି ବସିଛନ୍ତି । ମାଇଲିଏ ଖଣ୍ଡେ ଦୂର ଗାଁରୁ ପାଣି ଆଣି ବାଣ୍ଟୁଛନ୍ତି ।

ଇତିମଧ୍ୟରେ ବିଚାର ହେଲା ଯେ ଭୂଦାନ ସଂଗ୍ରହ ଏଣିକି ବିକ୍ଷିପ୍ତ ଭାବରେ ନ କରାଯାଇ ଗୋଟାଏ ଗୋଟାଏ ଅଞ୍ଚଳ ଧରି ସଘନ ଭାବରେ କରାଯାଉ । ଏହାଦ୍ୱାରା ସେ ଅଞ୍ଚଳରେ ଗୋଟାଏ ହାୱା ସୃଷ୍ଟି ହେବ ଓ କାମ ଅଧିକ ସଫଳ ହେବ । ସେଥିପାଇଁ ପ୍ରଥମେ ଉତ୍ତର ବିଞ୍ଝାରପୁର ଅଞ୍ଚଳରେ ୧୯୫୩ ର ଖରାଦିନେ ଏ ଉଦ୍ୟମ ଆରମ୍ଭ ହେଲା । ଏକ ହଜାର ଦାତାଙ୍କ ଠାରୁ ଏକ ହଜାର ଏକର ଜମି ସଂଗ୍ରହ କରାଯିବାର ଲକ୍ଷ୍ୟ ରଖାଗଲା । ଏଥିପାଇଁ ମାତ୍ର ସାତ ଦିନ ସମୟ ରଖାଯାଇଥିଲା । କଟକ ଜିଲ୍ଲାର ପ୍ରାୟ ସବୁ ରଚନାତ୍ମକ କର୍ମୀ, ମୌଳିକ ବିଦ୍ୟାଳୟର ଶିକ୍ଷକ ଓ ଉପର ସୋପାନର ଛାତ୍ରମାନେ ମଧ୍ୟ ଏଥିରେ କର୍ମୀ, ମୌଳିକ ବିଦ୍ୟାଳୟର ଶିକ୍ଷକ ଓ ଉପର ସୋପାନର ଛାତ୍ରମାନେ ମଧ୍ୟ ଏଥିରେ ଲାଗିପଡ଼ିଲେ । ବିନୋବା ବରାବର କହନ୍ତି ଯେ ବିରୋଧୀ ଲୋକଙ୍କୁ ନିଜ କଥାଟା ଠିକ୍ ଭାବରେ ବୁଝାଇବା ହେଲା ସତ୍ୟାଗ୍ରହର ପ୍ରଥମ ସୋପାନ, ତା ସାଙ୍ଗକୁ ବିରୋଧୀ ଲୋକଙ୍କର ବକ୍ତବ୍ୟ ମଧ୍ୟ ନିଜେ ବୁଝିବା ଓ ସେଥିରେ ଯାହା ସାର ବା ସତ୍ୟ ଥିବାର ଜଣାଯିବ ତାହାକୁ ମାନି ନେବା ଚାହିଁ । ଆଜିକାଲି କମ୍ୟୁନିକେସନ ବା ଭାବର ଆଦାନ ପ୍ରଦାନ ଗୋଟାଏ ବୈଜ୍ଞାନିକ ଚର୍ଚ୍ଚାର ବିଷୟ ହେଇଗଲାଣି । ମଣିଷ ଯାହା କହେ ସେଇଟାର ଅର୍ଥ ତା'ର ନିଜ ପାଖରେ ଖୁବ୍ ସ୍ପଷ୍ଟ ବୋଲି ସେ ଭାବେ, ମାତ୍ର ତାହା ବୋଲି ଶୁଣିବାବାଲା ଯେ ସେ ଅର୍ଥକୁ ସେତିକି ସ୍ପଷ୍ଟଭାବରେ ବୁଝେ, ତାହା ସବୁବେଳେ ସତ୍ୟ ନୁହେଁ । ଏଥିପାଇଁ ଅନେକ ଗୁରୁତ୍ୱପୂର୍ଣ୍ଣ ଆପୋଷ ଆଲୋଚନା ଆଦିରେ ବିଭ୍ରାଟ ସୃଷ୍ଟି ହୋଇଥାଏ । ସେଥିପାଇଁ ଏ ବିଷୟର ବୈଜ୍ଞାନିକ ପର୍ଯ୍ୟାଲୋଚନା ଆବଶ୍ୟକ ହେଉଛି । ଏ ଭୂଦାନ ସଂଗ୍ରହ ଅଭିଯାନରେ କର୍ମୀମାନଙ୍କୁ ଏ ଭାବର ଆଦାନପ୍ରଦାନର କଳାର ସାଧନା ପାଇଁ ଭଲ ସୁଯୋଗ ମିଳିଲା । ଏଥିରେ ଏ ଲକ୍ଷ୍ୟ ମଧ୍ୟ ରଖାଯାଇଥିଲା ଯେ, କର୍ମୀମାନେ ଗାଁରେ ଲୋକଙ୍କର ଆତିଥ୍ୟ ହାସଲ କରି ଭୋଜନ ବ୍ୟବସ୍ଥା ଚଳେଇବେ । ଏ ଚେଷ୍ଟା ମଧ୍ୟ ମୋଟାମୋଟି ସଫଳ ହୋଇଥିଲା । ଯଦିଓ ଗୋଟିଏ ଗାଁରେ ଜଣେ ବୁଢ଼ା ଗଣେଶ ମହାନ୍ତିଙ୍କୁ ତା' ବାଡ଼ିରେ ଓଳିଏ ଘାସ ବଛେଇ ତା' ପରେ ଶୁଖିଲା ଧନ୍ୟବାଦ ଦେଇ ବିଦା କରିଦେଲା ।

ଏ ଅଭିଯାନରେ ଦାଦା ବି ଆସି କେତେଦିନ କାମ କରି ଯାଇଥିଲା । ସେତେବେଳେ ସେ ମୁଖ୍ୟମନ୍ତ୍ରୀ ଥାଏ । ଏଥିରେ ପ୍ରାୟ ବାରଶହ ଦାତାଙ୍କ ଠାରୁ ଅଢ଼େଇଶହ ଏକର ସରିକି ଜମି ମିଳିଲା । ଏହାଦ୍ୱାରା ଉତ୍ତର ବିଞ୍ଝାରପୁରର କେତେକ ଅଞ୍ଚଳରେ ଲୋକଙ୍କ ଭିତରେ, ଖାସ୍ କରି ଗରିବ ଚାଷୀ ଓ ଭୂମିହୀନଙ୍କ ଭିତରେ, ରୀତିମତ ଉତ୍ସାହ ସୃଷ୍ଟି ହେଇଥିଲା । ପତେପୁରରେ ଏ ଅଭିଯାନର ସମାବର୍ତ୍ତନ ସଭାରେ ଅଞ୍ଚଳର ବହୁ ଲୋକ ଭୂଦାନ କାମକୁ ଆଗେଇ ନେବାକୁ ସଙ୍କଳ୍ପ କଲେ ଓ ପରେ ଯଥେଷ୍ଟ କାମ କରିଥିଲେ ମଧ । ଜରୀ-ବାଙ୍ଗରାରେ ଗୋଟିଏ ସଭାକୁ ଦାଦା, ନିଶାମଣି ହେରିକା ଯାଇଥିଲେ । ସେଠାର ଲୋକଙ୍କର ବିପୁଳ ଉତ୍ସାହ ମଧ ସମସ୍ତଙ୍କୁ ପ୍ରଭାବିତ କରିଥିଲା । ଏହି ରୂପେ ଏ ଅଭିଯାନ ଭିତରୁ ଭୂଦାନକୁ ଏକ ଜନଆନ୍ଦୋଳନରେ ପରିଣତ କରିବାର ଖିଅ ମିଳିଗଲା ।

ଏହାପରେ କଟକ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ବି କ୍ରମାନ୍ୱୟରେ ଏହିପରି ସବୁ ଅଭିଯାନ ଚାଲିଲା । ପ୍ରଥମ ବର୍ଷାଦିନେ କାମ ବନ୍ଦ କରିବା କଥା ଥିଲା । ସେତେବେଳେ ଗାଁ ଲୋକେ ବିଲବାଡ଼ି କାମରେ ବ୍ୟସ୍ତଥା'ନ୍ତି ବୋଲି, କିନ୍ତୁ ବିନୋବାଙ୍କ ସୂଚନା ଅନୁସାରେ ବର୍ଷାଦିନେ ବି କାମ ଚାଲିଲା ଓ ସଫଳ ବି ହେଲା । ଅନ୍ୟାନ୍ୟ ଜିଲ୍ଲାରେ ବି ଏହି ଧରଣର ଅଭିଯାନ ଆରମ୍ଭ ହେଇଗଲା । ତାହା ଭିତରେ ବାଲେଶ୍ୱର ଜିଲ୍ଲାରେ ନନ୍ଦବାବୁ, ସୁଧାଂଶୁ ହେରିକାଙ୍କ ନେତୃତ୍ୱରେ ବେଶି ଆଗେଇ ଥିଲା । କଟକ ତୁଳନାରେ ସେଠି ଜମି ବି ଅଧିକ ସଂଗୃହୀତ ହେଇଥିଲା । ଯା' ଭିତରେ କଟକ ଜିଲ୍ଲାର ମାନପୁର ଗାଁ ଓଡ଼ିଶାର ପ୍ରଥମ 'ସର୍ବସ୍ୱଦାନ' ଗାଁ ହେଇଥାଏ – 'ଗ୍ରାମଦାନ' ଶବ୍ଦ ପରେ ଗଢ଼ା ହେଲା । ପ୍ରଥମେ ତାକୁ ସର୍ବସ୍ୱଦାନ କୁହାଯାଉଥିଲା । ଏହାଦ୍ୱାରା ମଧ ଉତ୍ସାହ ଖୁବ୍ ବଢ଼ିଗଲା । କୋରାପୁଟ ମୟୂରଭଞ୍ଜ ଓ ବାଲେଶ୍ୱରରେ ଏଭଳି 'ସର୍ବସ୍ୱଦାନ' ଗାଁ ସଂଗ୍ରହର ଉଦ୍ୟମ ଚାଲିଲା ।

## ଦାଦା ଧର୍ମାଧିକାରୀ, ବିମଳା ଓ ଧୀରେନ୍‌ଦା

୧୯୫୩ ଶେଷକୁ ଦାଦା ଧର୍ମାଧିକାରୀ ଓ ବିମଳା ଠକ୍କାର ଓଡ଼ିଶା ଗସ୍ତରେ ଆସିଲେ । ଦାଦାଙ୍କୁ ମୁଁ ପୂର୍ବରୁ କେତେଥର ସେବାଗ୍ରାମ ଓ ଓ୍ୟାର୍ଦ୍ଧାରେ ଦେଖିଥିଲି । ସର୍ବୋଦୟ ସମ୍ମିଳନୀମାନଙ୍କରେ ବି, ମାତ୍ର ତାଙ୍କ ସହିତ ନିକଟ ପରିଚୟ ହେଇ ନ ଥିଲା । ସର୍ବୋଦୟ ପତ୍ରିକାରେ ତାଙ୍କର ଲେଖାପଢ଼ି ମତେ ଖୁବ୍ ଭଲ ଲାଗୁଥାଏ । ଗାନ୍ଧୀ ଚିନ୍ତାଧାରାର ଅନ୍ୟ ପ୍ରବକ୍ତାମାନେ ଅପେକ୍ଷା ତାଙ୍କ ଦୃଷ୍ଟିରେ ଅଧିକ ବ୍ୟାପକତା ଥିବାର ଓ ନୂଆ ଚିନ୍ତାକୁ ବେଶ୍ ଖୋଲାମନ ନେଇ ଗ୍ରହଣ କରିବାର ଶକ୍ତି ଥିବାର ମୁଁ ଅନୁଭବ କରୁଥାଏ । ବିମଳା ଠକ୍କାରଙ୍କର ବୟସ ଖୁବ୍ ଅଳ୍ପ । ସେ ନୂଆ ହେଇ ସାଧାରଣ କ୍ଷେତ୍ରକୁ ଆସିଥା'ନ୍ତି ଓ ଦାଦାଙ୍କ ସାଙ୍ଗରେ ରହୁଥା'ନ୍ତି । ଦାଦା ସେ ସମୟରେ ମାର୍କସ୍‌ବାଦୀ ଚିନ୍ତାଧାରାର ପ୍ରାସଙ୍ଗିକତା ବୁଝାଉଥିଲେ, ହିଂସା-ଅହିଂସାର ମୂଳ ପାର୍ଥକ୍ୟ ଠେଇଁ ଅଟକି ଯାଇ ନଥିଲେ । ପୃଥିବୀରେ ଘଟିଥିବା ବିପ୍ଳବ ପରମ୍ପରାରେ

ଭୂଦାନ ଆନ୍ଦୋଳନର ସ୍ଥାନ ଓ ଗୁରୁତ୍ୱ ବୁଝାଇବାରେ ମାର୍କ୍ସୀୟ ବିଶ୍ଳେଷଣର ମଧ୍ୟ ଉପଯୋଗ କରିଥିଲେ । ଏଇଟା ମୋ ମନକୁ ଖୁବ୍ ପାଇଥିଲା ଓ ତାଙ୍କର ବିଶ୍ଳେଷଣରୁ ମୋର ଦୃଷ୍ଟିକୁ ଅନେକ ଗୁଡ଼ିଏ ନୂତନ ବିଭାବ ମଧ୍ୟ ଆସିଥିଲା ।

ଦାଦାଙ୍କର ସ୍ନେହପ୍ରବଣତା ଅସୀମ । ତାଙ୍କର ଦର୍ଶନରେ ହିଁ ସ୍ନେହ ହେଉଛି ମୁଖ୍ୟ ଆଧାର । ଆମ ପରିବାର ସହିତ ତାଙ୍କର ତୁରନ୍ତ ସ୍ନେହ ସମ୍ପର୍କ ସ୍ଥାପିତ ହେଇଗଲା ଓ ଏପର୍ଯ୍ୟନ୍ତ ତାହା ଅଧିକ ପ୍ରଗାଢ଼ ହେଇ ଚାଲିଛି । ଦାଦା ସର୍ବ ସେବା ସଂଘରେ ବରାବର ଏକାଂଗୀତା ବିରୋଧରେ ସତର୍କବାଣୀ ଶୁଣେଇବା କାମ କରନ୍ତି । ପରେ ଯେତେବେଳେ (୧୯୫୯) ବିନୋବା ଅଶ୍ଳୀଳ ପୋଷ୍ଟର ବିରୋଧରେ ଆନ୍ଦୋଳନ ଆରମ୍ଭ କଲେ ସେତେବେଳେ ଦାଦା ତାହା ପସନ୍ଦ କରି ନଥିଲେ ଓ ସେ କଥା ଖୋଲାଖୋଲି କହିଥିଲେ । ସର୍ବୋଦୟ ପାତ୍ର କାର୍ଯ୍ୟକ୍ରମରେ ଥିବା ବିପଦ ପ୍ରତି ମଧ୍ୟ ସେ ଦୃଷ୍ଟି ଆକର୍ଷଣ କରିଥିଲେ । ସର୍ବା ସେବା ସଂଘ ଭିତରେ ଜମି ଆସୁଥିବା ମନାନ୍ତରର ବାଷ୍ପ ପ୍ରତି ସେ ବହୁ ପୂର୍ବରୁ ଚେତାବନୀ ଶୁଣାଇଥିଲେ । ସେ ବରାବର ଏକ ଜଗୁଆଳି ଭଳି ରହି ଭାବନା ବା ଉଲ୍ଲାସର ଅତିଶଯ୍ୟାରେ ଭାସିଯିବା ପ୍ରତି ସମସ୍ତଙ୍କୁ ସାବଧାନ କରୁଥା'ନ୍ତି । ଗ୍ରାମଦାନ ଆନ୍ଦୋଳନର ଗତିବିଧି ବିଷୟରେ ତାଙ୍କର ଚେତାବନୀ ସମ୍ବନ୍ଧରେ ପରେ ଆଲୋଚନା କରିଛି । ପରେ ଜୟପ୍ରକାଶଙ୍କର ବିହାର ଆନ୍ଦୋଳନର ଆଭିମୁଖ୍ୟର ସମର୍ଥନରେ ସେ ଏକ ଟାଣୁଆ ଖୁଣ୍ଟ ଭଳି ଛିଡ଼ା ହେଇଥିଲେ ।

ମୁଁ ସେତେବେଳେକୁ କଟକ ଜିଲ୍ଲା ଭୂଦାନ ସମିତିର ସଂଯୋଜକ ଥାଏ । ଖୁବ୍ କ୍ଷିପ୍ରଗତିରେ ବ୍ୟବସ୍ଥିତ ଭାବରେ ଭୂଦାନ କାମ ଚାଲୁ ବୋଲି ମୋର ଆଗ୍ରହ ଥାଏ । ସେଥିପାଇଁ ମୁଁ କର୍ମୀଙ୍କ ଗତିବିଧିକୁ ଖୁବ୍ ଦୃଢ଼ଭାବରେ ନିୟନ୍ତ୍ରିତ କରିବା ଚେଷ୍ଟା କରୁଥାଏ । ଏହା ସାଙ୍ଗକୁ ମୋର ସ୍ୱଭାବଗତ ଜିଦି ମିଶି ମୋ ଆଚରଣରେ ଯଥେଷ୍ଟ ଏକାଧିପତ୍ୟ ପ୍ରକାଶ ପାଉଥାଏ । ଥରେ ଏକ ଅଭିଯାନ ବେଳେ ଜଣେ କର୍ମୀ ଅନୁମତି ନ ନେଇ ଲୁଚିକରି ଘରକୁ ପଳେଇ ଯାଇଥିବା ଯୋଗୁଁ ତାଙ୍କୁ ଖଦୀ ମଣ୍ଡଳ କାମରୁ ଅଲଗା କରି ଦେଇଥିଲି । ଏ ସବୁ ନେଇ କର୍ମୀ ମହଲରେ ବେଶ୍ କିଛିଟା ଅସନ୍ତୋଷ ଜମା ହେଇଥିଲା । ଦାଦାଙ୍କ ଉପସ୍ଥିତିରେ ଭଦ୍ରଖରେ ଏକ କର୍ମୀ ଶିବିର ହେଇଥିଲା । ସେଠି ଏହା ଫୁଟି ବାହାରିଲା । ମୁଁ ବି ସଂଯୋଜକ କାମରୁ ଇସ୍ତଫା ଦେଲି । ଦାଦା ତାଙ୍କର ସ୍ନେହପ୍ରବଣତା ଦ୍ୱାରା ଏ ସଙ୍କଟକୁ ଦୂର କରିବାରେ ସାହାଯ୍ୟ କରିଥିଲେ ଓ ତାହା ପରେ ମୋର ଆଚରଣରେ ବି କିଛିଟା ପରିବର୍ତ୍ତନ ହେଲା ବୋଲି ମୋର ଧାରଣା ।

ବିମଳାବହନ ଏହାପରେ ଥରେ ଏକୁଟିଆ ଆସିଲେ ଓ ତାଙ୍କୁ ନେଇ ଆମେ ଯାଜପୁର ଓ ସୁକିନ୍ଦାରେ କେତେକ ଅଞ୍ଚଳରେ ବୁଲିଲୁ । ଖୁବ୍ ଭୂଦାନ ମିଳିଲା । ତାଙ୍କ ସାଙ୍ଗରେ ଆମେ ଗୋଟିଏ ଜିପ୍‌ରେ ନଅ ଦଶ ଜଣ ଲୋକ ଥାଉ । ସମସ୍ତଙ୍କର ବିଛଣାପତ୍ର, ଗୋଟାଏ ଟ୍ରଙ୍କ୍, ସବୁ ମଣିଷ ଓ ସବୁ ଜିନିଷ ଗୋଟାଏ ଜିପ୍‌ରେ ବୋଝେଇ କରିବାର ଉପାୟ ବାହାରିଲା ଯେ, ଆଗେ ମଣିଷଯାକ ବସିଯିବେ ଓ ତା'ପରେ ଜିନିଷ ଲଦି ଦିଆଯିବ । ବିମଳାବହନ ପରେ

ଆଧ୍ୟାତ୍ମିକ ସାଧନା ପ୍ରତି ଆକୃଷ୍ଟ ହୋଇ ସାଧାରଣ ସେବା କ୍ଷେତ୍ରରୁ ଓହରିଯାଇ ସାଧନାରେ ଲାଗିଲେ । ଚଉବନ ମସିହା ଅଗଷ୍ଟରେ ଓଡ଼ିଶାରେ ଧୀରେନ୍ ମଜୁମଦାରଙ୍କର ମଧ୍ୟ ଗସ୍ତ ହେଲା । ସେ ସେତେବେଳେ ସର୍ବ ସେବା ସଂଘର ସଭାପତି ଥିଲେ । ସେତେବେଳେ ମୁଁ ଧୀରେନ୍‌ଭାଇଙ୍କ ବିଷୟରେ ବେଶି କିଛି ଜାଣି ନ ଥିଲି । ପରେ ତାଙ୍କର ଆତ୍ମକଥା 'ସମଗ୍ର ଗ୍ରାମ ସେବାକୀ ଓର' ପଢ଼ିଲି । ସେ ବହିପତ୍ର ବେଶୀ ପଢ଼ିନାହାନ୍ତି ବା ପଢ଼ନ୍ତି ନାହିଁ । ଜୀବନର ବିବିଧ କ୍ଷେତ୍ରରେ ଓ ବିଶେଷ କରି ଗାଁଲୋକଙ୍କ ଭିତରେ କାମର ତାଙ୍କର ଯେଉଁ ଅଗାଧ ଅଭିଜ୍ଞତା ଅଛି ତାହାରି ଭିତରେ ସେ ଦୁନିଆକୁ ଦେଖନ୍ତି ଓ ମତ ଦିଅନ୍ତି । ବିପ୍ଳବୀ ପାଇଁ ଶ୍ରମନିଷ୍ଠାର ଆବଶ୍ୟକତା ଉପରେ ତାଙ୍କର ବେଶି ଜୋର୍ ।

## ଭୂଦାନର ପ୍ରଗତି

କଟକ ଜିଲ୍ଲା ସଂଯୋଜକ ଥିବାବେଳେ ମୁଁ ଆଉ ଏକ ଖାଦ୍ୟର ପ୍ରୟୋଗ ଚଳେଇଥିଲି । ସେ ବର୍ଷ କଟକ ଜିଲ୍ଲାରେ ଆମ୍ବ ପ୍ରଚୁର ହୋଇଥାଏ । ବାଙ୍କୀ, ବେଣ୍ଟକାର ଆଦି ଆଡ଼ର ଭଲ ଆମ୍ବ ଖୁବ୍ ଶସ୍ତାରେ ମିଳୁଥାଏ । ଟଙ୍କାକୁ ବୋଧହୁଏ କୋଡ଼ିଏଟା ଯାଏ । ମୁଁ ପ୍ରସ୍ତାବ ଦେଲି ଯେ, ରନ୍ଧାବଢ଼ାର ଏତେ ହେଙ୍ଗାମାରେ କାହିଁକି ପଶିବା, ଯେତେଦିନଯାଏ ଆମ୍ବ ମିଳୁଛି ଆମ୍ବ ଖିଆଯାଉ । ସମସ୍ତେ ରାଜି ହେଲେ । ପ୍ରତିଦିନ ଦଶ ପନ୍ଦର ଟଙ୍କାର ଆମ୍ବ କିଣି ଖାଇବା ଘରର ଗୋଟାଏ କୋଣରେ ଧୋଇଧାଇ କୁଢ଼େଇ ଦିଆଯାଏ । ଖାଇବା ବେଳ ହେଲେ ଆମେ ସମସ୍ତେ ତାକୁ ଘେରି ବସିଯାଉ ଓ 'ସହନାବବତୁ' ମନ୍ତ୍ର ବୋଲିଦେଇ ଯେ ଯେତେ ପାରୁ ଆମ୍ବ ଖାଉ । ସକାଳ, ଦ୍ୱିପ୍ରହର, ସନ୍ଧ୍ୟା, ତିନି ଓଳି ଖାଇବା ଏମିତି ଚାଲିଲା । ଏଥିରେ ବି ତିନି ଦିନ ପରେ ଦେଖାଗଲା ଯେ କେତେକ କର୍ମୀଙ୍କୁ ଆଉ ଆମ୍ବ ପୋଷଉ ନାହିଁ । ସେମାନେ ଯାଇ ଭାତ ମୁଠିଏ ଯୋଗାଡ଼ରେ ଲାଗିଲେଣି । ମୋର ନିଜର କିନ୍ତୁ ଯେମିତି ଆଳୁ ବେଳେ ହୋଇଥିଲା ସେମିତି ଏ ଆମ୍ବ ପରଖରେ ଅରୁଚି ହୋଇ ନ ଥିଲା ।

୧୯୫୩ର ସର୍ବୋଦୟ ସମ୍ମିଳନୀ ବିହାରର ଚାଣ୍ଡିଲରେ ହୋଇଥିଲା । ବିନୋବାଜୀ ମେଲେରିଆରେ କଠିନ ଭାବରେ ପୀଡ଼ିତ ହୋଇ ଏଇଠି ଦୁଇମାସ ଖଣ୍ଡେ ବିଶ୍ରାମ କରିଥିଲେ । ତାଙ୍କର ଜ୍ୱର ଆରମ୍ଭ ହେବାର ଦ୍ୱିତୀୟ ଦିନରେ ବାପା, ଆଚାର୍ଯ୍ୟ ମହାଶୟ, ଗୁଣନିଧିବାବୁ, ହୋତା ମହାଶୟ, ବୋଉ, ଶରତବାବୁ, ମୁଁ ଓ ଆଉ ଜଣେ ଅଧେ କିଏ ତାଙ୍କ ସହିତ ଏଇ ଚାଣ୍ଡିଲ ପାଖରେ ଦେଖାକରି ଓଡ଼ିଶାର ଭୂଦାନ କାମ ବିଷୟରେ ପରାମର୍ଶ କରିଥିଲୁ । ଚାଣ୍ଡିଲ ସମ୍ମିଳନୀରେ ବିନୋବା ତାଙ୍କର ବକ୍ତୃତାରେ 'ତୃତୀୟ ଶକ୍ତି'ର ବିଚାର ବୟାନ କଲେ ଯେ 'ହିଂସାଶକ୍ତିର ବିରୋଧୀ, ଦଣ୍ଡ ଶକ୍ତିରୁ ଭିନ୍ନ ଏକ ତୃତୀୟ ଶକ୍ତି' ସମାଜରେ ସୃଷ୍ଟି କରିବା ସର୍ବୋଦୟ ଆନ୍ଦୋଳନର କାମ । ଏ ବିଶ୍ଳେଷଣମୂଳକ ବକ୍ତୃତାଟି ଅତି ଉଚ୍ଚକୋଟୀର ହୋଇଥିଲା ଓ ଜୟପ୍ରକାଶଜୀ ଏହାରି ଦ୍ୱାରା ପ୍ରଭାବିତ ହୋଇ ଭୂଦାନ କାମରେ ପୂରାପୂରି ଲାଗିପଡ଼ିଥିଲେ ।

୧୯୫୪ ଖରାଦିନେ ଗୟାରେ ସର୍ବୋଦୟ ସମ୍ମିଳନୀ ହେଲା । ଗୟା ସମ୍ମିଳନୀ ବେଳକୁ ଦେଶରେ ଭୂଦାନ ଆନ୍ଦୋଳନ ଜୋରସୋର୍‌ରେ ଚାଲିଲାଣି । ବିଶେଷକରି ବିହାରରେ । ସେତେବେଳେ ସେଠି ବିନୋବାଙ୍କ ପଦଯାତ୍ରା ଚାଲିଥାଏ । ଏ ସମ୍ମିଳନୀରେ ଜନସମାଗମ ଅତି ବିପୁଳ ହୋଇଥିଲା ଓ ପ୍ରଧାନମନ୍ତ୍ରୀ ନେହେରୁ ମଧ୍ୟ ଦିନକ ପାଇଁ ଆସିଥିଲେ । ଜୟପ୍ରକାଶଜୀ ୧୯୫୩ ରୁ ଭୂଦାନ କାମରେ ମନପ୍ରାଣ ଦେଇ ଲାଗିସାରିଥା'ନ୍ତି । ଗୟା ସମ୍ମିଳନୀରେ ସେ ଘୋଷଣା କଲେ ଯେ ସେ ଏ କାମରେ ଏଣିକି ଜୀବନଦାନ କଲେ । ଏହି କାମ ହିଁ ତାଙ୍କର ଜୀବନର ଏକମାତ୍ର ବ୍ରତ ହେବ । ଏହାର ଉତ୍ତରରେ ବିନୋବା ମଧ୍ୟ 'ଭୂଦାନଯଜ୍ଞମୂଳକ ଗ୍ରାମୋଦ୍ୟୋଗପ୍ରଧାନ ଅହିଂସା ବିପ୍ଳବ" ପାଇଁ ଜୀବନଦାନ ଘୋଷଣା କଲେ । ଏହାପରେ ସେ ସମ୍ମିଳନୀରେ ଜୀବନଦାନର ସୁଅ ଛୁଟିଲା ଓ ଆମେ ସବୁ ମଧ୍ୟ ଜୀବନଦାନ ଘୋଷଣା କଲୁ । ଆଠ ଶହ ଉପରେ ଲୋକ ଏଭଳି ଘୋଷଣା କଲେ । ସେମାନଙ୍କ ଭିତରେ ବିହାରର କର୍ମୀ ହିଁ ସବୁଠୁଁ ବେଶି । ପରେ ବିହାରର ଜୀବନଦାନୀମାନଙ୍କର ଶିବିର ଇତ୍ୟାଦି କରାଯାଇ ସେମାନଙ୍କୁ କାମରେ ଲଗାଇବା ଉଦ୍ୟମ ହେଲା । ଅଧିକାଂଶ କାମରେ ଲାଗିଲେ ମଧ୍ୟ, ମାତ୍ର ଏମାନଙ୍କୁ ନେଇ ଏକ ଶକ୍ତିଶାଳୀ କର୍ମୀ ଗୋଷ୍ଠୀରେ ପରିଣତ କରିବା ପାଇଁ ଯେ ଭଳି ଉଦ୍ୟମ ଆବଶ୍ୟକ ତାହା କରାଯାଇ ପାରିଲା ନାହିଁ ।

ଗୟା ସମ୍ମିଳନୀରୁ ଫେରିବା ପରେ ଏଇ ଜୀବନଦାନ ନେଇ ମୋର ବାବାଙ୍କ (ଶ୍ୱଶୁର ମହାଶୟ) ସାଙ୍ଗରେ ଖୁବ୍ ଯୁକ୍ତିତର୍କ ହୋଇଥିଲା । ତାଙ୍କର ଯୁକ୍ତି ଥିଲା ଯେ, ପିଲାଛୁଆ ନେଇ ଘର କରିଥିବା ଲୋକର ଜୀବନ ତ ଆଗରୁ ବନ୍ଧକ ରହିଛି, ସେ ଅନ୍ୟ କୌଣସି କିଛି ପାଇଁ ଜୀବନ ଦାନ କିପରି କରିବ ? ଜୀବନଦାନକୁ ମୁଁ ଏଇ ଅର୍ଥରେ ବୁଝିଥିଲି ଯେ, ତା'ର ଅର୍ଥ ଗୋଟାଏ ଲକ୍ଷ୍ୟକୁ ଜୀବନର ପ୍ରଧାନ ବ୍ରତ ରୂପେ ଧରି ସେଥିପାଇଁ ଅବିରତ କାମ କରିଯିବା । ଘର ସଂସାର ଛାଡ଼ି ବାବାଜୀ ହୋଇଯିବା ନୁହେଁ । ମୁଁ ବାବାଙ୍କୁ ସେଇ ଯୁକ୍ତି କରି ବୁଝାଇଲି । ଘରସଂସାର କରି ମଧ୍ୟ ମଣିଷ ସ୍ୱରାଜ ପାଇଁ କାମ କରୁଥିଲା । ଏବେ ଏ ଭୂଦାନମୂଳକ ଗ୍ରାମୋଦ୍ୟୋଗପ୍ରଧାନ ଅହିଂସା ବିପ୍ଳବ ପାଇଁ ସେମିତି କରିବ । ମୋର ଯୁକ୍ତିଦ୍ୱାରା ବାବାଙ୍କ ଆଶଙ୍କା ଅନେକାଂଶରେ ଦୂର ହେଲା ବୋଲି ମନେହେଲା । ଅସଲ କଥା ଗୋଟାଏ ଶବ୍ଦ 'ଦାନ' ମିଳିଗଲା ତ ତାକୁ ପ୍ରତ୍ୟେକ କଥାରେ ଯୋଡ଼ିଦେବା ଦ୍ୱାରା ଆଲୋକ ପରିବର୍ତ୍ତେ କୁହୁଡ଼ି ହିଁ ବେଶି ସୃଷ୍ଟି ହେଉଥିଲା । ଗ୍ରାମଦାନରେ ମଧ୍ୟ ସେମିତି ଦାନ ଶବ୍ଦ ସେ କାର୍ଯ୍ୟକ୍ରମର ପ୍ରକୃତ ତାତ୍ପର୍ଯ୍ୟକୁ ବହୁତ ପରିମାଣରେ ଘୋଡ଼ାଇ ପକାଉଥିଲା ଓ ସେ ଶବ୍ଦର ବ୍ୟାଖ୍ୟା କରିବାରେ ହିଁ ବହୁତ ଶକ୍ତି ଖର୍ଚ୍ଚ ହେଉଥିଲା ।

# ଓଡ଼ିଶାରେ ବିନୋବା

ବିନୋବାଙ୍କ ପଦଯାତ୍ରା ଓଡ଼ିଶାରେ ୧୯୫୫ ଜାନୁୟାରୀ ୨୬ରେ ଆରମ୍ଭ ହୋଇ ଆଠମାସ କାଳ ଚାଲିଲା । ତା'ର ବିଶଦ ବିବରଣୀ କ୍ରାନ୍ତିଯାତ୍ରା ବହିରେ ରହିଛି । ବିନୋବାଙ୍କର ବକ୍ତୃତାର ଓଡ଼ିଆ ଅନୁବାଦକ ଭାବରେ ମୁଁ ପୁରା ସମୟ ପଦଯାତ୍ରାରେ ରହିଛି । ମୁଁ ଯେପରି ଭାବରେ ଅନୁବାଦ କରିପାରିଲି ସେପରି ଶକ୍ତି ମୋଠାରେ ଥିଲା ବୋଲି ମୋର ପୂର୍ବରୁ କେବେ ଧାରଣା ହିଁ ନଥିଲା । ବିନୋବାଙ୍କ ଗହଣରେ ଏ କେତେ ମାସ ରହିବାଦ୍ୱାରା ମୋର ବହୁତ କିଛି ବିକାଶ ହୋଇଥିଲା । ମୋର ସେତେବେଳେ ଗୋଟାଏ କର୍ମପ୍ରବଣତାର ଆଧିକ୍ୟ ଥାଏ । ସବୁବେଳେ କିଛି ଗୋଟାଏ କାମ, ଦାୟିତ୍ୱ ବା ଚିନ୍ତା ନେଇ ଏପଟ ସେପଟ ହେବା ଅଭ୍ୟାସ ହୋଇଯାଇଥାଏ । କାମ ନଥାଇ ଖାଲି ରହିଲେ ଗୋଟାଏ ଉଦ୍‌ବେଗ ଘୋଟି ଆସୁଥାଏ ଯେ କେଉଁଠି କ'ଣ ଗୋଳମାଳ ହୋଇଗଲା । ଦୁଇଦଣ୍ଡ ଚୁପଚାପ୍ ବସିବା ବା ଗପସପ କରିବା କଥା ନଥାଏ । କଟକ ଜିଲ୍ଲାର କେତେକ ରହଣିରେ ସୁମିତ୍ରା ପଦଯାତ୍ରାରେ ଥିଲେ । ମାତ୍ର ତାଙ୍କ ସହିତ ବି ଚାରିପଦ କଥା ହେବାକୁ ମୁଁ ସମୟ ଦେଇ ନଥିଲି । ସେଥିପାଇଁ ସେ ଖୁବ୍ କ୍ଷୁର୍ଣ୍ଣ ହୋଇଥିଲେ ।

ପରେ କ୍ରମେ ଲକ୍ଷ୍ୟ କଲି ଯେ ବିନୋବାଙ୍କ ସାଙ୍ଗରେ ଆସିଥିବା ସାଥୀମାନେ ଉପରଓଳି ବସି ତାଙ୍କ ସାଙ୍ଗରେ ବେଶ୍ ଆଡ୍‌ଡ଼ା ଦେଉଛନ୍ତି । ମୁଁ ବି ସେଥିରେ ଜୁଟିଲି ଓ ସଦାବ୍ୟସ୍ତତା ଭାବଟା କ୍ରମେ କମିଗଲା । ଦେଖିଲି ଯେ, ଏହାଦ୍ୱାରା ଲାଭ ହିଁ ହେଲା । ଏଭଳି ସଦାବ୍ୟସ୍ତତା ପ୍ରକୃତରେ ଗୋଟାଏ ଅସ୍ୱାଭାବିକ ମାନସିକ ସ୍ଥିତି । ସେପରି ଲୋକ ଯେ ପ୍ରକୃତରେ ଅନ୍ୟମାନଙ୍କଠୁଁ ବେଶି କାମ କରିଥାଏ ତାହା ନୁହେଁ ।

ମୋର ଆଧୁନିକ ବିଜ୍ଞାନ ପ୍ରତି ପ୍ରବଳ ଆକର୍ଷଣ ଥିବା କଥା ଆଗରୁ କହିଛି । ଏଣେ ବିକେନ୍ଦ୍ରିତ ଅର୍ଥନୀତିରେ ମୋର ଦୃଢ଼ ବିଶ୍ୱାସ ଥାଏ । କୁମାରପ୍ପା ପ୍ରଭୃତି ଏହାର ଯେଉଁ ବ୍ୟାଖ୍ୟା କରୁଥା'ନ୍ତି ସେଥିରେ ବାଷ୍ପ, ବିଦ୍ୟୁତ ଆଦି ସବୁପ୍ରକାରର ପ୍ରାକୃତିକ ଶକ୍ତିର ବ୍ୟବହାର ବିକେନ୍ଦ୍ରିତ ଶିଳ୍ପରେ ବର୍ଜନୀୟ ବୋଲି ଧରାଯାଉଥାଏ । ଏଥିପାଇଁ ମୋ ମନରେ ଗୋଟାଏ ଦ୍ୱନ୍ଦ୍ୱ ଥାଏ । ବିନୋବା ଓଡ଼ିଶାରେ ଥିବାବେଳେ ବିଜ୍ଞାନ ଓ ଆତ୍ମଜ୍ଞାନ ବିଷୟରେ ଯେଉଁ ବିବେଚନା କଲେ ତାହାଦ୍ୱାରା ମୋର ଏ ଦ୍ୱନ୍ଦ୍ୱର ଅବସାନ ହେଲା । ଧର୍ମ ଓ ଆତ୍ମଜ୍ଞାନ ଭିତରେ ପାର୍ଥକ୍ୟ, ଆତ୍ମଜ୍ଞାନର ସଦାବିକାଶଶୀଳତା ଆଦି ବିଷୟରେ ତାଙ୍କର ବିବେଚନାରୁ ଅନେକ କିଛି ଅଧିକ ସ୍ପଷ୍ଟ ହେଲା । ମୁଁ ଲେଖିଛି ଯେ, ଏଥିପୂର୍ବରୁ ମୁଁ ସତ୍ୟାଗ୍ରହ ଓ ଅହିଂସ ସମାଜର ବିକାଶ ପାଇଁ ମନୋବିଜ୍ଞାନର ସାହାଯ୍ୟର ଆବଶ୍ୟକତା ଉପଲବ୍ଧି କରିଥିଲି । ଏବେ ମୋର ଦୃଷ୍ଟିକୁ ଆସିଲା ଯେ, ମନୋବିଜ୍ଞାନ, ସମାଜ ବିଜ୍ଞାନ ଆଦିରୁ ଯେଉଁ ଜ୍ଞାନ ମିଳେ ତାହା ଯେମିତି ଆତ୍ମଜ୍ଞାନ, ସେମିତି ଆଧ୍ୟାତ୍ମିକ ପରମ୍ପରାରେ ମଧ୍ୟ ସେହି ଧରଣର ଆତ୍ମଜ୍ଞାନ ଲାଭର ଉଦ୍ୟମ ହୋଇଛି ଓ ଏଭଳି ଆତ୍ମଜ୍ଞାନର ବ୍ୟାବହାରିକ ତାତ୍ପର୍ଯ୍ୟ ମଧ୍ୟ ରହିଛି ।

ବିନୋବା ଓଡ଼ିଶାରେ ଥିବାବେଳେ 'ଜୟ ଜଗତ' ଧ୍ୱନି ଦେଉ ନଥିଲେ । କିନ୍ତୁ ତାଙ୍କର ଦୃଷ୍ଟିକୋଣରେ ବିଶ୍ୱମାନବିକତା ଥିଲା ଓ ତାହା ମଧ୍ୟ ମୋର ପୂର୍ବରୁ ଥିବା ଜାଗତିକ ଦୃଷ୍ଟିକୁ ସୁଦୃଢ଼ କଲା । ତାଙ୍କର ଗୋଟାଏ ପରାକ୍ରମ ବା ଏଡ୍‌ଭେଂଚର ବୃତ୍ତି ଥାଏ । ପାହାଡ଼ ଉପରେ ଚଢ଼ିଯିବା, ବରଣବୁଦାରେ ବୁଲିବା ବା ନଈରେ ପଶିବାର ଆନନ୍ଦ ଏଗୁଡ଼ାକ କି ମୋର ମନକୁ ଖୁବ୍ ପାଇଲା ଓ ମୋର ଆଡ୍‌ଭେଞ୍ଚର ବୃତ୍ତିକୁ, ଯେଉଁଟା କି ଗତାନୁଗତିକ ଜଗତର ଚାପରେ ସ୍ତିମିତ ହେଇ ଆସୁଥିଲା, ପୁଣି ସତେଜ କରିଦେଲା । ଏହି ରୂପରେ ନାନାଭାବରେ ମୋର ବ୍ୟକ୍ତିତ୍ୱକୁ ପ୍ରସ୍ଫୁଟିତ କରିବାରେ ବିନୋବାଙ୍କ ସାନ୍ନିଧ୍ୟ ପ୍ରଭୃତ ପରିମାଣରେ ସାହାଯ୍ୟ କରିଛି ।

ଓଡ଼ିଶାରେ ବୁଲିବାବେଳେ ବିନୋବାଙ୍କ ସହିତ ସମ୍ପର୍କଟା ସେତେ ସହଜ ହେଉନଥିଲା । ପରେ କ୍ରମେ ତାହା ଖୁବ୍ ସହଜ ହେଲା । ତାଙ୍କ ସହିତ କୌଣସି ବିଷୟରେ ଜୋର୍ ଯୁକ୍ତିତର୍କ କରିବାକୁ ଓ ଥଟାଟାପରା ହେବାକୁ ଆଉ ବିଶେଷ ସଙ୍କୋଚ ରହିଲା ନାହିଁ । ତାଙ୍କ କାନ ଖରାପ ହେଇଯିବା ପରେ ଯେତେବେଳେ ଲେଖାପଢ଼ି ଦ୍ୱାରା ଆଲୋଚନା କରିବାକୁ ହେଲା ସେତେବେଳେ ଅବଶ୍ୟ ବହୁତ ଅସୁବିଧା ହେଲା ।

## କୋରାପୁଟରେ ଗ୍ରାମଦାନ

କୋରାପୁଟରେ ହଜାରେ ପାଖାପାଖି ଗ୍ରାମଦାନ ହେଇଯିବା ଫଳରେ ସେଠି ସେ ସବୁ ଗାଁକୁ ଧରି ପୁନର୍ଗଠନ କାମ କରିବା କଥା ଉଠିଲା । ବିନୋବାଙ୍କ ଡାକରାରେ ଅନ୍ନାସାହେବ ସହସ୍ରବୁଦ୍ଧେ ଆସି ସେ କାମର ଦାୟିତ୍ୱ ନେଲେ । ଆନ୍ନାସାହେବଙ୍କର ପ୍ରତିଭା ବହୁମୁଖୀ । ଗାଁମାନଙ୍କର ଆର୍ଥିକ ସମସ୍ୟା ଓ ସେସବୁର ସମାଧାନର ପନ୍ଥା ବିଷୟରେ, କୃଷି ଓ ଗ୍ରାମଶିଳ୍ପର ବିକାଶରେ ନୂଆ ନୂଆ ପନ୍ଥାର ସମ୍ଭାବନା ବିଷୟରେ ତାଙ୍କର ଜ୍ଞାନ ଓ ଅଭିଜ୍ଞତା ପ୍ରଚୁର । ସେ ଆସି ଗ୍ରାମଦାନ ଅଞ୍ଚଳର ବିକାଶ ପାଇଁ ଏକ ବ୍ୟାପକ, ବିରାଟ ଓ ଦୀର୍ଘ ମିଆଦୀ ଯୋଜନା ତିଆରି କରି କାମ ଆରମ୍ଭ କଲେ । ତାଙ୍କ ସହିତ କାମ କରିବାକୁ ଅନେକ ପ୍ରତିଭାବାନ ଯୁବକ ମଧ୍ୟ ଆସିଲେ । ଶ୍ରୀ ଦାତେ ଭାରତ ସରକାରଙ୍କର ଏକ ଉଚ୍ଚ ପାହ୍ୟାର ଇଞ୍ଜିନିୟର ଚାକିରୀରୁ ବିନା ଦରମାରେ ଛୁଟି ନେଇ କାମ କରିବାକୁ ଆସିଲେ । ନଗୀନ ପରୀଖ ବମ୍ବେର ଧନୀ ପରିବାରର ପିଲା । ସମବାୟ ସଙ୍ଗଠନ ବିଷୟରେ ତାଙ୍କର ବିଶେଷ ତାଲିମ ଥିଲା । ସଚ୍ଚିଦାନନ୍ଦ ଜଣେ ପ୍ରତିଭାବାନ ପଞ୍ଜାବୀ ଯୁବକ । ମହାରାଷ୍ଟ୍ରରୁ ପଣ୍ଡିତ ପାଟଣକର ଆସିଥିଲେ । ସେ ବି ଉଚ୍ଚଶିକ୍ଷିତ । ଅର୍ଥ ବିଜ୍ଞାନରେ ତାଙ୍କର ବିଶେଷ ଦଖଲ ଥିଲା । ବି.ଜି. ରାଓ ବୋଲି ଜଣେ ରାସାୟନିକ ଇଞ୍ଜିନିୟର ମଧ୍ୟ ଆସିଥିଲେ ଏମାନଙ୍କ ବ୍ୟତୀତ ଆହୁରି ଅନେକ ଥିଲେ ଓ ନୂଆ ଲୋକଙ୍କ ଛଡ଼ା ପୁରୁଣା ସର୍ବୋଦୟ କର୍ମୀ ମଧ୍ୟ ମହାରାଷ୍ଟ୍ର ଆଡୁ ଆସିଥିଲେ । ଓଡ଼ିଶାର କଟକ, ପୁରୀ ଓ ଅନ୍ୟ କେତେକ ଜିଲ୍ଲାର ବହୁତ କର୍ମୀ ତ ଗ୍ରାମଦାନ ପ୍ରଚାର ପାଇଁ କୋରାପୁଟରେ ଥା'ନ୍ତି । ସେମାନଙ୍କ ଭିତରୁ କେତେକ ଓ ଆଉ ଅନେକ ନୂଆ କର୍ମୀ ମଧ୍ୟ ଏ ନିର୍ମାଣ କାମରେ

ଯୋଗ ଦେଇଥା'ନ୍ତି । ଏଇ କାମ ପାଇଁ କେନ୍ଦ୍ର ସରକାର କିଛି ଟଙ୍କା ଦେଲେ । ଆନ୍ନାସାହେବ ରିଜର୍ଭ ବ୍ୟାଙ୍କ ସାଙ୍ଗରେ ମଧ୍ୟ କଥାବାର୍ତ୍ତା ଚଳେଇଲେ ଓ ସାହୁକାରଙ୍କ ଦାଉ ଲୋପ କରିବା ପାଇଁ ଯଥେଷ୍ଟ ପରିମାଣରେ ବ୍ୟାଙ୍କ ଋଣ ମିଳିବା ବିଷୟରେ ମଧ୍ୟ କଥା ଅନେକ ଦୂର ଆଗେଇଲା ।

କିନ୍ତୁ ଏଣେ ମୁଖ୍ୟମନ୍ତ୍ରୀ ମହତାବବାବୁ ବାରବାର ଭୂଦାନକୁ ଦାରିଦ୍ର୍ୟ ବଣ୍ଟନ ବୋଲି ସମାଲୋଚନା କରୁଥା'ନ୍ତି ଓ କୋରାପୁଟରେ ଗ୍ରାମଦାନର ପ୍ରସାରକୁ ପ୍ରସନ୍ନ ଦୃଷ୍ଟିରେ ଦେଖୁ ନଥା'ନ୍ତି । ସେ ନାନା ପ୍ରକାର ବାଧା ସୃଷ୍ଟି କରିବାକୁ ଲାଗିଲେ । ସେତେବେଳେ ଶିବରାମନ ରାଜସ୍ୱ ସେକ୍ରେଟେରୀ କି କ'ଣ ଥା'ନ୍ତି । କୋରାପୁଟ ପରିସ୍ଥିତି ବିଷୟରେ ସରକାର ଉଦ୍‌ବେଗଜନକ ସମ୍ବାଦ ପାଇଛନ୍ତି ବୋଲି କହି ତାଙ୍କୁ ସେଠାରେ ପରିସ୍ଥିତି ଅନୁସନ୍ଧାନ କରି ଏକ ରିପୋର୍ଟ ଦେବାପାଇଁ କୁହାଗଲା ଓ ସେ ରିପୋର୍ଟ ଦେଲେ ଯେ ସେଠି ଗ୍ରାମଦାନ ଆଳରେ ହିଂସା ପ୍ରଚାର ହେଉଛି । ସାହୁକାର, ବଡ଼ ଜମିମାଲିକ ଆଦିଙ୍କୁ ଧମକଚମକ ଦିଆଯାଉଛି ଓ ଏହା ଫଳରେ ସେଠି ହିଂସାକାଣ୍ଡ ଫୁଟି ବାହାରିପାରେ ଇତ୍ୟାଦି । ଏହାକୁ ନେଇ ସରକାରଙ୍କ ସହିତ ଆଲୋଚନା ହେଇ ସ୍ପଷ୍ଟୀକରଣ ଦିଆଗଲା । ମାତ୍ର ରାଜ୍ୟ ସରକାରଙ୍କ ଆଡୁ ନାନା ଭିତିରି ପ୍ରତିବନ୍ଧକ ସୃଷ୍ଟି କରାଯିବା ଫଳରେ କାମ ବିଶେଷ ଆଗେଇ ପାରିଲା ନାହିଁ । ୧୯୫୭ ରେ ଏଲୱାଲ୍ ସମ୍ମିଳନୀବେଳେ ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥଙ୍କ ସାଙ୍ଗରେ ମହତାବବାବୁ, ଆନ୍ନାସାହେବ, ଦାଦା ହେରିକା ଏକାଠି ବସି ଆଲୋଚନା କରିବା ପରେ ଅନେକ ଅସୁବିଧା ଦୂର ହେଇଗଲା, କିନ୍ତୁ ଏସବୁ ଛଡ଼ା କାମ ନ ଆଗେଇବାର ଅନ୍ୟ କାରଣ ମଧ୍ୟ ଥିଲା ।

ଗ୍ରାମଦାନ କରିବା ଦ୍ୱାରା ଲୋକଙ୍କର ମାନସିକତାରେ କେତେ ପରିବର୍ତ୍ତନ ହେଉଛି, ସେ ବିଷୟରେ ବହୁ ଲୋକଙ୍କ ମନରେ ଅତିରଞ୍ଜିତ ଧାରଣା ଥିଲା । ଗ୍ରାମଦାନ କରି ଲୋକେ ଏକାଚୋଟକେ ନୂଆ ଆଦର୍ଶରେ ଶତକଡ଼ା ଶହେ ଦୀକ୍ଷିତ ହୋଇଗଲେ ବୋଲି ବିଚାରି ସେମାନଙ୍କୁ ଆଉ କୌଣସି ବିଷୟରେ ବୁଝାଇବାର ଆବଶ୍ୟକତା ଅଛି ବୋଲି ଆନ୍ନା ସାହେବ ପ୍ରଭୃତି ଅନୁଭବ କଲେ ନାହିଁ । ସେମାନଙ୍କ ଧାରଣା ହେଲା ଯେ, ଅମୁକ କାମ ଗ୍ରାମବାସୀ କରିବା ଉଚିତ ବୋଲି ସେମାନଙ୍କୁ କହିଦେଲେ ସେମାନେ କରିଯିବେ । ଆଦିବାସୀଙ୍କର ମନୋଭାବ, ସେମାନଙ୍କର ସାଂସ୍କୃତିକ ପୃଷ୍ଠଭୂମି ଆଦି ବିଷୟରେ ମଧ୍ୟ ବହୁତ କମ୍ ଜ୍ଞାନଥିଲା । କୋରାପୁଟରେ ବହୁକାଳରୁ କାମ କରି ଆସିଥିବା ଯେଉଁ କର୍ମୀଙ୍କର ଆଦିବାସୀଙ୍କ ବିଷୟରେ ପ୍ରତ୍ୟକ୍ଷ ଓ ପ୍ରଗାଢ଼ ଅଭିଜ୍ଞତା ଥିଲା, ସେମାନଙ୍କର ସେ ଅଭିଜ୍ଞତାରୁ ଲାଭ ଉଠାଇବାର ଯଥାଯଥ ବ୍ୟବସ୍ଥା ହେଇପାରିଲା ନାହିଁ ।

ଯୋଜନା ତିଆରିରେ ଗାଁଲୋକଙ୍କୁ ସଂପୃକ୍ତ କରିବା କଥା କାହାରି ଖିଆଲକୁ ବି ଅନେକ ଦିନ ଯାଏ ଆସି ନଥିଲା । ବିଭିନ୍ନ କାର୍ଯ୍ୟକ୍ରମ ବିଷୟରେ ଯେଉଁସବୁ ଆଲୋଚନା ହୁଏ ସେଠିକି ଗ୍ରାମଦାନ ଗାଁର କୌଣସି ଲୋକଙ୍କୁ ପ୍ରାୟ ଡକା ଯାଉନଥିଲା । ଏସବୁ ଫଳରେ ନିର୍ମାଣ କାମରେ ସାଧାରଣ ଲୋକଙ୍କୁ ସମ୍ପୃକ୍ତ କରିବା ଚେଷ୍ଟା ମଧ୍ୟ ବିଶେଷ ସଫଳ ହେଲା ନାହିଁ । ଗ୍ରାମଦାନ ପରେ ଯେଉଁ କାମ ହେବ ସେ ବିଷୟରେ ବାପାଙ୍କର କଳ୍ପନା ଥିଲା ଯେ ଗୋଟାଏ କାର୍ଯ୍ୟକ୍ରମ

ଗୋଟାଏ ଗୋଟାଏ ଆନ୍ଦୋଳନ ପରି ଚାଲିବ । ଜମିବଣ୍ଟା ଆରମ୍ଭ ହେବ ତ ଚାରିଆଡ଼େ ତା'ର ହୋ ଉଠାଇବାକୁ ହେବ । ସେମିତି ନିଶା ଛାଡ଼ିବା ବା କୂଅ ଖୋଳିବାର କାମକୁ ନେଇ ଚହଳ ସୃଷ୍ଟି କରାଯିବ । ଏମିତି ଗୋଟାକୁ ଗୋଟା ଆନ୍ଦୋଳନ ତୁହାକୁତୁହା ଚାଲି ଲୋକଙ୍କର ଉତ୍ସାହ ଓ କର୍ମତତ୍ପରତାକୁ ଜଗେଇ ରଖିବ । ଗ୍ରାମଦାନ ହେଇଯିବା ପରେ ବି ଲୋକଙ୍କୁ ପୂରା ଆଦର୍ଶଟା କ୍ରମେ କ୍ରମେ ପାହାଚ ପାହାଚ କରି ଗ୍ରହଣ କରାଇବାକୁ ହେବ । ପ୍ରତ୍ୟେକ କାର୍ଯ୍ୟକ୍ରମ ବିଷୟରେ ସେମାନଙ୍କ ଭିତରେ ଖାସ୍ ପ୍ରଚାର କରି ସେମାନଙ୍କୁ ଓ୍ୱାକିବହାଲ କରିବାକୁ ହେବ । ଏ କାମ କରିବାର ଢଙ୍ଗ-ଦୁଇଟି ଭିତରେ ଅବଶ୍ୟମ୍ଭାବୀ ବିରୋଧ କିଛି ନଥିଲା ଓ ଦୁଇଟା ମିଶି ଏକ ଶକ୍ତିଶାଳୀ ପନ୍ଥା ହୋଇପାରି ଥା'ନ୍ତା । କିନ୍ତୁ ତାହା ହୋଇପାରିଲା ନାହିଁ । ପୁଣି କେବଳ ବାହାରୁ ସାଧନ ସମ୍ପଦ ମିଳୁଛି ବୋଲି ଗାଁରେ ନେଇ ତାହା ଜମା କରିଦେଲେ ହେବ ନାହିଁ, ଲୋକେ ଯେମିତି ହଜମ କରିପାରିବେ ସେତିକି ଲେଖା କରି ପାଦେ ପାଦେ ଆଗେଇବାକୁ ହେବ । ଏ ବିଷୟରେ ମଧ୍ୟ ପ୍ରଥମରୁ ଧାରଣା ସ୍ପଷ୍ଟ ନଥିଲା । ଲୋକଙ୍କର ଆତ୍ମବିଶ୍ୱାସ ଓ ଅଭିକ୍ରମ ଜଗେଇବା ପାଇଁ ହେଲେ ଲୋକେ ପ୍ରତ୍ୟେକ କାମରେ ନିଜଆଡ଼ୁ ଶ୍ରମ ଆକାରରେ ହେଉ ବା ଉପକରଣ ବା ପଇସା ଆକାରରେ ହେଉ କିଛି ଲଗେଇ କାମ ଆରମ୍ଭ କରିବା ଆବଶ୍ୟକ ଏ ବିଚାର ଅନେକଙ୍କର ଥିଲା । ମାତ୍ର ଏ ବିଷୟରେ ଆମ୍ଭାଙ୍କର ବିଚାର ସ୍ପଷ୍ଟ ନଥିଲା । ଥରେ ଏ ବିଷୟରେ ଖୁବ୍ ଆଲୋଚନା ହେଲା । ଆମ୍ଭା ଯୁକ୍ତି କଲେ ଯେ ଗାଁମାନଙ୍କୁ ଶହ ଶହ ବର୍ଷ ଧରି ଶୋଷଣ କରାଯାଇ ଯେତେ ସମ୍ପଦ ବାହାରକୁ ଯାଇଛି ତାହା ଫେରସ୍ତ ମିଳିବା ଚାହି । ସେଥିପାଇଁ ବାହାରୁ ଯାହା ମିଳୁଛି ସେଥିରେ ଲୋକଙ୍କର ହକ୍ ଅଛି । ଲୋକେ ପୁଣି ଏତେ ଦେଲେ ଯାଇ ତାଙ୍କୁ ସାହାଯ୍ୟ ମିଳିବ ଏ ସର୍ତ୍ତ ଲଦିବା ଅନୁଚିତ । ଆଉ ଗାଁର ବିକାଶ ପାଇଁ ଲୋକଙ୍କର ଏତେ ସାହାଯ୍ୟ ଦରକାର ଯେ ତାହା ତୁଳନାରେ ସେମାନଙ୍କଠୁଁ ଯାହା ମିଳିବ ତାହା ଅତି ନଗଣ୍ୟ ଓ ସେତକ ପାଇଁ ଏତେ ମୁଣ୍ଡ ଖେଳେଇବାର ଆବଶ୍ୟକତା ନାହିଁ ।

ଲୋକେ ନିଜେ ଦିନକର ଶ୍ରମ ବା ପଇସାଟିଏ ଲେଖାଁ ଦେଲେ ବି ତାହା ଯେ ତାଙ୍କ ଭିତରେ ଏକ ନୂତନ ଆତ୍ମବିଶ୍ୱାସ ଓ ଅଭିକ୍ରମର ପ୍ରତୀକ ଓ ସେ ହିସାବରେ ତା'ର ମୂଲ୍ୟକୁ ଟଙ୍କା ଅଣା ପାହିରେ ହିସାବ କରି ହେବ ନାହିଁ, ଏକଥା ଆମ୍ଭା ସେତେବେଳେ ଉପଲବ୍ଧି କରି ପାରିଲେ ନାହିଁ । ଠିକ୍ ଏଇ ଅବସ୍ଥା ଅନୁନ୍ନତ ଦେଶମାନଙ୍କୁ ବିଦେଶୀ ସାହାଯ୍ୟ ନେଇ ଉପୁନ୍ନ ହେଉଛି । ଏବେ ବିଶିଷ୍ଟ ଅର୍ଥନୀତିଜ୍ଞମାନେ ବି କହିବା ଆରମ୍ଭ କଲେଣି ଯେ, ବିଦେଶୀ ସାହାଯ୍ୟ ଦ୍ୱାରା ଏସବୁ ଦେଶର ଆର୍ଥିକ ବିକାଶର ସାହାଯ୍ୟ ଯେତେ ହେଉଛି ତାହାଠୁ ବାଧା ସୃଷ୍ଟି ହେଉଛି ବେଶି । ଏହାଦ୍ୱାରା ନିଜ ଦେଶରେ ଥିବା ସମ୍ପଦକୁ ସୁନିଯୋଜିତ ଭାବରେ ସାଇତି ସମ୍ଭାଳି ବ୍ୟବହାର କରିବା ଆଡ଼କୁ ଦୃଷ୍ଟି ଯାଉ ନାହିଁ । ବିଦେଶୀ ସାହାଯ୍ୟରେ ମଧ୍ୟ ଫୁଲାଫାଙ୍କିଆ ଅପବ୍ୟୟ ହେଉଛି । ଆତ୍ମବିଶ୍ୱାସ ପରିବର୍ତ୍ତେ ପରନିର୍ଭରଶୀଳତାର ମନୋବୃତ୍ତି ବଢୁଛି । କୋରାପୁଟର ଗ୍ରାମଦାନ ଗାଁମାନଙ୍କରେ ଏଇ ପ୍ରକାର ପ୍ରତିକ୍ରିୟା ଯେତେ ପରିମାଣରେ ଦେଖିବାକୁ ମିଳିଥିଲା ।

ପୁଣି ଗ୍ରାମଦାନ କର୍ମୀ ଓ ନିର୍ମାଣ କର୍ମୀଙ୍କର ଦୃଷ୍ଟିକୋଣରେ ମଧ୍ୟ ପାର୍ଥକ୍ୟ ଦେଖାଦେଲା । ଗ୍ରାମଦାନ କର୍ମୀମାନେ ଅନୁଭବ କଲେ ଯେ, ଭୂମିବିପ୍ଳବକୁ ସମ୍ପୂର୍ଣ୍ଣ କରିବା ପାଇଁ ଗ୍ରାମଦାନ ପ୍ରଚାର ଓ ସଂଗ୍ରହ ଲଗାତାର ଆଗେଇ ଚାଲିବା ଚାହି । ନିର୍ମାଣକର୍ମୀଙ୍କ ମତ ହେଲା ଯେ, ଯେତିକି ଗ୍ରାମଦାନ ମିଳିଛି ସେତିକିକୁ ସାଇତି ସମ୍ଭାଳି ସେଥିରେ ନିର୍ମାଣ କାମ ଚଳେଇବା ଚାହି । ଏସବୁ ଗାଁ ଆଦର୍ଶ ରୂପରେ ଗଢ଼ି ଉଠିଲେ ପୁଣି ଅନ୍ୟ ଗାଁସବୁ ଉପରେ ତା'ର ପ୍ରଭାବ ପଡ଼ିବ ଓ ନୂଆ ଗ୍ରାମଦାନ ସହଜରେ ଆସେଇବ । ବିନୋବା ଖୋଦ ଗ୍ରାମଦାନ ସଂଗ୍ରହ କାମରେ ଆଗେଇ ଚାଲିବା ସପକ୍ଷରେ ଥିଲେ ଓ କହୁଥିଲେ ଯେ, ଚାରିଆଡ଼ଯାକ ପୁରୁଣା ସମାଜ ଥିବ ଓ ତା' ଭିତରେ ତେମେ କେତେଟା ଆଦର୍ଶ ଗାଁ ଗଢ଼ିବା ଚେଷ୍ଟା କରିବ ଏ କଥା ହୋଇପାରିବ ନାହିଁ । ବାହାରର ପ୍ରଭାବ ଏସବୁ ଗାଁ ଉପରେ ପଡ଼ିବାର ସମ୍ଭାବନା ବେଶି । କିନ୍ତୁ ସେ କୋରାପୁଟରେ ନିର୍ମାଣ କାମ ଚଳେଇଯିବା ସପକ୍ଷରେ ଥିଲେ । ଗ୍ରାମଦାନ ପ୍ରଚାର ଓ ନିର୍ମାଣ ପାଇଁ ତ ଅଲଗା ଅଲଗା କର୍ମୀ ଗୋଷ୍ଠୀ ସେତେବେଳକୁ ରହିଥିଲେ ।

କିନ୍ତୁ ଗ୍ରାମଦାନ ପ୍ରଚାରକ ଗୋଷ୍ଠୀଙ୍କ ପକ୍ଷରୁ ଆଉ ଏକ ଆପତ୍ତି ବାହାରିଲା । ଭୂଦାନ ଗ୍ରାମଦାନ କାମ କରୁଥିବା କର୍ମୀମାନେ ତ ବହୁତ କମ୍‌ରେ ଚଳୁଥିଲେ । ନାମକୁମାତ୍ର ଭତ୍ତା ପାଉଥିଲେ । ନିର୍ମାଣ କର୍ମୀମାନେ ଖଦୀ ସଂସ୍ଥା ଓ ଅନ୍ୟାନ୍ୟ ରଚନାତ୍ମକ ସଂସ୍ଥାମାନଙ୍କରେ ମିଳୁଥିବା ହାରରେ ବେତନ ପାଇଲେ ।

ଦାତେ, ନଗୀନଭାଇ, ରାଓ ପ୍ରଭୃତିଙ୍କ ଭଳି ଉଚ୍ଚଶିକ୍ଷିତ କର୍ମୀମାନେ ଦୁଇଶହ ତିନିଶହ ଲେଖା ଟଙ୍କା ମାସକୁ ପାଇଲେ । ସେମାନେ ପ୍ରକୃତରେ ଅନେକ ବେଶି ଦରମା ଓ ଆୟ ଛାଡ଼ ଆସିଥିଲେ ଓ ପ୍ରାୟ ଅଧା ବା ତାଠୁଁ କମ୍ ପାରିଶ୍ରମିକରେ ଏଠି କାମ କରୁଥିଲେ । କିନ୍ତୁ ଆପତ୍ତି ଉଠିଲା ଯେ କର୍ମୀମାନେ ଏଭଳି ପାରିଶ୍ରମିକ ନେବେ ଓ ଗାଁଲୋକଙ୍କ ଅପେକ୍ଷା ଉଚ୍ଚତର ସ୍ତରରେ ଚଳିବେ ତ ଲୋକଙ୍କର ସେବା କ'ଣ କରିବେ ? ଏହାଦ୍ୱାରା ଲୋକଙ୍କ ଆଗରେ ଭୁଲ ଆଦର୍ଶ ରହିବ ଓ ଗ୍ରାମଦାନ ଆଦର୍ଶ ପ୍ରଚାରରେ ବାଧା ପଡ଼ିବ ଇତ୍ୟାଦି ।

ଏସବୁ ବିଷୟ ନେଇ ଯେଉଁ ମତଭେଦ ଓ ବିବାଦର ଆବହାଓ୍ୱା ହେଲା ସେ ବିଷୟରେ ଆଲୋଚନା ଓ ପରାମର୍ଶ ପାଇଁ ୧୯୫୭ ରେ କୋରାପୁଟର ଛ' ଜଣ ମୁଖ୍ୟକର୍ମୀ ଦାଦା ଓ ମୁଁ ମହୀଶୂର ରାଜ୍ୟରେ ଯାଇ ବିନୋବାଙ୍କ ସାଙ୍ଗରେ ଆଠଦିନକାଳ ପଦଯାତ୍ରାରେ ରହିଥିଲୁ । ବହୁତ ଆଲୋଚନା ହେଲା । ତା' ଭିତରେ ବିନୋବା ବୁଝାଇଲେ ଯେ, କୌଣସି ଲୋକ କେଉଁ ସ୍ତରରେ ଚଳୁଛି ସେତିକି ଦେଖିଲେ ହେବ ନାହିଁ । ତା'ର ଚଳଣି ପୂର୍ବ ଅପେକ୍ଷା କମିଛି କି ବଢ଼ିଛି ଦେଖିଲେ ଯାଇ ଜଣାଯିବ ଯେ ସେ ଆଗଉଛି କି ପଛଉଛି । ଦୁଇଜଣ କର୍ମୀଙ୍କ ଚଳଣି ବର୍ତ୍ତମାନ ସମାନ ସ୍ତରରେ ରହିଛି । ମାତ୍ର ସେଥିଭିତରୁ ଜଣେ ପୂର୍ବରୁ ଅଧିକ ଉଚ୍ଚ ସ୍ତରରେ ଚଳୁଥିଲା ତ ବୁଝିବାକୁ ହେବ ଯେ ସେ ନିଜର ଚଳଣିର ସ୍ତର କମେଇ ସାମ୍ୟଆଡ଼କୁ ଆଗେଇଛି । ଯେ ଅଳ୍ପରେ ଚଳୁଥିଲା ସେ ଏବେ ବେଶି ଲୋଡ଼ୁଛି ତ ତା'ର ଗତି ଓଲଟା ଦିଗରେ ।

ଏସବୁ ଆଲୋଚନା ଓ ସ୍ପଷ୍ଟୀକରଣ ଫଳରେ ମତଭେଦ ଟିକିଏ କଣା ହେଲା । ଆନ୍ନାସାହେବ ମଧ୍ୟ ଅଭିଜ୍ଞତାରୁ ଶିଖି ତାଙ୍କର କାମର ପଦ୍ଧତିରେ ପରିବର୍ତ୍ତନ କଲେ । କିନ୍ତୁ ଓଡ଼ିଶା ସରକାରଙ୍କର ପ୍ରଚ୍ଛନ୍ନ ବିରୋଧ ଯୋଗୁଁ ଶେଷପର୍ଯ୍ୟନ୍ତ ନିର୍ମାଣର ଉଚ୍ଚ ଅଭିଳାଷପୂର୍ଣ୍ଣ ପରିକଳ୍ପନାକୁ କାଟଛାଁଟ କରି ଅଳ୍ପରେ ରଖିବାକୁ ହେଲା ।

କୋରାପୁଟରୁ ବିନୋବା ଯିବା ପରେ ଗ୍ରାମଦାନ ଗାଁମାନଙ୍କରେ ଜମିବଣ୍ଟା ଅଭିଯାନ ଆରମ୍ଭ ହେଲା । ବାପା, ବୋଉ ସମସ୍ତେ ସେଥିରେ ଲାଗିଥିଲେ । ମୁଁ ଯାଇ ବୋଇପାରିଗୁଡ଼ା ଥାନାରେ ବୁଲି ଜମିବଣ୍ଟା କାମ ମାସେ ଉପରେ କରିଥିଲି । ସ୍ଥାନୀୟ କର୍ମୀମାନେ ସବୁ କାମ କରୁଥା'ନ୍ତି । ସେମାନଙ୍କ ଭିତରେ ନରସିଂହ ବେହେରା, ନରସିଂହ ତରାପୁଟିଆ ହେଉିଛା ଥାଆନ୍ତି । ଡଲାର ମୁଦୀ ନାୟକ, ବୋଇପାରିଗୁଡ଼ାର ଘନ ପୂଜାରୀ ହେଉିକା ଜମିମାଲିକମାନେ ବି କର୍ମୀଙ୍କ ଭଳି ଉତ୍ସାହରେ କାମ କରୁଥା'ନ୍ତି । ମୁଦୀ ନାୟକ ତ ନିଜର ପ୍ରାୟ ଅଧାଅଧି ଜମି ପୁନର୍ବଣ୍ଟନ ପାଇଁ ଛାଡ଼ି ଦେଇଥିଲେ । ଘନ ପୂଜାରୀ ବି ଦେଢ଼ ଶହ ଏକର ସରିକି ଜମିରୁ ବୟାଳିଶ ଏକର ବାଣ୍ଟିବାକୁ ରାଜି ହେଇଥିଲେ । ତାଙ୍କର ପରିବାର ବି ଖୁବ୍ ବଡ଼ । ଏଭଳି ଉତ୍ସାହୀ ଦାତାମାନଙ୍କ ଯୋଗୁ ଭଲ ହାୱା ସୃଷ୍ଟି ହେଇଥିଲା । ସେତେବେଳେ ତ ସମାନ ବାଣ୍ଟକୁଣ୍ଡ ହିଁ ଆଦର୍ଶ ଥାଏ । ସେପରି ସମାନତା କାର୍ଯ୍ୟତଃ ସମ୍ଭବ ନ ହେଲେ ମଧ୍ୟ ମୁଣ୍ଡପିଛା ଜମି ପରିମାଣରେ ସର୍ବୋଚ୍ଚ ଓ ନିମ୍ନତମର ପାର୍ଥକ୍ୟ ସେ ଅଞ୍ଚଳରେ ଦେଢ଼ଗୁଣରୁ ସାଧାରଣତଃ ବେଶି ରହୁ ନଥାଏ । ଲୋକେ ନିଜ ଜମିର ଚାରିକ ଭାଗ ବା ତିନିକ ଭାଗ ସହଜରେ ଛାଡ଼ି ଦେଉଥା'ନ୍ତି । ଏ ଅଞ୍ଚଳରେ ଲୋକେ କୋରାପୁଟର ଅନ୍ୟ ଅଞ୍ଚଳ ଅପେକ୍ଷା ହିନ୍ଦୁ ସଂସ୍କୃତିରେ ବେଶି ପ୍ରଭାବିତ, ଜାତିଭେଦ ମଧ୍ୟ ଏଣେ କିଛିଟା ପଶିଛି । ଏ ଅଞ୍ଚଳର ବହୁତ ଲୋକ ଅଣଆଦିବାସୀ ଭାବରେ ପରିଗଣିତ । ଅନ୍ୟ ଶୁଦ୍ଧ ଆଦିବାସୀ ଅଞ୍ଚଳମାନଙ୍କରେ ଅନେକ ଗାଁରେ ତ ଆକ୍ଷରିକ ଅର୍ଥରେ ମୁଣ୍ଡପିଛା ସମାନକରି ଜମି ବଣ୍ଟା ହେଇଥିଲା ।

ଆମେ ଯାଇ ପ୍ରଥମେ ଗାଁରେ ସବୁଲୋକଙ୍କର ସାଧାରଣ ସଭା କରୁ । ସେଠି ଜମି ବାଣ୍ଟ କଥା ପଡ଼େ । କାହାର କେତେ ଜମି, ଭୂମିହୀନ ପରିବାର କେତେ ଓ ପ୍ରତ୍ୟେକର ଲୋକସଂଖ୍ୟା କେତେ ଏସବୁ ହିସାବ ସେ ସଭାରେ ପଡ଼ି ଯଚେଇ ହେଇ ଠିକ୍ ହୁଏ । ଭୂମିହୀନଙ୍କ ପାଇଁ କେତେ ଜମି ଲୋଡ଼ା, ତାହା ହିସାବ କରାଯାଇ କିଏ କେତେ ଜମି ସେଥିପାଇଁ ଛାଡ଼ିବେ ତାହା ସ୍ଥିର କରାଯାଏ । ଜମି ମାଲିକ (ଗ୍ରାମଦାନ ପରେ ଭୂତପୂର୍ବ) ମାନେ କେଉଁ କେଉଁ କିଆରି ଦେବେ ତାହା ସେଇଠି କହି ଦିଅନ୍ତି । ତା'ପରେ ସେଠୁ ସମସ୍ତେ ଦଳବଦ୍ଧ ଭାବରେ ଜମି ଉପରକୁ ଯାଉ । "ଆମ ଗାଁରେ ଭୂମିହୀନ ରହିବେ ନାହିଁ, ଆମ ଗାଁରେ ଭୂମି ମାଲିକ ରହିବେ ନାହିଁ । ରହିବେ ନାହିଁ" "ସନ୍ଥ ବିନୋବାଜୀ କୀ ଜୟ ।" "ସ୍ୱାଧୀନ ଭାରତ କୀ ଜୟ" ଆଦି ଧ୍ୱନି ଦେଇ ରୀତିମତ ଏକ ଶୋଭାଯାତ୍ରା ଚାଲେ । ଜମି ଉପରକୁ ଯାଇ କିଆରିକୁ ବାଉଁଶ ଲଠାରେ ମାପି ଗ୍ରହୀତାକୁ ଚିହ୍ନେଇ ଦିଆଯାଏ । ଏମିତି ପ୍ରତ୍ୟେକ କିଆରି ଚିହ୍ନଟ ହେଇ

ଦିଆଯିବାବେଳେ ତୁହାଏ ଲେଖା ଜୟଧ୍ୱନି ହୁଏ । ସେତେବେଳେ ଭୂମିହୀନ ଗ୍ରହୀତାଙ୍କ ମୁହଁରେ ମୁଁ ଯେଉଁ ଆନନ୍ଦ, ଯେଉଁ ହସ ଦେଖିଛି ତାହା ମୋର ଜୀବନର ଏକ ଅମୂଲ୍ୟ, ଅଭୁଲା ଅନୁଭୂତି ହୋଇ ରହିଛି । କେବଳ ଗ୍ରହୀତା ନୁହନ୍ତି, ଦାତାଙ୍କର ଆନନ୍ଦ ମଧ୍ୟ କିଛି କମ୍ ନଥିଲା । ସେମାନେ ବି ଗ୍ରାମଦାନ ମାଧ୍ୟମରେ ନିଜର ଜମିର ବାଣ୍ଟ ଅନ୍ୟକୁ ଦେବାରେ ଏକ ଗୌରବ ଓ ଆନନ୍ଦ ଅନୁଭବ କରୁଥିଲେ ଯାହା ସେମାନଙ୍କର ହାବଭାବରୁ ଫୁଟି ବାହାରୁଥିଲା । ଦାତା ଓ ଗ୍ରହୀତା ଉଭୟେ ସମାନ ଉତ୍ସାହ ଓ ଉଦ୍ଦୀପନାର ସହିତ ଜୟଧ୍ୱନି ଦେଉଥିଲେ । କୌଣସି ଦାତା ଅପ୍ରସନ୍ନ ମନରେ ଜମିର ବାଣ୍ଟ ଛାଡ଼ିଥିବେ ତ ସେ ମୋ ଆଖିରେ ପଡ଼ିନାହାନ୍ତି । ତେବେ ଅଳ୍ପ କେତେଖଣ୍ଡ ଗାଁରେ ଯଥେଷ୍ଟ ପରିମାଣରେ ଜମି ଛାଡ଼ିବାକୁ ଲୋକେ ସମ୍ମତ ନ ହେବାରୁ ସେ ସବୁର ବଣ୍ଟା କାମ ପଛକୁ ରଖି ଦେଇଥିଲୁ । କିଛିଦିନ ପରେ ମତେ ପ୍ରବଳ ମେଲେରିଆ ଜ୍ୱର ହେଲା ଓ ମୁଁ ସେଠୁ ତା'ପରେ ଚାଲି ଆସିଲି ।

## ନିଧିମୁକ୍ତି ଓ ତନ୍ତ୍ରମୁକ୍ତି

ଗାନ୍ଧି ସ୍ମାରକ ନିଧି ଭୂଦାନ କାମ ପାଇଁ କେତେ ଲକ୍ଷ ଟଙ୍କା ସାହାଯ୍ୟ ଦେଇଥିଲେ । ପୁଣି ଯେତେବେଳେ ଗାନ୍ଧି ସ୍ମାରକ ନିଧିକୁ କିଛି ସାହାଯ୍ୟ ପାଇଁ ଅନୁରୋଧ କରାଗଲା ସେତେବେଳେ ନିଧିର କେତେକ ସଦସ୍ୟ ଭୂଦାନ କାମର ଗୁରୁତ୍ୱ ଓ ସେଥିପାଇଁ ଅର୍ଥ ସାହାଯ୍ୟର ଆବଶ୍ୟକତା ବିଷୟରେ ସନ୍ଦେହ ପ୍ରକାଶ କଲେ । ଏହାପରେ ବିନୋବା ସର୍ବ ସେବା ସଂଘକୁ ନିଧିମୁକ୍ତି ଓ ତନ୍ତ୍ରମୁକ୍ତିର ପ୍ରସ୍ତାବ ଦେଲେ । ନିଧିମୁକ୍ତିର ଅର୍ଥ ହେଲା ଯେ, ଯେଉଁ ପାଣ୍ଠି ପୂର୍ବରୁ ସଂଗ୍ରହ ହୋଇ ଜମା ହୋଇ ରହିଛି ସେଥିରୁ ସାହାଯ୍ୟ ନିଆଯିବ ନାହିଁ ବା ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରି ଜମା କରି ରଖାଯିବ ନାହିଁ । ଯେତେବେଳେ ଯାହା ଦରକାର ସେତିକି ପାଇଁ ଲୋକଙ୍କ ଠାରୁ ସିଧା ସାହାଯ୍ୟ ନିଆଯିବ ।

ତନ୍ତ୍ରମୁକ୍ତିର ଅର୍ଥ ହେଲା ଯେ କାମର ପରିଚାଳନା କୌଣସି କେନ୍ଦ୍ରୀଭୂତ ସଂସ୍ଥା ମାଧ୍ୟମରେ କରାଯିବ ନାହିଁ । କର୍ମୀମାନଙ୍କୁ ଉପରୁ 'ନିର୍ଦ୍ଦେଶ' ଦିଆଯିବ ନାହିଁ । ସେମାନେ ଆନ୍ଦୋଳନର ଲକ୍ଷ୍ୟ, ନୀତି, କାର୍ଯ୍ୟକ୍ରମ ଆଦି ବୁଝି ନିଜ ନିଜ ବୁଦ୍ଧିରେ ଓ ଛୋଟ ଛୋଟ ଭାଇଚାରା ଆକାରରେ କାମ କରିବେ । ଉପରୁ ପରିଚାଳିତ ସଂସ୍ଥା ମାଧ୍ୟମରେ ବିପ୍ଳବ ହୋଇପାରିବ ନାହିଁ । ବିପ୍ଳବ ପାଇଁ ଯେଉଁ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ଲୋଡ଼ା ତାହା ପାଇଁ ସଂସ୍ଥାର ବନ୍ଧନରୁ ମୁକ୍ତି ଲୋଡ଼ା ।

ତାମିଲନାଡୁର ପଲନି ଠାରେ ସର୍ବ ସେବା ସଂଘର ଅଧିବେଶନରେ ବିନୋବା ଏ ସବୁ ପ୍ରସ୍ତାବ ରଖିଲେ ଓ ତାହା ବିପୁଳ ଉତ୍ସାହ ଭିତରେ ଗୃହୀତ ହେଲା । ଏ ସବୁର ବିନୋବା ମୁଖ୍ୟତଃ ଦାର୍ଶନିକ ଭୂମିକାକୁ ବୁଝାଇଲେ । ଅନ୍ୟମାନେ ମଧ୍ୟ ସେହି ସ୍ତରରେ ତା' ଉପରେ ଆଲୋଚନା କରି ତାକୁ ସମର୍ଥନ କଲେ, ମାତ୍ର ଏସବୁ ପ୍ରସ୍ତାବର ବ୍ୟାବହାରିକ ତାତ୍ପର୍ଯ୍ୟ ବିଷୟରେ ବିଶେଷ ଆଲୋଚନା ହୋଇଥିଲା ବୋଲି ମୋର ମନେପଡୁନାହିଁ । ଭୂଦାନ ସମିତି ସବୁ ଭାଙ୍ଗି

ଦିଆଯିବ ଓ ତାହା ମାଧ୍ୟମରେ କର୍ମୀଙ୍କୁ ଆର୍ଥିକ ସାହାଯ୍ୟ ମିଳିବା ବନ୍ଦ ହେଇଯିବ । ଏତକ ତ ସ୍ଥିର ହେଲା । ମାତ୍ର ପୁଣି କେମିତି କ'ଣ ହେବ ସେ ବିଷୟରେ ବିଶେଷ ମୁଣ୍ଡ ଖେଳାହେଲା ନାହିଁ । ବିନୋବା ଅବଶ୍ୟ ବାପାଙ୍କୁ କହିଥିଲେ – "ଗୋପବାବୁ ! ବର୍ତ୍ତମାନ ଯେତେ କର୍ମୀ ଭୂଦାନ କାମରେ ଲାଗିଛନ୍ତି ସେଥିରୁ ଜଣେ ହେଲେ ଯେମିତି ଏହା ଫଳରେ ବସି ନ ଯା'ନ୍ତି । ସମସ୍ତଙ୍କୁ ସମ୍ଭାଳିବାକୁ ହେବ ।"ଏଥିରୁ ବୁଝାଯାଉଛି ଯେ, ପ୍ରତ୍ୟେକ କର୍ମୀ ନିଜ ଭରଣପୋଷଣ ଦାୟିତ୍ୱ ନିଜେ ବୁଝିବ ଏହା ସେ କଳ୍ପନା କରୁ ନଥିଲେ । ସକ୍ଷମ ଓ ନେତୃସ୍ଥାନୀୟ କର୍ମୀମାନେ ସେ ଦିଗରେ କିଛି କରିବେ ଏହା ତାଙ୍କର ଅପେକ୍ଷା ଥିଲା । ମାତ୍ର ସେ ବିଷୟରେ ସଂଘରେ କୌଣସି ଆଲୋଚନା ଏକାଠି ବସି ହେଲା ନାହିଁ ଓ କର୍ମୀଙ୍କୁ ସମ୍ଭାଳିବାର ବ୍ୟବସ୍ଥା କି ପ୍ରକାରେ କରାଯିବ ତାହାର କୌଣସି ଧାରଣା ନ ନେଇ ସେଠୁ ସମସ୍ତେ ଫେରିଲେ । ଫଳରେ ପରେ ଯେତେବେଳେ ଭୂଦାନ କାମ ପାଇଁ ଗତାନୁଗତିକ ଢଙ୍ଗରେ ପାଣ୍ଠି ସଂଗ୍ରହର ଆବଶ୍ୟକତା ପଡ଼ିଲା ସେତେବେଳେ ଗୋଟାଏ ପାପବୋଧ ମନରେ ରହିଲା ଯେ, ଆମେ ଆଦର୍ଶରୁ ତଳକୁ ଖସି ଏ କାମ କରୁଛୁ । ଏ ଦ୍ୱନ୍ଦ୍ୱରୁ ସର୍ବ ସେବା ସଂଘ ବହୁ ବର୍ଷ ଯାଏ ମୁକ୍ତ ହେଇ ନ ଥିଲା ।

ସେମିତି ତନ୍ତ୍ରମୁକ୍ତିର ତାତ୍ପର୍ଯ୍ୟ ମଧ୍ୟ ସ୍ପଷ୍ଟ ହେଇ ନଥିଲା । କର୍ମୀଙ୍କ ଭିତରେ ଯୋଗାଯୋଗ ରଖିବା ପାଇଁ, ସାରା ଦେଶର କେବଳ କର୍ମୀ ନୁହେଁ, ଜନସାଧାରଣଙ୍କୁ ମଧ୍ୟ ବ୍ୟବସ୍ଥିତ ଭାବରେ ଏକା ଲକ୍ଷ୍ୟରେ, ସମ୍ମିଳିତ ଭାବରେ କାମ କରିବା ପାଇଁ ତ ଗୋଟାଏ କିଛି ସଙ୍ଗଠନ ଲୋଡ଼ା ! ଗାନ୍ଧୀଜୀ କହିଥିଲେ – "ସଙ୍ଗଠନ ହେଉଛି ଅହିଂସାର କଷଟି" – ଅର୍ଥାତ୍ ଅହିଂସା ଲୋକେ ହିଂସାରହିତ ସଙ୍ଗଠନ ମାଧ୍ୟମରେ କାମ କରିପାରିଲେ ଯାଇ ଅହିଂସା ଲୋକ ହିଂସାରହିତ ସଙ୍ଗଠନ ମାଧ୍ୟମରେ କାମ କରିପାରିଲେ ଯାଇ ଅହିଂସ ସେମାନେ ସାଧ କରିଛନ୍ତି ବୋଲି ସାବ୍ୟସ୍ତ ହେବ । କିନ୍ତୁ ଏପରି ସଙ୍ଗଠନର ରୂପ ଓ ଚରିତ୍ର କି ପ୍ରକାର ହେବ ସେ ବିଷୟରେ ସେତେବେଳେ ବିଶଦ ଆଲୋଚନା ହେଇ ନଥିଲା । ଫଳରେ ନାନାପ୍ରକାରର ପରଖ ପରେ ଶେଷକୁ ଲୋକସେବକମାନଙ୍କର ଗଣତାନ୍ତ୍ରିକ ସଙ୍ଗଠନ ସର୍ବୋଦୟ ମଣ୍ଡଳର ପ୍ରଚଳନ ହେଲା । ମାତ୍ର ଏବେ ଯାଏ ବି ସବୁ ପ୍ରକାରର ସଂସ୍ଥା ବିରୋଧରେ ମତ ରହିଛି ଓ ସର୍ବୋଦୟ ମଣ୍ଡଳ, ସର୍ବ ସେବା ସଂଘ ଆଦିକୁ ଭାଙ୍ଗି ଦେବାର ଦାବି ବି ବରାବର ଉଠିଆସୁଛି ।

'ତନ୍ତ୍ରମୁକ୍ତି' ପଛରେ ଥିବା ସତ୍ୟର ଅଂଶଟିକ ବୁଝିବା ପାଇଁ ଚେଷ୍ଟା କରି ମୁଁ ଏଇ ସିଦ୍ଧାନ୍ତରେ ପହଞ୍ଚିଛି ଯେ, ସମାଜର ଆର୍ଥିକ ଓ ରାଜନୀତିକ ବ୍ୟବସ୍ଥା ତଥା ସେଥିରେ ଚଳୁଥିବା ମୂଲ୍ୟବୋଧ ଅନୁସାରେ ହିଁ ସେ ସମାଜରେ ପ୍ରଚଳିତ ସଙ୍ଗଠନମାନଙ୍କର ରୂପରେଖ ଗଢ଼ି ଉଠିଥାଏ । ତା' ଛଡ଼ା ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଗଢ଼ାଯାଇଥିବା ସଙ୍ଗଠନର ରୂପରେଖ ମଧ୍ୟ ଭିନ୍ନ ହେଇଥାଏ । ଜେଲଖାନାର ସଙ୍ଗଠନ ଗୋଟାଏ ପ୍ରକାରର, କାରଖାନାର ଆଉ ପ୍ରକାରେ, ସ୍କୁଲ କଲେଜର ଏକ ତୃତୀୟ ପ୍ରକାରର ତ ଏକାନ୍ନବର୍ତ୍ତୀ ପରିବାରର ଏକ ଚତୁର୍ଥ ପ୍ରକାରର, ଏମିତି ସବୁ । ରଚନାତ୍ମକ ସଂସ୍ଥାମାନଙ୍କରେ ଦୁଇ ପ୍ରକାରର ସଙ୍ଗଠନ ବା ତନ୍ତ୍ର ଚାଲିବାର ଦେଖାଯାଏ ।

ଆଶ୍ରମଗୁଡ଼ିକ ଗୋଟିଏ ଲେଖା ପରିବାର ଭଳି ଚଳିବାର ଆଦର୍ଶ ନେଇଥା'ନ୍ତି । କିନ୍ତୁ ଏ ପରିବାର ହେଲା ସେ ଯୁଗର ପ୍ରୌଢ଼ କର୍ମୀମାନଙ୍କର ପରିଚିତ ମୁରବିପ୍ରଧାନ ପରିବାର, ଯେଉଁଥିରେ ଘରର ମୁରବି ହାତରେ ସବୁ କଥାର ଲଗାମ ଥିବ । ଚାବି ପେଣ୍ଡାଯାକ ତାଙ୍କରି ଅଣ୍ଟାରେ ଥିବ । ଏଇ ନମୁନା ଅନୁସାରେ ଆଶ୍ରମମାନଙ୍କରେ ଜଣେ ବାବା ବା ମା' ସର୍ବମୟ ମୁରବି ହୋଇ ବସିବାର ଦେଖାଯାଏ । ଏଇ ମୁରବିଙ୍କ ପ୍ରତି ଭୟ ଓ ଅନୁରକ୍ତି ହିଁ ହେଲା ଏଭଳି ସଂସ୍ଥାର ମୁଖ୍ୟ ଚାଳକ ଶକ୍ତି ।

ଖଦୀ ସଂସ୍ଥାମାନଙ୍କରେ ଆଉ ପ୍ରକାରେ ନମୁନା ଦେଖାଯାଏ । ଖଦୀ ସଂସ୍ଥାମାନଙ୍କୁ ତ ଉତ୍ପାଦନ ବିକ୍ରି କାମ କରିବାକୁ ପଡ଼େ । ଏ କାମ ପାଇଁ ଆଖିଆଗରେ ସଙ୍ଗଠନର ଯେଉଁ ନମୁନା ଥିଲା ତାହା ହେଲା ପୁଞ୍ଜିବାଦୀ ବ୍ୟବସାୟୀ ସଂସ୍ଥାମାନଙ୍କର । ଏଥିରେ ପରିଚାଳକ, ଅଫିସ୍ କର୍ମଚାରୀ ଓ ଶ୍ରମିକ, ଏମିତି ତିନି ଶ୍ରେଣୀ ଥାଏ । ଏଥିରେ କାମ ଆଦାୟ କରିବାର ଉପାୟ ରୂପେ ପଇସାକୁ ବ୍ୟବହାର କରାଯାଏ । ଭଲ କାମ କଲେ ବେଶି ପଇସା ପାଇବ, ପୁରସ୍କାର ପାଇବ, କିଛି ଅବହେଳା ବା ତ୍ରୁଟି ହେଲେ ଦରମାକାଟ, ଜୋରିମାନା । ଖଦୀ ସଂସ୍ଥାମାନଙ୍କରେ ମଧ ଠିକ୍ ଏଇଭଳି ଚରିତ୍ର ଦେଖିବାକୁ ମିଳୁଥିଲା । ଇତିମଧରେ ଅନେକଆଡ଼େ ଅନେକ ପରିବର୍ତ୍ତନ ହୋଇଛି । ମାତ୍ର ଏ ଢାଞ୍ଚା ପୂରାପୂରି ବଦଳିଛି ବୋଲି ଆଦୌ କହିହେବ ନାହିଁ ।

ସାମ୍ୟ ଓ ଭାଇଚାରା, ଉପରେ ପ୍ରତିଷ୍ଠିତ ସମାଜ ପାଇଁ ଏସବୁଠାରୁ ଭିନ୍ନ ପ୍ରକାରର ସଙ୍ଗଠନ ଲୋଡ଼ା । ପ୍ରଚଳିତ ଗଣତାନ୍ତ୍ରିକ ରୀତି ସେ ଦିଗରେ ଗୋଟାଏ ପଦକ୍ଷେପ, ମାତ୍ର ଯଥେଷ୍ଟ ନୁହେଁ । ସର୍ବୋଦୟ ଆନ୍ଦୋଳନ ଭିତରେ ଆଶ୍ରମ ଓ ଖଦୀସଂସ୍ଥା ଏ ଉଭୟଙ୍କର ଚରିତ୍ରର ପ୍ରଭାବ ଥିଲା । ଦୁଇଟାଯାକ ହିଁ ସର୍ବୋଦୟ ଲକ୍ଷ୍ୟ ସହିତ ବେଖାପ । ଏଇ ପୁରୁଣା, ଅକାମୀ ତନ୍ତ୍ରରୁ ମୁକ୍ତି ପାଇବା ହିଁ ଅସଲ ଉଦ୍ଦେଶ୍ୟ ହେବାର କଥା । ମାତ୍ର ପ୍ରତ୍ୟେକ କଥାକୁ କେବଳ ତତ୍ତ୍ୱଜ୍ଞାନ ଦୃଷ୍ଟିରୁ ବିଚାର କଲେ, ବାସ୍ତବ ପରିସ୍ଥିତିର ଅଧ୍ୟୟନ ଓ ବୈଜ୍ଞାନିକ ଦୃଷ୍ଟିର ମେଳ ତାହା ସଙ୍ଗରେ ନହେଲେ ମୂଳପୋଛ ପ୍ରତିକାରଗୁଡ଼ିକ ହିଁ ଖୁବ୍ ବୈପ୍ଳବିକ ଓ ସ୍ୱାଭାବିକ ଜଣାପଡ଼େ । ମଣିଷ ହୋଇ ଜନ୍ମ ହୋଇଛୁ ବୋଲି ତ ଯେତେ ପ୍ରକାରର ରୋଗଶୋକ, ଦୁଃଖସୁଖର ବନ୍ଧନରେ ପଡ଼ିଛୁ । ତେଣୁ ଜନ୍ମ ମୃତ୍ୟୁର ଚକ୍ରରୁ ମୁକ୍ତି ପାଇଗଲେ ସବୁ ସମସ୍ୟା ନିର୍ମୂଳ ହୋଇଯିବ । ସେମିତି ସଂସ୍ଥା ସବୁ ଅନିଷ୍ଟର ମୂଳ । ତାକୁ ମୂଳରୁ ଉଡ଼େଇ ଦେଲେ ସବୁ ଠିକ୍ ହୋଇଯିବ ।

ସର୍ବ ସେବା ସଂଘ ତା'ର ଆଦ୍ୟର ମୁରବିପ୍ରଧାନ ରୂପରୁ କ୍ରମେ ବହୁତ ବାଟ ଆଗେଇ ଯାଇଛି । ୧୯୫୬ରେ କାଞ୍ଚିପୁରମ୍ ସର୍ବୋଦୟ ସମ୍ମେଳନ ବେଳେ ବିନୋବା ଗଣସେବକତ୍ୱ କଥା କହିଲେ । ସେ କହିଲେ ଯେ, ଜଣେ ନେତାର ମୁହଁରୁ ଚାହିଁବା ଯୁଗ ଗଲାଣି । ଏବେ ସମସ୍ତେ ମିଶି ସମ୍ମିଳିତ ନେତୃତ୍ୱର ବିକାଶ କରିବାକୁ ହେବ । ତେବେ ସର୍ବୋଦୟବାଲା ତ ନେତୃତ୍ୱ ନେବାକୁ ଚାହାନ୍ତି ନାହିଁ, ତେଣୁ ତାଙ୍କର ଏହା ଗଣସେବକତ୍ୱ ହେବ । ଏଥିପାଇଁ ସେ

ସେତେବେଳେ ଖ୍ରୁଷ୍ଚେଭ୍ ବୟାନ କରିଥିବା 'ସାମୂହିକ ନେତୃତ୍ୱ'ର ବିଚାରର ଉଦାହରଣ ଦେଇ ତା'ର ତାରିଫ କରିଥିଲେ । ସର୍ବ ସେବା ସଂଘରେ ସଂଖ୍ୟାଧିକ୍ୟରେ ନିଷ୍ପତ୍ତି କରିବାର ନୀତିର ଆହୁରି ଆଗକୁଯାଇ ସବୁ ନିର୍ଣ୍ଣୟ ସର୍ବସମ୍ମତିରେ ବା ଅବିରୋଧରେ କରିବାର ନୀତି ଗୃହୀତ ହେଲା । ମାତ୍ର ଅନେକ ବର୍ଷଯାଏ ସମସ୍ତେ ବିନୋବାଙ୍କ ମୁହଁକୁ ଚାହିଁ ରହୁଥିଲେ । ସର୍ବୋଦୟ ସମ୍ମିଳନୀ ଓ ସର୍ବ ସେବା ସଂଘ ଅଧିବେଶନ ବିନୋବାଙ୍କ ପାଖରେ ହିଁ ହେଉଥିଲା । ୧୯୬୦ ବେଳକୁ ବିନୋବା ସମ୍ମିଳନୀ ଓ ସଂଘ ବୈଠକରେ ଆଉ ଉପସ୍ଥିତ ରହିବାକୁ ଚାହିଁଲେ ନାହିଁ । ସର୍ବ ସେବା ସଂଘର ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ବିକାଶ ପାଇଁ ସୁଯୋଗ ଦେବାକୁ ଚାହିଁଲେ । ଆମ ସମାଜରେ ଓ ସର୍ବୋଦୟ ଭିତରେ ମଧ୍ୟ ଯେଉଁ ଗୁରୁଜନ ଲଘୁଜନ ଭେଦ ଅତି ପ୍ରବଳ ତାକୁ କଟେଇବା ପାଇଁ ସଖ୍ୟଭକ୍ତିର ଆଦର୍ଶ ଉପସ୍ଥାପିତ କଲେ । ଏମିତି ଭାବରେ ପୁରୁଣା ସମାଜର ଡୋରି କାଟିବା ପାଇଁ ସେ ବହୁତ କିଛି ଚେଷ୍ଟା କରିଛନ୍ତି । ତଥାପି ତାଙ୍କର ଅନ୍ଧଭକ୍ତଙ୍କର ଅଭାବ ନାହିଁ ଓ ସେମାନେ ବିନୋବାଙ୍କୁ ଆଣି ସଂଘ ଉପରେ ଜବରଦସ୍ତି ଲଦିବା ଚେଷ୍ଟାକରି ସର୍ବୋଦୟ ଆନ୍ଦୋଳନକୁ ଛିନ୍ନବିଚ୍ଛିନ୍ନ କରିବା ଯାଏ କଥାକୁ ନେଲେଣି ।

ପଲନୀ ଅଧିବେଶନକୁ ତ ବାପା, ବୋଉ, ଖୁଡ଼ୀ ହେରିକା ଆମେ ସମସ୍ତେ ଯାଇଥିଲୁ । ସେଠୁ ଫେରିବାବେଳେ ମାନ୍ଦ୍ରାଜ ପାଇଁ ଗାଡ଼ି ଧରିବାକୁ ଡିଣ୍ଡିଗଲ୍ ଜଙ୍କସନ୍‌ଠାରେ ଦେଖିଲୁ ଯେ ଗାଡ଼ିମାନଙ୍କରେ ବହୁତ ଭିଡ଼ । ସନ୍ଧ୍ୟାବେଳେ ମାନ୍ଦ୍ରାଜ ପାଇଁ ସେ ବାଟେ ଚାରିଟା ଖଣ୍ଡେ ଏକ୍ସପ୍ରେସ୍ ଯାଏ । ପଛଗାଡ଼ିରେ କମ ଭିଡ଼ ଥିବ ବୋଲି ଆଶାକରି ଆମେ ପ୍ରଥମ ଦୁଇଟା ଗାଡ଼ି ଛାଡ଼ିଦେଲୁ । ତୃତୀୟ ଗାଡ଼ିଟା ବି ଛାଡ଼ିଦେବା ବୋଲି ମୋର ମତ ଥିଲା, କିନ୍ତୁ ବାପା ବିରକ୍ତ ହେଲେ ଓ ସେଇଟାକୁ ହିଁ ଧରିଲୁ । ତା' ପରଦିନ ମାନ୍ଦ୍ରାଜରେ ପହଞ୍ଚିବା ପରେ ଖବର ପାଇଲୁ ଯେ ଆମ ଗାଡ଼ି ପଛରେ ଥିବା ଗାଡ଼ିଟି ଆରିୟାଲୁର ଷ୍ଟେସନ୍ ପାଖରେ ନଈକୁ ଖସିପଡ଼ି ଦୁଇଶହ କି ବେଶି ଯାତ୍ରୀ ବୁଡ଼ି ମରିଛନ୍ତି । ଗୋଟାଏ ଛୋଟ ନଈରେ ଖୁବ୍ ବଡ଼ ବଢ଼ି ଆସି ରେଳପୋଲକୁ ବିପନ୍ନ କରିଥିଲା । ଆମ ଗାଡ଼ି ଚାଲିଯିବାର ଦେଢ଼ଘଣ୍ଟା ଦୁଇଘଣ୍ଟା ଭିତରେ ସେ ପୋଲ ଗୁରୁତର ଭାବରେ ଜଖମ ହୋଇ ଏ ଦୁର୍ଘଟଣା ଘଟିଲା ।

## ଏଲ୍‌ୱାଲ୍ ସମ୍ମିଳନୀ

ଏ ନିଧିମୁକ୍ତିର ଓ ତନ୍ତ୍ରମୁକ୍ତିର ନିର୍ଣ୍ଣୟ ପରେ ତ କର୍ମୀମାନଙ୍କର ସାହାଯ୍ୟ ବନ୍ଦ ହେଇଗଲା । କେତେକ କର୍ମୀ ବିଭିନ୍ନ ସ୍ଥାନରେ ସ୍ଥାନୀୟ ଲୋକଙ୍କ ଉପରେ ନିର୍ଭର କରି ଚଳିବାର ଚେଷ୍ଟା କଲେ । ସେମାନଙ୍କୁ କିଛି କିଛି ସଫଳତା ମିଳିଲା । ଶକ୍ତିଶେଖର ଦାସ କଳାହାଣ୍ଡିରେ ଭେଲାଠାରେ ବର୍ଷେରୁ ଅଧିକ କାଳ ସପରିବାରେ ଏ ଭଳି ରହି ସେ ଜିଲ୍ଲାରେ ଭୂଦାନ କାମ ଚଳେଇଥିଲେ । କେତେକ କର୍ମୀ ଖଦୀ ସଂସ୍ଥାମାନଙ୍କୁ ଆଶ୍ରା କଲେ । କେତେକ ବସିଗଲେ । ଏହାପରେ ଜିଲ୍ଲା ସ୍ତରରେ ଶସ୍ୟ ଓ ଟଙ୍କା ଆକାରରେ ଚାନ୍ଦା ସଂଗ୍ରହ କରି କାମ

ଚଳାଇବା ଉଦ୍ୟମ ହେଲା ଓ ଭୂଦାନ ଗ୍ରାମଦାନ କାମକୁ ଚାଲୁ ରଖାଗଲା । ସ୍ଥାନୀୟ ସାହାଯ୍ୟ ଉପରେ ନିର୍ଭର କରିବା ଦ୍ୱାରା ଆନ୍ଦୋଳନର ଶକ୍ତି ବଢ଼ିଗଲା ।

ଏତେବେଳକୁ ଆମ ପିଲାମାନେ ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟରେ ପଢ଼ିଲେଣି । ସୁମିତ୍ରା ମଧ୍ୟ ସେଠି ଶିକ୍ଷକତା ଆରମ୍ଭ କଲେ । ମୁଁ କଟକରେ ଭୂଦାନ ଅଫିସରେ ଥାଏ । ସେଠା ଖର୍ଚ୍ଚ ମଧ୍ୟ ସ୍ଥାନୀୟ ସାହାଯ୍ୟରୁ ଉଠାଯାଉଥାଏ । ମୁଁ ପ୍ରତିଦିନ ଗୋଟାଏ ଓଳି ଭୂଦାନ ଅଫିସରେ ନ ଖାଇ ବାହାରେ କାହାରି ଘରେ ଖାଇବି ବୋଲି ଠିକ୍ କରି ସେ ଭଳି ଉଦ୍ୟମ ଚଳାଇଲି । ପରିଚିତ ମିତ୍ରମାନଙ୍କ ଘରେ ଏମିତି ଖାଇବାର ସେ ପରଖ ବେଶ୍ ଦିନାକେତେ ଚାଲିଥିଲା ।

୧୯୫୭ ରେ ଭୂଦାନ ଗ୍ରାମଦାନ ବିଷୟରେ ବିଚାର କରିବା ପାଇଁ ମହୀଶୂର ପାଖ ଏଲୱାଲ୍‌ରେ ସର୍ବଦଳ ସମ୍ମିଳନୀ ହେଲା । କେବଳ ଲୋହିଆଙ୍କ ଦଳଛଡ଼ା ଦେଶର ବାକି ସବୁ ମୁଖ୍ୟ ଦଳ ଯୋଗ ଦେଇଥିଲେ । ବିନୋବା ତ ଉପସ୍ଥିତ ଥିଲେ ହିଁ । ଏଥିରେ ଗ୍ରାମଦାନ ଆନ୍ଦୋଳନକୁ ସମର୍ଥନ କରି ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହେଲା । ଏଇଟାକୁ ହିଁ ବିନୋବା ୧୯୫୭ ର ସାଫଲ୍ୟ ବୋଲି ଚଳେଇ ଦେଲେ । ଏ ସମ୍ମିଳନୀର ପ୍ରସ୍ତାବ ଅନେକ କର୍ମୀଙ୍କୁ ନିରାଶଜନକ ବୋଧ ହେଉଥିଲା । ସେମାନେ କହୁଥିଲେ ଯେ ସବୁଦଳ ପ୍ରସ୍ତାବ ସିନା କରିଦେଲେ, ମାତ୍ର କାମରେ ତ କେହି ସାହାଯ୍ୟ କରିନାହାନ୍ତି । ଏଭଳି ପ୍ରସ୍ତାବରେ ଲାଭ କ'ଣ ? ମୁଁ ବିନୋବାଙ୍କ ମତକୁ ଦୋହରଉଥିଲି ଯେ ଦଳର କର୍ମୀଙ୍କର ସହଯୋଗ ହାସଲ କରିବା ଆମର କାମ । ଦଳର ସମର୍ଥନ ମିଳିବା ଯୋଗୁଁ ସେମାନଙ୍କଠାରୁ ସାହାଯ୍ୟ ଦାବି କରିବାର ବଳ ତ ଆମର ବଢ଼ିଲା ।

ଏଲୱାଲ୍ ସମ୍ମିଳନୀକୁ ଓଡ଼ିଶାରୁ ଦାଦା ଓ ମୁଁ ଯାଇଥିଲୁ । ମାନ୍ଦ୍ରାଜରେ ଜନତା ବହୁତ ଲେଟ୍ ପହଞ୍ଚିଲା, ସେତେବେଳକୁ ବାଙ୍ଗାଲୋର ମେଲ୍ ପୂରା ଜ୍ୟାମ୍ ହେଇଗଲାଣି । ଠିଆ ହେବାଛଡ଼ା ଉପାୟ ନାହିଁ । ସେଇଥିରେ ପୁଣି ରାଜେନ୍ଦ୍ରବାବୁଙ୍କ ରାଷ୍ଟ୍ରପତି ସ୍ପେଶାଲ୍ ଯୋଡ଼ା ହେଇଥାଏ । ଆମେ ସେ ଗାଡ଼ି ଛାଡ଼ିଦେଇ ପାସେଞ୍ଜରରେ ଗଲୁ । ଅନେକ ଡେରିରେ ବାଙ୍ଗାଲୋର୍ ପହଞ୍ଚିଲୁ । ସେଠୁ ବସ୍‌ରେ ମହୀଶୂର ଯିବା ବୁଦ୍ଧି ହେଲା ନାହିଁ । ରେଳଗାଡ଼ି ପାଇଁ ଅପେକ୍ଷା କରି ଆହୁରି ସମୟ ନଷ୍ଟକରି ଯାଇ ମହଶୀରରେ ପ୍ରାୟ ସନ୍ଧ୍ୟାରେ ପହଞ୍ଚିଲୁ । ସକାଳ ଓଳିର ସମ୍ମିଳନୀରେ ଯୋଗଦେବା ହେଲା ନାହିଁ ।

ଦ୍ୱିତୀୟ ଦିନ ସମ୍ମିଳନୀରେ ଜୱାହରଲାଲ୍ ଚିଠା କରିଥିବା ପ୍ରସ୍ତାବ ରଖାହେଲା । ସେଥିରେ କେହି ଜଣେ କ'ଣ ଗୋଟାଏ ଛୋଟ ସଂଶୋଧନ ସୂଚାଇଲେ । ସେଥିରେ ଜୱାହରଲାଲ୍ ଭୀଷଣ ରାଗିଗଲେ । "ପିଲାଲୋକଙ୍କର ଭାରି ମଗଜ ହେଉଛି -" ଏଇ ଧାରଣା ଏକ ମନ୍ତବ୍ୟ କରି ସେ ବସିଥିବା ଏକ ବଡ଼ ତକିଆ ଉପରକୁ ଟିକିଏ ଉଠିପଡ଼ି ଅନ୍ୟ ଦିଗକୁ ମୁହଁ ବୁଲାଇ ଦୁମ୍‌କରି ବସିପଡ଼ିଲେ । ବିନୋବା ନୀରବ ଦର୍ଶକ ଭାବରେ ଚାହିଁ ରହିଥାନ୍ତି । ଶେଷକୁ ସେ ପ୍ରସ୍ତାବ କୌଣସି ଅଦଳ ବଦଳ ନହୋଇ ସର୍ବସମ୍ମତିରେ ପାସ୍ ହେଇଗଲା । ସେଥିରେ ଥିଲା ଯେ ଗ୍ରାମଗୋଷ୍ଠୀ ଯୋଜନାଭଳି ଗ୍ରାମଦାନ ମଧ୍ୟ ଦେଶର ପୁନର୍ଗଠନର ଏକ ପ୍ରକୃଷ୍ଟ ପନ୍ଥା ।

ପରେ ଶୁଣିଲି ଯେ ଜଓ୍ୱାହରଲାଲ ତାଙ୍କର କ୍ରୋଧପାଇଁ ପରେ ବିନୋବାଙ୍କଠାରେ ଦୁଃଖ ପ୍ରକାଶ କରିଥିଲେ ।

ଅନେକ ବର୍ଷ ପରେ ଏହି ଏଲଓ୍ୱାଲ୍ ପ୍ରସ୍ତାବ ବିଷୟରେ ମୋର ମତ ବଦଳିଛି । ଏଣେ ଗ୍ରାମଦାନକୁ ଏକ ବୈପ୍ଳବିକ ଆନ୍ଦୋଳନ କୁହାଯାଉଥିବା ବେଳେ ସେ ପ୍ରସ୍ତାବରେ ଯେ ତାକୁ ଅନ୍ତଃସାରଶୂନ୍ୟ ଗ୍ରାମଗୋଷ୍ଠୀ ଯୋଜନା ସହିତ ସମାନକରି ରଖାହେଲା, ଏହାଦ୍ୱାରା ହିଁ ଏ ଆନ୍ଦୋଳନର ବଳ ହଟିଗଲା ବୋଲି ମୁଁ ଏବେ ବିଚାରୁଛି । ଏଲଓ୍ୱାଲ୍ ପ୍ରସ୍ତାବ ଗ୍ରାମଦାନ ଆନ୍ଦୋଳନର ପ୍ରକୃତ ରୂପ ବିଷୟରେ ବିଭ୍ରାନ୍ତି ସୃଷ୍ଟି କରିଥିଲା ଓ ତା'ର ଅଚନତିର ଅନ୍ୟତମ କାରଣ ଥିଲା ।

## ସତ୍ୟାଗ୍ରହର ବିଶ୍ଳେଷଣ

୧୯୫୭ ସାଧାରଣ ନିର୍ବାଚନରେ କେରଳରେ କମ୍ୟୁନିଷ୍ଟ ଦଳ ଅଧିକ ସଂଖ୍ୟାରେ ଆସିଲେ ଓ ସରକାର ଗଢ଼ିଲେ । ଏହା ଫଳରେ କଂଗ୍ରେସ ମହଲରେ ଓ ତାଙ୍କ ଦେଖାଦେଖି ସର୍ବୋଦୟ ମହଲରେ ବି ରୀତିମତ ଉଦ୍‌ବେଗ ସୃଷ୍ଟି ହେଉଥାଏ । ବିନୋବାଜୀ ସେ ସରକାରକୁ ବେଶ୍ ସହଜ ଭାବରେ ସ୍ୱାଗତ କଲେ ଓ କହିଲେ ଯେ ଗଣତାନ୍ତ୍ରିକ ପନ୍ଥାରେ କମ୍ୟୁନିଷ୍ଟ ସରକାର ଓ ସାମ୍ୟବାଦ ସ୍ଥାପନ ସଫଳ ହେଲେ ଦୁନିଆରେ ଏକ ବଡ଼ କଥା ହେବ । ସେ ବର୍ଷ କେରଳର କାଲଡୀରେ ସର୍ବୋଦୟ ସମ୍ମିଳନୀ ହେଲା । ସେଠି ବିନୋବା ସତ୍ୟାଗ୍ରହର ସୌମ୍ୟ, ସୌମ୍ୟତର ଓ ସୌମ୍ୟତମ ପ୍ରକ୍ରିୟାର ତାତ୍ପର୍ଯ୍ୟ ବିଶଦ ଭାବରେ ବୁଝାଇଲେ । ତାଙ୍କର ଏ ବ୍ୟାଖ୍ୟା ମୋ ମନକୁ ତୁରନ୍ତ ପାଇଲା । ମଣିଷର ହୃଦୟକୁ ସ୍ପର୍ଶ କରିବା ସତ୍ୟାଗ୍ରହର ଲକ୍ଷ୍ୟ ଓ ତାହା କରିବାକୁ ହେଲେ ହୃଦୟର କବାଟକୁ ବାଡ଼େଇ ଭାଙ୍ଗି ପଶି ହେବ ନାହିଁ । ଫାଙ୍କ ଦେଖି ସେ ବାଟେ ଗଳିବାକୁ ହେବ । ସେତେବେଳକୁ ମନୋବିଜ୍ଞାନ ମୁଁ ଯାହା ଅଧ୍ୟୟନ କରୁଥିଲି ସେଥିରେ କେତେକ ତତ୍ତ୍ୱ ସହିତ ଏହା ଖାପଖାଇଲା । ଦୁଇବର୍ଷପରେ ବିନୋବାଙ୍କ ସାଙ୍ଗରେ ଏ ବିଷୟରେ ଦୀର୍ଘ ଆଲୋଚନା ହେଉଥିଲା ଓ ଆହୁରି ଅନେକ କଥା ସଫା ହେଉଥିଲା । ଏହା ପୂର୍ବରୁ ବିନୋବା ସତ୍ୟାଗ୍ରହର ନିଷେଧାତ୍ମକ (ନେଗେଟିଭ୍) ଓ ବିଧାୟାତ୍ମକ (ପଜିଟିଭ୍) ରୂପ କଥା ମଧ୍ୟ ଉଠାଇଥିଲେ ଓ ଗାନ୍ଧୀଜୀଙ୍କର ପ୍ରାୟ ସବୁ ସତ୍ୟାଗ୍ରହର ରୂପ ନିଷେଧାତ୍ମକ ଥିଲା ବୋଲି ମତ ଦେଉଥିଲେ । ଏବେ ସ୍ୱାଧୀନତା ଓ ଗଣତନ୍ତ୍ର ପ୍ରତିଷ୍ଠିତ ହେବାପରେ ନିଷେଧାତ୍ମକ ସତ୍ୟାଗ୍ରହର ଆବଶ୍ୟକତା କମ୍ ଓ ବିଧେୟାତ୍ମକ ସତ୍ୟାଗ୍ରହର, 'ଭୂଦାନ-ଗ୍ରାମଦାନ ଆନ୍ଦୋଳନ ଭଳି, ଆବଶ୍ୟକତା ଅଧିକ ବୋଲି ମଧ୍ୟ ତାଙ୍କର ମତ ସେତେବେଳୁ ପ୍ରକାଶ ପାଉଥିଲା । ବିନୋବାଙ୍କର ଏ ବିଚାର ସହିତ ମଧ୍ୟ ମୁଁ ଏକମତ ଥିଲି ଓ ଏବେ ବି ଏ ବିଶ୍ଳେଷଣର ଗୁରୁତ୍ୱ ସ୍ୱୀକାର କରେ । କିନ୍ତୁ ପରେ ମୋର ଦୃଷ୍ଟିକୁ ଆସିଛି ଯେ' ଗାନ୍ଧୀଜୀଙ୍କର ନିଷେଧାତ୍ମକ ସତ୍ୟାଗ୍ରହରେ ମଧ୍ୟ ଏକ ବିଧେୟାତ୍ମକ ଉପାଦାନ ଥିଲା । ଦଳିତ, ନିଷ୍ପେଷିତ, ଡରିହରି ରହିଥିବା

ଲୋକଙ୍କୁ ଆତ୍ମପ୍ରକାଶର ଶକ୍ତି ଦେବା ଓ ସେମାନଙ୍କ ଭିତରେ ନିର୍ଭୀକତା ଆଣିଦେବା ଏକ ବିଧେୟାତ୍ମକ ଆବଶ୍ୟକତା ଓ ତାହା ଗାନ୍ଧୀଜୀଙ୍କର ସତ୍ୟାଗ୍ରହ ପୂରଣ କରୁଥିଲା । ସ୍ୱାଧୀନତା ଓ ଗଣତନ୍ତ୍ରର ଯୁଗରେ ମଧ୍ୟ ତା'ର ଆବଶ୍ୟକତା ଭରପୂର ରହିଛି ।

ଭୂଦାନ ଆନ୍ଦୋଳନର ସର୍ବପ୍ରଥମ ବିଧେୟାତ୍ମକ ସମାଲୋଚନା ନିର୍ମଳ କୁମାର ବସୁ "ଶନିବାରେର ଚିଠି" ପତ୍ରିକାରେ କରିଥିଲେ । ସେଥିରେ ସେ ମୁଖ୍ୟତଃ ଏଇ ପ୍ରଶ୍ନ ଉଠେଇଥିଲେ ଯେ ପ୍ରତିରୋଧମୂଳକ ସତ୍ୟାଗ୍ରହକୁ ବାଦଦେଇ କୌଣସି ଅହିଂସା ଆନ୍ଦୋଳନ ସଫଳ ହେବ ବୋଲି ଆଶା କରାଯାଇପାରିବ ନାହିଁ । ଏ ବିଷୟରେ ସେ ବିନୋବାଙ୍କୁ ଏକ ଲମ୍ବା ଚିଠି ମଧ୍ୟ ଲେଖିଥିଲେ,ମାତ୍ର ବିନୋବାଜୀ ତା'ର କୌଣସି ଉତ୍ତର ସେତେବେଳେ ଦେଇ ନଥିଲେ । ମୋ ସହିତ ଏ ବିଷୟରେ ନିର୍ମଳଦାଙ୍କର ଅନେକ ଥର ସମାଲୋଚନା ହେଇଥିଲା । ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଯେ ଲୋକ ଦେଶରେ ହିଂସାର ବା ଗଣ୍ଡଗୋଳର ବାଟ ଧରୁଛନ୍ତି, ସେଥିରୁ ତାଙ୍କୁ ନିବର୍ତ୍ତାଇବାକୁ ହେଲେ ଅହିଂସ ସମାଧାନର ପନ୍ଥା ଦେଖାଇବାକୁ ହେବ ବୋଲି ସେ ବରାବର କହୁଥିଲେ । ମୁଁ ପ୍ରଥମେ ପ୍ରଥମେ ବିନୋବାଙ୍କ ଆଭିମୁଖ୍ୟର ସମର୍ଥନରେ ଯୁକ୍ତି କରୁଥିଲି । ବିଚାର ପ୍ରଚାରର ଶକ୍ତି ନିର୍ମଳଦା ଉପଲବ୍ଧ କରିପାରୁନାହାନ୍ତି ବୋଲି ମୋର ଧାରଣା ଥିଲା । ପରେ ତାଙ୍କର ସମାଲୋଚନାର ଗୁରୁତ୍ୱ ଉପଲବ୍ଧ କଲି ।

## ବାପାଙ୍କର ଦେହାବସାନ

୧୯୫୮ ଏପ୍ରିଲ ୩୦ ତାରିଖ । ଆମେସବୁ ରାମଚନ୍ଦ୍ରପୁରରେ ଥାଉ । ସକାଳୁ ନାନା, ନାନୀ ଓ ବାବୁଲିକୁ ନେଇ ବ୍ରାହ୍ମଣୀ ନଈରେ ଗାଧୋଇ ଆସି ଜଳଖିଆ ଖାଇସାରି ଉଠିଛୁ । ହଠାତ୍ ଦେଖିଲି ବିନୋଦ ବାଣୀଶ୍ରୀ ଆଡୁ ଆସୁଛି । ତା'ର ମୁହଁ ଗମ୍ଭୀର । ସେ ଆସି କହିଲା- 'ଗୋପବାବୁ ଚାଲିଗଲେ, କାଲି ରାତିରେ ।' ଆମେସବୁ ପ୍ରଥମେ ହତବାକ୍ ହେଇଗଲୁ । ବୋଉଙ୍କୁ କଟକରେ ପ୍ରବଳ ଟାଇଫଏଡ୍ ହେଇଥିଲା । ତା'ର ଅବସ୍ଥା ସଙ୍ଗୀନ ଥିଲା । ଏ କ'ଣ ହେଲା ? ବିନୋଦ ଗୋଟାଏ ଗାଡ଼ିରେ ଆସିଥାଏ ଆମକୁ ନେବା ନାଇଁ । ସମସ୍ତେ ସେଥିରେ ସାଙ୍ଗେ ସାଙ୍ଗେ କଟକ ବାହାରିଲୁ । ଗଣେଶ ରଂପା ଗାଁରୁ ଆମ ସାଙ୍ଗ ହେଲେ । ମାଉଂଡ୍ ପଢ଼ିଆରେ ବହୁତ ଲୋକ ଶୋକାକୁଳ ହେଇ ଜମା ହେଇଥାନ୍ତି । ସେମାନଙ୍କ ଆଡୁ ପ୍ରସ୍ତାବ ଆସିଲା ଯେ, ବାପାଙ୍କ ଦେହ ଶେଷକ୍ରିୟା ପାଇଁ ବରୀ ଅଣାଯାଉ । କିନ୍ତୁ ସେଇଟା ଆମକୁ କେମିତି ଗୋଟାଏ ଆଭିଜାତ୍ୟର ଲକ୍ଷଣ ବୋଲି ବୋଧହେଲା । ଯେ ଯେଉଁଠି ଗଲା ସେଇଠି ପାଖରେ ତା'ର ସଂସ୍କାର କରିଦେବା ଉଚିତ । ରେଲ୍, ମୋଟର୍, ଉଡ଼ାଜାହାଜରେ ଦୂରଦୂରାନ୍ତକୁ ନେବାରେ ଅର୍ଥ ନାହିଁ । ଏହା ବିଚାରି କଟକରେ ହିଁ ସଂସ୍କାର କରାଗଲା ।

ଅନେକ ବର୍ଷରୁ ସତୀଶବାବୁଙ୍କ ପାଖରେ ଥିବାବେଳେ ଥରେ ବିଭିନ୍ନ ସଂସ୍କୃତିରେ ଶବସଂସ୍କାର ପଦ୍ଧତି ବିଷୟରେ ସେ ଆଲୋଚନା କରିଥିଲେ । ସବୁ ପଦ୍ଧତି ଭିତରେ ହିନ୍ଦୁମାନଙ୍କ

ଦାହ ହିଁ ସର୍ବୋତ୍ତମ, କାରଣ ତାହାଦ୍ୱାରା ପୂର୍ବପୁରୁଷ ଏ ପୃଥିବୀ ଉପରେ ସ୍ଥାନ ମାଡ଼ି ବସନ୍ତି ନାହିଁ ବୋଲି ସେ ମତ ଦେଉଥିଲେ । କଥାଟା ମୋ ମନକୁ ପାଉଥିଲା । ଚୀନ୍‌ରେ କୁଆଡ଼େ ଲକ୍ଷ ଲକ୍ଷ ଏକର ଜମି କବର ଭୂଇଁ ମାଡ଼ି ବସିଛି । ଖ୍ରୀଷ୍ଟାନ୍ ଦେଶମାନଙ୍କରେ ବି ସେହିଭଳି ସଂସ୍କାରସ୍ଥାନ ଉପରେ ଗୋଟାଏ ସ୍ମୃତିସ୍ତମ୍ଭ ତିଆରି କଲେ ତାହା ସ୍ଥାନୀୟ ଜାଗା ମାଡ଼ି ବସେ । ତେଣୁ ସମାଧିସ୍ତମ୍ଭ, ସ୍ମୃତିସ୍ତମ୍ଭ ରଚନା ଉପରେ ଆମେ ଆଦୌ ଦୃଷ୍ଟି ଦେଉ ନଥିଲୁ । ସେତେବେଳେ ଏ ସବୁ ବିଷୟରେ ଦାଦା ଓ ମୋର ମତକୁ ହିଁ ଅପେକ୍ଷା କରାଯାଉଥିଲା । ଆମ ଦୁହିଁଙ୍କର ଦୃଷ୍ଟି ଏକା ପ୍ରକାର ଥିଲା । ପରେ ବେଳେବେଳେ ମନେ ହେଉଛି, ବରୀ ଲୋକଙ୍କର ଇଚ୍ଛା ଅନୁସାରେ କରିଥିଲେ କ'ଣ କ୍ଷତି ହେଉଥା'ନ୍ତା ? ଗୋଟାଏ ସ୍ମୃତିସ୍ତମ୍ଭ ଗଢ଼ାହେଲେ କେମିତି ହୁଅନ୍ତା ? ଏ ସବୁ ବିଷୟରେ କାହାର ମତକୁ ପ୍ରାଧାନ୍ୟ ଦିଆଯିବା ଉଚିତ ? ବରୀର ଲୋକେ, ସମସ୍ତ କର୍ମୀଗୋଷ୍ଠୀ ଆମ ଅପେକ୍ଷା ବାପାଙ୍କର କମ୍ ଆପଣାର ଲୋକ ନଥିଲେ । ସେମାନଙ୍କର ଇଚ୍ଛାର ବି ତ ମୂଲ୍ୟ ଥିଲା ?

ମାତ୍ର ଯେ ଗଲେ ତାଙ୍କରି ଇଚ୍ଛାକୁ ହିଁ ସର୍ବୋପରି ସମ୍ମାନ ଦିଆଯିବାର କଥା । ବାପା ତ ନିଜକୁ ଦରିଦ୍ରତମ ଜନତା ସହିତ ମିଶାଇ ଦେବାକୁ ଚାହୁଁଥିଲେ । ଉଚ୍ଚ ଶ୍ରେଣୀର, ଆଭିଜାତ୍ୟ ବର୍ଗର ଅନୁକରଣରେ ତାଙ୍କର ସଂସ୍କାର କରାଯାଉ ଏହା ସେ ପସନ୍ଦ କରିନଥା'ନ୍ତେ ।

ବାପାଙ୍କ ମୃତ୍ୟୁର ଅଳ୍ପପୂର୍ବରୁ ବିନୋବା ଘରେ ଘରେ ସର୍ବୋଦୟ ପାତ୍ର ବସେଇବାର କଳ୍ପନା ଦେଉଥା'ନ୍ତି । ବାପାଙ୍କର ସ୍ମାରକ କ'ଣ ହେବ ଏକଥା ଭାବୁ ଭାବୁ ଗୋଟାଏ କଥା ମନକୁ ଆସିଲା ଯେ, ତାଙ୍କର ସମାଧିସ୍ତମ୍ଭ କଥା ତ ଛାଡ଼, ତାଙ୍କ ନାଁରେ ଇଟାକାଠର ଗୋଟାଏ ଭବନ କି ଆଉ କ'ଣ ଗଢ଼ିଦେଲେ ତାଙ୍କ ମାପକୁ ପାଇବ ନାହିଁ । ଆହୁରି ଗୋଟାଏ କିଛି ବିରାଟ, ବ୍ୟାପକ ସ୍ମାରକ ଦରକାର । ଏଇ ପ୍ରସଙ୍ଗରେ ସର୍ବୋଦୟ ପାତ୍ର କଥା ମନେପଡ଼ିଲା ଓ ଓଡ଼ିଶାର ଘରେ ଘରେ ସର୍ବୋଦୟ ପାତ୍ର ବାପାଙ୍କର ପ୍ରକୃତ ସ୍ମାରକ ହେବ ବୋଲି ମନକୁ ଆସିଲା । ବିନୋବାଙ୍କୁ ସେ କଥା ଲେଖିଲି । ସେ ତାଙ୍କର ଶ୍ରଦ୍ଧାଞ୍ଜଳି ଓ ଶୋକବାର୍ତ୍ତାସୂଚକ ବାର୍ତ୍ତାରେ ସେହିକଥାକୁ ସମର୍ଥନ କଲେ ।

ସର୍ବୋଦୟ ପାତ୍ର ଏବେ ଓଡ଼ିଶାରେ କେବଳ ଅନୁଗୁଳରେ ହରିହର ପାଣିଗ୍ରାହୀଙ୍କ ଉଦ୍ୟମରେ ଯାହା କିଛି ଚାଲିଥିଲା । ଅନ୍ୟତ୍ର ତାର ନାମ ଗନ୍ଧ ନାହିଁ । ବେଳେବେଳେ ମନେହୁଏ ଯେ, ଏହାକୁ ସ୍ମାରକ ରୂପେ ଗ୍ରହଣ କରିବା ଅବାସ୍ତବ କାର୍ଯ୍ୟ ହେଲା । ଆଉ ଗୋଟାଏ କିଛି ଛୋଟକାଟିଆ ଓ ଆଖିଦୃଶିଆ ହେଲେ ହେଉଥାନ୍ତା । ସେମିତି ବି ତ ହେଉଛି । ମଧୁସାଗର ବିଦ୍ୟାପୀଠର ଗୋପଭବନ, ରାମଚନ୍ଦ୍ରପୁରରେ ଗୋପବନ୍ଧୁ କଲେଜ ଓ ଆଉ ବି କେଉଁଠି କ'ଣ ହେଉଥିବ । ପୁଣି ମନେହୁଏ ଯେ ତାଙ୍କ ଭଳି ବିପ୍ଳବୀଙ୍କର ପ୍ରକୃତ ସ୍ମାରକ ତାଙ୍କୁ ଭଲପାଉଥିବା ପ୍ରତ୍ୟେକଙ୍କ ହୃଦୟରେ ବିପ୍ଳବର ସ୍ଫୁଲିଙ୍ଗ ଓ କାର୍ଯ୍ୟରେ ତଥା ଜୀବନରେ ତାର ଅଭିବ୍ୟକ୍ତି । ଆଉ ସବୁ କେବଳ ମନକୁ ଭୁଲାଇବା କଥା ।

୧୯୫୫ ରୁ ବାପାଙ୍କର ଦେହ ଭଲ ରହୁ ନଥିଲା । କୋରାପୁଟରେ ବିନୋବା ପଦଯାତ୍ରାବେଳେ ତାଙ୍କର ଡାହାଣ ହାତଟା ଅବଶ ଲାଗୁଥିଲା । ରକ୍ତଚାପର ଟିକିଏ ଗଣ୍ଡଗୋଳ ବୋଧହୁଏ ଥିଲା । କିନ୍ତୁ ସେ ତାକୁ ଖାତିର ନ କରି ମାଡ଼ି ଚାଲିଥିଲେ । ଏଣେ ତେଣେ ଗସ୍ତ କରନ୍ତି, ପଦଯାତ୍ରାରେ ଯା'ନ୍ତି, ପୁଣି ବରୀରେ ଯାଇ ଚାଷବାସରେ ପରିଶ୍ରମ କରନ୍ତି । ଥରେ ବରୀରେ ଥିବାବେଳେ ଜ୍ୱର ହେଲା । ତା'ରି ଉପରେ ଆସନ, ବ୍ୟାୟାମ ଆଦି ଚଳେଇଲେ । ସୁନ୍ଦରଗଡ଼ ଆଡ଼େ ଶେଷଥର ପଦଯାତ୍ରାରେ ଯାଇଥିଲେ । ବାଟରେ ଜ୍ୱରରେ ପଡ଼ିଲେ । ସେଇଆଡୁ ଫେରି ଶେଷଥର ପାଇଁ କଟକରେ ପହଞ୍ଚିଲେ ।

ତାଙ୍କ ମନ ଉପରେ ବି ବହୁତ ଚାପ ଥିଲା । ଭୂଦାନ ଗ୍ରାମଦାନ ଆନ୍ଦୋଳନର ପ୍ରସାର ଓ ସେଥିଯୋଗୁଁ ଉପୁଜିଥିବା ସମସ୍ୟାର ବୋଝ ତାଙ୍କର ମୁଣ୍ଡ ଉପରେ ଥିଲା । ତାଙ୍କର ସ୍ୱଭାବ ତୀକ୍ଷ୍ଣ ଥିଲା ଓ ସେ ସବୁ କଥାରେ ନିର୍ଭୁଲତା ଚାହୁଁଥିଲେ । ଏହାଫଳରେ ସେ କୌଣସି କାମରେ ଭୁଲଭ୍ରାନ୍ତି ଦେଖିଲେ ଉତ୍ତେଜିତ ଓ ବିରକ୍ତ ହେଉଥିଲେ । ଏହାର ପ୍ରତିକ୍ରିୟା ବି ତାଙ୍କର ସ୍ୱାସ୍ଥ୍ୟ ଉପରେ ହେଉଥିବ । ଥରେ ପଦଯାତ୍ରାରେ ତାଙ୍କ ସାଙ୍ଗରେ କିଏ ଯିବ ବୋଲି କଥା ଉଠିଲା । ମୁଁ କହିଲି ଯାହାକୁ ବରାଦ କରାଯିବ ସେ ଯିବ । ବାପା କହିଲେ - "କେହି ସ୍ୱତଃପ୍ରବୃତ୍ତ ହେଇ ବାହାରିବା ଚାହିଁ ।" ହୁଏତ ତାଙ୍କ ମନକୁ ବାଧୁଥିଲା ଯେ, ତାଙ୍କ ସାଙ୍ଗରେ ରହିବାକୁ କର୍ମୀମାନେ ଡରୁଛନ୍ତି ।

ସେ ମଝିରେ ଦୁଧ ଓ ଦହି ଖାଇବା ପାଇଁ ସଂକଳ୍ପ କରିଥିଲେ । ତାଙ୍କର ସ୍ୱାସ୍ଥ୍ୟ ଉପରେ ଖରାପ ପ୍ରଭାବ ପଡ଼ିଲା । ବିନୋବା ଦିନେ ବୁଝେଇଲେ ଯେ ଦୁଧ, ଦହି ସିନା ଖାଇବେ ନାହିଁ, ଛେନା ଖାଇବାରେ ସଂକଳ୍ପ ବାଧା ଦେବ ନାହିଁ । ସେଠୁ ସେ ଛେନା ଖାଇବା ଆରମ୍ଭ କରିଥିଲେ । ବିନୋବା ତାଙ୍କୁ କିଛି ଦିନ ଯାଇ ରାଜସ୍ଥାନରେ ଶୁଖିଲା ଜଳବାୟୁରେ ବିଶ୍ରାମ ନେବାପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ସେଥିପାଇଁ ସେ ସମୟ ଦେଲେ କୋଉଠୁ ।

ଶେଷଦିନ ସେ ଭୁବନେଶ୍ୱର ଯାଇଥିଲେ, ଦେଖିଲେ ଯେ ସେଠି ବିରାଟ ବଡ଼ ପଟାରେ ମଦ ବିଜ୍ଞାପନ ବିଚ୍ ରାସ୍ତା ଛକ ଉପରେ ମରାହେଇଛି । ତାଙ୍କୁ କଥାଟା ଅତ୍ୟନ୍ତ ବାଧିଥିଲା । ସେ କୁଆଡ଼େ କଟକ ଫେରି ବାରମ୍ବାର ସେହି କଥା କହୁଥାନ୍ତି ଯେ ଶେଷକୁ ଏମାନେ ଏୟା କଲେ ? ସନ୍ଧ୍ୟାରେ ଭୋକ ହେବାରୁ ଟିକିଏ ଗୁଡ଼ ଖାଇଲେ । ରାତିରେ ପାଇଖାନା ଗଲେ । ସେଠୁ ଫେରି କହିଲେ, ଛାତିରେ କଷ୍ଟ ହେଉଛି । ପାଣି ଟବ୍‌ରେ ବସିବାକୁ ଇଚ୍ଛା କରିବାରୁ ସେଥିରେ ବସାଗଲା । କଷ୍ଟ ବଢ଼ିଲା । ତାଙ୍କର ଶେଷକଥା - "କି ଦିବ୍ୟ ଆଲୋକ ଦେଖାଯାଉଛି । ପ୍ରଭୁ ମତେ ନେଇଯାଅ ।"

ବାପାଙ୍କ ଯିବାପରେ ଜାଣି ସବୁ ଖିଅ ଛିଣ୍ଡିଗଲା । ମୋ ମନରେ ଶୋକ ସାଙ୍ଗକୁ ତୀବ୍ର ଅନୁଶୋଚନା ଆସୁଥାଏ ଯେ, ବାପାଙ୍କ ସାଙ୍ଗରେ କେତେଥର ସାନସାନ କଥାରେ ମତଭେଦ ହେଇ ମୁଁ ତାଙ୍କ ଉପରେ କି ଭୀଷଣ ନ ରାଗିଛି ।

ସେ ଗଲେ କିନ୍ତୁ ତାଙ୍କର ଅପୂର୍ଣ୍ଣ କାମକୁ ପୂର୍ଣ୍ଣ କରିବାକୁ ହେବ, ଏଇ ସଂକଳ୍ପ ମନରେ ଉଠୁଥାଏ । ମଇ ମାସରେ ମହାରାଷ୍ଟ୍ରର ପଣ୍ଢରପୁରଠାରେ ସର୍ବୋଦୟ ସମ୍ମିଳନୀ ହେଲା । ସେଥିରେ ବୋଉକୁ ସଭାନେତ୍ରୀ କରିବାର ପ୍ରସ୍ତାବ ଆସିଲା । ଆମେ ପରିବାରଯାକ ସମସ୍ତେ ସମ୍ମିଳନୀକୁ ଗଲୁ । ସେଠୁ ସମସ୍ତେ ବମ୍ବେ ଗଲୁ । ବୁବୁ, ନାରାୟଣ ହେରିକା ବି ଥା'ନ୍ତି । ପିଲାମାନଙ୍କୁ ବମ୍ବେ ବୁଲେଇ ଦେଖାହେଲା । ଫେରିବା ବାଟରେ ମୁଁ କିଛିଦିନ ବିନୋବାଙ୍କ ସାଙ୍ଗରେ ପଦଯାତ୍ରାରେ ରହିଲି । ପଣ୍ଢରପୁରରେ ଵିଠଲଙ୍କ ମନ୍ଦିର ଅଣ ହିନ୍ଦୁଙ୍କର ପ୍ରବେଶ ପାଇଁ ଖୋଲିବାରେ ବିନୋବା ସକ୍ଷମ ହେଇଥିଲେ । ପୁଣି ଔରଙ୍ଗାବାଦ୍ ନିକଟରେ ଭବାନୀ ମନ୍ଦିର ମଧ୍ୟ ସେହିପରି ଖୋଲାହେଲା ।

## ସର୍ବୋଦୟ ସଂସ୍କୃତି

କଟକରେ ଆମେ ୧୯୫୬ ରୁ ଗୋଟାଏ ସର୍ବୋଦୟ ସାଂସ୍କୃତିକ ସପ୍ତାହର କାର୍ଯ୍ୟକ୍ରମ ବିନୋବାଙ୍କ ଜନ୍ମଦିନ ଉପଲକ୍ଷ୍ୟରେ ଆରମ୍ଭ କରିଥିଲୁ । ଏ କାର୍ଯ୍ୟକ୍ରମ ଛଅ ସାତ ବର୍ଷଯାଏ ଚାଲିଥିଲା । ସେପ୍ଟେମ୍ବର ଏଗାରରୁ ସତର ବା ଅଠରଯାଏ ସାତଦିନ ବା ଆଠଦିନ ଏହା ଚାଲୁଥିଲା । ପ୍ରତିଦିନ ସନ୍ଧ୍ୟାରେ ମଣିଷ ଜୀବନର ବିଭିନ୍ନ ବିଭାଗରୁ ଗୋଟିଏ ଗୋଟିଏ ବିଭାଗର କୌଣସି ନା କୌଣସି ସମସ୍ୟା ନେଇ ଆଲୋଚନା ସଭା କରାଯାଉଥିଲା । ସେଥିରେ ମୁଖ୍ୟବକ୍ତା ହିସାବରେ ଅଧ୍ୟାପକ, ବୈଜ୍ଞାନିକ, ସାହିତ୍ୟିକ, ଆଇନଜ୍ଞ ଓ ସେହିପରି ଅନ୍ୟ ବିଦ୍ୱାନ ଲୋକଙ୍କୁ ନିମନ୍ତ୍ରଣ କରାଯାଉଥିଲା । ବକ୍ତାମାନଙ୍କର ନିଜନିଜର ବକ୍ତବ୍ୟ ବିଷୟରେ ପୂରା ସ୍ୱାଧୀନତା ଥିଲା । ସର୍ବୋଦୟର କୌଣସି ଗୃହୀତ ବିଶ୍ୱାସ ବା ସିଦ୍ଧାନ୍ତର ସମାଲୋଚନା ସେମାନେ କରିପାରୁଥିଲେ । ଏ ସବୁରେ ଆଲୋଚ୍ୟ ବିଷୟ ଭିତରେ ଅର୍ଥନୀତି, ରାଜନୀତି, ଶିକ୍ଷା, ସାହିତ୍ୟ, ଆଧ୍ୟାତ୍ମିକତା, ଅପରାଧ ସମସ୍ୟା, ଅନ୍ତଃରାଷ୍ଟ୍ରୀୟ ପରିସ୍ଥିତି ଆଦି ସବୁ ବିଷୟ ଆସୁଥିଲା । ଏ ମଞ୍ଚରେ ବିଭିନ୍ନ ରାଜନୀତିକ ମତବାଦର ବକ୍ତାଙ୍କୁ ମଧ୍ୟ ଡକାଯାଉଥିଲା ଓ ମୁଖ୍ୟବକ୍ତାଙ୍କ ମନ୍ତବ୍ୟ ପରେ ଖୋଲା ଆଲୋଚନା ଚାଲୁଥିଲା । ଏଥିରେ ଆମେ ଗୋଟିଏ ମର୍ଯ୍ୟାଦା ରଖିଥିଲୁ ଯେ ଲାଟ, ମନ୍ତ୍ରୀ ପ୍ରଭୃତି କାହାରିକୁ ତାଙ୍କର ପଦମର୍ଯ୍ୟାଦା ଦୃଷ୍ଟିରୁ ଡାକୁ ନଥିଲୁ । ବିଷୟର ଜ୍ଞାନ ଥିଲା ନିମନ୍ତ୍ରଣର ମାପକାଠି ।

ସର୍ବୋଦୟ ଆନ୍ଦୋଳନ ଯେ କେତୋଟି ସୀମାବଦ୍ଧ କାର୍ଯ୍ୟକ୍ରମକୁ ନେଇ ଚାଲୁନାହିଁ, ଏହା ଯେ ସର୍ବବ୍ୟାପୀ ଓ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ଛୁଇଁଛି ଏଇଟାର ହିଁ ଦ୍ୟୋତକ ଏ କାର୍ଯ୍ୟକ୍ରମ ଥିଲା । କେବଳ ଜନସାଧାରଣଙ୍କ ଭିତରେ ପ୍ରଚାର କରିବା ନୁହେଁ, ସର୍ବୋଦୟ ସେବକ ଗୋଷ୍ଠୀରେ ମଧ୍ୟ ଏ ବ୍ୟାପକତାର ବୋଧ ଆଣିଦେବା ଏହାର ଉଦ୍ଦେଶ୍ୟ ଥିଲା । ଏହାଦ୍ୱାରା ଓଡ଼ିଶାର ଶିକ୍ଷିତ ମହଲରେ ସର୍ବୋଦୟ ବିଷୟରେ ଏକ ଅନୁକୂଳ ଧାରଣା ସୃଷ୍ଟି ହେଲା । ବିଭିନ୍ନ ମତବାଦର ଲୋକ ଏକତ୍ର ହେଇ କୌଣସି ବିଷୟରେ ଧୀରସ୍ଥିର ଭାବରେ

ଆଲୋଚନା କରିବାର ମଞ୍ଚ ଓ ଏକ ବାତାବରଣ ସୃଷ୍ଟି ହେଲା । ପ୍ରଥମ ପ୍ରଥମ ବିଭିନ୍ନ ପରସ୍ପର ବିରୋଧୀ ମତର ବ୍ୟକ୍ତିଙ୍କୁ ଏକା ବୈଠକକୁ ବକ୍ତାଭାବରେ ଡାକି ଦେଇ ଆମେ ତ ପ୍ରମାଦ ଗଣୁଥିଲୁ, ଯେ ସଭାରେ ତୀବ୍ର ମତଭେଦ ଯୋଗୁଁ ବିପର୍ଯ୍ୟୟ ସୃଷ୍ଟି ନ ହୁଏ । କିନ୍ତୁ ତୀବ୍ର ମତଭେଦ ପ୍ରକାଶ ପାଇବା ସତ୍ତ୍ୱେ ଆଲୋଚନା ଧୀରସ୍ଥିର ଭାବରେ ବରାବର ଚାଲିଛି ଓ କେବେ ବିଶୃଙ୍ଖଳା ଉପୁଜି ନାହିଁ । ଏ କାର୍ଯ୍ୟକ୍ରମର ଲୋକପ୍ରିୟତା ବର୍ଷକୁ ବର୍ଷ ବଢ଼ି ଚାଲିଥିଲା । ସେତେବେଳେ ଦେବେନ୍ଦ୍ର ଶତପଥୀ ଏହାର ଆୟୋଜନ ଓ ସାଫଲ୍ୟ ପାଇଁ ବହୁତ ପରିଶ୍ରମ କରିଥିଲେ ।

କଟକରେ ଥରେ ଅଖିଳ ଭାରତ ଅର୍ଥବିଦ୍ୟା ସମ୍ମିଳନୀ ହେଲା । ସେ ଉପଲକ୍ଷ୍ୟରେ ଆମେ ଭୂଦାନ ଉପରେ ଏକ ଆଲୋଚନା ସଭାର ଆୟୋଜନ କରି ଅଧ୍ୟାପକ ଦାଁଓ୍ୱାଲା, ଡଃ. ଜ୍ଞାନଚାନ୍ଦ ଓ ଅଧ୍ୟାପକ ଭି.କେ. ଆର.ଭି ରାଓଙ୍କୁ ଡାକିଥିଲୁ । ଏ ସଭା ଆଶାତୀତ ଭାବରେ ସଫଳ ହୋଇଥିଲା ଓ ସାରା ଭାରତର ଅର୍ଥନୀତିଜ୍ଞ ମହଲରେ ଏହାର ପ୍ରଭାବ ପଡ଼ିଥିଲା ।

ବିଖ୍ୟାତ ଇଂରେଜ ବୈଜ୍ଞାନିକ ଡଃ. ଜେ.ବି.ଏସ୍ ହାଲ୍‌ଡେ଼ନ୍ ଏଇ ସମୟରେ ଆସି ଭାରତରେ ରହି ଗବେଷଣା କରୁଥା'ନ୍ତି । ସର୍ବୋଦୟ ବିଚାରର କଦର କରିବା ଭଳି ତାଙ୍କର ଗୋଟିଏ ଯୋଡ଼ିଏ ଲେଖା ବାହାରିବାର ଦେଖି ମୁଁ ତାଙ୍କ ସହିତ ପତ୍ର ବ୍ୟବହାର ଆରମ୍ଭ କଲି । ଏହା ଅନେକ ଦିନ ଯାଏ ଚାଲିଥିଲା । ଦୁଇଖଣ୍ଡ ଦୀର୍ଘ ପତ୍ରରେ ସେ ବିଜ୍ଞାନ ଓ ଆଧ୍ୟାତ୍ମିକ ମୂଲ୍ୟର ପରସ୍ପର ସଂପର୍କ ବିଷୟରେ ଚମତ୍କାର ବିଶ୍ଳେଷଣ କରିଥିଲେ ଓ ଭାରତରେ ବିଜ୍ଞାନ ଚର୍ଚ୍ଚାର ମୂଲ୍ୟାଙ୍କନ କରିଥିଲେ ଯାହା ଭାରତର ଏ ବାବଦ୍‌ର ପରିସ୍ଥିତିର ସମାଲୋଚନାମୂଳକ ଥିଲା ।

ବିନୋବା ମତେ କଲିକତାରେ ବୁଦ୍ଧିଜୀବୀଙ୍କ ସହିତ ସଂପର୍କ କରିବା ପାଇଁ ଏହି ସମୟରେ ପରାମର୍ଶ ଦେଲେ । ମୁଁ କଲିକତା ଯିବା ଆସିବା ପରେ କେତେକ ବିଶିଷ୍ଟ ସାହିତ୍ୟିକ ଓ ଅଧ୍ୟାପକଙ୍କ ସହିତ ସଂପର୍କ କରିଥିଲି । କଲିକତାର ସର୍ବୋଦୟ କର୍ମୀମାନେ ସେଠି ମଧ୍ୟ ବୁଦ୍ଧିଜୀବୀ ମହଲରେ ପ୍ରବେଶ କରିଥିଲେ ଓ ସେଠି ମଧ୍ୟ ନାନା ବିଷୟରେ ଆଲୋଚନା ସଭା, ବିଚାର ଗୋଷ୍ଠୀ ଆଦିର କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ତେବେ ତାହା କଟକ ପରି ଏତେ ଦାନା ବାନ୍ଧି ନଥିଲା ।

ଆଉ ଗୋଟିଏ କଥାରେ କଲିକତା ଓ ପଶ୍ଚିମବଙ୍ଗ ସହିତ ମୋ ସଂପର୍କ ଅଧିକ ଫଳପ୍ରଦ ହୋଇଥିଲା । ଆଶ୍ରମବାସୀ ଜୀବର ଯେଉଁ ଗୋଟାଏ ଷ୍ଟିରିଓଟାଇପ୍ ବା ଧରାବନ୍ଧା କଳ୍ପନା ଲୋକଙ୍କ ମନରେ ପୂର୍ବରୁ ଅଛି, କଲିକତାର ସର୍ବୋଦୟ କର୍ମୀ ଓ ପ୍ରେମୀମାନେ ନିଜକୁ ସେହି ଚାଞ୍ଚରେ ପକେଇଥିଲେ । ସର୍ବୋଦୟବାଲା ମୁଣ୍ଡରେ ବାଳ ସାନ ସାନ ରଖନ୍ତି, ନ ହେଲେ ଦାଢ଼ୀ ବାଳ ଜଟା । ଜୋର୍‌ରେ ହସନ୍ତି ନାହିଁ । ନାଟକ, ସଙ୍ଗୀତ, ସିନେମା ବର୍ଜନ କରନ୍ତି ଇତ୍ୟାଦି । ମୁଁ ଯାଇ ଏ ହାଓ୍ୱାଟାକୁ ଭାଙ୍ଗିବା ପାଇଁ ଉଦ୍ୟମ କଲି । ଜୀବନର ସବୁ ବିଭାବର ସ୍ଥାନ ସର୍ବୋଦୟ ଭିତରେ ଅଛି । ଏ କଥା ବୁଝି ଅନେକ ସର୍ବୋଦୟୀ ବନ୍ଧୁ ମୁକ୍ତିର ନିଃଶ୍ୱାସ ପକେଇଲେ । ସେମାନେ ପ୍ରକୃତରେ ଏକ ଅଚଳାୟତନ ଭିତରେ ରହି ଅଣନିଃଶ୍ୱାସୀ ହେଲାପରି ଅନୁଭବ କରୁଥିଲେ । ଏହାଫଳରେ ବିବିଧ ମହଲରେ ସେମାନଙ୍କର ସଂପର୍କ ମଧ୍ୟ ବିସ୍ତୃତ ହେଲା ।

ସେମାନେ ଉତ୍ସାହର ସହିତ ସାଂସ୍କୃତିକ ଦିଗର କର୍ଷଣ ମଧ୍ୟ ଆରମ୍ଭ କଲେ ଓ ଦୁଇଟି ନାଟକ ମଧ୍ୟ କଲିକତାରେ ମଞ୍ଚସ୍ଥ ହେଲା, ଯେଉଁଥିରେ ନାରୀ ଓ ପୁରୁଷ ସର୍ବୋଦୟ କର୍ମୀମାନେ ଅଭିନୟ କରିଥିଲେ ।

ସର୍ବୋଦୟ ଗୋଷ୍ଠୀ ଭିତରେ ନେତୃସ୍ଥାନୀୟଙ୍କ ଭିତରେ ନାଚ, ଗୀତ ଆଦି ସାଂସ୍କୃତିକ କାର୍ଯ୍ୟକ୍ରମ ବିଷୟରେ ମାସୀମା' (ଆଶାଦେବୀ) ହିଁ ବେଶି ସ୍ପୃହା ରଖୁଥିଲେ । ଓଡ଼ିଶାରେ ଖୁଡ଼ୀଙ୍କର ଏ ଦିଗରେ ଉଦ୍ୟମ ବେଶି । ସର୍ବୋଦୟ ସମ୍ମିଳନୀ ବା ଅନ୍ୟ ସେହିଭଳି ଉପଲକ୍ଷ୍ୟରେ ସେ ଦୁହେଁ ମିଶି ବେଳେବେଳେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରୁଥିଲେ । ଥରେ ଏକ ସମ୍ମିଳନୀବେଳେ ମାସୀମା ରବୀନ୍ଦ୍ରନାଥଙ୍କର ଗୀତିନାଟ୍ୟ 'ଚଣ୍ଡାଳିକା'ର ଅଭିନୟ ଆୟୋଜନ କରିଥିଲେ ଓ ତାଙ୍କ ଆଗ୍ରହରେ ବିନୋବା କିଛି ସମୟ ବସି ତାହା ଦେଖିଥିଲେ । କିନ୍ତୁ ବିନୋବାଙ୍କର କେବଳ ସଙ୍ଗୀତ ଛଡ଼ା ଅନ୍ୟ କୌଣସି କଳାରେ ସ୍ପୃହା ଥିବାପରି ଜଣାଯାଏ ନାହିଁ । ସାଂସ୍କୃତିକ କାର୍ଯ୍ୟକ୍ରମ ସାଧାରଣତଃ ରାତିରେ ହୁଏ । ବିନୋବା ପରିହାସରେ କହନ୍ତି ଯେ ତାଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ସନ୍ଧ୍ୟା ସାତଟାରେ ଆରମ୍ଭ ହୋଇଯାଏ, ଅର୍ଥାତ୍ ନିଦ୍ରା ।

ବିଭିନ୍ନ ରାଜ୍ୟର ସର୍ବୋଦୟ କର୍ମୀଙ୍କ ଭିତରୁ ଗୁଜୁରାତ ଓ ଆସାମରେ ସହଜ ଆନନ୍ଦ ଉଲ୍ଲାସର ବୃତ୍ତି ଦେଖାଯାଏ । ଗାନ୍ଧୀମତଟା ପୂର୍ବ ଭାରତରେ ପହଞ୍ଚିଲାବେଳେ ଗୋଟାଏ ଅତିନିଷ୍ଠାବାଦୀରୂପ ଧରିଥିଲା । ସେମାନେ ନାଚଗୀତ ଆଦି ଠୁଁ ଟିକିଏ ଦୂରରେ ରହିବା ଭାବ ଥିଲା । ଜଣେ ଗାନ୍ଧୀପନ୍ଥୀ କର୍ମୀ ତ ତିରିଶ ଦଶନ୍ଧିରେ କୋରାପୁଟରେ ଆଦିବାସୀଙ୍କ ଭିତରେ ନିଶା ସାଙ୍ଗକୁ ନାଚଗୀତ ବିରୋଧରେ ମଧ୍ୟ ପ୍ରଚାର ଆରମ୍ଭ କରିଥିଲେ । ମାତ୍ର ଖୋଦ ଗୁଜରାତରେ ଗାନ୍ଧୀଜୀ ଲୋକ ସଂସ୍କୃତିକୁ ଉତ୍ସାହିତ କରୁଥିଲେ ଓ ରଚନାତ୍ମକ କର୍ମୀ ମହଲରେ ଏ ସବୁର ଭଲ ଚର୍ଚ୍ଚା ସେଥିପାଇଁ ଅଛି । କେଉଁଠି କର୍ମୀଦଳ ଜୁଟିଲେ ଆମୋଦ ପ୍ରମୋଦ ପାଇଁ ପୁରୁଷକର୍ମୀ ଓ ନାରୀକର୍ମୀ ସମସ୍ତେ ଗରବା ବା ରାସ ନାଚିବାରେ ଲାଗିଯା'ନ୍ତି । ଆସାମରେ ମଧ୍ୟ ନାଚଗୀତର ଲୋକ ସଂସ୍କୃତିରେ ସର୍ବୋଦୟ କର୍ମୀଙ୍କର ରୁଚି ଅଛି । ସେଠି ମଧ୍ୟ ବାଇଦେଓ (ଅମଲପ୍ରଭା ଦାସ) ଙ୍କ ସମେତ ସମସ୍ତେ ବିନା ସଂକୋଚରେ ଏକାଠି ଦଳବାନ୍ଧି ନାଚିବା, ଗାଇବାକୁ ଭଲ ପାଆନ୍ତି । ଏ ଦିଗରେ ସବୁଠୁଁ କମ୍ ପ୍ରବେଶ ଉତ୍ତରପ୍ରଦେଶ ଓ ବିହାରରେ ଜଣାପଡ଼େ । ନାରାୟଣ ହେରିକାଙ୍କର ରୁଚି ଯୋଗୁଁ ଶାନ୍ତିସେନାରେ ମଧ୍ୟ ଏ ସବୁର ପ୍ରସାର ଖୁବ୍ ହେଉଛି । ଓଡ଼ିଶାରେ ବାପା, ୧୯୪୬-୪୭ ବୈକୁଣ୍ଠ ମହାନ୍ତିଙ୍କୁ ସେବାଗ୍ରାମ ଓ ଗୁଜରାତ ପଠେଇ ଗରବା ନାଚ ଆଦି ଶିଖେଇ ଆଣିଥିଲେ ଓ ମୌଳିକ ବିଦ୍ୟାଳୟମାନଙ୍କରେ ସେ ସବୁର ବ୍ୟାପକ ଚର୍ଚ୍ଚା ହେଉଥିଲା ।

ସର୍ବୋଦୟର ସଭାସମିତିମାନଙ୍କରେ ତ ଚର୍ଚ୍ଚା ଘଣ୍ଟା ଘଣ୍ଟା ଧରି ଅସରନ୍ତି ଚାଲେ । ସେଥିରେ ବସି ବସି ବୋର୍ ହୋଇ ମୁଁ ସବୁ ଉପସ୍ଥିତ ବ୍ୟକ୍ତିଙ୍କର ଛବି ଆଙ୍କିବା ଆରମ୍ଭ କଲି । ତା' ପରେ ସମସ୍ତଙ୍କର ବ୍ୟଙ୍ଗଚିତ୍ର ଆଙ୍କିବା ଆରମ୍ଭ କଲି । ଏଥିରୁ କେତେକ ସର୍ବୋଦୟର ପତ୍ରପତ୍ରିକାମାନଙ୍କରେ

ଛପା ହେଉଥିଲା । ଆବୁରୋଡ୍ ସର୍ବୋଦୟ ସମ୍ମିଳନୀରେ ମୋର ବ୍ୟଙ୍ଗଚିତ୍ର ଗୁଡ଼ିକର ଏକ ପ୍ରଦର୍ଶନୀ ମଧ୍ୟ ହେଉଥିଲା । ଅନିଲ ଦାସଗୁପ୍ତା ବୋଲି ଜଣେ ବଙ୍ଗାଳୀ ଚିତ୍ରକର ଅନେକ ଦିନଯାଏ ସର୍ବ ସେବା ସଂଘରେ ଥାଇ ପ୍ରଦର୍ଶନୀ ଓ ଗୃହସଜ୍ଜା ଆଦି ପାଇଁ ଚିତ୍ର ଆଙ୍କି ଯୋଗାଉଥିଲେ ।

ତେବେ କଳାର ବିଭିନ୍ନ ମାଧ୍ୟମ ଗୁଡ଼ିକୁ ସର୍ବୋଦୟ ବିଚାର ପ୍ରଚାର ପାଇଁ ଯେତେ ବ୍ୟବହାର କରାଯାଇପାରନ୍ତା ତାହା କରାଯାଇ ନାହିଁ । କମ୍ୟୁନିଷ୍ଟ ଦଳ ଭାରତୀୟ ଗଣନାଟ୍ୟ ସଂଘ (IPTA) ମାଧ୍ୟମରେ ସାମ୍ୟବାଦୀ ଚିନ୍ତାଧାରାକୁ ଖୁବ୍ ପ୍ରଭାବପୂର୍ଣ୍ଣ ଢଙ୍ଗରେ ଏକ ସମୟରେ ପ୍ରଚାର କରୁଥିଲେ । ସେପରି ଉଦ୍ୟମ ସର୍ବୋଦୟ ପକ୍ଷରୁ କେଉଁଠି ହେଉଛି ? ଓଡ଼ିଶାରେ ସର୍ବଶ୍ରୀ ଶ୍ୟାମସୁନ୍ଦର ପଣ୍ଡା, ଜଗନ୍ନାଥ ବେହେରା ଓ ଲକ୍ଷ୍ମଣ ମିଶ୍ର ବିଭିନ୍ନ ସମୟରେ ପାଲା ମାଧ୍ୟମରେ ସାଂପ୍ରତିକ,ରାଜନୀତିକ, ଆର୍ଥିକ ଓ ସାମାଜିକ ପରିସ୍ଥିତି ଉପରେ ସର୍ବୋଦୟର ଦୃଷ୍ଟିକୋଣ ଓ ଭୂଦାନ ଗ୍ରାମଦାନ ଆନ୍ଦୋଳନ ଚିନ୍ତାଧାରାର ପ୍ରଚାର କରିଥିଲେ ।

ଅନ୍ୟାନ୍ୟ ରାଜ୍ୟରେ ବି କେଉଁଠି କେମିତି ଉଦ୍ୟମ ହେଉଛି ।

ସଭାସମିତି ମଝିରେ ମନର ଚାପ ହାଲୁକା କରିବାପାଇଁ ଆମେସବୁ ପଞ୍ଚାଏ ସ୍କ୍ରାବଲ ଖେଳକୁ ଧରିଥିଲୁ । ଏଇଟା ଇଂରାଜୀର ଅକ୍ଷର ଯୋଡ଼ି ଶବ୍ଦ ତିଆରି କରିବାର ଖେଳ । ଟିକିଏ ଫୁରସତ୍ ପାଇଲେ ଆମେ ସ୍କ୍ରାବଲ ଧରି ବସିଯାଉ । ଏଥିରେ ଦାଦା, ରାଧାକୃଷ୍ଣ, ନାରାୟଣ, ପୂର୍ଣ୍ଣଚନ୍ଦ୍ରଜୀ, ସିଦ୍ଧରାଜଜୀ ହେରିକା ମୁଖ୍ୟ ଥାଉ । ଏହାର ନାମ ଆମେ ଦେଇଥାଉ ସାମୂହିକ ଧ୍ୟାନଯୋଗ, କାରଣ ସମସ୍ତେ ଅକ୍ଷର ଓ ଶବ୍ଦ ଉପରେ ମନକୁ ନିବିଷ୍ଟ କରି ବଗ ମାଛକୁ ଚାହିଁ ବସିଲା ପରି ବସିଥା'ନ୍ତି । ଆମର ଏ ଦଳରେ ଆଉସବୁ କିଏ କିଏ ବି କ୍ରମେ ଜୁଟିଲେ । କିନ୍ତୁ ବଙ୍ଗ, ବଙ୍ଗୁଣୀ ତଥା ମହାରାଷ୍ଟ୍ରର ଅନ୍ୟ କୌଣସି ସାଥୀକୁ ଆମେ ଯା ଭିତରକୁ ଟାଣିପାରିଲୁ ନାହିଁ । ଏମାନେ ସବୁବେଳେ 'ବିଶ୍ୱଭାରନତ' ହୋଇଥା'ନ୍ତି । 'ଶୁଷ୍କରୁଟୀନ-ପଥ-ମରୁପରିଚାରଣ' କରି ମଧ୍ୟ କ୍ଳାନ୍ତ ହେବାର ଦେଖାଯା'ନ୍ତି ନାହିଁ । ଆମେ ଏମାନଙ୍କୁ କହୁ ଯେ, ତମର ମନର କବାଟ ଝରକା ଟିକିଏ ଖୋଲା ରଖ, ନହେଲେ ଭଗବାନ ବି କେତେବେଳେ ହଠାତ୍ ପଶିବାକୁ ଚାହିଁବେ ତ ପଶିପାରିବେ ନାହିଁ ।

ଆମର ଆଉ ଏକ ସଂସ୍କୃତିକ ଆବିଷ୍କାର ହେଲା 'ପଡ଼ିୟଲ୍ ସେମିନାର' । ବିନୋବା ତ ପରାମର୍ଶ ଦିଅନ୍ତି ଯେ ଚିନ୍ତା କରିବାବେଳେ ମନରେ କୌଣସି କ୍ଷୋଭ ବା ଉତ୍ତେଜନା ରହିବା ଠିକ୍ ନୁହେଁ । ଏହାର ପନ୍ଥା ଆମେ ବାହାର କଲୁ ଯେ ସମସ୍ତେ ଲମ୍ବାହୋଇ ଶୋଇ ଆଲୋଚନା କରିବେ । କେହି ଆଲୋଚନାବେଳେ ଉଠି ବସି ପାରିବେ ନାହିଁ । କହୁଣୀ ଉପରେ ଭରାଦେଇ ମୁଣ୍ଡ ବି ଟେକିପାରିବେ ନାହିଁ । ଏହାଦ୍ୱାରା ଅକ୍ଷୋଭ ଚିନ୍ତନରେ ଖୁବ୍ ସାହାଯ୍ୟ ହୁଏ । ପୁଣି ଦ୍ୱିପହର ବା ରାତିର ଭୋଜନପରେ ସେମିନାର୍‌ଟା ଆରମ୍ଭ ହେଲେ ଅକ୍ଷୋଭ ଚିନ୍ତନ ଖୁବ୍ ଶୀଘ୍ର ଗଭୀରରୁ ଗଭୀରତର ହୋଇ ସମାଧିସ୍ତରକୁ ବି ଚାଲିଯାଏ ।

# ଆନ୍ଦୋଳନର ଗତିବିଧି

ବାବାଙ୍କ ମୃତ୍ୟୁପରେ ସମସ୍ତେ ପୁଣି ଧୀରେ ଧୀରେ ଓଡ଼ିଶାରେ ସର୍ବୋଦୟ କାମକୁ ସୁବ୍ୟବସ୍ଥିତ କରିବାରେ ଲାଗିପଡ଼ିଲେ । କୋରାପୁଟ, ଗଞ୍ଜାମ, ବାଲେଶ୍ୱର ଓ ମୟୂରଭଞ୍ଜ ମୁଖ୍ୟତଃ ଏଇ ଚାରି ଜିଲ୍ଲାରେ ଗ୍ରାମଦାନ ସଂଗ୍ରହ କାମ ଧୀରେ ଧୀରେ ଆଗେଇ ଚାଲିଲା । ଭୂଦାନ ସମିତି ମାଧ୍ୟମରେ ଭୂଦାନ ଓ ଗ୍ରାମଦାନର ଜମିବଣ୍ଟା କାମ ମଧ୍ୟ ଆଗେଇଲା । ଶ୍ରୀ ସଦାଶିବ ତ୍ରିପାଠୀ ଏ କାମରେ ବିଶେଷ ରୁଚି ନେବା ଯୋଗୁଁ ସରକାରୀ ସହଯୋଗ ପୂର୍ବାପେକ୍ଷା ଢେର୍ ଭଲ ମିଳିଲା । କଟକ ସହରରେ ଫକିର ମିଶ୍ରଙ୍କ ତତ୍ତ୍ୱାବଧାନରେ ସର୍ବୋଦୟ ପାତ୍ର କାମ ବେଶ୍ ଉଧେଇଥାଏ । ପ୍ରାଦେଶିକ ସର୍ବୋଦୟ ମଣ୍ଡଳ ପକ୍ଷରୁ ପାଣ୍ଠି ସଂଗ୍ରହ ଅଭିଯାନ ମଧ୍ୟ ବର୍ଷରେ ଥରେ କରିବାର ସ୍ଥିର ହେଇଥାଏ । କର୍ମୀମାନଙ୍କୁ ତାଲିମ ଦେବାପାଇଁ ପ୍ରାଦେଶିକ ସ୍ତରରେ ଓ ତା'ପରେ ଜିଲ୍ଲା ଓ ସ୍ଥାନୀୟ ସ୍ତରରେ ଶିବିର କରିବାର ଏକ ପରିକଳ୍ପନା ୧୯୬୦ ରେ ବାହାରିଲା । ପୂର୍ବରୁ ତ ଭୂଦାନ କର୍ମୀମାନଙ୍କର ଶିବିର ମଝିରେ ମଝିରେ ହେଉଥିଲା । କିନ୍ତୁ ଏ ସବୁରେ ଶ୍ରମ ଶିବିରର ଆଲୋଚନାର ପରମ୍ପରା ଭାଙ୍ଗି ଯାଇଥିଲା । ଦାଦା ଧର୍ମାଧିକାରୀ ବା ଧୀରେନଭାଇଙ୍କ ଭଳି ସର୍ବୋଦୟର କେହି ଜଣେ ବିଶିଷ୍ଟ ଦାର୍ଶନିକ ଓ ନେତାଙ୍କୁ ଡାକିଦେଇ ତାଙ୍କର ଭାଷଣ ଦିନକୁ ଦୁଇଓଳି ରଖିଦେଉଥିଲୁ । ଭାଷଣ ତ ଖୁବ୍ ଉପାଦେୟ ହେଉଥିଲା, ମାତ୍ର କର୍ମୀମାନଙ୍କର ମୁଣ୍ଡ ଉପର ଦେଇ ଚାଲି ଯାଉଥିଲା କି ମୁଣ୍ଡ ଭିତରେ ପଶି ପାରୁଥିଲା ତା'ର ଚିନ୍ତା ଆମେ ଆୟୋଜକମାନେ କରୁ ନ ଥିଲୁ । ଏମିତି ଚାରିପାଞ୍ଚ ଦିନ ଲେଖାଁ ଲଗାତାର ଚାଲୁଥିଲା ।

କ୍ରମେ ଆମମାନଙ୍କର ଖିଆଲ ହେଲା ଯେ କର୍ମୀ ଏ ସବୁ ଉଚ୍ଚକୋଟୀର ବକ୍ତୃତା ଶୁଣି ହଜମ କରିବା ପାଇଁ ହେଲେ କିଛି ମାନସିକ ପୂର୍ବପ୍ରସ୍ତୁତି ତ ଲୋଡ଼ା । ସମାଜ ସେବା ଓ ସମାଜ ପରିବର୍ତ୍ତନ କାମ କରିବାକୁ ହେଲେ ମଣିଷର ମନ ଓ ସାମାଜିକ ସଙ୍ଗଠନ ନେଇ କାରବାର କରୁଥିବା ବିଭିନ୍ନ ବିଜ୍ଞାନ ସହିତ ପରିଚୟ ଓ ସେ ସବୁରେ ଗବେଷଣା ମଧ୍ୟ ଆବଶ୍ୟକ ବୋଲି ମୋର ବିଚାର ତ କ୍ରମେ ଦୃଢ଼ତର ହେଇଥାଏ । ତା'ଛଡ଼ା ଆମ ଗାଁ କର୍ମୀମାନଙ୍କର ରାଜନୀତି, ଅର୍ଥନୀତି, ସମାଜବ୍ୟବସ୍ଥା ଆଦି ବିଷୟରେ ସାଧାରଣ ବୌଦ୍ଧିକ ଜ୍ଞାନ ବି ତ ଊଣା ଥାଏ । ତେଣୁ ସେମାନଙ୍କର ବୌଦ୍ଧିକ ସ୍ତରର ଉତ୍କର୍ଷ ପାଇଁ ଶିବିରର ପାଠ୍ୟକ୍ରମ ଗଢ଼ାହେଲା । ବିଭିନ୍ନ ବିଷୟରେ ଅଧ୍ୟାପକ ଓ ଅନ୍ୟ ବିଦ୍ୱାନ ବ୍ୟକ୍ତିଙ୍କ ସାହାଯ୍ୟରେ ଉପରୋକ୍ତ ବିଷୟ ତଥା ମାନବ ସଭ୍ୟତାର ବିକାଶର ଧାରା, ସେଥିରେ ଆତ୍ମଜ୍ଞାନ ଓ ବିଜ୍ଞାନର ଭୂମିକା, ସାହିତ୍ୟର ଅବଦାନ ଆଦି ବିଷୟରେ ମଧ୍ୟ କର୍ମୀମାନଙ୍କୁ ସାଧାରଣ ଜ୍ଞାନ ଦିଆଯିବାର ଯୋଜନା ହେଲା । ଏ ସବୁ ସାଙ୍ଗକୁ ସର୍ବୋଦୟର ବ୍ୟାବହାରିକ କାର୍ଯ୍ୟକ୍ରମ ଓ ସମସ୍ୟାମାନ ବିଷୟରେ ମଧ୍ୟ ଆଲୋଚନା ହୁଏ । ଶିବିରରେ ସମସ୍ତେ ଏକାଠି ମିଳିମିଶି ଚଳିବାର କଳା ମଧ୍ୟ ଶିଖନ୍ତି ।

ଏ ଭଳି ପ୍ରଥମ ପ୍ରାଦେଶିକ ଶିବିର କଟକ ଟାଉନହଲରେ ହେଲା । ତା'ପରେ କଟକ ଓ ଭୁବନେଶ୍ୱର ଆଖପାଖରେ ବିଭିନ୍ନ ସ୍ଥାନରେ ହେଉଥିଲା । ପ୍ରଥମ ପ୍ରଥମ ଏସବୁ ବି ବକ୍ତୃତା ସର୍ବସ୍ୱ ଥିଲା, କିନ୍ତୁ ତା'ପରେ କର୍ମୀମାନଙ୍କର ପରସ୍ପର ଆଲୋଚନା ଦ୍ୱାରା ବିଷୟକୁ ହଜମ କରିବା ପାଇଁ ଯଥେଷ୍ଟ ସମୟ ରଖାଗଲା । ବକ୍ତାଙ୍କ ସହିତ ଆଲୋଚନାକୁ ମଧ୍ୟ ଉତ୍ସାହିତ କରାଗଲା । ଏସବୁ ଶିବିର ସାତ ଦିନରୁ ଆରମ୍ଭ କରି ଦଶ ଦିନଯାଏ ଚାଲୁଥିଲା । ପ୍ରଥମେ ଆଶଙ୍କା କରାଯାଉଥିଲା ଯେ କର୍ମୀମାନେ ଏତେ ସବୁ ବୌଦ୍ଧିକ ବିଷୟରେ ରସ ଗ୍ରହଣ କରିପାରିବେ ନାହିଁ, ବୋର୍ ହେବେ । କାମ ଆଗକୁ କିପରି କରାଯିବ ସେଇଟା ହିଁ ଅସଲ କଥା, ଏତେସବୁ ଅନ୍ୟ କଥାରୁ କ'ଣ ମିଳିବ । କିନ୍ତୁ ଦେଖାଗଲା ଯେ ଏ ସବୁ ବିବିଧ ଜ୍ଞାନର ବିଷୟରେ କର୍ମୀମାନଙ୍କର ଯଥେଷ୍ଟ ସ୍ପୃହା ଅଛି ଓ ତାହା କ୍ରମେ ବଢ଼ିଲା । ଶିବିରକୁ ସାରା ରାଜ୍ୟରୁ ଅଶିରୁ ଶହେ ଯାଏ କର୍ମୀଙ୍କୁ ନିମନ୍ତ୍ରଣ ଦିଆଯାଉଥିଲା । ମାତ୍ର ପ୍ରାୟ ତାଠୁଁ ବେଶି କର୍ମୀ ଆସି ଉପସ୍ଥିତ ହେଉଥିଲେ । କୋରାପୁଟରୁ ସୁଦ୍ଧା ହାତରୁ ପଚାଶ ଟଙ୍କା ଲେଖା ବାଟ ଖର୍ଚ୍ଚ କରି ଗାଁ କର୍ମୀ ଅଧିକ ସଂଖ୍ୟାରେ ଆସି ପହଞ୍ଚୁଥିଲେ । ଯେଉଁଥର ଶିବିରରେ ଉତ୍କଳ ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧ୍ୟାପକଙ୍କ ବକ୍ତବ୍ୟ ଉପରେ କୋରାପୁଟର ଜଣେ ଗାଉଁଲି କର୍ମୀ ଉଠି ଯୁକ୍ତିତର୍କ କଲେ, ସେ ଦିନ ଆମେ ବୁଝିଲୁ ଯେ ଶିବିରର ଉଦ୍ଦେଶ୍ୟ ସଫଳ ହେଉଛି । ପରେ ଦୁଇସ୍ତରୀୟ ଶିବିରର ପ୍ରୟୋଗ ମଧ୍ୟ କରାଗଲା । ଯେଉଁମାନେ ପୂର୍ବ ବର୍ଷ ଶିବିରରେ ଯୋଗ ଦେଇଥିଲେ ସେମାନଙ୍କ ପାଇଁ ଆଗୁଆ ପାଠ୍ୟକ୍ରମ ଓ ନୂଆ ଶିବିରାର୍ଥୀଙ୍କ ପାଇଁ ପ୍ରାଥମିକ । ଗୋଟାଏ ତ୍ରିସ୍ତରୀୟ ଶିବିର ମଧ୍ୟ ହେଲା ଯେଉଁଥିରେ ପ୍ରାଦେଶିକ ସ୍ତରର ପ୍ରଧାନ କର୍ମୀମାନଙ୍କ ପାଇଁ ଏକ ଉଚ୍ଚତର ପାଠ୍ୟକ୍ରମ ରଖାଯାଇଥିଲା ।

ଏସବୁ ଶିବିରରେ ପଛକୁ ଗାନ୍ଧୀ ବିଦ୍ୟା ସଂସ୍ଥାନର ସାହାଯ୍ୟ ମଧ୍ୟ ପ୍ରଚୁର ପରିମାଣରେ ମିଳିଲା । ୧୯୬୦ ରେ ଶଙ୍କରରାଓଜୀ, ଦାଦା (ନବବାବୁ) ଓ ଜୟପ୍ରକାଶଜୀଙ୍କ ଉଦ୍ୟମରେ ଏହା ସ୍ଥାପିତ ହେଲା । ସର୍ବୋଦୟ ଆନ୍ଦୋଳନ ପାଇଁ ସାମାଜିକ ବିଜ୍ଞାନଗୁଡ଼ିକର ଚର୍ଚ୍ଚା ଓ ଗବେଷଣାର ଆବଶ୍ୟକତା ଉପଲବ୍ଧି କରି ସେମାନେ ଏଭଳି ଏକ ସଂସ୍ଥା ଦରକାର ବୋଲି ଅନୁଭବ କରିଥିଲେ । ଏ ସଂସ୍ଥାର ସଂଚାଳକ ସୁଗତ ବାବୁ ଓ ଅନ୍ୟ ଅଧ୍ୟାପକମାନେ ଓଡ଼ିଶା ଶିବିରର ସାଫଲ୍ୟ ପାଇଁ ଯଥାସାଧ୍ୟ ସାହାଯ୍ୟ କରୁଥିଲେ । ବାଣୀବିହାର ଓ କୃଷି ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ, ବିଶେଷକରି ଡଃ. ବୈଦ୍ୟନାଥ ମିଶ୍ର, ଡଃ ବିଦ୍ୟାଧର ମିଶ୍ର, ଡଃ ଶ୍ରୀ ରାମଚନ୍ଦ୍ର ଦାସ, ଡଃ ରାଧାନାଥ ରଥ, ଡଃ. ଲକ୍ଷ୍ମଣ ମହାପାତ୍ର, ଅଧ୍ୟାପକ କୁଳମଣି ମହାପାତ୍ର ପ୍ରଭୃତି ମଧ୍ୟ ଏଥିରେ ଯଥେଷ୍ଟ ଆଗ୍ରହର ସହିତ ସାହାଯ୍ୟ କରୁଥିଲେ ।

ପ୍ରାଦେଶିକ ଶିବିର ପରେ ଜିଲ୍ଲାସ୍ତରରେ ତିନି ବା ଚାରିଦିନିଆ ଶିବିର ଓ ପୁଣି ବ୍ଲକ ସ୍ତରରେ ଦୁଇ ବା ତିନିଦିନିଆ ଶିବିର ମଧ୍ୟ କରିବାର ଯୋଜନା ଥିଲା । ପ୍ରାଦେଶିକ ଶିବିରରେ ଶିକ୍ଷିତ କର୍ମୀମାନେ, ଏସବୁ ଶିବିର କରୁଥିଲେ । ଏମିତି ଭାବରେ ଗୋଟାଏ ଗୋଟାଏ ବର୍ଷରେ

ପାଞ୍ଚ ଶହରୁ ହଜାରେ ଯାଏ କର୍ମୀଙ୍କୁ କିଛି ନା କିଛି ତାଲିମ ମିଳୁଥିଲା । ଏହାଦ୍ୱାରା ଓଡ଼ିଶାର ସାଧାରଣ କର୍ମୀଙ୍କର ଜ୍ଞାନ ଓ ବିବେଚନାର ସ୍ତର ଅନ୍ୟ ଅନେକ ପ୍ରଦେଶର ସେହି ସ୍ତରର କର୍ମୀଙ୍କ ଅପେକ୍ଷା ଯଥେଷ୍ଟ ବେଶୀ ବଢ଼ିଥିଲା ବୋଲି ମୋର ଧାରଣା । ଏହାଛଡ଼ା ଏ ସବୁ ଶିବିରରେ ଭବିଷ୍ୟତ କାମର ଯୋଜନା ଆଲୋଚନା କରାଯାଇ ସ୍ଥିର କରାଯାଉ ଥିଲା ଓ କାମରେ ମଧ୍ୟ ପ୍ରଗତି ଭଲ ହେଉଥିଲା ।

## ଡାକୁ ସମସ୍ୟା ଓ ବିଘାକଠା

ବିନୋବା ମହାରାଷ୍ଟ୍ରରୁ ଗୁଜରାଟ, ମଧ୍ୟପ୍ରଦେଶ, ରାଜସ୍ଥାନ ଓ ପଞ୍ଜାବ ବାଟେ ଉତ୍ତରଆଡ଼କୁ ଗତି କରି କାଶ୍ମୀରରେ ପହଞ୍ଚିଲେ ଓ ତେଣୁ ଫେରି ଆସାମଆଡ଼କୁ ମୁହାଁଇଲେ । ଆସାମରେ ୧୯୬୦ରେ ବଙ୍ଗାଳୀ ବିରୋଧୀ ଗଣ୍ଡଗୋଳ ଖୁବ୍ ବଡ଼ ଆକାରରେ ହେଉଥିଲା । ବିନୋବାଙ୍କୁ ପଣ୍ଡିତ ନେହେରୁ ଅନୁରୋଧ କରିଥିଲେ ଆସାମ ଯାଇ ସେଠି ଶାନ୍ତିର ଆବହାଓ୍ୱା ସୃଷ୍ଟି କରିବାକୁ । ଆସାମରେ ଦାଦା, ଖୁଡ଼ୀ ଓ ମାସୀ ମଧ୍ୟ ଯାଇ ଅନେକ ଦିନଯାଏ ସଦ୍‌ଭାବ ସ୍ଥାପନ କାମ କରିଥିଲେ ।

ଇତି ମଧ୍ୟରେ ବିନୋବା ଚମ୍ବଲ ଉପତ୍ୟକା ଅଞ୍ଚଳରେ ଶହ ଶହ ବର୍ଷ ଧରି ଚଳିଆସିଥିବା ଡକେଇତ ସମସ୍ୟାର ସମାଧାନର ଉଦ୍ୟମ କରି ବାଉଶଜଣ ନାମଜାଦା ଡାକୁଙ୍କର ଆତ୍ମସମର୍ପଣ ହାସଲ କରିବାକୁ ସମର୍ଥ ହେଇଥିଲେ । ଆସାମ ଯିବା ବାଟରେ ସେ ୧୯୬୧ ରେ ବିହାରର 'ବିଘାକଠା' ଆନ୍ଦୋଳନର ଡାକରା ଦେଲେ । ଏପର୍ଯ୍ୟନ୍ତ ତ ଭୂଦାନରେ ଜମିର ଛଅକ ଭାଗ ମଗାଯାଉ ଥିଲା । ଏବେ ସେ କହିଲେ ଯେ, ପ୍ରତ୍ୟେକେ ଜମିର କୋଡ଼ିଏକ ଭାଗ ବର୍ତ୍ତମାନ ଦିଅନ୍ତୁ, କିନ୍ତୁ ଗାଁର ସବୁ ଜମି ମାଲିକ ଏକା ସାଙ୍ଗରେ ଦିଅନ୍ତୁ । ଏହାଦ୍ୱାରା ଜମି କମ୍ ମିଳିବ, କିନ୍ତୁ ଗାଁରେ ଏକ ସାମୂହିକ ସଦ୍‌ଭାବ ଉତ୍ପନ୍ନ ହେବ । ଏ ବିଘାକଠା ଆନ୍ଦୋଳନରେ କମା କରିବା ପାଇଁ ବିଭିନ୍ନ ପ୍ରଦେଶରୁ କର୍ମୀମାନେ ବିହାର ଯାଇଥିଲେ । ସୁମିତ୍ରା ଓ ମୁଁ ମଧ୍ୟ ଯାଇ ସାନ୍ତାଳ ପରଗଣା ଜିଲ୍ଲାରେ ଦୁଇସପ୍ତାହ କାମ କରିଥିଲୁ । ଆମେ ରାଜମହଲର ପାଖଆଖ ଅଞ୍ଚଳରେ ଗାଁମାନଙ୍କରେ ବୁଲିଥିଲୁ । ପ୍ରତ୍ୟେକ ଗାଁରେ ଉତ୍‌ସାହୀ ଲୋକ ମିଳିଥିଲେ ଓ ଭୂଦାନ ପ୍ରତି ଯଥେଷ୍ଟ ସମର୍ଥନ ଥିବାର ଦେଖାଯାଇଥିଲା । ସାନ୍ତାଳ ପରଗଣାର ପୁରୁଖା କର୍ମୀ ଶ୍ରୀ ମୋତିଲାଲ କେଜରୀୱାଲ ଆମ ସାଙ୍ଗରେ ୧୦୩୨ ରେ ହଜାରୀବାଗ ଜେଲ୍‌ରେ ଥିଲେ । ସେତିକିବେଳୁ ତାଙ୍କର ଆମ ପରିବାର ପ୍ରତି ଗଭୀର ସ୍ନେହଭାବ ଥିଲା । ପରେ ସେ ବସନ୍ତ ରୋଗରେ ସମ୍ପୂର୍ଣ୍ଣ ଅନ୍ଧ ହୋଇଯାଇଥିଲେ । ଆମେ ସାନ୍ତାଳ ପରଗଣାରେ କାମ କରିବାକୁ ଯିବାଦ୍ୱାରା ସେ ଅତ୍ୟନ୍ତ ଆନନ୍ଦିତ ହେଇଥିଲେ ଓ ତାଙ୍କର ସହକର୍ମୀମାନଙ୍କ ଦ୍ୱାରା ଆମର କାର୍ଯ୍ୟକ୍ରମ ଓ ସୁଖସ୍ୱାଚ୍ଛନ୍ଦ୍ୟର ସବୁ ବ୍ୟବସ୍ଥା କରାଇଥିଲେ ।

ସେତେବେଳେ ୧୯୬୨ ର ଖରାଦିନ । ସାନ୍ତାଳ ପରଗଣା ଓ ତା'ର ନଣ୍ଡ ସେପାରି ପଶ୍ଚିମବଙ୍ଗର ମାଳଦା ଜିଲ୍ଲା ଆମ୍ବ ପାଇଁ ପ୍ରସିଦ୍ଧ । ସେ ବର୍ଷ ଆମ୍ବ ଫସଲ ଅତି ଭଲ ହୋଇଥାଏ । ଟଙ୍କାକୁ ପାଞ୍ଚସେର ଉତ୍କୃଷ୍ଟ ଲ୍ୟାଙ୍ଗଡ଼ା ଆମ୍ବ ମିଳୁଥାଏ । ମୁଁ ସେଠି ଠିକ୍ କଲି ଯେ, ଏ ଅବସ୍ଥାରେ ଭାତ, ରୁଟି, ଡାଲି, ତରକାରୀ ଆଦି ରାନ୍ଧିକରି ଖାଇବା ହେଙ୍ଗାମା କରିବା କି ଦରକାର ? ଆମ୍ବ ହିଁ ଖିଆଯାଉ । ଆମର ଆତିଥ୍ୟ କରୁଥିବା କର୍ମୀ ଓ ଗୃହସ୍ଥମାନଙ୍କୁ ଏଇଟା ଅଡୁଆ ଲାଗୁଥିଲା । ସେମାନେ ଭାବୁଥିଲେ ଯେ, ରନ୍ଧାରନ୍ଧିର ଆୟୋଜନ ନକରି ଆମ୍ବଗୁଡ଼ିଏ ଧରିଦେଲେ କ'ଣ ପ୍ରକୃତ ଅତିଥି ସତ୍କାର ହେବ ?

୧୯୬୨ ର ନିର୍ବାଚନରେ ଜୟପ୍ରକାଶଜୀ କୃଷ୍ଣ ମେନନ୍ଙ୍କର ଲୋକସଭା ପ୍ରାର୍ଥୀତ୍ୱର ବିରୋଧ କରି ତାଙ୍କ ବିରୋଧୀଙ୍କୁ ଭୋଟ ଦେବାପାଇଁ ନିବେଦନ କରିଥିଲେ । ଏଇଟା ରାଜନୀତିରେ ସର୍ବୋଦୟର ଦଳ ନିରପେକ୍ଷ ନୀତି ଦୃଷ୍ଟିରୁ ମତେ ଭଲ ଲାଗି ନଥିଲା । ସେତେବେଳେ ମୁଁ ତାଙ୍କୁ ଏ ବିଷୟରେ ମୋର ନମ୍ର ମତବିରୋଧ ଜଣେଇ ଖଣ୍ଡେ ଚିଠି ଲେଖିଲି । ଶ୍ରୀବତ୍ସ ନାୟକ ସେତେବେଳେ ବ୍ରହ୍ମପୁରରେ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର କର୍ମୀ ଥା'ନ୍ତି । ସେ କମ୍ୟୁନିଷ୍ଟ ପ୍ରଭାବାପନ୍ନ ଥିଲେ । ସେ ମତେ ଜୟପ୍ରକାଶଜୀଙ୍କର ଏଇ କାର୍ଯ୍ୟ ବିଷୟରେ ଆପଣା ଅସନ୍ତୋଷ ପ୍ରକାଶ କରି ଖଣ୍ଡେ ଚିଠି ଲେଖିଥିଲେ । ସେ ଚିଠିର ନକଲ ବି ଜୟପ୍ରକାଶଙ୍କୁ ପଠେଇ ଦେଇଥିଲି ଓ ସର୍ବୋଦୟ କର୍ମୀମାନଙ୍କର ପ୍ରତିକ୍ରିୟାର ତାହା ଏକ ନମୁନା ବୋଲି ଉଲ୍ଲେଖ କରିଥିଲି ।

ଜୟପ୍ରକାଶଜୀ ସମ୍ଭବତଃ ବେଶ୍ କଟୁଭାଷାରେ ଲେଖା ଯାଇଥିବା ଶ୍ରୀବତ୍ସ ନାୟକଙ୍କର ଚିଠିକୁ ହିଁ ମୋ ଚିଠି ବୋଲି ଭାବିଲେ କି କ'ଣ ଏ ସାନ୍ତାଳ ପରଗଣାର କାର୍ଯ୍ୟକ୍ରମର ଅଳ୍ପଦିନ ପରେ ଯେତେବେଳେ ପାଟନାରେ ସର୍ବ ସେବା ସଂଘର ପ୍ରବନ୍ଧ ସମିତିର ବୈଠକ ହେଲା ସେ ବହୁତ କ୍ଷୁଣ୍ଣ ହୋଇ କହିଲେ, "ମନମୋହନ ମତେ ଏପରି ଚିଠି ଲେଖିବ ବୋଲି ଆଶା କରି ନଥିଲି । ତା'ର ମୋର ପ୍ରତି ସ୍ନେହ ଅଛି ବୋଲି ବିଚାରିଥିଲି ।" ମତେ ବଡ଼ ଧକ୍କା ଲାଗିଲା । ଯାହାହେଉ ନାରାୟଣ ବି ସେ ଚିଠି ଲେଖିଥିଲା । ସେ ଜୟପ୍ରକାଶଙ୍କୁ ବୁଝେଇଲା ଯେ ମନମୋହନ ଚିଠିରେ ତ କୌଣସି କଟୁ କଥା ନାହିଁ । ତା'ପରେ ସେ ବୋଧହୁଏ ଚିଠିଟା ପୁଣି ପଢ଼ିଲେ ଓ ତାଙ୍କର ସେ କ୍ଷୁଣ୍ଣଭାବ କଟିଗଲା ।

୧୯୫୩-୫୪ଭୂଦାନ, ୧୯୬୧ ର ବିଘାକଠା, ୧୯୬୫ରେ ଆରମ୍ଭ ହୋଇଥିବା ଗ୍ରାମଦାନ ତୋଫାନ ଓ ତା' ପରେ ରାଜ୍ୟଦାନ ଉଦ୍ୟମରେ ପ୍ରକୃତରେ ବିହାରର ଅନ୍ଦିସନ୍ଧିରେ ଚହଲ ପଡ଼ିଯାଇଥିଲା ଓ ଏକ ବ୍ୟାପକ ଜନଆନ୍ଦୋଳନର ପାଗଯୋଗ ପ୍ରସ୍ତୁତ ହୋଇ ଆସିଥିଲା । ଅଥଚ ସେଭଳି ଏକ ଜନଆନ୍ଦୋଳନ କାହିଁକି ଦାନା ନ ବାନ୍ଧିଲା ତାହା ଏକ ଗୁରୁତର ଅନୁସନ୍ଧାନର ବିଷୟ । ସେ ବିଷୟରେ ପରେ ଅଧିକ ଆଲୋଚନା କରିବି ।

# ସର୍ବ ସେବା ସଂଘର ଦାୟିତ୍ୱ

ଆସାମରେ ବହୁତ ଦିନ କଟାଇ ବିନୋବା ପନ୍ଦରଦିନ ପାଇଁ ସେତେବେଳର ପୂର୍ବ ପାକିସ୍ତାନରେ ପ୍ରବେଶ କଲେ । ବିନୋବା ପୂର୍ବ ପାକିସ୍ତାନରେ ପ୍ରବେଶ କରିବା ସମୟରେ ହିଁ ତାମିଲନାଡୁର ମଦୁରେଇ ନିକଟରେ ସର୍ବ ସେବା ସଂଘର ଏକ ବୈଠକ ଚାଲିଥିଲା । ସେଠି ହଠାତ୍ ଖିଆଲ୍ ହେଲା ଯେ, ବିନୋବାଙ୍କ ସାଙ୍ଗରେ ସଂଘ ପକ୍ଷରୁ କେହି ନାହାନ୍ତି, କେହି ଜଣେ ରହିବା ଚାହିଁ । ମତେ ସେଥିପାଇଁ ବଛା ହେଲା ଓ ସେଠୁ ସାରାରାତି ଉଡ଼ାଜାହାଜ ଯୋଗେ କଲିକତା ରମାନା କରିଦିଆହେଲା ।

କଲିକତାରେ ମୁଁ ପ୍ରଫୁଲ୍ଲ ସେନ୍‌ଙ୍କର ସହାୟତାରେ ପାସ୍‌ପୋର୍ଟ ଦି' ଦିନରେ ପାଇଗଲି, ମାତ୍ର ଭରସା ଦେବାକୁ ପାକିସ୍ତାନୀ କନ୍‌ସଲେଟ୍ ଟାଳଟୁଳ କଲେ । ଜଣେ ବଙ୍ଗଳାର ଅଫିସର ମତେ ଭେଟି ଖୁବ୍ ମିଠାମିଠା କଥା କହୁଥା'ନ୍ତି, ମାତ୍ର ଆଜିକାଲି କରି ଟାଳୁଥା'ନ୍ତି । ଶେଷକୁ ଭିସା ମିଳିବାର ଆଶା ନାହିଁ ବୋଲି ଜାଣି ମୋର ପୂର୍ବ ପାକିସ୍ତାନ ଯିବା ଉଦ୍ୟମ ଛାଡ଼ିଦିଆହେଲା । ପୂର୍ବ ପାକିସ୍ତାନରୁ ଫେରି ବିନୋବା ପଶ୍ଚିମବଙ୍ଗକୁ ଆସିଲେ । ଏହି ସମୟରେ ଉତ୍ତରପୂର୍ବ ସୀମାନ୍ତରେ ଚୀନ୍ ସହିତ ସଂଘର୍ଷ ଲାଗିଲା ଓ ବିନୋବା ସୁଲଭ ଗ୍ରାମଦାନର ଡାକରା ଦେଲେ ଓ ଗ୍ରାମଦାନକୁ "ଦେଶରକ୍ଷା ବ୍ୟବସ୍ଥା" - ଡିଫେନ୍‌ସ୍ ମେଜର୍ ବୋଲି ବଖାଣିଲେ । ଏଇ ୧୯୬୨ ନଭେମ୍ବରରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ଗୁଜରାଟର ୱେଡ଼ଛି ଠାରେ ହେବାର ଥାଏ । ଦାଦା ୧୯୬୧ ରୁ ସର୍ବ ସେବା ସଂଘର ଅଧ୍ୟକ୍ଷ ଥିଲା । ଏଥର ପୁଣି ଅଧ୍ୟକ୍ଷ ନିର୍ବାଚନ ହେବାର କଥା । ଉତ୍ତରବଙ୍ଗର କୌଣସି ଏକ ଗାଁରେ ବିନୋବାଙ୍କ ନିକଟରେ ସଂଘର ପ୍ରବନ୍ଧ ସମିତି ବୈଠକ ବସିଥିଲା । ସେଠି ଅଣଆନୁଷ୍ଠାନିକ ଭାବରେ ଏକଥା ଉଠିଲା । ଦାଦା ଆଗକୁ ଅଧ୍ୟକ୍ଷ ରହିବାକୁ ଅସ୍ୱୀକାର କଲା । କେହି ଜଣେ ମୋ ନାଁ ପ୍ରସ୍ତାବ କଲେ । ମୁଁ ନିଜର ଆପତ୍ତି କରିବାକୁ ସୁଯୋଗ ନ ପାଉଣୁ ଜୟପ୍ରକାଶଜୀ ଓ ବିନୋବା ସେ ପ୍ରସ୍ତାବକୁ ସମର୍ଥନ କଲେ ଓ ମୋର ନାମ ଅଧ୍ୟକ୍ଷ ପଦପାଇଁ ପ୍ରସ୍ତାବ କରାଯିବ ବୋଲି ସ୍ଥିର ହେଲା ।

ସର୍ବ ସେବା ସଂଘ ଅଧିବେଶନରେ ୱେଡ଼୍‌ଛୀଠାରେ ମୋର ନିର୍ବାଚନ କିନ୍ତୁ ମୋର ଅନୁପସ୍ଥିତିରେ ହେଲା । ୱେଡ଼୍‌ଛୀ ଯିବା ବାଟରେ ଠାକୁରଦାସ ବଙ୍ଗଙ୍କ ଅନୁରୋଧ କ୍ରମେ ମୁଁ ତାଙ୍କ ସାଙ୍ଗରେ ତାଙ୍କର ଶ୍ୱଶୁରଘର ଗାଁ ଏରଂଡୋଲ୍‌ରେ ଓହ୍ଲେଇଲି । ସେଠି ଜ୍ୱାଇଁ କୁଣିଆ ଆଦର ତ ଯଥାଯୋଗ୍ୟ ପରିମାଣରେ ମିଳିଲା, ରାତିରେ ଏକ ସାଧାରଣ ସଭାର ଆୟୋଜନ ବି ହେଲା । ରାତି ବୋଲନ୍ତେ ମୁଁ ବିଚାରିଥାଏ ଯେ ସନ୍ଧ୍ୟା ସାତଟା ଖଣ୍ଡେ ବେଳକୁ ସଭା ଆରମ୍ଭ ହେବ । ମାତ୍ର ସଭାକୁ ଯିବାକୁ ପ୍ରସ୍ତୁତ ହେବାପାଇଁ କାହାରି କୌଣସି ତର ନଥିବାର ଦେଖି ମୁଁ ପଚାରି ବୁଝିଲି ଯେ, ସଭା ରାତି ଏଗାରଟାରେ ଆରମ୍ଭ ହେବ । ଏଇ ଏଠିକା ସଭା ସମୟ । ଆମେସବୁ ଖାଇସାରି ଧୀରେ ସୁସ୍ଥେ ସଭାକୁ ଗଲୁ । ଲୋକେ ବି ଖାଇପିଇ, ଗାଈଗୋରୁ କାମସାରି

ଧୀରେ ସୁସ୍ଥେ ଆସିଲେ । ରାତି ଗୋଟାଏ ଖଣ୍ଡେ ଯାଏ ସଭା ଚାଲିଲା । ଭୋର ଚାରିଟାରେ ଗାଡ଼ି । ଷ୍ଟେସନ ଛ' ନା ସାତ ମାଇଲ ବାଟ । ରାତି ଗୋଟାଏରେ ଶୋଇ ପୁଣି ନିଦ ଭାଙ୍ଗିଲା ବେଳକୁ ଗାଡ଼ି ବେଳ ଗଡ଼ିଗଲାଣି । ତା'ପରେ ଗାଡ଼ିରେ ଯାଇ ଉପରଓଳି ୱେର୍ଡ୍‌ଛା ପହଞ୍ଚିଲୁ । ସେତେବେଳକୁ ଅଧ୍ୟକ୍ଷ ନିର୍ବାଚନ ସରିଗଲାଣି ।

## ଚୀନ-ଭାରତ ସଂଘର୍ଷ

ସେଥର ସମ୍ମିଳନୀରେ ପ୍ରଧାନ ଆଲୋଚ୍ୟ ବିଷୟ ଥାଏ ଚୀନ-ଭାରତ ସଂଘର୍ଷ ପ୍ରତି ସର୍ବୋଦୟର ନୀତି । ଏ ବିଷୟରେ ଦୁଇ ବା ତିନି ପ୍ରକାରର ମତ ଥାଏ । ଗୋଟାଏ ମତ ଥାଏ ପୂରା ରାଷ୍ଟ୍ରବାଦୀ । ଦେଶରକ୍ଷାରେ ଅହିଂସାର ପ୍ରଶ୍ନ ନାହିଁ । ଯୁଦ୍ଧ ଉଦ୍ୟମକୁ ପୂରାପୂରି ସମର୍ଥନ ଓ ସାହାଯ୍ୟ କରିବା ଉଚିତ । ଏ ବାବଦରେ କାକା ସାହେବଙ୍କର ଉକ୍ତିକୁ କେହି କେହି ଉଦ୍ଧୃତ କରିଥିଲେ । ସେ କୁଆଡ଼େ କହିଥାନ୍ତି ଯେ, ମୁଁ ନିଜେ ବନ୍ଧୁକ ଚଳାଇବି ନାହିଁ । କିନ୍ତୁ ଜଓ୍ୱାନମାନଙ୍କୁ ଗୁଳିଗୋଳା ଯୋଗାଇଦେବି, ଏପରିକି ବନ୍ଧୁକରେ ଗୁଳି ଭରିଦେବି । ଆଉ ଗୋଟାଏ ଦୃଷ୍ଟି ଥାଏ ପୂରା ଶାନ୍ତିବାଦୀ । ହିଂସା ଯୁଦ୍ଧ ମାତ୍ରେ ହିଁ ବର୍ଜନୀୟ ତାହା ସହିତ ପୂରା ଅସହଯୋଗ କରିବା ଚାହି । ସେଥିରେ କାହା ପକ୍ଷରେ କେତେ ନ୍ୟାୟ ଅଛି ତାହା ବାଛି ବସିବାର ବି କିଛି ଆବଶ୍ୟକତା ନାହିଁ । ତୃତୀୟ ବିଚାର ଥାଏ ଯେ, ଦେଶ ଉପରେ ଅନ୍ୟାୟ ଭାବରେ ଆକ୍ରମଣ ହେଉଥିବା ଫଳରେ ଦେଶର ସରକାର ଓ ଲୋକେ ତାଙ୍କୁ ଯେଉଁ ଉପାୟ ଜଣାଅଛି ସେହି ଉପାୟରେ ପ୍ରତିରୋଧ କରୁଛନ୍ତି । ତେଣୁ ସେମାନଙ୍କର ଉଦ୍ୟମ ପ୍ରତି ଆମର ସହାନୁଭୂତି ରହିବା ଉଚିତ, କିନ୍ତୁ ଆମେ ଯୁଦ୍ଧର ହିଂସାତ୍ମକ ଉଦ୍ୟମରୁ ଅଲଗା ରହି ଅହିଂସ ପ୍ରତିରୋଧର ଶକ୍ତି ବିକଶିତ କରିବା ପାଇଁ ଉଦ୍ୟମ କରିବା ଉଚିତ ।

ମୋର ନିଜର ବିଚାର ଏଥିପୂର୍ବରୁ ଦ୍ୱିତୀୟ ପ୍ରକାରର ହିଁ ଥିଲା । ଏହାର ବର୍ଷେ ଦୁଇବର୍ଷ ପୂର୍ବରୁ କାଶ୍ମୀର ସମସ୍ୟା ନେଇ ଭାରତ ଉପରେ ପାକିସ୍ତାନର ଆକ୍ରମଣ ହେବ ବୋଲି ଆଶଙ୍କା ପ୍ରକାଶ ପାଇଥିଲା । ସେତେବେଳେ ଶଙ୍କରରାଓଜୀ ଓ ଜୟପ୍ରକାଶଜୀ ମିଶି ଗୋଟିଏ ବିବୃତି ଦେଇଥିଲେ ଯେ, ସରକାର ଦେଶରକ୍ଷା ପାଇଁ ଜାଗତିଆର ରହିବା ଉଚିତ ଓ ଯୁଦ୍ଧ ଲାଗିଥିଲେ ସର୍ବୋଦୟ ଗୋଷ୍ଠୀର ନୈତିକ ସମର୍ଥନ ସରକାରଙ୍କୁ ମିଳିବ । ପରେ ଏହି ବିବୃତି ନେଇ ପ୍ରବନ୍ଧ ସମିତିରେ ଆଲୋଚନା ହେଲା ଓ ସମିତି ପକ୍ଷରୁ ତାକୁ ସମର୍ଥନ କରିବା କଥା ଉଠିଲା । ସେତେବେଳେ ମୁଁ ତା'ର ପୂରା ବିରୋଧ କରିଥିଲି । ଅନ୍ୟ କେତେକ ବି କରିଥିଲେ । ଆମର ଭୂମିକା ଥିଲା ଯେ ଯୁଦ୍ଧ ଏକ ଅବିମିଶ୍ର ଅନୈତିକତା, ସେଥିପାଇଁ କୌଣସି ଅବସ୍ଥାରେ ତାକୁ ସମର୍ଥନ କରିବା ଉଚିତ ନୁହେଁ । ଆମେ ଅହିଂସ ପ୍ରତିରୋଧରେ ବିଶ୍ୱାସ କରୁ । ଆମେ ଲୋକଙ୍କୁ ସେ କଥା ବୁଝାଇବା ଚେଷ୍ଟା କରୁଛୁ । ସେମାନେ ଯଦି ଅହିଂସାର ପନ୍ଥା ଗ୍ରହଣ ନ କରି ଅନ୍ୟବାଟରେ ଚାଲିଛନ୍ତି ତେବେ ସେମାନଙ୍କ ସମସ୍ୟା ବିଷୟରେ ଆମେ ମୁଣ୍ଡ ଘୂରାଇବା କାହିଁକି ?

ଆମେ  ଆମ ବାଟରେ ଚାଲିବା । ଦେଶରକ୍ଷାର ଦାୟିତ୍ୱ ଆମ ମୁଣ୍ଡରେ ଅଛି ବୋଲି ଆମେ ଭାବିବା କାହିଁକି  ?

ସେତେବେଳେ ଆମମାନଙ୍କର ବିରୋଧ ଯୋଗୁଁ ସେ ବିବୃତିର ସମର୍ଥନରେ ପ୍ରସ୍ତାବ କରାଯାଇ ନଥିଲା । ମାତ୍ର ୱେଡ଼ଛୀ ସମ୍ମିଳନୀ ବେଳକୁ ମୁଁ ଅନୁଭବ କରୁଥିଲି ଯେ, ଦେଶବାସୀଙ୍କୁ ନେଇ ଆମର କାରବାର ସେମାନଙ୍କୁ ଆମେ ଅହିଂସା ବାଟରେ ନେବାକୁ ଚାହୁଁ । ସେମାନେ ଯେଉଁ ସମସ୍ୟାର ସମ୍ମୁଖୀନ ହେଉଛନ୍ତି ତା'ର ଗୁରୁତ୍ୱ ଯଦି ଆମେ ଉପଲବ୍ଧି ନ କରିବା ଓ ସେମାନଙ୍କର ଭାବନାର ମୂଲ୍ୟ ନବୁଝିବା ତେବେ ସେମାନଙ୍କର ମନ ଆମେ ପାଇବା କିପରି  ? ଏ କ୍ଷେତ୍ରରେ ଲୋକଙ୍କର ଭାବନା ନ୍ୟାର୍ଯ୍ୟ  । ଚୀନ୍ ଅନ୍ୟାୟ ଭାବରେ ଆକ୍ରମଣ କରିଛି ଓ ତାକୁ ରୋକିବା ପାଇଁ ସାରା ଦେଶର ଲୋକଙ୍କ ମନରେ ଯେଉଁ ସଙ୍କଳ୍ପ ଜାଗିଛି ସେଇଟା ଯଥାର୍ଥ । ତେଣୁ ପନ୍ଥା ବିଷୟରେ ନିଜର ମତରେ ଅଟଳ ରହି ମଧ୍ୟ ସେମାନଙ୍କର ଭାବନାକୁ ସ୍ୱାଗତ କରିବା ଉଚିତ ।

ଏଥିପୂର୍ବରୁ ବିନୋବା ଗ୍ରାମଦାନକୁ ଦେଶରକ୍ଷା ବ୍ୟବସ୍ଥା ( ଡିଫେନ୍‌ସ ମେଜର) ବୋଲି ଅଭିହିତ କରୁଥିବା କଥା ପୂର୍ବରୁ  ଉଲ୍ଲେଖ କରିଛି । ସେ କହୁଥା'ନ୍ତି ଯେ, ହିଂସା ବା ଅହିଂସା ଯେଉଁ ଉପାୟରେ ଡେମେ ଆକ୍ରମଣର ପ୍ରତିରୋଧ କରିବାକୁ ଚାହିଁଲେ ବି ଗାଁଗୁଡ଼ିକୁ ମଜବୁତ ଓ ସ୍ୱାଶ୍ରୟୀ କରି ଗଢ଼ିତୋଳିବାକୁ ହେବ । ଏଇଥିଲା ତାଙ୍କର ବିଚାର । ଏଇ ରୂପେ ଗ୍ରାମଦାନର କାର୍ଯ୍ୟକ୍ରମକୁ ସେ ଯୁଦ୍ଧ ପରିସ୍ଥିତିରେ ଏକ ଗୁରୁତ୍ୱପୂର୍ଣ୍ଣ ଓ ଜରୁରୀ କାର୍ଯ୍ୟକ୍ରମ ରୂପେ ଥୋଇଥା'ନ୍ତି । ଏ ବିଚାରରେ  ବହୁତ ବଳ ଥିଲା ।

ୱେଡ଼ଛୀରେ ସର୍ବୋଦୟ ଆନ୍ଦୋଳନର ଆଭିମୁଖ୍ୟ ଉପରେ ଘମାଘୋଟ ଆଲୋଚନା ହେଲା । କୌଣସି ବିଷୟରେ ଏଭଳି ତୀବ୍ର ମତଭେଦ ଓ ସରଗରମ ଆଲୋଚନା ସର୍ବ ସେବା ସଂଘର ଜୀବନରେ ଏଇ ପ୍ରଥମ  । ଦୁଇଟି ଚରମବାଦୀ ମତକୁ ଏକାଠି କରିବା ସହଜ କାମ ନଥାଏ । ମୁଁ ଉପରେ ବର୍ଣ୍ଣିତ ତୃତୀୟ ପନ୍ଥାକୁ ମୋର ବକ୍ତୃତାରେ ସୁପାରିଶ କରିଥିଲି ଓ ଚରମ ମତବାଦ ଦୁଇଟିର ବିଶ୍ଳେଷଣ କରି ବୁଝାଇବା ଚେଷ୍ଟା କରିଥିଲି ଯେ, ହିଂସାତ୍ମକ ଯୁଦ୍ଧ ଏକମାତ୍ର ବ୍ୟାବହାରିକ ପନ୍ଥା ପରି ଦେଖାଯାଉଥିଲେ ମଧ୍ୟ ଆମେ ସମସ୍ତେ ତ ଜାଣୁ ଯେ ଯୁଦ୍ଧ ଦୁନିଆକୁ କେଉଁ ସଙ୍କଟରେ ନେଇ ପହଞ୍ଚେଇଲାଣି । ତେଣୁ ତାହା ଆଗକୁ ଯଦି ଆମେ ନ ଭାବିବା, ତେବେ ଆମେ କେଉଁଠି ହେଲେ ପହଞ୍ଚି ପାରିବା  ନାହିଁ । ପୁଣି ଲୋକଙ୍କର ସଂକଟ ଓ ଭାବନା ପ୍ରତି ଉଦାସୀନ ରହି କେବଳ ନିଜର ନୀତି ଅନୁସାରେ ନିଜକୁ ଶୁଦ୍ଧ ରଖିବାରେ ସନ୍ତୁଷ୍ଟ ରହିଲେ ଆମେ ଲୋକଙ୍କୁ  ଅହିଂସା ବାଟକୁ ଆଣିପାରିବା ନାହିଁ । ଯାହାହେଉ,ଶେଷ ପର୍ଯ୍ୟନ୍ତ ତୃତୀୟ ପନ୍ଥା ଅନୁରୂପ ପ୍ରସ୍ତାବ ଗୃହୀତ ହେଲା । ସେଥିରେ ଦେଶରକ୍ଷାର ଆକାଂକ୍ଷା ଓ ସେଥିପାଇଁ କରାଯାଉଥିବା ତ୍ୟାଗର ପ୍ରଶଂସା କରିବା ସାଙ୍ଗେ ସାଙ୍ଗେ ଅହିଂସା ପ୍ରତିରୋଧ ପାଇଁ ପ୍ରସ୍ତୁତି ଓ ଦେଶରକ୍ଷାର ପନ୍ଥା ରୂପେ ଗ୍ରାମଦାନର ଆବଶ୍ୟକତା ଉପରେ ଜୋର୍ ଦିଆଗଲା ।

ଯୁଦ୍ଧ ବିଷୟରେ ଆଉ ଦୁଇଟି ବିଚାର ମଧ୍ୟ ଥିଲା । ଯହିଁରୁ ଗୋଟିଏ ସେଠି ଆଲୋଚନାରେ ପ୍ରକାଶ ପାଇଥିଲା ଓ ପରେ ତାହାକୁ ନେଇ ବେଶ୍ ଘାଣ୍ଟ ଚକଟ ମଧ୍ୟ ଚାଲିଥିଲା । ସେ ବିଚାରଟା ହେଲା ଯେ ଅହିଂସାବାଦୀ ଶାନ୍ତିସେନା ମଧ୍ୟ ଆକ୍ରମଣର ଅହିଂସ ପ୍ରତିରୋଧ ପାଇଁ ଯୁଦ୍ଧ ସାମ୍ମୁଖ୍ୟକୁ ଯିବା ଚାହି । ବସନ୍ତରାଓ ନାର୍‌ଗୋଳକର୍ ପ୍ରଭୃତି କେତେଜଣ ଏ ମତ ପୋଷଣ କରୁଥିଲେ ଓ ଜୟପ୍ରକାଶଜୀ ମଧ୍ୟ ତାକୁ ଗୁରୁତ୍ୱ ଦେଇ ସେ ଦିଗରେ ବ୍ୟାବହାରିକ ପଦକ୍ଷେପ କଥା ଚିନ୍ତା କରିବା ଆରମ୍ଭ କରିଥିଲେ । ମତେ କିନ୍ତୁ ଏ ମତଟା ଅବାସ୍ତବ ଜଣାପଡୁଥିଲା । ଦେଶ ଭିତରେ ଆର୍ଥିକ, ରାଜନୀତିକ ବା ସାମାଜିକ ଅନ୍ୟାୟର ପ୍ରତିରୋଧ ଓ ଦେଶ ବାହାରୁ ଆକ୍ରମଣର ପ୍ରତିରୋଧ ଦୁଇଟା ଅଲଗା ପ୍ରକାର କଥା । ବାହାର ଆକ୍ରମଣର ଅହିଂସ ପ୍ରତିରୋଧ ପାଇଁ ଦେଶର ଜନମତ ବହୁଳ ଭାବରେ ତାହାର ଅନୁକୂଳ ହେବା ଚାହି, ଦେଶର ସାମାଜିକ ଓ ଆର୍ଥିକ ସଂଗଠନ ମଧ୍ୟ ଅନୁକୂଳ ହେବା ଚାହି, ସମାଜ ଓ ଅର୍ଥନୀତିରେ ଚେର ନଥିବା ସଂଗଠନ ଏପରି ପ୍ରତିରୋଧ କିପରି ସଫଳ ଭାବରେ କରିପାରିବ ? ସରକାର ସାମରିକ ବାହିନୀ ଦ୍ୱାରା ଲଢୁଥିବା ଓ ଏଣେ ଏମାନେ ଅହିଂସ ପ୍ରତିରୋଧ କରିବେ, ଏ ଦୁଇଟା ଏକାଠି କେମିତି ଚାଲିବ ?

କିନ୍ତୁ ଜୟପ୍ରକାଶଜୀ ହେରିକା ଏ ବିଷୟରେ ଖୁବ୍ ଗୁରୁତ୍ୱର ସହିତ ଚିନ୍ତା କରୁଥା'ନ୍ତି । ଓ୍ୱେଡ଼୍‌ଛୀ ସମ୍ମିଳନୀର କେତେକ ମାସ ପରେ ପଶ୍ଚିମବଙ୍ଗର ଆରାମବାଗରେ ସର୍ବ ସେବା ସଂଘ ଅଧିବେଶନ ବସିଲା । ସେହି ସମୟରେ ଦିନେ ଜେ.ପି. ଏ ବିଷୟରେ ବିନୋବାଙ୍କ ସହିତ ଆଲୋଚନା କରିବାକୁ ଆସିଲେ । ସେଠି ମୁଁ ଓ ଆଉ ସବୁ କେତେଜଣ ମଧ୍ୟ ଥାଉ । ଇତି ମଧ୍ୟରେ ଏ ବିଷୟରେ ବିନୋବାଙ୍କ ସହିତ ଅନ୍ୟମାନଙ୍କର ଆଲୋଚନା ହେଇଥିଲା । ମୁଁ ବି ମଝିରେ ଥରେ କେତେକ ଆଲୋଚନା କରିଥିଲି । ବିନୋବା ଏ ଭଳି ପଦକ୍ଷେପକୁ ଅବ୍ୟାବହାରିକ ମନେ କରୁଥିଲେ । ତାଙ୍କର ମୁଖ୍ୟ ଯୁକ୍ତିଗୁଡ଼ିକ ମୋ ମନକୁ ପାଉଥିଲା, କିନ୍ତୁ ତାଙ୍କର କେତେଗୁଡ଼ିଏ ପ୍ରଥମେ ବୟାନ କରିବା ଆରମ୍ଭ କଲେ : ଦଶହଜାର ଫୁଟ ଉପରେ ଥିବା ସାମ୍ମୁଖ୍ୟକୁ କିପରି ଚଢ଼ିକରି ଯିବ ? ଶାନ୍ତି ସୈନିକ ବୁଢ଼ା ହେଇଥିବେ ତ କେମିତି ଯିବେ ? ସେମାନଙ୍କ ପାଇଁ ରସଦ ଯୋଗାଇବା ବ୍ୟବସ୍ଥା କିପରି ହେବ, କିଏ କରିବ ? ଇତ୍ୟାଦି । ଜେ.ପି. ସେଥିରେ ଏକଦମ୍ କ୍ଷୁବ୍‌ଧ ହେଇଗଲେ ଓ ଏକଥା କହି ଉଠି ଚାଲିଗଲେ ଯେ ଆପଣ ତ ଏ ବିଷୟରେ ଏକଦମ୍ ପୂର୍ବଗ୍ରହଗ୍ରସ୍ତ । ଏ ବିଷୟରେ ଆପଣଙ୍କ ସହିତ ଆଲୋଚନା କରି ଲାଭ କ'ଣ ? ଏଥିରେ ବିନୋବା ଅପ୍ରସ୍ତୁତ ହେଇଗଲେ । ଏହାର ଦିନେ ଦୁଇଦିନପରେ ପୁଣି ଜେ. ପି.ଙ୍କ ସହିତ ତାଙ୍କର ଆଲୋଚନା ହେଲା ଓ ଜେ.ପି. ସେଥିରୁ ସନ୍ତୁଷ୍ଟ ହେଇ ଫେରିଲେ । ସେତେବେଳେ ଅବଶ୍ୟ ଏ ବିଷୟଟା ପୂରାପୂରି ତାତ୍ତ୍ୱିକ ଦୃଷ୍ଟିରୁ ହିଁ ଆଲୋଚିତ ହେଉଥିଲା, କାରଣ ଚୀନ୍‌ର ଏକତରଫା ପ୍ରତ୍ୟାବର୍ତ୍ତନ ଯୋଗୁ ଯୁଦ୍ଧ ତ ଅଳ୍ପଦିନରେ ସରିଯାଇଥିଲା ।

ବିନୋବାଙ୍କ କୋରାପୁଟ ପଦଯାତ୍ରାବେଳେ ଦିନେ ନିରସ୍ତ୍ରୀକରଣ ଓ ଆକ୍ରମଣର ଅହିଂସ ପ୍ରତିରୋଧ ବିଷୟରେ ତାଙ୍କ ସହିତ କିଛିଟା ଆଲୋଚନା ହେଇଥିଲା । ସେତେବେଳେ ମୁଁ ମତ

ଦେଇଥିଲି ଯେ, ଦେଶର ସମାଜ ବ୍ୟବସ୍ଥା ପୂରାପୂରି ନ ବଦଳିବା ଯାଏ ଏହା ସମ୍ଭବ ନୁହେଁ । ମାତ୍ର ବିନୋବା ମତ ଦେଉଥିଲେ ଯେ ବର୍ତ୍ତମାନ ଯେଉଁ ପ୍ରକାରେ ଯାହା ଅଛି ସେହିପରି ଥାଇ ମଧ୍ୟ ତାହା ସମ୍ଭବ । ମୋ ମନକୁ ସେଇ କଥା ପାଇ ନଥିଲା, ଯଦିଓ, ସେତେବେଳେ ମୁଁ ଅଧିକ ଯୁକ୍ତି କରିନଥିଲି । ଏବେ ବି ମୋର ମତ ତାହାହିଁ ଅଛି । କାଞ୍ଚିପୁରମ୍ ସମ୍ମିଳନୀରେ (୧୯୫୬) ବିନୋବା ଭାରତ ସରକାରଙ୍କର ଅସ୍ତ୍ରସଜ୍ଜା ବୃଦ୍ଧିର, ସାମରିକ ନୀତିର ବେଶ୍ ସମାଲୋଚନା କରିଥିଲେ ଓ ତାହା ସମର୍ଥନରେ ନେତାମାନେ ଗାନ୍ଧୀଜୀଙ୍କର ମତର ଦ୍ୱାହି ଦେବାଟାର ପ୍ରତିବାଦ କରିଥିଲେ । ମାତ୍ର ତାହାପରେ ସେ ଆଉ କେବେ ନିରସ୍ତ୍ରୀକରଣର ସୁପାରିଶ କରିବାର ମୁଁ ଶୁଣିନାହିଁ ।

ଆଲୋଚନାରେ ପ୍ରକଟ ନ ହୋଇଥିବା ଅନ୍ୟ ମତଟି ଥିଲା ଦାଦାର । ଦାଦା ଭାରତ-ଚୀନ ସୀମା ବିବାଦ ସଂକ୍ରାନ୍ତ ସମୟ ଦଲିଲପତ୍ର ତନ୍ନତନ୍ନ କରି ଅଧ୍ୟୟନ କରି ଏହି ସିଦ୍ଧାନ୍ତରେ ପହଞ୍ଚିଥିଲା ଯେ, ଏ ଯୁଦ୍ଧ ଲାଗିବାରେ ଭାରତର ଦୋଷ କିଛି ଊଣା ନୁହେଁ । ଏ ବିବାଦ ଅଙ୍କକରେ ତୁଟେଇ ଦିଆଯାଇ ପାରିଥା'ନ୍ତା, ମାତ୍ର ପୁରୁଣା ଅମଲାତାନ୍ତ୍ରିକ ଢଙ୍ଗଢାଙ୍ଗର ପ୍ରଭାବରେ କଥାର ଅତି ଚାତୁରୀ, ମାରପେଁଚ, କାଳକ୍ଷେପଣ ଆଦି ଯୋଗୁଁ ଚୀନ୍‌ର ନେତାମାନଙ୍କର ଭାରତ ସରକାରଙ୍କ ସଦିଚ୍ଛା ଉପରୁ ବିଶ୍ୱାସ ତୁଟିଗଲା । ଲଦାଖ ଓ ନେଫା ଉଭୟ ସୀମାନ୍ତରେ ଚୀନ୍‌ର ଦାବିକୁ ପୂରାପୂରି ଅବାସ୍ତବ କୁହାଯାଇ ନ ପାରେ । ଇଂରେଜ ସରକାର ଏ ସବୁ ସୀମାକୁ ଆଗକୁ ଘୁଞ୍ଚେଇ ଚାଲିଥିଲେ । ୧୯୩୦ ବେଳର ମାନଚିତ୍ରରେ ଯେଉଁ ସୀମା ଦେଖାଯାଉ ଥିଲା ପରବର୍ତ୍ତୀ ସମୟରେ ୧୯୪୫ ବେଳକୁ ପ୍ରକାଶିତ ମାନଚିତ୍ରରେ ତାହା ଆହୁରି ଆଗକୁ ମାଡ଼ିଯାଇଥିବାର ଦେଖାଯାଉଛି । ଚୀନ ନେତାମାନେ ତ ଏ ଯୁକ୍ତି କରୁଥିଲେ ଯେ ଇଂରେଜ ସାମ୍ରାଜ୍ୟବାଦ ଯେଉଁସବୁ ଅଞ୍ଚଳ ଦଖଲ କରିଯାଇଥିଲା ସ୍ୱାଧୀନ ଭାରତର ସରକାର ସେ ସବୁ ବିଜିତ ଅଞ୍ଚଳକୁ ନିଜର ନ୍ୟାର୍ଯ୍ୟ ଦାବି ବୋଲି ମାନି ନେଉଛି କି ? ମୁଁ ପରେ ଏ ବିଷୟରେ ନେଭିଲ୍ ମ୍ୟାକ୍‌ସୱେଲଙ୍କର ଗବେଷଣାପୂର୍ଣ୍ଣ ଓ ସୁଲିଖିତ ବହି ପଢ଼ିଲି ଓ ସେଥିରୁ ଦାଦାର ଦୃଷ୍ଟିକୋଣର ଯଥାର୍ଥତା ଅଧିକ ଉପଲବ୍ଧି କଲି ।

ଏ'ତ ଗଲା ବିବାଦର ପୃଷ୍ଠଭୂମି । ତା'ଛଡ଼ା ଭାରତ ସରକାର ନିଜର 'ଆଗୁଆ ନୀତି' ଦ୍ୱାରା ଚୀନାମାନଙ୍କୁ ଉତ୍ତ୍ୟକ୍ତ କରି ସଂଘର୍ଷଟାକୁ ଅବଶ୍ୟମ୍ଭାବୀ କରିଦେଲା ବୋଲି ଦାଦା ସେତେବେଳେ ମତ ଦେଉଥିଲା । ସେ ଥରେ ବିନୋବାଙ୍କ ସହିତ ଏ ବିଷୟ ଆଲୋଚନା କରିବା ଚେଷ୍ଟା କରିଥିଲା, କିନ୍ତୁ ବିନୋବା ବିରକ୍ତି ଭାବରେ କହିଲେ ଯେ, ଚୀନ ହିଁ ଆକ୍ରମଣ କରିଛି ବୋଲି ପଣ୍ଡିତ ନେହେରୁ ତାଙ୍କୁ କହିଛନ୍ତି; ତେଣୁ ସେ କଥାଟା ହିଁ ଠିକ୍ । ବିଷୟର ବିଶଦ ବିଚାର ଭିତରକୁ ଯେ ଯିବାକୁ ଅମଙ୍ଗ ବୋଲି ଅନୁଭବ କରି ଦାଦା ଆଉ କଥା ବଢ଼େଇଲା ନାହିଁ ।

ଓ୍ୱେଡ଼ଛୀ ସମ୍ମିଳନୀ ପରେ ମୁଁ ବିନୋବାଙ୍କ ସାଙ୍ଗରେ ଦେଖା କରିବାକୁ ପଶ୍ଚିମବଙ୍ଗରେ ତାଙ୍କର ରହଣିରେ ଆସି ପହଞ୍ଚିଲି । ସେ ମୋ ହାତରେ ପଣ୍ଡିତ ନେହେରୁଙ୍କ ପାଖକୁ ଖଣ୍ଡେ ଚିଠି

ପଠେଇବା ପାଇଁ ସ୍ଥିର କଲେ । ସର୍ବ ସେବା ସଂଘର ନୂଆ ଅଧ୍ୟକ୍ଷଙ୍କ ସହିତ ନେହେରୁଙ୍କର ପରିଚୟ ହେବା ଉଚିତ ବୋଲି ସେ ମନ୍ତବ୍ୟ କଲେ । ସେ ଚିଠିରେ ବିନୋବା ଲେଖିଥିଲେ ଯେ, ଦେଶରକ୍ଷା ପାଇଁ ଯୁଦ୍ଧ କରିବାବେଳେ ମଧ୍ୟ ଶାନ୍ତିର ବୃହତ୍ତର ପରିପ୍ରେକ୍ଷୀକୁ ଆଖିଆଗରେ ରଖିବା ଚାହି ଓ ଦେଶରେ ଯେମିତି ଦ୍ୱେଷଭାବର ବୃଦ୍ଧି ନ ହୁଏ ସେଥିପ୍ରତି ସାବଧାନ ରହିବା ଚାହିଁ । ମୁଁ ଦିଲ୍ଲୀରେ ପହଞ୍ଚି ଶ୍ରୀମାନ୍‌ନାରାୟଣଙ୍କ ସହିତ ପଣ୍ଡିତ୍‌ଜୀଙ୍କୁ ତାଙ୍କର ଅଫିସରେ ଦେଖା କରିଥିଲି । ସେ ବି ବିନୋବାଙ୍କ ଚିଠି ପାଇ ଖୁବ୍ ପ୍ରସନ୍ନ ହେଲେ । ବିନୋବାଙ୍କ ବିଷୟରେ ମତେ ଗୋଟିଏ ଯୋଡ଼ିଏ ପ୍ରଶ୍ନ ପଚାରିଲେ ଓ ସେଦିନ ସନ୍ଧ୍ୟା ସୁଦ୍ଧା ଚିଠିର ଉତ୍ତର ମୋ ହାତରେ ଦେବେ ବୋଲି କହିଲେ । ଆମେ ବିଦାୟ ନେବାବେଳକୁ ସେ ମଧ୍ୟ କେଉଁ ଏକ ବୈଠକକୁ ଯିବାପାଇଁ ଉଠିଲେ ଓ ମତେ ଆଲିଙ୍ଗନ କରି ବିଦାୟ ନେଲେ । ତାଙ୍କ ସହିତ ମୋର ପ୍ରଥମ ଓ ଶେଷ ସାକ୍ଷାତ ।

## ସୀମାନ୍ତରେ ସେବାକାର୍ଯ୍ୟ

ନେଫାରେ ସଂଘର୍ଷ ଆରମ୍ଭ ହେବାପରେ ଆସାମରେ ଲୋକଙ୍କ ଭିତରେ କାମ କରିବା ପାଇଁ କେତେକ ଶାନ୍ତିସେନା ଦେଶର ସବୁଆଡୁ ଯାଇଥିଲେ । ବୋଉ ସେମାନଙ୍କର ନେତ୍ରୀ ଭାବରେ ଯାଇଥିଲା । ସେଠି ସେ ଯାଇ ତିନି ମାସ ରହିଲା ଓ ଏକାବେଳେକେ ଯୁଦ୍ଧ ସାମ୍ମୁଖ୍ୟ ପାଖାପାଖି ଅଞ୍ଚଳରେ ଲୋକଙ୍କୁ ସାହସ ଦେବା କାମ କରିଥିଲା ।

ଏ ସଂଘର୍ଷ ପରେ ସର୍ବ ସେବା ସଂଘରେ ଗୋଟାଏ ବିଚାର ଉଠିଲା ଯେ, ସୀମାନ୍ତ ଅଞ୍ଚଳର ଲୋକଙ୍କ ଭିତରେ ଅହିଂସ ପ୍ରତିରୋଧ ଶକ୍ତି ଜାଗ୍ରତ କରିବା ଓ ଭାରତ ସହିତ ସେମାନଙ୍କର ଏକାତ୍ମତାକୁ ଦୃଢ଼ କରିବା ପାଇଁ ସେ ସବୁ ଅଞ୍ଚଳରେ ଯାଇ କାମ ଆରମ୍ଭ କରିବା ଆବଶ୍ୟକ । ସେଥିପାଇଁ ବିଭିନ୍ନ ରଚନାତ୍ମକ ସଂସ୍ଥାମାନଙ୍କର ପ୍ରତିନିଧିଙ୍କୁ ନେଇ ଏକ ସମିତି ଗଢ଼ାଗଲା । ଏ ସମିତିର ତତ୍ତ୍ୱାବଧାନରେ ଉତ୍ତର-ପଶ୍ଚିମରେ ଲାହୋଲ୍-ସ୍ପିତି ଅଞ୍ଚଳରୁ ଆରମ୍ଭ କରି ଉତ୍ତର ପୂର୍ବର ତିରାପ ଜିଲ୍ଲା ଯାଏ ଗାନ୍ଧୀ ସ୍ମାରକ ନିଧି, ଶାନ୍ତିସେନା ମଣ୍ଡଳ ଓ ଖଦୀ କମିଶନ ପକ୍ଷରୁ ଅନେକ ଗୁଡ଼ିଏ ସେବାକେନ୍ଦ୍ର ସ୍ଥାପିତ ହେଲା । ପାକିସ୍ତାନ ସହିତ ୧୯୬୫ ର ଯୁଦ୍ଧ ପରେ ଏଭଳି କେନ୍ଦ୍ର ରାଜସ୍ଥାନ, କାଶ୍ମୀର ଓ ପଶ୍ଚିମବଙ୍ଗର ପାକିସ୍ତାନ ସହିତ ସୀମାନ୍ତ ଅଞ୍ଚଳମାନଙ୍କରେ ବି ଆରମ୍ଭ କରାଗଲା । ଏ ସବୁ ଭିତରେ ହିମାଚଳ ପ୍ରଦେଶର ଲାହୋଲ- ସ୍ପିତି ଅଞ୍ଚଳରେ ଗାନ୍ଧୀ ସ୍ମାରକ ନିଧି, ଉତ୍ତର ପ୍ରଦେଶର ଓ ରାଜସ୍ଥାନର ସୀମାନ୍ତରେ ଖଦୀ କମିଶନ ଓ ଉତ୍ତର-ପୂର୍ବ ସୀମାନ୍ତ (ନେଫା) ରେ ଶାନ୍ତି ସେନା ମାର୍ଫତ କାମ ଚାଲିଲା । ପଶ୍ଚିମବଙ୍ଗର ସୀମାନ୍ତରେ ମଧ୍ୟ ଗାନ୍ଧୀ ସ୍ମାରକ ନିଧି ତତ୍ତ୍ୱାବଧାନରେ କାମ ହେଉଥାଏ । ଏ ସବୁ କାମର ସମନ୍ୱୟ ଉପରୋକ୍ତ ସୀମାନ୍ତ ଅଞ୍ଚଳ ସମିତି ଦ୍ୱାରା ହେଉଥାଏ ।

ଭୂଦାନ- ଗ୍ରାମଦାନ ଆନ୍ଦୋଳନ ଦେଖିବାକୁ ଓ ସେଥିରେ କାମ କରିବାକୁ ୟୁରୋପ ଓ

ଆମେରିକାରୁ ଅନେକ ଯୁବକ ଯୁବତୀ ଆସୁଥିଲେ । ସେମାନେ ପ୍ରାୟ ଶାନ୍ତିବାଦୀ, ଗାନ୍ଧୀଜୀଙ୍କ ଚିନ୍ତାଧାରା ପ୍ରତି ଆସ୍ଥାସମ୍ପନ୍ନ । ଏଇ ବନ୍ଧୁମାନଙ୍କ ମାଧ୍ୟମରେ କ୍ରମେ ବିଦେଶର ଶାନ୍ତି ଆନ୍ଦୋଳନ ସହିତ ସର୍ବ ସେବା ସଂଘର ସମ୍ପର୍କ ହେଲା ଓ କ୍ରମେ ଘନିଷ୍ଠତା ବଢ଼ିଲା । ୧୯୬୧ ର ଶୀତଦିନେ ତାମିଲନାଡୁର ଗାନ୍ଧୀଗ୍ରାମଠାରେ ବିଶ୍ୱ ଯୁଦ୍ଧ ବିରୋଧୀ ସଂଘର ସମ୍ମିଳନୀ ହେଲା । ଏ ସମ୍ମିଳନୀକୁ ଦାଦା ଓ ମୁଁ ଯାଇଥିଲୁ । ସେଠି ବିଭିନ୍ନ ଦେଶରୁ ଆସିଥିବା ଶାନ୍ତିବାଦୀମାନଙ୍କ ସହିତ ପରିଚୟ ହେଲା ଓ ନୂଆ ନୂଆ ଦୃଷ୍ଟିକୋଣ ଓ ଚିନ୍ତାଧାରା ସଂସ୍ପର୍ଶରେ ଆସିବାର ସୁଯୋଗ ମିଳିଲା । ବିଦେଶର ଶାନ୍ତି ଆନ୍ଦୋଳନ ସହିତ ଯୋଗାଯୋଗ ଫଳରେ ସର୍ବୋଦୟ ଆନ୍ଦୋଳନର ଲାଭ ହିଁ ହେଲା । ରାଷ୍ଟ୍ରୀୟତାର ଉପରକୁ ଉଠି ବ୍ୟାପକ ଜାଗତିକ ପରିପ୍ରେକ୍ଷୀରୁ ସମସ୍ୟାସବୁକୁ କିପରି ଦେଖିବାକୁ ହୁଏ ତା'ର କିଛି ପଦାର୍ଥପାଠ ମିଳିଲା । କାମ କରିବାର ନୂଆ ନୂଆ ପ୍ରଣାଳୀର ପରିଚୟ ମିଳିଲା । ପଶ୍ଚିମର ସାଧାରଣ ସେବୀମାନେ ପରିସ୍ଥିତି, ସମସ୍ୟା ଓ ନିଜର କାମର ଢଙ୍ଗ ଓ ପରିଣାମକୁ ବୈଜ୍ଞାନିକ ଢଙ୍ଗରେ ବିଶ୍ଳେଷଣ କରିବାରେ ଅଭ୍ୟସ୍ତ ।

ସେ ଦେଶରେ ସାମାଜିକ ବିଜ୍ଞାନଗୁଡ଼ିକର ଚର୍ଚ୍ଚା ଯଥେଷ୍ଟ ବ୍ୟାପକ ହେଇଥିବାରୁ ସେ ସବୁର ଲାଭ ଉଠେଇବାର ଦୃଷ୍ଟି ମଧ୍ୟ ବ୍ୟାପକ ହେଇଛି । ଆମ ଦେଶରେ ଏହାର ଏକାନ୍ତ ଅଭାବ ରହିଛି । ବିଦେଶର ସାଧାରଣସେବୀମାନଙ୍କ ସହିତ ସମ୍ପର୍କ ଫଳରେ ଏ ଦିଗକୁ ମଧ୍ୟ ଆମର ଦୃଷ୍ଟି କିଛିଟା ଗଲା ।

ଅନ୍ୟପକ୍ଷରେ ବିଦେଶର ଶାନ୍ତି ଆନ୍ଦୋଳନ ମୁଖ୍ୟତଃ ଯୁଦ୍ଧବିରୋଧୀ । ସେଥିରେ ବିବେକ ଦୃଷ୍ଟିରୁ ବ୍ୟକ୍ତିଗତ ଭାବରେ ଯୁଦ୍ଧରୁ ଅଲଗା ରହିବା ଉପରେ ଜୋର୍ ରହିଛି । କେତେକ ଶାନ୍ତିବାଦୀ ସଂସ୍ଥା ଯୁଦ୍ଧ ଆୟୋଜନ-ଯଥା ପରମାଣୁ ଅସ୍ତ୍ରସଜ୍ଜା, ବିଦେଶକୁ ଅସ୍ତ୍ରଶସ୍ତ୍ର ରପ୍ତାନୀ, ପରମାଣୁ ବିସ୍ଫୋରଣ, ନୂଆ ଅସ୍ତ୍ରଶସ୍ତ୍ର ଉଦ୍‌ଭାବନ ପାଇଁ ଗବେଷଣା ଆଦିର ବିରୋଧ କରି ବିକ୍ଷୋଭ ପ୍ରଦର୍ଶନ ମଧ୍ୟ କରିଥା'ନ୍ତି, ମାତ୍ର ଯୁଦ୍ଧର ଚେର ଯେ ସମାଜ ରଚନାରେ ରହିଛି, ଯୁଦ୍ଧ ଲୋପ କରିବାକୁ ହେଲେ ମଣିଷ ସମାଜରୁ ବର୍ଣ୍ଣଭେଦ, ଆର୍ଥିକ ଅସମାନତା, ଶୋଷଣ, ଦମନ ଆଦି ଲୋପକରି ସମାଜକୁ ନୂଆ ଛାଞ୍ଚରେ ଢାଳିବା ପାଇଁ ମଧ୍ୟ ଉଦ୍ୟମ କରିବାକୁ ହେବ, ଏ ଦିଗପ୍ରତି ସେମାନଙ୍କର ଦୃଷ୍ଟି ବହୁତ କମ୍ ଯାଇଥିଲା । ଗାନ୍ଧୀ ବିନୋବାଙ୍କ ଚିନ୍ତାଧାରା ସହିତ ସଂସ୍ପର୍ଶ ଫଳରେ ବିଦେଶର ଶାନ୍ତିବାଦୀମାନେ ଏ ବିଷୟରେ ଅଧିକ ସଚେତନ ହେଇଛନ୍ତି ଓ ଗତ କେତେ ବର୍ଷ ଭିତରେ ଅଧିକାଂଶ ଶାନ୍ତିବାଦୀ ସଂସ୍ଥା କେବଳ ଯୁଦ୍ଧର ବିରୋଧ ନୁହେଁ, ସମାଜର ରାଜନୀତିକ, ଆର୍ଥିକ ଓ ସାମାଜିକ ସମସ୍ୟାମାନଙ୍କରେ ମଧ୍ୟ ସ୍ପୃହା ରଖିବା ଆରମ୍ଭ କରିଛନ୍ତି ।

## ଦିଲ୍ଲୀ- ପେକିଙ୍ଗ୍ ମୈତ୍ରୀ ଯାତ୍ରା

୧୯୬୨ର ଚୀନ୍ ଯୁଦ୍ଧର ଅଳ୍ପ ପରେ ଏ.ଜେ. ମଷ୍ଟେ ପ୍ରଭୃତି କେତେକ ଶାନ୍ତିବାଦୀ ବନ୍ଧୁ ଭାରତକୁ ଆସିଲେ ଓ ଭାରତ ଓ ଚୀନର ଜନତାଙ୍କ ଭିତରେ ସଦ୍‌ଭାବ ବଢ଼ାଇବା ପାଇଁ

କିଛି କରିବା ଉଚିତ ବୋଲି ପରାମର୍ଶ ଦେଲେ । ଏହାରି ଫଳରେ ଦିଲ୍ଲୀ-ପେକିଙ୍ଗ୍ ମୈତ୍ରୀ ଯାତ୍ରା ଆରମ୍ଭ କରାଯିବାର ସ୍ଥିର ହେଲା । ଏ ପଦଯାତ୍ରା ଶଙ୍କରରାଓ ଦେଓଙ୍କ ନେତୃତ୍ୱରେ ଦିଲ୍ଲୀରୁ ବାହାରିଲା ଓ ଏଥିରେ ବିଭିନ୍ନ ଦେଶର ପନ୍ଦର ଜଣଯାଏ ଶାନ୍ତିବାଦୀ ଯୋଗ ଦେଇଥିଲେ । ଏ ଗୁରୁତର ଯୁଦ୍ଧର ଠିକ୍ ପରେ ପରେ ମୈତ୍ରୀର ବାଣୀକୁ ଯେ ଲୋକେ ପସନ୍ଦ କରିବେ ସେ ବିଷୟରେ ମନରେ ଯଥେଷ୍ଟ ସନ୍ଦେହ ଓ ଉଦ୍‌ବେଗ ଥିଲା । ଉତ୍କଟ ଦେଶପ୍ରେମୀମାନେ ପଦଯାତ୍ରୀମାନଙ୍କ ଉପରେ ଆକ୍ରମଣ କରିପାରନ୍ତି ବୋଲି ଆଶଙ୍କା ଥିଲା । କିନ୍ତୁ ସେପରି କୌଣସି ଘଟଣା ଘଟିଲା ନାହିଁ । ମୋଟ୍ ଉପରେ ଲୋକେ ସବୁଠାରେ ପଦଯାତ୍ରୀଙ୍କୁ ସୌଜନ୍ୟର ସହିତ ସ୍ୱାଗତ କରିଥିଲେ, ସେମାନଙ୍କର ବକ୍ତବ୍ୟ ଧୀରସ୍ଥିର ଭାବରେ ଶୁଣିଥିଲେ ଓ ଖୁବ୍ ଜୋରଦାର୍ ଯୁକ୍ତିତର୍କ ମଧ୍ୟ କରିଥିଲେ । କିନ୍ତୁ ଏ ଯୁକ୍ତିତର୍କରେ ବିତଣ୍ଡା ଅପେକ୍ଷା କଥାଟାକୁ ତଳେଇକରି ବୁଝିବାର ଆକାଂକ୍ଷା ହିଁ ଅଧିକ ଦେଖାଯାଉଥିଲା । ଏଭଳି ଏକ ସମୟରେ ଯେ ଲୋକେ ଗୋଟାଏ ଅଣ-ଗତାନୁଗତିକ ବିଚାର ଆଗ୍ରହର ସହିତ ଶୁଣିଲେ ଓ ବେଶ୍ ଭଲ ମାତ୍ରାରେ ସମର୍ଥନ କଲେ ଏଇଟା ଏ ଦେଶର ଜନସାଧାରଣଙ୍କର ବିଚାରବୁଦ୍ଧିର ଗୋଟାଏ ମସ୍ତବଡ଼ ଗୌରବପୂର୍ଣ୍ଣ ନିଦର୍ଶନ । ବିନୋବା କିନ୍ତୁ ମୈତ୍ରୀଯାତ୍ରା ବିଷୟରେ ବିଶେଷ ଉତ୍ସାହ ଦେଖେଇନଥିଲେ । ଯାତ୍ରାର ଆରମ୍ଭ ସମାରୋହ ଉପଲକ୍ଷ୍ୟରେ ସେ ସଂସ୍କୃତରେ ଏକ ବାର୍ତ୍ତା ପଠାଇଥିଲେ । ସେଥିରେ ଶ୍ଳେଷର ଟିକିଏ ବ୍ୟଞ୍ଜନା ଥିବାପରି ଜଣାଯାଉଥିଲା । ଏ ପଦଯାତ୍ରାକୁ ଚୀନ୍‌ରେ ପ୍ରବେଶ କରିବାର ଅନୁମତି ମିଳିବା ପାଇଁ ବହୁତ ଉଦ୍ୟମ ହେଇଥିଲା । ସିଦ୍ଧରାଜଜୀ ଦୁଇଥର ହଙ୍ଗ୍‌କଙ୍ଗ୍ ଯାଇ ଚୀନ୍ ସରକାରଙ୍କ ସହିତ ଯୋଗାଯୋଗର ଉଦ୍ୟମ କରିଥିଲେ । ମାତ୍ର ଏ ଉଦ୍ୟମ ନିଷ୍ଫଳ ହେଲା । ପଦଯାତ୍ରା ଉତ୍ତର-ପୂର୍ବ ସୀମାନ୍ତଯାଏ ଯାଇ ଫେରି ଆସିଲା ।

୧୯୬୫ ର ଯୁଦ୍ଧବେଳେ ସର୍ବ ସେବା ସଂଘର ନୀତି ସ୍ଥିର କରିବା ସହଜ ହେଲା, କାରଣ ୧୯୬୨ରେ ନିର୍ଣ୍ଣିତ ନୀତି ଆଖି ଆଗରେ ଥିଲା । ପଶ୍ଚିମର ଶାନ୍ତିବାଦୀ ବନ୍ଧୁମାନେ ସର୍ବ ସେବା ସଂଘର ଯୁଦ୍ଧ ସମ୍ବନ୍ଧୀୟ ନୀତିକୁ ରାଷ୍ଟ୍ରବାଦ ଦୋଷରେ ଦୁଷ୍ଟ ବୋଲି ସମାଲୋଚନା କରିଥିଲେ । ବିନୋବାଙ୍କ ଜୟ ଜଗତ ସତ୍ତ୍ୱେ ସର୍ବୋଦୟବାଲାଙ୍କ ଭିତରେ ସଂକୀର୍ଣ୍ଣ ରାଷ୍ଟ୍ରବାଦ ଯେ ଲୁଚି ନ ରହିଛି ତାହା ନୁହେଁ, ମାତ୍ର ଉପରୋକ୍ତ ଦୁଇଟି ଯୁଦ୍ଧବେଳେ ସର୍ବୋଦୟ ଆନ୍ଦୋଳନ ଯେଉଁ ଆଭିମୁଖ୍ୟ ଗ୍ରହଣ କରିଥିଲା ସେଥିରେ କୌଣସି ପ୍ରକାର ସଂକୀର୍ଣ୍ଣ ସ୍ୱାର୍ଥକୁ ଶୀର୍ଷସ୍ଥାନ ଦେଇ ବୃହତ୍ତର ସମାଜର ହିତର କ୍ଷତି କରିବା ଯେପରି ଅସାମାଜିକ ମନୋଭାବ ସେହିପରି ସାରା ଜଗତର ହିତକୁ ଅବଜ୍ଞା କରି ନିଜ ଦେଶର ସ୍ୱାର୍ଥସିଦ୍ଧି ପାଇଁ ଯାହା ଇଚ୍ଛା ତାହା କରିବା ମଧ୍ୟ ସମାନ ଭାବରେ ଅନ୍ୟାୟ । ମାତ୍ର ବ୍ୟକ୍ତି ଓ ପରିବାରର ମଧ୍ୟ କେତେକ ନ୍ୟାୟସଙ୍ଗତ ଅଧିକାର ଓ ସ୍ୱାର୍ଥ ରହିଛି ଓ ବୃହତ୍ତର ସମାଜର ହିତର ବାହାନାରେ ସେ ସବୁକୁ ଦଳି ଦେବା ବା ସାଧୁସନ୍ଥମାନଙ୍କ ଦ୍ୱାରା ପରିବାରଟା ମାୟା ବୋଲି ଉପଦେଶ ଦିଆଯିବା ଯେପରି ଅଯୌକ୍ତିକ ଓ ଅବାନ୍ତର, କେତେକ ଶାନ୍ତିବାଦୀଙ୍କର 'ରାଷ୍ଟ୍ର' ଶବ୍ଦ ଶୁଣିଲେ ନାହ ଡେଇଁବା ମଧ୍ୟ ସେହିପରି

ବୋଲି ମୋର ଧାରଣା । କାଶ୍ମୀର ଓ ନାଗାଲାଣ୍ଡ ବ୍ୟାପାରରେ ସର୍ବ ସେବା ସଂଘ ଯେଉଁ ଆଭିମୁଖ୍ୟ ନେଇଥିଲା ତାହା ଉଗ୍ର ରାଷ୍ଟ୍ରବାଦୀମାନଙ୍କୁ ଅସନ୍ତୁଷ୍ଟ କରିଥିଲା । ଆକ୍‌ସାଇ ଚୀନ୍ ଅଞ୍ଚଳ ଚୀନକୁ ଛାଡ଼ିଦେଇ ସୀମାନ୍ତରେ ଚୀନ ସହିତ ବୁଝାମଣା କରିନେବା ପାଇଁ ଜୟପ୍ରକାଶଙ୍କର ପରାମର୍ଶ ଯୋଗୁଁ ସେ ମଧ୍ୟ ସେହିପରି ଉଗ୍ର ରାଷ୍ଟ୍ରବାଦୀଙ୍କ ଆଡ଼ୁ ବହୁତ ଗାଳିଗୁଲଜର ଶିକାର ହେଇଥିଲେ ।

## ସତ୍ୟାଗ୍ରହ ନେଇ ମତାନ୍ତର

ସର୍ବ ସେବା ସଂଘର ଅଧ୍ୟକ୍ଷ ହେବାପରେ ମୁଁ ଅନୁଭବ କଲି ଯେ ସଂଘ ଭିତରେ ଦୁଇଟି ବିଷୟ ନେଇ ମତଭେଦ ମୁଣ୍ଡଟେକୁଛି । ଏଇ ମତଭେଦର ବୀଜ ପରେ ଗୁରୁତର ଆକାର ଧରିଲା ଓ ସର୍ବୋଦୟ ଆନ୍ଦୋଳନକୁ ଦୁଇଫାଳ କରିଦେବାରେ ସାହାଯ୍ୟ କଲା ।

ଏଥି ଭିତରୁ ଗୋଟିଏ ହେଲା ଆନ୍ଦୋଳନରେ ପ୍ରତିରୋଧମୂଳକ ସତ୍ୟାଗ୍ରହର ସ୍ଥାନ ନେଇ । ଅନେକେ ଅନୁଭବ କରୁଥା'ନ୍ତି ଯେ ବିନୋବା ଏ ଭଳି ସତ୍ୟାଗ୍ରହକୁ ଭୂଦାନ- ଗ୍ରାମଦାନ ଆନ୍ଦୋଳନରୁ ବାଦଦେଇ ଦେଉଛନ୍ତି । ବିନୋବା ସତ୍ୟାଗ୍ରହର ଯେଉଁ ନିଷେଧାତ୍ମକ-ବିଧେୟାତ୍ମକ ଓ ସୌମ୍ୟ, ସୌମ୍ୟତର, ସୌମ୍ୟତମ ବିଶ୍ଳେଷଣ  କରିଥା'ନ୍ତି ତାହା ମୋ ମନକୁ ପାଉଥାଏ ବୋଲି ପୂର୍ବରୁ ଲେଖିଛି । ବିନୋବାଙ୍କ ସହିତ ଏ ବିଷୟରେ ମୋର ଦୁଇ ତିନିଥର ଆଲୋଚନା ହେଇଥିଲା ଓ ସେଥିରୁ ମୋର ଧାରଣା ହେଲା ଯେ, ସେ ପ୍ରତିରୋଧମୂଳକ ସତ୍ୟାଗ୍ରହର ସଂପୂର୍ଣ୍ଣ ବିରୋଧୀ ନୁହନ୍ତି । କି କି ଉପଲକ୍ଷ୍ୟରେ ଏଭଳି ସତ୍ୟାଗ୍ରହ କରାଯାଇ ପାରେ, ସେ ବିଷୟରେ ମଧ୍ୟ  ତାଙ୍କ ସହିତ ଖୁବ୍ ବିଶଦ ଆଲୋଚନା ହେଇଥିଲା । ଭାରତ ସ୍ୱାଧୀନ ହେଇଥିବାରୁ, ସେଥିରେ ଗଣତନ୍ତ୍ର ଚାଲିଥିବାରୁ ଓ ପରମାଣୁ ଶକ୍ତି ଓ ବୋମାର ଆବିଷ୍କାର ହେଇଥିବାରୁ ଏବେ ପ୍ରତିରୋଧମୂଳକ ସତ୍ୟାଗ୍ରହ ପାଇଁ ଅବସର ବହୁତ ସୀମାବଦ୍ଧ ହେଇଯାଇଛି ବୋଲି ତାଙ୍କର ମତ । ତଥାପି ଯେଉଁଠି ସ୍ପଷ୍ଟତଃ ଅନ୍ୟାୟ ହେଇଥିବ ସେପରି କ୍ଷେତ୍ରରେ ପ୍ରତିରୋଧମୂଳକ ସତ୍ୟାଗ୍ରହର ସ୍ଥାନ ଅଛି ବୋଲି ସେ ଆଲୋଚନା  ପ୍ରସଙ୍ଗରେ ସ୍ୱୀକାର କରିଥିଲେ । ଉଦାହରଣସ୍ୱରୂପ ନଦୀବନ୍ଧ ଓ ଜଳବିଦ୍ୟୁତ ଯୋଜନାରେ ଜଳଭଣ୍ଡାର ଅଞ୍ଚଳରୁ ଯଦି ଯଥେଷ୍ଟ କ୍ଷତିପୂରଣ ନ ଦେଇ ଗାଁ ଲୋକଙ୍କୁ ଉଠେଇ ଦେବା କଥା ହୁଏ ତେବେ ସେଠାରେ ସତ୍ୟାଗ୍ରହ କରାଯାଇପାରେ  ବୋଲି ସେ ଉଦାହରଣ  ଦେଇଥିଲେ । ତେବେ ଏ ଭଳି ସତ୍ୟାଗ୍ରହ କେବଳ ଗଲୁ ମେଣ୍ଟାଇବା ପାଇଁ ନୁହେଁ, ସଫଳତାର ଗିଳନେବଲ୍ ସମ୍ଭାବନା ଦେଖି କରାଯିବା ଉଚିତ ବୋଲି ସେ ବୁଝାଇଥିଲେ । ଅନ୍ୟ ଦିଗରେ ବିନୋବା ଗ୍ରାମଦାନକୁ ସାମାଜିକ ବିପ୍ଳବର ମାଧ୍ୟମ ରୂପେ ଧରିଥାନ୍ତି ଓ ତାହା ଉପରେ ଏକାଗ୍ର ହେଇ ଚାଲିଲେ, ସେ ଗୋଟିଏ କାମକୁ ସାଧିଲେ, ସବୁ ସାଧିହେବ ବୋଲି ତାଙ୍କର ଦୃଢ଼ ମତ ଥାଏ । ଏ ବିଷୟରେ ମୁଁ ବିନୋବାଙ୍କ ସହିତ ଏକମତ ଥାଏ ।

ସେଇ ଷାଠିଏ ଦଶକରେ ଆନ୍ଧ୍ର ପ୍ରଦେଶର ବିଶିଷ୍ଟ ସେବକ ଗୋରାଜୀ ସରକାରୀ ମହଲରେ ବିଳାସ ଓ ବୈଭବ ବିରୋଧରେ ସତ୍ୟାଗ୍ରହ କରିବେ ବୋଲି ସ୍ଥିର କଲେ ଓ ବିନୋବା ମଧ୍ୟ ତାଙ୍କୁ ସେଥିପାଇଁ ନିଜର ସମ୍ମତି ଦେଲେ । ମାତ୍ର ପ୍ରାୟ ସେହି ସମୟରେ ତାମିଲନାଡୁର ଜଗନ୍ନାଥନ୍‌ଜୀ ଜମି ବେଦଖଲି ଓ ମନ୍ଦିର ଜମି ଚାଷ କରିବାର ଗାଁବାଲାଙ୍କର ଅଧିକାର ନେଇ ଯେତେବେଳେ ସତ୍ୟାଗ୍ରହ ଆରମ୍ଭ କଲେ ବିନୋବା ତାକୁ ପସନ୍ଦ କଲେ ନାହିଁ । ସେତେବେଳେ ବି ସେ ବିଷୟରେ ତାଙ୍କ ସହିତ ମୋର ବିଶଦ ଆଲୋଚନା ହୋଇଥିଲା ।

ଏ ସତ୍ୟାଗ୍ରହର ଯୌକ୍ତିକତା ବିରୋଧରେ ବିନୋବା ଯେଉଁସବୁ ଯୁକ୍ତି ବାଢ଼ିଥିଲେ ସେ ସବୁ ଭିତରେ ଗୋଟାଏ ମୁଖ୍ୟ ଯୁକ୍ତି ଥିଲା ଯେ, ସତ୍ୟାଗ୍ରହକୁ ଚାଲୁ ରଖିବା ଭଳି ଯଥେଷ୍ଟ ଶକ୍ତି ଲୋକଙ୍କର ନ ଥିଲା ଓ ଯଦି କାମରାଜ ହସ୍ତକ୍ଷେପ ନ କରିଥାନ୍ତେ ତେବେ ଏ ସତ୍ୟାଗ୍ରହ ବି ଯାଇଥାନ୍ତା । ଏଇ ସମୟରେ କେତେକ ବନ୍ଧୁଙ୍କ ପକ୍ଷରୁ ଏ ଦାବି ବରାବର ଉଠୁଥାଏ ଯେ, ଦେଶରେ ବ୍ୟାପକ ଭାବରେ ପ୍ରତିରୋଧମୂଳକ ସତ୍ୟାଗ୍ରହ ଚାଲିବା ଚାହ । ଦେଶର ନେତାମାନଙ୍କ ଭିତରୁ କୃପାଲାନୀଜୀ ଏ ମତର ମୁଖ୍ୟ ପ୍ରବକ୍ତା ଥାନ୍ତି । ସର୍ବୋଦୟର ସାଥୀମାନଙ୍କ ଭିତରେ ଏ ବିଷୟରେ ବରାବର ଜୋର ଦେଉଥାନ୍ତି ବସନ୍ତରାଓ ନାରଗୋଲ୍‌କର, କୃଷ୍ଣସ୍ୱାମୀ ପ୍ରଭୃତି । ଗୋରାଜୀ ଓ ଜଗନ୍ନାଥନ୍‌ଜୀ ଏ ବିଷୟରେ ସର୍ବ ସେବା ସଂଘର ହୃଦବୋଧ କରାଇବା ଚେଷ୍ଟା ଅପେକ୍ଷା ନିଜେ ପ୍ରତ୍ୟକ୍ଷ ତାହା କାମରେ କରିବା ଦିଗରେ ବେଶି ଲାଗିଥା'ନ୍ତି ।

କିନ୍ତୁ ଏ ଭଳି ସତ୍ୟାଗ୍ରହ କ'ଣ ନେଇ ଚାଲିବ ସେ ବିଷୟରେ ତା' ଉପରେ ତାତ୍ତ୍ୱିକ ଜୋର୍ ଦେଉଥିବା ବନ୍ଧୁମାନଙ୍କ ପାଖରେ କୌଣସି ଖାସ୍ ସୂଚନା ନଥାଏ । ଏଭଳି ଅନେକ ବନ୍ଧୁଙ୍କର କୌଣସି ଗଣସଂଯୋଗ ମଧ୍ୟ ନଥାଏ । ସେଥିପାଇଁ ସେମାନଙ୍କର କଥାର ଗୁରୁତ୍ୱ ରହୁ ନଥାଏ । ସେ ସମୟରେ ଜୟପ୍ରକାଶଜୀ ମଧ୍ୟ ଏହି ମତର ଥା'ନ୍ତି ଯେ, ବିଶେଷ ବିଶେଷ ଘଟଣାରେ ସ୍ଥାନୀୟ ସ୍ତରରେ ପ୍ରତିରୋଧମୂଳକ ସତ୍ୟାଗ୍ରହର ଆବଶ୍ୟକତା ଥିଲେ ମଧ୍ୟ ସାରା ଦେଶରେ ବା ରାଜ୍ୟବ୍ୟାପୀ ପ୍ରତିରୋଧ ପାଇଁ କୌଣସି ପରିସ୍ଥିତି ନାହିଁ । ତଥାପି ସେ କହୁଥା'ନ୍ତି ଯେ, ଯେଉଁମାନେ ସେଭଳି କରିବାକୁ ଚାହୁଁଛନ୍ତି, ସେମାନେ କରୁନାହାନ୍ତି କାହିଁକି ?

ତାମିଲନାଡୁର ତ୍ରିଚଗୌଠାରେ ସର୍ବ ସେବା ସଂଘର ଅଧିବେଶନ ୧୯୬୩ରେ ହେଲା । ସେଠି ମଧ୍ୟ ଏ ବିଷୟରେ କେତେଜଣ ସାଥୀ ଖୁବ୍‌ଜୋର୍‌ଦେଇ କହିଲେ । ସେଠି ମୁଁ ଏହାର ଏକ ମନୋବୈଜ୍ଞାନିକ ବିଶ୍ଳେଷଣ ବାଢ଼ିଥିଲି । ମୋର ବକ୍ତବ୍ୟ ଥିଲା ଯେ, ଅନେକ ସମୟରେ ଆମେ କୌଣସି ଏକ ଗୁରୁତର ସମସ୍ୟା ଦ୍ୱାରା ବହୁତ ଅଧିକ କ୍ଷୁବ୍ଧ ହେଇପଡ଼ିଲେ ଗୋଟାଏ କିଛି ପଦକ୍ଷେପ ନେବାକୁ ବ୍ୟାକୁଳ ହେଇପଡୁ । ମାତ୍ର ଏପରି ପଦକ୍ଷେପ ସେ ସମସ୍ୟାର ସମାଧାନ ଦିଗରେ ଯେତେ ସାହାଯ୍ୟ ନ କରେ, ଆମ ମାନସିକ ଅସ୍ଥିରତା ପାଇଁ ଗୋଟିଏ ସେଫ୍‌ଟି ଭଲ୍‌ଭର ହିଁ କାମ ବେଶି କରେ । ସତ୍ୟାଗ୍ରହ କ୍ଷେତ୍ରରେ ମଧ୍ୟ ଏପରି ଘଟିଥାଏ । ଏହାଦ୍ୱାରା ଆମେ ନିଜର କର୍ତ୍ତବ୍ୟ କଲୁ ବୋଲି ଗୋଟାଏ ସନ୍ତୋଷ ପାଉ, ମାତ୍ର ସମସ୍ୟା

ଯେଉଁଠି ସେଇଠି ରହିଯାଏ । ମାନସିକ କ୍ଷୋଭ ଓ ବେଦନାକୁ ଠିକ୍ ଭାବରେ ଧରିରଖିପାରିଲେ ହିଁ ସେଥିରୁ ସୃଜନୀ ଶକ୍ତିର ଜନ୍ମ ହୁଏ । ସେଥିପାଇଁ ଆମେ ମଧ୍ୟ ସତ୍ୟାଗ୍ରହର ସମର୍ଥ୍ୟର ବିକାଶ ପାଇଁ ସେହିପରି କରିବା ଚାହି । କେବଳ ପ୍ରତୀକାତ୍ମକ ହେଇପଡୁଥିବା ପ୍ରତିରୋଧରେ ତାହାକୁ ଖର୍ଚ୍ଚ କରିଦେବା ଉଚିତ ନୁହେଁ । ଜୟପ୍ରକାଶଜୀ ମୋର ଏ ବିଶ୍ଳେଷଣକୁ ଖୁବ୍ ପସନ୍ଦ କରିଥିଲେ ।

ଏ ବାବଦରେ ମୋର ଆହୁରି ମଧ୍ୟ ମତ ଥାଏ ଯେ, ସାରା ଦେଶରେ ଏକା ସମୟରେ ଏକାପ୍ରକାର ସତ୍ୟାଗ୍ରହ କରିବା ଭଳି କୌଣସି ପ୍ରଶ୍ନ ଦେଶ ଆଗରେ ନାହିଁ । ପ୍ରତ୍ୟେକ ସ୍ଥାନରେ ସ୍ୱତନ୍ତ୍ର ସମସ୍ୟା ରହିଛି । ସେ ସବୁକୁ ନେଇ ପ୍ରତିରୋଧ ହେଇପାରେ । ପ୍ରତିରୋଧକୁ ମୁଁ ଗ୍ରାମଦାନ ଉଦ୍ୟମର ପରିପୂରକ ଭାବରେ ଦେଖୁଥାଏ । ଓଡ଼ିଶାରେ କୋରାପୁଟ, ଆସାମର ଅଙ୍ଗାରକାଟା, ଗୁଜରାତର ରଙ୍ଗପୁର, ତାମିଲନାଡୁର ବଟଲାଗୁଣ୍ଡୁ ପ୍ରଭୃତି ଯେଉଁସବୁ ଅଞ୍ଚଳରେ ଗ୍ରାମଦାନ ଚେର ଧରିଥାଏ ସେଠି ଏଭଳି ସତ୍ୟାଗ୍ରହର ପ୍ରସଙ୍ଗ ଆସି ପଡୁଥାଏ ଓ ସତ୍ୟାଗ୍ରହ ମାଧ୍ୟମରେ ଗ୍ରାମଦାନର ଭାବନା ଅଧିକ ତେଜସ୍ୱୀ ଓ ମଜବୁତ ହେବାର ମୁଁ ଦେଖୁଥାଏ ।

କୋରାପୁଟରେ ବନ୍ଧକ ଜମି ସମସ୍ୟା, ଜଙ୍ଗଲ, ପୁଲିସ ଓ ରାଜସ୍ୱ ବିଭାଗର କର୍ମଚାରୀଙ୍କର ଜୁଲମ ଓ ଅନ୍ୟାୟ ପାଉଣା ଆଦାନ ପ୍ରଭୃତି ନେଇ କର୍ମୀମାନେ ପ୍ରଥମେ ଯେତେବେଳେ ମୁଣ୍ଡ ଘୂରେଇବା ଆରମ୍ଭ କଲେ, ସେତେବେଳେ ପ୍ରଥମ ପ୍ରଥମ ମତେ ଓ ଅନ୍ୟ ଅନେକଙ୍କୁ ଲାଗିଥିଲା ଯେ, ଏହାଦ୍ୱାରା ଶକ୍ତି ଓ ଧ୍ୟାନ ଅଯଥା ବାଣ୍ଟି ହେଇଯାଉଛି । ପ୍ରଥମେ ଗ୍ରାମଦାନକୁ ବ୍ୟାପକ ଓ ମଜବୁତ କରିବାରେ ହିଁ ଏକାଗ୍ର ଭାବରେ ଲାଗିବା ଉଚିତ । ମାତ୍ର କ୍ରମେ ଅଭିଜ୍ଞତାରୁ ଦେଖିଲି ଯେ ଏ ଭଳି ପ୍ରତିରୋଧର ଉଦ୍ୟମ ଦ୍ୱାରା ଉପକାର ହିଁ ହେଉଛି । ଶକ୍ତି ବରଂ ବଢୁଛି ।

କିନ୍ତୁ ଗ୍ରାମଦାନର ପ୍ରସାରରେ ହିଁ ଏକାଗ୍ର ଭାବରେ ଲାଗିବା ଉଚିତ ବୋଲି ଅନ୍ୟ ଯେଉଁମାନେ ବିଶ୍ୱାସ କରୁଥିଲେ ସେମାନେ ସମସ୍ତେ ମୋ ଭଳି ପ୍ରତିରୋଧର ମଧ୍ୟ ମୋଟ୍ କର୍ମ ଯୋଜନା ଭିତରେ ସ୍ଥାନ ଅଛି ବୋଲି ବିଶ୍ୱାସ କରିବା ଅବସ୍ଥାକୁ ଆସିଲେ ନାହିଁ । କେବଳ ପ୍ରତିରୋଧମୂଳକ ସତ୍ୟାଗ୍ରହ ନୁହେଁ ଆହୁରି ଅନ୍ୟ କାରଣରୁ ମଧ୍ୟ ଗ୍ରାମଦାନ କାମରେ ବିକ୍ଷେପ ଘଟୁଛି ବୋଲି ସେମାନେ ବିଚାରୁଥା'ନ୍ତି । ସେମାନେ ଅନୁଭବ କରୁଥାନ୍ତି ଯେ ସର୍ବ ସେବା ସଂଘର ଅଧ୍ୟକ୍ଷ ସମେତ ମୁଖ୍ୟ କର୍ମକର୍ତ୍ତାରମାନେ ଗ୍ରାମଦାନ କାମରେ ଯେତେ ସମୟ ଓ ଶକ୍ତି ଲଗାଇବା ଆବଶ୍ୟକ ତାହା ଲଗାଉ ନାହାନ୍ତି । ଅନ୍ୟାନ୍ୟ ନାନା ପ୍ରକାରର କାମ ସେଥିରେ ଭାଗ ବସାଉଛି । ଏ ହେଲା ମତଭେଦର ଦ୍ୱିତୀୟ ବିନ୍ଦୁ । ଏ ପ୍ରକାରର ଅସନ୍ତୋଷ ଭିତରେ ଭିତରେ ରହି ମଝିରେ ମଝିରେ ପ୍ରକାଶ ପାଉଥିଲା ଓ ଆମେ ସଂଘର କର୍ମକର୍ତ୍ତାମାନେ ଇସ୍ତଫା ଦେଇ ଦେବା ଉଚିତ ବୋଲି ଦାଦା ଧର୍ମାଧିକାରୀ ଥରେ ଦୁଇଥର ମତ ଦେଇଥିଲେ ।

ଗ୍ରାମଦାନ ଆନ୍ଦୋଳନରେ ବିକ୍ଷେପ ସୃଷ୍ଟି କରବାର ଅଭିଯୋଗର ମୁଖ୍ୟ ଲକ୍ଷ୍ୟ କ୍ରମେ ଜୟପ୍ରକାଶଜୀ ହେଲେ । ବିନୋବା ଓ ଜେ.ପି.ଙ୍କର ପ୍ରତ୍ୟେକଙ୍କର ବିଶିଷ୍ଟ ପୃଷ୍ଠଭୂମି, ଭୂମିକା ଓ ଚରିତ୍ର ଦୃଷ୍ଟିରୁ ଉଭୟଙ୍କର ଦୃଷ୍ଟିକୋଣରେ ପାର୍ଥକ୍ୟ ରହିବା ତ ସ୍ୱାଭାବିକ । ତା' ଉପରକୁ

ବିନୋବାଙ୍କ କାନ ଖରାପ ହେବା ଯୋଗୁଁ ଉଭୟଙ୍କ ଭିତରେ ବିଚାର ବିନିମୟର ସହଜତାରେ ନୂଆ ପ୍ରତିବନ୍ଧକ ଉତ୍ପନ୍ନ ହେଉଥାଏ । ଲେଖାପଢ଼ି କରି ଆଲୋଚନା କରିବାର ପଦ୍ଧତିଟା ଜେ.ପି.ଙ୍କୁ ଆଉ ନ ଥାଏ । ଏ ସବୁ କାରଣରୁ ଉଭୟଙ୍କ ଭିତରେ ଭୁଲ ବୁଝାମଣା ଅସାମଞ୍ଜସ୍ୟ ଉତ୍ପନ୍ନ ହେବାର ଯେଉଁ ସମ୍ଭାବନା ଥାଏ ତାହା ପ୍ରତି ଆମେ ସଂଘର କର୍ମକର୍ତ୍ତାମାନେ ସଚ୍ଚାଗ ଥାଉ ଓ ଏ ବାବଦରେ ପରିସ୍ଥିତିକୁ ସମ୍ଭାଳିବା ଆମର ଏକ ମୁଖ୍ୟ ଦାୟିତ୍ୱ ବୋଲି ଧରି ନେଇଥାଉ । ମୋର ସେତେବେଳେ ବିନୋବାଙ୍କ ସହିତ ଅଧିକ ଘନିଷ୍ଠତା ଥାଏ । ରାଧାକୃଷ୍ଣ, ସଂଘର ସାଧାରଣ ସଂପାଦକ, ଜେ.ପି.ଙ୍କ ସହିତ ଅଧିକ ଘନିଷ୍ଠ ଥାଏ ଓ ନାରାୟଣର ଉଭୟଙ୍କ ସହିତ ଉତ୍ତମ ଯୋଗାଯୋଗ ଥାଏ । ମୁଖ୍ୟତଃ ଆମେ ତିନିଜଣ ଏ ବିଷୟରେ ଧ୍ୟାନ ଦେଉଥାଉ । 'ମନମୋହନ ଲାଇନ୍'ର ଆମେ ହିଁ ମୁଖ୍ୟ ଆଖିଦୃଶିଆ ସଦସ୍ୟ ଥାଉ ।

ତେଣେ ନେଫା ସୀମାନ୍ତ ସଂଘର୍ଷ ବେଳେ ମ୍ୟାକ୍‌ମୋହନ ଲାଇନ୍ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବା ବେଳକୁ ମୁଁ ସର୍ବ ସେବା ସଂଘର ଅଧ୍ୟକ୍ଷ ହେଲି ଓ ମୋ ସାଙ୍ଗକୁ ସଂଘର ଅନ୍ୟ କର୍ମକର୍ତ୍ତାମାନେ ଓ ପ୍ରବନ୍ଧ ସମିତିର କେତେକ ସଦସ୍ୟ ମଧ୍ୟ ଆକାର ପ୍ରକାରରେ ଦୃଷ୍ଟି ଆକର୍ଷଣ କରିବା ଭଳି ଥିଲେ । ରାଧାକୃଷ୍ଣ, ନାରାୟଣ, କ୍ଷିତୀଶ୍‌ଦା, ଦତ୍ତୋବା, ଲବଣମ୍, କପିଲଭାଇ ପ୍ରଭୃତି ଫଂଝାଟାଏ ବେଶ୍ ବପୁବନ୍ତ ଥିଲେ ଓ ସେଥିରୁ ଆମର ନାମକରଣ ହେଇଗଲା ମନମୋହନ ଲାଇନ୍ ।

## ତିବ୍ବତ ଓ ନାଗାଲାଣ୍ଡ

ବିନୋବା ଗ୍ରାମଦାନରେ ଏକାଗ୍ର ହେବା ଉପରେ ଜୋର୍ ଦେଉଥା'ନ୍ତି । ୧୯୬୫ରେ ଗ୍ରାମଦାନ ତୋଫାନ ଆନ୍ଦୋଳନର ଡାକରା ପରେ ଏ ଏକାଗ୍ରତାର ଦାବି ଆହୁରି ବଢ଼ିଗଲା । ତେଣେ ଜେ.ପି.ଙ୍କର ନାନା ବିଷୟରେ ରୁଚି । ଭାରତ-ପାକ ମୈତ୍ରୀ, ତିବ୍‌ବତର ପ୍ରଶ୍ନ, କାଶ୍ମୀର, ନାଗାଲାଣ୍ଡ, ବିଶ୍ୱ ଶାନ୍ତିସେନା ଓ ଆହୁରି କେତେ କ'ଣ ? ଏ ସବୁ ଭିତରୁ ସେ ତିବ୍ବତ ବ୍ୟାପାରରେ ତାଙ୍କର ମତାମତ ଓ କାର୍ଯ୍ୟକଳାପ ସହିତ ସର୍ବୋଦୟ ଆନ୍ଦୋଳନକୁ ସଂଶ୍ଳିଷ୍ଟ ନ କରି ନିଜ ଦାୟିତ୍ୱରେ ଯାହା କରିବାର କରୁଥା'ନ୍ତି । ବାକି ଅଧିକାଂଶ ବିଷୟରେ, ଯଥା : କାଶ୍ମୀର, ନାଗାଲାଣ୍ଡ, ଭାରତ-ପାକ ମୈତ୍ରୀ ଆଦି ବିଷୟରେ, ସର୍ବ ସେବା ସଂଘର ମଧ୍ୟ ରୁଚି ଥାଏ । ଭାରତ-ପାକ ମୈତ୍ରୀ ବିଷୟରେ ମଧ୍ୟ ଉଭୟଙ୍କର ଦୃଷ୍ଟିକୋଣ ସମାନ ଥାଏ । କିନ୍ତୁ ତିବ୍ବତ ବିଷୟରେ ମତଦ୍ୱୈଧ ଥାଏ । ତିବ୍ବତ ଉପରେ ଚୀନ୍‌ର ପ୍ରାଧାନ୍ୟ ପ୍ରତିଷ୍ଠାକୁ ଭାରତ ସ୍ୱୀକାର ନ କରିବା ଉଚିତ ବୋଲି ଜେ.ପି.ଙ୍କର ମତ ଥାଏ । ମାତ୍ର ବିନୋବା ଥରେ କଥାବାର୍ତ୍ତା ପ୍ରସଙ୍ଗରେ ତିବ୍ବତର ସ୍ୱାଧୀନତା ଦାବି ଆମେ କରିବା ଉଚିତ ନୁହେଁ ବୋଲି ମତ ଦେଇଥିଲେ ।

ଜେ.ପି. ଦଲାଇଲାମାଙ୍କୁ ଖୁବ୍ ଗୁରୁତ୍ୱ ଦେଉଥା'ନ୍ତି । ଶଙ୍କରରାଓଜୀ, ନିର୍ମଳା ପ୍ରଭୃତି ମଧ୍ୟ କେତେକ ତାଙ୍କର 'ଆଧ୍ୟାତ୍ମିକ' ଶକ୍ତିଦ୍ୱାରା ମୁଗ୍ଧ ହେଉଥା'ନ୍ତି । ତାଙ୍କୁ ଥରେ ସର୍ବ ସେବା

ସଂଘର ବନାରସର ମୁଖ୍ୟ କେନ୍ଦ୍ରକୁ ନିମନ୍ତ୍ରଣ କରି ଅଣାଯାଇଥିଲା, ମୁଁ ସଂଘର ଅଧ୍ୟକ୍ଷ ହେବା ପୂର୍ବରୁ । ଦାଦା ଧର୍ମାଧିକାରୀ ତା'ର ସମାଲୋଚନା କରି ଏକ ଚିଠି ଲେଖିଥିଲେ । ଦଲାଇଲାମାଙ୍କୁ ନେଇ ଏତେ ନଚାନଚି କରାଯିବାଟା ସେ ପସନ୍ଦ କରୁ ନଥିଲେ ।

ସେ ବିଷୟରେ ମୋର ମତ ସେତେବେଳେ ଏୟା ଥିଲା ଯେ, ଦଲାଇଲାମା ଏକ କ୍ଷୟିଷ୍ଣୁ, ଶୋଷଣମୂଳକ ସମାଜବ୍ୟବସ୍ଥାର ପ୍ରତୀକ । ତାଙ୍କୁ ତିବ୍ବତର ସ୍ୱାଧୀନତାର ପ୍ରତୀକ ବୋଲି ବିଚାରିବାରେ କୌଣସି ଅର୍ଥ ନାହିଁ । ଶଙ୍କରରାଓଜୀ ଥରେ ଏ ବିଷୟରେ ଆଲୋଚନା ପ୍ରସଙ୍ଗରେ (୧୯୫୮-୫୯) ଏ ପ୍ରଶ୍ନ ଉଠେଇଥିଲେ ଯେ, ତିବ୍ବତରେ ଆଧ୍ୟାତ୍ମିକବାଦ କାହିଁକି ଜଡ଼ବାଦ ନିକଟରେ ପରାଜିତ ହେଲା ତାହା ଏକ ଚିନ୍ତା ଓ ଅନୁଧ୍ୟାନର ବିଷୟ । ସେତେବେଳେ ମୁଁ ଏ ସବୁ ଆଲୋଚନାରେ ଅଂଶଗ୍ରହଣ କରିବା ଭଳି ଆତ୍ମବିଶ୍ୱାସ ହାସଲ କରି ନଥାଏ । ମାତ୍ର ସେତେବେଳେ ମୁଁ ଭାବିଥିଲି ଯେ, ଦଲାଇଲାମାଙ୍କଠାରେ କୌଣସି ଆଧ୍ୟାତ୍ମିକତା ନାହିଁ ଓ ଯଦି ବା କିଛି ଅଛି ତେବେ ତାହାଠାରୁ ମାଓ-ସେ-ତୁଙ୍ଗଙ୍କର ଆଧ୍ୟାତ୍ମିକତା ଢେର ବେଶି ଶ୍ରେଷ୍ଠ । ବିନୋବା ଥରେ ଏକ ଘରୋଇ ଆଲୋଚନା ପ୍ରସଙ୍ଗରେ ମତବ୍ୟକ୍ତ କରିଥିଲେ ଯେ, ତିବ୍ବତରେ ଚୀନ୍‌ର ବିଜୟ ପୁରୁଣା ପରମ୍ପରା ଉପରେ ବିଜ୍ଞାନର ବିଜୟ ।

ଜେ.ପି ଓ ଶଙ୍କରରାଓଜୀ ଯେ ତିବ୍ବତର ପ୍ରଶ୍ନ ଉଠାଇଥିଲେ ତାହା ଭାରତର ସୀମାର ସୁରକ୍ଷା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଥିଲା । ମାତ୍ର ତେଣେ ଚୀନ୍‌କୁ ଅଡୁଆରେ ପକାଇବା ଓ ତେଣେ କୋରିଆ ଯୁଦ୍ଧରେ ଚୀନ୍ ଲିପ୍ତ ଥିବାବେଳେ ଏଣେ ଏକ ଦ୍ୱିତୀୟ ସାମ୍ନାରେ ତାକୁ ଜଡ଼ିତ କରିବା ଦୃଷ୍ଟିରୁ ଏ ପ୍ରଶ୍ନକୁ ତେଜିବାରେ ଆମେରିକାର ମଧ୍ୟ ଆଗ୍ରହ ଓ ସ୍ୱାର୍ଥ ଥିଲା । ଏପରି ଅବସ୍ଥାରେ ଏ ପ୍ରଶ୍ନ ଜଟିଳ ହେଇପଡ଼ିଥିଲା ଓ ସର୍ବୋଦୟ ଭଳି ବୈପ୍ଲବିକ ଓ ଜାଗତିକ ଦୃଷ୍ଟିକୋଣରେ ଆସ୍ଥା ରଖିଥିବା ଏକ ଆନ୍ଦୋଳନର ଅନ୍ୟତମ ନେତା ଯେଉଁ ପ୍ରକାରେ ଏ ପ୍ରଶ୍ନକୁ ଉଠାଇଥିଲେ ସେଥିରେ ସର୍ବୋଦୟର ନୂତନ ଦୃଷ୍ଟିକୋଣ ଓ କର୍ମପନ୍ଥାର କିଛି ଅବଦାନ ଅଛି ବୋଲି ଜଣାପଡ଼ିଥା'ନ୍ତା ଜେ.ପି ଓ ଶଙ୍କରାରାଓଜୀ ତାକୁ ସେ ପ୍ରକାର ଉଠାଇ ପାରି ନ ଥିଲେ ।

ନାଗାଲ୍ୟାଣ୍ଡରେ ଶାନ୍ତିସ୍ଥାପନରେ ଜେ.ପି.ଙ୍କର ଅବଦାନ ଅତୁଳନୀୟ । ସେଠି ଜେ.ପି.ଙ୍କ ଅଧ୍ୟକ୍ଷତାରେ ମାଇକେଲ୍ ସ୍କଟ୍, ନବକୃଷ୍ଣ ଚୌଧୁରୀ ଓ ଅନ୍ୟମାନଙ୍କୁ ନେଇ ଗଢ଼ା ହେଇଥିବା ଶାନ୍ତି ମିଶନ ବିଦ୍ରୋହୀ ନାଗାମାନଙ୍କର ବିଶ୍ୱାସଭାଜନ ହୋଇପାରିଥିଲା ଓ ଶେଷପର୍ଯ୍ୟନ୍ତ ତାହାରି ଚେଷ୍ଟାରେ ସେଠି ପ୍ରଥମେ ବର୍ଷକ ପାଇଁ ଯୁଦ୍ଧ ବିରତି ଘୋଷିତ ହେଲା । ଏ ବିରତି ତା'ପରେ ବର୍ଷକୁ ବର୍ଷ ବଢ଼ାଯାଇ ଶେଷକୁ ସ୍ଥାୟୀ ଶାନ୍ତିରେ ପରିଣତ ହେଲା । କିନ୍ତୁ ଶେଷକୁ ଇନ୍ଦିରା ଗାନ୍ଧୀ ନାଗା ପ୍ରତିନିଧିମାନଙ୍କ ସହିତ ଯେଉଁପରି ବ୍ୟବହାର କଲେ ତାହାକୁ ଶଠତା ଛଡ଼ା ଆଉ କ'ଣ କୁହାଯିବ ? ସେମାନଙ୍କ ସହିତ ଆଲୋଚନା କରିବା ପାଇଁ ସେମାନଙ୍କୁ ଦିଲ୍ଲୀ ଡକା ହେଲା, ମାତ୍ର ଥରେ ଦୁଇଥର ଉପରଠାଉରିଆ କଥାବାର୍ତ୍ତା ପରେ ଆଲୋଚନା ଭାଙ୍ଗି ଦିଆଗଲା । ତେଣେ ଦମନର ଧମକ ଦିଆଗଲା । ସେତେବେଳକୁ ବିଦ୍ରୋହୀମାନଙ୍କ ଶକ୍ତି ଛିନ୍ନ ବିଚ୍ଛିନ୍ନ ହେଇଗଲାଣି ।

ତେଣୁ ସବୁ ଶାନ୍ତ ରହିଲା, ମାତ୍ର ସେ ଲୋକଙ୍କ ଉପରେ ଏପରି ଆଚରଣର ପ୍ରଭାବ କ'ଣ ହେଉଥିବ ?

ସାରା ନାଗା ସମସ୍ୟା ବିଷୟରେ ଏଠି ଚର୍ଚ୍ଚା କରିବା ସମ୍ଭବ ନୁହେଁ । କିନ୍ତୁ ଏ ସମସ୍ୟାର ଅନୁଧ୍ୟାନ କଲେ ଆମ ଦେଶର ଶାସନ କିପରି ଜଡ଼ ବୁଦ୍ଧି ଓ ସାଧାରଣ ଲୋକଙ୍କ ପ୍ରତି ତାଚ୍ଛଲ୍ୟ ଓ ଅବଜ୍ଞାରେ ପରିପୂର୍ଣ୍ଣ ତାହାର ପ୍ରମାଣ ପଦେ ପଦେ ମିଳିବ । ନାଗାଲ୍ୟାଣ୍ଡଟା ଭାରତର । ନାଗାଲ୍ୟାଣ୍ଡମାନେ ସେଠାର ଜମି, ସେଠାର ମଣିଷ ନୁହନ୍ତି । ମଣିଷଙ୍କୁ ମାରି ଦଳଚକଟି ସେ ଜମିଟାକୁ ଦଖଲରେ ରଖିବାକୁ ହେବ । ଆଉରଙ୍ଗଜେବ ବା ଗଜନୀର ମହମ୍ମଦ ନିଜ ସାମ୍ରାଜ୍ୟକୁ ଯେଉଁ ଦୃଷ୍ଟିରେ ଦେଖୁଥିଲେ ଆଜିର ସ୍ୱାଧୀନ ଭାରତର ଦିଲ୍ଲୀଶ୍ୱରମାନଙ୍କର ଦୃଷ୍ଟି ମଧ୍ୟ ତାହାଠାରୁ କିଛି ଭିନ୍ନ ନୁହେଁ । ଆଉରଙ୍ଗଜେବ ହିନ୍ଦୁମାନଙ୍କ ଉପରେ ଯେଉଁଭଳି ଅତ୍ୟାଚାର କରୁଥିଲେ ବୋଲି ଏବେ ତିନିଶହ ବର୍ଷ ପରେ ବି ହିନ୍ଦୁରାଷ୍ଟ୍ରବାଦୀମାନେ ଗଣ୍ଠି କରି ଧରିଛନ୍ତି ଓ ସେଥିଯୋଗୁଁ ମୁସଲମାନମାନଙ୍କ ବିରୋଧରେ ସେମାନଙ୍କ ମନରେ ଆକ୍ଷେପ ରହିଛି ତାହାଠାରୁ ଢେର ବେଶି ଜଘନ୍ୟ ଅତ୍ୟାଚାର ସ୍ୱାଧୀନ ଭାରତର ସେନା ଓ ପୁଲିସ୍ ଦ୍ୱାରା ନାଗାଲ୍ୟାଣ୍ଡରେ ହେଉଛି । ହଜାର ହଜାର ଗ୍ରାମବାସୀଙ୍କୁ ଜବରଦସ୍ତି ସେମାନଙ୍କ ଘରୁ ଉଚ୍ଛେଦ କରାଯାଇ ସେମାନଙ୍କୁ ନେଇ ନୂଆ ଜାଗାରେ କଣ୍ଟାତାରର ବାଡ଼ ଓ ସଙ୍ଗୀନଧାରୀ ଫଉଜଘେରା ବସତିରେ ରଖା ହେଉଥିଲା । ଏ ବସତି ଏପରି ଜାଗାରେ ଯେ, ତାହାର ଜଳବାୟୁ ନାଗାମାନଙ୍କର ସ୍ୱାସ୍ଥ୍ୟପ୍ରତି ପ୍ରତିକୂଳ । ନାଗା ଓ ଅନ୍ୟ ଆଦିବାସୀଙ୍କ ଭିତରେ ସ୍ତ୍ରୀଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କଳ୍ପନା ସୁଦ୍ଧା ନାହିଁ । ଏ କୃତ୍ୟଟା ସାମନ୍ତବାଦୀ ସଭ୍ୟତାର ଅବଦାନ । ନାଗାଲ୍ୟାଣ୍ଡରେ ଆମର ପୁଲିସ୍ ଓ ଫୌଜଙ୍କ ଦ୍ୱାରା ଶହ ଶହ ସ୍ତ୍ରୀଲୋକଙ୍କ ଉପରେ ପାଶବିକ ଅତ୍ୟାଚାର କରାଯାଇଛି । ଏ ସବୁ ଚାଲିଥିଲା ଶାନ୍ତି ଓ ଗଣତନ୍ତ୍ରର ଡିଣ୍ଡିମ ବଜାଉଥିବା ଓ ରାଜଘାଟରେ  ଗାନ୍ଧୀ ସମାଧି ପାଖରେ ବସି ବର୍ଷରେ ଥରେ ସୂତା କାଟୁଥିବା ଶାସକମାନଙ୍କର ତତ୍ତ୍ୱାବଧାନରେ ।

ବିନୋବା ନାଗା  ସମସ୍ୟା ବିଷୟରେ ସବୁ ଶୁଣୁଥିଲେ । ମାତ୍ର କୌଣସି  ସମୟରେ ସେ ବିଷୟରେ ଖାସ୍ ଆଗ୍ରହ ଦେଖାଇଥିବାର ମୋର ମନେ ପଡୁନାହିଁ । ମୋର ମନେହେଉଥିଲା ଯେ, ସେଠି ଯାହା କିଛି କାମ ଚାଲିଥାଏ ତାକୁ ଅନାସକ୍ତ ବା ଉଦାସୀନ ଭାବରେ ଦେଖୁଥା'ନ୍ତି । ବରଂ ମୋର ମନେପଡୁଛି ଥରେ ସେ ଏକ ଉଡ଼ା ମନ୍ତବ୍ୟ କଲେ ଯେ ନାଗାଲ୍ୟାଣ୍ଡରେ ଲୋକ କେତେ ହେବେ ? ସାଢ଼େ ତିନି ଲକ୍ଷ ? ଭାବଟା ମୋର ମନେହେଲା ଯେମିତି- ଏତିକି ଲୋକଙ୍କ ପାଇଁ ଏତେ ଲାଗିବାର କ'ଣ ଅଛି ? କଥାଟାରେ ସେତେବେଳେ ମୋ ମନରେ ଝଟକା ଲାଗିଥିଲା । ମାତ୍ର ସେ ବିଷୟରେ ଆଲୋଚନା କରି ସ୍ପଷ୍ଟୀକରଣ କରିପାରି ନ ଥିଲି । ସଢ଼େ ତିନି ଲକ୍ଷ ହୁଅନ୍ତୁ ବା ସାଢ଼େ ତିନିଜଣ ସେମାନଙ୍କର ମନୁଷ୍ୟତ୍ୱ ଓ ନାଗରିକ ଅଧିକାରର ପ୍ରଶ୍ନର ସାରା ଦେଶ ପକ୍ଷରେ ନୈତିକ ମହତ୍ତ୍ୱ ରହିଛି । ପ୍ରାୟ ଶହେ ବର୍ଷତଳେ ଡେଫୁସ୍ ନାମକ ଜଣେ ସାମରିକ କର୍ମଚାରୀ ଏକ ମିଥ୍ୟା ମକଦ୍ଦମାରେ ଦଣ୍ଡିତ ହେବା ଘଟଣା ନେଇ ସାରା ଫ୍ରାନ୍ସ

ଦେଶରେ ହୁଲସ୍ଥୁଲ ପଡ଼ିଯାଇଥିଲା । ତାକୁ ନ୍ୟାୟ ଦିଆଯିବା ପାଇଁ ସାରା ଦେଶବ୍ୟାପୀ ବିପୁଳ ଆନ୍ଦୋଳନ ଦୀର୍ଘ କାଳ ଧରି ଚାଲିଥିଲା ଓ ଶେଷରେ ସେ ଅନ୍ୟାୟର ପ୍ରତିକାର ହାସଲ ହେଇଥିଲା । ଏ ଆନ୍ଦୋଳନର ଅଲିଭା ଛାପ ଏବେ ବି ଫ୍ରାନ୍ସର ନାଗରିକଙ୍କର ଚରିତ୍ର ଉପରେ ଥିବ ।

## ଏକାଗ୍ରତା ବନାମ ବିବିଧତା

ଜେ.ପି.ଙ୍କର ଏସବୁ ବିବିଧ ବିଷୟରେ ରୁଚି ଓ ଆଗ୍ରହରେ ସର୍ବ ସେବା ସଂଘ ମଧ୍ୟ ଜଣା ଅଧିକେ ଭାଗୀ ଥାଏ । ଉଚ୍ଚଦରର କର୍ମୀମାନେ ଜେ.ପି.ଙ୍କ ସ୍ପୃହା ଓ ନିଜର ମଧ୍ୟ ରୁଚି ଯୋଗୁଁ ସେ ସବୁ କାମରେ ସମୟ ଦେଉଥା'ନ୍ତି । ଡକ୍ଟର ଆରମ୍-ତାମିଲନାଡୁର ଜଣେ ଯୁବକ ଓ ଉଚ୍ଚଯୋଗ୍ୟତାସମ୍ପନ୍ନ କର୍ମୀ -ଯାଇ ନାଗାଲ୍ୟାଣ୍ଡରେ ବସିଲେ । ଗୋବିନ୍ଦରାଓ ଦେଶପାଣ୍ଡେ ଦିନାକେତେ କାଶ୍ମୀରରେ ସମୟ ଦେଲେ । ରାଧାକୃଷ୍ଣ ଓ ନାରାୟଣ ବିଭିନ୍ନ ଆନ୍ତଃରାଷ୍ଟ୍ରୀୟ ଶାନ୍ତି ସମ୍ମିଳନୀ ଓ ବୈଠକରେ ଯୋଗ ଦେବାପାଇଁ କେତେଥର ବିଦେଶ ଗଲେ । ସୀମାନ୍ତ ଅଞ୍ଚଳରେ ସେବାକେନ୍ଦ୍ର ଖୋଲା ହେବାରୁ ସେଥିରେ ମଧ୍ୟ କେତେକ ଭଲ ଭଲ କର୍ମୀ ଯାଇ ରହିଲେ । ଏସବୁ କାମର ଦାୟିତ୍ୱ କେତେ ଅଂଶରେ ସର୍ବ ସେବା ସଂଘ ଅଫିସ୍ ଉପରେ ମଧ୍ୟ ପଡ଼ିଲା । ଏସବୁ ଫଳରେ ଆମର କେତେକ ସାଥୀ ଅନୁଭବ କଲେ ଯେ, ସର୍ବ ସେବା ସଂଘ ଗ୍ରାମଦାନରୂପୀ ମୌଳିକ ବିପ୍ଳବର କାମ ପ୍ରତି ଅବହେଳା କରୁଛି ଓ ଅନ୍ୟକାମରେ ଶକ୍ତି ବରବାଦ କରୁଛି । ବିନୋବାଙ୍କ ଧାରଣା ମଧ୍ୟ ଆପେ ଆପେ ଏ ପ୍ରକାରର ହେଲା କି ତାଙ୍କ ଆଗରେ କଥାଟାର ସେପରି ଚିତ୍ରଣ କରି ତାଙ୍କୁ ସେ ଦିଗରେ ପ୍ରଭାବିତ କରାଗଲା ତାହା କହିବା କଷ୍ଟ, କିନ୍ତୁ ସେ ମଧ୍ୟ ସେହିପରି ଅନୁଭବ କରିବାର ମନେହେଲା ।

ମୁଁ ନିଜେ ଗ୍ରାମଦାନର ବୈପ୍ଳବିକ ସମ୍ଭାବନାରେ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରୁଥାଏ । ୧୯୫୮-୬୦ରେ ବିଭିନ୍ନ ସୂତ୍ରରୁ ମିଳୁଥିବା ବିବରଣୀରୁ ଚୀନ୍‌ର ଜନତା ଭିତରେ କି ପ୍ରକାରର ଉତ୍ସାହ ଓ ଅଭିକ୍ରମ ଜାଗ୍ରତ ହେଇଛି ତା'ର ଆଭାସ ମିଳୁଥାଏ । ରାମକୃଷ୍ଣ ପାଟିଲ, ଯେ ୧୯୪୨ ରେ ଆଇ.ସି.ଏସ୍ ଚାକିରୀରୁ ଇସ୍ତଫା ଦେଇଥିଲେ, ସ୍ୱାଧୀନତାପରେ ଯୋଜନା କମିଶନ୍ ସଦସ୍ୟ ଓ ଭାରତ ସରକାରଙ୍କର ଖାଦ୍ୟ କମିଶନ୍‌ର ଥିଲେ ଓ ପରେ ସେ ସବୁ ଛାଡ଼ି ସର୍ବୋଦୟ ଆନ୍ଦୋଳନରେ ମିଶିଲେ । ୧୯୫୦ରେ ଚୀନ୍‌ର ସମବାୟ ଆନ୍ଦୋଳନ ଅଧ୍ୟୟନ କରିବା ପାଇଁ ଭାରତ ସରକାରଙ୍କ ଏକ ପ୍ରତିନିଧି ମଣ୍ଡଳରେ ସେ ଚୀନ୍ ଯାଇଥିଲେ ଓ ସେଠୁ ଫେରି ତାଙ୍କର ଅଭିଜ୍ଞତା ବିଷୟରେ ଖଣ୍ଡେ ବହି ଲେଖିଥିଲେ । ବ୍ରିଟିଶ୍ ଶ୍ରମିକ ଦଳର ଜଣେ ବିଶିଷ୍ଟ ସଦସ୍ୟ ରିଚାର୍ଡ୍ କ୍ରସ୍‌ମ୍ୟାନ୍ ୧୯୫୮ ରେ ଚୀନ୍ ଯାଇ ସେଠା କମ୍ୟୁନ୍ ବିଷୟରେ କେତୋଟି ପ୍ରବନ୍ଧ ଲେଖିଥିଲେ । ଏହିପରି ସବୁ ଅଣକମ୍ୟୁନିଷ୍ଟ ସୂତ୍ରରୁ ମିଳୁଥିବା ଅନେକ ବିବରଣୀରୁ ସେଠାର ଜାଗୃତିର ଏକ ନିର୍ଭରଯୋଗ୍ୟ ଚିତ୍ର ମିଳୁଥାଏ । ଏଠି ମଧ୍ୟ ଜନତା ଭିତରେ ସେହିଭଳି ଜାଗୃତି ଆଣିବାର ମୋର ଆକାଙ୍କ୍ଷା ଏହାଦ୍ୱାରା ତୀବ୍ରତର ହେଉଥାଏ । ଗ୍ରାମଦାନ ମାଧ୍ୟମରେ ଏହା

ହୋଇପାରିବ ବୋଲି ମୋର ପୂର୍ଣ୍ଣ ଆସ୍ଥା ଥାଏ ଓ ଏବେ ବି ଅଛି । ସେତେବେଳେ ମୋର ବକ୍ତୃତାର ଗୋଟାଏ ନୂଆ ଖିଲ ଯେ, ଚୀନ୍ ବିପ୍ଲବରେ ଯେଉଁ ଆଲୋକ ପ୍ରକଟ ହେଉଛି ତାକୁ ଗୋଟାଏ ପେଟ୍ରୋମାକ୍ସ ସହିତ ତୁଳନା କରାଯିବ ତ ଭାରତରେ ଅହିଂସା ମାଧ୍ୟମରେ ଯେଉଁ ଜନଶକ୍ତି ପ୍ରକଟ ହେବ ତାହା ଏକ ସୂର୍ଯ୍ୟୋଦୟ ପରି ହେବ । ଏବେ ବି ମୁଁ ଏହି ସମ୍ଭାବନାରେ ବିଶ୍ୱାସ କରେ ।

ଯାହାହେଉ ମୁଁ ମଧ୍ୟ ପ୍ରଥମ ପ୍ରଥମ ବିଚାରୁଥିଲି ଯେ ଏତେପ୍ରକାର ସମସ୍ୟା ପଛରେ ଗୋଡ଼େଇ ପ୍ରତ୍ୟେକ ବାବଦରେ କିଛି ନା କିଛି ପ୍ରତ୍ୟକ୍ଷ କରିବା ଚେଷ୍ଟାଦ୍ୱାରା ଶକ୍ତି ବିକ୍ଷିପ୍ତ ହେଉଛି, କିନ୍ତୁ କ୍ରମେ ମୁଁ ଏସବୁ ବିଭିନ୍ନ ସମସ୍ୟାର ଗୁରୁତ୍ୱ ଅଧିକ ଉପଲବ୍ଧି କଲି । ସର୍ବୋଦୟ ଆନ୍ଦୋଳନ ଭିତରେ ଗ୍ରାମଦାନର ଗୁରୁତ୍ୱ ସର୍ବୋପରି ବୋଲି ମାନି ନେଲେ ମଧ୍ୟ କେବଳ ପ୍ରସ୍ତାବ ପାସ୍ କରି ବା ନୀତି ବଖାଣି ସମସ୍ତଙ୍କୁ ତାହା ଉପରେ ଏକାଗ୍ର କରି ହେବ ନାହିଁ । ସେଥିପାଇଁ ହାୱା ସୃଷ୍ଟି କଲେ ଯାଇ ତାହା ହେବ, କେବଳ ଅନ୍ୟମାନଙ୍କୁ ଦୋଷ ଦେଲେ ଏ ହାୱା ସୃଷ୍ଟି ହେବ ନାହିଁ । ଏହାଛଡ଼ା ସର୍ବୋଦୟ ଭଳି ବ୍ୟାପକ, ଅହିଂସ ଆନ୍ଦୋଳନରେ, ଯାହା ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ଛୁଉଁଛି, କେବଳ ଜେ.ପି. କାହିଁକି ପ୍ରତ୍ୟେକ କର୍ମୀର ବିଶିଷ୍ଟ ରୁଚି ଓ ସ୍ପୃହାର ପରିପ୍ରକାଶ ପାଇଁ ସୁଯୋଗ ରହିବା ଆବଶ୍ୟକ । ଏହାଦ୍ୱାରା ଆନ୍ଦୋଳନରେ ବିକ୍ଷେପ ସୃଷ୍ଟି ହେବା ପରିବର୍ତ୍ତେ ତାହା ସମୃଦ୍ଧ ହେବାର ସମ୍ଭାବନା ରହିଛି । ଜେ.ପି. ଯେଉଁ ସବୁ ବିଭିନ୍ନ ରାଷ୍ଟ୍ରୀୟ ଓ ଜାଗତିକ ପ୍ରଶ୍ନରେ ସ୍ପୃହା ଦେଖାଇଛନ୍ତି ଓ ଲିପ୍ତ ହେଉଛନ୍ତି ତାହାଦ୍ୱାରା ସର୍ବୋଦୟ ଆନ୍ଦୋଳନର ହିଁ ପ୍ରତିଷ୍ଠା ବଢ଼ିଛି ।

ବିନୋବା ୧୯୬୩ ପଶ୍ଚିମବଙ୍ଗ ଓ ଓଡ଼ିଶାରେ ପଦଯାତ୍ରା ସାରି ବର୍ଷର ଶେଷ ସପ୍ତାହରେ ରାୟପୁରଠାରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ଯୋଗ ଦେଲେ ଓ ସେଠୁ ମଧ୍ୟପ୍ରଦେଶ ଦେଇ ପଉନାର ଆଶ୍ରମକୁ ଫେରିଲେ । ସେଠି କିଛିଦିନ ରହି ପୁଣି ପଦଯାତ୍ରାରେ ବାହାରିବା ବେଳକୁ ତାଙ୍କର ମୁଣ୍ଡ ବୁଲାଇବା ବ୍ୟାଧି ପ୍ରବଳ ହେଲା । ଆଗରୁ ଅଳ୍ପ ଅଳ୍ପ ମୁଣ୍ଡ ଏତେ ବୁଲାଇଲା ଯେ ଚାଲିବା ତ ଦୂରର କଥା ବିଛଣାରୁ ଉଠି ବସିବା କଠିନ ହେଲା । ତଥାପି ତାଙ୍କର ପଦଯାତ୍ରାରେ ବାହାରିବାର ଆଗ୍ରହ ଥାଏ । ମୁଣ୍ଡବୁଲା ବନ୍ଦ ହେଇଯିବା ପରେ ପୁଣି ଚାଲିବାର ଆଗ୍ରହ କରୁଥା'ନ୍ତି । କିନ୍ତୁ ଦେଖାଗଲା ଯେ ଅଳ୍ପଟିକିଏ ଚାଲିବା ପରେ ପୁଣି ମୁଣ୍ଡବୁଲା ଆରମ୍ଭ ହେଉଛି । ପଦଯାତ୍ରା ବନ୍ଦ କରିଦେବା ଲାଗି ସମସ୍ତେ ତାଙ୍କୁ ବୁଝାଇବାରେ ଲାଗିଥା'ନ୍ତି, ମାତ୍ର ସେ କାହାରି କଥା ଶୁଣୁନଥା'ନ୍ତି । ସଂଯୋଗକୁ ମୁଁ ସେତେବେଳେ ତାଙ୍କ ଗ୍ରହଣରେ ଉପସ୍ଥିତ ଥିଲି । ମୁଁ ବି ତାଙ୍କୁ ଖଣ୍ଡେ ଲେଖିକରି ଦେଲି ଯେ, ଆପଣଙ୍କର ଏ ରୋଗ ଯୋଗୁଁ ଏ ପଦଯାତ୍ରାରେ ଆପଣଙ୍କର ସାଥୀ ତଥା ଅନ୍ୟମାନଙ୍କ ବି ବହୁତ ଅସୁବିଧା ଓ କଷ୍ଟ ହେଉଛି ଓ ହେବ । ତେଣୁ ଆପଣ ଅନୁଗ୍ରହ କରି ପଦଯାତ୍ରା ବନ୍ଦ ରଖିଲେ ସେମାନଙ୍କ ପ୍ରତି ଏକ ଦୟାର କାର୍ଯ୍ୟ ହେବ । ମୋର ଏ ଅନୁରୋଧଟା କେଜାଣି କେମିତି ତାଙ୍କର ମନକୁ ପାଇଲା ଓ ସେ ପଦଯାତ୍ରା ସ୍ଥଗିତ ରଖିଲେ ।

# ହିମାଚଳ ପ୍ରଦେଶରେ

ସୁବିଧା ଦେଖି ମୁଁ ମଝିରେ ମଝିରେ ବିନୋବାଙ୍କ ସାଙ୍ଗରେ ପଦଯାତ୍ରାରେ ଦୁଇ ଚାରିଦିନ ଲେଖାଁ ରହି ଆସୁଥିଲି । ୧୯୫୯ ରେ ସେ ହିମାଚଳ ପ୍ରଦେଶରେ ବୁଲୁଥିବାବେଳେ ଏହିପରି ଆଠଦିନ ରହିଥିଲି ଓ ସେତେବେଳେ ସତ୍ୟାଗ୍ରହ ବିଷୟରେ ବହୁତ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହେଇଥିଲା । ପଠାନକୋଟରେ ସର୍ବ ସେବା ସଂଘ ଅଧିବେଶନ ହେବାର ଥାଏ । ମୁଁ ସେଠିକି ଯିବା କଥା ବିଚାରି ନଥିଲି । ସେହି ସମୟରେ ଓଡ଼ିଶାରେ କର୍ମୀମାନଙ୍କର ଏକ ଶିବିର ଅନୁଗୁଳକୁ ଡକା ହୋଇଥାଏ । ମୁଁ ତା'ର ପ୍ରଧାନ ଉଦ୍ୟୋକ୍ତା ଥାଏ । କଲିକତାକୁ ମୁଁ ଗୋଟାଏ କି କାମରେ ଯାଇଥିଲି । ସେଠି ହଠାତ୍ ପଠାନକୋଟ ଯିବା ଖିଆଲ ଉଠିଲା ଓ ଚାରୁଦାଙ୍କଠାରୁ କିଛି ଟଙ୍କା ଧାର କରି ଚାଲିଗଲି । ଏଣେ ଶିବିର ପାଇଁ ଉପସ୍ଥିତ କର୍ମୀମାନଙ୍କୁ ଦାଦା ହେରିକା କୌଣସିମତେ ସମ୍ଭାଳି କାମ ଚଳେଇନେଲେ ।

ପଠାନକୋଟରୁ ଆଗକୁ ପଦଯାତ୍ରା ଚାଲିଲା, ଏକାବେଳେ ହିମାଳୟର କୋଳ ଭିତରକୁ । ଏ ଅଞ୍ଚଳକୁ ମୋର ଆସିବା ଏଇ ପ୍ରଥମ । ଏ ଅଞ୍ଚଳଟା ହିମାଳୟର ପାଦଦେଶ । ପାଞ୍ଚ ସାତ ହଜାର ଫୁଟ ଉଚ୍ଚ ପର୍ବତମାଳା ମଝିରେ ଆମର ବାଟ । ତା'ପଛକୁ ଆହୁରି ଅଧିକ ଉଚ୍ଚ ପର୍ବତର ଶୃଙ୍ଗ ଦେଖାଯାଉଥାଏ । ପଦଯାତ୍ରା ପକ୍କା ରାସ୍ତା ଧରି ଚାଲିଥାଏ । ସାନ ସାନ ଗାଁ ବା ବଜାରରେ ଇସ୍କୁଲ ଘର ବା ଡାକବଙ୍ଗଳାରେ ରହଣି ହେଉଥାଏ । ଏ ପାହାଡ଼ିଆ ଅଞ୍ଚଳରେ ଜନବସତି କମ୍ ; ସକାଳେ ପଦଯାତ୍ରା ବେଳେ ବିଶେଷ ଭିଡ଼ ନଥାଏ । ସେତିକିବେଳେ ପ୍ରତିଦିନ ବିନୋବାଙ୍କ ସାଙ୍ଗରେ ସତ୍ୟାଗ୍ରହର ବିବିଧ ବିଭାବ ନେଇ ଆଲୋଚନା ଯଥେଷ୍ଟ ପୁଙ୍ଖାନୁପୁଙ୍ଖ ଭାବରେ ହେଇଥିଲା ।

ପ୍ରତିରୋଧମୂଳକ ସତ୍ୟାଗ୍ରହର ସ୍ୱାଧୀନତାର ପରବର୍ତ୍ତୀ ଯୁଗରେ ସ୍ଥାନ ବିଷୟରେ ଏଇଠି ପୁଙ୍ଖାନୁପୁଙ୍ଖ ଆଲୋଚନା ହେଇଥିଲା । ନିଷେଧାତ୍ମକ ଓ ବିଧେୟାତ୍ମକ ସତ୍ୟାଗ୍ରହ ଓ ସୌମ୍ୟ, ସୌମ୍ୟତର, ସୌମ୍ୟତମର ପ୍ରକ୍ରିୟା ବିଷୟରେ ମଧ୍ୟ । ବିଧେୟାତ୍ମକ ସତ୍ୟାଗ୍ରହର ସ୍ୱରୂପ ସମ୍ବନ୍ଧରେ ବିନୋବା ଏଇ ଆଲୋଚନା ପ୍ରସଙ୍ଗରେ ମନ୍ତବ୍ୟ କରିଥିଲେ ଯେ, ୧୯୩୨ରେ ଗାନ୍ଧୀଜୀଙ୍କର ହରିଜନ ଉପବାସ ଏକ ବିଧେୟାତ୍ମକ ସତ୍ୟାଗ୍ରହ ଥିଲା । ମାତ୍ର ସେଥିରେ ଏଇ ଦୋଷ ରହିଲା ଯେ ତାହା ଆମରଣ ଥିଲା । ଯଦି ତାହା ନିର୍ଦ୍ଦିଷ୍ଟ ସଂଖ୍ୟକ ଦିନ ପାଇଁ ହେଇଥା'ନ୍ତା ତେବେ ଅଧିକ ସୌମ୍ୟ ହେଇଥା'ନ୍ତା । ଗାନ୍ଧୀଜୀଙ୍କ ଜୀବନହାନି ଆଶଙ୍କାର ଚାପ ତାହାହେଲେ ପଡ଼ିନଥା'ନ୍ତା । ଗୁରୁଦେବ ରବୀନ୍ଦ୍ରନାଥ ସେତେବେଳେ ପୁନା ଚୁକ୍ତିକୁ ମାନିନେଲେ, ମାତ୍ର ପରେ କହିଲେ ଯେ ତାହାଦ୍ୱାରା ବଙ୍ଗଳାରେ ହିନ୍ଦୁଙ୍କର କ୍ଷତି ହେଲା । ଏପରି ହେବାର କାରଣ ତାଙ୍କ ମନରେ ଟିକିଏ ଖୁଞ୍ଚା ରହିଥିଲା ଯେ, ସେ ଚୁକ୍ତିଟା ସେ ଏକ ଭାବପ୍ରବଣତାର ଚାପରେ ମାନିନେଲେ ।

ବିନୋବା ତାମିଲନାଡୁରେ ବୁଲିବାବେଳେ ଓଳିଏ ଲେଖା ଖାଇବା ଆରମ୍ଭ କରିଥିଲେ ଓ ତାହା ସୌମ୍ୟତର ସତ୍ୟାଗ୍ରହର ଏକ ସୋପାନ ବୋଲି ବୁଝାଉଥିଲେ । ମୁଁ ଯୁକ୍ତି କରିଥିଲି ଯେ ଏଭଳି କମ୍ ଖାଇବା କେବେ ସୌମ୍ୟତର ସତ୍ୟାଗ୍ରହର ସୋପାନ ହେଇନପାରେ । ଆଜି ଯେଉଁଟା ସୌମ୍ୟତମ ଦେଖାଯାଉଛି, ଅଧିକ ସୂକ୍ଷ୍ମ ଜ୍ଞାନ ଓ ଅଭିଜ୍ଞତାଦ୍ୱାରା କାଲି ତାଠୁ ବି ଅଧିକ ସୌମ୍ୟ ପନ୍ଥା ଦେଖାଯିବ । ସେହିଟା ହିଁ ଅଧିକ ଫଳପ୍ରଦ ପନ୍ଥାରୂପେ ଚେଣିକି ମାନିନିଆଯିବ । ପୁଣି ତାଠୁଁ ବି ସୌମ୍ୟ ପନ୍ଥା ନ ଦିଶିବାଯାଏ ସେଇଟାଇ ସତ୍ୟାଗ୍ରହର ସାଧାରଣ ପନ୍ଥା ହେଇଯିବ । ମାତ୍ର ଓଳିଏ ଖାଇବା ବା ଉପାସ କରିବା ତ କେବେ ସ୍ଥାୟୀ ପନ୍ଥା ହେଇ ନ ପାରେ । ତେଣୁ ଏ ସୌମ୍ୟତର ପନ୍ଥା ବୋଲି କିପରି କୁହାଯିବ ? ମୋର ଏ ଯୁକ୍ତି ବିନୋବାଙ୍କ ମନକୁ ପାଇଥିଲା ପରି ବୋଧ ହେଲା ।

ପଦଯାତ୍ରା ଚମ୍ବାରେ ପହଞ୍ଚିବା ବେଳକୁ ପ୍ରବଳ ବର୍ଷା ଆରମ୍ଭ ହେଇଗଲା । ଚମ୍ବା ଡାକବଙ୍ଗଳାରେ ଆମେ ଦୁଇଦିନକାଳ ଅଟକି ରହିଗଲୁ । ବର୍ଷାଯୋଗୁଁ ଦିନରାତି ପାହାଡ଼ରୁ ଅତଡ଼ା ଖସୁଥାଏ । ଏକାସାଙ୍ଗରେ ଚାରିପାଞ୍ଚଟା ମାନ୍ଦ୍ରାଜ ମେଲ୍ ନଈ ପୋଲ ଉପରେ ଯିବାଭଳି ଘୋ-ଘୋ ଘଡ଼ଘଡ଼ ଶବ୍ଦକରି ପ୍ରକାଣ୍ଡ ପ୍ରକାଣ୍ଡ ପଥର ସମେତ ଗୋଡ଼ି, ମାଟି, ବାଲି ପାହାଡ଼ କାନ୍ଥରୁ ଖସି ନଈରେ ପଡୁଥାଏ । ପ୍ରତି ଅଧଘଣ୍ଟା ଘଣ୍ଟାରେ ଏଇ ବ୍ୟାପାର । ତୃତୀୟ ଦିନ ବର୍ଷା ଟିକିଏ ଉଣାହେବାରୁ ବିନୋବା ପୁଣି ପଦଯାତ୍ରା ଚାଲୁ କରିବାକୁ ଆଗ୍ରହ କରି ବାହାରିପଡ଼ିଲେ । ମାତ୍ର ବାଟରେ ପାହାଡ଼ରୁ ଖଣ୍ଡେ ସାନ ପଥର ଖସି ଜଣେ ପଦଯାତ୍ରୀଙ୍କ ଦେହରେ ବାଜିବାରୁ ଓ ବାଟଯାକ ଏପରି ପଥର ଖସିବାର ଆଶଙ୍କା ଥିବାରୁ ଅଳ୍ପ ବାଟରୁ ଫେରିଆସି ପୁଣି ଡାକବଙ୍ଗଳାରେ ଅପେକ୍ଷା କଲେ, ପାଗ ପୁରା ଭଲ ହେବାଯାଏ । ସାନ ପଥରଟିଏ ବୋଲି ସେ ପଦଯାତ୍ରୀଙ୍କର ବିଶେଷ କ୍ଷତି ହେଇ ନଥିଲା । ନ ହେଲେ ଏପରି ଅଞ୍ଚଳରେ ରାସ୍ତା ଉପରେ ବଡ଼ ବଡ଼ ଅତଡ଼ା ଖସି ଆରୋହୀ ସମେତ ମଟର ଗାଡ଼ି ପୂରା ଚୁରମାର ହୋଇଯିବାର ଘଟଣା ବିରଳ ନୁହେଁ ।

ହିମାଳୟ ପର୍ବତମାଳା ବିନ୍ଧ୍ୟପର୍ବତ ଓ ଦାକ୍ଷିଣାତ୍ୟ ଅଧିତ୍ୟକା ତୁଳନାରେ ଏକାବେଳକେ ଶିଶୁ । ଏକ କାଳରେ ସେଠି ସମୁଦ୍ର ଥିଲା । ପୃଥିବୀର ତୋପା ଭିତରେ ନାନା ପ୍ରକାରର ଚାପ ସୃଷ୍ଟି ହେଇ କ୍ରମେ ସେ ସମୁଦ୍ର ଭିତରୁ ପର୍ବତ ମୁଣ୍ଡ ଟେକିଛି । ସେଥିପାଇଁ ହିମାଳୟଟା ବିନ୍ଧ୍ୟ ଆଦି ପରି ଟାଣୁଆ ଆଗ୍ନେୟ ପଥରରେ ଗଢ଼ା ନୁହେଁ । ମାଟି, ଗୋଡ଼ି ଓ ବାଲିଗରଡ଼ା ଭଳି ଟିକେ ଚିକ୍କଣ ହେଇ ଆସିଥିବା ସାନବଡ଼ ପଥର ମୁଣ୍ଡାରେ ଗଢ଼ା । ବର୍ଷା ହେଲେ ସହଜରେ ଧୋଇଯାଏ, ଭୁଷୁଡ଼ି ପଡ଼େ । ମୁଁ ସେଠି ଫେରିବା ଦିନ ବି ରାସ୍ତା ଏକ ଅତଡ଼ା ଖସି ବନ୍ଦ ହେଇ ରହିଥିଲା । ଦୁଇ ପାଖର ବସ୍ ସେଇଠି ଯାତ୍ରୀ ଓ ମାଲପତ୍ର ଅଦଳ ବଦଳ କରି ପୁଣି ଫେରିଚାଲୁଥିଲେ ।

ଏଇସମୟରେ ଗୋରାଜୀ ବି କେତେଦିନ ସାଙ୍ଗରେ ଥିଲେ । ଆମେ ସମସ୍ତେ ଦିନେ ଗୋଟିଏ ଜିପ୍ ଯୋଗାଡ଼ କରି ଡାଲହାଉସୀ ବୁଲିଗଲୁ । ପ୍ରାୟ ସାତ ହଜାର ଫୁଟ ଉଚ୍ଚରେ ଥିବା

ଗୋଟିଏ ସହର ସିମଲା, ଦାର୍ଜିଲିଂ ପରି **ଏକ ଗ୍ରୀଷ୍ମ** ନିବାସ । ସହରଟି ବେଶି ବଡ଼ ନୁହେଁ । ସେତେବେଳେ ପର୍ଯ୍ୟଟକମାନଙ୍କର ଆସିବା ମୌସମ ନ ହେଇଥିବାରୁ ଭିଡ଼ କମ୍ ଥାଏ । ସହରଟି ଖୁବ୍ ଭଲ ଲାଗିଲା ଓ ସେଠୁ ହିମାଳୟର ତୁଷାରଶୃଙ୍ଗମାଳା ବି ଦେଖାଗଲା । ଆମେ ବୁଲାବୁଲି କରି ଗୋଟାଏ ଦୋକାନରେ ଚା ଜଳଖିଆ ଖାଇଲୁ । ସେଠି ମୋର ଚା ଓ କଫି ନ ଖାଇବା ନେଇ କିଞ୍ଚିତ ଆଲୋଚନା ହେଲା ଓ ଗୋରାଜୀ ଏକ ଲମ୍ବା ବକ୍ତୃତା ଦେଇ ମତେ ବୁଝାଇଲେ ଯେ, ଖାଇବା ପିଇବାରେ ଏତେ ବାଛ ବିଚାର ରଖିବା ଉଚିତ ନୁହେଁ । ଯେ ଯାହା ଯାଚିବ ତାହା ଖାଇବା ପିଇବା ଚାହି ନହେଲେ ଲୋକଙ୍କ ସାଙ୍ଗରେ କେମିତି ଏକାତ୍ମ ହେବ ।

ସେଠୁ ବାହାରି ଦୃଶ୍ୟ ଦେଖି ଦେଖି ଚାଲୁଥିଲୁ । ଏତିକିବେଳେ କାଶ୍ମୀରୀ ଶ୍ରମିକମାନଙ୍କୁ ଦେଖିଲୁ ପିଠିରେ ବିରାଟ ବଡ଼ କାଠ ସିଲପଟମାନ ବାନ୍ଧି ପାହାଡ଼ିଆ ରାସ୍ତାରେ ଉପରକୁ ଚଢୁଛନ୍ତି । ଲୁଗାପଟା ଛିଣ୍ଡା କୋଟଟ । ଗୋଡ଼ରେ ଛିଣ୍ଡା ଅଖା ବନ୍ଧା ହେଇଛି, ଜୋତା ବା ଚପଲ ଅଭାବରେ । ବୋଝରେ ପିଠି ଏକାବେଳକେ ଦବିଯାଇଛି । ଏଇ ଦୃଶ୍ୟ ଉପରେ ଗୋରାଜୀ ଖୁବ୍ ଉତ୍ତେଜିତ ଭାବରେ ନିଜର ଦୁଃଖ ଓ କ୍ଷୋଭ ତୀବ୍ର ଭାଷାରେ ପ୍ରକାଶ କରୁଥା'ନ୍ତି ; ପଛଆଡୁ ତିନି ଚାରିଜଣ ଆଧୁନିକ ଯୁବକ ଆସୁଥିଲେ । ଏସବୁ କଥା ଶୁଣି ଶୁଣି କିଛି ସମୟ ଆମ ପଛେ ପଛେ ଚାଲିଲେ । ତା'ପରେ ଆଗେଇଆସି ଜଣେ ଗୋରାଜୀଙ୍କୁ ପଚାରିଲା - "ଆପଣ କ'ଣ କମ୍ୟୁନିଷ୍ଟ ?" ସେ ପଚାରିଲେ - "ଏ କଥା କାହିଁକି ଭାବୁଛ ?" "ଆପଣ ଗରିବ ଲୋକଙ୍କ ସପକ୍ଷରେ ଏତେ କହୁଛନ୍ତି ?" କ୍ରମେ ଏ ପିଲାଙ୍କ ସାଙ୍ଗରେ ଦୋସ୍ତି ଜମିଗଲା ଓ ଖୁବ୍ ଗପସପ ଚାଲିଲା । ଅଳ୍ପ ଆଗକୁ ଯାଇ ପଡ଼ିଲା ଗୋଟିଏ 'ଗ୍ରୀନ୍ ବାର' । ପିଲା ପଞ୍ଚାକ ତାହା ଭିତରକୁ ମୁହାଁଇଲେ ଓ ବନ୍ଧୁତାର ଆତିଶଯ୍ୟରେ ଗୋରାଜୀଙ୍କୁ କୁଣ୍ଢେଇଧରି ଟାଣିଲେ ତାଙ୍କ ସାଙ୍ଗରେ ଯାଇ ଟୋପାଏ ପକେଇବାକୁ । ଗୋରା ଯେତେ ନାହିଁ କଲେ କ'ଣ ହେବ, ପିଲାଏ ଛାଡୁଛନ୍ତି କେଉଁଠି ସହଜରେ । ଶେଷକୁ ଯେତେବେଳେ ଗୋରାଜୀ କୌଣସିମତେ ସେମାନଙ୍କ କବଳରୁ ଖସିଆସିଥଲେ ଆମେ ତାଙ୍କୁ ଟିହେଇଲୁ ଯେ ଆପଣଙ୍କ ବନ୍ଧୁମାନେ ଏତେ ନେହୁରା ହୋଇ କହୁଥିଲେ, ଆପଣ ସେମାନଙ୍କର ଅନୁରୋଧ ରକ୍ଷା ନ କଲେ କାହିଁକି ? ଆପଣଙ୍କର ଜନସଂପର୍କର ତତ୍ତ୍ୱଜ୍ଞାନ କୁଆଡ଼େ ଗଲା ?

## ଉତ୍ତରାଖଣ୍ଡରେ

ସର୍ବ ସେବା ସଂଘରେ ଅଧ୍ୟକ୍ଷ ହେବାପରେ ଦେଶର ପ୍ରାୟ ସବୁଆଡ଼େ ମୋର ବୁଲିବା ଆବଶ୍ୟକ ହେଇଥିଲା ଓ ସୁଯୋଗ ମିଳିଥିଲା । ଏଥିଭିତରୁ ଅଧିକାଂଶ ବୁଲାବୁଲି ସଭାସମିତିମାନଙ୍କରେ ଯୋଗ ଦେବାପାଇଁ କରିବାକୁ ପଡୁଥାଏ । ସେଥିପାଇଁ ଦୁଇ ହଜାର ମାଇଲ ଦୂର ପାହାଡ଼, ବଣ ବା ସମୁଦ୍ର କୂଳ ନିକଟରେ ପହଞ୍ଚି ପୁଣି ଅଧିକାଂଶତଃ ସେହିଲୋକଙ୍କର ଚେହେରା ଦିନ ରାତି ଦେଖିବାକୁ ହୁଏ ଯାହାଙ୍କୁ ଦୁଇ ହଜାର ମାଇଲ ଓ ଦୁଇ ସପ୍ତାହ ପୂର୍ବରୁ

ଦେଖିଆସିଥିଲି । ଏଇସବୁ ସଭା ସମିତି ମାନଙ୍କରେ ଆଖପାଖର ଦେଖିବା ଭଳି ସ୍ଥାନ, ପ୍ରାକୃତିକ ଦୃଶ୍ୟ, ସ୍ଥାନୀୟ ଅନୁଷ୍ଠାନ ଆଦି ବୁଲି ଦେଖିବାକୁ ସମୟ ବାହାର କରୁଁ । ଅନେକ ବୁଲା ପ୍ରଚାର ଉଦ୍ଦେଶ୍ୟରେ ହୁଏ । ଏହାରି ଭିତରେ ହିଁ ସାଧାରଣ ଲୋକଙ୍କ ସହିତ ମିଶିବାର, ସେମାନଙ୍କର ଜୀବନ, ସୁଖଦୁଃଖ, ସମସ୍ୟା ଆଦି ବିଷୟରେ ଜାଣିବା ପାଇଁ ଅଧିକ ସୁଯୋଗ ମିଳେ । ସହରରେ କାର୍ଯ୍ୟକ୍ରମ ଥିଲେ ନାନା ଚିନ୍ତାଶୀଳ ଓ ବୈଚିତ୍ର୍ୟପୂର୍ଣ୍ଣ ବ୍ୟକ୍ତିତ୍ୱଙ୍କ ସହିତ ପରିଚୟ ହୁଏ । ଏସବୁ ଭିତରେ ପଦଯାତ୍ରାରେ ହିଁ ସବୁଠାରୁ ଉପଭୋଗ୍ୟ ଓ ବୈଚିତ୍ର୍ୟପୂର୍ଣ୍ଣ ଅନୁଭୂତି ମିଳୁଥିଲା । ସବୁ ଅଞ୍ଚଳ ଭିତରେ ମତେ ପାହାଡ଼ ହିଁ ସବୁଠୁଁ ଭଲ ଲାଗୁଥିଲା । ୧୯୬୩ ର ସର୍ବୋଦୟ ପକ୍ଷରେ ( ଜାନୁୟାରୀ ୩୦ ଫେବୃୟାରୀ ୧୨ ) ଉତ୍ତରାଖଣ୍ଡର ପାର୍ବତ୍ୟ ଅଞ୍ଚଳରେ ସବୁଠାରୁ ଅନୁଭୂତିପୂର୍ଣ୍ଣ ଓ ଆନନ୍ଦଦାୟକ ପଦଯାତ୍ରାର ସୁଯୋଗ ମତେ ମିଳିଥିଲା ।

ଚମୋଲୀରୁ ପଦଯାତ୍ରା ଆରମ୍ଭ କରି ବାରଦିନ ଯାଏ ସେ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବୁଲିଥିଲୁ । ସେଠାର ବିଶିଷ୍ଟ କର୍ମୀ ସୁନ୍ଦରଲାଲ ବହୁଗୁଣା, ଚଣ୍ଡୀପ୍ରସାଦ ଭାଟ ହେରିକା ସାଙ୍ଗରେ ଥା'ନ୍ତି । ଏ ଅଞ୍ଚଳଟି ହିମାଳୟର ତଳହଟିରେ ଥିବା ସାତ ଆଠ ହଜାର ଫୁଟ ଉଚ୍ଚ ପାହାଡ଼ ଭିତରେ । ଏଇଟାକୁ ଗଢ଼ୱାଲ ଅଞ୍ଚଳ କୁହାଯାଏ । ଲୋକେ ଗଢ଼ୱାଲୀ । ପାହାଡ଼ ଉପରେ ଚାଷଜମି ତ ବହୁତ କମ୍ । ପାହାଡ଼ ତଳେ ନଈକୂଳେ ଆଉ ପାହାଡ଼ କାନ୍ଥିରେ ଅଳ୍ପ ଅଳ୍ପ ଯାହା ଜମି । ଚାଷ ଛଡ଼ା ଆଉ ଗୋଟିଏ ଧନ୍ଦା ହେଲା ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ । ଏଠିକାର ବଣ ହେଲା ଚୀଡ଼, ଦେଓଦାର ପ୍ରଭୃତି ଥଣ୍ଡା ଦେଶର ଗଛର । ସେ ସବୁଥିରୁ ରେଜନି, ତାର୍ପିନ ଆଦି ବାହାରେ, ଯେମିତି ଶାଳଗଛରୁ ଝୁଣା ଓ ଚୂଆ ମିଳେ । ମାତ୍ର ସବୁଠୁଁ ମହତ୍ତ୍ୱପୂର୍ଣ୍ଣ ଧନ୍ଦା ହେଲା ସୈନ୍ୟବାହିନୀରେ ଚାକିରୀ । ଗଢ଼ୱାଲୀ ସୈନ୍ୟ ବୀରତ୍ୱ ପାଇଁ ବିଖ୍ୟାତ ଓ ଇଂରେଜ ଅମଳରୁ ସୈନ୍ୟବାହିନୀରେ ସେମାନଙ୍କର ଏକ ପ୍ରଧାନ ସ୍ଥାନ ରହିଛି । ଯା ଛଡ଼ା ବହୁତ ଲୋକ ତଳମାଳର ସହର, ଦିଲ୍ଲୀ, ଚଣ୍ଡୀଗଡ଼ ପ୍ରଭୃତିରେ ମୂଲ ଲାଗିବାକୁ ଓ ଚାକରବାକର କାମ କରିବାକୁ ଯା'ନ୍ତି । ଏଠାର ଲୋକେ ଦେଖିବାକୁ ବେଶ୍ ସୁନ୍ଦର, ପାହାଡ଼ରେ କାରବାର ହେଉଥିବା ଯୋଗୁଁ ସ୍ୱାସ୍ଥ୍ୟ ଭଲ, ଖୁବ୍ ଚେମେଡା, ମାତ୍ର ବହୁତ ଗରିବ । ଏ ଅଞ୍ଚଳର ଯୁବତୀମାନଙ୍କୁ ଭୁଲେଇ ନେଇ ସହରମାନଙ୍କରେ ବେଶ୍ୟାବୃତ୍ତିରେ ଲଗାଇବାର ଚୋରା କାରବାର ମଧ୍ୟ ଏକ ସମସ୍ୟା ସୃଷ୍ଟି କରିଛି ।

ଗାଁସବୁ ସାଧାରଣତଃ ପାହାଡ଼ କାନ୍ଥିରେ, ଦୁଇପାହାଡ଼ ମଝି ଉପତ୍ୟକାରେ ଅଣଓସାରିଆ ପାହାଡ଼ୀ ନଈ ବହି ଚାଲିଥିବ । ଗାଁ ସାଧାରଣତଃ ତା'ର କିଛିଟା ଉପରେ । ଘର ସବୁର କାନ୍ଥ ପଥରରେ, ପ୍ରାୟ ମାଟି ଗାଂଥେଣୀ । ଛାତ ସିଲଟ ପଥରର, ଟାଇଲ ଭଳି ଚଟକା ଚଟକା ଖଣ୍ଡର, ପାହାଚ ପରି ଥାକକୁ ଥାକ ଘର । ଜଣକର ଛାତ ଉପରେ ଆଉ ଜଣକର ଦାଣ୍ଡ ଦୁଆର । ଶୀତ ଯୋଗୁଁ ଘରେ ଝରକା ପ୍ରାୟ ନ ଥାଏ । ଗୋଟାଏ ଗାଁରୁ ଅନ୍ୟ ଏକ ଗାଁକୁ ଯିବାକୁ ହେଲେ ବହୁତ ଦୁଇ ହଜାର ଫୁଟ ଚଢ଼ି ଗୋଟାଏ ପାହାଡ଼ ପାରି ହେଇ ଆରପାଖରେ

ପୁଣି ତିନି ହଜାର ଫୁଟ ଉତୁରିବାକୁ ହୁଏ । ପାହାଡ଼ କାନ୍ଥରେ ହାତେ ଦେଢ଼ହାତ ଓସାରର ଚଲାବାଟ, ମୁଣ୍ଡକଣ୍ଟା ବା ଇଂରେଜୀ ଜେଡ଼ ପରି ଅଙ୍କାବଙ୍କା । ଅନେକ ଜାଗାରେ ଗ୍ରାମପଞ୍ଚାୟତ ଏ ରାସ୍ତା ରକ୍ଷଣାବେକ୍ଷଣ କରେ ।

ସେତେବେଳେ ଫେବୃୟାରୀ ଆରମ୍ଭରେ ଶୀତର ପ୍ରକୋପ ଟିକେ କମିଲେ ବି ସେ କମିବା ଆମେ ତଳହଟିବାଲାଙ୍କ ପାଇଁ କିଛି ନୁହେଁ । ଗରମ ପୋଷାକ କମ୍ବଳ ସବୁ ପୂରା ରଖିବାକୁ ପଡ଼ିଥାଏ । ସିଦ୍ଧରାଜଙ୍କଠାରୁ ପଶମର ଚୁଡ଼ିଦାର ପାଇଜାମା, ନାରାୟଣଠାରୁ ଓଭରକୋଟ୍ ଓ ବୁଟ୍ ଜୋତା, ଏମିତି ସବୁ ଧାର କରି ସଜ ହେଉଥାଏ । ସ୍ଥାନୀୟ କର୍ମୀଙ୍କ ଛଡ଼ା ଗାୟତ୍ରୀଭାଇ, ମୋର ସହକାରୀ, ମଧ ଥାନ୍ତି । ସୁନ୍ଦରଲାଲ ହେରିକା ତାଙ୍କର ଜିନିଷପତ୍ର ବୋକଚାକରି ପିଠିରେ ବୋହୁଥା'ନ୍ତି । ମୁଁ ମଧ ମୋର ଅଧେ ଜିନିଷ-ଦଶ ସେର ଖଣ୍ଡେ ପିଠିରେ ବୋହୁଥାଏ । ବାକିତକ ବୋହିବା ପାଇଁ ଜଣେ ଲୋକ ଥାଏ । ପ୍ରତିଦିନ ଆମେ ଛ' ସାତ ମାଇଲ ଲେଖା ଚାଲୁଥାଉ । ସକାଳ ପ୍ରାୟ ଆଠଟାରେ ବାହାରି ଦଶଟା ଏଗାରଟା ବେଳକୁ ଗନ୍ତବ୍ୟ ସ୍ଥାନରେ ପହଞ୍ଚୁଯାଉ । ବାଟରେ ଯିବାବେଳେ ପାହାଡ଼ ଉପରକୁ ଉଠୁଛୁ ତ ଉଠୁଛୁ, ବେଳେବେଳେ ଗଛପତ୍ର ଆଢୁଆଳରେ ତଳ ଦିଶୁନାହିଁ କି ଉପରକୁ ଆଖିପାଉ ନାହିଁ ଯେ ଆଉ କେତେବାଟ ଉଠିବାକୁ ହେବ । ଢାଲୁ ରାସ୍ତାରେ ଗୋଡ଼ ସମ୍ଭାଳି ଚାଲିବାକୁ ହେଉଛି । ଗୋଡ଼ିରେ ଜୋତା ଖସୁଛି । ସୁନ୍ଦରଲାଲ ହେରିକା ତ ଏପରି ବାଟରେ ଦୌଡ଼ିବା ପରି ଚାଲିବାକୁ ଅଭ୍ୟସ୍ତ, ଆମ ସାଙ୍ଗରେ ତାଳ ରଖି ଧୀରେ ଚାଲିଛନ୍ତି । ମଝିରେ ମଝିରେ ବାଟୋଇ ଗାଁଉଲି ଲୋକ ଭେଟ ହେଉଛନ୍ତି । ସେମାନେ କୌଣସି କିଛିକୁ ଖାତିର ନ କରି ସଡ୍ ସଡ୍ ହେଇ ଚାଲିଯାଉଛନ୍ତି । ଝିଅ ବାପଘରକୁ କି ଶାଶୁଘରକୁ ଯାଉଛି । ବର୍ଷିକିଆ ପିଲାକୁ କାଖେଇ ସେମିତି ବେପରୱା ଭାବରେ ଧାଇଁଚାଲିଛି ଗୋଡ଼ରେ ରବର କେଡ଼ସ୍ ଜୋତା, ତା' ଉପରେ ମଜା ! ଠାଏ ଠାଏ ରାସ୍ତା ଏକାବେଳକେ କାନ୍ଥଭଳି ଖାଡ଼ା ପାହାଡ଼ କାନ୍ଥିରେ । ଗୋଟାଏ ପାଖରେ ସିଧା କାନ୍ଥ ଭଳି ପାହାଡ଼ ତ ଆର ପାଖରେ ଏକାବେଳକେ ତିନି ଶହ, ପାଞ୍ଚ ଫୁଟର ସିଧା ଖାତ, ଉଚ୍ଚ କୋଠାର କାର୍ନିସ ଉପରେ ଚାଲିବା ଭଳି ଅବସ୍ଥା । ଅଧେ ବାଟ ଚଢ଼ି ପିଠିରୁ ବୋଝ ଉତାରି ରାସ୍ତା କଡ଼ରେ ଦଶ ପନ୍ଦର ମିନିଟ ଲମ୍ବ ଲମ୍ବ ହେଇ ଶୋଇଯାଉ । ପାହାଡ଼ର କନକନିଆ ଥଣ୍ଡା ପବନରେ କ୍ଳାନ୍ତି ଶୀଘ୍ର ଦୂର ହେଇଯାଏ । ପୁଣି ଚାଲିବା ଆରମ୍ଭ କରୁ ।

ରହଣି ଗାଁରେ ଉପରଓଳି ସଭା ହୁଏ । ପାଖଆଖରୁ ଦୁଇ ଚାରି ଖଣ୍ଡ ଗାଁର ଲୋକ ବି ଆସନ୍ତି । ଗ୍ରାମଦାନ କଥା ଲୋକଙ୍କୁ ବୁଝାଉଥାଉ । ଜମି ତ ସାମାନ୍ୟ, ମାତ୍ର ଗ୍ରାମଦାନ ମାଧ୍ୟମରେ ସଂହତି ଓ ଶକ୍ତି କଥାଟା ଲୋକେ ବୁଝୁଥା'ନ୍ତି ଓ ଖଣ୍ଡେ ଅଧେ ଲେଖା ଗ୍ରାମଦାନ ହେଉଥାଏ । କ୍ରମେ ଏ ଅଞ୍ଚଳରେ ଚମତ୍କାର ଜନସଂଗଠନ ଗଢ଼ିଉଠିଲା ଓ ନିଶାନିବାରଣ ତଥା ଜଙ୍ଗଲ ସମ୍ପଦ ରକ୍ଷା ପାଇଁ ଦୁଇଟା ବଡ଼ବଡ଼ ସଫଳ ସତ୍ୟାଗ୍ରହ ମଧ କେତେ ବର୍ଷ ପରେ ଏଠି ହେଇଯାଇଛି ।

ଦିନେ ଦିନେ କାହାରି ଦାଣଘରେ, ଦିନେ ଦିନେ ଗାଁ ସ୍କୁଲରେ ରହଣି ହୁଏ । ଏଠି ଶୀତ ଯୋଗୁଁ ଲୋକେ ଘର ଭିତରେ ନିଆଁ ଜାଳି ଶୋଇବାକୁ ଅଭ୍ୟସ୍ତ । ଚୀଡ଼ କାଠ ଜଳିଲେ ବେଶ୍ ସୁଗନ୍ଧ ବାହାରେ, ମାତ୍ର ଘର ଭିତର ଧୂଆଁରେ ଭର୍ତ୍ତି ହେଇଯାଏ । ଚଟାଣ୍ଣ ଫୁଟେ ଖଣ୍ଡେ ଉଚ୍ଚତା ଭିତରେ ହିଁ ସ୍ୱସ୍ତିରେ ନିଶ୍ୱାସ ନେଇହୁଏ । ସେଥିପାଇଁ ସନ୍ଧ୍ୟାରୁ ଶୋଇରହିବା ଛଡ଼ା ଗତି ନାହିଁ । ବସିବାର ଉପାୟ ନାହିଁ । କମ୍ବଳକୁ ଦୁଇପରସ୍ତ କରି ଗୁଡ଼େଇ ଥଳିପରି କରି ତା'ଭିତରେ ପଶିଯାଉ । ଏହାଦ୍ୱାରା ଦୁଇଟା କମ୍ବଳ ଚାରିଟାର କାମ ଦିଏ । ଦିନେ ଗୋଟାଏ ସ୍କୁଲରେ ପହଞ୍ଚି ଦେଖିଲୁ ସେଥିରେ ତ କବାଟ ଝରକା ଅନେକ, କିନ୍ତୁ କେଉଁଥିରେ ପାଲ୍ଲା ନାହିଁ । କୌଣସି ମତେ ପିଲାଙ୍କ ବସିବା ଚଟେଇ ଓ ସିଲଟ ପଥର ଦେଇ ସେ ସବୁକୁ ଆବୃତ୍ତ କରି ରାତି କଟେଇଲୁ ।

ଆଉଦିନେ ଦୂରତ୍ୱଟାର ଅନ୍ଦାଜ ଭୁଲ ହେଇଗଲା । ଛଅ ସାତ ମାଇଲ ପରିବର୍ତ୍ତେ ବାର ତେର ମାଇଲ ବାଟ ପଡ଼ିଗଲା । ସେ ଦିନ ବାହାରିଥିଲୁ ଟିକିଏ ଡେରିରେ । ତା ଭିତରେ ଠାଏ ଦୁଇ ଅଢେଇ ହଜାର ଫୁଟ ଚଢ଼ା ପୁଣି ତିନି ଚାରି ହଜାର ଫୁଟ ଉତୁରା ପଡ଼ିଲା । ଠାଏ ଠାଏ ଖାଡ଼ା ପାହାଡ଼ କାନ୍ଥିରେ ରାସ୍ତାର ପାଖକେ ହଜାରେ ଫୁଟର ଖାତ ତ ଆଉପଟେ ଖାଡ଼ କାନ୍ଥ । ଟିକିଏ ଗୋଡ଼ ଖସିଲେ ଖତମ । ଗାୟତ୍ରୀଭାଇର କାନ୍ଧଝୁଲା ମୁଣିଟା ହଠାତ୍ ପାହାଡ଼ କାନ୍ଥିରେ ଗୋଟାଏ ପଥରରେ ବାଜି ସେ ଟଳମଳ ହେଇଗଲେ । ମାତ୍ର କୌଣସି ପ୍ରକାର ଟାଳ ସମ୍ଭାଳି ରହିଗଲେ । ଠାଏ ଘାସ କଟାଳିଙ୍କର ଚଲାବାଟ ପଡ଼ିଲା । ଅଙ୍କ କାରବାର ବାଟ, ଶୁଖିଲା ଘାସରେ ଢଙ୍କା । ତା' ଉପରେ ଗୋଡ଼ ଖସୁଥାଏ । ଗୋଡ଼ ଚିପି ଚିପି ଚାଲିବାକୁ ପଡୁଥାଏ । ଶେଷରେ ଜାଗାଏ ପଡ଼ିଲା ଏକ କାନ୍ଥ ଭଳି ଖାଡ଼ା ପଥର, ପାଞ୍ଚ ଛ' ହାତ ଉଚ୍ଚ ହେବ । ତା' ତଳକୁ ଓହ୍ଲାଇବାକୁ ହେବ । ତା'ର ଗୋଟାଏ ପାଖରେ ପାହାଡ଼ କାନ୍ଥି, ଆରପଟେ ଚାରିଶହ ଫୁଟ ଗହୀର ସିଧା ଖାତ । ଖସିପଡ଼ିଲେ ହାଡ଼ଗୋଡ଼ର ପତ୍ତା ରହିବ ନାହିଁ । ସୁନ୍ଦରଲାଲ ହେରିକା ତ ଟପାଟପ୍ ଡେଇଁପଡ଼ି ଓହ୍ଲେଇଗଲେ । ଏ ବ୍ୟାପାର ଦେଖି ସେତେବେଳକୁ ଆମେ ତଳହଟିବାଲାଙ୍କର ଗୋଡ଼ ଥରଥର ହେଲାଣି । ମୁହଁ ଫିକା ପଡ଼ିଲାଣି । ତଥାପି ତ ଆଗେଇବାକୁ ହେବ । ମୋ ଅଣ୍ଟାରେ ଗୋଟାଏ ଗାମୁଛା ବାନ୍ଧି ଜଣେ ପଛରୁ ଟାଣି ଧରିଲେ । ତଳବାଲା ପଥର କାନ୍ଥିରେ ହାତଭରା ଦେଇ ଗୋଟାଏ ପାହାଞ୍ଚ କଲେ । ମୁଁ ତା'ରି ଆଶ୍ରାରେ ତଳକୁ ଓହ୍ଲାଇଲି, ଗାୟତ୍ରୀ ଭାଇ ବି ସେମିତି । ଆହୁରି ଦୁଇ ତିନି ମାଇଲ ଚାଲି ଗାଁରେ ପହଞ୍ଚିବାବେଳକୁ ସନ୍ଧ୍ୟା ସାତଟା ବାଜିଗଲା । ସେଠି ପହଞ୍ଚି ଦେଖିଲୁ ଯେ ଆମ କମ୍ବଳ ଆଦି ନେଇ ଘଣ୍ଟାକ ଆଗରୁ ବାହାରିଥିବା ଲୋକଟି ପହଞ୍ଚିନାହିଁ । ସର୍ବନାଶ ! ରାତିରେ ପ୍ରଚଣ୍ଡ ଶୀତରେ କରିବା କ'ଣ ? ସେ ଆଉ କ'ଣ ଏତେ ରାତିରେ ବାଟ ପାଇବ ଯେ ଆସି ପହଞ୍ଚିବ ? ନିଆଁଜାଳି ଶୀତ କଟେଇବା ଆୟୋଜନ ହେଲାବେଳକୁ ସେ ଆସି ଅନେକ ସମୟ ପରେ ପହଞ୍ଚିଲା । ସେ ବାଟ ଭୁଲି ଅନ୍ୟଆଡ଼େ ଚାଲିଯାଇଥିଲା, ତେଣୁ ଏତେ ଡେରି । ଯାହାହେଉ ସେ ଦିନ ଆମେ ପାର୍ବତ୍ୟ ଅଞ୍ଚଳର କଠିନତମ ପରୀକ୍ଷାରେ ପାସ୍ ହେଇଗଲୁ ।

ଏଠି ଠାଏ ଦୁଇଠା ନଈରେ ଗାଧୋଇବା ଭଲ ହେଲା । ଅଲକନନ୍ଦା, ସୁରଧୁନୀ, ଭାଗିରଥୀ, ପିଣ୍ଡାର, ଭିଲ୍ଲଂଗନା ଆଦି ନଈସବୁ ଏ ଅଞ୍ଚଳ ଦେଇ ବହିଯାଇ ଗଙ୍ଗାରେ ମିଶିଛନ୍ତି । ଗଙ୍ଗାର ଅନ୍ୟ ଅନେକ ଗୁଡ଼ିଏ ନାମ ଯେ ତା'ର ଉପନଦୀମାନଙ୍କର ନାମ ତାହା ଏଇଠି ଜାଣିଲି । ଯାହାହେଉ ଦ୍ୱିପ୍ରହରବେଳେ ଖରା ଦେଖି ସାହସ କରି ତ ନଈକୂଳକୁ ଗଲି । ସେଥିରେ ଚଟକିନା ପଶିଯାଇ ଗୋଟାଏ ବୁଡ଼ ଦେଇ ଉଠିଲାବେଳକୁ ଦେହ ଆଉ ଅଛି ବୋଲି ଜଣାପଡୁ ନଥାଏ ।

ଏସବୁ ନଈ ଉପରେ ଦଉଡ଼ିର ଗାଉଁଲି ପୋଲ ଥାଏ । ଏହା ଦୁଇ କୂଳରେ ଥିବା ମଜବୁତ ଖୁଣ୍ଟରୁ ଝୁଲା ହେଇଥାଏ । ଏଥିରେ ଚାଲିବା ପାଇଁ ବାହା ମୋଟର ଗୋଛାଏ ଦଉଡ଼ି ଓ ଦୁଇ ପାଖରେ ଧରିବା ପାଇଁ ଦୁଇଟା ସାଧାରଣ ଦଉଡ଼ି । ଚାଲିବା ଦଉଡ଼ିଟା ଏଇଥିରୁ ଦଉଡ଼ିର ଜାଲ ଦ୍ୱାରା ଝୁଲା ହେଇଥାଏ । ଏଥିରେ ଚାଲିବା ବେଳକୁ ଏତେ ପ୍ରବଳ ଭାବରେ ହଲେ ଯେ ଆମଭଳି ନୂଆ ଲୋକଙ୍କ ଗୋଡ଼ ଚଳେ ନାହିଁ । ମାତ୍ର ସ୍ଥାନୀୟ ଲୋକେ ଦଉଡ଼ିର ଦୋହଲିବା ସହିତ ତାଳ ରଖି ସଡ଼ସଡ଼ କରି ଚାଲିଯାନ୍ତି ।

ବାଟ ଚାଲିବାରେ ଯେତିକି ପରିଶ୍ରମ ହୁଏ ତାହା ଦୂର ହେଇଯାଏ ଗାଁ ଲୋକଙ୍କର ସରଳ ଆନ୍ତରିକତା ଓ ପ୍ରକୃତିର ଅସରନ୍ତି ସୌନ୍ଦର୍ଯ୍ୟର ସଂସ୍ପର୍ଶରେ । ଗାଁରେ ମିଳେ ଭାତ, ରୁଟି,ଡାଲି ଓ ପାହାଡ଼ି ଶିମ୍ବ ତରକାରୀ । କେତେବେଳେ କେମିତି ମୁନ୍ଦିଏ କ୍ଷୀର । ବାଟଚଲାରେ ଯେଉଁ ବୈଶ୍ୱାନର ଅଗ୍ନି ପ୍ରଜ୍ୱଳିତ ହେଇଥାଏ ସେଥିରେ ତାହା ଅମୃତ ପରି ଲାଗେ । ବସିବା ଜାଗାରୁ ଟିକିଏ ବୁଲି ଚାହିଁଲେ ତା' ପଛକୁ ପଛ ଧାଡ଼ିକିଧାଡ଼ି ପାହାଡ଼ର ଦୃଶ୍ୟ । ରୁକ୍ଷ ପାହାଡ଼ର ଢାଲୁ କାଚୁ ଓ ପାହାଡ଼ ଚୂଡ଼ାର ଢେଉ ଖେଳିଥିବା ଧାଡ଼ି ସାଙ୍ଗକୁ ଚୀଡ଼ ଓ ଦେଓଦାର ଗଛର ଚର୍ଚ୍ଚାମୂନ ପରି ସିଧା ଉପରକୁ ଉଠି ଛିଡ଼ା ହେଇଥିବା ବିସଂବାଦୀ ରେଖା ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟି କରୁଥାଏ । ଉପରେ ନୀଳ ଆକାଶ, ତଳେ ଦୁଇପାହାଡ଼ ସନ୍ଧିରେ ପଥର ପତରରେ ନୂପୁର ବଜେଇ ଓ ଶୁଭ୍ର ଫେଣର ମୁକୁଟ ସୃଷ୍ଟିକରି ବହିଯାଉଥିବା ପାହାଡ଼ି ନଈର ମୃଦୁ ଗୁଞ୍ଜନ । ଗାଁ ପାଖ ପାହାଡ଼ କାନ୍ଥିରେ ପାହାଚ ପାହାଚ, ପଥର ହିଡ଼ଘେରା, ଚାଷ ଜମିର କିଆରି । ଲୋକେ କାହିଁକି ହିମାଳୟର ଆକର୍ଷଣ ଏତେ ତୀବ୍ର ଭାବରେ ଅନୁଭବ କରନ୍ତି ଓ ତା'ର ଶୃଙ୍ଗ ଉପରେ ଚଢ଼ିବା ପାଇଁ ପ୍ରାଣ ବି ଦେଇଦେବାକୁ ପଛାନ୍ତି ନାହିଁ, ତା'ର କିଞ୍ଚିତ ଅସ୍ୱାଦ ମୁଁ ଏ ପଦଯାତ୍ରାରେ ପାଇଲି ।

## ରାଉରକେଲା ହତ୍ୟାକାଣ୍ଡ

ତା' ପରବର୍ଷ ମଣିଷ ସ୍ୱଭାବର ଗଭୀର ଓ ଭୟଙ୍କର ଗହ୍ୱରର ଦର୍ଶନ କରିବାକୁ ପଡ଼ିଲା । ୧୯୬୪ ମାର୍ଚ୍ଚ ବାଇଶ ତେଇଶ ତାରିଖ ହେବ । ଦିଲ୍ଲୀରେ ଥାଇ ମୁଁ କାଗଜରେ ଦେଖିଲି ଯେ ରାଉରକେଲାରେ ଗୁରୁତର ହିନ୍ଦୁ-ମୁସଲମାନ ଗଣ୍ଡଗୋଳ ହେଉଛି । ଅନେକ ଲୋକ ମରିଛନ୍ତି । ନାଗପୁର ଦେଇ ମୁଁ ରାଉରକେଲା ଆସିଲି । ସାଙ୍ଗରେ ଗାୟତ୍ରୀଭାଇ ଥାନ୍ତି ।

ବାଟରେ ଯାତ୍ରୀମାନଙ୍କ ଠାରୁ ଗଣ୍ଡଗୋଳର କିଛି କିଛି ବିବରଣୀ ଶୁଣି ଶୁଣି ଆସୁଥାଉ । କାଗଜରେ ଯାହା ବାହାରିଥିଲା ବ୍ୟାପରଟା ତାହା ଠୁଁ ଢେର ବେଶି ଗୁରୁତର ବୋଲି ମନେ ହେଲା । ବମ୍ବେ ହାଓଡ଼ା ଏକ୍ସପ୍ରେସରେ ସକାଳେ ରାଉରକେଲା ପହଞ୍ଚି ଶୁଣିଲୁ ଯେ ସହରରେ କର୍ଫ୍ୟୁ ଜାରି ହେଇଛି । ଷ୍ଟେସନରୁ ବାହାରକୁ ଯିବାର ଉପାୟ ନାହିଁ । ଦୁଇ ନମ୍ବର ସେକ୍ଟରରେ ଶସ୍ତା ଟାଇପ୍ କ୍ୱାର୍ଟରରେ ସର୍ବୋଦୟ କେନ୍ଦ୍ର ଥାଏ ଓ କ୍ଷେତ୍ରବାସୀ ପତି ତା'ର ଦାୟିତ୍ୱରେ ଥା'ନ୍ତି । ଆମ ଆସିବା ଖବର ତାଙ୍କୁ ତାର କରା ହେଇଥିଲା । ଷ୍ଟେସନରୁ ମଧ କାହାକୁ କାହାକୁ ଫୋନ୍ କରିବା ଚେଷ୍ଟା କଲୁ । ପ୍ରାୟ ଦୁଇଘଣ୍ଟା ଅପେକ୍ଷା କରିବା ପରେ ସେଠା ଇଷ୍ଟେଟ୍ ଅଫିସର ଶ୍ରୀକାଚରୁ ଦାଦାକୁ ସାଙ୍ଗରେ ଧରି ଗୋଟିଏ ଗାଡ଼ିରେ  ଆସି ପହଞ୍ଚିଲେ ଓ ଆମକୁ ନେଇ ସର୍ବୋଦୟ କେନ୍ଦ୍ରରେ ପହଞ୍ଚାଇଦେଲେ ।

କର୍ଫ୍ୟୁ ଯୋଗୁ ବାଟଘାଟ ସବୁ ଶୁନଶାନ୍ । ଓଭରବ୍ରିଜ୍ ପାରିହେଇ ଯିବାପରେ ରିଙ୍ଗ୍ ରୋଡ୍ କଡ଼ ଖୋଲା ଜମିରେ ଜଣେ ସ୍ତ୍ରୀଲୋକର ମୃତ ଦେହ ପଡ଼ିଥିବାର ଦେଖିଲୁ । ତାହା କୌଣସି ଉଚ୍ଚପଦସ୍ଥ ମୁସଲମାନ କର୍ମଚାରୀଙ୍କର  ସ୍ତ୍ରୀଙ୍କର ଶବ ବୋଲି କାଚରୁ ବତେଇଲେ । ତାଙ୍କଠାରୁ ହତ୍ୟାକାଣ୍ଡର ଆହୁରି ଅନେକ ବର୍ଣ୍ଣନା ଶୁଣିବାକୁ ମିଳିଲା ।

ଦାଦା ଆମର ଦୁଇଦିନ ପୂର୍ବରୁ ପହଞ୍ଚିଥିଲା । ସେ ମଧ ତା'ର ଅନୁଭୂତି ଶୁଣାଇଲା ଯେ ବାଟରେ ଆସିବାବେଳେ ସେ କାଁସବାହାଲ ଛକଠାରେ ଦେଖିଲା ଯେ ଗାଁମାନଙ୍କରୁ ବହୁସଂଖ୍ୟକ ଲୋକ ଦଳଦଳ ହେଇ ଆସି ରାସ୍ତା ପାଖରେ ଗୁଣ୍ଡ ହେଉଛନ୍ତି । ଛକ ଉପରେ ମୃତୟନ ଥିବା ପୁଲିସ ସିପେଇ ଏ ଖବର ରାଉରକେଲାର କର୍ତ୍ତୃପକ୍ଷଙ୍କୁ ଜଣେଇ ଦେବାକୁ ତାକୁ ଅନୁରୋଧ କଲା । ମାତ୍ର ଦାଦା ସେତେବେଳକୁ ଏ ଜମାଉତବସ୍ତିର ପ୍ରକୃତ ତାତ୍ପର୍ଯ୍ୟ ହୃଦୟଙ୍ଗମ କରିପାରି ନଥିଲା । ସେଠି ସେତେବେଳକୁ ରାଞ୍ଚିରୁ ବ୍ରିଗେଡ଼ିୟର ରାଜାଙ୍କ ଅଧିନାୟକତ୍ୱରେ ସେନାବାହିନୀ ପହଞ୍ଚି ପରିସ୍ଥିତିରେ ଦାୟିତ୍ୱ ନେଇ ସାରିଲେଣି । ସହରରେ ଦିନରାତି କର୍ଫ୍ୟୁ ଜାରି ହେଲାଣି । ମାତ୍ର ସହର ବାହାରେ ମଫସଲକୁ ଗଣ୍ଡଗୋଳ ବ୍ୟାପିଚାଲିଥାଏ ।

କଲିକତାରୁ ରାୟପୁର ନିକଟ ମାନା ଶିବିରକୁ ସେତେବେଳର ପୂର୍ବ ପାକିସ୍ତାନର ଶରଣାର୍ଥୀଙ୍କୁ ନେଇ ଯାଉଥିବା ବିଶେଷ ରେଳଗାଡ଼ି ରାଉରକେଲାରେ ଅଟକିବାବେଳେ ପୂର୍ବ ପାକିସ୍ତାନର ହିନ୍ଦୁମାନଙ୍କ ଉପରେ ହେଇଥିବା ଅତ୍ୟାଚାରର ଅତିରଞ୍ଜିତ କାହାଣୀସବୁ ପ୍ରଚାରିତ ହେଲା । ରାଉରକେଲାର ଜଣେ ମୁସଲମାନ ଫେରିବାଲା ଶରଣାର୍ଥୀଙ୍କୁ ବିଷାକ୍ତ ପାଉଁରୁଟି ଖାଇବାକୁ ଦେଇଥିବାର ମଧ ଗୁଜବ ପ୍ରଚାରିତ ହେଲା ଓ ଆହୁରି ଏହିପରି ଅନେକ ଗୁଜବ ଫଳରେ ସହରରେ ଉତ୍ତେଜନା ଦେଖାଦେଲା ଓ କ୍ରମେ ବଢ଼ିଚାଲିଲା । ଏହାଦେଖି ଗଣ୍ଡଗୋଳର ତିନିଦିନ ପୂର୍ବରୁ କ୍ଷେତ୍ରବାସୀ ପତି କଟକ ଭୂଦାନ ଅଫିସକୁ ଫୋନ୍ କରି ଉଦ୍‌ବେଗ ପ୍ରକାଶ କରିଥିଲେ ଓ ସରକାରଙ୍କୁ ଖବର ଦେବାପାଇଁ ଅନୁରୋଧ କରିଥିଲେ । ସେ ଅନୁସାରେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କୁ ତୁରନ୍ତ ଖବର ଦିଆଯାଇଥିଲା । ପରେ କ୍ଷେତ୍ରବାସୀ ପୁଣି ଥରେ ଫୋନ୍ କଲେ ଓ

ପୁନଃଶ୍ଚ ମୁଖ୍ୟମନ୍ତ୍ରୀଙ୍କୁ କୁହାଗଲା । ତାଙ୍କର ସରକାରୀ କଳ ଜାଗତିଆର ଅଛି ବୋଲି ସେ ଆଶ୍ୱାସନା ଦେଲେ । ପୁଣି କ୍ଷେତ୍ରବାସୀଙ୍କ ଠାରୁ ଫୋନ୍ ସମାଚାର ପାଇ ଦାଦା ଅନୁଗୁଳରୁ ରାଉରକେଲା ଆସିଲା । ସେତେବେଳକୁ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଶୁଣିଲୁ । ଆମେ ପହଞ୍ଚିବାବେଳକୁ ସୁଦ୍ଧା ମାର୍କେଟ କୋଠାର ସେପଟେ ସାତୋଟି ମୃତ ଦେହ ନଳାରେ ପଡ଼ିଥାଏ । ସେ ସବୁକୁ ଦେଖିଯିବାର ପ୍ରବୃତ୍ତି ମୋର ହେଲା ନାହିଁ । ତା'ଛଡ଼ା ପରେ ମୋର ଧ୍ୟାନକୁ ଆସିଲା ଯେ ସେଠାର କେତେକ ସ୍ଥାନୀୟ ଲୋକ ଆମକୁ ବେଶ୍ କୌଶଳର ସହିତ ସେଆଡ଼କୁ ଯିବାକୁ ନ ଦେବା ପାଇଁ ଚେଷ୍ଟା କରିଥିଲେ ।

ସାମରିକ ମୁଖ୍ୟ କାର୍ଯ୍ୟାଳୟରୁ ପାଞ୍ଚ ଖଣ୍ଡ କର୍ଫ୍ୟୁ ପାସ୍ ଯୋଗାଡ଼ ହେଲା ଓ ଖଣ୍ଡେ ଜିପ୍ ସଂଗ୍ରହକରି ସେଥିରେ ଆମେ ତା' ପରଦିନ ସକାଳେ ସହର ଅବସ୍ଥା ଦେଖି ବାହାରିଲୁ । ପ୍ରଥମେ ପୁରୁଣା ରାଉରକେଲାକୁ ଯାଇ ସେଠି ଧନୁବାବୁ ଓ କେତେକ ପରିଚିତ ବେପାରୀଙ୍କୁ ଭେଟିଲୁ ଓ ଗଫୁର ସାହେବଙ୍କ ଘରେ ଆଶ୍ରୟ ନେଇଥିବା ମୁସଲମାନଙ୍କୁ ମଧ୍ୟ ସଂଖୋଳି ଆସିଲୁ । ବଜାରରେ ଜଣେ ମାରଓ୍ୱାଡ଼ୀ ଭଦ୍ରଲୋକଙ୍କ ଘରୁ ବାହାରି ଆମେ ବାରନ୍ଦାରେ ଠିଆ ହେଉଛୁ, ସିଆଡୁ ଗୋଟିଏ ସାମରିକ ଖବରଦାରୀ ଗାଡ଼ି ଆସିଲା ଓ ଆମକୁ ସେଠାରେ ଛିଡ଼ା ହେଇଥିବାର ଦୂରରୁ ହିଁ ଦେଖିପାରି ସେଥିରେ ଥିବା ଜବାନମାନେ ପ୍ରଚଣ୍ଡ କିଳିକିଳା ରାବ କରି ଓ ଆମ ଆଡ଼କୁ ବନ୍ଧୁକ ନିକ୍ଷିକରି ଆସି ପହଞ୍ଚିଲେ ଓ ଆମକୁ ଧମକେଇବାକୁ ଆରମ୍ଭ କଲେ । ମାତ୍ର ଆମ ସମସ୍ତଙ୍କର କର୍ଫ୍ୟୁ ପାସ୍ ଦେଖି ସନ୍ତୁଷ୍ଟ ହେଇ ଚାଲିଗଲେ ।

ସେତେବେଳକୁ ରାଉରକେଲା ଓ ତା'ର ଆଖପାଖର ମୁଖ୍ୟ ବସ୍ତିମାନଙ୍କରୁ ଗଣ୍ଡଗୋଳ ଥଣ୍ଡା ପଡ଼ିଗଲାଣି, ମାତ୍ର ଦୂର ସ୍ଥାନମାନଙ୍କରୁ ଗଣ୍ଡଗୋଳର ଖବର ଆସୁଥାଏ । ପରିସ୍ଥିତିକୁ ଦେଖିବା ଓ ବୁଝିବା ସାଙ୍ଗେ ସାଙ୍ଗେ ଆମେ ଦୁଇଟା କାମ ମୁଖ୍ୟଭାବରେ ହାତକୁ ନେଲୁ । ବିଭିନ୍ନ ସ୍ଥାନରେ ଏକତ୍ର କରି ରଖାଯାଇଥିବା ମୁସଲମାନ ଶରଣାର୍ଥୀମାନଙ୍କର ଅସୁବିଧା ସୁବିଧା ବୁଝିବା, ସେମାନଙ୍କୁ ଆଶ୍ୱାସନା ଦେବା କଥା, ଲୋକଙ୍କ ଭିତରେ ଉତ୍ତେଜନା ଶାନ୍ତି କରିବା ପାଇଁ ଉଦ୍ୟମ କରିବା । ନାନା ସୂତ୍ରରୁ ଯେଉଁସବୁ ଖବର ମିଳିଲା ସେଥିରୁ ଆମର ହୃଦ୍‌ବୋଧ ହେଲା ଯେ ଏ ଗଣ୍ଡଗୋଳ ଆପେ ଆପେ ଘଟିନାହିଁ । ଉତ୍ତେଜନାଟା ପ୍ରଥମେ ଆକସ୍ମିକ ଭାବରେ ଆରମ୍ଭ ହେଇଥିଲା, ମାତ୍ର ପରେ ବେଶ୍ ସୁପରିକଳ୍ପିତ ଢଙ୍ଗରେ ଏହା ବଢ଼ାଯାଇଥିଲା ।

ଏଥିପାଇଁ କେତେଗୁଡ଼ିଏ ଜନରବ ପ୍ରଚାର କରାଯାଇଥିଲା । ଗୋଟାଏ ହେଲା ଯେ, ମୁସଲମାନଙ୍କ ଭିତରେ ବହୁତ ପାକିସ୍ତାନୀ ଗୁପ୍ତଚର ଅଛନ୍ତି । ଗଫୁର ପ୍ରଭୃତି କେତେକ ଜଣାଶୁଣା ମୁସଲମାନମାନଙ୍କ ଘରେ ଗୁପ୍ତ ରେଡ଼ିଓ ବାର୍ତ୍ତାପ୍ରେରଣ ଯନ୍ତ୍ର ଅଛି । ମୁସଲମାନଙ୍କୁ ଆଦୌ ବିଶ୍ୱାସ କରିବା ଉଚିତ ନୁହେଁ । ପୂର୍ବ ପାକିସ୍ତାନରେ ଅତ୍ୟାଚାରର ଲୋମହର୍ଷକ କାହାଣୀ, ଏ ଗୁପ୍ତ ରେଡ଼ିଓ କାହାଣୀ ଓ ବିଷମିଶ୍ରିତ ରୁଟି କାହାଣୀ ଆଦି ଯଥେଷ୍ଟ ପ୍ରଚାରିତ ହେବାପରେ ଶେଷକୁ କାମ ଦେଖେଇବା ଜନରବର ପ୍ରଚାର ହେଲା ଯେ କଲିକତାଆଡୁ ହଜାର ହଜାର

ମୁସଲମାନ ଅସ୍ତ୍ରଶସ୍ତ୍ର ଧରି ହିନ୍ଦୁମାନଙ୍କୁ ହତ୍ୟା ଓ ଗାଁଗଣ୍ଡା ଲୁଟ୍‌ତରାଜ କରି କରି ରାଉରକେଲା ଆଡ଼କୁ ଆଗଉଛନ୍ତି । ହେଇ ସେମାନେ ଅମୁକ ପାହାଡ଼ ସେପଟେ ପହଞ୍ଚିଗଲେଣି ବୋଲି ଆଖିରେ ଦେଖିବା ଭଳି ପ୍ରଚାର ହେଲା । ଏହା ଫଳରେ ହିନ୍ଦୁମାନଙ୍କ ଭିତରେ ଆତଙ୍କ ଖେଳିଗଲା । ଅଧିକାଂଶ ହତ୍ୟାକାଣ୍ଡ ଆତଙ୍କିତ ଲୋକଙ୍କ ଦ୍ୱାରା ହିଁ ଘଟିଥିଲା । ଲୋକଙ୍କ ଭିତରେ ଭିଡ଼ର ମାନସିକତା ଏପରି ବ୍ୟାପିଯାଇଥିଲା ଯେ, କଲିକତାଆଡୁ କି ପ୍ରକାରେ ହଜାର ହଜାର ମୁସଲମାନ ଅବାଧରେ ହାଣକାଟ କରି ଏତେ ବାଟ ଚାଲିଆସି ପାରୁଛନ୍ତି, ସରକାରର ପୁଲିସ୍ ଫୌଜସବୁ କ'ଣ ଘାସକାଟି ଯାଉଛନ୍ତି, ସେ କଥା ଟିକିଏ ଭାବି ଦେଖିବାକୁ କାହାରି ବୁଦ୍ଧି ହେଲାନାହିଁ ।

ଗାଁଗହଳରେ ଆଦିବାସୀଙ୍କ ଭିତରେ ପ୍ରଚାର ହେଲା ଯେ ମୁସଲମାନମାନଙ୍କୁ ମାରି ଦିଆଯାଉ ବୋଲି ସରକାର ଚାହୁଁଛି । ସେମାନଙ୍କୁ ମାରିଲେ ପୁରସ୍କାର ମିଳିବ ବୋଲି ମଧ୍ୟ କେଉଁଠି କେଉଁଠି ପ୍ରଚାର ହେଲା । ଗାଁମାନଙ୍କର ମୁସଲମାନମାନେ ବେପାର ଓ ମହାଜନୀ କରନ୍ତି । ସେ ସୂତ୍ରରେ ମଧ୍ୟ ସେମାନଙ୍କ ପ୍ରତି କିଛି ଆକ୍ରୋଶ ଆଦିବାସୀଙ୍କ ଭିତରେ ଥିଲା, ତାହା ବି ଏଥିରେ ଫୁଟି ବାହାରିଲା ।

ହତ୍ୟାକାଣ୍ଡ ଯେ ପୂର୍ବ ଆୟୋଜିତ ଥିଲା ତା'ର ଗୋଟିଏ ପ୍ରମାଣ ହେଲା ଯେ, ଇସ୍ପାତ କାରଖାନାର କାରିଗରମାନେ ତାହା ପୂର୍ବରୁ କାରଖାନାରୁ ବହୁ ସଂଖ୍ୟାରେ ଲୁହାଛଡ଼ ଓ ବଡ଼ ବଡ଼ ଛୁରୀସବୁ ତିଆରି କରି ଆଣିବାରେ ଲାଗିଥିଲେ । ଦ୍ୱିତୀୟ ପ୍ରମାଣ ହେଲା ଯେ, ମୁସଲମାନ ଗୃହସ୍ଥମାନଙ୍କର ଘରକୁ ଚିହ୍ନଟ କରିବା ପାଇଁ ପ୍ରତ୍ୟେକ ଘରର ପଛପଟର ଏକ ନିର୍ଦ୍ଦିଷ୍ଟ ପାଖର ଝରକାର କାଚ ଗଣ୍ଡଗୋଳ ଆରମ୍ଭ ହେବାର ପୂର୍ବଦିନ ରାତିରୁ ଭାଙ୍ଗିଦିଆଯାଇଥିଲା । ସେଠାର ରେଭିନ୍ୟୁ ଡିଭିଜନାଲ୍ କମିଶନର, ପୁଲିସ୍ ଡ଼ି.ଆଇ.ଜି. ପ୍ରଭୃତି ଉଚ୍ଚପଦସ୍ଥ କର୍ମଚାରୀମାନେ ଗଣ୍ଡଗୋଳକୁ ତୁରନ୍ତ ଆୟତ୍ତ କରିବା ପାଇଁ ଦୃଢ ପଦକ୍ଷେପ ନେବା ପରିବର୍ତ୍ତେ ଯେଉଁ ଢିଲା ନୀତି ଧରିଲେ ତାହାଦ୍ୱାରା ଗଣ୍ଡଗୋଳ ବ୍ୟାପିବାକୁ ସମୟ ଓ ସୁଯୋଗ ପାଇଲା । ଇଚ୍ଛାକୃତ ଭାବରେ ହେଉ ବା ଅନିଚ୍ଛାକୃତ, ସାମରିକ ବାହିନୀ ଆସି ପହଞ୍ଚିବାର ଆଠ ଘଣ୍ଟାପରେ ଯାଇ ତାହାକୁ ଆବଶ୍ୟକ କ୍ଷମତା ଦିଆଗଲା ଓ ଏଇ ଆଠଘଣ୍ଟା ଭିତରେ ହିଁ ଜାଲ୍‌ଦା ଓ ଝିରପାଣିର ଜଘନ୍ୟତମ ହତ୍ୟାକାଣ୍ଡ ଘଟିଗଲା । ସେନାବାହିନୀ ଅକ୍ଷମ ସାକ୍ଷୀ ହେଇ ରହିଲା ।

ଝିରପାଣିରେ ଗୋଟିଏ ପକାଘରେ ଶତାଧିକ ମୁସଲମାନ, ଆବାଳବୃଦ୍ଧବନିତା, ଆଶ୍ରୟ ନେଇଥିଲେ । ସେମାନଙ୍କୁ ଅନ୍ୟ ଭାବରେ ଆକ୍ରମଣ କରି ନ ପାରି ଶେଷକୁ ଖଣିରେ ବ୍ୟବହୃତ ହେଉଥିବା କାର୍ଡ୍ରାଇଟ୍ ନାମକ ବିସ୍ଫୋରକ ଦେଇ ସେ ଘରକୁ ଉଡ଼େଇ ଦିଆଗଲା । ଜାଲ୍‌ଦାରେ ସେହିପରି ଘର ଭିତରେ ଆଶ୍ରୟ ନେଇଥିବା ତିନି ଶହ ସାଢ଼େ ତିନି ଶହ ଲୋକଙ୍କୁ ହତ୍ୟା କରାହେଲା, ପେଟ୍ରୋଲ ଢାଳି ଦରମରା ଲୋକଙ୍କୁ ଜଳେଇ ଦିଆହେଲା ଓ ଜୀଅନ୍ତା ଶିଶୁମାନଙ୍କୁ ସେ ନିଆଁରେ ପକେଇଦିଆ ହେଲା । ସେଠି ଯେଉଁ ଗୋଟାଏ ଘରେ କେତେ ଶହ ଲୋକଙ୍କୁ

ହତ୍ୟା କରାହୋଇଥିଲା ତା'ର ଚଟାଣ, କାନ୍ଥ ଓ ଅଗଣା ରକ୍ତରେ କଂସେଇଖାନାପରି ଜୁଡୁବୁଡୁ ହୋଇ କେତେ ସପ୍ତାହ ଯାଏ ରହିଥିଲା । ଗୋଟାଏ କୂଅରେ ଗୁଡାଏ ଲୋକଙ୍କୁ ପକେଇ ପେଟ୍ରୋଲ ଢାଳି ନିଆଁ ଲଗେଇ ଦିଆଯାଇଥାଏ କି କ'ଣ ସେଥିରୁ ଅନେକ ଦିନ ଯାଏ ମଡ଼ା ପୋଡ଼ାର ଦୁର୍ଗନ୍ଧ ଧୂଆଁ ବାହାରୁଥାଏ ।

ରାଉରକେଲାର ସ୍ଥାନୀୟ ପୁଲିସ ଏ ଗଣ୍ଡଗୋଳବେଳେ ସଂପୂର୍ଣ୍ଣ ନିକମା ସାବ୍ୟସ୍ତ ହୋଇଥିଲେ । ହୁଏତ ସେମାନଙ୍କର ଅନ୍ତଃସ୍ଥଳରେ ହତ୍ୟାକାଣ୍ଡ ପ୍ରତି ସମର୍ଥନ ଥାଏ । ହତ୍ୟାକାଣ୍ଡରେ ଲିପ୍ତ ଜଣାଶୁଣା ଗୁଣ୍ଡା ଶ୍ରେଣୀର ବ୍ୟକ୍ତି ପୁଲିସ ଥାନାରେ ଯାଇ ଟେବୁଲ ଉପରେ ବସି ଆଡ୍ଡା ଦେବାର ଖବର ମିଳୁଥାଏ । କିଛିଦିନ ପରେ ମୁଖ୍ୟମନ୍ତ୍ରୀ ଓ ଘରୋଇ ବିଭାଗ ମନ୍ତ୍ରୀ ନୀଳମଣି ରାଉତରାୟ ପହଞ୍ଚିବା ପରେ ଗିରଫଦାରୀ ଆରମ୍ଭ ହେଲା । ସେଥିରେ ମଧ୍ୟ ଏ ଗଣ୍ଡଗୋଳ ପଛରେ ଥିବା କେତେକ ବଡ଼ ବଡ଼ ଲୋକଙ୍କ ଦେହରେ ହାତ ଦିଆ ହୋଇନଥିଲା । ବୀରେନ୍ଦ୍ର ଏ ପ୍ରସଙ୍ଗରେ ଖୁବ୍ ଖୋରା ଓ ଟାଣୁଆ ମନୋଭାବ ଦେଖେଇଥିଲେ । ହତ୍ୟାକାଣ୍ଡରେ ମୃତ୍ୟୁ ସଂଖ୍ୟା (ତିନି ହଜାରରୁ ଅଧିକ) ଓ ତା'ର ପାଶବିକତାକୁ ସେ କୌଣସି ପ୍ରକାରେ ଲୁଚାଇବା ଚେଷ୍ଟା କରିନଥିଲେ । ସୁନ୍ଦରଗଡ଼ରେ ସରକାରୀ କର୍ମଚାରୀଙ୍କ ସଭାରେ ଓ ରାଉରକେଲାର ସାଧାରଣ ଲୋକଙ୍କୁ ସେ ଏ ବିଷୟରେ ଖୋଲାଖୋଲି ସବୁକଥା କହି ହିନ୍ଦୁମାନଙ୍କୁ ଭର୍ତ୍ସନା କରିଥିଲେ ।

ଲୋକଙ୍କ ଭିତରୁ ଉତ୍ତେଜନା ଦୂରକରି ସଦ୍‌ଭାବ ଫେରାଇ ଆଣିବା ପାଇଁ ଆମେ ଦୁଇଟି ଉପାୟ କରିଥିଲୁ, ସଭା ଓ ଶୋଭାଯାତ୍ରା କରିବା ଓ ପ୍ରଚାରପତ୍ର ବାଣ୍ଟିବା । ସେଠି କର୍ଫ୍ୟୁ ଓ ୧୪୪ ଧାରା ଜାରି ହୋଇ ମଧ୍ୟ ଆମକୁ ସଭା ଆଦି କରିବାକୁ ଦିଆଯାଉଥିଲା । ସାରା ପ୍ରଦେଶରୁ ବହୁସଂଖ୍ୟାକ ଶାନ୍ତି ସୈନିକ ମଧ୍ୟ ଆସି ଇତିମଧ୍ୟରେ ସେଠି ପହଞ୍ଚିଥିଲେ । ମହାରାଷ୍ଟ୍ରରୁ ଆପ୍ପାସାହେବ ପଟବର୍ଦ୍ଧନ ମଧ୍ୟ ପନ୍ଦର ଦିନ ପାଇଁ ଆସିଥିଲେ । ସକାଳୁ ଆମେ ସମସ୍ତେ ଗୋଟିଏ ପ୍ରଭାତଫେରୀ ବାହାର କରି ଗୋଟିଏ ଅଞ୍ଚଳ ପରିକ୍ରମା କରୁ ଓ ସଂନ୍ଧ୍ୟାରେ ବିଭିନ୍ନ ସେକ୍ଟରରେ ସଭା ହୁଏ । ସଭାରେ ଲୋକ ବହୁତ ସଂଖ୍ୟାରେ ଯୋଗ ଦେଉଥିଲେ ଓ ଯୁକ୍ତିତର୍କ ମଧ୍ୟ କରିବାକୁ ବାହାରୁଥିଲେ । ଯେଉଁମାନେ ସଭାରେ ନିଜର ଉଗ୍ର ମନୋଭାବ ପ୍ରକାଶ କରିବାକୁ ସାହସ କରୁ ନଥିଲେ ସେମାନେ ସଭାପରେ ଆମମାନଙ୍କୁ ଘେରିଯାଇ ହତ୍ୟାକାଣ୍ଡର ସମର୍ଥନରେ ଖୁବ୍ ଉଗ୍ରଭାବରେ ଯୁକ୍ତି କରୁଥିଲେ ।

ସଭାରେ ଆପ୍ପାସାହେବ ନିଜର ବିଚାର ଖୁବ୍ ସୌମ୍ୟ ଢଙ୍ଗରେ ରଖୁଥିଲେ । ଯୁକ୍ତିତର୍କ କରିବାରେ ମଧ୍ୟ ଆମକୁ ଖୁବ୍ ଧୈର୍ଯ୍ୟର ସହିତ ମୁଣ୍ଡଥଣ୍ଡା ରଖି ଉଗ୍ର ସମାଲୋଚନାର ସାମନା କରିବାକୁ ପଡୁଥିଲା । ଏହାର ସୁଫଳ ମଧ୍ୟ ନଗଦ ଦେଖିବାକୁ ମିଳୁଥିଲା । କିଛି ସମୟ ଯୁକ୍ତି କରିବାର ପରେ ସମାଲୋଚକଙ୍କ ଭିତରୁ ଅଧିକାଂଶ ସମସ୍ତ ବ୍ୟାପାରଟାକୁ ତଳେଇ ଦେଖିବା ପାଇଁ ଚେଷ୍ଟାକରୁଛନ୍ତି, କେବଳ ବିତଣ୍ଡା କରୁନାହାନ୍ତି ବୋଲି ଆମେ ଅନୁଭବ କରୁଥାଉଁ ।

ଲୋକଙ୍କ ଭ୍ରମ ଧାରଣାକୁ ଦୂରକରିବା ପାଇଁ ତଥ୍ୟକୁ ନୂଆ ଆଲୋକରେ ରଖିବାରେ ଦାଦାର ଖାସ୍ ପଟୁତା ଅଛି । ପାକିସ୍ତାନୀ ଗୁପ୍ତଚରଙ୍କ ବିଷୟରେ ଆଲୋଚନା ପ୍ରସଙ୍ଗରେ ସେ ଲୋକଙ୍କୁ ପଚାରେ ଯେ, ଆମର ବି ତ ଗୁପ୍ତଚର ପାକିସ୍ତାନରେ ଅଛନ୍ତି । କିନ୍ତୁ ସେମାନେ କ'ଣ ପଇତା ପକେଇ, ଚିତା ଚଇତନ କରି, ଚୁଟି ରଖି ସେଠି ବୁଲୁଛନ୍ତି ? ସେମିତି ତାଙ୍କ ଗୁପ୍ତଚର କ'ଣ ଏଠି କଦାପି ମୁସଲମାନ ବେଶରେ ରହୁଥିବେ ବା ଜଣାଶୁଣା ମୁସଲମାନମାନଙ୍କ ସାଙ୍ଗରେ ମିଶୁଥିବେ ? ସେମାନେ ସବୁ ସରକାରୀ ଅଫିସରେ ଥିବା ହିନ୍ଦୁ ହିଁ ହେଉଥିବେ । କଥାଟା ଲୋକଙ୍କ ମନକୁ ପାଉଥିଲା । ଏହିପରି ସବୁ ବିଷୟରେ ପ୍ରଚାରପତ୍ର ଓଡ଼ିଆ ଓ ହିନ୍ଦୀରେ ନିୟମିତ ବାହାର କରାଯାଉଥିଲା । ମଝିରେ ମଝିରେ ଗୋଟାଏ ଗୋଟାଏ ଆତଙ୍କମୂଳକ ଗୁଜବ ବ୍ୟାପୁଥାଏ । ସେ ସବୁକୁ ତୁରନ୍ତ ଯାଞ୍ଚକରି ଲୋକଙ୍କୁ ପ୍ରକୃତ ତଥ୍ୟ ପ୍ରଚାରପତ୍ର ମାଧ୍ୟମରେ ଯୋଗାଇ ଦିଆଯାଏ । ମୁସଲମାନଙ୍କୁ ରକ୍ଷା କରିବା ଓ ଶାନ୍ତି ସଦ୍‌ଭାବ ସ୍ଥାପନ ଦିଗରେ କେହି କିଛି ପ୍ରଶଂସନୀୟ କାର୍ଯ୍ୟ କଲେ ସେ ସବୁର ବିବରଣୀ ମଧ୍ୟ ଏହିପରି ପ୍ରଚାର କରାଯାଏ । କାରଖାନାର ପାଳି ବଦଳିବା ବେଳେ କାରଖାନା ଫାଟକ ପାଖରେ ପ୍ରଚାରପତ୍ର ନେଇ ପହଞ୍ଚିଲେ ତାହା ଗରମ ଗରମ ଚନାଚୂର ପରି ସାଙ୍ଗେ ସାଙ୍ଗେ ଖତମ ହୋଇଯାଉଥିଲା ।

ଏ ସବୁର ସୁଫଳ ହେଲା ଯେ ଯେଉଁସବୁ ସାଧୁ ଓ ସଚ୍ଚୋଟ ଲୋକ ଗଣ୍ଡଗୋଳ ଭିତରେ ଭୟରେ ନୀରବ ରହି ଯାଇଥିଲେ ସେମାନେ ପଦାକୁ ବାହାରିଲେ ଓ ଆମକୁ ସାହାଯ୍ୟ କରିବା ଆଗେଇ ଆସିଲେ । ଏହିରୂପେ ରାଉରକେଲାରେ ଶାନ୍ତିସେନା ସଂଗଠନର ମୂଳଦୁଆ ପଡ଼ିଲା । ପରେ ଏଠାରେ ଶାନ୍ତିସେନା ସମିତି ସାରା ଭାରତ ଭିତରେ ଏପରି ଏକ ଅନନ୍ୟ ସଂଗଠନ ହେଇ ଛିଡ଼ାହେଲା ଯେଉଁଥିରେ ସ୍ଥାନୀୟ ନାଗରିକମାନେ ହିଁ ମୂଳପିଣ୍ଡ ଓ ପରେ ଓଡ଼ିଆ-ବଙ୍ଗାଳୀ ଓ ଅନ୍ୟାନ୍ୟ ଗଣ୍ଡଗୋଳବେଳେ ସେମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ଶାନ୍ତିରକ୍ଷା ଦିଗରେ ଖୁବ୍ ଭଲ କାମ କରିଛନ୍ତି ।

ରାଉରକେଲା ଆଖପାଖର ଗାଁମାନଙ୍କରେ ପରେ ଉତ୍କଳ ନବଜୀବନ ମଣ୍ଡଳର କେତୋଟି କେନ୍ଦ୍ର ଖୋଲାହେଲା । ସେ ସବୁ କେନ୍ଦ୍ର ଓ ତା'ର ଆଖପାଖ ଗାଁମାନଙ୍କରୁ ଯେଉଁସବୁ ମୁସଲମାନ ପଳେଇ ଯାଇଥିଲେ ସେମାନଙ୍କୁ ସେ ସବୁ ସ୍ଥାନକୁ ଫେରାଇ ନେଇ ସେଠି ପୁଣି ବସବାସ କରାଇବାର ହାୱା ସେମାନେ ଅଧିକାଂଶ ସ୍ଥାନରେ ସୃଷ୍ଟି କରିପାରିଥିଲେ । କେତେକ ସ୍ଥାନରେ ଗାଁ ଲୋକେ ମୁସଲମାନମାନଙ୍କର ଘର ପୁଣି ତିଆରି କରିଦେବାରେ ସାହାଯ୍ୟ ମଧ୍ୟ କରିଥିଲେ ।

ମୁସଲମାନମାନଙ୍କୁ ଲୁଚେଇ ରଖିବାର, ସେମାନଙ୍କୁ ଆଶ୍ରୟ ଦେବାର ଓ ଏପରିକି ଆକ୍ରମଣକାରୀଙ୍କଠାରୁ ସେମାନଙ୍କୁ ରକ୍ଷା କରିବା ପାଇଁ ସାହସର ସହିତ ଆଗେଇ ଆସିବାର କିଛି ଘଟଣା ମଧ୍ୟ କ୍ରମେ ଜଣାପଡ଼ିବାକୁ ଲାଗିଲା । ରିଜିଅନାଲ୍ ଇଞ୍ଜିନିୟରିଂ କଲେଜର ଅଧ୍ୟକ୍ଷଙ୍କ ନେତୃତ୍ୱରେ ସେଠାର ଶିକ୍ଷକ ଓ ଛାତ୍ରମାନେ ଏ ସମସ୍ତ ଗଣ୍ଡଗୋଳରୁ ସଂପୂର୍ଣ୍ଣ ଅଲଗା ରହିଥିଲେ ଓ ସଂସ୍ଥାର ହତା ଭିତରେ ଥିବା ତଥା ବାହାରୁ ଯାଇ ସେଠି ଆଶ୍ରୟ ନେଇଥିବା ଅନେକ ମୁସଲମାନଙ୍କୁ

ଆଶ୍ରୟ ଦେଇଥିଲେ ଓ ରକ୍ଷା କରିଥିଲେ । ରାଉରକେଲା ସାଙ୍ଗେ ସାଙ୍ଗେ ଟାଟାନଗର ଓ ରାଞ୍ଚି ଜିଲ୍ଲାର କେତେକ ଅଞ୍ଚଳରେ ମଧ୍ୟ ସେହିପରି ଭୟଙ୍କର ହତ୍ୟାକାଣ୍ଡ ଘଟିଥିଲା । ସେଥିରେ ମୃତାହତ ସଂଖ୍ୟା ମଧ୍ୟ ସେହିପରି ବିପୁଳ ଥିଲା । ରାଞ୍ଚି ଜିଲ୍ଲାର ସିମଡ଼େଗା ଅଞ୍ଚଳରେ ଫାଦର ରାଶଖାର୍ଟ ନାମକ ଜଣେ ଯୁବକ ବେଲ୍‌ଜିୟାନ ପାଦ୍ରୀ ଆଦିବାସୀଙ୍କୁ ହତ୍ୟାକାଣ୍ଡରୁ ନିବର୍ତ୍ତେଇବାକୁ ଯାଇ ନିଜେ ସେମାନଙ୍କ ହାତରେ ପ୍ରାଣ ଦେଲେ । ତାଙ୍କର ବୟସ ମୋଟେ ୪୦ ବର୍ଷ ଓ ସେଥିରୁ ସେ ଭାରତରେ ପ୍ରାୟ ୨୦ ବର୍ଷ କଟାଇଥିଲେ । ଏହାଙ୍କ ଆତ୍ମବଳିର ସମ୍ବାଦ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିଥିଲା ଓ ଆମ ନିଜର ଉଦ୍ୟମ ବିଷୟରେ ନମ୍ରତା ଆଣି ଦେଇଥିଲା । ଜେ.ପି. ଟାଟାନଗର ଓ ତା'ର ଆଖପାଖରେ ଖୁବ୍ ବଡ଼ ବଡ଼ ସାଧାରଣ ସଭା କରି ଶାନ୍ତି ଓ ସଦ୍‌ଭାବ ଫେରାଇ ଆଣିବାରେ ବିପୁଳ ପରିମାଣରେ ସାହାଯ୍ୟ କରିଥିଲେ । ତାଙ୍କର ରାଉରକେଲା ଆସିବା କଥା ମଧ୍ୟ ଥିଲା । ମାତ୍ର ଏଠା କର୍ତ୍ତୃପକ୍ଷ ବଡ଼ ସାଧାରଣ ସଭା କରିବାକୁ ଅନୁମତି ଦେବାକୁ ଡରିଲେ । ତେଣୁ ଜେ.ପି.ଙ୍କ କାର୍ଯ୍ୟକ୍ରମ ବାତିଲ ହେଲା ।

ଆପ୍ପାସାହେବଙ୍କ ପରାମର୍ଶ ଅନୁସାରେ ଏହି ହତ୍ୟାକାଣ୍ଡ ବିଷୟରେ ସ୍ପଷ୍ଟ ମତାମତ ପ୍ରକାଶ କରି ଓ ସେଥିପାଇଁ ଆତ୍ମ ନିରୀକ୍ଷଣ ଓ ପ୍ରାୟଶ୍ଚିତ କରିବା ପାଇଁ ଦେଶବାସୀଙ୍କୁ ନିବେଦନ କରି ଏକ ବିବୃତି ପ୍ରକାଶ କରିବାର ସ୍ଥିର ହେଲା । ଏ ବିବୃତି ରାଉରକେଲାରେ ତିଆରି ହେଲା । ସେଥିରେ ଆପ୍ପାସାହେବ, ଦାଦା, ଖୁଡ଼ୀ ଓ ମୁଁ ସ୍ୱାକ୍ଷର କରିବା ତ ସ୍ଥିର ହେଲା, ଜୟପ୍ରକାଶଜୀ ଓ ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କର ସ୍ୱାକ୍ଷର ମଧ୍ୟ ସଂଗ୍ରହ କରିବା ସ୍ଥିର ହେଲା । ଫଳରେ ତାହା ଜେ.ପି. ଚାରୁଦା (ଚାରୁଚନ୍ଦ୍ର ଭଣ୍ଡାରୀ), ଅନ୍ନଦାଶଙ୍କର ରାୟ ଓ ଆମ ଚାରିଜଣଙ୍କର ସ୍ୱାକ୍ଷରରେ ପ୍ରକାଶ ପାଇଲା । ଏଥିରେ ସ୍ତ୍ରୀଲୋକମାନଙ୍କ ଉପରେ ବ୍ୟାପକ ଅତ୍ୟାଚାର କଥା ବର୍ଣ୍ଣନା କରାହେଇଥିଲେ ଓ ସେହି ସମୟରେ ପୂର୍ବ ପାକିସ୍ତାନରେ ଘଟିଥିବା ହତ୍ୟାକାଣ୍ଡରେ ଅନ୍ୟୁନ ପନ୍ଦରଜଣ ମୁସଲମାନ ଯୁବକ ହିନ୍ଦୁମାନଙ୍କୁ ରକ୍ଷା କରିବାକୁ ଯାଇ ପ୍ରାଣ ଦେଇଥିବା ଘଟଣାର ପ୍ରଶଂସା କରାଯାଇଥିଲା । ଏ ବିବୃତିକୁ ବହୁ ଲୋକେ ଯେମିତି ସ୍ୱାଗତ କଲେ ସେହିପରି ଏହାର କଟୁ ସମାଲୋଚନା ମଧ୍ୟ ଶୁଣିବାକୁ ମିଳିଲା । ଶକ୍ତିବାବୁଙ୍କ ମାର୍ଫତ ଶୁଣାଗଲା ଯେ, କଲିକତାର ଅନେକ ଭଦ୍ରଲୋକ ଆପତ୍ତି କରୁଛନ୍ତି ଯେ, ଏଥିରେ ଯେଉଁ ନାରୀଧର୍ଷଣ କଥା କୁହାଯାଇଥିଲା ତାହା ଯଥାର୍ଥ ନୁହେଁ । ଅର୍ଥାତ୍ ଯେଉଁମାନେ ଆବାଳବୃଦ୍ଧବନିତା ତିନି ହଜାର ନିରପରାଧ ଲୋକଙ୍କୁ ହତ୍ୟାକଲେ ସେମାନଙ୍କ ଭିତରୁ ଅନେକେ ନାରୀ ଧର୍ଷଣ ଓ ଲୁଟତରାଜ ମଧ୍ୟ କଲେ ବୋଲି କହିବା ଦ୍ୱାରା ସେମାନଙ୍କର ସାଧୁତା ଓ ସମ୍ମାନ ଉପରେ ଆଞ୍ଚ ଆସିଲା । ଏହାପରେ ଶକ୍ତିବାବୁ ନିଜେ ରାଉରକେଲା ବୁଲି ଆସି ପ୍ରକୃତ ଘଟଣା ବୁଝିଯାଇଥିଲେ ଓ ସେ ଫେରିଯାଇ ଉପରୋକ୍ତ ବନ୍ଧୁମାନଙ୍କୁ ବୁଝାଇଥିବେ ।

ଏହାରି ପରେ ପରେ ରାଉରକେଲା ହତ୍ୟାକାଣ୍ଡ ବିଷୟରେ ଖଣ୍ଡେ ପୁସ୍ତିକା ସର୍ବ ସେବା ସଂଘ ପକ୍ଷରୁ "ଏ ଟାଇମ୍ ଟୁ ସିକ୍" - କହିବାବେଳେ ଆସିଛି" -ନାଁରେ ବାହାରିଲା । ସେଥିରେ ଉପରୋକ୍ତ ବିବୃତି ଓ ରାଉରକେଲା ହତ୍ୟାକାଣ୍ଡ ସମ୍ବନ୍ଧରେ ମୁଖ୍ୟ ମୁଖ୍ୟ ତଥ୍ୟ ଦିଆଯାଇଥିଲା ।

ଏ ପୁସ୍ତିକା ଖଣ୍ଡିକ ସାରା ଦେଶରେ ମୁସଲମାନମାନଙ୍କ ଭିତରେ ସର୍ବୋଦୟ ଆନ୍ଦୋଳନ ପ୍ରତି ବିଶ୍ୱାସ ଓ ଆଦର ସମ୍ମାନର ଭାବ ବହୁତ ବଢ଼େଇ ଦେଇଥିଲା । ସେତେବେଳେ ଉଭୟ ଭାରତ ସରକାର ଓ ରାଜ୍ୟ ସରକାରଙ୍କ ପକ୍ଷରୁ ଏ ଘଟଣାର ଗୁରୁତ୍ୱକୁ ଯଥାସମ୍ଭବ ଜଣାକରି ଦେଖାଇବା ଉଦ୍ୟମ ହେଉଥିଲା । ବୀରେନଦା ପ୍ରଥମେ ଏ ହତ୍ୟାକାଣ୍ଡର ଆକାର ପ୍ରକାର ବିଷୟରେ ଖୁବ୍ ଖାଣ୍ଟି ଓ ସ୍ପଷ୍ଟ କଥା କହିଥିଲେ  ମଧ୍ୟ ସରକାରୀ କାଗଜପତ୍ରରେ ମୃତାହତ ସଂଖ୍ୟା ବହୁତ କମ୍ କରି ଦେଖା ହେଉଥିଲା । ସ୍ୱରାଷ୍ଟ୍ରମନ୍ତ୍ରୀ ଗୁଲଜାରୀଲାଲ ନନ୍ଦା ଲୋକସଭାରେ ପ୍ରକାଶ କରିଥିଲେ ଯେ, ଏ ଘଟଣାରେ ମୃତ୍ୟୁ ସଂଖ୍ୟା ଚାରିଶହରୁ ଊଣା । ସ୍ୱଭାବତଃ ଆମର ଏ ପୁସ୍ତିକା ଖଣ୍ଡିକ ଯୋଗୁଁ ଭାରତ ସରକାର ଓ ରାଜ୍ୟ ସରକାରଙ୍କ ନେତାମାନେ  ବିରକ୍ତ ହେଇଥିଲେ । ଏ ଖଣ୍ଡ କେହି ନେଇ ରାଷ୍ଟ୍ରସଂଘରେ ତାହାର ଉଲ୍ଲେଖ କରିଥିବାର ଖବର ମଧ୍ୟ ମିଳିଲା ।

ଏ ବିବୃତି ବିଷୟରେ ବିନୋବାଙ୍କ ପ୍ରତିକ୍ରିୟା ବିଚିତ୍ର ପ୍ରକାରର ହେଇଥିଲା । ସେ ମତେ ଏହାପରେ ଦିନେ କହିଲେ ଯେ, ବିବୃତିକୁ ପଢ଼ି ଭିଲାଇ ସହରର ଦୁଇଜଣ ଭଦ୍ରଲୋକ ଆଉ ସର୍ବୋଦୟ ପାତ୍ର ରଖିବେ ନାହିଁ ବୋଲି ତାଙ୍କୁ ଚିଠି ଲେଖିଛନ୍ତି । ମୋ ମନ ଉପରେ ଏଇ ଛପ ପଡ଼ିଲା ଯେ, ସେ ଏହା ଦ୍ୱାରା ବିବୃତ୍ତିର ମୃଦୁ ସମାଲୋଚନା କଲେ । ଆଉ ଏକ କର୍ମୀ ଶିବିରରେ ସେ ବିବୃତି ଓ ପୁସ୍ତିକାକୁ ଲକ୍ଷ୍ୟକରି କହିଲେ ଯେ ବର୍ତ୍ତମାନ ପରିସ୍ଥିତିରେ ଯେତେବେଳେ ଦୁନିଆରେ ଅଶାନ୍ତିର ସମ୍ଭାବନା ଘୋଟି ରହିଛି, ସେତେବେଳେ ଅହିଂସା ଦୃଷ୍ଟିରୁ ସତ୍ୟକୁ ଟିକିଏ ଊଣା ମହତ୍ତ୍ୱ ଦେବା ଉଚିତ ହେବ । ଏ ପରାମର୍ଶ ମତେ ସେତେବେଳେ ବିଚିତ୍ର ଲାଗିଥିଲା । ବର୍ତ୍ତମାନ ଏହାର ତାତ୍ପର୍ଯ୍ୟ ବୁଝିହେଉଛି । ଗତାନୁଗତିକ ଢଙ୍ଗରେ ଯାହାକୁ ରାଷ୍ଟ୍ରର ପ୍ରତିଷ୍ଠା ବା ସରକାରର ପ୍ରତିଷ୍ଠା ବୋଲି ମନେକରାଯାଏ ସେଥିରେ ଆଞ୍ଚ ଆସିବାଭଳି କିଛି ନ କହିବାର ନୀତି ତାଙ୍କର ମୂଳରୁ ଥିଲା । ଆମେ ଯେ ଗୁଲଜାରୀଲାଲ ନନ୍ଦାଙ୍କର ବିବୃତିକୁ ମିଥ୍ୟା ପ୍ରମାଣ କଲୁ ଏଇଟା ତାଙ୍କୁ ଭଲ ଲାଗି ନଥିଲା । ପରେ ସେ ଏକ କଥାପ୍ରସଙ୍ଗରେ ନନ୍ଦାଙ୍କର 'ତେଜୋହାନି' କରିବା ଉଚିତ ନୁହେଁ ବୋଲି ଉଲ୍ଲେଖ କରିଥିଲେ । ଯେମିତିକି ନନ୍ଦାଙ୍କର 'ତେଜ'ର ମୂଲ୍ୟ ଆଗରେ ହଜାର ହଜାର ପରିବାରର ମାନସମ୍ମାନ ଓ ଧନଜୀବନର ମୂଲ୍ୟ କିଛି ନାହିଁ ।

ସେତେବେଳେ ଆମ ଦୃଢ଼ ବିଶ୍ୱାସ ଥିଲା ଓ ଏବେ ବି ରହିଛି ଯେ ସେ ବିବୃତି ଓ ପୁସ୍ତିକା ପ୍ରକାଶିତ କରି ଆମେ ବିଲକୁଲ ଠିକ୍ କାମ କରିଥିଲୁ । ସତ୍ୟକୁ ଗୋପନ କରି, ମିଥ୍ୟାକୁ ପ୍ରଶ୍ରୟ ଦେଇ କୌଣସି ରାଷ୍ଟ୍ରର ବା ବ୍ୟକ୍ତିର ସମ୍ମାନ କଦାପି ବଢ଼ିପାରେ ନାହିଁ । ବରଂ ଅପ୍ରିୟ ସତ୍ୟକୁ ସ୍ୱୀକାର କରିବାର ସାହସ ହିଁ ସମ୍ମାନ ବଢ଼ାଏ । ଭାରତରେ ଯେ ସର୍ବ ସେବା ସଂଘ ଭଳି ଏକ ସଂସ୍ଥାର ଓ ଜେ.ପି. ଆପାସାହେବ, ନବବାବୁ, ମାଳତୀ ଦେବୀ,  ଅନ୍ନଦାଶଙ୍କର ରାୟ ଆଦିଙ୍କ ଭଳି ବ୍ୟକ୍ତିଙ୍କର ଅପ୍ରିୟ ସତ୍ୟକୁ ସ୍ୱୀକାର କରିବାର ସତ୍‌ସାହସ ଅଛି । ଏହା ବରଂ ଦୁନିଆ ଆଖିରେ ଏ ଦେଶର ସମ୍ମାନ ବହୁତ ବଢ଼େଇ ଦେଇଛି ।

ହତ୍ୟାକାଣ୍ଡରେ ନିତିଦିନିଆ ନିରୀହ ଓ ଭଦ୍ର ମନୁଷ୍ୟର ଚରିତ୍ରରେ ଲୁଚି ରହିଥିବା ପୈଶାଚିକତାର ଯେଉଁ ଦର୍ଶନ ମିଳିଲା ତାହା ଆମକୁ ସ୍ତମ୍ଭିତ କରି ଦେଇଥିଲା । କିନ୍ତୁ ପରେ ପିଚାରି ଦେଖିଛି ଯେ ଏହାକୁ ସର୍ବସାଧାରଣ ମନୁଷ୍ୟର ଚରିତ୍ର ବୋଲି କହିବା ଠିକ୍‌ହେବ ନାହିଁ । ଆଦିବାସୀଙ୍କର ହତ୍ୟାକାଣ୍ଡରେ ନୃଶଂସତାର ଉଲ୍ଲାସ ଥିବାର ଲକ୍ଷ୍ୟ କରାଯାଇ ନଥିଲା । ସେମାନେ ଜୀଅନ୍ତା ଶିଶୁକୁ ନିଆଁରେ ପୋଡ଼ି ଆନନ୍ଦ ଅନୁଭବ କରିନଥିଲେ । ସ୍ତ୍ରୀଲୋକ ଓ ଶିଶୁକୁ ସେମାନେ କ୍ୱଚିତ ହାତ୍ୟା କରିଛନ୍ତି । ସ୍ତ୍ରୀଲୋକମାନଙ୍କ ଉପରେ ପାଶବିକ ଅତ୍ୟାଚାର ଓ ଅତି ଜଘନ୍ୟ ଭାବରେ ସେମାନଙ୍କ ଶରୀରକୁ କ୍ଷତବିକ୍ଷତ କରିବା ସେମାନଙ୍କର ପଦ୍ଧତି ନଥିଲା । ଯେତେଦୂର ଦେଖାଯାଉଛି ଅଧିକ ସଭ୍ୟ ଓ ବଡ଼ ବଡ଼ ବ୍ୟାପକ ଧର୍ମର ଅନୁଗାମୀମାନଙ୍କ ଭିତରେ ହିଁ ଏଭଳି ପାଶବିକତା ଓ ନୃଶଂସତା ବେଶି ରହିଛି । ଏହାର ରହସ୍ୟ ଉଦ୍‌ଘାଟନ କରିବାରେ ଫ୍ରିୟେଡ୍ ଓ ମାର୍କ୍ସ ଉଭୟଙ୍କର ବିଶ୍ଳେଷଣର ପଦ୍ଧତି ହିଁ ସାହାଯ୍ୟ କରିପାରିବ ବୋଲି ମନେହୁଏ ।

## ତୋଫାନୀ ଗ୍ରାମଦାନ ଓ ଦୁର୍ଭିକ୍ଷ

୧୯୬୫ ରେ ବିନୋବାଙ୍କ ମନରେ ତୋଫାନୀ ଗ୍ରାମଦାନ ଆନ୍ଦୋଳନର କଳ୍ପନା ଆସିଲା ଓ ସେ ବିହାରରେ ତାହା ଆରମ୍ଭ କରିବାପାଇଁ ସେଠାରେ କର୍ମୀମାନଙ୍କୁ ପ୍ରେରଣା ଦେଲେ । ସେମାନେ ମଧ୍ୟ ତାହା ଗ୍ରହଣ କଲେ ଓ ବିହାରରେ ବର୍ଷକ ଭିତରେ ଦଶ ହଜାର ଗ୍ରାମଦାନ ସଂଗ୍ରହ ପାଇଁ ଉଦ୍ୟମ ଚାଲିଲା । ବିନୋବା ମୋଟରରେ ଯାତ୍ରାକରିବା ଆରମ୍ଭ କଲେ ଓ ଯାଇ ବିହାରରେ ପହଞ୍ଚିଲେ । ଏହା ଭିତରୁ କ୍ରମେ ଜିଲ୍ଲାଦାନ ଓ ତା'ପରେ ରାଜ୍ୟଦାନ କଳ୍ପନା ବାହାରିଲା । ଏ ଆନ୍ଦୋଳନାରେ ଜେ.ପି. ମଧ୍ୟ ପୂର୍ଣ୍ଣପ୍ରାଣରେ ଲାଗିଲେ । ୧୯୬୫ରେ ସର୍ବୋଦୟ ସମ୍ମିଳନୀ ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ ହେଲା । ସେ ଜିଲ୍ଲାର ଅଧିକାଂଶ ଗାଁ ଗ୍ରାମଦାନ ହେଇ ତାହା ଜିଲ୍ଲାଦାନରୂପେ ଘୋଷିତ ହେଇଥାଏ । ଏ ସମ୍ମିଳନୀରେ ବିନୋବା ମଧ୍ୟ ଉପସ୍ଥିତ ଥିଲେ । ଏଇଠି ମତେ ଦ୍ୱିତୀୟ ଥର ପାଇଁ ସର୍ବ ସେବା ସଂଘର ଅଧ୍ୟକ୍ଷ ରୂପେ ବଛାଗଲା । ପୂର୍ବରୁ ପ୍ରତିବର୍ଷ ଅଧ୍ୟକ୍ଷ ବଛାଯିବାର ନିୟମ ଥିଲା । ମାତ୍ର ମଝିରେ ତାକୁ ବଦଳାଇ ତିନି ବର୍ଷରେ ଥରେ ସର୍ବ ସେବା ସଂଘର ଅଧ୍ୟକ୍ଷ ନିର୍ବାଚନ ହେବ ବୋଲି ନିୟମ କରି ଦିଆଯାଇଥାଏ ।

କ୍ରମେ ରାଜ୍ୟଦାନର କଳ୍ପନା ସାରାଦେଶରେ ବ୍ୟାପିଲା । ଜେ.ପି. ହିଁ ସାରା ଦେଶରେ ବୁଲି ବୁଲି ତା'ର ପ୍ରଚାର କଲେ । ପ୍ରଥମେ ତ ଜିଲ୍ଲାଦାନ ପାଇଁ ଉଦ୍ୟମ ଚାଲିଥିଲା ଓ ବିଭିନ୍ନ ରାଜ୍ୟରେ ଗୋଟିଏ ଯୋଡ଼ିଏ ଲେଖା ଜିଲ୍ଲା ସେପରି ହେଇଥିଲା । ଓଡ଼ିଶାରେ ବି କୋରାପୁଟ ଓ ମୟୂରଭଞ୍ଜ ଜିଲ୍ଲାମାନ ଜିଲ୍ଲାଦାନ ଘୋଷିତ ହେଲା ଓ ତା'ପରେ ଓଡ଼ିଶାରେ ସର୍ବୋଦୟ ମଣ୍ଡଳ ରାଜ୍ୟଦାନର ସଙ୍କଳ୍ପ କଲେ । ତାମିଲନାଡୁ, ମହାରାଷ୍ଟ୍ର ପ୍ରଭୃତି ଅନ୍ୟ କେତେକ ରାଜ୍ୟରେ ମଧ୍ୟ ରାଜ୍ୟଦାନ ସଂକଳ୍ପ କରାହେଲା ।

ଇତିମଧ୍ୟରେ ୧୯୬୭ ରେ ବିହାରରେ ବ୍ୟାପକ ମରୁଡ଼ି ଯୋଗୁଁ ବ୍ୟାପକ ଓ ଭୟଙ୍କର ଦୁର୍ଭିକ୍ଷ ଦେଖାଦେଲା । ଯଦି ଜେ.ପି. ସେତେବେଳେ ସାହାଯ୍ୟ ସମିତି ଗଢ଼ି ସାରା ଦୁନିଆରୁ ଧନ ବଳ ଓ ଲୋକବଳର ସାହାଯ୍ୟ ଜୁଟେଇ ଲୋକଙ୍କୁ ରକ୍ଷାକରିବା କାମରେ ଲାଗି ନ ପଡ଼ିଥା'ନ୍ତେ ତେବେ କେତେ ସହସ୍ର ବା ଲକ୍ଷ ଲୋକ ଯେ ପ୍ରାଣ ହରେଇଥାନ୍ତେ ତାହା କହି ହେବ ନାହିଁ । ବିହାରର ଦୁର୍ନୀତିଗ୍ରସ୍ତ ଶାସନକଳ ଏହାର ସଫଳ ମୁକାବିଲା କରିବା ତ ଅସମ୍ଭବ କଥା ଥିଲା । ଜେ.ପି.ଙ୍କ ଉଦ୍ୟମରେ ସାରା ପୃଥିବୀରୁ ସାହାଯ୍ୟ ଆସିଲା, କର୍ମୀ ଆସିଲେ ଓ ଯୁଦ୍ଧ ଉଦ୍ୟମ ଭଳି କାମ ଚାଲିଲା ।

ବିନୋବା କିନ୍ତୁ ଏ ଉଦ୍ୟମକୁ ପୂରା ପସନ୍ଦ କଲେ ନାହିଁ । ସେ କହିଲେ ଯେ, ଲୋକଙ୍କୁ ସାହାଯ୍ୟ ଦେଇ ବଞ୍ଚେଇବା ଚେଷ୍ଟା ଅନାବଶ୍ୟକ, କାରଣ କାହାରି ପ୍ରାରବ୍ଧ ଶେଷ ନ ହେବା ଯାଏ ସେ ମରେ ନାହିଁ ଓ ଯାହାର ପ୍ରାରବ୍ଧ ଶେଷ ହେଇଛି ସେ ଯେତେ ଯାହା କଲେ ବି ମରିବ । କେହି ତାକୁ ବଞ୍ଚେଇ ପାରିବେ ନାହିଁ । ତେଣୁ ଏ ସାହାଯ୍ୟ କାମ ଅନାବଶ୍ୟକ । ସବୁ ଶକ୍ତି ଗ୍ରାମଦାନରୂପୀ ବିପ୍ଳବ କାମରେ ଲାଗିବା ଚାହି । ପରେ ଅବଶ୍ୟ ସେ ଏ ଆଭିମୁଖ୍ୟକୁ ଅଳ୍ପ ବଦଳାଇ କହିଲେ ଯେ, ସାହାଯ୍ୟ ଦେବ ତ ଗ୍ରାମସଭା ଗଢ଼ି ତାହାରି ମାଧ୍ୟମରେ ଦିଅ ।

ସଙ୍କଟ ତ୍ରାଣ କାମ ଓ ବୈପ୍ଳବିକ ଉଦ୍ୟମ ଭିତରେ ଦ୍ୱନ୍ଦ୍ୱ ମୁଁ ମଧ୍ୟ ବାରମ୍ବାର ଅନୁଭବ କରିଛି । ଆମେ ଦୁଃଖଦୁର୍ଦ୍ଦଶାର ଘଟଣା ଦେଖି ତାହା ଦୂରକରିବା ଚେଷ୍ଟା କରୁ ମାତ୍ର ଭୋକିଲା ଲୋକଙ୍କୁ ତୁରନ୍ତ ମୁଠାଏ ଖାଇବାକୁ ଦେବା, ଲଙ୍ଗଳା ଲୋକଙ୍କୁ ଲୁଗାଖଣ୍ଡେ ଦେବା, ରୋଗୀକୁ ଔଷଦ ଟୋପିଏ ଦେଇ ତା'ର ନଗଦ ଦୁଃଖ ଦୂରକରିବା ଚେଷ୍ଟାରେ ଲାଗି ଆମେ ସେ ଦୁଃଖଦୁର୍ଦ୍ଦଶାର ମୂଳକାରଣ ଦେଖିପାରୁନାହିଁ । ଏମିତି ଦୁନିଆରେ କେତେ ବଡ଼ ବଡ଼ ସଂସ୍ଥା ଦୁର୍ଗତ ସାହାଯ୍ୟ କାମ କରୁଛନ୍ତି, ମାତ୍ର ତଥାପି ପୃଥିବୀର ଜନତାର ଦୁଃଖ ବଢ଼ିଚାଲିଛି । ଅନ୍ୟାୟ ଓ ବୈଷମ୍ୟମୂଳକ ସମାଜ ଓ ଅର୍ଥବ୍ୟବସ୍ଥା ଦରିଦ୍ର ଓ ବେକାରଙ୍କ ସଂଖ୍ୟା, ସେମାନଙ୍କର ଦୁଃଖ, ବଢ଼େଇ ଚାଲିଛି । ସେବକର ସବୁ ସହାନୁଭୂତି ଓ ସଦିଚ୍ଛା ସମସ୍ୟାର ଧଡ଼ିକୁ ସୁଦ୍ଧା ଛୁଇଁ ପାରୁ ନାହିଁ । ତା'ର ସବୁ ଶକ୍ତି ଖାଲି ଉପରଠାଉରିଆ ଦୁଃଖ ଦୂରକରିବାରେ ଖର୍ଚ୍ଚ ହେଇଯାଉଛି ।

ସମାଜର ରୂପ ବଦଳେଇବା କାମ ପାଇଁ ତା'ର ଶକ୍ତି ଆଉ ବଳୁନାହିଁ । ମାଓ-ସେ-ତୁଙ୍ଗ ରିଲିଫ୍ କମିଟି ଗଢ଼ି ବନ୍ୟା ସାହାଯ୍ୟ ଧନ୍ଦାକୁ ଧରିଥାନ୍ତେ ତ ଚୀନ୍ ବିପ୍ଳବ କରିବାକୁ ସମୟ ପାଇଥାନ୍ତେ କି ?

ମାତ୍ର ପୁଣି ମୁଁ ଯାବି ଦେଖେ ଯେ ଅନେକଙ୍କ ପାଇଁ ବିପ୍ଳବ କେବଳ ଗୋଟାଏ ଆକର୍ଷକ ତାତ୍ତ୍ୱିକ-କଳ୍ପନା । ଲୋକଙ୍କର ପ୍ରତ୍ୟକ୍ଷ ଦୁଃଖସୁଖ ସହିତ ତା'ର ଯେମିତି ସମ୍ବନ୍ଧ ନାହିଁ । ଗାଁର ବା ସାହିର ବୁଭୁକ୍ଷୁ ବା ରୁଗ୍ଣ ପିଲା ଦେଖି ମୋ ମନରେ ବି ବେଳେବେଳେ ହେଇଛି ଯେ, ଏଇଳି କୋଟି କୋଟି ପିଲା ତ ଏ ଦେଶରେ ଅଛନ୍ତି । ଏ ଗୋଟିକ କି ପାଞ୍ଚୋଟି ପିଲା କଥା ଭାବି ଓ ତାକୁ ସାହାଯ୍ୟ କରିବା ଚେଷ୍ଟା କରି କ'ଣ ହେବ ? ପରେ ମନେ ହେଇଛି ଯେ,

ନିଜର ବିବେକ ବା ସଂବେଦନଶୀଳତାର ତାଡ଼ନାକୁ ଏଡ଼େଇବା ପାଇଁ ଏ ବିଶ୍ୱସମସ୍ୟା ଓ ବିପ୍ଳବ ବେଶ୍ ଖାସା ବାହାନା ଯୋଗଉଛି । ସାଇପଡ଼ିଶାର ପ୍ରତ୍ୟକ୍ଷ ଦୁଃଖଦୁର୍ଦ୍ଦଶାରେ ନିଜର କର୍ତ୍ତବ୍ୟରୁ ବିପ୍ଳବକୁ ଏପରି ଅଲଗା କରି ଦେବାଦ୍ୱାରା ବିପ୍ଳବ ଗୋଟାଏ ବିମୂର୍ତ୍ତ କଳ୍ପନା ହେଇଯାଉ ନାହିଁ ତ ଓ ତା' ପଛରେ ଚାଲିବା ଲୋକ କ୍ରମେ ସଂବେଦନହୀନ ହେଇଯାଏ ନାହିଁ ତ ?

୧୯୬୬ ରେ କଳାହାଣ୍ଡିରେ ମରୁଡ଼ି ଓ ଦୁର୍ଭିକ୍ଷ ପଡ଼ିଲା ଓ ସେଠି ଅନ୍ନ ବିନା କେତେକ ଲୋକ ମଲେଣି ଏ ଖବର ପାଇବାମାତ୍ରେ ବୋଉ ଓ ବିରଜା ଏକାବେଳକେ ବିଚଳିତ ହେଇପଡ଼ିଲେ ଓ ବିରଜା ତୁରନ୍ତ ନିଜ ପାଣ୍ଠିରୁ କିଛି ଟଙ୍କା ଧରି ସେଠି ସାହାଯ୍ୟ କାମ କରିବାକୁ ଚାଲିଗଲେ । ତା'ପରେ ରିଲିଫ୍ କମିଟି ଗଢ଼ାହେଲା ଓ ନାନା ସୂତ୍ରରୁ ସାହାଯ୍ୟ ସଂଗ୍ରହ କରି ସେଠି ବିଧିବଦ୍ଧ କାମ ଚାଲିଲା । କେତେକ ଭୂଦାନ କର୍ମୀ ସେ କାମରେ ଲାଗିଲେ, ମାତ୍ର ବହୁ ସଂଖ୍ୟାରେ ନୂଆ ଲୋକ, ଛାତ୍ର, ଯୁବକ ମଧ୍ୟ ସେଥିରେ ଲାଗିଲେ । ସେମାନଙ୍କ ଭିତରେ ଅନେକଙ୍କ ମନରେ ଗାଁର ଲୋକଙ୍କର ଏ ଦୁରବସ୍ଥାର ମୌଳିକ କାରଣ ଖୋଜିବା ଆଡ଼କୁ ଦୃଷ୍ଟିଗଲା । ଏ କାମରେ ପଶିବା ଯୋଗୁଁ ଗ୍ରାମଦାନ ସଂଗ୍ରହର ଯେଉଁସବୁ ଉଦ୍ୟମ ସେତେବେଳେ ଚାଲୁଥିଲା ତାହା ନିଶ୍ଚୟ କିଛିଟା ବାଧାଗ୍ରସ୍ତ ହେଲା । ମାତ୍ର ଏକାମ ନ କରିଥିଲେ କ'ଣ ବିପ୍ଳବ ବେଶି ଆଗେଇ ଯାଇଥାନ୍ତା ?

ତା'ପରେ କଟକ ଜିଲ୍ଲାରେ ୧୯୬୭ରେ ଯେଉଁ ପ୍ରଚଣ୍ଡ ବାତ୍ୟା ହେଲା ସେତେବେଳେ ବି ସେମିତି ସାହାଯ୍ୟ କାମ ସର୍ବୋଦୟ କର୍ମୀଙ୍କ ସାହାଯ୍ୟରେ ସଂଗଠିତ କରାଗଲା । ବାଲେଶ୍ୱର ଓ ମୟୂରଭଞ୍ଜରେ ବନ୍ୟାଦୁର୍ଗତଙ୍କ ସାହାଯ୍ୟ ପାଇଁ ମଧ୍ୟ ଉଦ୍ୟମ ହେଲା । ଏ ଶେଷୋକ୍ତ ଜିଲ୍ଲାମାନଙ୍କରେ ସେତେବେଳକୁ ତ ଗ୍ରାମଦାନ ବହୁସଂଖ୍ୟାରେ ହେଇସାରିଥିଲା ଓ ସେ ସବୁ ଗାଁର ଲୋକେ ହିଁ ଦୁର୍ଗତ ହେଇଥିଲେ । ଯେଉଁ ଜନତାକୁ ନେଇ ବିପ୍ଳବ କରିବୁ ବୋଲି ଆମେ ଅଣ୍ଟା ଭିଡୁଛୁ ସେହିମାନଙ୍କର ଦୁର୍ଗତିବେଳେ ଯଦି ଆମେ ସେଥିପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହୁ, ସେ ଦୁର୍ଗତିର ପ୍ରତିକାର ଦିଗରେ ଜନତାର ସହାୟ ନ ହେଉ, ତାଙ୍କ ପାଖରେ ଯାଇ ଠିଆ ନ ହେଉ, ତେବେ ସେ କ'ଣ କେବଳ ତତ୍ତ୍ୱଜ୍ଞାନ ଶୁଣି ବିପ୍ଳବ କରିବ ?

ଅହିଂସାର ବାଟରେ ଏ ପ୍ରଶ୍ନ ଅଧିକ ତୀବ୍ରଭାବରେ ଉଠେ । ମୁଁ ଏକଥା ମଧ୍ୟ କଂଗ୍ରେସ ସମାଜବାଦୀ ଯୁଗରୁ କେତେକଟି ଅନୁଭବ କରିଆସିଛି ଯେ, ତତ୍ତ୍ୱଜ୍ଞାନ ବା ବୌଦ୍ଧିକ ବିଚାର ଦୃଷ୍ଟିରୁ କୌଣସି ଏକ ଲକ୍ଷ୍ୟ, ସ୍ୱାଧୀନତା ବା ସାମାଜିକ ବିପ୍ଳବ, ବିଷୟରେ ନିଷ୍ଠାବାନ ହେବା ଏ କଥା ଓ ଲୋକଙ୍କ ଦୁଃଖରେ ବ୍ୟାକୁଳ ହେଇ ସେଥିପାଇଁ ଲାଗିବା ଆଉ ଏକ କଥା । କେବଳ ବୌଦ୍ଧିକ ବିଚାରଦ୍ୱାରା ଆଦର୍ଶକୁ ଗ୍ରହଣ କରୁଥିବା ବ୍ୟକ୍ତି ସମ୍ପୂର୍ଣ୍ଣ ନିଷ୍କରୁଣ ହେଇପାରେ । ଦୁନିଆର ଇତିହାସରେ ଏହାର ବହୁତ ନଜିର ରହିଛି ଯେ ସ୍ୱାଧୀନତା ଆନ୍ଦୋଳନ ବା ବିପ୍ଳବର ନେତା ସାଧାରଣ ଜନତାର ଦୁଃଖ ଦୁର୍ଦ୍ଦଶା ବିଷୟରେ ସମ୍ପୂର୍ଣ୍ଣ ଅନୁଭୂତିଶୂନ୍ୟ ହେଇଛନ୍ତି । ସେମାନଙ୍କର ନିଷ୍ଠୁରତା ଓ ବର୍ବରତା ପାଶବିକତାର ସୀମାକୁ ସୁଦ୍ଧା ଟପିଯାଇଛି । ଷ୍ଟାଲିନ୍ ଏହାର ଜ୍ୱଳନ୍ତ ଉଦାହରଣ ।

ଏହାର ଓଲଟା କେବଳ କରୁଣା ବିଗଳିତ ସେବକ ପାଖଆଖର ଛୋଟ ଛୋଟ ଦୁଃଖ ଦୂରକରିବା ଚେଷ୍ଟାରେ ସମସ୍ତ ଶକ୍ତି ଖରଚ କରିଦିଏ । ଅହିଂସ ବିପ୍ଳବୀ ଭିତରେ ଏ ଦୁଇଟାର ମେଳ ଲୋଡ଼ା । ଗାନ୍ଧୀଜୀ ଏକ ଦିଗରେ ବ୍ରିଟିଶ୍ ସାମ୍ରାଜ୍ୟର ମୁକାବିଲା ପାଇଁ ଜନତାକୁ ପ୍ରାଣବଳିଦେବାକୁ ଆହ୍ୱାନ ଦେଉଥିଲେ ତ ଅନ୍ୟଦିଗରେ ଉପସ୍ଥିତ ଦୁର୍ଗତିର ତୁରନ୍ତ ପ୍ରତିକାର ପାଇଁ ଅସହାୟ ବିଧବାର କୁଡ଼ିଆରେ ଚରଖା ଧରି ପହଞ୍ଚି ଯାଉଥିଲେ । ଚରଖାକୁ ବିପ୍ଳବର ସାଧନ ଓ ବିପ୍ଳବକୁ ଚରଖାର ବ୍ୟାପକ ପ୍ରତିଷ୍ଠାର ସାଧନାରୂପେ ସେ ଦେଖୁଥିଲେ ।

ବିହାରରେ ଯେଉଁ ଆକାରରେ ଦୁର୍ଭିକ୍ଷ ବ୍ୟାପିଲା ସେଥିରେ ତାକୁ ଅପେକ୍ଷା କରି ଗ୍ରାମଦାନ ସଂଗ୍ରହ କାମ କରି ଚାଲିବା ଏକ ଅବାନ୍ତର ଉଦ୍ୟମ ହେଉଥା'ନ୍ତା । ପରେ ବିନୋବା ନିଜର ମତର କିଞ୍ଚିତ ସଂଶୋଧନ କରି କହିଲେ ଯେ, ସାହାଯ୍ୟ କାମ ଗ୍ରାମସଭା ଗଢ଼ି ତାହା ମାଧ୍ୟମରେ କରାଯାଉ । କିନ୍ତୁ ଯେଉଁମାନେ ପ୍ରାକୃତିକ ବିପର୍ଯ୍ୟୟର ପରିସ୍ଥିତିରେ ସେବାକାମ କରିଛନ୍ତି ସେମାନେ ଜାଣିଥିବେ ଯେ, ସେତେବେଳେ ସେ ଅଞ୍ଚଳରେ ଏପରିଭାବରେ ସଭା ବା ସମିତିଗଢ଼ି କାମ କରିବା କେତେ କଠିନ । ପରେ ୧୯୭୧ର ବାତ୍ୟାବେଳେ ଆମେ ମହାକାଳପଡ଼ାରେ ଏହିଭଳି ଉଦ୍ୟମ କରିଥିଲୁ । ସାହାଯ୍ୟରେ ପ୍ରଥମ ପର୍ଯ୍ୟାୟରେ ତୁରନ୍ତ ଭୋକିଲା ଲୋକଙ୍କୁ ଖାଦ୍ୟ ଦେବାକୁ ହୁଏ । ସେତେବେଳେ ସଭା ଇତ୍ୟାଦି ଗଢ଼ିବା ପାଇଁ ସମୟ ବସିରହେ ନାହିଁ । ଦ୍ୱିତୀୟ ପର୍ଯ୍ୟାୟରେ ଏ ଭଳି ଗ୍ରାମ ସଂଗଠନ ଉଦ୍ୟମ ସଫଳ ହେବାର ଭଲ ସମ୍ଭାବନା ଥାଏ ।

ଏହି ସମୟରେ ମୁଁ ଦିନେ ବିନୋବାଙ୍କ ସହିତ ଏ ବିଷୟରେ ଆଲୋଚନା କଲି । ସାହାଯ୍ୟ କାମ ବିଷୟରେ ତାଙ୍କର ପୂର୍ବରୁ ଜଣାଥିବା ମତ ସେ ଦୋହରେଇଲେ । ମୁଁ ଗାନ୍ଧୀଜୀଙ୍କର ରଚନାତ୍ମକ କାମର ଉଦାହରଣ ଦେଲି । ସେ କହିଲେ ଯେ ଆମେସବୁ ଗାନ୍ଧୀଜୀଙ୍କ ଭଳି ବିଶାଳ ପ୍ରତିଭାବାନ ନୋହୁଁ । ଏତେ ପ୍ରକାରର କାମ ଆମଦ୍ୱାରା ହେଇପାରିବା ସମ୍ଭବ ନୁହେଁ । ଗୋଟିଏ କାମ ହାତକୁ ନେଇ ଆମେ ତାହାକୁ ସଫଳ କରିବାକୁ ଲାଗିବା ଚାହି । ମୁଁ ପୂର୍ବରୁ ଉଲ୍ଲେଖ କରିଥିବା ମୋର ମତ ବ୍ୟକ୍ତ କଲି ଯେ, ସର୍ବୋଦୟ ଗୋଟିଏ ସର୍ବଗ୍ରାହୀ ଆନ୍ଦୋଳନ ରୂପରେ ଯଦି ଚାଲିବାକୁ ହୁଏ, ତେବେ ଏଥିରେ ବିବିଧ ପ୍ରକାରର ରୁଚି ରଖିଥିବା ଓ ବିବିଧ କାର୍ଯ୍ୟକ୍ରମରେ ଲାଗିଥିବା ବ୍ୟକ୍ତିଙ୍କ ପାଇଁ ସ୍ଥାନ ରହିବା ଆବଶ୍ୟକ । କେବଳ ସେ ସବୁ କାର୍ଯ୍ୟକ୍ରମ ସର୍ବୋଦୟର ମୌଳିକ ନୀତି ଓ ଆଦର୍ଶ ସହିତ ଖାପ ଖାଉଥିଲେ ହେଲା । ଗୋଟାଏ କାର୍ଯ୍ୟକ୍ରମରେ ସମସ୍ତଙ୍କର ଲାଗିବାଟା କୌଣସି ଯାନ୍ତ୍ରିକ ଉପାୟରେ ଲଦି ହେବ ନାହିଁ । ଏ ଯୁକ୍ତିଟା ସେତେବେଳେ ବିନୋବାଙ୍କ ମନକୁ ଛୁଇଁବାପରି ବୋଧହେଲା । କାରଣ ସେ ତା'ର କେତେଦିନ ପରେ ଏକ ଆଲୋଚନା ପ୍ରସଙ୍ଗରେ ଧୀରେନଭାଇଙ୍କୁ କହିଲେ ଯେ, ସର୍ବ ସେବା ସଂଘ ଆପଣମାନଙ୍କ ପରେ ଭଲ ଲୋକଙ୍କ ହାତକୁ ଯାଇଛି । ସେମାନେ ତାକୁ ଭଲ ସମ୍ଭାଳିବେ ।

ଆଲୋଚନା ପରେ ମୋ ମନରେ ଗୋଟାଏ କଥା ଉଙ୍କିଲା ଯେ ବିନୋବା ଗ୍ରାମଦାନର ବିଚାର ବା ଆଦର୍ଶର ପ୍ରଚାରଟାକୁ ନିଜ ଜୀବନର ଏକ ମିଶନ୍ ରୂପେ ଧରି ନେଇଛନ୍ତି ।

ସେତକ ସେ ଅଧିକରୁ ଅଧିକ ବ୍ୟାପକ ଭାବରେ ଓ ନାନା ଉପାୟରେ କରେଇ ନେବାକୁ ଚାହାନ୍ତି । ତାହା ବାହାରକୁ ସେ ସମଗ୍ର ପରିସ୍ଥିତି କଥା ବିଚାରୁ ନାହାନ୍ତି ଓ ବିପ୍ଳବ କଥା କହୁଥିଲେ ମଧ୍ୟ ଆମେ ବିପ୍ଳବ ବୋଲଟେ ଯାହା ବୁଝୁ ସେ ତାକୁ ତାଠୁଁ କିଛି ଭିନ୍ନ ନିଜସ୍ୱ ଅର୍ଥରେ ବୁଝୁଛନ୍ତି । ଭୂଦାନ ପରେ ଜମି ବାଣ୍ଟିବା କାମରେ ନ ପଶିବା, ଗ୍ରାମଦାନ ପରେ ନିର୍ମାଣ ଓ ଏପରିକି ଲୋକଶକ୍ତି ସଂଗଠନରେ ମଧ୍ୟ ନ ଲାଗିବା ଆଦି ବାବଦରେ ତାଙ୍କର ପରାମର୍ଶ ଏହାରି ପରିପ୍ରେକ୍ଷୀରେ ବୁଝିହୁଏ । ସେ ସର୍ବୋଦୟ ପ୍ରଚାର ସଂକ୍ରାନ୍ତରେ ବରାବର ବୁଦ୍ଧ, ଶଙ୍କର, ସ୍ୱାମୀ ରାମଦାସ ପ୍ରଭୃତିଙ୍କର ଉଦାହରଣ ଦିଅନ୍ତି । ପରେ ସେ ସ୍ୱୀକାର ମଧ୍ୟ କରିଛନ୍ତି ଯେ, ଗ୍ରାମଦାନର ବିଚାର ପ୍ରଚାର ହିଁ ତାଙ୍କର ମିଶନ୍ ଥିଲା ।

ଯେତେ ଗୁରୁତ୍ୱପୂର୍ଣ୍ଣ ହେଉପଛେ, ଭୂଦାନ, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ, ହିନ୍ଦୀ ପ୍ରଚାର ବା କୁଷ୍ଠ ସେବା ଭଳି ଗୋଟିଏ କାମକୁ ମନ ପ୍ରାଣ ଦେଇ କରିବା ଓ ସମାଜର ମୌଳିକ ପରିବର୍ତ୍ତନକୁ ମୁଖ୍ୟ ଲକ୍ଷ୍ୟ ରୂପେ ଧରି ସେ କାମର ଅଙ୍ଗରୂପେ ଏଭଳି ବିବିଧ କାମ କରିବାରେ ବହୁତ ଫରକ ରହିଛି । ବୃହତ୍ତମ ଲକ୍ଷ୍ୟ ଧରି କାମ କରିବାବେଳେ ସମଗ୍ର ପରିସ୍ଥିତିର ପର୍ଯ୍ୟାଲୋଚନା କରି ସେଥିରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରର କାର୍ଯ୍ୟକ୍ରମର ଗୁରୁତ୍ୱ କେତେ ତାହା ନିର୍ଣ୍ଣୟ କରି ତଦନୁସାରେ ଆନ୍ଦୋଳନର ଗତିବିଧି ସ୍ଥିର କରିବାକୁ ହୁଏ । ତାହା ନ କରି ପାରିଲେ ସେ ନେତୃତ୍ୱକୁ ବୈପ୍ଳବିକ କୁହାଯାଇପାରିବ ନାହିଁ । ପ୍ରକୃତ ପକ୍ଷେ ଜେ.ପିଙ୍କର ଦୁର୍ଗତ ସାହାଯ୍ୟ କାମ ବିରୋଧରେ ଗ୍ରାମଦାନକୁ ଏକ ବୈପ୍ଳବିକ କାର୍ଯ୍ୟରୂପେ ଛିଡ଼ା କରାଗଲା ମଧ୍ୟ ବାସ୍ତବରେ ତାକୁ ଏକ ସୀମିତ ଓ ଏକାଙ୍ଗୀ କାମ ରୂପରେ ହିଁ ବିନୋବା ସେତେବେଳେ ବାଢ଼ିଥିଲେ ।

## ପ୍ରାରବ୍ଧ ତତ୍ତ୍ୱ

ସେଦିନ ବିନୋବାଙ୍କ ସାଙ୍ଗରେ ପ୍ରାରବ୍ଧ କଥାନେଇ ବେଶ୍ କିଛିଟା ଲମ୍ବା ଆଲୋଚନା ଚାଲିଲା । ପ୍ରାରବ୍ଧ କଥା ଯେ ସେ କହୁଥିଲେ ସେଇଟା କେବଳ ନିଜର ମନକୁ ଭୁଲାଇବା ପାଇଁ ଗଢ଼ାଯାଇଥିବା ଗୋଟାଏ ତତ୍ତ୍ୱ ବୋଲି ମୁଁ ବିଚାରେ । ଏହାକୁ ମାନିନେଲେ ତେଣିକି ମଣିଷର ଦୁର୍ଗତି ପାଇଁ ଆଉ କୌଣସି ରାଜନୀତିକ, ଆର୍ଥିକ ବା ସାମାଜିକ ନୀତି ବିଭ୍ରାଟକୁ ଦାୟୀ କରି ହେବ ନାହିଁ । ୧୯୩୨-୩୩ରେ ସୋଭିଏତ୍ ଦେଶରେ କୋଡ଼ିଏ ଲକ୍ଷ ଲୋକଙ୍କର ପ୍ରାଣ ନେଇଥିବା ଦୁର୍ଭିକ୍ଷ ପାଇଁ ଷ୍ଟାଲିନର ଦାୟିତ୍ୱ ରହିବ ନାହିଁ କି ୧୯୪୩ର ବଙ୍ଗଳାର ଦୁର୍ଭିକ୍ଷ ପାଇଁ ଇଂରେଜ ସରକାରର ଓ କଳାବଜାରର । ଏ ପ୍ରାରବ୍ଧ ତତ୍ତ୍ୱକୁ ସମାଲୋଚନା କରି ମୁଁ କହିଲି ଯେ, ମଣିଷ ଜୀବନ ଯଦି ମଣିଷ ଚେଷ୍ଟାରେ ରକ୍ଷାକରି ନହେବ ତେବେ ଏ କଥା କିପରି ହେଉଛି ଯେ ଆମ ଦେଶରେ ବହୁତ ଲୋକ ଅମୁକ ରୋଗରେ ମରନ୍ତି, କିନ୍ତୁ ଅନ୍ୟ କେତେ ଦେଶରେ ସେ ରୋଗରେ କେହି ମରନ୍ତି ନାହିଁ ? ଭାରତର ହାରାହାରି ଆୟୁ ଏକ ସମୟରେ

ସତେଇଶ ଅଠେଇଶ ବର୍ଷ ଥିଲା, ଏବେ ସାଧାରଣ ସ୍ୱାସ୍ଥ୍ୟରକ୍ଷାର ଉନ୍ନତି ଯୋଗୁଁ ତାହା ପଚାଶ ପାଖାପାଖି ହେଲାଣି । ନରଓ୍ୱେ ପ୍ରଭୃତିରେ ତାହା ସତୁରି ଉପରେ ରହିଛି । ଏହାର ଜବାବରେ ସେ କହିଲେ ଯେ, ଏଠି ପୂର୍ବ ଅପେକ୍ଷା ଅଧିକ ପ୍ରାରବ୍ଧ ଥିବା ଲୋକ ଅଧିକ ସଂଖ୍ୟାରେ ଜନ୍ମ ହେଉଛନ୍ତି । ସେହିପରି ଯେଉଁ ଦେଶରେ ଲୋକେ ଅଧିକ ଦୀର୍ଘାୟୁ, ସେଠି ଅଧିକ ପ୍ରାରବ୍ଧ ଥିବା ଲୋକେ ହିଁ ଅଧିକ ସଂଖ୍ୟାରେ ଜନ୍ମ ହେଉଛନ୍ତି ।

ଏ ପ୍ରକାରର ଯୁକ୍ତିରେ ମୋର ଆଦୌ ସନ୍ତୋଷ ହେଲାନାହିଁ । ଏହାକୁ 'ଚକ୍ରାକାର ଯୁକ୍ତି' କୁହାଯାଏ । ଏ ଭଳି ଯୁକ୍ତିର କୌଣସି ଯଥାର୍ଥତା ନ ଥାଏ । "ସେ କାହିଁକି ଦୁଷ୍ଟାମୀ କରୁଛି" - ନା" "ସେ ଦୁଷ୍ଟ", "କେମିତି ଜାଣିଲ ସେ ଦୁଷ୍ଟ"- ନା " ସେ ଦୁଷ୍ଟାମୀ କରୁଛି ତେଣୁ ।" ଏହିଭଳି ଗୋଟାଏ କଥାକୁ ଗୋଟାଏ ନାଁ ଦେଇଦେଲେ ତାହା ବିଷୟରେ ଗୋଟାଏ ନୂଆ ଜ୍ଞାନ ହେଲା ବୋଲି ଭ୍ରମ ହୁଏ । ପିଲାର ଦୁଷ୍ଟ ହେବାଟା ଦୁଷ୍ଟାମୀର କାରଣ ବୋଲି କହିବା ଦ୍ୱାରା ଦୁଷ୍ଟାମୀ ବିଷୟରେ ବା ସେ ପିଲା ବିଷୟରେ କୌଣସି ନୂତନ ଜ୍ଞାନ ମିଳିଲା ନାହିଁ । କେବଳ ଗୋଟାଏ ଭ୍ରମ ହେଲା ଆମେ ଦୁଷ୍ଟାମୀର କାରଣ ଜାଣିଲେ ବୋଲି । ପ୍ରାରବ୍ଧ ବ୍ୟାପାରଟା ମଧ୍ୟ ଅବିକଳ ସେହିପରି । ତାକୁ ପ୍ରମାଣ ବା ଅପ୍ରମାଣ କରିବାର କୌଣସି ଉପାୟ ନାହିଁ । ଏ ପ୍ରକାରର ଯୁକ୍ତି ଶୁଣି ମୋର ବିସ୍ମୟ ହେଲା ଯେ, ବିନୋବା ଗୁରୁତ୍ୱର ସହିତ ଏ ଭଳି ଯୁକ୍ତି କରୁଛନ୍ତି ଓ ତାହା ଯଥାର୍ଥ ବୋଲି ବିଶ୍ୱାସ କରୁଛନ୍ତି ।

ଏଣେ ଜେ.ପି. ମଧ୍ୟ ଅନୁଭବ କରୁଥା'ନ୍ତି ଯେ ସର୍ବ ସେବା ସଂଘ ତାକୁ ପୂରାପୂରି ସହଯୋଗ ହେଉନାହିଁ । ସେ ବେଳେବେଳେ ଟିକିଏ ଅଭିମାନ କଲାପରି କହନ୍ତି ଯେ, ଅମୁକ କାମସବୁ ମୁଁ ସିନା କରୁଛି, ସେଥିରେ ମତେ ସର୍ବ ସେବା ସଂଘ କୋଉଠି ସାହାଯ୍ୟ କରୁଛି କାହିଁ ? ରାଧାକୃଷ୍ଣ, ନାରାୟଣ, ଗୋବିନ୍ଦରାଓ ବା ଅନ୍ୟମାନେ ତାକୁ ଅମୁକ ଅମୁକ କାମରେ ସାହାଯ୍ୟ କରୁଛନ୍ତି ବୋଲି ଦର୍ଶେଇଲେ ସେସବୁ ସେମାନଙ୍କର ବ୍ୟକ୍ତିଗତ ସାହାଯ୍ୟ ବୋଲି ସେ କହନ୍ତି । ଏମାନେ ସଂଘ ପକ୍ଷରୁ ହିଁ ଏ ସବୁ କାମ କରୁଛନ୍ତି ବୋଲି ବୁଝାଇଲେ ପୁଣି ମାନିଯା'ନ୍ତି ଓ ଆଶ୍ୱସ୍ତ ହୁଅନ୍ତି ।

ମୁଁ ଆଗରୁ କହିଛି ଯେ, ଏପରି ଅବସ୍ଥାରେ ବିନୋବା ଓ ଜେ.ପି. ଉଭୟଙ୍କ ସହିତ ଯୋଗାଯୋଗ ରଖି ଭାରସାମ୍ୟ ବଜାୟ ରଖିବା ଆମର ଗୋଟାଏ ମୁଖ୍ୟ କାମ ହୋଇଥାଏ । ଗୋଟାଏ ମୁସ୍କିଲ୍ ହେଉଥାଏ ଯେ, ବିନୋବାଙ୍କ ସାଙ୍ଗରେ କୌଣସି ବିଷୟରେ ଜେ.ପି.ଙ୍କର ମନଖୋଲା ଆଲୋଚନା ହୋଇ ପାରୁନଥାଏ । ବିନୋବାଙ୍କ ବିଷୟରେ ଜେ.ପି.ଙ୍କର କେମିତି ଗୋଟାଏ ବିଚିତ୍ର ଗ୍ରନ୍ଥି ନେଇଯାଇଥାଏ ଯେ, ସେ ତାଙ୍କ ସହିତ ଯୁକ୍ତିତର୍କ କରିପାରନ୍ତି ନାହିଁ । ସେ କହନ୍ତି ଯେ ଗାନ୍ଧୀଜୀଙ୍କ ସାଙ୍ଗରେ ଆମେ ଖୁବ୍ ଯୁକ୍ତିତର୍କ କରୁଥିଲୁ । ବିନୋବାଙ୍କ ସହିତ ସେପରି ହେଉନାହିଁ । ବିନୋବାଙ୍କ ବ୍ୟକ୍ତିତ୍ୱର ବିଶେଷ ପ୍ରକାରର ଗଢ଼ଣ ଯୋଗୁଁ ଏପରି ହେଇପାରୁନାହିଁ ବୋଲି ତାଙ୍କର ମତ ଥାଏ । ମାତ୍ର ନାରାୟଣ ଓ ମୁଁ କେତେଥର ତାଙ୍କୁ କହିଛୁ

ଯେ, ଆମେ ତ ବିନୋବାଙ୍କ ସାଙ୍ଗରେ ଖୁବ୍ ମନଖୋଲି ଯୁକ୍ତିତର୍କ କରିଛୁ । ଆମକୁ ତ କିଛି ଅଡୁଆ ଲାଗୁନାହିଁ ? କିନ୍ତୁ ଜେ.ପି.ଙ୍କୁ ଅଡୁଆ ଲାଗୁଥାଏ । ବିନୋବାଙ୍କ କାନ ଖରାପ ହେବା ଯୋଗୁଁ ଲେଖାପଢ଼ି ମାର୍ଫତରେ ଆଲୋଚନା କରିବାକୁ ପଡ଼ିବାରୁ ଦୁହିଁଙ୍କ ଭିତରେ ବିଚାର ବିନିମୟରେ ବାଧା ଆହୁରି ବଢ଼ିଗଲା ।

ଆନ୍ଦୋଳନ ସଂକ୍ରାନ୍ତ ବିଷୟରେ ଜେ.ପି. ପ୍ରାୟ ନିଜର ମତକୁ ଆଡ଼େଇ ଦେଇ ବିନୋବାଙ୍କ ମତକୁ ପୂର୍ଣ୍ଣମାତ୍ରାରେ ଗ୍ରହଣ କରି ନେଉଥା'ନ୍ତି । ବାବା ଏକଥା କହୁଛନ୍ତି ତେଣୁ କରିବାକୁ ହେବ ବୋଲି ସେ ଅନେକ ଥର ସାଥୀମାନଙ୍କୁ, ଖାସକରି ବିହାରର ସାଥୀମାନଙ୍କୁ, ବୁଝାଉଛନ୍ତି । ମୋ ବିଚାରରେ ଏ ଭଳି ଅତ୍ୟଧିକ ସମର୍ପଣଭାବ ଯୋଗୁଁ ଜେ.ପି. ବିନୋବାଙ୍କ ସାଙ୍ଗରେ ଯୁକ୍ତିତର୍କ କରିପାରୁ ନଥିଲେ ଓ ନିଜର ମତାମତକୁ ଏପରି ପୂରାପୂରି ଚାପିଦେବା ସୁସ୍ଥ ମଧ୍ୟ ନୁହେଁ ।

ଶାସ୍ତ୍ରୀଜୀ ୧୯୬୪ ରେ ପ୍ରଧାନମନ୍ତ୍ରୀ ହେବାପରେ ସର୍ବ ସେବା ସଂଘ ପକ୍ଷରୁ ଆମେ ଗୋଟିଏ ପାଞ୍ଚଜଣିଆ ପ୍ରତିନିଧି ମଣ୍ଡଳ ଯାଇ ଦିଲ୍ଲୀରେ ତାଙ୍କୁ ଭେଟିଥିଲୁ ଓ ଦେଶର ବିଭିନ୍ନ ସମସ୍ୟା ବିଷୟରେ ସର୍ବୋଦୟର ଦୃଷ୍ଟିକୋଣ ତାଙ୍କ ଆଗରେ ଉପସ୍ଥାପିତ କରିଥିଲୁ । ଭୂମି ସମସ୍ୟା, ବେକାର ସମସ୍ୟା, ମୂଲ୍ୟବୃଦ୍ଧି, ଲାଞ୍ଚଖୋରୀ ଆଦି ସମସ୍ୟାର ପ୍ରତିକାର ପାଇଁ ସରକାର ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥାକୁ ଗୁରୁତ୍ୱ ଦେଲେ ସର୍ବ ସେବା ସଂଘ ଆନନ୍ଦରେ ସହଯୋଗ କରିବ ବୋଲି ତାଙ୍କୁ ପ୍ରତିଶ୍ରୁତି ଦେଇଥିଲୁ । ଏ ପ୍ରଥମ ସାକ୍ଷାତରେ ତାଙ୍କ ସହିତ ପରିଚୟ ପ୍ରତିଷ୍ଠା କରିବା ହିଁ ଉଦ୍ଦେଶ୍ୟ ଥିଲା । ବିଭିନ୍ନ ସମସ୍ୟା ଓ କାର୍ଯ୍ୟକ୍ରମ ନେଇ ପରେ ଅଧିକ ବିଶଦ ଆଲୋଚନା କରାଯିବ ବୋଲି ବିଚାର ଥିଲା । ସେ ସେତେବେଳେ ସର୍ବ ସେବା ସଂଘର ଆଭିମୁଖ୍ୟକୁ ସ୍ୱାଗତ କରିଥିଲେ । ଆଉ ଥରେ ସେ ବନାରସ ଆସିଥିବାବେଳେ ସର୍ବ ସେବା ସଂଘ କାର୍ଯ୍ୟାଳୟକୁ ମଧ୍ୟ ଆସିଥିଲେ ।

## ଶାସ୍ତ୍ରୀଜୀ ଓ ଗାନ୍ଧୀଜୀ ଶତବାର୍ଷିକୀ

ଶାସ୍ତ୍ରୀଜୀଙ୍କ ସମୟରେ ହିଁ ୧୯୬୫ରେ ଗାନ୍ଧୀ ଶତବାର୍ଷିକୀ ପାଳନପାଇଁ ବିଚାର ଆଲୋଚନା ଆରମ୍ଭ ହେଲା ଓ ରାଷ୍ଟ୍ରୀୟ ଗାନ୍ଧୀ ଶତବାର୍ଷିକୀ ସମିତି ପ୍ରଧାନମନ୍ତ୍ରୀଙ୍କର ଅଧ୍ୟକ୍ଷତାରେ ଭାରତ ସରକାରଙ୍କ ଦ୍ୱାରା ଗଢ଼ାହେଲା । ଶତବାର୍ଷିକୀ ପାଳନ ପାଇଁ ଅଗ୍ରିକ୍ରମ ବେସରକାରୀ ସଂସ୍ଥାମାନଙ୍କଆଡୁ ଆସିବା ଉଚିତ ବୋଲି ଆମେ କେତେକ ଅନୁଭବ କରୁଥାଉ । ସେ ବିଷୟରେ ବିନୋବା ବରାବର କହୁଥାନ୍ତି ଯେ, କେବଳ ବିଧିରକ୍ଷା ପାଇଁ ଶତାବ୍ଦୀ ପାଳନର କ'ଣ ଅର୍ଥ ଅଛି ? ଗାନ୍ଧୀ ଯେଉଁସବୁ ସମସ୍ୟା ସହିତ ଯୁଝୁଥିଲେ ସେ ସବୁ ଏବେ ବି ଅଛି ଓ ସେ ସବୁ ସହିତ ଯୁଝିବା ପାଇଁ ଆମେ ଶତବାର୍ଷିକୀଯାଏ ଅପେକ୍ଷା କରି ବସିବା କାହିଁକି ? ବିହାର ଓ ଅନ୍ୟାନ୍ୟ ପ୍ରଦେଶରେ ତ ଗ୍ରାମଦାନ ତୋଫାନ ଆନ୍ଦୋଳନ ଭଣା ଅଧିକ ବେଗରେ ଚାଲିଥାଏ ।

ଗ୍ରାମଦାନର ବ୍ୟାପକତମ ସାଫଲ୍ୟ ହିଁ ଗାନ୍ଧୀ ଶତବାର୍ଷିକୀ ଉପଲକ୍ଷେ ଦେଶର ପ୍ରଧାନ ଲକ୍ଷ୍ୟ ହେବା ଉଚିତ ବୋଲି ସର୍ବ ସେବା ସଂଘ ବିଚାରୁଥାଏ ଓ ସେହି ଆନ୍ଦୋଳନକୁ ଆଗେଇ ନେବା ଉପରେ ଜୋର୍ ଦିଆଯାଇଥାଏ । ରାଷ୍ଟ୍ରୀୟ ସମିତି ଗଠନ ବିଷୟରେ ଗାନ୍ଧୀ ସ୍ମାରକ ନିଧି ପ୍ରଭୃତି ସଂସ୍ଥାମାନେ ବିଶେଷ ଚିନ୍ତା ଓ ଉଦ୍ୟମ କରୁଥା'ନ୍ତି ଓ ତେଣୁ ସେହିମାନଙ୍କ ପରାମର୍ଶରେ ହିଁ ଭାରତ ସରକାର ରାଷ୍ଟ୍ରୀୟ ସମିତି ଗଢ଼ିବାର ଅଭିକ୍ରମ ନେଲେ ।

ଶତବାର୍ଷିକୀ ସମିତି ପକ୍ଷରୁ ଗାନ୍ଧୀଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ବିଭିନ୍ନ ରଚନାତ୍ମକ କାମକୁ ଶତବାର୍ଷିକୀ ମଧ୍ୟରେ ଉତ୍ସାହିତ କରିବା ପାଇଁ ଅଲଗା ଅଲଗା ପରିକଳ୍ପନା କରାଗଲା । ସର୍ବ ସେବା ସଂଘ ପକ୍ଷରୁ ମୁଁ ଗୋଟିଏ ନୋଟ୍ ଦେଲି ଯେ, ଗାନ୍ଧୀଜୀଙ୍କର ପରିକଳ୍ପିତ ସର୍ବୋଦୟ ସମାଜ ଦିଗରେ ଗ୍ରାମଦାନ, ଶାନ୍ତିସେନା ଓ ଗ୍ରାମାଭିମୁଖୀ ଖଦୀରୂପୀ 'ତ୍ରିବିଧ କାର୍ଯ୍ୟକ୍ରମ' ହିଁ ଦେଶରେ ବର୍ତ୍ତମାନ ସବୁଠାରୁ ଶକ୍ତିଶାଳୀ ଆନ୍ଦୋଳନ ରୂପେ ଛିଡ଼ା ହେଇଛି । ସେଥିପାଇଁ ଏ ଆନ୍ଦୋଳନ ଶତବାର୍ଷିକୀ କାର୍ଯ୍ୟକ୍ରମର ଏକ ପ୍ରଧାନ ଅଙ୍ଗ ରୂପେ ସ୍ୱୀକୃତ ହେବା ଉଚିତ । ଶତବାର୍ଷିକୀ ସମିତିର ପ୍ରଥମ ବୈଠକରେ ମୁଁ ମୋର ଏ ସୂଚନା ପେଶ୍ କଲି । ଶାସ୍ତ୍ରୀଜୀ ତ ଅଧ୍ୟକ୍ଷ ଥା'ନ୍ତି, ସେ ତୁରନ୍ତ କହିଲେ ଯେ ଠିକ୍ କଥା, ରଚନାତ୍ମକ କାମ ପାଇଁ ମଧ୍ୟ ଗୋଟିଏ ଉପସମିତି ଗଢ଼ାଯାଉ ଓ ମନମୋହନଜୀ ତା'ର ଅଧ୍ୟକ୍ଷ ହୁଅନ୍ତୁ । ମୋର ଓ ଅନ୍ୟ କେତେକ ସାଥୀଙ୍କର ଆଶାଥିଲା ଯେ, ସମିତି ହିଁ ଏ ବିଷୟରେ ଆଲୋଚନା କରି ଗ୍ରାମଦାନ ଓ ଶାନ୍ତିସେନା କାମକୁ ସାହାଯ୍ୟ କରିବା ଭଳି କିଛି ପ୍ରସ୍ତାବ ଓ କାର୍ଯ୍ୟକ୍ରମ ଗ୍ରହଣ କରିବ । ମାତ୍ର ଆଲୋଚନାରେ ଦେଖାଗଲା ଯେ, ସମିତିର କେତେକ ନେତୃସ୍ଥାନୀୟ ସଦସ୍ୟ ଗ୍ରାମଦାନ ଓ ଶାନ୍ତି ସେନା କାମକୁ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ତେଣୁ ଏଇ ଉପସମିତିଟିଏ ନେଇ ସନ୍ତୁଷ୍ଟ ହେବାକୁ ହେଲା ।

ଏ ଉପସମିତି ପକ୍ଷରୁ ଆଞ୍ଚଳିକ ସ୍ତରରେ ସର୍ବୋଦୟ କର୍ମୀ, ଶାନ୍ତି ସୈନିକ ଓ ଛାତ୍ର-ଯୁବକମାନଙ୍କର ଶିବିର ପାଇଁ ଯୋଜନା ଓ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା ହେଲା । ଶାନ୍ତି ସେନା ମଣ୍ଡଳ ଓ ପ୍ରାଦେଶିକ ସର୍ବୋଦୟ ମଣ୍ଡଳମାନେ ଏ କାର୍ଯ୍ୟକ୍ରମକୁ ଚଳାଇଲେ । ତ୍ରିବିଧ କାର୍ଯ୍ୟକ୍ରମର ପ୍ରଚାର ପାଇଁ ଗୋଟାଏ ସାର ସଚିତ୍ର ପ୍ରାଚୀରପତ୍ର ବା ପୋଷ୍ଟର ମଧ୍ୟ ଏ ଉପସମିତି ପକ୍ଷରୁ ଛପାହେଇ ପ୍ରତ୍ୟେକ ରାଜ୍ୟକୁ ଯୋଗହେଲା । ପ୍ରତ୍ୟେକ ବ୍ଲକ୍‌ରେ ପ୍ରଦର୍ଶନୀ ପାଇଁ ଏଥିରୁ ଗୋଟିଏ ଲେଖା ସାର ଯୋଗଇ ଦିଆଯିବା ଦୃଷ୍ଟିରୁ ପର୍ଯ୍ୟାପ୍ତ ସଂଖ୍ୟାରେ ଏହା ଯୋଗାଯାଇଥିଲା । ମାତ୍ର ଅଧିକାଂଶ ରାଜ୍ୟ ଏହାର ସଦ୍‌ବ୍ୟବହାର କରିପାରି ନଥିବାର ପରେ ଦେଖାଗଲା ।

ଉପସମିତି ପକ୍ଷରୁ ଗୋଟିଏ ତଥ୍ୟମୂଳକ ଫିଲ୍ମ ମଧ୍ୟ ପ୍ରସ୍ତୁତ କରିବା ଠିକ୍ ହେଲା ଓ କଲିକତାର ଜଣେ ବିଶିଷ୍ଟ ନିର୍ଦ୍ଦେଶକ ଶ୍ରୀ ଆଶୀଷ ମୁଖାର୍ଜୀଙ୍କ ଦ୍ୱାରା ବିଭିନ୍ନ ରାଜ୍ୟରେ ଗ୍ରାମଦାନ ଓ ଶାନ୍ତିସେନା କାମର ତଥ୍ୟଚିତ୍ର ସହିତ ଗୋଟିଏ କାହାଣୀ ଯୋଡ଼ି ଏ ଫିଲ୍ମ ପ୍ରସ୍ତୁତ ହେଲା । ଅନେକ ବର୍ଷ ତଳେ ମହୁମାଛି ଓ ତାଳଚେର ହିଜରତରେ ତଥ୍ୟଚିତ୍ର ପ୍ରସ୍ତୁତ କରିବା ଦିନୁ ଫିଲିମ ନିର୍ମାଣରେ ମୋର ଯେଉଁ ରୁଚି ଥିଲା ତାହା ଏବେ ପୁଣି ଫୁଟି ବାହାରିଲା । ମାତ୍ର ଏ

ଫିଲ୍ମର କଥା ଭାଗ ରଚନା ଓ ମୋଟ ଯୋଜନା କରିବାରେ ମୁଁ ସାହାଯ୍ୟ କରିଥିଲେ ବି ବିଭିନ୍ନ ରାଜ୍ୟରେ ଛବି ନିଆଯିବାବେଳେ ଆଉ ମୁଁ ଉପସ୍ଥିତ ରହି ପାରି ନ ଥିଲି ।

ଏ ଫିଲ୍ମ ତିଆରିର ପ୍ରସ୍ତାବ ଯେତେବେଳେ ଉଠିଲା, ରାଷ୍ଟ୍ରୀୟ ସମିତିର କାର୍ଯ୍ୟକାରୀ ସଂପାଦକ ଶ୍ରୀ ପାର୍ଥସାରଥୀ ବୁଝେଇଲେ ଯେ, ଏହାର ନିର୍ମାଣ ଭାର ଭାରତ ସରକାରଙ୍କର ଫିଲ୍ମସ୍ ଡିଭିଜନକୁ ଦିଆଯାଉ । ମୁଁ ଏହାର ଘୋର ବିରୋଧ କଲି ଓ ଫିଲ୍ମସ୍ ଡିଭିଜନ୍ ଦ୍ୱାରା ନିର୍ମିତ ତଥ୍ୟଚିତ୍ରଗୁଡ଼ିକର କଳାତ୍ମକ ସ୍ତର ଅତି ନୀଚ ବୋଲି କଟୁ ସମାଲୋଚନା କଲି । ଏହାପରେ ସେ ମହାଶୟ ଏ ପ୍ରଶ୍ନ ରାଷ୍ଟ୍ରୀୟ ସମିତି ବୈଠକରେ ଉଠେଇଲେ ଓ ତଦାନୀନ୍ତ କେନ୍ଦ୍ରୀୟ ଅର୍ଥମନ୍ତ୍ରୀ ମୋରାରଜୀଭାଇ ତାଙ୍କୁ ଖୁବ୍ ଜୋରଦାର ସମର୍ଥନ କଲେ । ମାତ୍ର ସେତେବେଳେ ଅଧ୍ୟକ୍ଷ ଇନ୍ଦିରା ଗାନ୍ଧୀ କହିଲେ ଯେ, ସେମାନେ ନିଜେ ନିଜେ ତିଆରି କରୁଛନ୍ତି ତ ଭଲକଥା । ବର୍ତ୍ତମାନ ଫିଲ୍ମସ୍ ଡିଭିଜନ ହାତରେ ବହୁତ କାମ । ସେମାନେ ନୂଆ କାମ ନେଇ ତୁଲେଇ ପାରିବେ ନାହିଁ । ଏହାପରେ ସଂପାଦକ ମହାଶୟ ଆଉ ଆମ ଫିଲ୍ମସ ତିଆରିରେ ପ୍ରତିବନ୍ଧକ ସୃଷ୍ଟି ଚେଷ୍ଟା କରିନଥିଲେ ।

## ହିନ୍ଦୀ ବିରୋଧୀ ଆନ୍ଦୋଳନ

୧୯୬୫ ର ସର୍ବୋଦୟ ପକ୍ଷରେ ଜଗନ୍ନାଥଙ୍କ ନିମନ୍ତ୍ରଣରେ ମୁଁ ଯାଇ ତାମିଲନାଡୁର ତୁତିକୋରିନ୍ ଜିଲ୍ଲାର ଗାଁମାନଙ୍କରେ ପଦଯାତ୍ରା କରୁଥାଏ । ଏହି ସମୟରେ ସେ ରାଜ୍ୟର ମାନ୍ଦ୍ରାଜ ସମେତ କେତେକ ସହରରେ ପ୍ରବଳ ହିନ୍ଦୀବିରୋଧୀ ବିକ୍ଷୋଭ ଓ ଭଙ୍ଗାରୁଜା ଆରମ୍ଭ ହେଲା । ବିନୋବା ତ କେବେ ଅନଶନ କରନ୍ତି ନାହିଁ, ମାତ୍ର ଏ ଘଟଣାରେ ସେ ଅନଶନ ଆରମ୍ଭ କଲେ । ଗଣ୍ଡଗୋଳର ସମ୍ବାଦ ପାଇବା ମାତ୍ରେ ଜଗନ୍ନାଥନ୍ ଓ ମୁଁ ପଦଯାତ୍ରା ବନ୍ଦକରି ତୁତିକୋରିନ୍, କୋଏମ୍ବାଟୁର ଆଦି ସହରମାନଙ୍କରେ ବୁଲି ବିଭିନ୍ନ ଶ୍ରେଣୀର ଲୋକଙ୍କ ସହିତ ଭାଷା ସମସ୍ୟା ବିଷୟରେ ଆଲୋଚନା କରିଥିଲୁ ଓ ସର୍ବୋଦୟ କର୍ମୀମାନଙ୍କୁ ସକ୍ରିୟ ହେବାପାଇଁ ପରାମର୍ଶ ଦେଇଥିଲୁ । ଗଣ୍ଡଗୋଳ ଆରମ୍ଭ ହେବାବେଳେ ତ ମୁଁ ଏକ ଗାଁରେ ଥିଲି । ମୁଁ ଲକ୍ଷ୍ୟ କଲି ଯେ, ଗାଁର ଲୋକମାନଙ୍କ ଭିତରେ ଏ ସମସ୍ୟା ନେଇ କୌଣସି ଉତ୍ତେଜନା ନାହିଁ । ଛୋଟ ଛୋଟ ସହରମାନଙ୍କରେ ମଧ୍ୟ ଉତ୍ତେଜନା କମ୍ ଥିଲା । ଲୋକଙ୍କ ସହିତ ଆଲୋଚନାରେ ଆମେ ଦେଖିଲୁ ଯେ, ହିନ୍ଦୀ ରାଷ୍ଟ୍ରଭାଷା ହେଲେ କେନ୍ଦ୍ର ସରକାରର ଚାକିରୀ ବାକିରୀରେ ହିନ୍ଦୀଭାଷୀ ଲୋକେ ବିଶେଷ ସୁବିଧା ପାଇଯିବେ, ଏଇହେଲା ପ୍ରଧାନ ଆଶଙ୍କା ଓ ଆପତ୍ତିର କାରଣ ।

ଭାରତବର୍ଷରେ ହିନ୍ଦୀ ନ ହେଲା ତ କୌଣସି ଭାରତୀୟ ଭାଷା ହିଁ ରାଷ୍ଟ୍ରଭାଷା ହେବା ସ୍ୱାଭାବିକ ଓ ଉଚିତ ବୋଲି ବୁଝାଇବାକୁ ଯାଇ ମୁଁ ବୁଝେଇଲି ଯେ, ଆପଣମାନେ ତା' ହେଲେ ଅନ୍ୟ କୌଣସି ଭାଷାକୁ ରାଷ୍ଟ୍ରଭାଷା କରାଯାଉ ବୋଲି ଦାବି କରୁ ନାହାନ୍ତି କାହିଁକି ? ଇଂରେଜୀକୁ କାହିଁକି ସମର୍ଥନ କରୁଛନ୍ତି ? ଯଦି କୌଣସି ଅଳ୍ପସଂଖ୍ୟକ ଲୋକଙ୍କ ଭାଷାକୁ ରାଷ୍ଟ୍ରଭାଷା କରାଯିବ

ତେବେ ସେମାନେ ସବୁ ଚାକିରୀ ମାଡ଼ିବସିବାର ଭୟ କାହାରି ରହିବ ନାହିଁ । ତେଣୁ ମାଲୟାଲମ୍‌କୁ ରାଷ୍ଟ୍ରଭାଷା କରିବାର ପ୍ରସ୍ତାବ ଦିଆଯାଉ । ଏ ରାଜ୍ୟରେ ମାତ୍ର ଦେଢ଼ କୋଟି ସରିକି ଲୋକ । ଭାଷା ବି ଖୁବ୍ ସମୃଦ୍ଧ । ବ୍ୟାକରଣ ଖୁବ୍ ସହଜ । ସଂସ୍କୃତ ଶବ୍ଦ ମଧ୍ୟ ଏ ଭାଷାରେ ପ୍ରଚୁର ଥିବାରୁ ଉତ୍ତରବାଲାଙ୍କୁ ଶିଖିବାକୁ ବେଶି କଷ୍ଟ ହେବନାହିଁ । ଏ ପ୍ରସ୍ତାବଟା ଉଦ୍‌ଭଟ ମନେହେଲେ ମଧ୍ୟ ଏହା ଫଳରେ ହିନ୍ଦୀ ବିରୋଧୀମାନଙ୍କର ଉଷ୍ମା କମି ଯାଉଥିଲା । ସମସ୍ୟାର ବିଭିନ୍ନ ବାସ୍ତବ ଦିଗପ୍ରତି ସେମାନଙ୍କର ଦୃଷ୍ଟି ଯାଉଥିଲା ଓ ମନଖୋଲା ଆଲୋଚନା ପାଇଁ ବାଟ ଫିଟୁଥିଲା । ଇତିମଧ୍ୟରେ ଭାଷା ସମସ୍ୟା ଉପରେ ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ ହେବାର ଭଳି ଏକ ସୂତ୍ର ବାହାରିବାରୁ ବିନୋବା ଅନଶନ ଭାଙ୍ଗିଲେ ଓ ମୁଁ ମାନ୍ଦ୍ରାଜରୁ ଓ୍ୱାର୍ଧା ଯାଇ ବିନୋବାଙ୍କୁ ଭେଟି ଆମର ସବୁ କାର୍ଯ୍ୟକଳାପର ବିବରଣୀ ତାଙ୍କୁ ଦେଲି । ମାଲୟାଲମ୍‌କୁ ରାଷ୍ଟ୍ର ଭାଷା କରିବା ପ୍ରସ୍ତାବକୁ ସେ ନାପସନ୍ଦ କରି କହିଲେ ଯେ, ଆମେ ସର୍ବଦା ହିନ୍ଦୀ ସପକ୍ଷରେ ହିଁ କହିବା ଉଚିତ । କିନ୍ତୁ ତଥାପି ମୋର ମତ ଯେ, ଏ ସମସ୍ୟାଟାକୁ କେବଳ ହିନ୍ଦୀ-ଇଂରାଜୀ ଦ୍ୱନ୍ଦ୍ୱ ସ୍ତରରୁ ଉପରକୁ ଉଠାଇବାକୁ ହେଲେ, ଇଂରାଜୀ ଭାଷାରେ ଯେଉଁ ନ୍ୟସ୍ତସ୍ୱାର୍ଥ ସୃଷ୍ଟି ହେଇଛି ତା'ର ରୂପ ପ୍ରକଟ କରାଇବାକୁ ହେଲେ, ମାଲୟାଲମ, ଓଡ଼ିଆ, ଆସାମୀ ବା ଗୁଜରାଟୀ ରାଷ୍ଟ୍ରଭାଷା ହେଉବୋଲି ଦାବି ଉଠାଇ ତା'ର ଉପରେ ବାଦାନୁବାଦ ଚଳାଇବାକୁ ହେବ । ମାନ୍ଦ୍ରାଜରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ଭକ୍ତବତ୍ସଲମ୍ ଓ ଆଉ କାହାକୁ କାହାକୁ ଆମେ ଭେଟିଥିଲୁ । ରାଜାଜୀ ଆମ ସହିତ ଦେଖା କରିବାକୁ ମନାକଲେ । ମାନ୍ଦ୍ରାଜରେ ଦେଖିଲି ଯେ, ହିନ୍ଦୀବିରୋଧୀ ବିକ୍ଷୋଭର ବାସିଦିନ ବି ହିନ୍ଦୀ ଫିଲମ୍ ଦେଖିବା ପାଇଁ ସିନେମାମାନଙ୍କରେ ଯଥେଷ୍ଟ ଭିଡ଼ ଲାଗିଛି ।

## ସର୍ବୋଦୟ ଆନ୍ଦୋଳନ ଓ ସରକାର

ବିହାରରେ ଗ୍ରାମଦାନ ତୋଫାନ ଆନ୍ଦୋଳନ ଆରମ୍ଭ ହେଇ ସେଥିରୁ ପ୍ରଖଣ୍ଡଦାନ, ଜିଲାଦାନ ଓ ଶେଷକୁ ରାଜ୍ୟଦାନର କଳ୍ପନା ବାହାରିବା କଥା ପୂର୍ବରୁ ଉଲ୍ଲେଖ କରିଛି । ବିନୋବା ବରାବର ଭୂଦାନ-ଗ୍ରାମଦାନ ଆନ୍ଦୋଳନରେ ସରକାରୀ କର୍ମଚାରୀଙ୍କର ମଧ୍ୟ ସହଯୋଗ ଚାହୁଁଥା'ନ୍ତି । ସେମାନେ ସର୍ବୋଦୟ କର୍ମୀ, ରାଜନୀତିକ ଦଳର କର୍ମୀ ଓ ଅନ୍ୟ ସ୍ୱେଚ୍ଛାସେବକଙ୍କ ସାଙ୍ଗରେ ମିଶି ଭୂଦାନ-ଗ୍ରାମଦାନ ପ୍ରଚାର ଓ ସଂଗ୍ରହ କାମକରନ୍ତୁ ଏହା ସେ ଚାହୁଁଥା'ନ୍ତି । ବିଭିନ୍ନ ରାଜ୍ୟ ସରକାର ସରକାରୀ କର୍ମଚାରୀଙ୍କୁ ସେଥିପାଇଁ ଅନୁମତି ଦେଇ ପରିଚୟପତ୍ର ବାହାର କରିଥା'ନ୍ତି । ବିହାରରେ ତୋଫାନ ଆନ୍ଦୋଳନରେ ମଧ୍ୟ ସେହିପରି ହେଲା । ତେବେ ଏଠି ସରକାରୀ କର୍ମଚାରୀମାନେ ବହୁତ ଅଧିକ ସଂଖ୍ୟାରେ ଓ ବ୍ୟାପକଭାବରେ ଏ କାମରେ ଲାଗିଲେ । ଏ ଭଳି ଭାବରେ ସରକାରୀ ଲୋକଙ୍କ ସାହାଯ୍ୟ ନେବାର ଔଚିତ୍ୟ ବିଷୟରେ ଅନେକଙ୍କର ମନରେ ସନ୍ଦେହ ଥିଲା । ଯେଉଁମାନେ ନିଜ ଜୀବନରେ କୌଣସି ଆଦର୍ଶ ଗ୍ରହଣ ନ କରିଛନ୍ତି ସେମାନେ ଲୋକଙ୍କୁ କ'ଣ ବୁଝାଇବେ ଓ ସେମାନେ ଯାହା ବୁଝାଇବେ ତା'ର ପ୍ରଭାବ ବା କ'ଣ

ପଡ଼ିବ, ଇତ୍ୟାଦି । ମୁଁ ଏଇ ତୋଫାନ ଆନ୍ଦୋଳନ ବେଳେ ସିଂହଭୂମି ଜିଲାରେ ସାତ ଆଠ ଦିନ ବୁଲିଥିଲି । ମୋ ସାଙ୍ଗରେ ଜଣେ ସ୍କୁଲ ଇନ୍‌ସପେକ୍ଟର ଥା'ନ୍ତି । ସେ ମଧ୍ୟ ଗାଁମାନଙ୍କରେ ଗ୍ରାମଦାନ କଥା ବୁଝାଇ ବକ୍ତୃତା ଦେଉଥା'ନ୍ତି । ମୁଁ ଦେଖିଲି ଯେ, ସେ ଅନ୍ୟ ଯେ କୌଣସି ସାଧାରଣ ସେବୀଙ୍କ ତୁଳନାରେ ଗ୍ରାମଦାନ କଥା କିଛି କମ୍ ଭଲ ଭାବରେ ଓ ସଚ୍ଚୋଟ ଭାବରେ ବୁଝାଉ ନାହାନ୍ତି । ଯେ କେତେଦିନ ସେ ମୋ ସାଙ୍ଗରେ ଯେମିତି ନିଷ୍ଠା ଓ ଉତ୍ସାହର ସହିତ ପରିଶ୍ରମ କଲେ ସେଥିରେ ସେ କେବଳ ସରକାରୀ ହୁକୁମ ବଜେଇବା ପାଇଁ ଏ ସବୁ କରୁଛନ୍ତି ବୋଲି ମୋର ମନେ ହେଲା ନାହିଁ । ଆହୁରି କେତେକ ଏହିପରି କର୍ମଚାରୀ ମଧ୍ୟ ମୁଁ ଦେଖିଥିଲି । ସେଥିପାଇଁ ସରକାରୀ କର୍ମଚାରୀଙ୍କର ସାହାଯ୍ୟ ନିଆଯିବାରେ ମୁଁ କିଛି ଆପତ୍ତିଜନକ କଥା ଦେଖୁନଥାଏ । ଯେଉଁମାନେ ଏ ବିଷୟରେ ଆପତ୍ତି ଉଠାନ୍ତି ସେମାନଙ୍କୁ ମୁଁ ବୁଝାଉଥାଏ ଯେ, ଏହାଦ୍ୱାରା ଆମେ ସରକାରୀ କର୍ମଚାରୀମାନଙ୍କୁ ସର୍ବୋଦୟ ଆଦର୍ଶ ଦ୍ୱାରା ପ୍ରଭାବିତ କରିବାର ସୁଯୋଗ ପାଉଛୁ । ପଶ୍ଚିମବଙ୍ଗରେ ରାଇଟର୍ସ ବିଲଡ଼ିଂର ପ୍ରାୟ ସମସ୍ତ କର୍ମଚାରୀ ସି.ପି.ଆଇ.ଏମ୍‌ର ସମର୍ଥକ । ସେଠି ସରକାର ତ କଂଗ୍ରେସର, ମାତ୍ର କର୍ମଚାରୀମାନେ ବାମପନ୍ଥୀ କମ୍ୟୁନିଷ୍ଟଙ୍କ ଆଡ଼େ । ଆମେ ସେମିତି ବିହାର ଓ ଅନ୍ୟତ୍ର ସରକାରୀ କର୍ମଚାରୀଙ୍କ ଭିତରେ ସର୍ବୋଦୟ ପ୍ରତି ଆକର୍ଷଣ ଓ ଅନୁରକ୍ତି ସୃଷ୍ଟି କରିବା ପାଇଁ ଏ ସୁଯୋଗକୁ ବ୍ୟବହାର କରିବା ଉଚିତ ।

ମଝିରେ ମଝିରେ ଅଭିଯୋଗ ଶୁଣାଯାଉଥାଏ ଯେ, ଗ୍ରାମଦାନର ସଂକଳ୍ପପତ୍ରସବୁ ମିଛିମିଛିକା ପୂରଣ କରି ସଂଖ୍ୟା କଢ଼େଇ ଦିଆଯାଉଛି । ସରକାରୀ କର୍ମଚାରୀମାନେ ଏପରି ବେଶି କରୁଛନ୍ତି ବୋଲି ଅଭିଯୋଗ ହେଉଥାଏ ଓ ପୁଣି ଅନ୍ୟ ସାଧାରଣ କର୍ମୀଙ୍କ ବିଷୟରେ ମଧ୍ୟ । କେତେକ ବନ୍ଧୁ କହୁଥା'ନ୍ତି ଯେ, ସଂଖ୍ୟାସୁର ଯୋଗୁଁ ଏ ସବୁ ଗୋଳମାଳ ହେଉଛି । ସାତଦିନ କି ପନ୍ଦର ଦିନରେ ଏ ବ୍ଲକ୍‌ର ଶହେ ଗାଁ ଗ୍ରାମଦାନ କରିବାକୁ ହେବ, ଏପରି ସଂଖ୍ୟା ଓ ସମୟର ଲକ୍ଷ୍ୟ ବାନ୍ଧିଦେବା ଦ୍ୱାରା ଠକାମୀର ମନୋଭାବକୁ ପ୍ରଶ୍ରୟ ମିଳୁଛି । ତେଣୁ ଟାର୍ଗେଟ୍ ସ୍ଥିର କରିବା ଭୁଲ । ମୋର ମତ ଥାଏ ଯେ, ଲକ୍ଷ୍ୟାଙ୍କ ସ୍ଥିର କରିବାରେ ଭୁଲ ନାହିଁ । ଚାନ୍ଦା ଆଦାୟ ପାଇଁ ବି ତ ଆମେ ଏମିତି ଲକ୍ଷ୍ୟାଙ୍କ ସ୍ଥିରକଲୁ । ଅସଲ କଥା ଗ୍ରାମଦାନର ପ୍ରକୃତ ତାତ୍‌ପର୍ଯ୍ୟ କର୍ମୀ ଓ ସ୍ୱେଚ୍ଛାସେବକମାନଙ୍କୁ ଭଲରୂପେ ବୁଝାଇବା ଚାହି ଓ ଯାଞ୍ଚର ବ୍ୟବସ୍ଥା ମଧ୍ୟ ଭଲରୂପେ ହେବା ଚାହି ।

ସରକାରୀ କର୍ମଚାରୀ ଓ ଗାଁର ମାମଲତ୍‌କାର, ମୁଖିଆ ଆଦିଙ୍କୁ ଏ କାମରେ ଲଗାଇବାର ଓ ସେମାନଙ୍କ ଉପରେ ନିର୍ଭର କରିବାର ବିପଦ ବିଷୟରେ ଦାଦା ଧର୍ମାଧିକାରୀ ବରାବର ଚେତାବନୀ ଶୁଣାଉଥିଲେ । ତାଙ୍କର କହିବାର କଥା ଥିଲା ଯେ, ଏହାଦ୍ୱାରା ଆମେ ପୁରୁଣା କ୍ଷମତାତନ୍ତ୍ରକୁ ହିଁ ମଜବୁତ କରୁଛୁ । ଦାଦାଙ୍କର ଏ ଚେତାବନୀ ପ୍ରଥମେ ମତେ ସ୍ପର୍ଶ କରୁନଥିଲା । ମାତ୍ର କ୍ରମେ ମୁଁ ତା'ର ତାତ୍‌ପର୍ଯ୍ୟ ହୃଦୟଙ୍ଗମ କଲି । ଗ୍ରାମଦାନ ମାଧ୍ୟମରେ ଆମେ ଲୋକଶକ୍ତି ଜାଗ୍ରତ କରିବାକୁ ଚାହୁଁଛୁ । ବର୍ତ୍ତମାନର ଶାସନତନ୍ତ୍ର, ଗାଁର ବଡ଼ଲୋକ, ମହାଜନ,

ମାମଲତ୍‌କାର ପ୍ରଭୃତି ବର୍ତ୍ତମାନ ସବୁ କ୍ଷମତା ଦଖଲ କରି ରହିଛନ୍ତି ଓ ଲୋକଙ୍କର ଛାତି ଉପରେ ଚାପି ବସିଛନ୍ତି । ଲୋକଶକ୍ତି ଜାଗିବାର ଅର୍ଥ ହେଲା ଏଇ ପ୍ରଚଳିତ କ୍ଷମତାତନ୍ତ୍ରର ପ୍ରଭାବ ଓ ଆଧିପତ୍ୟ ଲୋପ ହେବା । ଯଦି ଆମେ ଏଇ ପ୍ରଭାବ ଓ ଆଧିପତ୍ୟକୁ ହିଁ ଗ୍ରାମଦାନ ପାଇଁ ବ୍ୟବହାର କରିବା ତେବେ କାମଟା ମୂଳରୁ ହିଁ କାଞ୍ଜିଆ ହେଇଯିବ ।

ଏ ବିଷୟରେ ଥରେ ବିନୋବାଙ୍କ ସହିତ ଆଲୋଚନା ହେଲା । ଦାଦା ଧର୍ମାଧିକାରୀ, ଶଙ୍କରରାଓ ଦେଓ, ଧୀରେନଭାଇ ପ୍ରଭୃତି ଉପସ୍ଥିତ ଥିଲେ । ସରକାରୀ କର୍ମଚାରୀ ଗ୍ରାମଦାନ ସଂଗ୍ରହ କଲେ ଜୋର୍ ଜବରଦସ୍ତିର ଆଶଙ୍କା ଅଛି ବୋଲି ଶଙ୍କରରାଓଜୀ କଥା ଉଠେଇଲେ । ସମସ୍ୟାଟା ଠିକ୍ ଭାବରେ ରଖାଗଲା ନାହିଁ ବୋଲି ମୋର ମନେ ହେଲା । ଜୋର୍‌ଜବରଦସ୍ତି ଅପେକ୍ଷା ମିଥ୍ୟାଚାରର ଆଶଙ୍କା ବେଶି ଥିଲା । ସେ ଯାହ ହେଉ ବିନୋବା ଏହାର ଉତ୍ତରରେ କହିଲେ ଯେ, ସେମାନେ ସେପରି କଲେ ତ କ'ଣ ହେଲା ? ଗ୍ରାମଦାନ ପାଇଁ ଲୋକଙ୍କୁ ବାଧ କରିବାକୁ ଆଇନ କରାଗଲେ ବି ଭଲ ହେବ ବୋଲି ମୁଁ ତ କେତେଥର କହିଛି । ତେଣୁ ସରକାରୀ କର୍ମଚାରୀମାନେ ଟିକିଏ ଜୋର୍ ଜବରଦସ୍ତି କରିବେ ତ କ୍ଷତି କ'ଣ ହେବ ? ଆଲୋଚନା ଆଉ ଟିକିଏ ଚାଲିଲା, ମୁଁ ବି କିଛି କହିବା ପାଇଁ ପ୍ରସ୍ତୁତ ହେଉଥିଲି, ମାତ୍ର ବିନୋବା ଏ ଆଲୋଚନା ଭିତରେ ଏପରି ଉତ୍ତେଜିତ ହେଇ ପଡ଼ିଲେ ଯେ, ଆଉ କଥା ବଢ଼େଇବାଟା କେହି ସମୀଚୀନ ମନେକଲେ ନାହିଁ ।

ଏ ବ୍ୟାପାରରେ ବିନୋବାଙ୍କର ବିଚାରର ଅସ୍ପଷ୍ଟତା ଦେଖି ମତେ ଆଶ୍ଚର୍ଯ୍ୟ ଲାଗିଲା । ପ୍ରଥମତଃ ଆଇନ୍ ଦ୍ୱାରା ଲୋକଙ୍କୁ ବାଧ କରିବା ଏକ କଥା ଓ ସରକାରୀ କର୍ମଚାରୀ ତାଙ୍କର ରୋବ୍ ଦେଖେଇ ଲୋକଙ୍କୁ ବାଧ କରିବା ଆଉ ଏକ କଥା । ସରକାରୀ କର୍ମଚାରୀଙ୍କ ରୋବ୍‌ରେ ଗରିବ, ଆଇନକାନୁନ ବିଷୟରେ ଅଜ୍ଞ ଲୋକେ ହିଁ ଡରିହରି ମାନିଯିବେ । ଅବସ୍ଥାପନ୍ନ ସିଆଣା, ଲୋକେ ଆଦୌ ଦବିବେ ନାହିଁ । କାରଣ ସେମାନେ ବେଶ ଭଲ ଭାବରେ ବୁଝିବେ ଯେ, ଏ ଖାଲି ରାଂଡ଼ ଧମକ, ଯା ପଛରେ ଆଇନର ବଳ ନାହିଁ । ତା' ପରେ ଯଦି ବା ଲୋକେ ଭୟରେ ଗ୍ରାମଦାନ କରିଦେବେ ତେବେ ସେଥିରୁ ଜନଶକ୍ତିର କୋଉ ଚୋପାଟା ବାହାରିବ ? ବର୍ତ୍ତମାନ ବ୍ୟବସ୍ଥାରେ ଚାଲିଥିବା ଅନ୍ୟାୟ ବିରୋଧରେ ଛିଡ଼ା ହେବାର ଶକ୍ତି ସେମାନଙ୍କର କୁଆଡୁ ଆସିବ ? ସରକାରୀ କର୍ମଚାରୀଙ୍କର ଅନ୍ୟାୟର ବିରୋଧ ସେମାନେ କିପରି କରିପାରିବେ ?

ସବୁ ବିଷୟରେ ବିଶଦ ଆଲୋଚନା ହେଇପାରିଲା ନାହିଁ । ବିନୋବା ଯେତେବେଳେ କହୁଛନ୍ତି ଯେମିତି ଚାଲୁଛି ଚାଲୁ ବୋଲି ସମସ୍ତ ସନ୍ଦେହକୁ ଚାପିଦେଇ ସମସ୍ତେ ଚୁପଚାପ୍ ରହିଗଲେ । କିନ୍ତୁ ପରିଣାମରେ ଗ୍ରାମଦାନ ସଂଗ୍ରହ କାମରେ ବହୁତ ଗଲ୍‌ତି ରହିଲା । ଜେ.ପି. ଯାଇ ପରେ ଯେତେବେଳେ ୧୯୭୦ ରେ ମୁସହରୀରେ ବସିଲେ ସେତେବେଳେ ସେଠି ଦେଖାଗଲା ଯେ, ଅଧିକାଂଶ ଗାଁ ଗ୍ରାମଦାନ ଘୋଷିତ ହେଇଥିଲେ ବି ତାହା ଭିତରୁ ଅଧିକାଂଶ

ଗାଁର ଅଧିକାଂଶ ଲୋକ ଗ୍ରାମଦାନ ସଂକଳ୍ପରେ ପ୍ରକୃତରେ ଦସ୍ତଖତ କରି ନାହାନ୍ତି । ସହରସା ଜିଲ୍ଲାରେ ଗ୍ରାମଦାନ ସଂକଳ୍ପକୁ କାର୍ଯ୍ୟକାରୀ କରାଇବା ଉଦ୍ୟମ ବେଳେ ବି ସେହିପରି ଅନୁଭୂତି ମିଳିଲା । ସେଥିରୁ ଗୋଟାଏ ଧାରଣା ସୃଷ୍ଟି ହେଲା ଯେ, ବିହାରରେ ସବୁ ଗ୍ରାମଦାନ ବୋଗସ୍ । କିନ୍ତୁ ପ୍ରକୃତରେ ତାହା ନୁହେଁ । ଅନେକ ଅଞ୍ଚଳରେ ନିଷ୍ଠାପର କର୍ମୀଙ୍କର ତତ୍ତ୍ୱାବଧାନରେ ଠିକ୍ ଭାବରେ ଗ୍ରାମଦାନ ହେଇଥିଲା ଓ ତା'ର ପରିଣାମ ମଧ୍ୟ ଭଲ ହେଇଛି ।

ସରକାର ସହିତ ସଂପର୍କ ଓ ସରକାରୀ ନୀତି ପ୍ରତି ଆଭିମୁଖ୍ୟ ସର୍ବୋଦୟ ଆନ୍ଦୋଳନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାବ । ସେହିପରି ରାଜନୀତି ଓ ରାଜନୀତିକ ଦଳ ପ୍ରତି ତା'ର ଆଭିମୁଖ୍ୟ ମଧ୍ୟ । ସ୍ୱାଧୀନତା ପରେ ରଚନାତ୍ମକ କର୍ମୀ ମହଲରେ ଏ ବାବଦରେ ବିବିଧ ପ୍ରକାରର ମନୋଭାବ ଦେଖାଦେଇଥିଲା । ଓଡ଼ିଶାରେ କର୍ମୀମାନେ କଂଗ୍ରେସ ସରକାର ଓ ତା'ର ନୀତି ପ୍ରତି କିପରି ବୀତସ୍ପୃହ ଓ ନିରାଶ ହେଇଥିଲେ ତା'ର ଉଲ୍ଲେଖ ପୂର୍ବରୁ କରିଛି ।

ଆମ ଭଳି ଅସନ୍ତୁଷ୍ଟ କର୍ମୀଗୋଷ୍ଠୀ ଅନ୍ୟ କେତେକ ରାଜ୍ୟରେ ମଧ୍ୟ ଥିଲେ । ପୁଣି ଆଉ କେତେକ ରାଜ୍ୟରେ ରଚନାତ୍ମକ କର୍ମୀମାନେ ମୁଖ୍ୟତଃ କଂଗ୍ରେସର ଛତ୍ରଛାୟା ତଳେ ହିଁ ରହିଲେ । ସାରା ଦେଶରେ ଏହିମାନଙ୍କ ସଂଖ୍ୟା ହିଁ ଅଧିକ ଥିଲା । ଗୁଜରାଟରେ ପ୍ରାୟ ସମସ୍ତ କର୍ମୀକୁଳ ଏହିପରି ଥିଲେ ।

ସର୍ବୋଦୟ ଆନ୍ଦୋଳନକୁ କୌଣସି ରାଜନୀତିକ ଦଳର ଲାଙ୍ଗୁଡ଼ ହେବାକୁ ନ ଦେଇ ତାକୁ ତା'ର ନିଜ ଗୋଡ଼ରେ ଛିଡ଼ାକରାଇବାର ଉଦ୍ୟମ ବିନୋବା କଲେ । ରାଜନୀତିର ଯୁଗ ସରିଲାଣି ଓ ଏବେ ସାଧାରଣ ଲୋକର ଯୁଗରେ ଲୋକନୀତି ଚଳିବ ବୋଲି ସେ ଘୋଷଣା କଲେ ।

ଚାଂଡ଼ିଲ ସର୍ବୋଦୟ ସମ୍ମିଳନୀରେ ସେ "ଆମେ ତୃତୀୟ ଶକ୍ତି" ବୋଲି ଯେଉଁ ଭାଷଣ ଦେଇଥିଲେ ତା'ର ଉଲ୍ଲେଖ ପୂର୍ବରୁ କରିଛି । ସେଥିରେ ସେ ସରକାରକୁ ଯାଇଥିବା ନେତାମାନଙ୍କୁ ରାଷ୍ଟ୍ରର ଗାଡ଼ିକୁ ଟାଣୁଥିବା ବଳଦ ଦୁଇଟିଙ୍କ ସହିତ ତୁଳନା କରି କହିଲେ ଯେ, ଆମେ ସର୍ବୋଦୟ କର୍ମୀ ସେଥିରେ ପୁଣି ତୃତୀୟ ବଳଦ ହୋଇ ଲାଭ କ'ଣ ? ଆମେ ବରଂ ରାସ୍ତା ତିଆରିରେ ଲାଗିବା ଉଚିତ, ଯେପରି ଗାଡ଼ି ବେଶ ଭଲ ଭାବରେ ସେଥିରେ ଆଗେଇଯାଇ ପାରିବ । ଜନଶକ୍ତି ସଂଗଠନରେ ସର୍ବୋଦୟର ଭୂମିକାର ବ୍ୟାଖ୍ୟା ହିସାବରେ ଏ ବକ୍ତୃତା ଅଭୂତପୂର୍ବ ଥିଲା । ସରକାରୀ ତନ୍ତ୍ର ସହିତ ତାହାର ସଂପର୍କ ମଧ୍ୟ ଏ ବକ୍ତୃତା ଦ୍ୱାରା ନିରୂପିତ ହୋଇଥିଲା । ବିନୋବା ଏହାପରେ କେରଳର କମ୍ୟୁନିଷ୍ଟ ସରକାରକୁ ସ୍ୱାଗତ କରି ଓ ତାହା ସହିତ ସହଯୋଗ ପାଇଁ ହାତ ବଢ଼ାଇ ଏ ନୀତିର ପଦାର୍ଥପାଠ ଦେଲେ ଯେ, ଗଣତାନ୍ତ୍ରିକ ଢଙ୍ଗରେ ନିର୍ବାଚିତ ହେଇଥିବା ସରକାରର ରାଜନୀତିକ ରଙ୍ଗ ବାରିବା ଉଚିତ ନୁହେଁ ।

ଏପର୍ଯ୍ୟନ୍ତ ତ ଠିକ୍ ଥିଲା । ମାତ୍ର ସମାଜରେ ଯେ କେତେକ ଶ୍ରେଣୀଙ୍କର ଆଧିପତ୍ୟ ରହିଛି ଓ ତାହା ଗଣତନ୍ତ୍ରର ଅଭିବ୍ୟକ୍ତିକୁ ସୀମାବଦ୍ଧ ଓ ବିକୃତ କରୁଛି ଏହା ବିନୋବା ଓ

ସର୍ବୋଦୟବାଲାଙ୍କ ଭିତରୁ ଅଧିକାଂଶ ଦେଖିପାରୁ ନଥିଲେ ବା ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ଶ୍ରେଣୀ ସଂଘର୍ଷର ହିଂସାକୁ ପ୍ରତ୍ୟାଖ୍ୟାନ କରିବା ସାଙ୍ଗେ ସାଙ୍ଗେ ସମାଜରେ ବିଭିନ୍ନ ଶ୍ରେଣୀ ଓ ସ୍ୱାର୍ଥର ଅସ୍ତିତ୍ୱକୁ ମଧ୍ୟ ସେମାନେ ଅସ୍ୱୀକାର କରିବାର ଏହା ହେଲା ପରିଣାମ । ଫଳରେ ସେମାନଙ୍କ ପକ୍ଷରେ ଏହା ଦେଖିପାରିବା କଠିନ ହେଲା ଯେ, ଶାସକ ଦଳ ରାଷ୍ଟ୍ରର ବଳଦ ଗାଡ଼ିରେ ଜନତାର ମାଲ ବୋହିବା ଅପେକ୍ଷା ନ୍ୟସ୍ତସ୍ୱାର୍ଥମାନଙ୍କର ମାଲ ବୋହିବାରେ ବେଶି ଲାଗିଛନ୍ତି ।

ଚାଂଡ଼ିଲ ସମ୍ମିଳନୀ ବେଳେହିଁ ଓଡ଼ିଶାର ଅସନ୍ତୁଷ୍ଟ ଯୁବକ କର୍ମୀମାନେ ବିନୋବାଙ୍କୁ ପ୍ରଶ୍ନ କରିଥିଲୁ ଯେ, କଂଗ୍ରେସ ସରକାର ତ ଭୁଲ ବାଟରେ ଚାଲିଛ, ଏପରି ଅବସ୍ଥାରେ ଆମେ ତାହା ସହିତ କି ପ୍ରକାର ସଂପର୍କ ରଖିବା ଉଚିତ୍ ? ସେ ଉତ୍ତରରେ କହିଥିଲେ ଯେ, ରାମ ଓ ଭରତଙ୍କ ଭିତରେ ଯେଉଁପରି ସଂପର୍କ ଥିଲା ସେହିପରି । ଏ ଉତ୍ତର ଦ୍ୱାରା ଆମକୁ ସନ୍ତୋଷ ନ ମିଳିଥିଲେ ମଧ୍ୟ ସେତେବେଳେ କଂଗ୍ରେସରୁ ଅଲଗା ହେଇ ଭୂଦାନ ଆନ୍ଦୋଳନ ଯେପରି ସ୍ୱତନ୍ତ୍ର ଭାବରେ ଚାଲିଲା ତାହା ଆମକୁ ସନ୍ତୋଷ ଦେଇଥିଲା । କ୍ରମେ ସର୍ବୋଦୟର ସ୍ୱତନ୍ତ୍ର ଭୂମିକା ସ୍ପଷ୍ଟତର ଓ ଦୃଢ଼ତର ହେଇ ଚାଲିଲା । ମାତ୍ର କଂଗ୍ରେସ ଶାସନର ମୂଲ୍ୟାଙ୍କନ ବିଷୟରେ ଅସ୍ପଷ୍ଟତା ଓ ଦୃଷ୍ଟିଭେଦ ରହିଗଲା ।

ବିନୋବା ଯେ ସମାଜରେ ଧନିକ ଶ୍ରେଣୀର ଆଧିପତ୍ୟ ବିଷୟରେ ସଚେତନ ନଥିଲେ ତାହା ନୁହେଁ । କୋରାପୁଟ ପଦଯାତ୍ରା ବେଳେ ସେ ବରାବର କହୁଥିଲେ ଯେ, ଭୂମି ସମସ୍ୟାର ସମାଧାନ ପୂର୍ବରୁ ପଞ୍ଚାୟତରାଜରପ୍ରଚଳନ ଦ୍ୱାରା ଧନ ଓ ବିଦ୍ୟା ଥିବା ଯୋଗୁଁ ଯେଉଁମାନେ ଗାଁମାନଙ୍କରେ ଆଧିପତ୍ୟ କରୁଥିଲେ ଏବେ ସେହିମାନଙ୍କୁ ଶାସନ କ୍ଷମତା ମଧ୍ୟ ମିଳିଯିବା ସାର ହେବ । ମୋ ସାଙ୍ଗରେ ଥରେ ସତ୍ୟାଗ୍ରହ ବିଷୟରେ ଆଲୋଚନା ପ୍ରସଙ୍ଗରେ କହିଥିଲେ ଯେ, ଯଦି କୌଣସି ଜୋରଦାର ସତ୍ୟାଗ୍ରହ ଆନ୍ଦୋଳନ ଚାଲେ ତେବେ ପୁଞ୍ଜିବାଦୀ ସଂବାଦପତ୍ରଗୁଡ଼ିକ ତାକୁ ଯଥୋଚିତ ଗୁରୁତ୍ୱ ଦେବେ ନାହିଁ । ସେଥିପାଇଁ ସର୍ବୋଦୟ ଆନ୍ଦୋଳନର ନିଜସ୍ୱ ଖବରକାଗଜ ଲୋଡ଼ା ଓ ତାର ପ୍ରଚାର ମଧ୍ୟ ଯଥେଷ୍ଟ ବ୍ୟାପକ ହେବା ଚାହି, କିନ୍ତୁ ଶାସନର ନୀତିରେ ଏ ନ୍ୟସ୍ତସ୍ୱାର୍ଥମାନଙ୍କର ପ୍ରଭାବ ବିଷୟରେ ସେ କେତେଦୂର ସଚେତନ ଥିଲେ ତାହା ସ୍ପଷ୍ଟ ନୁହେଁ । ଏ ବିଷୟରେ ଖୋଲାଖୋଲି ଆଲୋଚନା କେବେ ହେଇଥିବାର ମନେ ପଡୁନାହିଁ । ଗଣତନ୍ତ୍ରରେ ସରକାରର ଗୁଣାଗୁଣ ହାରାହାରି ହିଁ ହେବ - ଏ ତତ୍ତ୍ୱ ବଖାଣିବା ଦ୍ୱାରା ସରକାରର ନୀତିରେ ସମାଜର ଶ୍ରେଣୀ ଚରିତ୍ରର ପ୍ରଭାବର ଗୁରୁତ୍ୱତା ଘୋଡ଼େଇ ହେଇ ପଡୁଥିଲା ।

ବିନୋବା ଲୋକନୀତିର ଯେଉଁ ବିଚାର ଚାଲୁକଲେ ତା'ର ମୁଖ୍ୟକଥା ହେଲା ଯେ, କ୍ଷମତା ଓ ଶାସନ ନୀତି ମୁଷ୍ଟିମେୟ ନେତାଙ୍କର ହାତମୁଠାରେ ନରହି ସମସ୍ତ ଜନତାର ହାତମୁଠାକୁ ଆସିବ । ସେଥିପାଇଁ କ୍ଷମତାର ଅଧିକରୁ ଅଧିକ ବିକେନ୍ଦ୍ରୀକରଣ ହେବ । ଦଳ ଗଢ଼ି ଦଳ ଦ୍ୱାରା କ୍ଷମତା ହାସଲ କରିବା ଉଦ୍ୟମ ଜନତା ଭିତରେ ଭେଦ ସୃଷ୍ଟି କରେ ଓ କ୍ଷମତା ତଥା ନୀତି

ନିର୍ଣ୍ଣୟ ଅଧିକାର ମଧ୍ୟ ଏହାଦ୍ୱାରା ଜନତା ହାତରୁ ଦଳ ହାତକୁ ଚାଲିଆସେ । ତେଣୁ ଲୋକେ ଓ ତାଙ୍କର ପ୍ରତିନିଧିମାନେ ଦଳଗତ ଭିତ୍ତିରେ କାର୍ଯ୍ୟ କରିବେ ନାହିଁ । ସଂଖ୍ୟାଗରିଷ୍ଠତା ଦ୍ୱାରା ନିର୍ଣ୍ଣୟ ମଧ୍ୟ ଲୋକନୀତିରେ କାମ୍ୟ ନୁହେଁ । ନିର୍ଣ୍ଣୟ ସର୍ବସମ୍ମତିରେ, ଅନ୍ତତଃ କାହାରି ବିରୋଧ ନ ଥାଇ (nem con), ହେବା ଉଚିତ ।

ସର୍ବ ସେବା ସଂଘରେ ତ ମୂଳରୁ ସର୍ବସମ୍ମତିରେ ନିର୍ଣ୍ଣୟ କରିବା ନୀତି ଚାଲୁ ହୋଇଥିଲା । ଗ୍ରାମଦାନ ହେବାପରେ ସେସବୁ ଗାଁର ଗ୍ରାମସଭାଗୁଡ଼ିକରେ ମଧ୍ୟ ଏହି ନୀତିରେ କାମ ହେବ ବୋଲି ସ୍ଥିର କରାଗଲା । ଗ୍ରାମସଭାଗୁଡ଼ିକୁ ଲୋକନୀତିର ପ୍ରାଥମିକ ଏକକ ଭାବରେ ଗଢ଼ି ତୋଳିବାର ଲକ୍ଷ୍ୟ ରଖାଗଲା ।

ଅତି ଅଳ୍ପସଂଖ୍ୟକ ହେଉନ୍ତୁ ପଛେ, ଜଣେ ହୁଅନ୍ତୁ ପଛେ, ତାଙ୍କର ମତାମତ ପ୍ରତି ସମ୍ମାନ ଦେଖାଇବା, ତାଙ୍କର ହୃଦବୋଧ କରାଇବା ପାଇଁ ଚେଷ୍ଟା କରିବା ଓ ତାଙ୍କର ଦୃଷ୍ଟିକୋଣକୁ ବୁଝିବା ପାଇଁ ଚେଷ୍ଟା କରିବାର, କେବଳ ଜିଦ୍ ବା ଅହମିକା ପରିବର୍ତ୍ତେ ସତ୍ୟାସତ୍ୟ ନିର୍ଣ୍ଣୟ ଓ ଯଥୋଚିତ ନିଷ୍ପତ୍ତିରେ ପହଞ୍ଚିବାର ମନୋଭାବର ବିକାଶରେ ଯଥେଷ୍ଟ ଅଧିକ ସହାୟତା ମିଳେ । କ୍ୱେକର ସଂପ୍ରଦାୟରେ ଏ ନୀତି ସାତଶହ ବର୍ଷ ହେଲା ଚାଲିଆସୁଛି; କିନ୍ତୁ ଗୋଟିଏ ଆଦର୍ଶକୁ ଗ୍ରହଣ କରିଥିବା ଏକ ସଂପ୍ରଦାୟ ବା ସଂସ୍ଥା ଭିତରେ ଏ ନୀତି ଚଳିବା ଏକ କଥା ଓ ଜାତି, ଶ୍ରେଣୀ ଆଦି ଦ୍ୱାରା ବିଭକ୍ତ ଓ ଅନ୍ୟାୟ, ଶୋଷଣ ଆଦି ଦ୍ୱାରା ପ୍ରପୀଡ଼ିତ ସମାଜରେ ତାହାର ପ୍ରୟୋଗ ଆଉ ଏକ କଥା । ପୁଣି ସର୍ବ ସେବା ସଂଘ ଭଳି ସମସ୍ତ ସଂସ୍ଥାରେ ମଧ୍ୟ ଏ ନୀତିକୁ ବାହ୍ୟ ସ୍ଥୂଳ ଭାବରେ ମାନି ନେବାର କେତେକ କୁପରିମାଣ ମୁଁ ଲକ୍ଷ୍ୟ କରିଛି । ଏହା ଯୋଗୁଁ କୌଣସି ବିବାଦଗ୍ରସ୍ତ ବିଷୟରେ ଗଭୀର ଆଲୋଚନାକୁ ଏଡ଼େଇ ଦେବାର ମନୋଭାବ ବଢ଼େ । ଯୁକ୍ତିତର୍କଟାକୁ ଅବାଞ୍ଛନୀୟ ବୋଲି ମନେକରିବାର ଝୁଙ୍କ ବଢ଼େ । କୌଣସି ବିଷୟରେ ଆଲୋଚନାରୁ ଯେଉଁ ସବୁ ନୂଆ ଓ ସମ୍ଭବତଃ ମୂଲ୍ୟବାନ ପଏଣ୍ଟ ବାହାରେ ସେ ସବୁକୁ ଏଡ଼େଇଦେଇ ସର୍ବସମ୍ମତି ଦୃଷ୍ଟିରୁ ଯେଉଁ ପଏଣ୍ଟଗୁଡ଼ିକୁ ମାନିନିଆଯାଏ ସେଗୁଡ଼ିକରେ କେବଳ ଉପରଠାଉରିଆ କଥା ହେବାର ସମ୍ଭାବନା ଅଧିକ ଥାଏ । ଶେଷକୁ ତ ଏହାକୁ ଅଧିକ ସଂଖ୍ୟକ ଲୋକଙ୍କର ମତକୁ ଅକାମୀ କରିଦେବା ପାଇଁ ବଦ୍ଧପରିକର ମୁଷ୍ଟିମେୟ ବ୍ୟକ୍ତିଙ୍କର ଅସ୍ତ୍ରରୂପେ ବ୍ୟବହାର କରାଗଲା ଓ ବିନୋବା ମଧ୍ୟ ଏ ଘୃଣ୍ୟ ଉଦ୍ୟମ ପ୍ରତି ଆଖି ବୁଜି ଦେଲେ ।

ଗ୍ରାମସଭାମାନଙ୍କରେ ଲୋକନୀତି ଅନୁସାରେ କିପରି କାମ ଚାଲିବ ସେ ବିଷୟରେ ସର୍ବ ସେବା ସଂଘରେ ଅନେକ ଥର ବହୁତ ବିଶଦ ଓ ଲମ୍ବା ଆଲୋଚନା ହୋଇଛି । ବାସ୍ତବରେ ଗଣତନ୍ତ୍ର ଚାଲିବାକୁ ହେଲେ ବାଁ ସ୍ତରରେ "ପ୍ରତ୍ୟକ୍ଷ ଗଣତନ୍ତ୍ର" ଚାଲିବା ଚାହି ବୋଲି ମତ ଥିଲା, ଅର୍ଥାତ୍ ପୂରା ଗ୍ରାମସଭା ବସି ଯାହା ନିର୍ଣ୍ଣୟ କରିବାର କରିବ । ସମିତି, ଉପସମିତି ବା ବ୍ୟକ୍ତିବିଶେଷଙ୍କୁ ଏ ଭଳି ଅଧିକାର କେବଳ କୌଣସି ଖାସ ବିଷୟ ପାଇଁ ସାମୟିକ ଭାବରେ ଦିଆଯିବ । ଏହିପରି ସୂକ୍ଷ୍ମ ବିଚାରକରି ଅନେକ ନିୟମ ଗଢ଼ା ହେଲା । ମାତ୍ର ଏ ସବୁଥିରେ

ଗୋଟାଏ ଅଭାବ ରହିଲା ଯେ, ଗ୍ରାମଦାନ ଗାଁମାନଙ୍କରେ ଚାଲୁଥିବା ଗ୍ରାମସଭାମାନଙ୍କରେ କି ଢଙ୍ଗରେ କାମ ଚାଲିଛି ବା କାମ ନ ଚାଲୁଛି ତ କାହିଁକି ଚାଲୁ ନାହିଁ ଏ ବିଷୟରେ ପ୍ରତ୍ୟକ୍ଷ ଅଧ୍ୟୟନ କରିବା କାମଟି ହେଲା ନାହିଁ । ଏ ପ୍ରକାରର ଅଭିଜ୍ଞତାଲବ୍ଧ ଜ୍ଞାନର ବ୍ୟବହାର ନ ହେବାରୁ ଏ ବିଷୟରେ ଆଲୋଚନା ଓ ନୀତି ନିର୍ଣ୍ଣୟ କେବଳ ତାତ୍ତ୍ୱିକ ସ୍ତରରେ ଚାଲିବାର ସମ୍ଭାବନା ଅଧିକ ରହିଲା ।

ଗ୍ରାମଦାନରୁ ଉଠି ଉଠି କଥା ରାଜ୍ୟଦାନରେ ପହଞ୍ଚିବା ବେଳକୁ ବିନୋବା କହିଲେ ଯେ, ଗୋଟିଏ ରାଜ୍ୟରେ ଅଧିକାଂଶ ଗାଁ ଗ୍ରାମଦାନ ହୋଇଯିବ ତ ସେଠାର ରାଜ୍ୟର ଶାସନ ମଧ୍ୟ ଗ୍ରାମସ୍ୱରାଜ ରୀତିରେ ଚଳାଇବାର ଏକ ସୁଯୋଗ ମିଳିବ । ଗ୍ରାମଦାନୀ ଲୋକମାନେ ଲୋକନୀତିର ସିଦ୍ଧାନ୍ତ ଅନୁସାରେ ସବୁଆଡ଼େ ପ୍ରାର୍ଥୀ ଛିଡ଼ା କରିବେ ଓ ସେଇ ପ୍ରାର୍ଥୀମାନେ ହିଁ ଅତି ଅଧିକ ଭୋଟରେ ନିର୍ବାଚିତ ହୋଇ ଆସିବେ ଓ ଶାସନ ଦାୟିତ୍ୱ ନେବେ । ଏହିରୂପେ ଦେଶର ସାଧାରଣ ଦରିଦ୍ର ଜନତାର ପ୍ରକୃତ ପ୍ରତିନିଧିତ୍ୱ କରୁଥିବା ବ୍ୟକ୍ତି ହିଁ ଶାସନ ଦାୟିତ୍ୱକୁ ଆସିବେ । ଆମେରିକାର ଜଣେ ସମ୍ବାଦପତ୍ର ପ୍ରତିନିଧିଙ୍କୁ ବିନୋବା କହିଥିଲେ ଯେ, ଆମେ ତଳ ଆଡୁ କ୍ଷମତା ଦଖଲ ପାଇଁ ଏକ ଉଦ୍ୟମ ଚଳାଉଛୁ ( a coup from below) । ବିନୋବାଙ୍କର ଏ କଳ୍ପନା କର୍ମୀମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା ଓ ସେମାନଙ୍କ ଆଗରେ ଏକ ନୂଆ ଦିଗ୍‌ବଳୟ ଖୋଲି ଦେଇଥିଲା । ରାଜ୍ୟଦାନ ପରେ ନିର୍ବାଚନ ପାଇଁ ପ୍ରାର୍ଥୀ କିପରି ଛିଡ଼ା କରାଯିବ, ଗ୍ରାମସଭା, ପକ୍ଷରୁ ଛିଡ଼ା ହୋଇଥିବା ପ୍ରାର୍ଥୀ ବିଧାନସଭାରେ ଅଧିକସଂଖ୍ୟକ ଆସନ ଦଖଲ କଲେ ମନ୍ତ୍ରିମଣ୍ଡଳ କି ପ୍ରକାରେ ଗଢ଼ିବେ, କି ନୀତିରେ କାମ କରିବେ, ନୀତି ନିର୍ଣ୍ଣୟ କି ପ୍ରକାରରେ ହେବ, ବିଧାନସଭାରେ ଯେଉଁ ସଦସ୍ୟମାନେ ଦଳଭୁକ୍ତ ଥିବେ ସେମାନଙ୍କ ସହିତ କି ପ୍ରକାରର ସଂପର୍କ ରଖିବେ, ବ୍ଲକ ଓ ଜିଲ୍ଲା ସ୍ତରରେ ଲୋକପ୍ରତିନିଧି ଶାସନର ରୂପ କ'ଣ ହେବ ଓ ସେ ସବୁ ସ୍ତରରେ କି କି ଓ କେତେ ଅଧିକାର ରହିବ, ଏ ସବୁ ବିଷୟରେ ବାରମ୍ବାର ବିଚାର ଆଲୋଚନା କରି ଚିଠା ଯୋଜନା ମଧ୍ୟ ତିଆରି କରାଗଲା । ବିନୋବା କହୁଥାନ୍ତି ଯେ ୧୯୭୨ ର ନିର୍ବାଚନରେ ଗ୍ରାମଦାନ ସଂଗଠନ ନିଜର କରାମତି ଦେଖେଇ ପାରିବା ଚାହି ।

ମାତ୍ର ଗାଁମାନଙ୍କରେ ଲୋକଶକ୍ତି ପ୍ରକଟ ହେବାକୁ ହେଲେ ସେଠାର ପୁରୁଣା କ୍ଷମତାତନ୍ତ୍ର ଭାଙ୍ଗିବା ଆବଶ୍ୟକ । ଅଥଚ ବିନୋବା ଓ ଆଉ କେତେକ ମୁଖ୍ୟକର୍ମୀ ଗାଁର ଆଭ୍ୟନ୍ତରୀଣ ସାମାଜିକ ଓ ଆର୍ଥିକ ରଚନା ବିଷୟରେ ଓ ଲୋକଶକ୍ତିର ବିକାଶ ଓ ପ୍ରକାଶ ବାଟରେ ତାହା କି ପ୍ରକାରର ପ୍ରତିବନ୍ଧକ ସୃଷ୍ଟି କରୁଛି ସେ ବିଷୟରେ ଜାଣିବାର ଆବଶ୍ୟକତା ଉପଲବ୍ଧି କରୁଥିବାର ଦେଖାଗଲା ନାହିଁ । ଗାଁର 'ବାବୁ' ଶ୍ରେଣୀର ଲୋକେ ପ୍ରଥମ ପ୍ରଥମ ଗ୍ରାମଦାନ ବିଷୟରେ ସନ୍ଦିଗ୍ଧ ଥିଲେ, ସେମାନଙ୍କର ଆଧିପତ୍ୟ ପ୍ରତି ତାହା ଏକ ଚୁନୌତି ବୋଲି ଅନୁଭବ କରୁଥିଲେ, ମାତ୍ର କ୍ରମେ ସେମାନେ ଆଗେଇଆସି ତାକୁ ନିଜେ ଆବୋରି ନେଲେ । ଗାଁର ନେତୃତ୍ୱ ସେହିମାନଙ୍କ ହାତରେ ରହିଲା । କର୍ମୀମାନେ ମଧ୍ୟ ସେହି 'ବାବୁ' ମାନଙ୍କ ସ୍ତରରେ ଅଟକିଗଲେ । ତାକୁ

ଭେଦି ସାଧାରଣ ଗରିବ ଲୋକଙ୍କ ପାଖରେ ପହଞ୍ଚିପାରିଲେ ନାହିଁ । ଜେ.ପି. ଯାଇ ମୁସହରୀରେ ଯେତେବେଳେ ବସିଲେ ଏ ଅବରୋଧ ତାଙ୍କ ଦୃଷ୍ଟିରେ ପଡ଼ିଲା । ସେ ପ୍ରଥମେ ଚେଷ୍ଟା କଲେ ଯେ, ବିକାଶର ନାନାପ୍ରକାରର ସୁବିଧା ସୁଯୋଗ ଏମାନଙ୍କଠାରେ ପହଞ୍ଚାଇଦେଲେ ଏମାନଙ୍କର ହୃଦୟର ଗଣ୍ଠି ଫିଟିବ । ମାତ୍ର ଏ କୌଶଳର ଆଶ ନୁରୂପ ଫଳ ହେଲା ନାହିଁ । ଭୂମିହୀନ ଓ ଅନ୍ୟ ଗରିବ ଲୋକେ କିପରି ଗ୍ରାମସଭା ଭିତରେ ସବଳ ଓ ସକ୍ରିୟ ହେବେ ତା'ର ପନ୍ଥା ସେ ଚିନ୍ତା କରୁଥିଲେ । ଭୂମିହୀନମାନଙ୍କର ହିତ ବିଷୟରେ ବିଚାର କରିବା ପାଇଁ ଗ୍ରାମସଭା ଅନ୍ତର୍ଗତ ଏକ ସ୍ୱତନ୍ତ୍ର ସମିତି ରହିବା ଉଚିତ ବୋଲି ସେ ୧୯୭୨ ରେ ପରାମର୍ଶ ଦେଇଥିଲେ । ମାତ୍ର ତା'ପରେ ତ ରାଷ୍ଟ୍ରୀୟ ରାଜନୀତିର ରଙ୍ଗଭୂମି ପ୍ରତି ତାଙ୍କୁ ସମସ୍ତ ମନୋଯୋଗ ଦେବାକୁ ପଡ଼ିଲା ।

## ଖଦୀ କମିଶନରେ

୧୯୬୮ ର ଖରାଦିନେ ତିରୁପତିଠାରେ ସର୍ବ ସେବା ସଂଘର ଅଧିବେଶନରେ ଜଗନ୍ନାଥନ୍ ନୂଆ ଅଧ୍ୟକ୍ଷ ନିର୍ବାଚିତ ହେଲେ ଓ ମୁଁ ଛଅ ବର୍ଷ କାଳ ଲଗାତାର ସେ ପଦରେ ରହିବା ପରେ ସେଥିରୁ ମୁକ୍ତି ପାଇଲି । ସୁମିତ୍ରା ବି ତିରୁପତି ଯାଇଥିଲେ ଓ ଅନେକ ଦିନ ପରେ ସଂଘ ବା ସମିତିର ବୈଠକରେ ଅମୁକ ସମୟରେ ଯାଇ ପ୍ରଥମ ପହଞ୍ଚିବାର ଦାୟିତ୍ୱ ମୁଣ୍ଡ ଉପରେ ନଥାଇ ଆମେ ଆରାମରେ ତିରୁପତି ଓ ତିରୁମଲୈର ମନ୍ଦିର ଓ ପାହାଡ଼ର ଦୃଶ୍ୟ ବୁଲାବୁଲି କରି ଦେଖିଲୁ । ସର୍ବ ସେବା ସଂଘର ଦାୟିତ୍ୱରୁ ମୁକ୍ତ ହେବା ପରେ ଆମେ ସବୁ ଯାଇ ପୁଣି ଗାଁ ସ୍ତରରେ କାମ କରିବା ଉଚିତ ବୋଲି ଧୀରେନଭାଇଙ୍କର ପରାମର୍ଶ ଥାଏ । ଯେ ଥରେ ଉପର ସ୍ତରକୁ ଆସିଗଲେ ସେ ଆଗକୁ ସେଇ ଉପର ସ୍ତରର କର୍ମକର୍ତ୍ତା ହୋଇ ରହିଯିବା ଠିକ୍ ନୁହେଁ, ଲୋକଙ୍କ ସହିତ ସିଧା ସମ୍ପର୍କର ସ୍ତରକୁ ଫେରିଯାଇ ନୂଆ ଅଭିଜ୍ଞତା ଓ ଶକ୍ତି ହାସଲ କରିବା ଚାହି ବୋଲି ତାଙ୍କର ମତ ଥାଏ । ମୁଁ ମଧ୍ୟ ଭାବୁଥାଏ ଯେ ଏଥର ମୁଁ ପୁଣି ଓଡ଼ିଶାର କାମରେ ପୂରା ସମୟ ଦେବି ଓ ସେଥିରେ ମଧ୍ୟ ପ୍ରତ୍ୟକ୍ଷ ଗାଁ ସ୍ତରର ସଂପର୍କ ବଢ଼େଇବି; କିନ୍ତୁ ଏଇ ସମୟରେ ଢେବରଭାଇ ମତେ ଖଦୀ କମିଶନର ସଦସ୍ୟ ପାଇଁ ମୋ ଉପରେ ଚାପ ଦେଲେ । ଢେବରଭାଇ ମତେ କମିଶନ୍‌ର ଉପାଧ୍ୟକ୍ଷ ହେବାପାଇଁ ଅନୁରୋଧ କରିଥିଲେ ।

ମୁଁ କହିଲି ଯେ, ମୁଁ ଗ୍ରାମଦାନ ଆନ୍ଦୋଳନର ପ୍ରତ୍ୟକ୍ଷ କାମରେ ପୂରା ସମୟ ଦେବାକୁ ଚାହେଁ ତେଣୁ ମୁଁ କମିଶନରେ ରହିବାକୁ ଅକ୍ଷମ । ଢେବରଭାଇ ବୁଝାଇଲେ ଯେ, ସଦସ୍ୟ ଭାବରେ ସେ ମୋଠୁଁ ମାସକରେ ସାତ ଆଠ ଦିନରୁ ବେଶୀ ସମୟ ଚାହାନ୍ତି ନାହିଁ । ଶେଷକୁ ମୁଁ ସଦସ୍ୟତା ସ୍ୱୀକାର କରିବାକୁ ରାଜି ହେଲି ଓ ମୁଁ ସଘନ ବିକାଶ ଯୋଜନା (I.D.P) ର ପ୍ରଚାର ଓ ପ୍ରକାଶନ ଏ ଦୁଇଟି ବିଭାଗର ଦାୟିତ୍ୱ ନେବା ସ୍ଥିର ହେଲା ।

ମୁଁ ଆଶା କରୁଥିଲି ଯେ, କମିଶନ୍‌ର କାମ କରି ମଧ୍ୟ ଓଡ଼ିଶା କାମ ପାଇଁ ଯଥେଷ୍ଟ ସମୟ ଦେଇହେବ । ମାତ୍ର ବାସ୍ତବରେ ମୋର ମନେହୁଏ ଯେ ତିନିବର୍ଷ ମୁଁ ଓଡ଼ିଶାର କାମ ଓ

କମିଶନ୍‌ର କାମ କୌଣସିଟି ପ୍ରତି ପୂରା ନ୍ୟାୟ କରିପାରିଲି ନାହିଁ । ଗାନ୍ଧୀ ଶତବାର୍ଷିକୀ ସମିତିର ରଚନାତ୍ମକ କାର୍ଯ୍ୟ ଉପସମିତିର ଦାୟିତ୍ୱ ମଧ୍ୟ ମୋ ମୁଣ୍ଡରେ ଥାଏ ଓ ଅନ୍ୟାନ୍ୟ ଅଖିଳ ଭାରତୀୟ ବିଚାର ପରାମର୍ଶ ପାଇଁ ମଧ୍ୟ ସମୟ ଦେବାକୁ ହେଉଥାଏ । ଏସବୁ ଭିତରେ ଗାଁ ସ୍ତରର କାମର ଅଭିଜ୍ଞତାରୁ ପୁଣି ଥରେ ଉଝାଳିବାର କଳ୍ପନା କଳ୍ପନାରେ ହିଁ ରହିଗଲା ।

୧୯୬୯ରେ ରାଜଗୀରଠାରେ ସର୍ବୋଦୟ ସମ୍ମିଳନୀ ହେଲା । ସେତେବେଳକୁ ବିହାରର ଦକ୍ଷିଣର କେତୋଟି ଜିଲ୍ଲା ଛଡ଼ା ବାକୀ ସବୁ ଜିଲ୍ଲାର ସବୁ ବ୍ଲକ୍ 'ବ୍ଲକଦାନ' ହୋଇଯାଇଥିଲେ । କେତେକ ଜିଲ୍ଲାର କିଛି ବ୍ଲକ୍ ବାକୀ ରହିଯାଇଥିବାରୁ ରାଜ୍ୟଦାନ ସଂପୂର୍ଣ୍ଣ ହୋଇପାରିନଥିଲା । ଯାହାହେଉ ଏ ସାଫଲ୍ୟ ସମ୍ମିଳନୀରେ ଘୋଷଣା କରାହେଲା ଓ ବିନୋବା ଆହ୍ୱାନ ଦେଲେ ଯେ, ଏବେ ଏ ଗ୍ରାମଦାନ ସବୁକୁ କାର୍ଯ୍ୟକାରୀ କରିବା ପାଇଁ ଅର୍ଥାତ୍ ସେଠି ଭୂମିହୀନଙ୍କୁ ଜମିର ବାଣ୍ଟ ଦିଆଇବା ଓ ଗ୍ରାମସଭା ଗଢ଼ିବା କାମ ପୂରା କରିବା ପାଇଁ ଉଦ୍ୟମ ଆରମ୍ଭ ହେଉ ଓ ଏହା ଏକ 'ଅତି ତୋଫାନ ଆନ୍ଦୋଳନ' ଆକାରରେ ଚାଲୁ ।

ଏଣେ ଏହି ସମୟରେ ବାଦଶାହ ଖାଁ ଭାରତ ଗସ୍ତରେ ଆସିଥା'ନ୍ତି । ଗାନ୍ଧୀ ଜନ୍ମ ଶତବାର୍ଷିକୀ ଉପଲକ୍ଷ୍ୟରେ ତାଙ୍କୁ ଏଥିପାଇଁ ନିମନ୍ତ୍ରଣ କରାହୋଇଥାଏ ଓ ଜେ.ପି. ତାଙ୍କର ଅଭ୍ୟର୍ଥନା ସମିତିର ଅଧକ୍ଷ ଥା'ନ୍ତି । ବାଦଶାହ ଖାଁଙ୍କର କାର୍ଯ୍ୟକ୍ରମ ଯେପରି ଗଢ଼ାହୋଇ ଥାଏ ସେଥିରେ ୱାରଧା ଓ ସେବାଗ୍ରାମରେ ହିଁ ତାଙ୍କର ଏକାଦିକ୍ରମେ ତିନି ଚାରିଦିନ ଠାଏ ରହିବାର ଯୋଜନା ଥାଏ । ଜେ.ପି. ଆଗ୍ରହ କଲେ ଯେ ବାଦଶା ଖାଁଙ୍କୁ ଭେଟିବା ପାଇଁ ବିନୋବା ସେବାଗ୍ରାମ ଚାଲନ୍ତୁ । ମନେହେଉଥିଲା ଯେ, ବିନୋବାଙ୍କର ବିହାର ଛାଡ଼ିଯିବା ପାଇଁ ଆଦୌ ଇଚ୍ଛା ନ ଥିଲା, ମାତ୍ର ଆମେ ସମସ୍ତେ ମଧ୍ୟ ଜେ.ପି.ଙ୍କର ଅନୁରୋଧକୁ ସମର୍ଥନ କରିବାରୁ ସେ ସେବାଶ୍ରମ ଯିବାକୁ ରାଜି ହେଲେ । ସେବାଗ୍ରାମରେ ବାଦଶାହ ଖାଁଙ୍କ ସହିତ ସାକ୍ଷାତ କରିସାରି ସେ ବ୍ରହ୍ମବିଦ୍ୟା ମନ୍ଦିରରେ ହିଁ ରହିଗଲେ । ବିହାର ଫେରିଲେ ନାହିଁ । ଏହି ସମୟରେ ସେ ସୂକ୍ଷ୍ମପ୍ରବେଶ କଥା ମଧ୍ୟ ଘୋଷଣା କଲେ, ଯେ ଏଣିକି ସେ ଆଉ ବାହ୍ୟ, ସ୍ଥୂଳ ସ୍ତରରେ କୌଣସି କାମ ନ କରି ସୂକ୍ଷ୍ମ ମାନସିକ ଓ ଆଧାତ୍ମିକ ପ୍ରେରଣା ମାଧ୍ୟମରେ କାମ କରିବେ । ମୋର ଧାରଣା ଯେ, ଏଇ ସେବାଗ୍ରାମ ଆସିବା ପାଇଁ ଆମେ ସମସ୍ତେ ତାଙ୍କ ଉପରେ ଚାପ ପକେଇବାରୁ ତାଙ୍କର ଜେ.ପି ଓ ଆମମାନଙ୍କ ପ୍ରତି ମନ ଭିତରେ ଏକ ଅନୁଯୋଗ ରହିଲା । ଏହାପରେ ସେ ଏକାଧିକ ଥର ଆମକୁ କହିଛନ୍ତି, "ଆପଣମାନେ ତ ମତେ ସେବାଗ୍ରାମ ଆସିବା ପାଇଁ କହିଲେ । କିନ୍ତୁ ସେଥିରୁ କ'ଣ ମିଳିଲା ?" ଭାରତରେ ସର୍ବୋଦୟବାଲା ରାଜନୀତିକୁ ନିୟନ୍ତ୍ରଣ କରିବା ପାଇଁ କୌଣସି ଚେଷ୍ଟା କରୁନାହାନ୍ତି ବୋଲି ବାଦଶାହ ଖାଁ ଟିପ୍ପଣୀ ପ୍ରଦାନ କରିଥିଲେ । ବିନୋବା ତାହାରି ପ୍ରତି ସଂକେତ କରି ଉପରୋକ୍ତ କଥା କହିଥିଲେ ।

ବିହାରରେ ବିନୋବାଙ୍କ କଳ୍ପିତ ଅତିତୋଫାନ ହେଲା ନାହିଁ । ପରେ ଜେ.ପି.ଙ୍କ ନେତୃତ୍ୱରେ ବିଧାନସଭା ଭଙ୍ଗ ଓ ମନ୍ତ୍ରିମଣ୍ଡଳର ଇସ୍ତଫା ପାଇଁ ଯେଉଁ ଜନଆନ୍ଦୋଳନ ହେଲା

ତାହା ହିଁ ବରଂ ଅତିତୋଫାନ ରୂପ ଧରିଲା । ବାସ୍ତବ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ, ବିନୋବାଙ୍କ କଳ୍ପିତ ଆନ୍ଦୋଳନ ହେଇପାରିବା ବହୁତ କଠିନ ଥିଲା । ଗ୍ରାମଦାନ ତୋଫାନରେ ସରକାରୀ କର୍ମଚାରୀ, ଶିକ୍ଷକ, ରାଜନୀତିକ ଦଳମାନଙ୍କର କର୍ମୀ ପ୍ରଭୃତିଙ୍କ ଦ୍ୱାରା ହିଁ ବେଶି ଭାଗ କାମ ହେଇଥିଲା । ଗ୍ରାମଦାନ ସଂଗ୍ରହ ତ ଯେମିତି ହେଲେ ହେଇଗଲା, ମାତ୍ର ଜମିବଣ୍ଟା ଓ ଗ୍ରାମସଭା ଗଢ଼ା କାମ ତ ତାହା ଅପେକ୍ଷା ଅଧିକ ସମୟସାପେକ୍ଷ ଓ କଠିନ କାମ । ଏ କାମ ପାଇଁ ଅସୀମ ଧୈର୍ଯ୍ୟ ଓ ଯଥେଷ୍ଟ ସମୟ ଲୋଡ଼ା । ଗ୍ରାମଦାନର ଆଦର୍ଶ ପ୍ରତି ଖାସ ଆସ୍ଥା ନଥିବା ଉପରୋକ୍ତ ଗୋଷ୍ଠୀର ସ୍ୱେଚ୍ଛାସେବକମାନେ ଏହା କରି ବି ପାରିଥାନ୍ତେ କେମିତି ଓ ତାହା ପୁଣି 'ଅତି-ତୋଫାନ' ବେଗରେ ? ଗ୍ରାମଦାନ ସଂଗ୍ରହ ପାଇଁ ସମୟର ସୀମା ସ୍ଥିର କରି କାମ କରାହେଲା ଓ ସେଥିରେ ତ ସତମିଛ କରି ସଂଖ୍ୟା ପୂରଣ କରି ଦିଆହେଲା । ଏ ପରବର୍ତ୍ତୀ କାମରେ ସେ କଥା ତ ଚଳି ନଥାନ୍ତା ।

ଗ୍ରାମଦାନ ଆନ୍ଦୋଳନରେ ବାବୁ ଶ୍ରେଣୀର ଅନୁପ୍ରବେଶ ଓ ସେ ଶ୍ରେଣୀ ତାକୁ ଆବୋରି ବସିବା କଥା ପୂର୍ବରୁ କହିଛି । ସେମାନେ ମଧ ଜମି ବଣ୍ଟା କଥା ଉଠିବା ବେଳକୁ ଟାଳଟୁଳ କରିବାକୁ ଆରମ୍ଭ କଲେ ବା ଧରାଛୁଆଁ ଦେଲେ ନାହିଁ ।

ଏହାଛଡ଼ା, ଗ୍ରାମଦାନ ସଂଗ୍ରହ କାମରେ ଖଦୀକର୍ମୀ ମଧ ବହୁସଂଖ୍ୟାରେ ସହଯୋଗ କରିଥିଲେ । ବିହାରର ମୁଖ୍ୟ ଖଦୀ ସଂସ୍ଥା ବିହାର ଖଦୀ ଗ୍ରାମୋଦ୍ୟୋଗ ସଂଘ ଗ୍ରାମଦାନ କାମ ପାଇଁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ମଧ ଦେଇଥିଲେ । ମାତ୍ର ଇତିମଧ୍ୟରେ ନାନା କାରଣରୁ ଦେଶରେ ଖଦୀ ବିକ୍ରି ଊଣା ହେଇଯିବାରୁ ବିଭିନ୍ନ ରାଜ୍ୟର ଅନେକ ଖଦୀ ସଂସ୍ଥାର ଆର୍ଥିକ ପରିସ୍ଥିତି ବଡ଼ ସଂଗୀନ ହେଇପଡ଼ିଥିଲା । ପରିଚାଳନାର ଶିଥିଳତା, ଯୋଜନାର ତ୍ରୁଟି ଆଦି ଆଉ କେତେକ କାରଣରୁ ବିହାର ଖଦୀ ଗ୍ରାମୋଦ୍ୟୋଗ ସଂଘର ଅବସ୍ଥା ଅଧିକ କଠିନ ହେଇପଡିଥିଲା । ସେଥିପାଇଁ ତାହା ଆଉ ପୂର୍ବପରି ଗ୍ରାମଦାନ ଆନ୍ଦୋଳନ ପାଇଁ କର୍ମୀ ଓ ଆର୍ଥିକ ସାହାଯ୍ୟ ଯଥେଷ୍ଟ ପରିମାଣରେ ଦେବା ଅବସ୍ଥାରେ ନ ଥିଲା । ଏସବୁ କାରଣରୁ ଗ୍ରାମଦାନ 'ପୁଷ୍ଟି' କାମ ଆଉ ଅତିତୋଫାନ୍ ତ ଦୂରର କଥା ସାଧାରଣ ତେଜ ଗତିରେ ବି ଚାଲିପାରିଲା ନାହିଁ ।

କିଛିଦିନ ପରେ ବିନୋବା ପରାମର୍ଶ ଦେଲେ ଯେ, ସହରସା ଜିଲ୍ଲାରେ ବିହାରର ସବୁ କର୍ମୀମାନେ ଲାଗି ପୁଷ୍ଟି କାମକୁ ଶୀଘ୍ର ପୂରା କରିବା ପାଇଁ ଉଦ୍ୟମ କରନ୍ତୁ । ବିହାରର ପ୍ରାୟ ସମସ୍ତ ମୁଖ୍ୟ କର୍ମୀ ଗୋଟାଏ କ'ଣ ଶିବିର କି ବୈଠକ ପାଇଁ ଓ୍ୱାରଧା ଆସିଥା'ନ୍ତି । ସେମାନେ ବସି ଏ ବିଷୟରେ ବିଚାର କରି ସର୍ବସମ୍ମତିକ୍ରମେ ସ୍ଥିର କଲେ ଯେ, କାମ ପାଇଁ ସହର୍ସା ଜିଲ୍ଲା ଆଦୌ ଅନୁକୂଳ ନୁହେଁ । ବିଦ୍ୟାସାଗର ପ୍ରଭୃତି କେତେଜଣ ବିନୋବାଙ୍କୁ ଏହା ଜଣାଇବା ପାଇଁ ଆସିଲେ; କିନ୍ତୁ ବିନୋବା ସେମାନଙ୍କୁ ନିଜ କଥା କହିବା ପାଇଁ ବି ସମୟ ନଦେଇ ସହର୍ସାରେ ସଘନ କାମ କରିବା ପାଇଁ ସେମାନଙ୍କୁ ସଙ୍କଳ୍ପ କରାଇଲେ । ପରେ ଜେ.ପି. ବିହାରର କର୍ମୀମାନଙ୍କୁ ଏଥିପାଇଁ ବୁଝାଇ ରାଜି କରାଇଲେ, ବାବା ଚାହୁଁଛନ୍ତି ତେଣୁ ସହର୍ସାରେ ହିଁ ସଘନ କାମ ହେଉ ବୋଲି ।

ସହର୍ସାରେ ତିନିବର୍ଷ ଖଣ୍ଡେ କାମ ଚାଲିଲା । ତାହାକୁ ଏକ ଅଖିଳ ଭାରତୀୟ ସାମ୍ମୁଖ୍ୟ କରାଗଲା ଓ ସେଠାକୁ ସାରା ଦେଶରୁ କର୍ମୀ ଆସି କାମ କଲେ । ଜିଲ୍ଲାର କେତେଗୁଡ଼ିଏ ଅଞ୍ଚଳରେ ଭଲ କାମ ହେଲା । ମାତ୍ର ମୋଟ ଉପରେ କାମ ଆଶାନୁରୂପ ଆଗେଇଲା ନାହିଁ । ଏହାର ପ୍ରଧାନ କାରଣ ହେଲା ଯେ, ସେଠି କେବଳ କର୍ମୀଙ୍କର ସଂଖ୍ୟାବଳ ଓ ଲୋକଙ୍କୁ ନୀତି ଉପଦେଶ ଶୁଣାଇବା ଉପରେ ଜୋର୍ ଦିଆଗଲା । ସେଠାର ଗାଁମାନଙ୍କର ସାମାଜିକ ପରିସ୍ଥିତି, ଗ୍ରାମଦାନ ପ୍ରତି ବିଭିନ୍ନ ଶ୍ରେଣୀର ଆଭିମୁଖ୍ୟ, ଗ୍ରାମଦାନ ସପକ୍ଷ ଓ ବିପକ୍ଷରେ ଥିବା ପରିବଳର ମୂଲ୍ୟାଙ୍କନ ଆଦି ବାସ୍ତବ ପରିସ୍ଥିତିକୁ ହୃଦୟଙ୍ଗମ କରିବାର କୌଣସି ଚେଷ୍ଟା ହେଲା ନାହିଁ । ସେଠାରେ ଯେଉଁ କାମ ଚାଲିଲା ତା'ର ଅଭିଜ୍ଞତାର ମଧ୍ୟ ବିଶ୍ଳେଷଣ କରି ସେଥିରୁ ଶିକ୍ଷା ଗ୍ରହଣର ଚେଷ୍ଟା ମଧ୍ୟ ହେଲା ନାହିଁ । ଅଥଚ ଏହିପରି ବାସ୍ତବ ଓ ଅସଂଭବ ଢଙ୍ଗରେ ଯେଉଁ କାମ ଚାଲିଲା ତା'ର ବିଫଳତାର ଦୋଷ ଅନ୍ୟମାନଙ୍କ ଉପରେ ଲଦା ହେଲା । କେହି ସେଠିକି ଯାଇ ନାହାନ୍ତି । ସେଠି ସାରା ଦେଶର ସବୁ କିଛି ଶକ୍ତି ଲାଗୁ ନାହିଁ ବୋଲି ବାରମ୍ବାର ଅଭିଯୋଗ ହେଲା ଓ ଦୋଷଟା କେଜାଣେ କେମିତି ଯାଇ ଶେଷକୁ ଜେ.ପି.ଙ୍କ ଉପରେ ବେଶି ପଡ଼ିଲା ।

ଏଣେ ଗ୍ରାମଦାନ କାମରେ ଏଭଳି ଜଡ଼ତା ଆସିବା ଯୋଗୁଁ ଜେ.ପି. ସେଥିପ୍ରତି ବୀତଶ୍ରଦ୍ଧ ହେଇ ପଡୁଥା'ନ୍ତି । ଦେଶର ସାଧାରଣ ରାଜନୀତିକ ଓ ଆର୍ଥିକ ପରିସ୍ଥିତିରେ କେତେକ ଘଟଣା ତାଙ୍କୁ ବିଚଳିତ କରିବା ଆରମ୍ଭ କରିଥାଏ । ରାଷ୍ଟ୍ରପତି ନିର୍ବାଚନରେ ଯେଉଁପରି ଭାବରେ ଗିରିଙ୍କୁ ଆଣି ଛିଡ଼ା କରାଗଲା ଓ କଂଗ୍ରେସକୁ ଦୁଇଭାଗ କରାଗଲା ତାହା ଜେ.ପି ଓ ଅଧିକାଂଶ ଗାନ୍ଧୀପନ୍ଥୀ କର୍ମୀଙ୍କୁ ବିଚଳିତ କରିଥାଏ । ରାଜନୀତି କ୍ଷେତ୍ରରେ ନିର୍ଲ୍ଲଜ ଅନୈତିକତାର ଏକ ଉଦ୍‌ବେଗଜନକ ଅଭିବ୍ୟକ୍ତି ରୂପେ ସେମାନେ ଏହାକୁ ଦେଖୁଥା'ନ୍ତି । ମାତ୍ର ସେତେବେଳେ ଏ ବାବଦରେ ମୋର ଭୂମିକା ଅନ୍ୟ ପ୍ରକାରର ଥିଲା । ସ୍ୱାଧୀନତା ପରର କଂଗ୍ରେସ ବିଷୟରେ ମୋ ମନରେ କୌଣସି ଆଶା ଓ ସଦ୍‌ଭାବନା ନଥିଲା । କଂଗ୍ରେସର ପୁରୁଣା ନେତୃତ୍ୱ ପ୍ରତି ମଧ୍ୟ କୌଣସି ଆସ୍ଥା ନଥିଲା । ସେମାନେ ବି କିଛି ଜଣା ଫିସାଦୀ ଓ ଦୁର୍ନୀତିକୁ ପ୍ରଶ୍ରୟ ଦେଇନଥିଲେ । ସେଥିପାଇଁ ତଥାକଥିତ୍ ସିଣ୍ଡିକେଟ୍‌ରେ ନେତାମାନେ କଂଗ୍ରେସରୁ ଅଲଗା ହେବା ଯୋଗୁଁ ମୁଁ ତିଳେମାତ୍ର ଦୁଃଖିତ ହେଇ ନଥିଲି । ଏଇଟାକୁ କଂଗ୍ରେସର ଆଭ୍ୟନ୍ତରୀଣ କଳି ବୋଲି ମୁଁ ବିଚାରୁଥିଲି ଓ ତାହା ବାହାରେ ତା'ର କିଛି ଅଧିକ ଗୁରୁତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ରହିଛି ବୋଲି ବି ବିଚାରୁ ନଥିଲି ।

ବ୍ୟାଙ୍କଗୁଡ଼ିକର ରାଷ୍ଟ୍ରୀୟକରଣ କରାଯିବାର ଜେ.ପି. ଯେଉଁ ସମାଲୋଚନା କଲେ, ତାହା ମଧ୍ୟ ମତେ ଆରେଇ ନଥିଲା । ଜେ.ପି.ଙ୍କର କେତେକଗୁଡ଼ିଏ ସ୍ତାବକ ଥା'ନ୍ତି ଯେଉଁମାନେ ରକ୍ଷଣଶୀଳ ମନୋଭାବାପନ୍ନ ବୋଲି ମୋର ମନେହେଉଥାଏ, ସେମାନେ ଦେଶର ଦାରିଦ୍ର୍ୟ, ବେକାରୀ ଆଦି ସମସ୍ୟା ଓ ବୁଭୁକ୍ଷୁ ଜନତାର ଦୁରବସ୍ଥା ବିଷୟରେ ଚିନ୍ତିତ ନ ଥା'ନ୍ତି । ଚରମପନ୍ଥୀ ଚିନ୍ତାଧାରାର ଅଗ୍ରଗତି ହିଁ ସେମାନଙ୍କର ସବୁଠୁଁ ମୁଣ୍ଡ ବଥେଇବାର କାରଣ ବୋଲି ମୋର ମନେହେଉଥାଏ । 'କଂଗ୍ରେସ ଫର କଲଚରାଲ୍ ଫ୍ରିଡ଼ମ୍' ନାମକ ଗୋଟିଏ ସଂସ୍ଥା ସହିତ ଜେ.ପି.

ସଂପୃକ୍ତ ଥା'ନ୍ତି । ଏଥିରେ ଆମେରିକାନ ଦୃଷ୍ଟିକୋଣର ସମର୍ଥକ ଅନେକ ଲୋକ ମୁଖ୍ୟ ପରିଚାଳକ ଥା'ନ୍ତି । ଚଳନ୍ତି ବ୍ୟବସ୍ଥାର (status quo) ସମର୍ଥକ ଶ୍ରେଣୀର ଲୋକଙ୍କ ସାଙ୍ଗରେ ଜେ.ପି.ଙ୍କର ଜଡ଼ିତ ହେବାଟା ମତେ ଭଲ ଲାଗୁ ନଥିଲା ।

## ଖଦୀକାମର ଗତିବିଧି

ଖଦୀ କମିଶନର ସମଗ୍ର ଗ୍ରାମ ବିକାଶ ଯୋଜନା (I.D.P) ମାଧ୍ୟମରେ ଗ୍ରାମଦାନ ଆନ୍ଦୋଳନକୁ ସାହାଯ୍ୟ କରି ହେବ ବୋଲି ମୋର ବିଶ୍ୱାସ ଥିଲା । ଗୋଟିଏ ଗୋଟିଏ ବ୍ଲକ୍‌କୁ ଧରି ସେଥିରେ ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ଓ ଆତ୍ମନିର୍ଭରଶୀଳତାର ବିକାଶ କରିବା ତଥା ଲୋକଙ୍କର ସହଯୋଗ ହାସଲ କରି ଖଦୀ ଗ୍ରାମୋଦ୍ୟୋଗର ବ୍ୟାପକ ବିକାଶ ସେ ଅଞ୍ଚଳରେ କରାଇବା ଏ ଯୋଜନାର ଲକ୍ଷ୍ୟ । ଯୋଜନା ଅଞ୍ଚଳରେ ଜଣେ 'କ୍ଷେତ୍ର ସଂଗଠକ' ଓ ତାଙ୍କୁ ସାହାଯ୍ୟ କରିବା ପାଇଁ ତିନି ଚାରିଜଣ 'ଗ୍ରାମ ସହାୟକ'ଙ୍କ ପାଇଁ କମିଶନ ପକ୍ଷରୁ ସାତବର୍ଷ ପାଇଁ ଆର୍ଥିକ ସାହାଯ୍ୟ ଦେବାର ବ୍ୟବସ୍ଥା ଥାଏ । ଏଥିଭିତରୁ ସେମାନେ ପ୍ରଥମ ଦୁଇବର୍ଷ ଓ ଅଞ୍ଚଳର ପ୍ରାକୃତିକ ସଂପଦ ଓ ସ୍ଥାନୀୟ ଗ୍ରାମ ଶିଳ୍ପମାନଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବେ ଓ ଲୋକଙ୍କ ସହିତ ପରିଚିତ ହେଇ ସଙ୍ଗଠନର ମୂଳଦୁଆ ପକେଇବେ ବୋଲି କଳ୍ପନା ରହିଥାଏ । ତାପରେ ସେମାନେ ସେଠି ଖଦୀ ଓ ଗ୍ରାମଶିଳ୍ପର ସଂଗଠନ ଆରମ୍ଭ କରିବାର କଥା ଓ ଆଉ ପାଞ୍ଚ ବର୍ଷରେ ସ୍ଥାନୀୟ ସଂସ୍ଥା ମାଧ୍ୟମରେ ଖଦୀ ଓ ଗ୍ରାମଶିଳ୍ପର କାମ ଚାଲିବା ଦ୍ୱାରା ସେ ସଂସ୍ଥାର ଯାହା ଆୟ ହେବ ସେଥିରୁ ଏ କର୍ମୀମାନଙ୍କର ପାରିଶ୍ରମିକ ପଇଠ ହେଇପାରିବ ବୋଲି ଅପେକ୍ଷା କରାଯାଇଥାଏ । ଅବଶ୍ୟ ଖଦୀ ଓ ଗ୍ରାମଶିଳ୍ପ କାମ ପାଇଁ ମୂଳଧନ ଖଦୀ କମିଶନରୁ ଯୋଗାଇବା ବ୍ୟବସ୍ଥା ଥାଏ ।

ଯେଉଁସବୁ ଅଞ୍ଚଳକୁ ଏ କାମ ପାଇଁ ବାଛିବାରେ ଅଗ୍ରାଧିକାର ଦିଆଯିବ ତାହା ଭିତରେ ସୀମାନ୍ତ ଅଞ୍ଚଳ ମଧ୍ୟ ଥାଏ । ସେହି ଅନୁସାରେ ମୁଁ ଗ୍ରାମଦାନବହୁଳ, ବା ବ୍ଲକଦାନ ଅଞ୍ଚଳରେ ହିଁ ଏ ଯୋଜନା ଚାଲୁ କରାଯିବା ଉପରେ ଜୋର୍ ଦେଲି । ଓଡ଼ିଶାରେ ଓ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ଏହିପରି ବ୍ଲକଦାନ ବା ଗ୍ରାମଦାନ ବହୁଳ ଅଞ୍ଚଳମାନଙ୍କରେ ହିଁ ନୂଆ ସଘନ ବିକାଶ ଯୋଜନା ମଞ୍ଜୁର ହେଲା ।

ଏଥିପୂର୍ବରୁ ଓଡ଼ିଶାରେ ଆମେ ବ୍ଲକ ସ୍ତରରେ ଗ୍ରାମଦାନ ସଂଘ ଗଢ଼ିବାର ପରିକଳ୍ପନା ଚାଲୁ କରିଥିଲୁ । ଗ୍ରାମଦାନ ଲୋକଙ୍କର ବ୍ଲକସ୍ତରୀୟ ସଂଗଠନ ଓ ସ୍ଥାନୀୟ ଅଭିକ୍ରମ ଗଢ଼ି ତୋଳିବା ଏହାର ଉଦ୍ଦେଶ୍ୟ ଥିଲା । ଏ ସଂସ୍ଥା ମାଧ୍ୟମରେ ବ୍ଲକ ସ୍ତରରେ ଖଦୀ ଓ ଗ୍ରାମୋଦ୍ୟୋଗ ସମେତ ଅନ୍ୟ ସବୁ ପ୍ରକାରର ଗଠନମୂଳକ କାମ ଚାଲିବ ବୋଲି କଳ୍ପନା ଥାଏ । ପ୍ରତି ଗ୍ରାମଦାନ ଗାଁରୁ ଜଣେ ଦୁଇ ଜଣ ଲେଖା ଗ୍ରାମସଭା ଦ୍ୱାରା ନିର୍ବାଚିତ ପ୍ରତିନିଧି ନେଇ ଏ ସଂଘ ଗଢ଼ା ହେଇଥାଏ ଓ ଏହା 'ସୋସାଇଟି ରେଜେଷ୍ଟ୍ରି ଆଇନ୍' ଅନୁସାରେ ରେଜେଷ୍ଟ୍ରି କରା ହେଇଥାଏ ।

କୋରାପୁଟ, ବାଲେଶ୍ୱର, ମୟୂରଭଞ୍ଜ ଓ ସମ୍ବଲପୁର ଜିଲ୍ଲାମାନଙ୍କରେ ଏପରି ମୋଟ କୋଡ଼ିଏଟି ଖଣ୍ଡେ ଗ୍ରାମଦାନ ସଂଘ ଗଢ଼ା ହୋଇଥିଲା । କୋରାପୁଟ ଜିଲ୍ଲାରେ ଏଇ ସଂଘମାନଙ୍କୁ ସମଗ୍ର ବିକାଶ ଯୋଜନାର ଦାୟିତ୍ୱ ଦିଆହେଲା । ଅନ୍ୟ ଜିଲ୍ଲାମାନଙ୍କରେ ଉତ୍କଳ ନବଜୀବନ ମଣ୍ଡଳ ଓ ଉତ୍କଳ ଖଦୀ ମଣ୍ଡଳ ଏ ଯୋଜନାର ଦାୟିତ୍ୱ ନେଲେ । ଅନ୍ୟାନ୍ୟ ଖଦୀ ସଂସ୍ଥାମାନେ ବି କେତୋଟି ଲେଖା ଯୋଜନାର ଦାୟିତ୍ୱ ପାଇଲେ ।

ଏ ସମଗ୍ର ବିକାଶ ଯୋଜନାର କେତେକ ଅଞ୍ଚଳରେ ଖୁବ୍ ଭଲ ଫଳ ଦେଖିବାକୁ ମିଳିଲା । କେତେକ ଅଞ୍ଚଳରେ ସାଧାରଣ ରକମର କାମ ହେଲା ଓ କେତେକ ବ୍ଲକ୍‌ରେ କାମ ନିରାଶଜନକ ହେଲା । ଏଥିରେ କର୍ମୀଙ୍କର ଦକ୍ଷତାର ତାରତମ୍ୟ ତ ଗୋଟିଏ କାରଣ । କମିଶନ ପକ୍ଷରୁ ଯଥୋଚିତ ସହଯୋଗ ଓ ସାହାଯ୍ୟରେ ତ୍ରୁଟି କାମ ନ ଉଠେଇବାର ଆଉ ଏକ ମୁଖ୍ୟ କାରଣ ଥିଲା । ଅମୁକ ବ୍ଲକ ପାଇଁ ସୂତାକଟା ସରଞ୍ଜାମ ମଞ୍ଜୁର ହେବା ପରେ ସରଞ୍ଜାମ ମିଳୁ ମିଳୁ ଦେଢ଼ବର୍ଷ ବିତିଗଲା । ସେହିପରି ଟଙ୍କା ମଞ୍ଜୁର ହୋଇ ମିଳିବାରେ ମଧ୍ୟ ବେଳେବେଳେ ଅତିମାତ୍ରାରେ ବିଳମ୍ବ ହେଉଥିଲା । ଖଦୀ ମଣ୍ଡଳ ଭଳି ଅପେକ୍ଷାକୃତ ବଡ଼ ସଂସ୍ଥା ତାଙ୍କର ବୃହତ୍ତର ପୁଞ୍ଜି ଭିତରୁ ଏ ପାଖ ସେପାଖ କରି ଏ ଅବ୍ୟବସ୍ଥାର ପରିଣାମକୁ ସମ୍ଭାଳି ଗଲେ । ଗ୍ରାମଦାନ ସଂଘ ଗୁଡ଼ିକ ହିଁ ବେଶି ହଇରାଣ ହେଲେ ।

ଏସବୁ ସଂଘ ଭିତରୁ କେତୋଟି ଭଲ ଉଠେଇଲେ । ମାତ୍ର ଆଉ କେତେଗୁଡ଼ିକର ଦଶା ବଡ଼ ଖରାପ ହେଲା । ସ୍ଥାନୀୟ ଗ୍ରାମବାସୀଙ୍କ ଭିତରୁ ଯେଉଁ ପ୍ରକାରର ନୂଆ ନେତୃତ୍ୱ ବାହାରି ଏ ସଂଘ ଗୁଡ଼ିକର କାମ ସମ୍ଭାଳିବ ବୋଲି ଆଶା କରାଯାଉଥିଲା ସେଭଳି ନେତୃତ୍ୱ ବାହାରିଲା ନାହିଁ । ତାହାର ବିକାଶ ପାଇଁ ଆମର ଉଦ୍ୟମରେ ତ୍ରୁଟି ରହିଲା । ଫଳରେ ଗ୍ରାମଦାନ ସଂଘ ଗୁଡ଼ିକ ବାହାରୁ ଯାଇଥିବା କର୍ମୀଙ୍କର ନିୟନ୍ତ୍ରଣରେ ହିଁ ଚାଲିଲା । ଯେଉଁଠି ନିଷ୍ଠାପର, ଦକ୍ଷ କର୍ମୀ ଥିଲେ ସେଠି ତାହା ଖୁବ୍ ଭଲ ଉଠେଇଲା । କେତେକ ସ୍ଥାନରେ କର୍ମୀଙ୍କର ଦକ୍ଷତାର ଅଭାବ ଥିଲା ଓ କେତେକ କର୍ମୀ ଦୁର୍ନୀତିର ମଧ୍ୟ ଶିକାର ହେଲେ । ଏସବୁର ପରିଣାମ ଗ୍ରାମଦାନ ସଂଘଗୁଡ଼ିକୁ ହିଁ ଭୋଗିବାକୁ ପଡ଼ିଲା ।

ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ ସେହିପରି ଭଲ ମନ୍ଦ ସବୁ ପ୍ରକାରର ଫଳାଫଳ ଦେଖାଗଲା । ବିହାର, ଉତ୍ତରପ୍ରଦେଶ, ରାଜସ୍ଥାନ ଆଦି କେତେକ ରାଜ୍ୟରେ ପୂର୍ବରୁ ଶହ ଶହ ସଂଖ୍ୟାରେ ସମଗ୍ର ବିକାଶ ଯୋଜନା ଚାଲୁ ହୋଇଥିଲା । ଦେଖାଗଲା ଯେ, ଏସବୁର ଅଧିକାଂଶରେ କେବଳ ଉପରଠାଉରିଆ କାମ ହେଉଛି । ସଂସ୍ଥାମାନେ ତାଙ୍କର ଭଣ୍ଡାର ବା ଉତ୍ପାଦନ କେନ୍ଦ୍ରର ମେନେଜର ଓ କର୍ମୀଙ୍କୁ ସମଗ୍ର ବିକାଶ ଯୋଜନାରେ କର୍ମୀରୂପେ ଦେଖେଇ ଦେଉଛନ୍ତି । ସେମାନେ ପୂର୍ବରୁ ଯେଉଁ ପ୍ରକାରର ରୁଟିନ କାମ କରୁଥିଲେ ତାହା ହିଁ କରୁଛନ୍ତି । ସେମାନଙ୍କର ଗତାନୁଗତିକ ଉତ୍ପାଦନ ଓ ବିକ୍ରି ପରିମାଣକୁ ଯୋଜନାର ବିବରଣୀରେ ଦେଖେଇ ଦିଆଯାଉଛି । ଅନେକ ଚେଷ୍ଟାକରି ମଧ୍ୟ ଏସବୁ ପୁରୁଣା ଏକକର କିଛି ଉନ୍ନତି ହୋଇପାରିଲା ନାହିଁ ।

ଖଦୀକାମକୁ ନୂଆ ରୂପ ଦେବାପାଇଁ ଅନେକଥର ଚେଷ୍ଟା ହେଉଛି । ୧୯୪୫ ରେ ଗାନ୍ଧୀଜୀ 'ନବସଂସ୍କରଣ' ପ୍ରସ୍ତାବ ରଖିଥିଲେ । ୧୯୫୦ରେ ବିନୋବା 'ନୟାମୋଡ଼' ପ୍ରସ୍ତାବ ଦେଲେ । ଏସବୁର ଉଦ୍ଦେଶ୍ୟ ଥିଲା ଗାଁ ଲୋକେ ଯେପରି ଆସି ଖଦୀ ଓ ଗ୍ରାମଶିଳ୍ପ କାମକୁ ନିଜର ମୁଣ୍ଡକୁ ନେଇ ଚଳେଇବେ ଓ ତାହା ସହିତ ଏହା ପଛରେ ଥିବା ନୂଆ ମୂଲ୍ୟବୋଧକୁ ମଧ୍ୟ ଗ୍ରହଣ କରିବେ ତା'ର ଉପାୟ ବାହାର କରିବା । ଖଦୀ ଗ୍ରାମୋଦ୍ୟୋଗ କାମର ସଙ୍ଗଠନ ତ ଏବେ ପୁଞ୍ଜିବାଦୀ ବ୍ୟବସାୟ ସଂସ୍ଥା ଛାଞ୍ଚରେ ହିଁ ଅଧିକାଂଶ କ୍ଷେତ୍ରରେ ଚାଲିଛି । ସେଥିରେ ମେନେଜର ଧୋବଧାଉଳିଆ କର୍ମୀ ଓ ମଳିମୁଣ୍ଡିଆ କାଟୁଣୀ ଓ କାରିଗର ଏ ଭେଦ ଠିକ୍ ସେମିତି ରହିଛି ଯେମିତି ସିଂହାଣିଆଙ୍କ କାଗଜକଳ ଓ ଜାଜୋଡ଼ିଆଙ୍କ ଧାନ କଳରେ । ଏ ଢାଞ୍ଚା କିପରି ବଦଳିବ, କାଟୁଣୀ କାରିଗର ଖଦୀ ସଂସ୍ଥାକୁ ନିଜର ସଙ୍ଗଠନ ବୋଲି ବିଚାରିବେ, ସଂସ୍ଥା ବାସ୍ତବରେ ତାଙ୍କରି ହେବ, ଏହାର ବାଟ ବାହାର କରିବାର ଅନେକ ଚେଷ୍ଟା ହେଉଛି । ନବ ସଂସ୍କରଣ ଓ ନୟାମୋଡ଼ର ଉଦ୍ଦେଶ୍ୟ ଥିଲା ଗାଁ ସ୍ତରରୁ ନୂଆ ପ୍ରକାରର କାମ ଗଢ଼ିତୋଳିବା । ମାତ୍ର ସେ ଚେଷ୍ଟା ବିଫଳ ହେଲା । ପୁରୁଣା ସଂଗଠନର ଜଡ଼ତାକୁ ଭାଙ୍ଗି ହେଲା ନାହିଁ ।

୧୯୬୩ ରେ ବିନୋବା ପୁଣି ଗ୍ରାମାଭିମୁଖ ଖଦୀର ପରିକଳ୍ପନା ଦେଲେ । ତାଙ୍କର ପ୍ରସ୍ତାବ ଥିଲା ଯେ, ଖଦୀ ବିକ୍ରି ଉପରେ ସରକାର ଯେଉଁ ସବ୍‌ସିଡ଼ି ଦିଏ ତାହା ବନ୍ଦକରି ଦିଆଯାଉ । ଏ ସବ୍‌ସିଡ଼ି ଦ୍ୱାରା ଖଦୀର ଦାମ୍‌ର ପ୍ରାୟ ଶତକଡ଼ା କୋଡ଼ିଏ ଭାଗ ସରକାର ଦିଏ ଓ ଗରାଖକୁ ଟଙ୍କାକର ଖଦୀ ପାଇଁ ଅଶୀ ପଇସା ଦେବାକୁ ପଡ଼େ । ବିନୋବା ବୁଝେଇଲେ ଯେ, କେବଳ ଯେଉଁମାନେ ନିଜର ବା ନିଜ ପରିବାରର ବ୍ୟବହାର ପାଇଁ ସୂତା କାଟିବେ ସେମାନଙ୍କର ସୂତାକୁ ବୁଣାଇ ଦେବାର ମଜୁରୀ ସରକାରଠାରୁ ନିଆଯାଉ । ଲୋକେ ନିଜ ବାଡ଼ିରେ କପା କରିବେ, ଫୁରସତ ବେଳେ ସୂତା କାଟିବେ ଓ ତାହା ବୁଣାଇବା ପାଇଁ ହାତରୁ ପଇସା ପଡ଼ିବ ନାହିଁ । ଏହିପରି ଭାବରେ ଲୋକେ ଜାଣି ମାଗଣାରେ ଲୁଗା ପାଇଯିବେ । ନିଜ ଲୁଗା ନିଜେ ତିଆରି କରି ନେବାକୁ ଲୋକଙ୍କୁ ପ୍ରବର୍ତ୍ତାଇବା ସହଜ ହେବ ।

ଏ ବିଷୟରେ ବିଚାର କରିବା ପାଇଁ ନବଦ୍ୱୀପ ଠାରେ ଖଦୀବାଲାଙ୍କର ଏକ ସମ୍ମିଳନୀ ବିନୋବାଙ୍କ ଉପସ୍ଥିତିରେ ହେଇଥିଲା । ମାତ୍ର ଖଦୀ ନେତାମାନେ ବିନୋବାଙ୍କ ପ୍ରସ୍ତାବ ମାନିନେଇ ସବ୍‌ସିଡ଼ି ବନ୍ଦ କରିବା ପାଇଁ ଆଦୌ ରାଜି ନଥିଲେ । ବିନୋବା ବୁଝାଇଲେ ଯେ, ଏବେ ତ ଦେଶର ଲୁଗା ଚାହିଦାର ମାତ୍ର ଶତକଡ଼ା ଦେଢ଼ଭାଗ ଖଣ୍ଡେ ଖଦୀ ପୂରଣ କରୁଛି । ବର୍ତ୍ତମାନର ଢଙ୍ଗରେ ଏ କାମ ଚାଲିଥିବ ତ ଏ ଅନୁପାତ କମି ଚାଲିବ ସିନା ବଢ଼ିବ ନାହିଁ । ଖଦୀ ଅହିଂସ ଶକ୍ତିର ମାଧ୍ୟମ ହେବାକୁ ହେଲେ ଏ ଢଙ୍ଗ ବଦଳାଇବାକୁ ହେବ । ଅନ୍ୟମାନେ ଯୁକ୍ତି କଲେ ଯେ, ଦେଶରେ ବେକାର ସମସ୍ୟା ସମାଧାନ ଗୋଟାଏ ଗୁରୁତର କର୍ତ୍ତବ୍ୟ । ବର୍ତ୍ତମାନ ଖଦୀ ସଂସ୍ଥାମାନେ ସେ କାମରେ ସାହାଯ୍ୟ କରୁଛନ୍ତି । ସେ କାମକୁ ଛାଡ଼ିଦେବା ଉଚିତ ହେବ ନାହିଁ । ବିନୋବା ଯୁକ୍ତି କଲେ ଯେ, 'ଭଲ'ଟା 'ଅଧିକ ଭଲ'ର ଶତ୍ରୁ । ଭଲ କାମର ମୋହରେ ଲାଖି

ରହି ମଣିଷ 'ଅଧିକ ଭଲ' ପାଇଁ ଉଦ୍ୟମ କରିବା ଛାଡ଼ିଦିଏ । ଢେବର ଭାଇ ଏଇ ସୂତ୍ରକୁ ଓଲଟେଇ ଗତାନୁଗତିକ କାମର ସମର୍ଥନରେ ପ୍ରୟୋଗ କଲେ ଯେ, 'ଅଧିକ ଭଲ' 'ଭଲ'ର ଶତ୍ରୁ । ମଣିଷ ଅଧିକ ଭଲ କରିବା ମୋହରେ ପଡ଼ି ଯାହାକିଛି ଭଲ ସେ କରୁଥାଏ, ତାକୁ ବି ଛାଡ଼ିଦିଏ । ଶେଷପର୍ଯ୍ୟନ୍ତ ଏୟା ସାଲିଶ ହେଲା ଯେ, ବିକ୍ରୀ ଉପରେ ରିଆତି ପରିବର୍ତ୍ତେ ସବୁ ଖଦୀର ବୁଣା ମଜୁରୀ ପାଇଁ ସରକାରୀ ସାହାଯ୍ୟ ମିଳିଯିବ । ଯେତିକି ବିକ୍ରୀ ଉପରେ ରିଆତି ଦିଆଯାଉଥିଲା, ପ୍ରାୟ ସେଇ ପରିଣାମ ଅର୍ଥ ହିଁ ବୁଣାଇ ମଜୁରୀ ଆକାରରେ ହେବ ସ୍ଥିର ହେଲା । ଏ ବ୍ୟବସ୍ଥା 'ସ୍ୱାବଲମ୍ବୀ ଖଦୀ' କୁ ଉତ୍ସାହିତ କରିବ ବୋଲି ବିଶ୍ୱାସ କରାଗଲା । ଲୋକେ ସୂତା କାଟିଲେ ମାଗଣା ବୁଣାଇ ଦିଆଯିବ, ଏକଥା ଜୋରସୋରରେ ପ୍ରଚାର କରିବା ପାଇଁ ବିନୋବା ଆହ୍ୱାନ କଲେ । ମାତ୍ର କାର୍ଯ୍ୟତଃ ବିଶେଷ କିଛି ହେଲା ନାହିଁ । ସେଇ ପୁରୁଣା ଢାଞ୍ଚାରେ ମଜୁରୀ ଦେଇ ସୂତାକଟା ଓ ଖଦୀ ବିକ୍ରି ଚାଲୁ ରହିଲା । କମିଶନର ଅମଲାତନ୍ତ୍ର ସ୍ୱାବଲମ୍ବୀ ଖଦୀବୁଣାର ବିବରଣୀ ପାଇଁ ଗୋଟାଏ ଫରମ ତିଆରି କଲେ ଯେଉଁଥିରେ ଅଣଷଠୀ ନା କେତେଟା ଖାନାପୁରି କରିବାକୁ ହେବ । ଏ ସବୁ କଲମ ଚାଷକୁ ଏଡ଼ାଇବା ପାଇଁ କର୍ମୀମାନେ ସ୍ୱାବଲମ୍ବୀ କଟାଳିଙ୍କୁ ଉତ୍ସାହିତ କଲେ ନାହିଁ ।

ବିନୋବା 'ଅହିଂସା ପାଇଁ ଖଦୀ' ଓ ଢେବର ଭାଇ ହେରିକାଙ୍କର 'ଦୁଃସ୍ଥ ସାହାଯ୍ୟ ବା ବେକାରୀ ନିବାରଣ ପାଇଁ ଖଦୀ ଭିତରେ ଯେତେବେଳେ ବାଦାନୁବାଦ ଚାଲିଥିଲା ସେତେବେଳେ ପ୍ରକୃତ ବାସ୍ତବ ତଥ୍ୟ ପ୍ରତି କେହି ଦୃଷ୍ଟି ନ ଦେଇ ତତ୍ତ୍ୱଜ୍ଞାନ ସ୍ତରରେ ଯୁକ୍ତି କରି ଚାଲିଥିଲେ ବୋଲି ମୋର ଧାରଣା । ବାସ୍ତବ ସ୍ଥିତି ହେଉଛି ଯେ, ବେକାରୀ ନିବାରଣର କେବଳ ଲୋକଦେଖାଣିଆ ସୁଆଙ୍ଗ ନକରି ଯଦି ଭାରତରୁ ପ୍ରକୃତରେ ବେକାରୀ ଦୂରକରିବାକୁ ହେବ ତେବେ ଖଦୀ ଗ୍ରାମୋଦ୍ୟୋଗର ପ୍ରସାର ଅନ୍ତତଃ ଶହେ ଗୁଣ ବଢ଼େଇବାକୁ ହେବ । ଏଥିପାଇଁ ଦେଶର ଆର୍ଥିକ ଢାଞ୍ଚା ପୂରାପୂରି ବଦଳାଇବାକୁ ହେବ । ପୁଞ୍ଜିବାଦୀ ନ୍ୟସ୍ତସ୍ୱାର୍ଥକୁ ଅପସାରିତ କରିବାକୁ ହେବ । ସାନ ସାନ ଓ କୁଟୀର ଶିଳ୍ପ ସବୁକୁ ବୃହତ୍ ଶିଳ୍ପର ପ୍ରତିଯୋଗିତାକୁ ପୂରାପୂରି ରକ୍ଷା କରିବାକୁ ହେବ । ଆଜି ସରକାର ଯେଉଁ ଲୋକ ଦେଖାଣିଆ ବେକାରୀ ନିବାରଣ କାମ ଚଳେଇଛନ୍ତି ତା'ର ଲାଗୁଡ଼ ହେବା ଦ୍ୱାରା ଏହା ସମ୍ଭବ ହେବ ନାହିଁ । ଏଥିପାଇଁ ଏକ ସମ୍ପୂର୍ଣ୍ଣ ବିପ୍ଳବ ଲୋଡ଼ା । 'ଅହିଂସା ପାଇଁ ଖଦୀ' ଯୁକ୍ତି କରିବା ବେଳେ ବିନୋବା ଏପରି କଥା କହୁଥିଲେ ଯେଉଁଥିରୁ ମନେ ହେଉଥିଲା ଯେ, ଯେପରି କି ଜନତାର ବେକାରୀ ଓ ଦାରିଦ୍ର୍ୟ ନିବାରଣ ସହିତ ଅହିଂସାର କିଛି ସମ୍ବନ୍ଧ ନାହିଁ । ମାତ୍ର ମୋ ଦୃଷ୍ଟିରେ 'ଅହିଂସା ପାଇଁ ଖଦୀ' ଅର୍ଥ ଖଦୀ କାମକୁ ଲୋକଙ୍କ ଭିତରେ ସେ ଅହିଂସା ଶକ୍ତି ଗଢ଼ି ତୋଳିବା ଦୃଷ୍ଟିରୁ କରିବା ଯାହା ସମ୍ପୂର୍ଣ୍ଣ ବିପ୍ଳବ ଘଟେଇବାର ଶକ୍ତି ସେମାନଙ୍କ ଭିତରେ ଆଣିଦେବ । ଏବେ ଆଉ ଖଦୀ କାମ ଦ୍ୱାରା ଏ ଶକ୍ତି ଉନ୍ମୁକ୍ତ ହେବାର ସମ୍ଭାବନା ଦିଶୁନାହିଁ । ଗ୍ରାମଦାନରୁ ଏଭଳି ବୈପ୍ଳବିକ ଶକ୍ତି ବାହାରିବାର ଆଶା ଥିଲା, ତାହା ବି ଆଉ ବିଶେଷ ଦେଖାଯାଉ ନାହିଁ । ବର୍ତ୍ତମାନର ଏକଛତ୍ରବାଦ ବିରୋଧରେ

ଜନଆନ୍ଦୋଳନ [illegible] ବିଚାରଧାରା ଦ୍ୱାରା ଅନୁପ୍ରାଣିତ ହେଇ ଚାଲି ସଫଳ ହେଲେ ତାହା ପୁଣି ଖଦୀ ଗ୍ରାମୋଦ୍ୟୋଗକୁ ତା'ର ଯଥାର୍ଥ ବୈପ୍ଳବିକ ରୂପ ଦେବାରେ ସମର୍ଥ ହେଇପାରେ ।

ତେବେ ଏ ପର୍ଯ୍ୟନ୍ତ ଗତାନୁଗତିକର ଛାଞ୍ଚରେ ପଡ଼ି ଯେଉଁ ଖଦୀ ଗ୍ରାମୋଦ୍ୟୋଗ କାମ ଚାଲିଛି, ତାହାର ମଧ୍ୟ ଏକ ସୁଦୂରଗାମୀ ତାତ୍ପର୍ଯ୍ୟ ଓ ମୂଲ୍ୟ ରହିଛି । ଏହା ମାଧ୍ୟମରେ ପ୍ରଯୁକ୍ତିବିଦ୍ୟା ଓ ବିଶେଷଜ୍ଞ କର୍ମୀ ସମ୍ପଦର ଏକ ପୁଞ୍ଜି ବା ସମ୍ପଦ ଗଢ଼ି ଉଠିଛି । ଅନୁକୂଳ ପରିସ୍ଥିତିରେ ତାକୁ ପୁଣି ବହୁଗୁଣିତ କରିହେବ । ଏ ପ୍ରଯୁକ୍ତିବିଦ୍ୟା ଓ ବିଶେଷଜ୍ଞ ସମ୍ପଦର ଗୁରୁତ୍ୱ ଆମେ ଓଡ଼ିଶାରେ ନିଜେ ଠେକି ଶିଖି ଉପଲବ୍ଧି କରିଛୁ । ଭୂଦାନ ଆନ୍ଦୋଳନ ଜୋରସୋରରେ ଚାଲିବା ସମୟରେ ଆମେ ଏଠି ଉତ୍କଳ ଖଦୀ ମଣ୍ଡଳର କାମକୁ ଗୋଟିଏ ଉତ୍ପାଦନ କେନ୍ଦ୍ର ଓ ଗୋଟିଏ ଭଣ୍ଡାରରେ ସୀମାବଦ୍ଧ କରି ବାକି ସବୁ ସମର୍ଥ କର୍ମୀଙ୍କୁ ଭୂଦାନ କାମରେ ଲଗେଇଲୁ । ଭୂଦାନ କାମ କରିବାକୁ ପସନ୍ଦ କରୁ ନଥିବା ଅନେକ କର୍ମୀ ଘରେ ବସିଗଲେ ବା ଅନ୍ୟ କାମରେ ଲାଗିଗଲେ । ବିଭିନ୍ନ ଜିଲ୍ଲାରେ ବହୁ ସଂଖ୍ୟାରେ ଗ୍ରାମଦାନ ହେଇଯିବା ପରେ ଆମେ ଯେତେବେଳେ ପୁଣି ଖଦୀ କାମ ବଡ଼ ଆକାରରେ ଆରମ୍ଭ କରିବା ପାଇଁ ସ୍ଥିର କଲୁ, ସେତେବେଳେ ହିସାବ ଲେଖିବା ଠାରୁ ଅରଟ ତିଆରି କରିବାଯାଏ ସବୁ ପ୍ରକାରର ଜାଣିବା ଲୋକଙ୍କର ଅଭାବ ପଡ଼ିଲା । ନୂଆ ଲୋକଙ୍କୁ ଶିଖେଇବା ପାଇଁ ଯଥେଷ୍ଟ ଲୋକ ମିଳିଲେ ନାହିଁ । ସରଞ୍ଜାମ କାର୍ଯ୍ୟାଳୟ ମଧ୍ୟ ବନ୍ଦ ହେଇ ଯାଇଥିବାରୁ ସରଞ୍ଜାମ ତିଆରି କରି ଯୋଗାଇବା ଏକ ସମସ୍ୟା ହେଲା ।

ଯା'ଛଡ଼ା ଏ କାମର ମାଧ୍ୟମରେ ଗୋଟିଏ ଅଭିନବ ପରମ୍ପରା ଓ ମୂଲ୍ୟବୋଧ ସୃଷ୍ଟି ହେଉଛି । ଉତ୍ପାଦନ ବିତରଣ ଆଦିର ବେପାର ଧନ୍ଦାର କାମ ବ୍ୟକ୍ତିଗତ ଲାଭ ବଢ଼େଇବା ଦୃଷ୍ଟିରୁ ନୁହେଁ, ସମାଜର ହିତ ଦୃଷ୍ଟିରୁ ଚଳେଇବାର ଉଦ୍ଦେଶ୍ୟରେ ବିଶ୍ୱାସ କରୁଥିବା ଏକ ଟାଣୁଆ କର୍ମୀଗୋଷ୍ଠୀ ଗଢ଼ି ଉଠିଛି । ରତିଭାଇ ଗୋନ୍ଦିଆ, ସୋମଭାଇ ବେଦାଲଙ୍କାର ଆଦିଙ୍କ ଭଳି ଏ ଭଳି ସୁଦକ୍ଷ ବ୍ୟକ୍ତି ଖଦୀ ଗ୍ରାମୋଦ୍ୟୋଗ କାମରେ ଲାଗିଛନ୍ତି ଯେଉଁମାନେ ଟାଟା କମ୍ପାନୀ ବା ହିନ୍ଦୁସ୍ଥାନ ଷ୍ଟିଲ୍‌ର ବି ମ୍ୟାନେଜର ହେଇ ତାହା ଦକ୍ଷ ଭାବରେ ଚଳାଇ ପାରନ୍ତେ । ସେମାନେ ଏ କାମରେ ରହି ସାଧାରଣ ନିମ୍ନ ମଧ୍ୟବିତ୍ତ ଗୃହସ୍ଥ ଭଳି ହିଁ ଚଳୁଛନ୍ତି ଓ ନିଜର ସମସ୍ତ ବୁଦ୍ଧି ବିଦ୍ୟା ଖଦୀ ଗ୍ରାମୋଦ୍ୟୋଗ କାମର ବିକାଶ ପାଇଁ ଲଗାଉଛନ୍ତି ।

ସମାଜକୁ ଚାଲୁ ରଖିବାରେ ଓ ପୁଣି ନୂଆ ସମାଜର ମୂଳଦୁଆ ଗଢ଼ିବାରେ ଏଭଳି ପରମ୍ପରାର ଅବଦାନ କମ୍ ନୁହେଁ । ଇଂଲଣ୍ଡରେ ସିଭିଲ ସର୍ଭିସର ନିରପେକ୍ଷତା ଓ ଦକ୍ଷତାର ଗୋଟାଏ ପରମ୍ପରା ଗଢ଼ିଉଠିଛି ଓ ତାହା ସେଠାର ଗଣତନ୍ତ୍ରର ଏକ ପ୍ରଧାନ ଆଧାରସ୍ତମ୍ଭ ହେଇ ରହିଛି । ଚୀନ୍‌ର କମ୍ୟୁନିଷ୍ଟ ପାର୍ଟିର କର୍ମୀମାନଙ୍କର ଜନସେବାର ପରମ୍ପରା ସେ ଦେଶର ନୂଆ ସମାଜର ଏକ ଅତି ମୂଲ୍ୟବାନ ଉପାଦାନ ।

ତୃତୀୟ କଥା ହେଲା ଯେ, ସେହିପରି ବ୍ୟକ୍ତିଗତ ବା ସଂସ୍ଥାଗତ ଲାଭ ଉଦ୍ଦେଶ୍ୟରେ ନୁହେଁ, ସମାଜର ଆବଶ୍ୟକତା ପୂରଣ କରିବା ପାଇଁ ଚଳାଯାଉଥିବା ବ୍ୟବସାୟୀ ସଂସ୍ଥାର ମଧ୍ୟ

ଏକ ନମୁନା ଏହା ମାଧ୍ୟମରେ ସୃଷ୍ଟି ହେଉଛି । ମୁଁ ପୂର୍ବରୁ ସମାଲୋଚନା କରି କହିଛି ଯେ, ଖଦୀ ସଂସ୍ଥା ସବୁ ପୁଞ୍ଜିବାଦୀ ଢଙ୍ଗରେ ଚାଲୁଛି । ତା'ର ଅର୍ଥ ସେ ସଂସ୍ଥା ଭିତରେ ମେନେଜର, କର୍ମଚାରୀ ଓ କାରିଗରଙ୍କ ଭିତରେ ସମ୍ପର୍କ ପୁଞ୍ଜିବାଦୀ ସଂସ୍ଥାରେ ଯେମିତି ସେମିତି ବୈଷମ୍ୟ ଓ ସଂଘର୍ଷମୂଳକ ହୋଇପଡ଼ିଛି । କିନ୍ତୁ ସଂସ୍ଥାର ସଞ୍ଚାଳକ ତାକୁ ନିଜର ଲାଭ ପାଇଁ ଚଳଉ ନାହାନ୍ତି । ସଂସ୍ଥାରେ ଯାହା ଲାଭ ହେଉଛି, ତାହା କୌଣସି ବ୍ୟକ୍ତି ବିଶେଷ ବା ଗୋଷ୍ଠୀର ଅଣ୍ଟିକି ଯାଉନାହିଁ । ଏ ଦୃଷ୍ଟିରୁ ଆର୍ଥିକ, ଶିଳ୍ପ ଓ ବ୍ୟବସାୟର ସଙ୍ଗଠନର ଏହା ଏକ ସର୍ବସାଧାରଣ ପ୍ରକାର ଯାହା ଗୋଟାଏ ଦିଗରେ ସରକାରୀକରଣ ଓ ଅନ୍ୟଦିଗରେ ପୁଞ୍ଜିବାଦର ଦୋଷକୁ ଏଡ଼େଇ ପ୍ରକୃତ ଅର୍ଥରେ 'ଜନତାର ସେକ୍ଟର' ହୋଇପାରେ ।

## ଖଦୀ କାମର ଗତିବିଧି (୨)

ବିନୋବା ଏଇ ସମୟରେ ସୂତାକଟାର ମଜୁରୀ ବଢ଼େଇ ଦୈନିକ ଅନ୍ତତଃ ଏକଟଙ୍କା କରାଯାଉ ବୋଲି ସୂଚନା ଦେଲେ । ଏହା ପୂର୍ବରୁ ମଜୁରୀ ନିର୍ଦ୍ଦିଷ୍ଟ ହେବାର ତିରିଶ ବର୍ଷ ଖଣ୍ଡେ ବିତିଯାଇଥିଲା ଓ ଦୈନିକ ଚାରି ପାଞ୍ଚ ଅଣାରୁ ଅଧିକ ପଡୁ ନଥିଲା । ସେତିକି ମଜୁରୀ ପାଇଁ ଯେ ଦେଶରେ ପନ୍ଦର ଲକ୍ଷ ଖଣ୍ଡେ କାଟୁଣୀ ସୂତା କାଟିବାକୁ ବ୍ୟାକୁଳ ଓ ଖଦୀ ବିକ୍ରୀର ବ୍ୟବସ୍ଥା ହୋଇପାରିଲେ ଏହାର ଦଶ ପନ୍ଦର ଗୁଣ କାଟୁଣୀ ଆହୁରି ବାହାରନ୍ତେ, ଏଇଟା ଦେଶର ଘୋର ଦାରିଦ୍ର୍ୟର ଏକ ନିଦର୍ଶନ । ମଜୁରୀ ବଢ଼ିଲେ ଖଦୀ ଦାମ ବଢ଼ିବ ଓ ବିକ୍ରି କମିବ । ଏଇ ଯୁକ୍ତି ବାଢ଼ି ମଜୁରୀ ବୃଦ୍ଧିର ବିରୋଧ କରାଗଲା । ତେବେ ଶେଷ ପର୍ଯ୍ୟନ୍ତ ଅତି ମୋଟା ସୂତାକୁ ବାଦଦେଇ ବାକି ଉପରେ ମଜୁରୀ ବଢ଼ାଗଲା ।

ଏହା ସାଙ୍ଗେ ସାଙ୍ଗେ ଅମ୍ବର ଚରଖା ଓ ପୁରୁଣା ଚରଖାର ବ୍ୟବହାର କେଉଁଟାର କେତେଦୂର କରାଯିବ, ତାହା ନେଇ ମଧ୍ୟ ଏକ ବାଦାନୁବାଦ ଚାଲିଥିଲା । ମଜୁରୀ ବଢ଼ାଇବା ଯୋଗୁଁ ଛଅ ତାକୁଡ଼ିଆ ଅମ୍ବର ଚରଖାର ପ୍ରସାର ବଢ଼ାଇବା ଉପରେ ଖଦୀ କମିଶନ ଝୁଙ୍କ ଦେଉଥାଏ । ଏ ଚରଖାରେ ଜଣେ ଦିନକୁ ଅଢ଼େଇ ତିନି ଟଙ୍କା ରୋଜଗାର କରିପାରେ ଅଥଚ ସୂତା ମୋଡ଼ାକ ଉପରେ ମଜୁରୀ ପୁରୁଣା ଚରଖା ଅପେକ୍ଷା ଅନେକ କମ୍ ପଡ଼େ । ତେଣୁ ଏ ଚରଖା ବ୍ୟବହାର କରିଲେ କାଟୁଣୀ ବି ଅଧିକ ମଜୁରୀ ପାଇବ ଓ ଲୁଗା ଦାମ ବି ବଢ଼ିବ ନାହିଁ, ଉନ୍ନତ ପ୍ରଯୁକ୍ତି ବିଦ୍ୟାର ଲାଭ କାଟୁଣୀ ଓ ଗରାଖ ଉଭୟେ ବାଣ୍ଟିକୁଣ୍ଟି ନେବେ । ମାତ୍ର ଅପର ପକ୍ଷରୁ ଯୁକ୍ତି ହେଉଥାଏ ଯେ ଛଅ ତାକୁଡ଼ିଆ ଅମ୍ବରକୁ ବ୍ୟାପକ କଲେ କାଟୁଣୀ ବେକାର ହେବେ । ଚାରିଟା ବା ପାଞ୍ଚଟା ପୁରୁଣା ଚରଖାର ସୂତା ଗୋଟାଏ ଅମ୍ବରକୁ ଉତ୍ପନ୍ନ ହେବ । ଖଦୀ ବିକ୍ରି ତ ଏତେଗୁଣ ବଢ଼ିବାର ଆଶା ନାହିଁ । ତେଣୁ ପୁରୁଣା ଚରଖା ବନ୍ଦ କରିବାକୁ ହେବ । ତେଣେ ବିନୋବା ପରାମର୍ଶ ଦେଉଥା'ନ୍ତି ଯେ, ପୁରୁଣା ଚରଖାକୁ ବଦଳେଇ କାଟୁଣୀମାନଙ୍କୁ ଏକ - ତାକୁଡ଼ିଆ ବା ଦୁଇ - ତାକୁଡ଼ିଆ ଅମ୍ବର ଚରଖା ଦିଅ । ପୁରୁଣା

ଚରଖାର ସୂତା ଅସମାନ ଓ କମ୍‌ଜୋର ହୁଏ । ତନ୍ତୀ ବୁଣିବାକୁ ହଇରାଣ ହୁଅନ୍ତି । ବୁଣା ମଜୁରୀ ବେଶି ଦେବାକୁ ହୁଏ । ଏକ-ତାକୁଡ଼ିଆ ଅମ୍ବର ହେଲେ ସୂତା ମଜବୁତ ହେବ । କାଟୁଣୀ ବି ବେକାର ହେବେ ନାହିଁ । ମାତ୍ର ସେଥିରେ ଉତ୍ପାଦନ ଛ' ତାକୁଡ଼ିଆ ଅପେକ୍ଷା କମ୍ ହେବ । କାଟୁଣୀକୁ ପୂରା ମଜୁରୀ ଦେଲେ ସୂତା ଦାମ୍ ବେଶି ପଡ଼ିବ, ତେଣୁ ଅନ୍ୟମାନେ ବିନୋବାଙ୍କର ଏ ସୂଚନାକୁ ପସନ୍ଦ କରୁ ନଥା'ନ୍ତି । ଆମେ ଗାନ୍ଧୀଜୀଙ୍କର ଖଦୀ ଗ୍ରାମୋଦ୍ୟୋଗ କଳ୍ପନାରୁ ପୁଞ୍ଜିବାଦୀ ଚାଞ୍ଚ ଭିତରେ ବସେଇବାକୁ ଚେଷ୍ଟା କରୁଛୁ ବୋଲି ଏସବୁ ସମସ୍ୟା ଓ ବିତର୍କ ଉପୁଜିଛି ବୋଲି ମୋର ମନେହେଲା । ପୁଞ୍ଜିବାଦୀ ଅର୍ଥନୀତିର  ଚୌହଦୀ ଭିତରେ ଭାରତର ଦାରିଦ୍ର୍ୟ ଓ ବେକାରୀର କେବେହେଲେ ବିଲୋପ ହୋଇପାରିବ ନାହିଁ । 'ମୁକ୍ତ ପ୍ରତିଯୋଗିତା' ନାଁରେ ଦୁର୍ବଳର ଜୀବିକାକୁ ବରାବର ଗ୍ରାସ କରାଯିବ । ଗାନ୍ଧୀଜୀ ଖଦୀ ଗ୍ରାମୋଦ୍ୟୋଗକୁ ପୁଞ୍ଜିବାଦ ବିରୋଧରେ ଲଢ଼ିବାର ସାଧନ ବା ଅସ୍ତ୍ର ରୂପେ କଳ୍ପନା କରିଥିଲେ । ଏହାର ବ୍ୟାବହାରିକ ପନ୍ଥା ହେଲା ଯେ, କଳ ଲୁଗାର ପ୍ରତିଯୋଗିତା ବନ୍ଦ କରି ଦେଇ ମିଲ୍ ଲୁଗା ଓ ଖଦୀ ଏକା ଦାମ୍‌ରେ ବିକ୍ରି କରିବାର ବ୍ୟବସ୍ଥା କରିବାକୁ ହେବ । ଏହା ସାଙ୍ଗେ ସାଙ୍ଗେ ଖଦୀର ଉତ୍‌ପାଦନ ବହୁଗୁଣ ବଢ଼ାଇବା ପାଇଁ ମହତ୍ତ୍ୱ । କାଂକ୍ଷାଯୁକ୍ତ ଓ ସାହସିକ ଯୋଜନା କରିବାକୁ ହେବ । ଏଭଳି ହେଲେ ଖଣ୍ଡେ ଅମ୍ବର ଚାଲିଲେ ପାଞ୍ଚଖଣ୍ଡ ପୁରୁଣା ଚରଖା ବନ୍ଦ ହେବାର 'ବ୍ରହ୍ମହତ୍ୟା - ଗୋ ହତ୍ୟା' ଦ୍ୱନ୍ଦ୍ୱ ଛିଡ଼ା ହେବ ନାହିଁ । ଦଶ ପନ୍ଦର ବର୍ଷ ତଳୁ ସରକାରକୁ ଏଇଭଳି ଏକ ପ୍ରସ୍ତାବ ଦିଆଯାଇଥିଲା ଯେ ଖଦୀ ଓ ମିଲ୍ ଲୁଗା ସମାନ ଦାମ୍‌ରେ ବିକ୍ରି ପାଇଁ ବ୍ୟବସ୍ଥା ହେଉ (price pooling) କିମ୍ବା ତଉଲିଆ, ବିଛଣାଚଦର ଆଦି ଭଳି କେତେକ ପ୍ରକାରର କପଡ଼ା ତିଆରି କରିବା କାମ ଖଦୀ ପାଇଁ ସୁରକ୍ଷିତ ରଖାଯାଉ । ଏସବୁ ମିଲ୍‌ରେ ତିଆରି ହେଉ ନାହିଁ । ମୁଁ କମିଶନରେ ଥିବା ବେଳଯାଏ ଏ ସବୁ ପ୍ରସ୍ତାବ ଉପରେ ସରକାର କୌଣସି ନିର୍ଣ୍ଣୟ ନେଉନଥାନ୍ତି । ତେବେ ସେମାନଙ୍କର ପକ୍ଷରୁ ଏଇ ପ୍ରକାର ଆଶଙ୍କା ପ୍ରକାଶ କରାଯାଉଥାଏ  ଯେ, ଏ ଭଳି କୌଣସି ଗୋଟାଏ ପ୍ରକାରର କପଡ଼ା ଖଦୀ ପାଇଁ ସୁରକ୍ଷିତ ରଖିଲେ ଖଦୀବାଲା ସେତେ ଲୁଗା ତିଆରି କରି ଯୋଗେଇ ପାରିବେ ନାହିଁ । ଲୋକଙ୍କୁ କାମ ଯୋଗାଇବା ପାଇଁ ଖଦୀର ପ୍ରସାର ଲୋଡ଼ା, ସେଥିପାଇଁ ଏଣେ ସଂରକ୍ଷଣର ବ୍ୟବସ୍ଥା କରି ତେଣେ ଖଦୀ ଉତ୍ପାଦନ ବଢ଼ାଇବା ପାଇଁ ପ୍ରାଣପଣେ ଉଦ୍ୟମ କରିବାକୁ ହେବ - ଏ ଧାରାରେ ଚିନ୍ତା ନ କରି କେବଳ କିଛି ନ କରିବାର ବାହାନା ରୂପେ ସରକାରଙ୍କ ଆଡୁ ଏସବୁ ଯୁକ୍ତି ବଢ଼ା ଯାଉଛି ବୋଲି ମୁଁ ଅନୁଭବ କରୁଥିଲି ।

ସରକାରୀ ତନ୍ତ୍ର ଯେ କିଭଳି ନ୍ୟସ୍ତସ୍ୱାର୍ଥଙ୍କର କବଳରେ ରହିଛି ଓ ସେଥିପାଇଁ ସେମାନେ ଗରିବ ଲୋକଙ୍କର ସ୍ୱାର୍ଥକୁ ବଳି ଦେବାପାଇଁ କିଭଳି ଇତସ୍ତତ କରନ୍ତି ନାହିଁ ତା'ର ଗୋଟାଏ ଉଦାହରଣ ଖଦୀ କମିଶନରେ ଥିବାବେଳେ ଲକ୍ଷ୍ୟ କଲି । ଆଉ ଗୋଟାଏ ତ ୧୯୬୪ରେ ବିରାଟ ଚହଳ ସୃଷ୍ଟି କରିଥିଲା ।

୧୯୬୫ ପାକିସ୍ଥାନ ସହିତ ଯୁଦ୍ଧବେଳେ ଦେଶରକ୍ଷା ମନ୍ତ୍ରଣାଳୟ ଖଦୀ କମିଶନ ମାର୍ଫତ ହାତତିଆରି କମ୍ବଳ କିଣିବା ଆରମ୍ଭ କଲେ । ଏ ଖରିଦର ପରିମାଣ କୋଟିଏ ଟଙ୍କା ଉପରେ ପହଞ୍ଚିଲା । ଏସବୁ ଖଦୀ କମ୍ବଳକୁ ଦେଶରକ୍ଷା ମନ୍ତ୍ରଣାଳୟର ପରୀକ୍ଷାଗାରରେ ଯାଞ୍ଚ କରି ଦେଖାଯାଉଥିଲା ଯେ, ସେସବୁ ମିଲ୍ କମ୍ବଳ ଅପେକ୍ଷା ଉତ୍କୃଷ୍ଟ କିସମର । କପା ଖଦୀ ତ ମିଲଲୁଗା ଅପେକ୍ଷା ବେଶି ଦାମ ପଡ଼େ ଓ ସରକାର ଡାକତାର ବିଭାଗ, ରେଳବାଇ ଆଦି ପାଇଁ ଯେଉଁ କପା ଖଦୀ କିଣନ୍ତି, ତାହା ଏହିପରି ଅଧିକ ଦାମରେ । ମାତ୍ର ଏସବୁ କମ୍ବଳ ଯେପରି ଅଧିକ ଦାମରେ କିଣା ହେଉନଥିଲା । ସାଧାରଣ ଟେଣ୍ଡରରେ ମିଲ୍ କମ୍ବଳ ସହିତ ପ୍ରତିଯୋଗିତାରେ ଉଆରା ଦାମରେ ହିଁ କିଣା ଯାଉଥିଲା । ଏହା ସ୍ପଷ୍ଟତଃ ଗୋଟିଏ କୁଟୀରଶିଳ୍ପଯାହା କଳ ବ୍ୟବସାୟ ସାମନାରେ ନିଜ ଗୋଡ଼ରେ ଛିଡ଼ା ହେବାକୁ ସମର୍ଥ ହେଲା । ମାତ୍ର କିଛିଦିନ ପରେ ଏ ଖରିଦ ସହିତ ସଂପୃକ୍ତ ଡାଇରେକ୍ଟରେଟ୍‌ରୁ ଏକ ଇସ୍ତାହାର ବାହାରିଲା ଯେ, ସେନାବାହିନୀ ପାଇଁ ଯୋଗାଯାଉଥିବା କମ୍ବଳ ଖାଣ୍ଟି ପଶମର ନ ହେଲେ ବି ଚଳିବ । ସେଥିରେ ଶତକଡ଼ା ୨୦ ଭାଗ ଛିଣ୍ଡା ପୁରୁଣା କମ୍ବଳରୁ ବାହାରିଥିବା ପଶମ (shoddy) ବା ନାଇଲନ୍ ମିଶିଥିଲେ ଚଳିବ । ଖଦୀ ଅନୁଷ୍ଠାନମାନେ ତ ଏପରି ପୁରୁଣା ସଢ଼ା ପଶମ ବା ନାଇଲନ୍ ମିଶେଇ ପାରିବେ ନାହିଁ । ସେମାନଙ୍କର ନୀତିର ଏହା ବିରୁଦ୍ଧ । ତେଣୁ ମିଲ୍‌ବାଲା ଶସ୍ତାରେ ମିଶା ମାଲ ଯୋଗେଇ ଏ କୋଟିଏ ଟଙ୍କାର ଅର୍ଡ଼ର ମାରିନେବେ, ଏଇ ଏ ଇସ୍ତାହାରର ଅସଲ ମତଲବ ଥିବାର ସ୍ପଷ୍ଟ ଜଣାଗଲା । ଢେବରଭାଇ ଏ ଇସ୍ତାହାରକୁ ନାକଚ କରାଇବା ପାଇଁ ବହୁତ ଲେଖାଲେଖି ଓ ଦିଲ୍ଲୀକୁ ବହୁତ ଦୌଡ଼ାଦୌଡ଼ି କରିଥିଲେ ଓ ଖଦୀ କମିଶନର ମୋର କାର୍ଯ୍ୟକାଳ ପୂରିବା ବେଳକୁ ମୁଁ ଶୁଣିଥିଲି ଯେ, ଏହାର ଗୋଟାଏ କ'ଣ ସମାଧାନର ବାଟ ବାହାରୁଛି ।

ଏହାର ପୂର୍ବ ଘଟଣା ୧୯୬୩ ଶେଷ ଆଡ଼ର । ୧୯୬୨ର ଚୀନ୍ ସହିତ ଯୁଦ୍ଧ ବେଳେ ତ ଭାରତରକ୍ଷା ଆଇନ୍ ଜାରୀ ହୋଇଥାଏ । ହଠାତ୍ ସେଇ ଭାରତରକ୍ଷା ଆଇନ୍‌ର ବଳରେ ଭାରତ ସରକାର ଏକ ଆଦେଶ ଜାରୀ କଲେ ଯେ, ଉତ୍ତର ପ୍ରଦେଶ ଓ ପଞ୍ଜାବରେ ଚାଷୀମାନେ ଗୁଡ଼ ଓ ଖଣ୍ଡସାରୀ (ଦେଶୀ ଚିନି) ତିଆରି କରିପାରିବେ ନାହିଁ । ଏ ହୁକୁମ ଜାରି ହେବା ସାଙ୍ଗେ ସାଙ୍ଗେ ସେ ସବୁ ରାଜ୍ୟରେ ଚାଷୀମାନଙ୍କର ଆଖୁଖାଇ ଓ ଗୁଡ଼ ରନ୍ଧା ତାଓ୍ୱାସବୁ ଜବତ ହୋଇ ଜଉମୁଦ ଦିଆ ହେବା ଆରମ୍ଭ ହେଲା । ସରକାରୀ କର୍ମଚାରୀମାନଙ୍କର ମାହେନ୍ଦ୍ର ଯୋଗ ପଡ଼ିଗଲା, ଚାଷୀମାନଙ୍କ ଠାରୁ ଲାଞ୍ଚ ରିସବତ ଆଦାୟ କରିବାର । ଏ ହୁକୁମର କାରଣ ସ୍ୱରୂପ କୁହାଗଲା ଯେ, ଚାଷୀମାନେ ଚିନିକଳମାନଙ୍କୁ ଆଖୁ ନ ବିକି ନିଜେ ଗୁଡ଼ ରାନ୍ଧୁଥିବାରୁ ଦେଶରେ ଚିନିର ଅଭାବ ପଡୁଛି । ଆମକୁ ବରାବର ବୁଝାହେଉଛି ଯେ, ବଡ଼ ବଡ଼ ଶିଳ୍ପରେ ସାନ କୁଟୀର ଶିଳ୍ପ ଅପେକ୍ଷା ଅଧିକ ଉତ୍ପାଦନ ହୁଏ । ତେବେ ତ ଚାଷୀ ନିଜେ ଗୁଡ଼ ରାନ୍ଧିଲେ ଆଖୁର ଯାହା ଦାମ ପାଇବ ଚିନିକଳବାଲା ତ ସହଜରେ ତା ଠୁଁ ଅଧିକ ଦାମରେ ସେ ଆଖୁ କିଣି ପାରନ୍ତେ ?

କିନ୍ତୁ ଚିନିକଳମାନେ ଅସଲରେ ଚାଷୀକୁ ଆଖୁର ଉଚିତ ଦାମ୍ ନ ଦେଇ ଖୁବ୍ ଚଢ଼ା

ଲାଭ କରିବା ଫିକରରେ ଥିଲେ । ସେଥିପାଇଁ ଚାଷୀ ତାଙ୍କୁ ଆଖୁ ନ ବିକି ନିଜେ ଗୁଡ଼ ଓ ଖଣ୍ଡସାରୀ ତିଆରି କରିବା ଅଧିକ ଲାଭଜନକ ମନେ କରୁଥିଲେ । ତା'ଛଡ଼ା ଏ ଗୁଡ଼ ଓ ଖଣ୍ଡସାରୀ ତିଆରି ବୋଧହୁଏ ଏକମାତ୍ର ଗ୍ରାମ ଶିଳ୍ପ ଯାହା ମହାତ୍ମା ଗାନ୍ଧୀ, ଖଦୀ କମିଶନ ବା ସରକାର ଆଦିଙ୍କ ସାହାଯ୍ୟ ବିନା ବରାବର ନିଜ ଗୋଡ଼ରେ ଛିଡ଼ା ହୋଇ ରହିଛି । ଚିନିକଳବାଲା କଂଗ୍ରେସର ନିର୍ବାଚନ ପାଣ୍ଠିର ଦୁହାଁଳିଆ ଗାଈ । ସେଥିପାଇଁ ସରକାରୀ ହୁକୁମ ସାହାଯ୍ୟରେ ଗୁଡ଼ ରନ୍ଧା ବନ୍ଦ କରିଦେଇ ଶସ୍ତାରେ ଆଖୁ ପାଇବାର ବାଟ ଫିଟେଇବା ସେମାନଙ୍କ ପକ୍ଷରେ କୋଉ ଗୋଟାଏ ବଡ଼ କଥା ?

ରାମପୁର ସର୍ବୋଦୟ ସମ୍ମିଳନୀ ବେଳେ ଏ ବ୍ୟାପାର ଘଟିଲା । ବିନୋବା ଧମକ ଦେଲେ ଯେ, ଏ ହୁକୁମ ବଦଳା ନ ଗଲେ ସେ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଡାକରା ଦେବେ । ତେଣେ ଉତ୍ତରପ୍ରଦେଶରେ ସମାଜବାଦୀମାନେ ସତ୍ୟାଗ୍ରହ ଆରମ୍ଭ କରିଦେଲେ ଓ ବୋଧହୁଏ ହଜାରେ ସରିକି ସତ୍ୟାଗ୍ରହୀ ଗିରଫ ହେଲେ । ଏଣେ ଖଦୀ କମିଶନ ପକ୍ଷରୁ ବି ଏ ବିଷୟରେ ସରକାର ସାଙ୍ଗରେ କଥାବାର୍ତ୍ତା ଚାଲିଲା ଓ ଶେଷକୁ ସରକାର ଏ ଆଦେଶକୁ ବଦଳାଇ ଚାଷୀମାନଙ୍କୁ ଗୁଡ଼ ଓ ଖଣ୍ଡସାରୀ ତିଆରି କରିବାର ସୀମାବଦ୍ଧ ଅଧିକାର ଦେଲେ ।

ଖଦୀ ଗ୍ରାମୋଦ୍ୟୋଗ କାମ ବିଷୟରେ ସର୍ବ ସେବା ସଂଘ ନୀତି ନିର୍ଣ୍ଣୟ କରିବ ବୋଲି ଖଦୀ କମିଶନ ସମେତ ସେ ପର୍ଯ୍ୟନ୍ତ ସମସ୍ତେ ମାନ୍ୟ କରିଥା'ନ୍ତି । ଏ ବିଷୟରେ ବିଶଦ ଭାବରେ ଆଲୋଚନା କରି ସର୍ବ ସେବା ସଂଘକୁ ପରାମର୍ଶ ଦେବା ଓ ସାଧାରଣ ବ୍ୟାବହାରିକ ପ୍ରଶ୍ନ ଉପରେ ଖଦୀ ସଂସ୍ଥାମାନଙ୍କୁ ମାର୍ଗଦର୍ଶନ ଦେବା ପାଇଁ ସର୍ବ ସେବା ସଂଘର ଏକ ଖଦୀ ସମିତି ଥାଏ । ମାତ୍ର ଆର୍ଥିକ ସାହାଯ୍ୟର ସୂତ୍ର କମିଶନ ହାତରେ ଥିବାରୁ ତାହାରି କର୍ତ୍ତୃତ୍ୱ ଅଧିକ ଚାଲୁଥାଏ । ଏ ପରିସ୍ଥିତି ଯୋଗୁ ଅନେକ ବିଶିଷ୍ଟ ଖଦୀ କର୍ମୀ ଅସନ୍ତୁଷ୍ଟ ଥା'ନ୍ତି । ସେମାନେ ବିଚାରୁଥାନ୍ତି ଯେ, ସାରା ଭାରତ ପାଇଁ ଏକ ଖଦୀ ସଂସ୍ଥା ଗଢ଼ାହେଲେ ଯାଇ ତାହା ସଂସ୍ଥାମାନଙ୍କୁ ନେତୃତ୍ୱ ଦେଇପାରିବ । ଖଦୀ ସମିତି ଦ୍ୱାରା ଏ କାମ ହେବ ନାହିଁ । ଏ ବିଷୟରେ ଅନେକ ବିଚାର ଆଲୋଚନା ହେଲା ଓ ଶେଷ ପର୍ଯ୍ୟନ୍ତ ଖଦୀ ସମିତି ହିଁ ନୀତିନିୟମ ପ୍ରଣୟନ ପାଇଁ ରହିଲା । ତେବେ ଅଖିଳ ଭାରତ ସ୍ତରରେ ବ୍ୟବସାୟଗତ କାମ ପାଇଁ ଏକ ଖଦୀ ଗ୍ରାମୋଦ୍ୟୋଗ ସଂଘ ମଧ୍ୟ ଗଢ଼ା ହେଲା ।

ଖଦୀ କମିଶନର ଅଧ୍ୟକ୍ଷ ନିଯୁକ୍ତି ବିଷୟରେ ସର୍ବ ସେବା ସଂଘର ପରାମର୍ଶ ନେବାର ଏକ ରୀତି ପ୍ରଥମରୁ ଚାଲିଥିଲା । ବିନୋବା ଓ ଜେ.ପି.ଙ୍କୁ ସଂପୃକ୍ତ କେନ୍ଦ୍ରମନ୍ତ୍ରୀ ଅନୌପଚାରିକ ଢଙ୍ଗରେ ଏ ବିଷୟରେ ପଚାରୁଥିଲେ । ସଂଘର ପ୍ରବନ୍ଧ ସମିତିରେ ଏ କଥା ସେହିପରି ଅନୌପଚାରିକ ଭାବରେ ଆଲୋଚିତ ହେଉଥିଲା ଓ ବିନୋବାଙ୍କ ମାର୍ଫତ ସଂଘର ମତାମତ କର୍ତ୍ତୃପକ୍ଷ ଜାଣୁଥିଲେ । ମାତ୍ର ୧୯୬୬ ରେ ଅଧ୍ୟକ୍ଷ ନିଯୁକ୍ତି ବେଳେ ସଂଘର ମତାମତ ନ ନେଇ ଢେବର ଭାଇଙ୍କୁ ଅଧ୍ୟକ୍ଷ କରିଦିଆହେଲା । ଏ ବିଷୟରେ ପୂର୍ବରୁ ପ୍ରବନ୍ଧ ସମିତିରେ

ଆଲୋଚନା ହୋଇ ଅନ୍ୟ କୌଣସି ସାଥୀଙ୍କର ନାମ ଅନୁମୋଦିତ ହୋଇଥିଲା, ମାତ୍ର ହଠାତ୍ ଶୁଣାଗଲା ଯେ, ଢେବରଭାଇଙ୍କୁ ଅଧ୍ୟକ୍ଷ କରାଯିବ ବୋଲି ବିନୋବାଙ୍କ ମତ ନେଇ ନିଆ ହୋଇଛି । ଏ କଥାରେ ସଂଘରେ ବହୁତ ଅସନ୍ତୋଷ ପ୍ରକାଶ ପାଇଲା । ବହୁତ ଆଲୋଚନା ସମାଲୋଚନା ହେଲା, ମାତ୍ର ଢେବରଭାଇଙ୍କ ପ୍ରତି ବ୍ୟକ୍ତିଗତ ଭାବରେ ଖାସ ବିରୋଧ ନ ଥିବାରୁ ତାଙ୍କ ନିଯୁକ୍ତିକୁ ଶେଷ ପର୍ଯ୍ୟନ୍ତ ମାନି ନିଆ ହେଲା । ଢେବରଭାଇ ଦ୍ୱିତୀୟଥର ଅଧ୍ୟକ୍ଷ ନିଯୁକ୍ତ ହେବାବେଳେ ଏ ପ୍ରଶ୍ନ ଆଉ ସେପରିଭାବରେ ଉଠିଲା ନାହିଁ ଓ ତାପରେ ବିନୋବାଙ୍କୁ ପଚାରିବା ବା ନିଯୁକ୍ତି ଘୋଷଣା କରିବା ପୂର୍ବରୁ ତାଙ୍କୁ ଜଣାଇ ତାଙ୍କର ସହମତି ନେବାର ସୌଜନ୍ୟ ମଧ୍ୟ ଉଠିଗଲା ।

ଖଦୀ କମିଶନର ଅଫିସ ଆଦିର ସଂଗଠନ ଅବିକଳ ସରକାରୀ ବିଭାଗ ପରି ବିଶୁଦ୍ଧ ଅମଲାତାନ୍ତ୍ରିକ । ସେଥିରେ ପୁଣି ଗାନ୍ଧୀବାଦୀ ନୀତିନିଷ୍ଠାପର ପୁଟ ଚଢ଼ିଥିବା ଯୋଗୁଁ ତା'ର ଗତିବିଧି ଅତି ମନ୍ଥର ହୋଇଥାଏ । ଯେତେ ଯାହାକଲେ ବି ସେଠି କୌଣସି କାମ ତୁରନ୍ତ ହେବାର ଉପାୟ ନାହିଁ । ସରକାରୀ ଅଫିସ ପରି ସେଠି ବି ଫାଇଲ ଠେଲିବାକୁ ପଡ଼େ । ଅମଲାତାନ୍ତ୍ରିକତାର ଅତି ଉଦ୍ଭଟ ପରିଣତି ସେତେବେଳେ ଦେଖିବାକୁ ମିଳୁଥିଲା । ଥରେ ମହାରାଷ୍ଟ୍ରର କୌଣସି ଏକ ସହରରେ ଏକ ଗୋଦାମ ପାଇଁ ବାର୍ଷିକ ଖର୍ଚ୍ଚ ଦଶ ବାର ହଜାର ଟଙ୍କା ମଞ୍ଜୁର କରିବା ପାଇଁ ଏକ ବଜେଟ ପ୍ରସ୍ତାବ ଆସିଲା । ଗୋଦାମର ଇତିବୃତ୍ତ ବିଷୟରେ ପଚରାପଚରି କରିବାରୁ ଜଣାଗଲା ଯେ, ସେଥିରେ ଗୁଡ଼ାଏ ଭଙ୍ଗା, ଅକାମୀ ଅମ୍ବର ରେଖା ଜମା ହୋଇଛି । ଏଗୁଡ଼ାକ ଶେଷକୁ ନିଲାମ ହେବାର କଥା ଓ ଲୋକେ ସେ ସବୁ କେବଳ ଜାଳ ପାଇଁ ହିଁ କିଣିଲେ କିଣିବେ । ନିଲାମରୁ ହଜାରେ ଖଣ୍ଡେ ଟଙ୍କା ମିଳିବ ତ ବଡ଼ ଭାଗ୍ୟ ବୋଲି କୁହାଯିବ । ସେଗୁଡ଼ାକ ନିଲାମ କରି ନ ଦେଇ ଗୋଦାମ ଭଡ଼ା ଓ ଜଗୁଆଳୀ ବାବଦ ଏତେ ଟଙ୍କା କାହିଁକି ଗଣା ହେଉଛି ବୋଲି ପଚାରିବାରୁ ଜବାବ ମିଳିଲା ଯେ, ସେଥିପାଇଁ ଅନୁମତି ମାଗି ଦିଲ୍ଲୀରେ ମନ୍ତ୍ରାଳୟକୁ ଲେଖାଯାଇଛି । ଉତ୍ତର ଆସିନାହିଁ । ଇତିମଧ୍ୟରେ ତାକୁ ସାଇତିବା ଓ ଜଗିବାପାଇଁ ଛ' ସାତ ବର୍ଷରେ ସତୁରୀ ଅଶୀ ହଜାର ଟଙ୍କା ଗଣାସରିଥାଏ ।

## ବଙ୍ଗଳାଦେଶ ମୁକ୍ତିସଂଗ୍ରାମ

ବଙ୍ଗଳାଦେଶରେ ଯେତେବେଳେ ୧୯୭୧ରେ ଶେଖ୍ ମୁଜିବୁର ରହମାନଙ୍କ ନେତୃତ୍ୱରେ ସ୍ୱାୟତ୍ତଶାସନ ପାଇଁ ଆନ୍ଦୋଳନ ଆରମ୍ଭ ହେଲା ଓ ତାକୁ ଦବେଇବା ପାଇଁ ଯାହ୍ୟା ଖାଁର ନୃଶଂସ ଅତ୍ୟାଚାର ଚାଲିଲା, ସେତେବେଳେ ସାରା ପୃଥିବୀରେ ଜେ.ପି. ହିଁ ପ୍ରଥମ ବ୍ୟକ୍ତି ଯେ ମୁଜିବ୍‌ଙ୍କ ଆନ୍ଦୋଳନକୁ ସମର୍ଥନ ଜଣାଇଲେ । ପରେ ସେ ବଙ୍ଗଳାଦେଶ ସପକ୍ଷରେ ବିଶ୍ୱ ଜନମତ ସୃଷ୍ଟି କରିବା ପାଇଁ ସାରା ପୃଥିବୀ ଗସ୍ତ ଗଲେ । ସେ ଇନ୍ଦିରା ଗାନ୍ଧୀଙ୍କ ସହିତ ପରାମର୍ଶ କରି ଓ ଭାରତ ସରକାରଙ୍କ ପୂରା ସାହାଯ୍ୟ ନେଇ ଏହା କଲେ । ସେ ବର୍ଷ ସର୍ବୋଦୟ ସମ୍ମିଳନୀ ମହାରାଷ୍ଟ୍ରର ନାସିକଠାରେ ବସିଲା ଓ ସେଠି ମଧ୍ୟ ବଙ୍ଗଳାଦେଶ ସପକ୍ଷରେ ଯେଉଁ

ସହାନୁଭୂତି ଓ ସାହାଯ୍ୟ କରିବାର ଆକାଂକ୍ଷା ପ୍ରକାଶ ପାଇଲା ତାହା ଅଭୂତପୂର୍ବ ଓ ସର୍ବୋଦୟ ଆନ୍ଦୋଳନ ପକ୍ଷରେ ଏକ ଗୌରବର ବସ୍ତୁ ଥିଲା ।

ସେତେବେଳେ ଜେ.ପି. ପ୍ରଭୃତିଙ୍କର ପ୍ରେରଣାରେ ହିଁ ବଙ୍ଗଳାଦେଶ ଶରଣାର୍ଥୀମାନଙ୍କ ଭିତରେ ସାରା ଦେଶରୁ ସର୍ବୋଦୟ କର୍ମୀ ଯାଇ ସେବା କାର୍ଯ୍ୟ କଲେ । ଓଡ଼ିଶାରୁ ବୋଉ, ଖୁଡ଼ୀ, ମାସୀ, ଶରତବାବୁ, କ୍ଷେତ୍ରବାସୀ ପତି, ଗଣେଶ ମହାନ୍ତି, ଶ୍ୟାମ ବିଶ୍ୱାସ ଓ ଅନ୍ୟ ବହୁ କର୍ମୀ ଯାଇ କାମ କଲେ । କିନ୍ତୁ ଏତେ କଥା ହେବା ପରେ ଯେତେବେଳେ ଦିଲ୍ଲୀରେ ବଙ୍ଗଳାଦେଶ ଉପରେ ଏକ ବିଶ୍ୱ ସମ୍ମିଳନୀର ଆୟୋଜନ ଜେ.ପି. କଲେ ଭାରତ ସରକାର ତାହା ସହିତ ହଠାତ୍ ସମ୍ପୂର୍ଣ୍ଣ ଅସହଯୋଗ ଆରମ୍ଭ କରିଦେଲେ । ସାଧରଣତଃ ଦିଲ୍ଲୀରେ ଏ ଧରଣର ସମ୍ମିଳନୀ ହେଲେ ସରକାରଆଡୁ ଯେଉଁ ସବୁ ସୁବିଧା ଓ ବ୍ୟବସ୍ଥାରେ ସାହାଯ୍ୟ ମିଳିଥାଏ, ତାହା ମିଳିଲା ନାହିଁ । ଏପରିକି ଦିଲ୍ଲୀର ଇଶାରାରେ ସେ ସମ୍ମିଳନୀକୁ ବଙ୍ଗଳାଦେଶର କୌଣସି ପ୍ରଥମ ପଂକ୍ତିର ନେତା ନ ଆସି ଦ୍ୱିତୀୟ ସ୍ତରର କେତେଜଣ ପ୍ରତିନିଧି ଆସିଲେ ।

ଇନ୍ଦିରାଙ୍କ ସହିତ ଦେଖାକରି ଜେ.ପି. ସରକାରଙ୍କର ଏ ପ୍ରକାରର ଆଚରଣରେ ମର୍ମାହତ ହୋଇଛନ୍ତି ବୋଲି ପ୍ରକାଶ କଲେ । ଇନ୍ଦିରା ଅଭିଯୋଗ କଲେ ଯେ, ଏ ସମ୍ମିଳନୀକୁ ସଂଗଠନ କଂଗ୍ରେସବାଲା ଦଖଲ କରିଛନ୍ତି । ପ୍ରକୃତରେ ସେପରି କୌଣସି କଥା ନଥିଲା । ଜେ.ପି. ଯେତେ ବୁଝାଇଲେ ବି ସେ ସବୁ ବ୍ୟର୍ଥ ହେଲା । ଦୋଷ ବୋଧହୁଏ ଏୟା ହୋଇଥିଲା ଯେ ଅଭ୍ୟର୍ଥନା ସମିତିର ସମ୍ପାଦକମାନଙ୍କ ଭିତରେ ରାଜନାରାୟଣ ଜଣେ ଥିଲେ ଓ ସମ୍ମିଳନୀରେ ଆଚାର୍ଯ୍ୟ କୃପାଳିନୀ, ସୁଚେତା କୃପାଲାନୀ, ବିଜୟଲକ୍ଷ୍ମୀ ପଣ୍ଡିତ ପ୍ରଭୃତି କେତେକ ଯୋଗ ଦେଇଥିଲେ । ବଙ୍ଗଳାଦେଶକୁ ସାହାଯ୍ୟ କରିବା ପାଇଁ ପୂର୍ବରୁ ରାଜନାରାୟଣଙ୍କ ନେତୃତ୍ୱରେ ଏକ ସମିତି ଗଢ଼ାହୋଇ ବେଶ କିଛି କାମ କରିଥିଲା । ସେ ସମିତିକୁ ସମ୍ମାନ ଦେଖାଇ ରାଜନାରାୟଣଙ୍କୁ ଅଭ୍ୟର୍ଥନା ସମିତିରେ ନେତା କରିବା ଉଚିତ ହିଁ ଥିଲା ।

ଜେ.ପି.ଙ୍କ ସହିତ କଥାବାର୍ତ୍ତା ପରେ ଇନ୍ଦିରା ସମ୍ମିଳନୀର ବିଦେଶୀ ପ୍ରତିନିଧିଙ୍କୁ ଭେଟିଥିଲେ ଓ ସେମାନଙ୍କୁ ଭାରତର ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖାଇବା ପାଇଁ ଉଡ଼ାଜାହାଜ ଆଦିର ବ୍ୟବସ୍ଥା କରିଥିଲେ ।

ବଙ୍ଗଳାଦେଶ ବ୍ୟାପାରରେ ନିଜର ଏକଚାଟିଆ ପ୍ରଭାବ ଓ କ୍ଷମତା କାଏମ ରଖିବାକୁ ଯେ ଇନ୍ଦିରା କେତେ ବ୍ୟାକୁଳ ଥିଲେ, ତା'ର ଏକ ପ୍ରତ୍ୟକ୍ଷ ଅନୁଭୂତି ମୁଁ ଏଇ ସମୟରେ ପାଇଥିଲି । ମୁଁ ପଉନାର୍‌ରେ ବିନୋବାଙ୍କୁ ଭେଟିବାକୁ ଯାଇଥାଏ । ସେଇଠି ବଙ୍ଗଳାଦେଶରେ ପାକିସ୍ତାନୀ ସେନା ଆତ୍ମସମର୍ପଣ କରିବାକୁ ସ୍ୱୀକାର କରିବା ଖବର ରେଡ଼ିଓରୁ ମିଳିଲା । ତା'ପରଦିନ ସକାଳେ ମୁଁ ନାଗପୁରରୁ କଲିକତା ଉଡ଼ାଜାହାଜରେ ଆସିଲି, ସେଇ ଜାହାଜରେ ଖଦୀ କମିଶନର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ମଧ୍ୟ କଲିକତା ଯାଉଥା'ନ୍ତି । ତାଙ୍କଠାରୁ ଖବର ମିଳିଲା ଯେ, ବଙ୍ଗଳାଦେଶ ଶରଣାର୍ଥୀଙ୍କ ଭିତରେ ସୂତାକଟା କାମ ବିଷୟରେ ଆଲୋଚନା କରିବା ପାଇଁ ଏକ

ବୈଠକ ସେହି ଦିନ ସନ୍ଧ୍ୟାରେ କଲିକତାରେ ହେବାର ଅଛି । ଶରଣାର୍ଥୀଙ୍କ ଭିତରେ ଖଦୀ କାମ ଆରମ୍ଭ କରିବା ପାଇଁ କମିଶନ କିଛି ଟଙ୍କା ମଞ୍ଜୁର କରିଥା'ନ୍ତି ଓ ସେ କାମର ଦାୟିତ୍ୱ ମୋ ଉପରେ ଦେଇଥା'ନ୍ତି । ତେଣୁ ମୁଁ ବି ଏ ବୈଠକରେ ଯୋଗଦେଲି ।

ପଶ୍ଚିମବଙ୍ଗର ଜଣେ ବିଶିଷ୍ଟ କଂଗ୍ରେସ ନେତାଙ୍କ ଘରେ ଏ ବୈଠକ ହେଲା । ସେହି ବୈଠକରେ ବସି ଆମେ ତେଣୁ ଢାକାରେ ପାକିସ୍ତାନୀ ସେନାର ଆତ୍ମସମର୍ପଣ ଉତ୍ସବର ଖବର ରେଡ଼ିଓ ମାର୍ଫତରେ ପାଉଥାଉ । ସେଇଥିରୁ କଥା ଉଠିଲା ଯେ, ଏବେ ବଙ୍ଗଳାଦେଶ ତ ସ୍ୱାଧୀନ ହେଲା, ଖଦୀ କାମ କେବଳ ଶରଣାର୍ଥୀଙ୍କ ଭିତରେ କାହିଁକି, ସେ ଦେଶ ଭିତରେ ଏବେ କାହିଁକି ନ କରାଯିବ ? ତେବେ ଖଦୀ କମିଶନ ସରକାରୀ ସଂସ୍ଥା, ବଙ୍ଗଳାଦେଶରେ କାମ କରିବାକୁ ହେଲେ ଭାରତ ସରକାରଙ୍କ ଅନୁମତି ଲୋଡ଼ା । ବଙ୍ଗଳା କଂଗ୍ରେସ ନେତା ଜଣକ ଉତ୍ସାହିତ ହେଇ କହିଲେ ଯେ, ସେ ବଙ୍ଗଳାଦେଶର ନେତାମାନଙ୍କୁ କହିବେ ଓ ସେମାନେ ସେଥିପାଇଁ ଭାରତ ସରକାରଙ୍କୁ ଅନୁରୋଧ କରିବେ । ସେ ମହାଶୟ ବଙ୍ଗଳାଦେଶର ନେତା ଓ ଇନ୍ଦିରା ଗାନ୍ଧୀଙ୍କ ଭିତରେ ଯୋଗାଯୋଗ ରକ୍ଷା କାମ କରୁଥା'ନ୍ତି, ତେଣୁ ପୂର୍ବୋକ୍ତମାନଙ୍କ ସହିତ ତାଙ୍କର ଘନିଷ୍ଠ ପରିଚୟ ଥିଲା । ଏ ଆଲୋଚନା ପରେ ମୁଁ କଟକ ଫେରି ଆସିଲି ।

ତିନି ଚାରି ଦିନ ପରେ ମୁଁ ଢେବରଭାଇଙ୍କ ଠୁଁ ଏକ ତାର ପାଇଲି ତୁରନ୍ତ କଲିକତା ଯିବା ପାଇଁ । ପରଦିନ କଲିକତାରେ ପହଞ୍ଚି ଢେବରଭାଇଙ୍କୁ ସେଇ କଂଗ୍ରେସ ନେତାଙ୍କ ଘରେ ଭେଟିଲି । ସେଠି ଖଦୀ କମିଶନର ଅଫିସରମାନେ ମଧ୍ୟ ଥା'ନ୍ତି । ଢେବରଭାଇ ବୁଝାଇଲେ ଯେ, ସେ ଦିନ ବଙ୍ଗଳାଦେଶରେ ଖଦୀ କାମ କରିବା ବିଷୟରେ ଯେଉଁ ଆଲୋଚନା ହେଇଥିଲା ତାକୁ ଏକଦମ ଭୁଲିଯିବାକୁ ହେବ । ଦିଲ୍ଲୀବାଲା ଚାହାନ୍ତି ନାହିଁ ଯେ, ସେଠି ଏପରିକିଛି କାମ ହେଉ । ସେଠାର ଆର୍ଥିକ ନୀତି ସେଠା ସରକାର ଯଥା ସମୟରେ ସ୍ଥିର କରିବେ । ଆମେ ଯାଇ ସେଠି ମୁଣ୍ଡ ଗଳାଇବା ଠିକ୍ ହେବ ନାହିଁ । ସେ 'ଦିଲ୍ଲୀବାଲାଙ୍କ' ଠାରୁ ଜବର ଧମକ ଖାଇଛନ୍ତି । ଖଦୀ କାମ ଓ ସବୁ ସଙ୍ଗଠନ କଂଗ୍ରେସ ଓ ତାଙ୍କର ଅନ୍ୟ ବିରୋଧୀମାନଙ୍କ ଦଖଲରେ ରହିଛି ବୋଲି ଇନ୍ଦିରା ବିଚାରୁଥା'ନ୍ତି । ତେଣୁ ଖଦୀବାଲାଙ୍କୁ ବଙ୍ଗଳାଦେଶରେ ପୁରାଇ ନ ଦେବା ତାଙ୍କର ଉଦ୍ଦେଶ୍ୟ ଥାଏ ।

ମୁଜିବ ମୁକ୍ତ ହୋଇ ବଙ୍ଗଳାଦେଶକୁ ଫେରିବା ପରେ ଥରେହେଲେ ଜେ.ପି.ଙ୍କର ନାମ ସର୍ବସାଧାରଣରେ ଉଚ୍ଚାରଣ କରିନଥିଲେ । ସେ ଫେରିବାର ଅଳ୍ପଦିନ ଭିତରେ ଜେ.ପି.ଙ୍କର ଚିଠି ନେଇ କ୍ଷତୀଶ ରାୟ ଚୌଧୁରୀ ମୁଜିବଙ୍କ ସାଙ୍ଗରେ ଦେଖାକରିଥିଲେ । ବଙ୍ଗଳା ଦେଶର ପୁନର୍ଗଠନ ପାଇଁ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥା ଗ୍ରହଣ କରିବାର ପରାମର୍ଶ ଜେ.ପି. ତାଙ୍କୁ ଦେଇଥିଲେ ଓ ସେ ଦିଗରେ ତାଙ୍କୁ ସବୁମତେ ସାହାଯ୍ୟ କରିବା ପାଇଁ ଭାରତର ସର୍ବୋଦୟ କର୍ମୀମାନେ ପ୍ରସ୍ତୁତ ଅଛନ୍ତି ବୋଲି ସୂଚାଇଥିଲେ । ସେ ସମୟରେ ଜେ.ପି. ଆମମାନଙ୍କୁ ବୁଝାଉଥାନ୍ତି ଯେ, ବଙ୍ଗଳାଦେଶର କାମର ଗୁରୁତ୍ୱ ଏ ସମୟରେ ବହୁତ ବେଶି ଓ ଆମ ଏଠା କାମକୁ କିଛିଦିନ

ପାଇଁ ପଛକୁ ପକାଇ ମଧ୍ୟ ସେଠା କାମ ପାଇଁ ସମୟ ଓ ଶକ୍ତି ଦେବାକୁ ହେବ । ଜେ.ପି.ଙ୍କ ଚିଠିର ପ୍ରସ୍ତାବକୁ ମୁଜିବ ସ୍ୱାଗତ କଲେ ଓ ବଙ୍ଗଳା ଦେଶରେ ଅବଶ୍ୟ ସେ ଭଳି ରଚନାତ୍ମକ କାମ ହେବା ଉଚିତ ବୋଲି ମତ ପ୍ରକାଶ କଲେ । କ୍ଷତୀଶଦା କଥାପ୍ରସଙ୍ଗରେ ଅନୁଯୋଗ କଲେ ଯେ ଜେ.ପି.ଙ୍କ ବିଷୟରେ ମୁଜିବ ପର୍ଯ୍ୟନ୍ତ ପଦେହେଲେ କିଛି କହି ନାହାନ୍ତି । ମୁଜିବ୍ ଖୁବ୍ ଭାବପ୍ରବଣ ହେଇ କହିଲେ - "ଜେ.ପି. ଆମ ପାଇଁ ଯାହା କରିଛନ୍ତି ତାହା କ'ଣ ଆମେ କେବେ ଭୁଲି ପାରିବୁ ? ମୁଁ ତାଙ୍କୁ ଆମର ନିଜର ପ୍ଲେନ ପଠେଇ ବଙ୍ଗଳା ଦେଶକୁ ନିମନ୍ତ୍ରଣ କରି ଆଣିବି ଓ ତାଙ୍କୁ ଏଠି ଯଥୋଚିତ ଗୌରବ ଓ ସମ୍ମାନର ସହିତ ସ୍ୱାଗତ କରାଯିବ ।" ମାତ୍ର ଏହା କେବଳ କଥାରେ ରହିଲା । ଶେଷ ପର୍ଯ୍ୟନ୍ତ ସେ ଜେ.ପିଙ୍କ ବିଷୟରେ ପାଟ ଫିଟେଇ ପାରିଲେ ନାହିଁ । ତାଙ୍କର ଏ ନୀରବତା ପଛରେ ଭାରତ ସରକାରଙ୍କର ଇଙ୍ଗିତ ଥିଲା ବୋଲି କହିବାଟା ଅସଙ୍ଗତ ହେବ କି ?

ବଙ୍ଗଳା ଦେଶର ଶରଣାର୍ଥୀଙ୍କ ଭିତରେ ଶାନ୍ତି ସେନା, ଗାନ୍ଧୀ ସ୍ମାରକ ନିଧି, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ ଓ ଅନ୍ୟାନ୍ୟ ସଂସ୍ଥାମାନେ ଶରଣାର୍ଥୀ ଶିବିରମାନଙ୍କରେ ସେବାକାମ କରୁଥା'ନ୍ତି । ଓଡ଼ିଶାରୁ ବୋଉ ଗୋଟିଏ ସେବାଦଳ ନେଇ ହିଲି-ବାଲୁରଘାଟ ଅଞ୍ଚଳରେ କାମ କରୁଥାଏ । ସେଥିରେ କଟକ ମେଡ଼ିକାଲ କଲେଜରୁ ଅନେକ ଡାକ୍ତରୀ ଛାତ୍ର ଓ କେତେକ ଡାକ୍ତର ଯାଇ କାମ କରୁଥା'ନ୍ତି । ସେ ଅଞ୍ଚଳରେ ପ୍ରତ୍ୟକ୍ଷ ସଂଘର୍ଷ ପରିସ୍ଥିତିରେ ଯୁଦ୍ଧ ସମ୍ମୁଖୀର ଅତି ନିକଟରେ ରହି ଏମାନେ ଶେଷପର୍ଯ୍ୟନ୍ତ ରୋଗୀ ସେବା ଓ ସଫେଇ କାମ ଚଳେଇ ଯାଇଥିଲେ । ଏସବୁ ସେବାକାର୍ଯ୍ୟ ସାଙ୍ଗେ ସାଙ୍ଗେ ବଙ୍ଗଳାଦେଶର ମୁକ୍ତି ସଂଗ୍ରାମକୁ ସାହାଯ୍ୟ କରିବା କଥା ମଧ୍ୟ ଉଠିଲା । ଜେ.ପି. ତ ମୁକ୍ତିବାହିନୀକୁ ଅସ୍ତ୍ରଶସ୍ତ୍ର ଯୋଗାଇବା ଉପାୟ ମଧ୍ୟ ଚିନ୍ତା କରୁଥିଲେ ଓ ସେ ଦିଗରେ କେତେକ ବ୍ୟାବହାରିକ ପଦକ୍ଷେପ ମଧ୍ୟ ନେଇଥିଲେ । ଜେ.ପି.ଙ୍କ ଭଳି ଅନ୍ୟ ଅନେକେ ମଧ୍ୟ ମୁକ୍ତିବାହିନୀକୁ ହିଂସାତ୍ମକ ସଂଗ୍ରାମରେ ସାହାଯ୍ୟ ଓ ସମର୍ଥନ କରିବାକୁ ପ୍ରସ୍ତୁତ ଥା'ନ୍ତି । କିନ୍ତୁ ଆମେ ଅନେକେ ମୁକ୍ତିବାହିନୀର ହିଂସାତ୍ମକ ସଂଘର୍ଷ ପ୍ରତି ନୈତିକ ସମର୍ଥନ ପୋଷଣ କରୁଥିଲେ ମଧ୍ୟ ଅହିଂସା ପ୍ରତିରୋଧ ହିଁ ଶ୍ରେଷ୍ଠ ପନ୍ଥା ବୋଲି ବିଶ୍ୱାସ ଦୃଢ଼ ରଖିଥାଉ । ହିଂସାରୁ ଅହିଂସାଆଡ଼କୁ ଯିବାର ଗୋଟାଏ କିଛି ବାଟ ଓ ସେଥିପ୍ରତି ଅନୁକୂଳ ପରିସ୍ଥିତି ଅବଶ୍ୟ ଦେଖାଦେବ ବୋଲି ଆମର ବିଶ୍ୱାସ ଥାଏ । ତେବେ ପ୍ରଶ୍ନ ଉଠିଲା ଯେ, ମୁକ୍ତିବାହିନୀ ତ ହିଂସାତ୍ମକ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛନ୍ତି, ଆମେ ଅହିଂସାବାଲା ତାଙ୍କୁ କ'ଣ ସାହାଯ୍ୟ କରିପାରିବା ବା ଶିଖେଇ ପାରିବା ?

ମୁଁ ସୂଚେଇଲି ଯେ, ଆଜିକାଲି ଭିଏତ୍‌ନାମ ପ୍ରଭୃତିରେ ଗରିଲା ଯୁଦ୍ଧ ଯେଉଁ ପ୍ରକାର ଚାଲିଥିବାର ଶୁଣାଯାଏ, ସେଥିରେ ଜନସାଧାରଣଙ୍କର ସହିତ ମୁକ୍ତି ଯୋଦ୍ଧାଙ୍କର ଯୋଗାଯୋଗ ଓ ସେମାନଙ୍କ ପଛରେ ଜନସାଧାରଣଙ୍କର ସମର୍ଥନ ଓ ସହଯୋଗର ବଡ଼ ସ୍ଥାନ ରହିଛି । ମୁକ୍ତି ଯୋଦ୍ଧାମାନେ ଜନସାଧାରଣଙ୍କର ସେବକ ଭଳି କାମ କରନ୍ତି । ସେମାନେ ଜନସାଧାରଣଙ୍କର, ବିଶେଷକରି ଦରିଦ୍ର ଶ୍ରେଣୀଙ୍କର, ସମସ୍ୟା ସହିତ ପରିଚିତ ଓ ସେମାନଙ୍କର ଜୀବନରେ ଓତଃପ୍ରୋତ

ହେଇଥା'ନ୍ତି । ଏପରିକି ଚୀନା ସୈନ୍ୟମାନେ ନେପାରେ ପ୍ରବେଶ କରିଥିବା ସମୟରେ ସେଠାର ଗାଁଲୋକଙ୍କର ଫସଲ କାଟିବା, ସେମାନଙ୍କର ଘରଦ୍ୱାର ସମ୍ଭାଳି ରଖିବା ଆଦିରେ ସାହାଯ୍ୟ କରି ସେଠାର ଲୋକମାନଙ୍କ ମନରେ ନିଜ ବିଷୟରେ ଏକ ଅନୁକୂଳ ଛାପ ପକାଇଥିଲେ । ଅହିଂସ ସଂଗ୍ରାମ ମଧ୍ୟ ଏହିପରି ଜନସହଯୋଗ ଉପରେ ନିର୍ଭର କରେ । ସତ୍ୟାଗ୍ରହୀକୁ ଜନତାର ସେବକ ହେବାକୁ ହେବ । ଏହି ରୂପେ ଆଧୁନିକ ଗରିଲା ଯୁଦ୍ଧ ଓ ଅହିଂସା ସଂଗ୍ରାମ ଭିତରେ ଏହା ଏକ ସର୍ବସାମାନ୍ୟ ଉପାଦାନ । ଆମ ଠାରେ ଜନସଂପର୍କ ବିଷୟରେ ଅଭିଜ୍ଞତା ରହିଛି । ସେ ଅଭିଜ୍ଞତା ଓ ଜନସେବାର ଦୃଷ୍ଟିକୋଣ ଆମେ ମୁକ୍ତି ବାହିନୀର ଯୁବକମାନଙ୍କୁ ଦେବା । ପରେ ହିଂସାତ୍ମକ ସଂଘର୍ଷ ସ୍ଥାନରେ ଅହିଂସ ପ୍ରତିରୋଧର ସମ୍ଭାବନା ସୃଷ୍ଟି କରିବାରେ ବି ଏହା ସାହାଯ୍ୟ କରିପାରେ । ଏ ଯୁକ୍ତି ସମସ୍ତଙ୍କ ମନକୁ ପାଇଲା ଓ ଏହି ଅନୁସାରେ ନାରାୟଣ ତତ୍ତ୍ୱବଧାନରେ କେତେଗୁଡ଼ିଏ ଶିବିରର ଆୟୋଜନ ମଧ୍ୟ ହେଲା । ଏ ସବୁ ଶିବିରରେ ତାଲିମ ପାଇଥିବା ଅନେକ ଯୁବକ ସ୍ୱାଧୀନ ବଙ୍ଗଳାଦେଶରେ ଦଳଗତ ରାଜନୀତିରେ ନ ପଶି ଗ୍ରାମସେବା କାମ କରିବେ ବୋଲି ମଧ୍ୟ ସ୍ଥିର କରିଥିଲେ । ସେମାନଙ୍କ ସହିତ ନାରାୟଣ, କ୍ଷିତୀଶଦା ପ୍ରଭୃତିଙ୍କର ଏବେ ପର୍ଯ୍ୟନ୍ତ ଯୋଗାଯୋଗ ଥିଲା ।

ବୋଉ ହେରିକା ଯେଉଁସବୁ ଅଞ୍ଚଳରେ ସେବାକାମ କରୁଥିଲେ ସେଠାରେ ଶରଣାର୍ଥୀମାନଙ୍କ ଭିତରେ ଏମାନଙ୍କ ସମ୍ପର୍କରେ ଆସିବା ଫଳରେ ଗାନ୍ଧୀଜୀଙ୍କ ବିଷୟରେ ଜାଣିବାର ଆଗ୍ରହ ଜନ୍ମିଲା । ଏହି ଆବଶ୍ୟକତା ପୂରଣ ପାଇଁ ଗାନ୍ଧୀଜୀଙ୍କର ଲେଖା ଓ ବକ୍ତୃତାରୁ ସଂକଳନ କରି କେତେଖଣ୍ଡ ଛୋଟ ଛୋଟ ବହି ଛାପିବା କଥା ହେଲା । ଶରତବାବୁ ଏଭଳି ଚାରିପାଞ୍ଚ ଖଣ୍ଡ ବହି ପାଇଁ ବିଷୟବସ୍ତୁ ବାଛିଦେଲେ । ସେଥିଭିତରୁ ଖଣ୍ଡେ ବହି 'ମୁକ୍ତିର ଆହ୍ୱାନ' ନାଁରେ ବଙ୍ଗଳାରେ ସର୍ବ ସେବା ସଂଘ ଓ ପଶ୍ଚିମବଙ୍ଗ ସର୍ବୋଦୟ ପ୍ରକାଶନ ସମିତିର ଆର୍ଥିକ ସହାୟତାରେ ବଙ୍ଗଳାଦେଶ ମୁକ୍ତି ପୂର୍ବରୁ ପ୍ରକାଶିତ ହେଇପାରିଥିଲା । ଏଥିରୁ କେତେକ ଶିବିରମାନଙ୍କରେ ଓ ବାକିତକ ସ୍ୱାଧୀନ ବଙ୍ଗଳାଦେଶ ଭିତରେ ବଣ୍ଟା ହେଇଥିଲା ।

## ଗ୍ରାମଦାନର ଗତିବିଧି

ବଙ୍ଗଳାଦେଶ ବ୍ୟାପାରରେ ଆମେ ସର୍ବୋଦୟବାଲା ଖୁବ୍ ଉଲ୍ଲସିତ ହେଇଥିଲେ ଓ ଆତ୍ମପ୍ରସାଦ ଅନୁଭବ କରୁଥିଲେ ସତ, କିନ୍ତୁ ତେଣେ ସେତେବେଳକୁ ଗ୍ରାମଦାନ ଆନ୍ଦୋଳନ ଏକାବେଳକେ ମାନ୍ଦା ଧରି ଯାଇଥାଏ । ଏହି ହେତୁରୁ ଯେଉଁ ନିରାଶା ବ୍ୟାପୁଥିଲା ତା'ର ପ୍ରଭାବଟା ବରଂ ବଙ୍ଗଳାଦେଶ ଯୋଗୁଁ ହିଁ ବହୁ ପରିମାଣରେ କଟିଯାଇଥିଲା । କ'ଣ କରିଲେ ପୁଣି ଆମେ ଆଗେଇ ପାରିବା ଏ ବିଷୟରେ ବିଚାର ଆଲୋଚନା ଚାଲିଥାଏ । ଏହାରି ଭିତରେ ମୋ ମନରେ କେତେଗୁଡ଼ିଏ ବିଚାର ଦାନା ବାନ୍ଧୁଥିଲା । ଗାଁମାନଙ୍କରେ ମହାଜନ, ଟାଉଟର, ବଡ଼ ଜମି ମାଲିକ ଓ ଉଚ୍ଚଜାତିର ଲୋକଙ୍କର ଯେଉଁ ମେଣ୍ଟ ରହିଛି ଓ ଯାହା ସରକାରୀ ତଂତ୍ର ଓ

ପୁଲିସ୍‌କୁ ନିଜ ସ୍ୱାର୍ଥପାଇଁ ଲଗାଇପାରୁଛି ଓ ଗାଁର ଗରିବ ଜନତାକୁ ଡରେଇ ଧମକେଇ ରଖିଛି, ଗରିବ ଲୋକଙ୍କର ନୂଆ ନେତୃତ୍ୱ ଛିଡ଼ା ହେବାକୁ ହେଲେ ସେ ମେଣ୍ଟର ଆଧିପତ୍ୟ ଭାଙ୍ଗିବା ଚାହିଁ, ଲୋକଙ୍କ ଉପରେ ଯେଉଁ ଉପରେ ଯେଉଁ ଭୟର ରାଜତ୍ୱ ଚାଲିଛି ତାହା ଭାଙ୍ଗିବା ଚାହି । ତେବେ ଯାଇ ଗାଁର ମୁକ୍ତି ସମ୍ଭବ ହେବ । ଗ୍ରାମଦାନ ଏହି ପ୍ରକ୍ରିୟାରେ ସହାୟକ ହେବା ଆବଶ୍ୟକ । ଗ୍ରାମଦାନ ଆନ୍ଦୋଳନର ଏହା ଏକ ମୁଖ୍ୟ ଲକ୍ଷ୍ୟ ହେବା ଚାହି ବୋଲି ମୋର ସେତେବେଳକୁ ଦୃଢ଼ ପ୍ରତ୍ୟୟ ହେଲା ।

ସତ୍ୟାଗ୍ରହ କଥା ବିଚାରୁ ବିଚାରୁ ସୁଲଭ ଗ୍ରାମଦାନ ବିଚାରରେ ଗୋଟାଏ ତ୍ରୁଟି ରହିଛି ବୋଲି ମୁଁ ଅନୁଭବ କଲି । ସତ୍ୟାଗ୍ରହର ସୌମ୍ୟ, ସୌମ୍ୟତର ପ୍ରକ୍ରିୟା ଅନୁସାରେ ଅପର ପକ୍ଷର ସଦ୍‌ଭାବ ଅର୍ଜନ କରିବା ଉଦ୍ଦେଶ୍ୟରେ ନିଜର ଦାବିକୁ କୋହଳ କରିଦେଇ ଅପରପକ୍ଷ ପ୍ରତି ଉଦାରତା ଦେଖାଇବା ଏକ ପ୍ରଭାବପୂର୍ଣ୍ଣ ପଦକ୍ଷେପ ହେଇଥାଏ । ବିନୋବା ଏହି ନୀତି ଅନୁସାରେ ଗ୍ରାମଦାନର ପ୍ରଥମ କଳ୍ପନାକୁ କୋହଳ କରିଦେଇ ସୁଲଭ ଗ୍ରାମଦାନର କଳ୍ପନା ରଖିଲେ, ଜମିର ଅନ୍ୟୁନ ଛଏକ ଭାଗ ପରିବର୍ତ୍ତେ କୋଡ଼ିଏକ ଭାଗ ଭୂମିହୀନଙ୍କ ପାଇଁ ଛାଡ଼ି ଦେବାର ମାଗଣ ବିନୋବା ସୁଲଭ ଗ୍ରାମଦାନ ମାର୍ଫତରେ ରଖିଲେ ବୋଲି ଘୋଷଣା କରିଥିଲେ । ମତେ ଲାଗିଲା ଯେ; ଯଦି ଭୂମିହୀନ ଲୋକେ ନିଜେ ଏହା କରିଥାନ୍ତେ ତେବେ ସିନା ସେଥିରେ ତାଙ୍କର ଉଦାରତା ଓ ଆତ୍ମବଳ ପ୍ରକାଶ ପାଇଥା'ନ୍ତା । ଆମେ ମଝିରେ ଥିବା ଲୋକେ ସେ ଦାବିକୁ କୋହଳ କରିଦେବାରେ କି ଉଦାରତା ଅଛି ? ଆମେ ଯଦି ଜମି ମାଗିବା ପୂରାପୂରି ଛାଡ଼ି ଦେଉ, ତେବେ ବି ଆମର ସେଥିରେ କ'ଣ ଯାଉଛି ଆସୁଛି ? ତେଣୁ ଗାଁର ସାଧାରଣ ଗରିବ ଲୋକେ ବସି ଠିକ୍ କରିବା ଚାହି ଯେ, ସେମାନେ କୋଡ଼ିଏକ ଭାଗ ନେବେ ଅଥବା ବେଶି ବା କମ । ଏ କୋଡ଼ିଏକ ଭାଗ କଥାଟାକୁ ଆମେ ଲୋକଙ୍କ ପାଖରେ ଗୋଟାଏ ସୁପାରିଶ ଭାବରେ ରଖିପାରୁ ମାତ୍ର ନିର୍ଣ୍ଣୟ ଲୋକେ ଗ୍ରାମସଭାରେ ବସି କରିବା ଚାହି । ତା' ହେଲେ ଯାଇ ଲୋକେ ନିଜର ବଳ ଅନୁଭବ କରିବେ ଓ ତାହା ପ୍ରକଟ ହେବ ।

୧୯୭୧ ରେ ଏକ ସମୟରେ ମୁଁ ଏସବୁ ବିଚାର ବିନୋବାଙ୍କ ଆଗରେ ରଖିଲି । ବିନୋବା ମୋର ଦୃଷ୍ଟିକୋଣରେ ଯଥାର୍ଥତା ସ୍ୱୀକାର କରି କହିଲେ ଯେ, ସେ ଭୂମିହୀନଙ୍କର ପ୍ରତିନିଧି ଭାବରେ କୋଡ଼ିଏକ ଭାଗର ମାଗଣ ରଖିଥିଲେ । ମୁଁ ଜବାବ ଦେଲି ଯେ, ଆପଣଙ୍କ ପଛରେ ଭୂମିହୀନମାନଙ୍କର ସଙ୍ଗଠିତ ସମର୍ଥନ ଥିଲେ ତାହା ଯଥାର୍ଥ ହେଇଥା'ନ୍ତା । ମାତ୍ର ସେଭଳି ନ ଥିଲା । ବିନୋବା ଗ୍ରାମସଭା ଜମିର ଭାଗ ସ୍ଥିର କରିବା କଥାଟାକୁ ସମର୍ଥନ କଲେ ଓ କୋଡ଼ିଏକ ଭାଗର ଦାବିଟା କେବଳ ଗୋଟାଏ ସୁପାରିଶ ଭାବରେ ରହିଛି ବୋଲି ବୁଝିବାକୁ ହେବ ବୋଲି ମଧ୍ୟ କହିଲେ । ମାତ୍ର ଭୟ ଭାଙ୍ଗିବା ଓ ଗାଁର ନୂଆ ନେତୃତ୍ୱ ଗଢ଼ିତୋଳିବାର ପ୍ରଶ୍ନ ଉପରେ ତାଙ୍କର ଉତ୍ତର ମତେ ସନ୍ତୋଷଜନକ ବୋଧ ହେଲା ନାହିଁ । ଯାହାକିଛି କରାଯିବ ତାହାଦ୍ୱାରା ଗାଁର ଏକତା ଖଣ୍ଡିତ ହେବା ଉଚିତ ନୁହେଁ ଇତ୍ୟାଦି କେତେକ କଥା ସାଧାରଣ

ଭାବରେ ସେ କହିଲେ । ଭୟ ଭାଙ୍ଗିବା ବିଷୟରେ ସେ କହିଲେ ଯେ ତାହା ଶହ ଶହ ବର୍ଷ ହେଲା ରହିଛି ଓ ତାହା ଦୂର ହେବାକୁ ସମୟ ଲାଗିବ ଇତ୍ୟାଦି । ଗାଁରେ ବର୍ତ୍ତମାନ ଏକତା ନାହିଁ ଓ ଏକତା ଆଣିବାକୁ ହେଲେ ଯେଉଁସବୁ ସଂଘର୍ଷ ଗୁପ୍ତ ରହିଛି ତାକୁ ପଦାକୁ ଆଣି ସେ ସବୁର ସମାଧାନ କରିବା ଚାହି, ଏ କଥାର ଜବାବରେ ସେ ସେହିପରି ସାଧାରଣ ନୀତି ବୟାନ କଲେ । ସମାଜର ଏ ବୁନିୟାଦୀ ସମସ୍ୟାଟାର ଗୁରୁତ୍ୱ ସେ ଉପଲବ୍ଧି କରୁଛନ୍ତି ବୋଲି ମନେହେଲା ନାହିଁ । ବର୍ତ୍ତମାନର ସମାଜର ମୂଳଦୁଆ ଭୟ ଉପରେ ରହିଛି । ଏକଥାଟା ବି ସେ ହୃଦୟଙ୍ଗମ କରିପାରିଛନ୍ତି ବୋଲି ମନେହେଲା ନାହିଁ ।

ଏହି ପରିପ୍ରେକ୍ଷୀରେ ବିନୋବାଙ୍କ ସହିତ ଆଉ ଥରକର ଆଲୋଚନାର ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରାସଙ୍ଗିକତା ରହିଛି । ଏହା ପୂର୍ବରୁ ୧୯୭୦ ରେ ଥରେ ବିଶ୍ୱନାଥ ଆଞ୍ଜା, ବାଙ୍କୀବାବୁ ପ୍ରଭୃତି ଆମେ କେତେଜଣ ତାଙ୍କ ସହିତ ଦେଖା କରିଥିଲୁ । ସେତେବେଳେ ନକ୍‌ସାଲବାଦୀ ଦମନ ନାଁରେ କୋରାପୁଟ ଓ ଗଞ୍ଜାମର ମାଳ ଅଞ୍ଚଳରେ ଆଦିବାସୀଙ୍କ ଉପରେ ନିର୍ମମ ଅତ୍ୟାଚାର ଚାଲିଥିଲା । ଏହାର ପ୍ରତିକାର ପାଇଁ ଦାଦା, ଖୁଡ଼ୀ, ଆଞ୍ଜା ହେରିକା ନାନା ଉପାୟରେ ଚେଷ୍ଟା କରୁଥା'ନ୍ତି ଓ ଏ ନେଇ ଖୁବ୍ ଉଦ୍‌ବିଗ୍ନ ଥା'ନ୍ତି । ସ୍ପଷ୍ଟ ଦେଖାଯାଉଥାଏ ଯେ, ଏ ଅବସ୍ଥାରେ ଲୋକଙ୍କ ଭିତରେ ନିର୍ଭୟତା ଆଣି ଦେବା ହିଁ ପ୍ରଧାନ କାମ । ତା'ରି ଚେଷ୍ଟା ସେସବୁ ଅଞ୍ଚଳରେ ଚାଲିଥାଏ । ଏ ବିଷୟରେ କ'ଣ କରାଯିବ ବୋଲି ବିଶ୍ୱନାଥ ଆଞ୍ଜା ବିନୋବାଙ୍କୁ ପଚାରିଲେ । ସେ ଜବାବ ଦେଲେ ଯେ, ଏପରି ପୁଲିସ୍ ଅତ୍ୟାଚାରର ପ୍ରତିକାର ଠା କୁ ଠା କେତେ କରିବ ? ସେଥିପାଇଁ ତ ମୁଁ ରାଜ୍ୟଦାନ କଥା କହୁଛି । ତାହାଦ୍ୱାରା ଗ୍ରାମସଭାର ପ୍ରତିନିଧିମାନେ ଶାସନ ଦଖଲ କରିବେ ଓ ପୁଲିସ୍ ସମ୍ବନ୍ଧୀୟ ନୀତିକୁ ମୂଳରୁ ବଦଳାଇ ଦେବେ । ମୁଁ ଦର୍ଶେଇଲି ଯେ, ଏସବୁ ପୁଲିସ୍ ଅତ୍ୟାଚାରଗ୍ରସ୍ତ ଅଞ୍ଚଳରେ ବି ଗ୍ରାମଦାନ ହେଇଛି ଓ ସେ ସବୁ ଗ୍ରାମଦାନୀ ଲୋକେ ବି ଆତଙ୍କଗ୍ରସ୍ତ ହେଇ ରହିଛନ୍ତି । ଯେଉଁ ଲୋକେ ଏଭଳି ଅବସ୍ଥାରେ ଅଛନ୍ତି, ସେମାନେ ଯେ ଗ୍ରାମସଭା ପ୍ରତିନିଧିଙ୍କୁ ଭୋଟ ଦେବେ ତା'ର କି ସ୍ଥିରତା ଅଛି ? ସେମାନେ ଡରାଣ ଧମକାଣ ଓ ଟଙ୍କା ପଇସା ଲୋଭରେ ମଧ୍ୟ ପଡ଼ିଯିବେ । ଗ୍ରାମଦାନ କରିଦେବା ମାତ୍ରେ ଲୋକେ ନିର୍ଭୟ ହେଇଯାଉ ନାହାନ୍ତି । ସେଥିପାଇଁ ଭୟ ମୁକ୍ତିର ଖାସ୍ ଉଦ୍ୟମ ଲୋଡ଼ା । ବିନୋବା ଏହା ଉପରେ କୌଣସି ବିଶଦ ମନ୍ତବ୍ୟ ଦେଇ ନଥିଲେ ।

ଏଇ ବର୍ଷ (୧୯୭୧) ଅକ୍ଟୋବର ସର୍ବ ସେବା ସଂଘର ଅଧିବେଶନ ଭୋପାଳରେ ହେଲା । ସେଠି ଏଇ ପରିପ୍ରେକ୍ଷୀରେ ଏକ ପ୍ରବଳ ବିତର୍କ ଉଭା ହେଲା । ଗ୍ରାମଦାନ କାମର ରୂପ କି ପ୍ରକାର ହେବା ଉଚିତ ସେ ବିଷୟରେ ଦାଦା ଧର୍ମାଧିକାରୀ ଓ ଧୀରେନଭାଇ ଦୁଇଟି ପରସ୍ପର ବିରୋଧୀ ବିଚାର ବାଢ଼ିଲେ । ଦାଦାଙ୍କର ବକ୍ତବ୍ୟ ଥିଲା ଯେ, ଆଜିର ସମାଜ ବ୍ୟବସ୍ଥା ଓ ଆର୍ଥିକ ବ୍ୟବସ୍ଥା ଯେଉଁମାନଙ୍କୁ ବେଶି ବାଧୁଛି ସେହିମାନେ ହିଁ ତାକୁ ବଦଳାଇବା ପାଇଁ ଆଗୁଆ ହେଇ ବାହାରିବେ । ଏହି ଦୃଷ୍ଟିରୁ ଗ୍ରାମଦାନଟାକୁ ଗରିବ ଓ ନିମ୍ନମଧ୍ୟବିତ୍ତ ଚାଷୀ ତଥା

ଭୂମିହୀନଙ୍କର ଆନ୍ଦୋଳନରୂପେ ଦେଖିବାକୁ ହେବ । ଏହିମାନେ ହିଁ ଗ୍ରାମଦାନ ମାଧ୍ୟମରେ ସଙ୍ଗଠିତ ହେଇ ଧନୀ ଲୋକଙ୍କ ଉପରେ ନୈତିକ ଚାପ ପକାଇବେ । ଏଥିରେ ଶ୍ରେଣୀ କଥା ଉଠୁଛି ବୋଲି ଶ୍ରେଣୀ ସଂଘର୍ଷର ଭୂତ ଦେଖି ଛାନିଆ ହେବା ଉଚିତ ନୁହେଁ ।

ଧୀରେନ୍‌ଭାଇଙ୍କର ବକ୍ତବ୍ୟ ଥିଲା ଯେ, ଆମର ଗରିବ ଚାଷୀ ଓ ଭୂମିହୀନଙ୍କ ସହିତ କୌଣସି କାରବାର ନାହିଁ । ଗାଁର ଧନୀଲୋକେ ଓ ବାବୁମାନଙ୍କର ବ୍ୟବହାରର ପ୍ରତିକ୍ରିୟା ସ୍ୱରୂପ ଗରିବ ଲୋକଙ୍କର ଖାସ୍ ମନୋଭାବ ସୃଷ୍ଟି ହେଉଛି । ଆମେ ଗାଁର ବଡ଼ଲୋକଙ୍କ ପିଛା ଲାଗି ସେମାନଙ୍କର ହୃଦୟ ପରିବର୍ତ୍ତନ କରାଇବା ହିଁ ଆମର ପ୍ରଧାନ କାମ । ବଡ଼ଲୋକେ ଠିକ୍ ବାଟକୁ ଆସିଗଲେ ଗରିବଲୋକେ ବି ଆସିଯିବେ । ଧୀରେନ୍‌ଭାଇ ସେତେବେଳେ ସହର୍ସା ଜିଲ୍ଲାରେ କାମ କରୁଥିଲେ ଓ ସେଠି ଏଇ ଚିନ୍ତାଧାରା ଚାଲୁ ହେଇଥିଲା ।

ଏଭଳି ଦୁଇଟି ମତର ସମ୍ମୁଖୀନ ହେଇ ସମବେତ କର୍ମୀମାନେ ବଡ଼ ବିଚଳିତ ହେଇପଡ଼ିଲେ । ଏ ପର୍ଯ୍ୟନ୍ତ ଏଇ ଅଭ୍ୟାସ ସମସ୍ତଙ୍କର ପଡ଼ିଯାଇଥାଏ ଯେ, ବିନୋବା ବା ଜେ.ପି. ଗୋଟାଏ କିଛି ବିଚାର ଦେବେ ଓ ସମସ୍ତେ ତାକୁ ଅଙ୍କଟିଏ ଯଚେଇ କରି ମାନିନେବେ । ସେଥିପାଇଁ ନିଜର ବୁଦ୍ଧି ଖେଳେଇବା ବା ବିତର୍କ ଭିତରକୁ ଓଟୁରିବାର ଅଭ୍ୟାସଟାର ବିକାଶ ଅଧାପଚରିଆ ହେଇଥାଏ । ଏ୍ୱଡ଼ଛୀ ସମ୍ମିଳନୀବେଳେ ଯୁଦ୍ଧ ପ୍ରଶ୍ନ ନେଇ ଖୁବ୍ ମତଭେଦ ହେଇଥିଲା, କିନ୍ତୁ ସେଇଟା ତା ଆନ୍ଦୋଳନର ପ୍ରଧାନ କାର୍ଯ୍ୟକ୍ରମ ଓ କର୍ମପନ୍ଥା ହେଇ ନଥିଲା । ଭୋପାଳରେ ଅନେକେ ଦାବି କଲେ ଯେ, ଧୀରେନ୍‌ଭାଇ ଓ ଦାଦା ପରସ୍ପର ଆଲୋଚନା କରି ଗୋଟାଏ କିଛି ସୂତ୍ର ଦୁହିଁଙ୍କ ରାଜିରୁଜାରେ ସମସ୍ତଙ୍କ ସାମନାରେ ରଖନ୍ତୁ । ଏ ଅଧିବେଶନରେ ବିନୋବା ତ  ନଥା'ନ୍ତି ଓ ଜେ.ପି.ବି ବର୍ଷେ ଛୁଟି ନେଇଥିବା ଯୋଗୁଁ ଅନୁପସ୍ଥିତ ଥାଆନ୍ତି । ଏ ଅବସ୍ଥାରେ ଉଦ୍‌ବେଗ ଆହୁରି ବଢୁଥାଏ । ମାତ୍ର ଆମେ କେତେଜଣ ଏ ପରିସ୍ଥିତିକୁ ସ୍ୱାଗତ କଲୁ ଯେ, ଏତେ ଦିନକେ ସର୍ବ ସେବା ସଂଘର ଗୋଟାଏ ଜୋରଦାର ବିତର୍କ ଉଭା ହୋଇଛି । ସେ ବିଷୟରେ ସମସ୍ତେ ମୁଣ୍ଡ ଖେଳାନ୍ତୁ ଘାଣ୍ଟଚକଟ ଚାଲୁ । ମତଭେଦକୁ ଏତେ ଡର କାହିଁକି ? ମୁଁ ତ କହିଲି ଯେ, ସର୍ବ ସେବା ସଂଘର ଏବର୍ଷ ଏକୋଇଶ  ବର୍ଷ ପୂରିଲା । ଏ ବାଦବିବାଦ ଉପୁଜିବାଟା ତା'ର ନାବାଳକୀ ଫିଟିବାର ଲକ୍ଷଣ ।

ଶେଷକୁ ସଂଘରେ ଯେଉଁ ପ୍ରସ୍ତାବ ଗୃହୀତ ହେଲା, ସେଥିରେ କାମ କରିବାର ବିଭିନ୍ନ ଆଭିମୁଖ୍ୟ ଓ ପନ୍ଥା ସ୍ୱୀକୃତ ହେଲା ଓ ବିଭିନ୍ନ ପ୍ରକାରର ଉଦ୍ୟମ ଓ ଅଭିଜ୍ଞତାର ଭିତ୍ତିରେ କ୍ରମେ କାମକୁ ଆଗେଇ ନେବାର ସବୁଠାରୁ ଫଳପ୍ରଦ ପନ୍ଥା ବାହାରିବ ବୋଲି ଆଶା ପ୍ରକାଶ କରାଗଲା । ଏହିରୂପେ ଗ୍ରାମଦାନ ପାଇଁ ନେତାମାନଙ୍କ ଦ୍ୱାରା ମୋହର ମରାଯାଇଥିବା ଗୋଟିଏ ପନ୍ଥା ବଦଳରେ ବିଭିନ୍ନ ପ୍ରକାରର ଉଦ୍ୟମ ଓ ତାହା ଭିତରେ ଗରିବ ଚାଷୀ ଓ ଭୂମିହୀନଙ୍କୁ ଗ୍ରାମଦାନର ମୂଳପିଣ୍ଡରୂପେ ସଂଗଠିତ କରିବାର ପନ୍ଥା ମଧ୍ୟ ସ୍ୱୀକୃତ ହେଲା ।

## ଏକସ୍ତରୀର ବାତ୍ୟା

ଭୋପାଳରୁ ଫେରି ମୋର ସିଧା ତାମିଲନାଡୁର ତାଞ୍ଜାଭୁର ଜିଲ୍ଲାକୁ ଯିବାର ଥିଲା, ସେଠି ଚାଲିଥିବାର ଭୂମିହୀନ ଓ ଭାଗଚାଷୀମାନଙ୍କର ଆନ୍ଦୋଳନ ଦେଖିବା ପାଇଁ ହେଇଛି । ଭୋପାଳରେ ଖବରକାଗଜରେ ଦେଖିଲି ଯେ, ଓଡ଼ିଶା ଉପକୂଳରେ ପ୍ରବଳ ବାତ୍ୟା ହେଇଛି । କିଛି ଖାସ୍ ତଥ୍ୟ ନଥିଲା । ଖବରକୁ ଅଧିକ ଗୁରୁତ୍ୱ ନ ଦେଇ ମାନ୍ଦ୍ରାଜ ବାହାରିଲି । ବମ୍ବେ ଉଡାଜାହାଜ ଘାଟିରେ ଖଦୀ କମିଶନର କର୍ମୀମାନେ ଭେଟିବାକୁ ଆସିଥିଲେ । ସେମାନେ ବି ବାତ୍ୟା କଥା କହିଲେ । ମୁଁ ସେଇଦିନ ଦିପ୍ରହରେ ମାନ୍ଦ୍ରାଜ ପହଞ୍ଚି ତାଞ୍ଜାଭୁର ଜିଲ୍ଲା ମଫସଲ ଅଞ୍ଚଳକୁ ଚାଲିଗଲି । ତାପରେ ଖବରକାଗଜରେ ଏ ବାତ୍ୟା ଯୋଗୁ ହେଇଥିବା ଭୟଙ୍କର ଜୀବନହାନୀ ଓ ଅନ୍ୟ କ୍ଷୟକ୍ଷତିର ଆଭାସ ମିଳିଲା । ସେଠୁ ମୁଁ ମୋର ସେଠା କାର୍ଯ୍ୟକ୍ରମ ରଦ୍ଦ କରି ଦେଇ କଟକ ଫେରିଆସିଲି । ମୁଁ କଟକରେ ପହଞ୍ଚିବା ଦିନକୁ ହିଁ ବାତ୍ୟା ସାହାଯ୍ୟ ବିଷୟରେ ବିଚାର କରିବା ପାଇଁ ନାଗରିକମାନଙ୍କର ଏକ ବୈଠକ ପୂର୍ବରୁ ଡକା ହୋଇଥିଲା । ସେଇଠି କଟକ ଜିଲ୍ଲା ବାତ୍ୟା ସାହାଯ୍ୟ ସମିତି ଗଢ଼ାହେଇ ସାହାଯ୍ୟ କାମ ଆରମ୍ଭ ହେଲା । ଅକ୍ସଫାମ୍ ତଥା ଗୁଜରାତ ଓ ବମ୍ବେର କେତେକ ସାହାଯ୍ୟ ସମିତିରୁ ଆର୍ଥିକ ସାହାଯ୍ୟ ମିଳିଗଲା ଓ ସାହାଯ୍ୟ କାମ ଜୋରସୋରରେ ଆରମ୍ଭ ହେଲା ।

ଲୋକଙ୍କୁ କିଛିଦିନ ମାଗଣା ଖାଦ୍ୟ ଓ ଔଷଧ ଆଦିର ସାହାଯ୍ୟ ଦେବା ପରେ ଅକ୍ସଫାମ୍‌ର କର୍ମୀ କୁରନୋୟରଙ୍କ ପରାମର୍ଶ ଅନୁସାରେ ଏ ସାହାଯ୍ୟ କାମ ମାଧମରେ ସ୍ଥାୟୀ ଗ୍ରାମ ସଙ୍ଗଠନ ଗଢ଼ିବା ପାଇଁ ଉଦ୍ୟମ କରିବାର ସ୍ଥିରହେଲା । ଗାଁ ଲୋକଙ୍କୁ ବିହନ ଓ ଜଳସେଚନ ପାଇଁ ପାଣି ପମ୍ପର ଯେଉଁ ସାହାଯ୍ୟ ଦିଆଗଲା ସ୍ଥିର ହେଲା ଯେ, ତାହା ଚାଷୀମାନେ ବିନା ସୁଧରେ ଋଣ ହିସାବରେ ନେବେ ଓ କ୍ରମେ କ୍ରମେ ସୁଝିଦେବେ । ଏ ଅର୍ଥ ସେଇ ଗାଁର ଗ୍ରାମପାଣ୍ଠିରେ ଜମା ହେବ ଓ ଗ୍ରାମ ଉନ୍ନୟନ ପାଇଁ ଏକ ଚାଲୁ ପାଣି ରୂପେ ବ୍ୟବହୃତ ହେବ । ସେଥିପାଇଁ ଗାଁମାନଙ୍କରେ ଗ୍ରାମ ବିକାଶ ସଭା ଗଢ଼ାହେଲା ଓ ଗ୍ରାମପାଣ୍ଠି ସ୍ଥାପନ କରାଗଲା । ଏ ବାତ୍ୟା ସାହାଯ୍ୟ କାମରେ ଦିନାକେତେ ପୂରା ସମୟ ଲାଗିବା ଫଳରେ ଗାଁର 'କ୍ଷମତାପନ୍ନ' ବା ନ୍ୟସ୍ତସ୍ୱାର୍ଥଙ୍କର ମେଣ୍ଟର କାରସାଦିର ନଗ୍ନରୂପ ଦେଖିବାକୁ ମିଳିଲା । ବୁଭୁକ୍ଷୁ ମରଣାପନ୍ନ ଲୋକ ଓ ସାନପିଲାଙ୍କ ପାଇଁ ଆସିଥିବା ଖାଦ୍ୟ ବି ଏମାନେ ଚୋରି କରିବାକୁ ପଛାନ୍ତି ନାହିଁ । ଦୁଧ ଗୁଣ୍ଡ ଓ ସୋୟାବିନ୍ ତେଲ ବାଣ୍ଟିବା ଭାର ସ୍କୁଲ ଶିକ୍ଷକମାନଙ୍କ ଉପରେ ଥାଏ । ବି.ଡ଼ି.ଓଙ୍କ ଠାରୁ ଆରମ୍ଭ କରି ସରପଞ୍ଚ, ୱାଡ଼ ମେମ୍ବର ଓ ଶିକ୍ଷକ ଯାଏ ସମସ୍ତେ ମେଣ୍ଟ ହେଇ ଏ ସବୁ ଖାଦ୍ୟକୁ ହରଣଚାଲ କରି ଦିଅନ୍ତି ଓ ତାକୁ ବିକି ଯେଉଁ ପଇସା କମାନ୍ତି ସେଥିରୁ କିଛି ସ୍କୁଲ ଘର ମରାମତି ପାଇଁ ଦେଇ ଧର୍ମକୁ ଆଖିଠାର ମାରନ୍ତି । ଆମ ସାହାଯ୍ୟ ସମିତିର ସାହାଯ୍ୟ ମଧ ସେମିତି ହରଣଚାଲ ହେଇଥିଲା । ଗରିବ ଚାଷୀଙ୍କ ପାଇଁ ଯୋଗାଯାଇଥିବା ବିହନ ଟାଉଟରମାନେ ମାରି

ନେଇଥିଲେ । ଯେଉଁସବୁ ଗାଁରେ ଏଭଳି ଶ୍ରେଣୀର ଲୋକଙ୍କର ପ୍ରାଧାନ୍ୟ ଥିଲା, ସେ ସବୁର ଗ୍ରାମପାଣ୍ଠି ଉଠେଇଲା ନାହିଁ । ଋଣ ସୁଝିବା କଥାରେ କେହି ଧରା ଛୁଆଁ ଦେଲେ ନାହିଁ । ଟାଉଟର ନଥିବା ଗାଁର ଚାଷୀମାନଙ୍କର ହିଁ ଗ୍ରାମବିକାଶ ସଭା ଓ ଗ୍ରାମପାଣ୍ଠି ଭଣା ଅଧିକେ କାର୍ଯ୍ୟକାରୀ ହେଲା । ଯଥେଷ୍ଟ ସଂଖ୍ୟକ ସାମର୍ଥ୍ୟବାନ ଓ ନିଷ୍ପାପର କର୍ମୀ ମିଳିବା ସମସ୍ୟା ଯୋଗୁଁ ଏ କାମ ଯେତେ ଆଗେଇବାର କଥା ଆଗେଇପାରିଲା ନାହିଁ ।

## ଜେ.ପି.ଙ୍କ ଉଦ୍‌ବେଗ

ଜେ.ପି. ବର୍ଷେ ଛୁଟିନେଇ ପଢ଼ାପଢ଼ି ଓ ଦେଶର ସାଧାରଣ ପରିସ୍ଥିତି ବିଷୟରେ ଚିନ୍ତାକରିବାରେ ଲାଗିଥା'ନ୍ତି । ଏହାରି ଭିତରେ ସେ ଦେଶରେ ବଢ଼ୁଥିବା ଦୁର୍ନୀତି ଓ ଏକଛତ୍ରବାଦୀ ମନୋବୃତ୍ତି ବିଷୟରେ ଉଦ୍‌ବେଗ ବ୍ୟକ୍ତକରି ଏକ ପ୍ରବନ୍ଧ ଲେଖିଲେ ଓ ଲେଖାଟା ସେତେବେଳେ ମୋ ମନକୁ ଆଦୌ ଛୁଇଁ ନଥିଲା । ମୋର ବିଚାର ଥାଏ ଯେ, ଶୋଷଣ ଭଳି ଦୁର୍ନୀତି ମଧ୍ୟ ବୈଷମ୍ୟମୂଳକ ସମାଜର ଗୋଟାଏ ଅବଶ୍ୟମ୍ଭାବୀ ଅଙ୍ଗ । ସମାଜକୁ ମୂଳରୁ ବଦଳାଇଲେ ଯାଇ ଦୁର୍ନୀତିର ଲୋପ ହୋଇପାରିବ । ସେ ଚେଷ୍ଟା ନ କରି ଦୁର୍ନୀତି ବଢ଼ିଲା ବୋଲି ବାହୁନି ବସିଲେ କି ଲାଭ ? ଦୁର୍ନୀତି ମଧ୍ୟ ଯେ ଠେଙ୍ଗା, ବନ୍ଧୁକ ପରି କ୍ଷମତା ଦଖଲ କରିବାର ଓ ହାତରେ ରଖିବାର ଏକ ଅସ୍ତ୍ର ଏ ଖିଆଲ ସେତେବେଳ ମୋ ମୁଣ୍ଡକୁ ଆସି ନଥିଲା ଓ ଦୁର୍ନୀତିର ସେ ଗୁରୁତ୍ୱପୂର୍ଣ୍ଣ ଦିଗ ବିଷୟରେ ସେତେବେଳେ ପର୍ଯ୍ୟନ୍ତ ସ୍ୱଷ୍ଟ ଆଲୋଚନା ମଧ୍ୟ ହୋଇନଥିଲା । କେତେବର୍ଷଠୁ ଜେ.ପି.ଙ୍କ ସମେତ କେତେକ ସାଥୀ ଦେଶରେ ବଢ଼ି ଚାଲିଥିବା ଦୁର୍ନୀତି ବିଷୟରେ ମଝିରେ ମଝିରେ ଚିନ୍ତା ପ୍ରକାଶ କରୁଥିଲେ । ସେ ବିଷୟରେ କିଛି କିଛି ଆଲୋଚନା ମଧ୍ୟ ହେଉଥିଲା, ମାତ୍ର ତାହା ମଧ୍ୟ ସାଧାରଣ କୋର୍ଟ, କଚେରୀ, ଅଫିସ୍, ଅଦାଲତ, ରେଳବାଇ ଆଦିରେ ଲାଞ୍ଚ ରିସ୍‌ବତ୍ ସମସ୍ୟା ସ୍ତର ଯାଏ ସୀମାବଦ୍ଧ ରହୁଥିଲା, ତା'ର ବୃହତ୍ତର ରାଜନୀତିକ ଓ ସାମାଜିକ ତାତ୍ପର୍ଯ୍ୟ ଦୃଷ୍ଟିରୁ ଆସିଥିଲା ବା ଆଲୋଚିତ ହେଉଥିଲା ବୋଲି ମୋର ମନେପଡୁ ନାହିଁ ।

ସେହିପରି ଦେଶର ଲୋକଙ୍କର ଚରିତ୍ରବତ୍ତାର ଦିନକୁ ଦିନ ଅବନତି ଘଟୁଛି ବୋଲି ମଧ୍ୟ ଜେ.ପି. ଓ ଅନ୍ୟମାନେ ଯେ ବହୁତ ଉଦ୍‌ବେଗ ପ୍ରକାଶ କରୁଥା'ନ୍ତି, ଗାନ୍ଧୀଜୀ ଦେଶକୁ ଯେଉଁ ଉଚ୍ଚ ଚାରିତ୍ରିକ ସ୍ତରକୁ ନେଇ ଯାଇଥିଲେ ଦେଶ ସେଥିରୁ ତଳକୁ ଖସି ଯାଉଛି ବୋଲି ଦୁଃଖ କରୁଥା'ନ୍ତି ତାହା ମଧ୍ୟ ମୋର ମନକୁ ପାଉ ନଥାଏ । ମୋର ମତ ଥାଏ ଓ ଏବେ ବି ଅଛି ଯେ, ଦେଶର ପ୍ରତ୍ୟେକ ଜାତି ଓ ଶ୍ରେଣୀର ଚରିତ୍ର ଭିନ୍ନ ଭିନ୍ନ ପ୍ରକାରର । ଏ ଦେଶରେ ଶୋଷଣ ଓ ବୈଷମ୍ୟ ଯୁଗ ଯୁଗ ଧରି ଚାଲି ଆସିଛି ଓ ଏଭଳି ସମାଜକୁ ମାନି ନେଉଥିବା ଶ୍ରେଣୀମାନଙ୍କର ନୈତିକ ଚରିତ୍ର କଦାପି ଉପାଦେୟ ନ ଥିଲା, ବିଶେଷ କରି ସେ ସମାଜର ସୁବିଧାଭୋଗୀ ଶ୍ରେଣୀଙ୍କର । ଗାନ୍ଧୀଜୀଙ୍କର ଆନ୍ଦୋଳନ ଯୋଗୁଁ ଦେଶରେ ଯେଉଁ ଚାରିତ୍ରିକ

ଉନ୍ନତି ଘଟିଥିଲା, ଲୋକଙ୍କର ଭୟ ଭାଙ୍ଗିଥିଲା ଓ ସତ୍ୟନିଷ୍ଠା ବଢ଼ିଥିଲା, ତାହାର ପ୍ରଭାବ ଯେ ସାରା ସମାଜରେ ବେଶି ଦୂରକୁ ବା ଗହୀରକୁ ବ୍ୟାପିଥିଲା ତାହା ନୁହେଁ । ତଥାପି ସାଧାରଣ ଲୋକଙ୍କ ଭିତରେ ସେ ପ୍ରଭାବ ଲୁପ୍ତ ହେଇନାହିଁ । ଭୂଦାନ- ଗ୍ରାମଦାନ ଆନ୍ଦୋଳନ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସଂକ୍ରାନ୍ତରେ ସାଧାରଣ ଲୋକଙ୍କର ହୃଦୟବତ୍ତାର ଯଥେଷ୍ଟ ପ୍ରେରଣାଦାୟକ ଉଦାହରଣ ମିଳିଛି । କଂଗ୍ରେସ ଲୋକମାନଙ୍କର ଉପରୁ ଗାନ୍ଧୀ ରଙ୍ଗର ପୁଟ ଛାଡ଼ିଯାଇଛି । ସେଇଟାକୁ ସାରା ଦେଶରେ ଅବନତିର ଲକ୍ଷଣ ବୋଲି ବିଚାରିବା ଠିକ୍ ନୁହେଁ । ଏ ଦେଶର ଶାସକ ଶ୍ରେଣୀ ସବୁକାଳରେ ନଷ୍ଟଚରିତ୍ର ଥିଲେ, କଂଗ୍ରେସ ଲୋକେ ସେ ଶ୍ରେଣୀରେ ସାମିଲ ହେବା ଫଳରେ ସେମାନଙ୍କର ଚରିତ୍ରରେ ମଧ ତା'ର ଅବଶ୍ୟମ୍ଭାବୀ ପ୍ରଭାବ ପଡ଼ିଛି । ତେଣୁ ସାରା ଦେଶଟା ରସାତଳକୁ ଗଲା ବୋଲି କାନ୍ଦି କି ଲାଭ ?

ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବାବେଳକୁ ଦେଶରେ ଗୋଟାଏ ଇନ୍ଦିରା ବିରୋଧୀ ହାୱା ଥାଏ । ମାତ୍ର ଭିନ୍ନ ଭିନ୍ନ ଲୋକଙ୍କର ବିରୋଧର କାରଣ ଭିନ୍ନ ଭିନ୍ନ ଥାଏ । କେତେକ କେବଳ ଏଇଥିପାଇଁ ତା'ର ବିରୋଧୀ ଥା'ନ୍ତି ଯେ ସେ ଜଣେ ସ୍ତ୍ରୀଲୋକ । ମାଇପି ଲୋକଟା କ'ଣ ପ୍ରଧାନମନ୍ତ୍ରୀ ହେବ ? ପୁଣି ତା'ର ଗରିବୀ ହଟାଓ ଓ ସମାଜବାଦ ଧ୍ୱନିରେ କେତେକ ବିଚଳିତ ହୋଇଥା'ନ୍ତି । ବ୍ୟାଙ୍କ ରାଷ୍ଟ୍ରୀୟକରଣ ଆଦି ପଦକ୍ଷେପ ଦେଖି ସେମାନଙ୍କର ଭୟ ହେଉଥାଏ ଯେ, ଏ ପ୍ରକୃତିରେ ଗୋଟାଏ କ'ଣ କରିଦେବ । ଜେ.ପି. ହେଲିକା ତା'ର କାମ କରିବାର ଅନୈତିକ ଢଙ୍ଗ ଦେଖି ବିଚଳିତ ହେଉଥା'ନ୍ତି । ମାତ୍ର ଏ ଢଙ୍ଗଟାକୁ ମୁଁ କଂଗ୍ରେସ ଓ କଂଗ୍ରେସ ବିରୋଧୀ ତତ୍‌ତୁଲ୍ୟ ମଧ୍ୟମପନ୍ଥୀ ଓ ରକ୍ଷଣଶୀଳ ଦଳମାନଙ୍କର ସ୍ୱାଭାବିକ ଚରିତ୍ର ବୋଲି ଧରି ନେଇଥାଏ । ଇନ୍ଦିରାର ଅନୈତିକତାର ଶିକାର ହେଉଥିବା ନେତାମାନେ ନିଜେ କମ୍ ଅନୈତିକତାକୁ ପ୍ରଶ୍ରୟ ଦେଉ ନଥିଲେ । ମୋରରାଜୀ ଦେଶାଇଙ୍କର ଡିକ୍ଟେଟରୀ ମିଜାସ କିଛି କମ୍ ନଥିଲା ।

୧୯୭୨ ଅଗଷ୍ଟରେ ଜେ.ପି. ବାଙ୍ଗାଲୋରରେ ସର୍ବୋଦୟରେ ମୁଖ୍ୟ କର୍ମୀମାନଙ୍କର ଏକ ବୈଠକ ଡକେଇଥିଲେ । ବୈଠକ ବାଙ୍ଗାଲୋରଠାରୁ କିଛି ଦୂରରେ ତ୍ରିପ୍ପୁକୁନ୍ଦନହଲ୍ଲି ଠାରେ ଥିବା ଏକ ଡାକବଙ୍ଗଳାରେ ହେଉଥିଲା । ଜେ.ପି. ସେଇଠି ରହୁଥିଲେ । ଏ ବୈଠକ ସାତଦିନ ଚାଲିଥିଲା । ଆମେ ବାଙ୍ଗାଲୋରରେ ଥାଉ ସେଠିକି ଯିବା ଆସିବା କରୁଥାଉ । ସେ ବୈଠକକୁ କେତେକ ଅନ୍ୟ ବ୍ୟକ୍ତି 'ରିସୋର୍ସ ପର୍ସନ' ବା 'ବିଶେଷ ସହାୟକ' ଭାବରେ ଡକା ହେଇଥିଲେ । ସେମାନଙ୍କ ଭିତରେ ଥିଲେ ଅଧ୍ୟାପକ ଅମ୍ଳାନ ଦତ୍ତ, ଅଧ୍ୟାପକ ଏ.ବି. ଶାହ, ସମାଜବାଦୀ ଦଳର ବ୍ରଜମୋହନ ତୁଫାନ, ଜନସଂଘର ସଦସ୍ୟ ଥିବା ପ୍ରତିଭାବାନ ଅର୍ଥନୀତିବିଦ୍ ସୁବ୍ରହ୍ମନ୍ୟମ୍ ସ୍ୱାମୀ, ମୋରାରଜୀ ଦେଶାଇଙ୍କର ଦଳୀୟ ଲୋକକୁ ବିଶେଷଜ୍ଞ ରୂପେ ଡକାଯିବାରେ ଆମେ ଅନେକ ଅସନ୍ତୁଷ୍ଟ ହେଇଥିଲୁ ।

ଏ ବୈଠକରେ ସର୍ବୋଦୟ ଆନ୍ଦୋଳନର ଗତିବିଧି, ବିଶେଷକରି ଗ୍ରାମଦାନ ଆନ୍ଦୋଳନକୁ

ଅଧିକ ସଜାଗ କରିବାର ପନ୍ଥା ବିଷୟ ସାଙ୍ଗକୁ ସାଧାରଣ ପରିସ୍ଥିତି ଉପରେ ମଧ୍ୟ ଆଲୋଚନା ହେଉଥିଲା । ଜେ.ପି. ତାଙ୍କର ବିଶ୍ଳେଷଣରେ ଦେଶରେ ବଢ଼ିଚାଲିଥିବା ଦୁର୍ନୀତି, କଂଗ୍ରେସ ଭିତରେ ଏକଛତ୍ର ମନୋଭାବ, ନିର୍ବାଚନରେ ଜୋର ଜବରଦସ୍ତି, ପଶ୍ଚିମବଙ୍ଗଳାର ହତ୍ୟାକାଣ୍ଡ ଆଦି ସବୁ ସମସ୍ୟା ବାଢ଼ିଲେ । ସେତେବେଳେ ତାଙ୍କର ଆଭିମୁଖ୍ୟରେ ଇନ୍ଦିରା ଗାନ୍ଧୀଙ୍କ ପ୍ରତି ଯେଉଁ ବ୍ୟକ୍ତିଗତ ଆକ୍ଷେପ ପ୍ରକାଶ ପାଉଥାଏ ତାହା ମତେ ଭଲ ଲାଗୁ ନଥାଏ । ମୋରାରଜୀଙ୍କ ଠାରୁ ଇନ୍ଦିରା କୌଣସି ଗୁଣରେ ଅଧିକ ଖରାପ ବୋଲି ମୋର ସେତେବେଳେ ଧାରଣା ନଥାଏ । ଇନ୍ଦିରାଙ୍କର ଅମାପ ବ୍ୟକ୍ତିଗତ କ୍ଷମତାଲିପ୍ସା ଯେ ପରିସ୍ଥିତିରେ ଗୋଟାଏ ବଡ଼ ନୂଆ ଉପାଦାନ ଏ କଥା ମୁଁ ବହୁତ ପରେ ଉପଲବ୍ଧି କଲି ।

ଯେଉଁ ରାଜନୀତିକ ଦଳର ଲୋକେ ସେଠି ଥିଲେ ସାଧାରଣ କଂଗ୍ରେସ ବିରୋଧୀ ସମାଲୋଚନା ଓ କମ୍ୟୁନିଷ୍ଟ ଦଳର ପ୍ରଭାବ ବୃଦ୍ଧିର ଆତଙ୍କ ଛଡ଼ା ଅନ୍ୟ କୌଣସି ବିଧାୟକ ଅବଦାନ ସେମାନଙ୍କର ଥିଲା ବୋଲି ମୋର ମନେ ହେଲା ନାହିଁ । ସର୍ବୋଦୟ ସହିତ ମିଶି ନାନାପ୍ରକାର ରଚନାତ୍ମକ କାମ କରିବାର ପ୍ରସ୍ତାବ ସେମାନଙ୍କ ଆଡ଼ୁ ଉଠିଲା । ମୋର ଧାରଣା ହେଲା ଯେ, ସେମାନେ କେବଳ ସର୍ବୋଦୟବାଲାଙ୍କ ସହିତ ମିଶି ଲୋକଙ୍କ ଭିତରେ କାମ କରି ନିଜ ନିଜ ଦଳର ପ୍ରତିଷ୍ଠା ବଢ଼େଇବାକୁ ଚାହାନ୍ତି । ଭୂମି ସମସ୍ୟା, ଦାରିଦ୍ର୍ୟ, ବେକାରୀ ଆଦି ସମସ୍ୟା ବିଷୟରେ ସେମାନେ ଗୁରୁତ୍ୱର ସହିତ କିଛି ଅନୁଭବ କରୁଛନ୍ତି ବୋଲି ମୋର ମନେ ହେଲା ନାହିଁ ।

ଏଇ ସଂକ୍ରାନ୍ତରେ ସେଠି କଥା ଉଠିଲା ଯେ, ସର୍ବୋଦୟବାଲା ବହୁତ ସଂକୀର୍ଣ୍ଣ ହେଇଯାଉଛନ୍ତି, ଅନ୍ୟାନ୍ୟ ଗୋଷ୍ଠୀଙ୍କ ସହିତ ମିଶୁ ନାହାନ୍ତି, ସମସ୍ତଙ୍କ ସହିତ ମିଶି କାମ କରିବା ଉଚିତ ଇତ୍ୟାଦି ଏ ବାବଦରେ ମୋର ମନେ ହେଉଥାଏ ଯେ, ମୋରାରଜୀ ଦେଶାଇଙ୍କ ଦଳ ବା ଜନସଂଘ ସାଙ୍ଗରେ ମିଶି ଏଠି ସେଠି କିଛି କାମ କଲେ ଗୋଟାଏ ଭାରି ବଡ଼ ନୂଆ ବାଟ ମିଳିଯିବ ବୋଲି ଭାବିବାରେ କିଛି ସାର ନାହିଁ । ପରିସ୍ଥିତିର ଯଥାର୍ଥ ଜବାବ ଦେଇପାରୁଥିବା ଏକ ବାସ୍ତବିକ ବୈପ୍ଳବିକ କାର୍ଯ୍ୟକ୍ରମ ଉପରେ ଯେବେ ବହୁ ଗୋଷ୍ଠୀଙ୍କୁ ଏକାଠି କରାଯାଇପାରିବ ତ ସେଥିରୁ କିଛି ଆଖିଦୃଶିଆ ପରିଣାମ ମିଳିଲେ ମିଳିବ । କିନ୍ତୁ ଜେ.ପି. ସେତେବେଳେ ସର୍ବୋଦୟ କର୍ମୀମାନେ ଏକାଙ୍ଗୀ ହୋଇଯାଉଛନ୍ତି ବୋଲି ବିଚାରୁଥାନ୍ତି ଓ ସେମାନଙ୍କର ସାମର୍ଥ୍ୟ ସମ୍ବନ୍ଧରେ ବି ତାଙ୍କର ବିଶେଷ ଉଚ୍ଚ ଧାରଣା ଥିବା ପରି ଜଣାପଡୁ ନଥାଏ । ମୋର ମନେହୁଏ ଯେ, ପରେ ଆନ୍ଦୋଳନର ଅଭିଜ୍ଞତାରୁ ତାଙ୍କର ଏ ଧାରଣା ବଦଳିଲା ।

ଏ ବୈଠକରେ ଗଙ୍ଗାବାବୁ ବଙ୍ଗଳାରେ କଂଗ୍ରେସ ଲୋକଙ୍କ ଦ୍ୱାରା କରାଯାଇଥିବା ହତ୍ୟାକାଣ୍ଡର ପୃଷ୍ଠଭୂମି ବିଶ୍ଳେଷଣ କରି ପ୍ରକାରାନ୍ତରେ ତାକୁ ଆତ୍ମରକ୍ଷାମୂଳକ ବୋଲି ହିଁ ସାବ୍ୟସ୍ତ କଲେ । ଅମ୍ଳାନ ଦତ୍ତ କହିଲେ ଯେ, ପଶ୍ଚିମବଙ୍ଗଳାରେ ସି.ପି.ଏମ୍. ଆଦିଙ୍କ ଦ୍ୱାରା ହିଂସା ଓ ହତ୍ୟାକାଣ୍ଡ ଆରମ୍ଭ ହେଇ ଜୋର୍‌ରେ ଚାଲିଲା । ଏବେ କଂଗ୍ରେସ ଆଡ଼ୁ ପାଲଟା ହିଂସା ଆରମ୍ଭ

ହେଉଛି । ସେ ଏକ ଭାରସାମ୍ୟର ଥିଓରୀ ବାଢ଼ିଲେ ଯେ, ଏ ଦୁଇ ଆତଙ୍କରାଜ ପରସ୍ପରକୁ ଆୟତ୍ତରେ ରଖିବେ ଓ ଶାନ୍ତି କାଏମ୍ ରହିବ ।

ଗୋଟାଏ ରାତି ସାରା ଅନିଦ୍ରା ରହି ଭାବି ଭାବି ମୁଁ ମୋର ବକ୍ତବ୍ୟ ଉପସ୍ଥାପିତ କଲି । କଂଗ୍ରେସ ଯେଉଁ ପ୍ରକାରେ ଜନତାର ଆନ୍ଦୋଳନର ବାଟ ଛାଡ଼ି ଦେଇ କ୍ଷମତାରେ ପଶିଲା ସେଥିରେ ତାହା ରକ୍ଷଣଶୀଳ ଓ ଦେଶର ପ୍ରଗତି ପଥରେ ସବୁଠାରୁ ବଡ଼ ବାଧା ହୋଇଯାଇଛି ବୋଲି ମୁଁ ମତବ୍ୟକ୍ତ କଲି । 'ପ୍ରଭାବର ଭାରସାମ୍ୟ' ଥିଓରୀର ପ୍ରତିପାଦନ କରି ମୁଁ କହିଲି ଯେ, ବିକଶିତ ଦେଶରେ ଶିଳ୍ପପତି, ଶ୍ରମିକ, କୃଷକ, ବେପାରୀ, ଶିକ୍ଷକ, ଡାକ୍ତର ପ୍ରଭୃତି ବିଭିନ୍ନ ଶ୍ରେଣୀ ପ୍ରତ୍ୟେକ ସୁସଙ୍ଗଠିତ ଓ ସମସ୍ତେ ସରକାର ଉପରେ ପ୍ରଭାବ ପକାନ୍ତି । ଶିଳ୍ପପତି ଓ ବେପାରୀଙ୍କର ପ୍ରଭାବକୁ ଶ୍ରମିକ ସଙ୍ଗଠନର ପ୍ରଭାବ କେତେକ ପରିଣାମରେ ପ୍ରତିହତ କରେ । ଏହି ରୂପେ ଭାରସାମ୍ୟ ବଜାୟ ରହେ । କୌଣସି ଏକ ଶ୍ରେଣୀର ପ୍ରଭାବ ଅତିମାତ୍ରାରେ ପ୍ରବଳ ହୋଇପଡ଼େ ନାହିଁ । ଏଠି ଅଧିକ ସଂଖ୍ୟାରେ ଥିବା ଚାଷୀ ଓ ଶ୍ରମିକ ଶ୍ରେଣୀ ସୁସଙ୍ଗଠିତ ନ ହୋଇଥିବାରୁ ସୁସଙ୍ଗଠିତ ସୁବିଧାଭୋଗୀ ଶ୍ରେଣୀମାନଙ୍କର ସ୍ୱାର୍ଥ ହିଁ ସର୍ବୋପରି ରହିଛି । ଏହାରି ଭିତରୁ ଅପରିମିତ ଶୋଷଣ ଓ ଦୁର୍ନୀତି ଆଦି ସବୁ ବାହାରୁଛି । ତେଣୁ ଗାଁ ଓ ସହରର ସାଧାରଣ ଲୋକଙ୍କୁ ସଂଗଠିତ ଓ ଶକ୍ତିଶାଳୀ କରିବା ହିଁ ଅସଲ କାମ ।

ଅମ୍ଳାନ ଦତ୍ତଙ୍କର ମତକୁ ଖଣ୍ଡନ କରି ମୁଁ କହିଲି ଯେ, ଜର୍ମାନୀରେ ନାତ୍‌ସୀ ଓ କମ୍ୟୁନିଷ୍ଟମାନେ ହିଂସାକାଣ୍ଡରେ ଏକ ଅପରକୁ ଚପିବା ଚେଷ୍ଟା କଲେ; ମାତ୍ର ତାହାଦ୍ୱାରା ସାଧାରଣ ଲୋକେ ହିଁ ଦବିଗଲେ ଓ ଏକଛତ୍ରବାଦ ପାଇଁ ବାଟ ଫିଟିଗଲା । ଏଠି ମଧ୍ୟ 'ଆତଙ୍କରାଜର ଭାରସାମ୍ୟ' ଭିତରୁ ସେହି ପରିଣାମ ହିଁ ବାହାରିବ । ଇନ୍ଦିରା କଂଗ୍ରେସର ନୀତି ବିଷୟରେ ମୋର ବକ୍ତବ୍ୟ ଥିଲା ଯେ, ନେହେରୁଙ୍କ ଅପେକ୍ଷା ଇନ୍ଦିରା ଅଧିକ ଦୃଢ଼ପ୍ରତିଜ୍ଞ ଥିବାରୁ ସେ ଗରିବୀ ହଟାଓ ଓ ଦୁଆଟାକୁ ସତରେ କାର୍ଯ୍ୟକାରୀ କରିଦେବେ ବୋଲି ଭୟ କରି ନ୍ୟସ୍ତସ୍ୱାର୍ଥ ଶ୍ରେଣୀ ତାଙ୍କ ବିରୋଧରେ ଲାଗିଛନ୍ତି । ତେଣୁ ଆମେ ଯାହା କରିବା ସେଥିରେ ଏସବୁ ନ୍ୟସ୍ତସ୍ୱାର୍ଥଙ୍କ ସହିତ ଗୋଳେଇମିଶି ଯିବା ଠିକ୍ ହେବ ନାହିଁ ।

ଜେ.ପି. ମୋର ବକ୍ତବ୍ୟକୁ ମନଯୋଗ ଦେଇ ଶୁଣିଥିଲେ ଓ ତାହା ଖୁବ୍ ଭଲ ହୋଇଛି ବୋଲି ମନ୍ତବ୍ୟ କରିଥିଲେ । ସେଠି ନିର୍ମଳା ଦେଶପାଣ୍ଡେ ଓ ମୁଁ ପ୍ରାୟ ଏକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିଲୁ ଓ ଅନ୍ୟ ବନ୍ଧୁମାନେ ମତେ ଇନ୍ଦିରା ସମର୍ଥକ ବୋଲି କହୁଥିଲେ । ଆଲୋଚନାର ଯେଉଁ ସାରାଂଶ ଓ ସେଠାରେ ବିଭିନ୍ନ ବିଷୟରେ ପ୍ରକାଶ ପାଇଥିବା ମତୈକ୍ୟର ଯେଉଁ ବିବରଣୀ ଜେ.ପି. ଲେଖିଲେ ସେଥିରେ ନିର୍ମଳା ଓ ମୁଁ ଗୋଟିଏ ପାରାଗ୍ରାଫ୍ ଯୋଗ କରେଇଲୁ ଯେ, ଏହା ଭିତରେ ବଙ୍ଗଳାଦେଶ ପ୍ରସଙ୍ଗ ଓ ଅନ୍ୟାନ୍ୟ ଘଟଣାରେ ପୃଥିବୀରେ ଭାରତର ପ୍ରତିଷ୍ଠା ଓ ସମ୍ମାନ ବଢ଼ିଛି ତଥା ଦେଶବାସୀଙ୍କ ଭିତରେ ଏକତା ଓ ଆତ୍ମବିଶ୍ୱାସ ବଢ଼ିଛି ।

ଏଇଥିଲାରେ ଗ୍ରାମଦାନ ଆନ୍ଦୋଳନ ବିଷୟରେ ବିଚାର କରିବା ପାଇଁ ଯେପରି ଏକ

ସର୍ବଦଳ ସମ୍ମିଳନୀ ଡକା ହୋଇଥିଲା ଏବେ ଦେଶର ସମସ୍ୟାମାନ ବିଷୟରେ ବିଚାର କରିବା ପାଇଁ ସେହିପରି ଏକ ସମ୍ମିଳନୀ ଡାକିବାର ପ୍ରସ୍ତାବ କେତେକ ବନ୍ଧୁ ଉଠାଉଥାନ୍ତି । ନାରାୟଣ, ମୁଁ ଓ ଆଉ କେତେକ ସାଥୀ ଏଭଳି ସମ୍ମିଳନୀକୁ ବେକାର ଓ ଏକ ମାୟାଜାଲ ବୋଲି ବିଚାରୁଥାଉ । ମୋର ବିଚାର ଥାଏ ଯେ, ଦେଶର ବର୍ତ୍ତମାନର ଦୁର୍ଗତି ପାଇଁ ବିଭିନ୍ନ ଦଳରେ ବାଣ୍ଟି ହୋଇ ରହିଥିବା ପୁରୁଣା ନେତାମାନେ ହିଁ ଦାୟୀ । ସେମାନଙ୍କୁ ସମସ୍ତଙ୍କୁ ଆଣି ଏକାଠି ବସେଇଲେ ଯେ, ଦୁର୍ଗତିରୁ ମୁକ୍ତିର ବାଟ ମିଳିବ ଏ ଏକ ଭ୍ରାନ୍ତ ଧାରଣା । ପରେ ଏ ପ୍ରସ୍ତାବ ନିର୍ଦ୍ଦିଷ୍ଟ ରୂପରେ ଆସିଲା ଯେ, ସେବାଗ୍ରାମରେ ଏକ 'ରାଷ୍ଟ୍ରୀୟ ପରିଷଦ' ଡକାଯାଉ । ଆମେ ସବୁ ଏହାକୁ ଏକ ସର୍ବଦଳ ସମ୍ମିଳନୀର ରୂପଦେବାର ବିରୋଧ କଲୁ । ଜେ.ପି. ସର୍ବଦଳ ସମ୍ମିଳନୀ ପକ୍ଷରେ ନଥାନ୍ତି; କିନ୍ତୁ ବିରୋଧୀ ଦଳମାନଙ୍କର କେତେକ ନେତାଙ୍କୁ ଡାକିବା ସପକ୍ଷରେ ଥାନ୍ତି । ଆମେ ଏକ ଆଭିମୁଖ୍ୟ ନେଲୁ ଯେ, ଦଳ ହିସାବରେ କାହାରିକୁ ଡକାନଯାଉ, ଯେଉଁମାନେ ଦେଶର ସମସ୍ୟା ବିଷୟରେ ମୋଟାମୋଟି ଆମର ଅନୁରୂପ ଚିନ୍ତା କରୁଛନ୍ତି ସେଭଳି ବ୍ୟକ୍ତିଙ୍କୁ ଡକାଯାଉ । ଆଖିର ସେହି ଅନୁସାରେ ସେବାଗ୍ରାମରେ ପରିଷଦ ଡକାହେଲା । ସେଥିରେ କୃପାଲାନୀଙ୍କ ଛଡ଼ା ଅନ୍ୟ କୌଣସି ବଡ଼ ଦଳୀୟ ନେତାଙ୍କୁ ଡକା ହୋଇ ନଥିଲା ।

ଏ ପରିଷଦରେ ମୂଲ୍ୟବୃଦ୍ଧି, ବେକାରୀ, ଦୁର୍ନୀତି, ଭୂମିସମସ୍ୟା ଆଦି ନେଇ ଆନ୍ଦୋଳନ ଓ ଜନସଂଗଠନ କରିବାର ଓ ଏସବୁ ପାଇଁ ଆବଶ୍ୟକ ହେଲେ ପ୍ରତିରୋଧମୂଳକ ସତ୍ୟାଗ୍ରହ କରାଯିବାର ପ୍ରସ୍ତାବ ଆସିଲା । ଏହା ଗ୍ରାମ ସ୍ୱରାଜ୍ୟ ଆନ୍ଦୋଳନର ଏକ ବିକଳ୍ପ ଛିଡ଼ା କରାଯିବାର ଉଦ୍ୟମ ବୋଲି ନିର୍ମଳା ପ୍ରଭୃତି କେତେକ ଆତଙ୍କିତ ହୋଇଥିଲେ; ମାତ୍ର ଏ ପ୍ରସ୍ତାବରେ ଗ୍ରାମ ସ୍ୱରାଜ୍ୟ ଆନ୍ଦୋଳନର ମଧ୍ୟ ଉଲ୍ଲେଖ ରହିବାରୁ ତାହାକୁ ସେମାନେ ମାନିନେଲେ । ଏହାର ପରେ ପରେ ସର୍ବ ସେବା ସଂଘର ଅଧିବେଶନ ମଧ୍ୟ ସେଠି ହେଲା ଓ ସେଥିରେ ମଧ୍ୟ ଏହି ପ୍ରସ୍ତାବକୁ ସମର୍ଥନ କରି ଏକ ପ୍ରସ୍ତାବ ଗୃହୀତ ହେଲା ।

ଏହି ପରିଷଦରେ ଆଚାର୍ଯ୍ୟ କୃପାଲାନୀ ନିଜକୁ ସତ୍ୟାଗ୍ରହର ଏକ ବିଶେଷଜ୍ଞ ଭାବରେ ଆଗରେ ଥୋଇବାର ଚେଷ୍ଟା କଲେ । ମୋର ତାଙ୍କ ବିଷୟରେ ବିଶେଷ ଅନୁକୂଳ ଧାରଣା ନଥାଏ । ତାଙ୍କର ଚିନ୍ତାଧାରା ବହୁତ ବେଶୀ ନେତିମୂଳକ (ନେଗେଟିଭ୍) ଓ ନେହେରୁ ପ୍ରଭୃତିଙ୍କ ପ୍ରତି ଅତିମାତ୍ରାରେ ପୂର୍ବଗ୍ରହ ଦୁଷ୍ଟ ବୋଲି ମୋର ଧାରଣା ଥିଲା । ସେଥିପାଇଁ ତାଙ୍କୁ ପ୍ରାଧାନ୍ୟ ଦେବାର କେତେକ ବନ୍ଧୁଙ୍କର ଚେଷ୍ଟା ମତେ ଭଲ ଲାଗି ନଥିଲା । ମୋର ଧାରଣା ଯେ, ବିନୋବାଙ୍କୁ ଜେ.ପି. ଠାରୁ ଦୂରେଇ ଦେବାରେ ଏହିଭଳି କେତେକ ଅପରିପକ୍ୱ ଓ ଅପରିଣାମଦର୍ଶୀ କାର୍ଯ୍ୟ ମଧ୍ୟ ଦାୟୀ ବୋଲି ମୁଁ ଭାବୁଥିଲି । ମୋର ସନ୍ଦେହ ନାହିଁ ଯେ, କେତେକ ବନ୍ଧୁ ବିନୋବାଙ୍କ ବିରୋଧରେ କୃପାଳିନୀଙ୍କୁ ଏକ ବିକଳ୍ପ ନେତା ଭାବରେ ଛିଡ଼ା କରିବା ଚେଷ୍ଟା କରିଥିଲେ ।

ସର୍ବ ସେବା ସଂଘକୁ ଆସିଥିବା ସମସ୍ତ ପ୍ରତିନିଧି ଓ କର୍ମୀ ବିନୋବାଙ୍କୁ ଭେଟିବା ପାଇଁ ପଉନାର ଗଲେ ଓ ସେଠି ବିନୋବା ଉପବାସଦାନର ପ୍ରସ୍ତାବ ବାଢ଼ିଲେ । ବିନୋବାଙ୍କୁ

ପ୍ରତିରୋଧମୂଳକ ସତ୍ୟାଗ୍ରହର ଆବଶ୍ୟକତା ବିଷୟରେ ପ୍ରଶ୍ନ ପଚରା ହେଲା । ଜଣେ ଜଣଙ୍କ ଛାତି ଉପରେ ମାଡ଼ି ବସିଥିବ ତ ସେ ପ୍ରତିରୋଧ ନ କରି କ'ଣ କରିବ ? ବିନୋବା ଜବାବଦେଲେ ଯେ, ସେ ନିଜ ପାଇଁ ଠିକ୍ କରି ନେଇଛନ୍ତି ଯେ, ସେ ଶେଷ ପର୍ଯ୍ୟନ୍ତ ଅପରପକ୍ଷକୁ ବୁଝେଇ ଚାଲିବେ, ମାତ୍ର ସର୍ବ ସେବା ସଂଘ ସର୍ବସମ୍ମତି କ୍ରମେ ଯାହା କରିବାକୁ ସ୍ଥିର କରିବ ତାହା ସେ ମାନି ନେବେ । ସମସ୍ତେ ଯଦି ସର୍ବସମ୍ମତି କ୍ରମେ ପିସ୍ତଲ ରଖିବାକୁ ସ୍ଥିର କରନ୍ତି ତେବେ ତାକୁ ବି ସେ ମାନି ନେବେ । ମୋର ଧାରଣା ହେଲା ଯେ, ଏ ଉତ୍ତର ଦ୍ୱାରା ସେ ଅସଲ ପ୍ରଶ୍ନଟା ଏଡ଼େଇଗଲେ ଓ ପିସ୍ତଲ କଥା କହି ଏ ଭ୍ରମଧାରଣା ଉତ୍ପନ୍ନ କଲେ ଯେ, ତାଙ୍କରି "ଅନନ୍ତକାଳଯାଏ ବୁଝାଉଥିବା" ପନ୍ଥାଟା ହିଁ ଅହିଂସା ଓ ବାକି ସବୁ ହିଂସା ।

## ମୋର ବିଷାଦ ଯୋଗ

ଜେ.ପି.ଙ୍କୁ ତ ବରାବର ବିରୋଧ ରାଜନୀତିକ ଦଳର ଲୋକେ ନିର୍ବାଚନୀ ରାଜନୀତିରେ ପଶିବା ପାଇଁ ଟଣାଓଟରା କରୁଥାନ୍ତି । ୧୯୭୩ ର ଆରମ୍ଭରେ ବିଜୁ ପଟ୍ଟନାୟକ ଜେ.ପି.ଙ୍କ ସହିତ ଦେଖାକଲେ ଓ ତା'ପରେ ସେ ବିଷୟରେ ଜେ.ପି.ଙ୍କର ଏକ ବିବୃତି ବାହାରିଲା । ସେଥିରେ ଜେ.ପି. କହିଥାନ୍ତି ଯେ, ସେ ବିରୋଧୀ ଦଳମାନଙ୍କର ନେତୃତ୍ୱ ନେବାକୁ ରାଜି ନୁହନ୍ତି; ମାତ୍ର ସେମାନଙ୍କୁ ପରାମର୍ଶ ଦେବାକୁ ପ୍ରସ୍ତୁତ ଅଛନ୍ତି । ତେବେ ବିରୋଧୀ ଦଳମାନଙ୍କ ଭିତରେ ଏତେ ମତଭେଦ ଓ ନେତାମାନଙ୍କର ଉଚ୍ଚାଭିଳାଷା ଏତେ ଯେ ସେମାନେ ଏକାଠି ହେବା ଅତି କଠିନ ମନେ ହେଉଛି । ବିରୋଧୀ ଦଳମାନେ କେବଳ ଇନ୍ଦିରା ହଟାଓ ଧ୍ୱନି ଉପରେ ଏକାଠି ହେଲେ ଚଳିବ ନାହିଁ । ସେମାନଙ୍କୁ ଏକ ବୈପ୍ଳବିକ କାର୍ଯ୍ୟକ୍ରମ ଗ୍ରହଣ କରବାକୁ ହେବ ଇତ୍ୟାଦି । ଏ ବିବୃତିଟା ମତେ ବଡ଼ ଖରାପ ଲାଗିଲା । ବିରୋଧୀ ଦଳ ବୋଲନ୍ତେ ନାନା ପ୍ରକାରର ଦଳ, ମତବାଦର ଖିଚୁଡ଼ି, ସେମାନଙ୍କୁ ଏକାଠି କରି ବୈପ୍ଳବିକ ଆନ୍ଦୋଳନ କରିବା କଥା ଜେ.ପି. ଭାବୁଛନ୍ତି କିପରି ?

ତେବେ ବିନୋବା ମଧ୍ୟ ପ୍ରତ୍ୟକ୍ଷ ଓ ଉତ୍କଟ ସମସ୍ୟା ସବୁ ବିଷୟରେ ଭାବିବା ଛାଡ଼ିଦେଲା ପରି ଜଣା ପଡୁଥା'ନ୍ତି । ସେ ବ୍ରହ୍ମଚର୍ଯ୍ୟ ପ୍ରଚାର, ନାଗରୀଲିପି ପ୍ରଚାର, ଭକ୍ତିମାର୍ଗ ଆଦି କେତେକ କଥା ଉପରେ ଯେତେ ଗୁରୁତ୍ୱ ଦେଉଥାନ୍ତି ତାହା ମତେ ଅବାସ୍ତବ ଜଣାପଡୁଥାଏ । ଏସବୁ ଭିତରେ ଓଡ଼ିଶାରେ ଏକ ପରିସ୍ଥିତି ଉତ୍ପନ୍ନ ହେଲା । ବିଭିନ୍ନ ଆଡ଼ୁ ଟଙ୍କା ପଇସା ସଂକ୍ରାନ୍ତ ଦୁର୍ନୀତିର ଅଭିଯୋଗ ରଚନାତ୍ମକ କାମରେ ଲାଗିଥିବା ସଂସ୍ଥାମାନଙ୍କ ପ୍ରତି ଆସିଲା । କେତେକ ଖଦୀସଂସ୍ଥା ଖଦୀ କମିଶନ୍‌ଙ୍କୁ ମିଛ ହିସାବ ଦେଇ ବୁଣା ସବସିଡ଼ୀ ବାବଦ୍ ଅଧିକ ଟଙ୍କା ଆଦାୟ କରି ନେଇଛନ୍ତି ବୋଲି ଜଣାଗଲା । ଗ୍ରାମଦାନ ଗାଁମାନଙ୍କୁ ସରକାରଠାରୁ ଯେଉଁ ଆର୍ଥିକ ସାହାଯ୍ୟ ମିଳିଥିଲା ସେଥିରୁ କିଛି କିଛି ଟଙ୍କା ଅନ୍ୟକାମରେ ଖର୍ଚ୍ଚ କରିବା ଉଦ୍ଦେଶ୍ୟରେ କୌଣସି କୌଣସି ସଂସ୍ଥା ମାରଫତ୍‌ରେ ଜମା ରଖାଯାଇଛି ବୋଲି ଅଭିଯୋଗ ହେଲା । ଏସବୁ ଅଭିଯୋଗ ଅନୁସନ୍ଧାନ

କରାଯାଇ ସେଥିରେ ସତ୍ୟତାର ଅଂଶ ଥିବାର ଦେଖାଗଲା । ଏସବୁ ଗଲତିକୁ ସୁଧାରିବା ଉପରେ ଜୋର ଦିଆଯାଉଥାଏ । ପ୍ରାଦେଶିକ ସର୍ବୋଦୟ ମଣ୍ଡଳ ମଧ୍ୟ ଏ ସବୁର ପ୍ରତିକାର ପନ୍ଥା ଚିନ୍ତା କରୁଥାନ୍ତି । ଏତିକି ବେଳେ ଉତ୍କଳ ଖଦୀ ମଣ୍ଡଳର ବାଲେଶ୍ୱର ଜିଲ୍ଲାର ଏକ କେନ୍ଦ୍ରର ଦାୟିତ୍ୱରେ ଥିବା ଜଣେ କର୍ମୀଙ୍କ ବିରୋଧରେ ଦୁର୍ନୀତି,ଚୋରାବଜାର, ଜନାକାରୀ ଆଦି କେତେଗୁଡ଼ାଏ ଗୁରୁତର ଅଭିଯୋଗ କେତେକ ସ୍ଥାନୀୟ ଲୋକ ପକ୍ଷରୁ ଆସିଲା । ବାଲେଶ୍ୱର ଜିଲ୍ଲାର ମୁଖ୍ୟ ସର୍ବୋଦୟ କର୍ମୀ ସେ ସବୁ ଅଭିଯୋଗର ଯାଞ୍ଚ କରାଇବାର ଭାର ନେଲେ ଓ ଅନ୍ୟ କେତେଜଣ କର୍ମୀଙ୍କ ଦ୍ୱାରା ଯାଞ୍ଚ କରାଇଲେ । ଏ ଯାଞ୍ଚ ସମିତି ଅଭିଯୋଗଗୁଡ଼ିକ ଯଥାର୍ଥ ସାବ୍ୟସ୍ତ ହେଉଛି ବୋଲି ରିପୋର୍ଟ ଦେଲେ । ସେ ରିପୋର୍ଟ ପଢ଼ି ମୋର ଦୃଢ଼ ଧାରଣା ହେଲା ଯେ, ଏ ଅନୁସନ୍ଧାନ ଠିକ୍ ଭାବରେ କରାଯାଇ ନାହିଁ । ଅତି ଉପରଠାଉରିଆ ଭାବରେ କରାଯାଇଛି । ତେଣୁ ମୁଁ ଖଦୀ ମଣ୍ଡଳକୁ ପ୍ରସ୍ତାବ ଦେଲି ଯେ, ଏହାର ପୁନର୍ବାର ଅନୁସନ୍ଧାନ ବିଶ୍ୱନାଥ ପଟ୍ଟନାୟକ ଓ ଋଷି ବେହେରାଙ୍କ ଦ୍ୱାରା କରାଯାଉ । ଏଭଳି ପୁନର୍ବାର ଯାଞ୍ଚର ବିରୋଧ ବାଲେଶ୍ୱର ଜିଲ୍ଲାର କେତେକ କର୍ମୀଙ୍କ ଦ୍ୱାରା ହେଲା । ଏଇ ସମୟରେ ଭୁବନେଶ୍ୱରରେ ପ୍ରାଦେଶିକ କର୍ମୀ ଶିବିର ହେଉଥାଏ ଓ ସେଠିକି ଏ ବ୍ୟାପାରରେ ସଂପୃକ୍ତ ସମସ୍ତ କର୍ମୀ ଆସିଥାନ୍ତି । ସେମାନଙ୍କ ପକ୍ଷରୁ କୁହାଗଲା ଯେ, ଅଭିଯୋଗ ବାବଦରେ ଯାହା ହୁଏ ବୁଝାମଣା କର୍ମୀଙ୍କ ଭିତରେ ଉତ୍ପନ୍ନ ହୋଇଥିଲା ତାହା ଦୂର ହୋଇଗଲାଣି ଓ ସେ କର୍ମୀଙ୍କୁ ସେଠୁ ଅପସାରିତ କରିବାର ଦାବୀ ଆଉ କରାଯାଉ ନାହିଁ, ତେଣୁ ସାନି ଅନୁସନ୍ଧାନ ଅନାବଶ୍ୟକ ।

ମାତ୍ର ମୁଁ ସାନି ଅନୁସନ୍ଧାନ ଉପରେ ଜୋର ଦେଲି ଓ ସେଥିରୁ ପ୍ରକାଶ ପାଇଲା ଯେ ଦୁଇ ତିନୋଟି ଅତି ମାମୁଲି ଧରଣର ଅଭିଯୋଗ ଛଡ଼ା ବାକୀ ସବୁଗୁଡ଼ିକ ଅଭିଯୋଗ ମିଥ୍ୟା । ସ୍ପଷ୍ଟ ଦେଖାଗଲା ଯେ, ଉକ୍ତ ଖଦୀ କର୍ମୀଙ୍କ ସହିତ କେତେକ ସ୍ଥାନୀୟ ସର୍ବୋଦୟ କର୍ମୀଙ୍କର ମନାନ୍ତର ହେବାରୁ ତାଙ୍କ ବିରୋଧରେ ଜାଣିଶୁଣି ଏଭଳି ମିଥ୍ୟା ଅଭିଯୋଗ ଅଣାଯାଇଥିଲା ଓ ଲୋକଦେଖାଣିଆ ଯାଞ୍ଚ କରାଇ ସେ ସବୁ ଅଭିଯୋଗକୁ ଯଥାର୍ଥ ବୋଲି ଦର୍ଶାଯାଇଥିଲା । ବିଶ୍ୱସ୍ତ ସହକର୍ମୀଙ୍କର ଏ ପ୍ରକାରର ଆଚରଣ ମତେ ଘୋର ଆଘାତ ଦେଲା । ଏତିକିବେଳେ ପୁଣି କୋରାପୁଟରେ କାମ କରୁଥିବା ଆଉ ଜଣେ ଖଦୀ କର୍ମୀଙ୍କର ସ୍ପଷ୍ଟ, ପ୍ରମାଣିତ ଦୁର୍ନୀତିକୁ ଘୋଡ଼ାଇବା ପାଇଁ ସେଠାର ଜଣେ ମୁଖ୍ୟ କର୍ମୀ ନାନା ପ୍ରକାରର ଉଦ୍‌ଭଟ ଯୁକ୍ତି ବାଢ଼ିବାକୁ ଲାଗିଲେ । ସେ ସବୁ ଯୁକ୍ତି ପଛରେ ଥିବା ନୈତିକତାହୀନ ମନୋଭାବ ମଧ୍ୟ ମତେ ଆଘାତ ଦେଲା ।

ଏଥିପୂର୍ବରୁ କିଛି କାଳ ଧରି ସର୍ବୋଦୟ ଆନ୍ଦୋଳନର ଏକରକମର ଅଚଳ ଅବସ୍ଥା ଦେଖି ମୋର ବଡ଼ ନିରାଶା ହେଉଥାଏ ଓ ଭଲ ଭାବରେ ଚିନ୍ତା କରି ନିଜର ବାଟ ସ୍ଥିର କରିବାକୁ ହେବ ବୋଲି ମୁଁ ଅନୁଭବ କରୁଥାଏ । ମୋର ଏଇପ୍ରକାରର ମାନସିକ ସ୍ଥିତିରେ ଏ ସବୁ ଆଘାତ ଅସହ୍ୟ ବୋଧ ହେଲା । ତା' ସାଙ୍ଗକୁ ଜେ.ପି. ଓ ବିନୋବାଙ୍କର ବିଚିତ୍ର କାରବାରର ବୋଝ ମଧ୍ୟ ମନ ଉପରେ ଥାଏ । ଫେବୃୟାରୀ ୧୯୭୩ରେ ମୁଁ ଛଅମାସ ପାଇଁ ସାର୍ବଜନୀନ କାମରୁ

ଅଲଗା ହେବି ବୋଲି ସ୍ଥିର କଲି । ମୋର ଏ ନିଷ୍ପତ୍ତି ଜଣାଇ ମୁଁ ବଙ୍ଗସାହେବଙ୍କୁ ଯେଉଁ ଚିଠି ଲେଖିଲି ସେଥିରେ ଓଡ଼ିଶାର ଘଟଣାର ଆଭାସ ଦେବା ଛଡ଼ା ଏହା ମଧ୍ୟ ଲେଖିଥିଲି ଯେ, ସର୍ବୋଦୟ ଆନ୍ଦୋଳନର ଅଗ୍ରଗତି ରୁଦ୍ଧ ହେଇ ଯାଇଥିବାରୁ ଏକ ନିଷ୍ଫଳତା ବୋଧ ସମସ୍ତଙ୍କ ଭିତରେ ଆସିଛି । ଏଭଳି ଅବସ୍ଥାରେ ମଣିଷ ତା'ର କୌଣସି ଏକ ପୂର୍ବତନ ମାନସିକ ସ୍ଥିତିକୁ ଫେରିଯାଏ (ରିଗ୍ରେସ୍ କରେ) । ସେହି ଅନୁସାରେ ବିନୋବା ବର୍ତ୍ତମାନ ସନ୍ଥମାନଙ୍କର ଧରାବନ୍ଧା ପୁରୁଣା ନମୁନାକୁ ଫେରି ଯାଉଛନ୍ତି ଓ ଜେ.ପି. ରାଜନୀତିକ ନେତାର ସେହି ପ୍ରକାରର ନମୁନାକୁ ।

ଏ ଛଅମାସ ମୁଁ ପଢ଼ାଶୁଣା, ଛବି ଅଙ୍କା ଓ ଚିନ୍ତନମନନରେ ଲଗାଇଲି । ମୁଁ ୧୯୭୦ରେ ୟୁରୋପ ଯିବା ପୂର୍ବରୁ ଜର୍ମାନ ଭାଷା ଶିଖିବା ଆରମ୍ଭ କରିଥିଲି । ତାହା ଏବେ ଭଲ ଭାବରେ ଆୟତ୍ତ କରିବାରେ ଲାଗିଲି । ତେଲ ରଙ୍ଗରେ ଛବି ଆଙ୍କିବାର ଆକାଂକ୍ଷା ମୋର ଚାରି ବର୍ଷ ଖଣ୍ଡେ ତଳୁ ବିଶେଷ ଭାବରେ ଜାଗିଥିଲା । ଚିତ୍ରକର ଅନିଲଭାଇଠାରୁ ରଙ୍ଗ, ତୂଳି ଆଦି ସଂଗ୍ରହ କରି ରଖିଥିଲି । ତାହା ମଧ୍ୟ ଅଭ୍ୟାସ କରିବାର ଯଥେଷ୍ଟ ସମୟ ମିଳିଲା । ଛବି ଅଙ୍କଟା ତାହାପରେ ବି ମୋର ଚାଲୁ ରହିଲା ଓ ଭଲ ରକମ ପଇଟି ଗଲା । ବିଜ୍ଞାନର ସାମାଜିକ ତାତ୍ପର୍ଯ୍ୟ ବିଷୟରେ ମୁଁ କିଛି ପଢ଼ାପଢ଼ି କରୁଥିଲି ଓ କେତେକ ଚିନ୍ତା କରିଥିଲି । 'ସମାଜ ଓ ବିଜ୍ଞାନ' ନାଁ ଦେଇ ସେ ବିଷୟରେ ଖଣ୍ଡେ ବହି ଲେଖିବା ମଧ୍ୟ ଆରମ୍ଭ କରିଦେଲି । ଏମିତି ଭାବରେ ଏ ଛୁଟିର ପୂରା ସଦ୍‌ବ୍ୟବହାରର ଯୋଜନା ହେଲା ।

ଏହା ଭିତରେ ଦେଶର ସାଧାରଣ ପରିସ୍ଥିତି ଓ ସର୍ବୋଦୟ ଆନ୍ଦୋଳନର ଗତିବିଧି ବିଷୟରେ ମଧ୍ୟ ଚିନ୍ତା କରିବାର ଯଥେଷ୍ଟ ଅବସର ମିଳିଲା । ସର୍ବ ସେବା ସଂଘର ସେତେବେଳର ଅଧ୍ୟକ୍ଷ ସିଦ୍ଧରାଜଜୀ ଓ ସମ୍ପାଦକ ବଙ୍ଗସାହେବ ମୋ ସହିତ ମୋ ମନରେ ଥିବା ଚିନ୍ତା ବିଷୟରେ ଆଲୋଚନା କରିବା ପାଇଁ ତାହା ଭିତରେ ତିନି ଚାରିଦିନ ପାଇଁ କଟକ ଆସିଲେ ଓ ସେମାନଙ୍କ ସହିତ ଆଲୋଚନା ଦ୍ୱାରା ମଧ୍ୟ କେତେକ କଥା ଅଧିକ ସ୍ପଷ୍ଟ ହେଲା ଓ ମନର ବୋଝ ହାଲୁକା ହେଲା । ଅନେକ ଭାବିଚିନ୍ତି ମୁଁ ସ୍ଥିର କଲି ଯେ, ଦେଶ ଓ ସର୍ବୋଦୟ ଆନ୍ଦୋଳନର ହିତଦୃଷ୍ଟିରୁ ବିନୋବା ଓ ଜେ.ପି.ଙ୍କର ଚିନ୍ତାଧାରାରେ ଯେଉଁ ତ୍ରୁଟି ଅଛି ବୋଲି ମୁଁ ଅନୁଭବ କରୁଛି ସେ ବିଷୟରେ ସେମାନଙ୍କ ସହିତ ଖୋଲାଖୋଲି ଓ ନିର୍ଭୟରେ ଆଲୋଚନା କରିବାକୁ ହେବ । ମୋ ମନରେ ଯାହା ବିଚାର ଆସୁଛି ତାହା ଦୃଢ଼ ଭାବରେ ଦର୍ଶେଇବାକୁ ହେବ । ବିତର୍କକୁ ଡରି ବା ସର୍ବସମ୍ମତି ଖାତିରରେ ଚୁପ୍ ରହିଲେ ଚଳିବ ନାହିଁ । ବଡ଼ ନେତାଙ୍କ ପ୍ରତି ଯେଉଁ ମୁଲାହିଜା ଭାବ ଆସିଥାଏ, ବିରୋଧ ପ୍ରକଟ କରିବାରେ ଯେଉଁ ସଙ୍କୋଚ ଆସିଥାଏ, ସେ ସବୁକୁ ଛାଡ଼ିବାକୁ ହେବ ।

ବିନୋବାଙ୍କ ସହିତ ଯୁକ୍ତିତର୍କ କରିବା ତ ମୋ ପକ୍ଷରେ ସହଜ ଥିଲା; କିନ୍ତୁ ଜେ.ପି.ଙ୍କ ସହିତ ସେଭଳି ସହଜ ନ ଥିଲା । ଜେ.ପି. ବେଳେବେଳେ ଅଳ୍ପକରେ ଅବିଚଳିତ ହେଇ ପଡ଼ନ୍ତି, ସେଥିପାଇଁ ତାଙ୍କ ସହିତ ବେଶି ଯୁକ୍ତିତର୍କ କରିବାକୁ ସଙ୍କୋଚ ହୁଏ ବା ସାହସ ହୁଏ

ନାହିଁ । କିନ୍ତୁ ଏଥର ମୁଁ ସବୁ ସଙ୍କୋଚ ଓ ଭୟ ଏଡ଼େଇବାକୁ ସ୍ଥିରକରି ବିଜୁ ସହିତ ଜେ.ପି.ଙ୍କର ସାକ୍ଷାତ ସଂକ୍ରାନ୍ତ ବିବୃତି ଉପରେ ଗୋଟିଏ ଟିପ୍ପଣୀ ଲେଖି ଜେ.ପି.ଙ୍କୁ ପଠେଇଲି । ସେଥିରେ ମୋର ବକ୍ତବ୍ୟର ସାରାଂଶ ଏୟା ଥିଲା ଯେ, ଇନ୍ଦିରା ଯାହା ସବୁ ଅନୈତିକ କାର୍ଯ୍ୟ କରୁଛି ବୋଲି ହୁରି ପଡୁଛି ସେ ସବୁ ତାହା ପୂର୍ବରୁ ମଧ୍ୟ ବଡ଼ବଡ଼ କଂଗ୍ରେସ ନେତାମାନେ କରୁଥିଲେ । ତେଣୁ କଂଗ୍ରେସରୁ ମୋରାରଜୀ ଆଦିଙ୍କ ବିତାଡ଼ନରେ ବ୍ୟଥିତ ହେବାର କିଛି ନାହିଁ । ମୁଖ୍ୟ ବିରୋଧୀ ଦଳଗୁଡ଼ିକ ଆଦୌ ବିପ୍ଳବରେ ଆସ୍ଥା ରଖନ୍ତି ନାହିଁ, ତେଣୁ ସେମାନେ ବୈପ୍ଳବିକ କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହେଉନାହାନ୍ତି ବୋଲି ନିରାଶ ହେବାର ସେମାନେ କ'ଣ ? ଲୋକନୀତି କେବଳ ଗୋଟାଏ ନିର୍ଦ୍ଦଳୀୟତା ଆଦି ବାବଦରେ କେତେଗୁଡ଼ିଏ ନୀତି ସୂତ୍ରନୁହେଁ । ଏହା ସମଗ୍ର ପରିସ୍ଥିତିକୁ ଲେଖିବାର ଏକ ଦୃଷ୍ଟି ଯାହା ଗତାନୁଗତିକ ଦୃଷ୍ଟିଠାରୁ ଭିନ୍ନ । ତେଣୁ ଆମେ ଯାହା କହିବା ବା ଯେଉଁ ବିଶ୍ଳେଷଣ କରିବା ସେଥିରେ ଆମର ଦୃଷ୍ଟିଭଙ୍ଗୀର ସେ ବୈଶିଷ୍ଟ୍ୟ ପ୍ରକଟ ହେବା ଚାହି ।

ସୁପ୍ରିମକୋର୍ଟର ପ୍ରଧାନ ବିଚାରପତିଙ୍କ ନିଯୁକ୍ତି ନେଇ ଯେଉଁ ଚହଳ ସୃଷ୍ଟି ହେଇଥିଲା ସେ ବିଷୟରେ ମୁଁ ଲେଖିଥିଲି ଯେ, କେବଳ ପରମ୍ପରା ରକ୍ଷା ହେଲେ ଲୋକେ ନ୍ୟାୟ ପାଇବେ ଏପରି କଥା ନୁହେଁ, ଏବେ ତ ନ୍ୟାୟ ବ୍ୟବସ୍ଥା ଏପରି ଯେ, ଶତକଡ଼ା ନବେ ଲୋକ ନ୍ୟାୟ ପାଇବାରୁ ବଞ୍ଚିତ ହେଉଛନ୍ତି। ଏଭଳି ସବୁ ବିଷୟରେ ଆମର ସ୍ୱତନ୍ତ୍ର ଦୃଷ୍ଟି ଲୋକଙ୍କ ଆଗରେ ରଖାଯିବା ଚାହି । ବାଙ୍ଗାଲୋରରେ ମୁଁ ଯାହା କହିଥିଲି ତାହା ମଧ୍ୟ ଏଥିରେ ଦୋହରେଇଥିଲି ଯେ, ଇନ୍ଦିରା ଗରିବୀ ହଟାଅ ସତକୁ ସତ କରିଦେବ ବୋଲି ଗରିବ ଲୋକଙ୍କ ଭିତରେ ଆଶା ଓ ନ୍ୟସ୍ତସ୍ୱାର୍ଥଙ୍କ ଭିତରେ ଆଶଙ୍କା ଜନ୍ମିଛି । ଆମର ସମାଲୋଚନା ଓ କାର୍ଯ୍ୟ ନ୍ୟସ୍ତସ୍ୱାର୍ଥଙ୍କ ଦୃଷ୍ଟିକୋଣ ସହିତ ଗୋଳେଇ ମିଶି ଯିବା ଉଚିତ ନୁହେଁ ।

## ଜେ.ପି. ଓ ବିନୋବାଙ୍କ ସହ ଆଲୋଚନା

ଏ ଲେଖା ପାଇ ଜେ.ପି. ମତେ ପାଟନା ଡକେଇଲେ । ଇତି ମଧ୍ୟରେ ପ୍ରଭାବତୀ ଦେବୀଙ୍କର ଦେହାନ୍ତ ହେଇଯାଇଥାଏ ଓ ଜେ.ପି. ଅତ୍ୟନ୍ତ ମ୍ରିୟମାଣ ଅବସ୍ଥାରେ ଥା'ନ୍ତି । ତଥାପି ସେ ମତେ ଦେଖା କରିବା ପାଇଁ ତାର କଲେ ଓ ବୋଉ ହାତରେ ଖବର ମଧ୍ୟ ଦେଲେ । ବୋଉ ହେରିକା ପ୍ରଭାବତୀ ଦେବୀଙ୍କ ମୃତ୍ୟୁ ସମ୍ବାଦ ପାଇ ଜେ.ପି.ଙ୍କୁ ସଙ୍ଗୋଳିବାକୁ ପାଟନା ଯାଇଥିଲେ ।

ପାଟନାରେ ମୁଁ ପ୍ରଭାବତୀ ଦେବୀଙ୍କର ଶ୍ରାଦ୍ଧର ପୂର୍ବଦିନ ପହଞ୍ଚିଲି । ଜେ.ପି. ବହୁତ ବ୍ୟସ୍ତଥାନ୍ତି । ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ନଥାଏ । ତଥାପି ସେ ପ୍ରଭାବତୀ ଦେବୀଙ୍କ ଶ୍ରାଦ୍ଧର ସମସ୍ତ ଅନୁଷ୍ଠାନ ସରିବାପରେ ରାତିରେ ମୋ ପାଇଁ ସମୟ ଦେଲେ । ସେ ବିରୋଧୀ ଦଳମାନଙ୍କ ସହିତ ସଂଶ୍ଳିଷ୍ଟ ହେବାରେ ଓ ବିଜୁ ସହିତ ଦେଖା କରିବା ଓ ବିବୃତି ଦେବା ବାବଦରେ ମୋର

ଯାହା ଆପତ୍ତି ଥିଲା ଓ ମୋର ବକ୍ତବ୍ୟଟା ମୁଁ ମୋଟାମୋଟି ବୁଝାଇଲି । ବିଜୁ ବିଷୟରେ ଜେ.ପି କହିଲେ ଯେ, ତାଙ୍କ ସହିତ ଦେଖା କରିବାକୁ ଯେ କେହି ଆସିଲେ ସେ ମନା କରି ପାରନ୍ତି ନାହିଁ, ତାଙ୍କର ସ୍ୱଭାବଟା ହିଁ ସେମିତି । ସେଦିନ ଅଧିକ ଚର୍ଚ୍ଚା ପାଇଁ ସମୟ ନ ଥିଲା । ପରେ ସେ କଲିକତା ଗଲେ ସେଠି ଆଲୋଚନା ପାଇଁ ଅଧିକ ସମୟ ମିଳିବ ବୋଲି କହିଲେ ।

ଅଳ୍ପଦିନ ପରେ ତାଙ୍କ ଡାକରାରେ ମୁଁ କଲିକତା ଗଲି । ସେଠି ତାଙ୍କ ସହିତ ତିନି ଦିନରେ ଚାରି, ସାଢ଼େ ଚାରି ଘଣ୍ଟା ଆଲୋଚନା ହେଲା । ସେ ମୋର ଦୃଷ୍ଟିକୋଣଟା ଭଲରୂପେ ବୁଝିବା ପାଇଁ ଚାହୁଁଥାନ୍ତି ଓ ତାଙ୍କର ନିଜର ଦୃଷ୍ଟିଟା ମଧ ବୁଝାଇବା ଚେଷ୍ଟା କରୁଥାନ୍ତି । ଏହା ଫଳରେ ଆମେ ଉଭୟେ ଉଭୟଙ୍କର ବିଚାର କେତେକଟା ଅଧିକ ବୁଝିପାରିଲୁ । ଏ ଆଲୋଚନାର ଦୁଇ ତିନୋଟି ବିଚାର ଏଠି ଉଲ୍ଲେଖ କରୁଛି । ଜେ.ପି. ମତବ୍ୟକ୍ତ କଲେ ଯେ ଇନ୍ଦିରା ବର୍ତ୍ତମାନ କଂଗ୍ରେସକୁ ଯେଉଁ ଦିଗକୁ ନେଉଛି ଲାଲବାହାଦୂର ଥିଲେ  ସେ ଭଳି କରି ନଥାନ୍ତେ । ମୁଁ କହିଲି ଯେ, କଂଗ୍ରେସର ଯାହା  ଚରିତ୍ର ସେଥିରେ ଲାଲବାହାଦୁର ତାକୁ ମୂଳରୁ ଉପାଡ଼ି କରି ନୂଆ କରି ସଜେଇଥାନ୍ତେ ତ ଅଲଗା କଥା, ନ ହେଲେ ସେ ତାକୁ ପାରି ନ ଥାନ୍ତେ । ତଳେ "ଘାସଚେର" ସ୍ତରରେ ଯେତେକ ଟାଉଟର, କଣ୍ଟ୍ରୋଲ ଜିନିଷ କଳାପୋତେଇ କରୁଥିବା ଡିଲର, ଗୁଣ୍ଡା ଶ୍ରେଣୀର ଲୋକେ, ଏମାନେ ହି ତାଙ୍କର ହାତଗୋଡ଼ ଓ ଉପରେ ପୁଞ୍ଜିପତିଙ୍କ ପଇସା, ଏ ଦୁହିଁଙ୍କ ମେଳରେ କଂଗ୍ରେସ ଚଳୁଛି । ନିର୍ବାଚନ ଏହାରି ବଳରେ ଚଳୁଛି । ଯାକୁ ବଦଳାଇବାକୁ ହେଲେ ନିର୍ବାଚନ ହାରିବୁ ପଛେ ଦୁର୍ନୀତି କରିବୁ ନାହିଁ, ଏପରି ଦୃଢ଼ ମନୋଭାବ ଲୋଡ଼ା । କଂଗ୍ରେସର ନେତା ଓ କର୍ମୀଙ୍କୁ ଲାଲବାହାଦୂର ଏହା ଗ୍ରହଣ କରିବାକୁ ରାଜି କରାଇ ପାରିଥାନ୍ତେ କି ?

ଜେ.ପି. ଏହା ସହିତ ମୋଟାମୋଟି ଏକମତ ହେଲେ, ମାତ୍ର କଂଗ୍ରେସର ଦୁର୍ନୀତି ଓ ଏକଛତ୍ର କ୍ଷମତା ପ୍ରୟୋଗ ପୂର୍ବାପେକ୍ଷା ବହୁତ ବଢ଼ି ଯାଇଛି ଓ ତାହାର ପରିମାଣ ବୃଦ୍ଧି ଯୋଗୁଁ ସେଥିରେ ଗୁଣାତ୍ମକ ପରିବର୍ତ୍ତନ ହେଇଛି ବୋଲି ସେ କହିଲେ (ଏ ଗୁଣାତ୍ମକ ପରିବର୍ତ୍ତନର ଗୁରୁତ୍ୱ ମୁଁ ପରେ ଉପଲବ୍ଧି କଲି) । ଶାସକ ହୁଅନ୍ତୁ ବା ବିରୋଧୀ ଦଳ ହୁଅନ୍ତୁ ସବୁ ରାଜନୀତିବାଲା ଲୋକଙ୍କୁ କାଠ କଣ୍ଢେଇ ପରି ବ୍ୟବହାର କରନ୍ତି ବୋଲି କହିବାରୁ ଜେ.ପି. କହିଲେ – "ହଁ ସେ କଥା ଠିକ୍, କିନ୍ତୁ ସମସ୍ତଙ୍କ ଭିତରେ କମ୍ୟୁନିଷ୍ଟମାନେ ହିଁ ଏ ବିଷୟରେ ସବୁଠୁଁ ବେଶୀ ଦକ୍ଷ ।" ଭବିଷ୍ୟତ ଆର୍ଥିକ ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା ପ୍ରସଙ୍ଗରେ ସେ ମତଦେଲେ ଯେ ବର୍ତ୍ତମାନ ପ୍ରାକୃତିକ ପରିବେଶର ପ୍ରଦୂଷଣ, ପ୍ରାକୃତିକ ସମ୍ପଦର ଅପଚୟ ଆଦି ବିଷୟରେ ଯେଉଁ ଚିନ୍ତା ଦୁନିଆରେ ଦେଖାଦେଇଛି  ତାହା ଯୋଗୁଁ ପାଶ୍ଚାତ୍ୟ ଅର୍ଥନୀତିରେ ଆଗକୁ ବହୁତ କିଛି ପରିବର୍ତ୍ତନ ଘଟିବ ଓ ତାହାପରେ ବେସରକାରୀ ଘରୋଇ ଶିଳ୍ପ ବାଣିଜ୍ୟ ହିଁ ସବୁଠାରୁ ସନ୍ତୋଷଜନକ ବ୍ୟବସ୍ଥା ହେବ । ସେତେବେଳେ ଏ ବିଷୟରେ ମୁଁ ମୋର ସନ୍ଦେହ ପ୍ରକାଶ କରିବାର ସୁଯୋଗ ସମୟ ଅଭାବରୁ ପାଇ ନଥିଲି ।

ଜେ.ପି.ଙ୍କ ସହିତ ଆଲୋଚନା ବିଷୟରେ ମୁଁ ପରେ ଚିନ୍ତାକରି ଦେଖିଲି ଯେ, ମୋର

ମତଟା ମୁଁ ଖୁବ୍ ଆକ୍ରମଣ ଢଙ୍ଗରେ ଜେ.ପି.ଙ୍କୁ ବୁଝେଇ ତାଙ୍କର ମତ ପରିବର୍ତ୍ତନ କରାଇବା ଉଦ୍ଦେଶ୍ୟ ନେଇ କଥାବାର୍ତ୍ତା କରୁଥାଏ । ଜେ.ପି. ମୋ କଥା ଖୁବ୍ ଧୈର୍ଯ୍ୟର ସହିତ ଶୁଣୁଥାନ୍ତି ଓ ତାଙ୍କର ମତାମତ ଏକ ରକମ ମୃଦୁ ଭାବରେ ଦେଉଥାନ୍ତି । ମାତ୍ର ଶେଷକୁ ତାଙ୍କ ମତର ପ୍ରଭାବ ମୋ ଉପରେ ଅଧିକ ପଡ଼ିଛି ଓ ମୁଁ ଅଧିକ ବଦଳିଛି ବୋଲି ଅନୁଭବ କଲି ।

ଜେ.ପି. ଏହାପରେ ଗାନ୍ଧୀଜୀଙ୍କର ଟ୍ରଷ୍ଟିସିପ୍ ବା ନ୍ୟାସିବାଦ କଳ୍ପନାକୁ ଗୁରୁତ୍ୱ ଦେଇ ତା'ର ପ୍ରଚାର ଆରମ୍ଭ କରିଥିଲେ ଓ ତାକୁ କାର୍ଯ୍ୟକାରୀ କରିବା ପାଇଁ ସେ ଦିଗରେ ଏ ଛୋଟ କାଟିଆ ଆନ୍ଦୋଳନ ଆରମ୍ଭ କରିଥିଲେ । ଗୋବିନ୍ଦରାଓ ଦେଶପାଣ୍ଡେ ଏ ଦିଗରେ ବମ୍ବେର ଶିଳ୍ପପତିଙ୍କ ଭିତରେ କାମ ଆରମ୍ଭ କରିଥିଲେ ଓ ଦେଶର ବିଭିନ୍ନ ଅଞ୍ଚଳରେ 'ଶିଳ୍ପ ବାଣିଜ୍ୟର ସାମାଜିକ ଦାୟିତ୍ୱ' ଉପରେ ଅନେକ ଗୁଡ଼ିଏ ବିଚାର ଗୋଷ୍ଠୀ ଆୟୋଜିତ ହେଉଥିଲା ।

ମୋର କାମରୁ ଅଲଗା ହେବା କଥାଟା ବିନୋବାଙ୍କ ଠାରେ ମଧ୍ୟ ପହଞ୍ଚିଥିଲା । ଛଅମାସ ପୂରିବାରୁ ମୁଁ ଅଗଷ୍ଟ ମାସରେ ବିନୋବାଙ୍କୁ ଭେଟିବାକୁ ପଉନାର ଗଲି । ବିନୋବା ଓ ଜେ.ପି.ଙ୍କର ଆଭିମୁଖ୍ୟରେ ଯେଉଁ ପାର୍ଥକ୍ୟ ଦେଖାଦେଇଛି ତାକୁ ଭଲ ଭାବରେ ବୁଝି ସେଥିରୁ ଉଧୁରିବାର ବାଟ ବାହାର କରିବା ପାଇଁ ଚେଷ୍ଟା କରିବା ଉଚିତ ବୋଲି ମୁଁ ବିଚାରିଥାଏ । ତେଣୁ ଜେ.ପି.ଙ୍କର ମତାମତ, ତା' ଉପରେ ମୋର ଟିପ୍ପଣୀ ଓ ସାଧାରଣ ରାଜନୀତିକ ପରିସ୍ଥିତିର ମୂଲ୍ୟାଙ୍କନ ବିଷୟରେ ମୁଁ ବିନୋବାଙ୍କ ସହିତ ଆଲୋଚନା କରିବାକୁ ଚାହିଁଥିଲି । କିନ୍ତୁ ସେ ବିଷୟକୁ ସେ ବରାବର ଟାଳିଲେ ଓ ବ୍ରହ୍ମଚର୍ଯ୍ୟ, ନାଗରୀଲିପି ପ୍ରଚାର ଓ ଭକ୍ତିମାର୍ଗର ତାତ୍ପର୍ଯ୍ୟ ଓ ଆବଶ୍ୟକତା ଉପରେ ହିଁ କହି ଚାଲିଲେ । ମୋର ସେଠି ଚାରିଦିନ ରହିବାର ଥାଏ । ବ୍ରହ୍ମଚର୍ଯ୍ୟ ଆଦି କେତେଗୁଡ଼ାଏ କଥା ଅଛି ଯେଉଁ ବିଷୟରେ ବିନୋବାଙ୍କ ଭଳି ସାଧୁସନ୍ଥଙ୍କ ନିକଟରେ ନିଜର ସ୍ପଷ୍ଟ ମତାମତ ପ୍ରକାଶ କରିବାକୁ ଅଧିକାଂଶ ଲୋକ ସଙ୍କୋଚ ଅନୁଭବ କରନ୍ତି । ମୋର ମଧ୍ୟ ସେହି ଭଳି ଟିକେ ସଂକୋଚ ଥିଲା, ମାତ୍ର ମୁଁ ବିଚାରିଥିଲି ଯେ ବିନୋବା ଏ ବିଷୟ ଉପରେ ଏତେ ଜୋର୍ ଦେଇଛନ୍ତି ତ ଏଇ ବିଷୟରେ ହିଁ ଆଲୋଚନା କରାଯାଉ ଓ ସଂକୋଚ ନ ରଖି ସ୍ପଷ୍ଟ ମତାମତ ତାଙ୍କୁ ଶୁଣାଇ ଦିଆଯାଉ ।

ସେ କହିଲେ ଯେ, ବର୍ତ୍ତମାନ ଲୋକସଂଖ୍ୟା ବୃଦ୍ଧି ରୋକିବା ଦୃଷ୍ଟିରୁ ସଂଯମ ଏକ ସାମାଜିକ ଆବଶ୍ୟକତା ହେଲାଣି ତେଣୁ ବ୍ରହ୍ମଚର୍ଯ୍ୟର ବ୍ୟାପକ ପ୍ରଚାର ଆବଶ୍ୟକ । ଏ ବିଚାରର ଆଲୋଚନା କରି ମୁଁ କହିଲି ଯେ, ବର୍ତ୍ତମାନର ଆର୍ଥିକ ବ୍ୟବସ୍ଥାର ଦୋଷ ଯୋଗୁଁ ଯେଉଁ ଦୂରବସ୍ଥା ଗରିବ ଲୋକେ ଭୋଗୁଛନ୍ତି ତା'ର ପ୍ରକୃତ କାରଣକୁ ଏଡ଼େଇଯାଇ ଶାସକ ଶ୍ରେଣୀ ଗରିବ ଲୋକଙ୍କ ମୁଣ୍ଡରେ ହିଁ ଦୋଷ ଲଦି ଦେଉଛି ଯେ, ତମେ ଏତେ ପିଲାଛୁଆ ଜନ୍ମ କରୁଛ ବୋଲି ହିଁ ଏ ଦୁର୍ଦ୍ଦଶା ଭୋଗୁଛ । ଆମେ ବି ବ୍ରହ୍ମଚର୍ଯ୍ୟ ପ୍ରଚାର କରିବାକୁ ଯାଇ ସେଇ କଥା କହିବୁ । ଯେଉଁ ଲୋକ ଅସହାୟ ହୋଇ ରହିଛନ୍ତି, ଯାହାଙ୍କର ନିଜର ଭାଗ୍ୟ ନିୟନ୍ତ୍ରଣର ଶକ୍ତି ନାହିଁ ସେମାନଙ୍କୁ ବ୍ରହ୍ମଚର୍ଯ୍ୟର ଉପଦେଶ ଦେବାଟା ଘୋଡ଼ା ଆଗରେ ଗାଡ଼ି ଯୋଚିବା କଥା ହେବ ।

ଏହାଛଡ଼ା ମୁଁ ଏକଥା ମଧ୍ୟ କହିଲି ଯେ, ବର୍ତ୍ତମାନର ସମାଜରେ ସ୍ତ୍ରୀକୁ ଯେଉଁପରି ଦବେଇ ଦ୍ୱିତୀୟ ଶ୍ରେଣୀର ନାଗରିକ କରି ରଖା ହେଇଛି ତାହା ବଦଳି ସ୍ତ୍ରୀ ଓ ପୁରୁଷ ଭିତରେ ସମାନତାର ସଂପର୍କ ଓ ମୈତ୍ରୀ ଭାବ ଆସିବା ସୁସ୍ଥ ସମାଜର ବିକାଶ ପାଇଁ ସର୍ବୋଦୌ ଆବଶ୍ୟକ । ଏଥିରେ ସ୍ତ୍ରୀ ପୁରୁଷଙ୍କର ଦୈହିକ ସଂପର୍କର ମଧ୍ୟ ଏକ ଭୂମିକା ରହିଛି । ସେଥିପାଇଁ, ମୁଁ ବ୍ୟକ୍ତି ପାଇଁ ବ୍ରହ୍ମଚର୍ଯ୍ୟର ଆଧ୍ୟାତ୍ମିକ ମୂଲ୍ୟ ବୁଝୁଥିଲେ ମଧ୍ୟ ପରିବାର ନିୟନ୍ତ୍ରଣର କୃତ୍ରିମ ପନ୍ଥାର ବିରୋଧୀ ନୁହେଁ । ତା'ର ଆବଶ୍ୟକତା ମଧ୍ୟ ବୁଝେ ।

ବିନୋବା ଏ ସବୁର ଉତ୍ତରରେ ତାଙ୍କର ବିଚାର ବିସ୍ତୃତ ଭାବରେ ବୁଝାଇଥିଲେ । ପ୍ରାଚୀନ ଭାରତରେ ନାରୀର ସ୍ଥାନ ଖୁବ୍ ଉଚ୍ଚରେ ଥିଲା ବୋଲି ସେ ସାବ୍ୟସ୍ତ କଲେ । ଅତୀତରେ ଯାହା ଥାଉ ବର୍ତ୍ତମାନ ତାହା ବହୁତ ନୀଚରେ ବୋଲି ମୁଁ କହିଲି । ଏ କଥା ସେ ସ୍ୱୀକାର କଲେ ଓ ଏ ସ୍ଥିତି ବଦଳାଇବା ଆବଶ୍ୟକ ବୋଲି ମାନିଲେ । ଏଇ ଗୋଟିଏ ବିଷୟ ଛଡ଼ା ବାକି ସବୁ କଥାରେ ଆମେ ନିଜ ନିଜ ବିଚାରରେ ଦୃଢ଼ ରହିଲୁ । ବିନୋବା କହିଲେ ଯେ, ମନମୋହନ ତ ଏକ ଥେସିସ୍ ଲେଖି ଥୋଇଛି । ତାର ଯଥୋଚିତ ଉତ୍ତର ଦେବାକୁ ହେଲେ ତିନି ଚାରି ଶହ ପୃଷ୍ଠାର ଏକ ବହି ଲେଖିବାକୁ ହେବ ।

ଆଲୋଚନାର ଶେଷ ଆଡ଼କୁ ମୁଁ ପୁଣି ଦେଶର ସାଧରଣ ପରିସ୍ଥିତି କଥା ଉଠାଇଲି । ସେଥିରେ ଆଶାପ୍ରଦ ଓ ନିରାଶଜନକ ଉପାଦାନ କ'ଣ କ'ଣ ରହିଛି ତାହା ପଚାରିଲି । ତାର ପୂର୍ବଦିନ ନିର୍ମଳା ଆସି ମୋ ସାଙ୍ଗରେ ବହୁତ ଗପ କରିଥିଲା ଓ ବିନୋବାଙ୍କ ସହିତ ଆଲୋଚନାର ଗତିବିଧି ବିଷୟରେ ମୁଁ ମୋର ଅସନ୍ତୋଷ ବ୍ୟକ୍ତ କରିଥିଲି । ସେ ହୁଏତ ବିନୋବାଙ୍କୁ ତାହା କହିଥିବ । ତେଣୁ ପରଦିନ ମୋର ଉପରୋକ୍ତ ମର୍ମର ପ୍ରଶ୍ନକୁ ପୂରାପୂରି ଏଡ଼େଇ ନ ଦେଇ ଉତ୍ତରରେ ବିନୋବା କହିଲେ ଯେ, ବର୍ତ୍ତମାନ ପରିସ୍ଥିତିରେ ଆଶାର ଲକ୍ଷଣ ହେଉଛି ଯେ, ଲୋକଙ୍କ ଭିତରେ ଭକ୍ତିଭାବ ରହିଛି । ଲୋକେ ତୀର୍ଥସ୍ଥାନମାନଙ୍କୁ ଲକ୍ଷ ଲକ୍ଷ ସଂଖ୍ୟାରେ ଯାତ୍ରା କରୁଛନ୍ତି । ନିରାଶାର କଥା ହେଲା ଯେ ଗାଉଁଲି ଲୋକଙ୍କ ଭିତରେ ବି ଏବେ ଲେଖାପଢ଼ା ଶିଖିବାର ଆକାଂକ୍ଷା ବ୍ୟାପିଲାଣି । ଏହା ଫଳରେ ସେମାନଙ୍କର ମସ୍ତିଷ୍କ ଧୋଇଲେ ସହଜ ହେବ । ଏ ସବୁ ବିଷୟରେ ସେ ବହୁତ କଥା କହିଲେ । ସେ ସବୁ କଥା ମୋ ତଣ୍ଟିରେ ନ ଗଳିଲେ ବି ସମୟ ଅଭାବରୁ ତା' ଉପରେ ଆଲୋଚନା ହେଇ ପାରିଲା ନାହିଁ ।

ବିନୋବା କହୁଥାନ୍ତି ଯେ, ସେ ବର୍ତ୍ତମାନ ରାଷ୍ଟ୍ର କଥା ଭାବୁ ନାହାନ୍ତି, ଜାଗତିକ ପରିସ୍ଥିତି ବିଷୟରେ ଚିନ୍ତା କରୁଛନ୍ତି । ସେଇ ପ୍ରସଙ୍ଗରେ ସେ ବଙ୍ଗଳାଦେଶର ମୁକ୍ତି, ଆମେରିକା ଓ ସୋଭିଏତ୍ ଦେଶ ମଧ୍ୟରେ ଶୀତଳ ଯୁଦ୍ଧର ଅବସାନ, ଚୀନ ଓ ଆମେରିକା ଭିତରେ ବୁଝାମଣାର ସୂତ୍ରପାତ ଆଦି ଘଟଣାକୁ ଭବିଷ୍ୟତ ଦୃଷ୍ଟିରୁ ଖୁବ୍ ଆଶାପ୍ରଦ ଘଟଣା ବୋଲି ଉଲ୍ଲେଖ କରିଥିଲେ । ମୁଁ କହିଲି ଯେ, ମୁଁ ଦୁନିଆରେ ଚାଲିଥିବା ମୁକ୍ତି ଆନ୍ଦୋଳନ, ଆମେରିକାର ନିଗ୍ରୋମାନଙ୍କର ସମାନ ଅଧିକାର ପାଇଁ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଆଦିରୁ ପ୍ରେରଣା ପାଏ । ଗତାନୁଗତିକ କୂଟନୈତିକ ଉଦ୍ୟମର ପରିଣାମକୁ ଅଧିକ ଗୁରୁତ୍ୱ ଦିଏ ନାହିଁ । ଏ ବିଷୟରେ ମଧ୍ୟ ବିନୋବା କେତେଗୁଡ଼ିଏ ସାଧାରଣ କଥା କହିଲେ । କୌଣସି ନୂତନ ଆଲୋକ ମିଳିଲା ନାହିଁ ।

# ପଓନାରରେ କର୍ମୀ ଶିବିର

ପୁଣି ଅକ୍ଟୋବର ମାସରେ ପଓନାର ଆଶ୍ରମରେ ସାରା ଦେଶର ମୁଖ୍ୟ କର୍ମୀମାନଙ୍କର ଗୋଟାଏ ଲମ୍ବା ଶିବିର ହେଲା, ଆଠ ଦିନ ଯାଏ । ଏଥିରେ ସର୍ବୋଦୟ ଆନ୍ଦୋଳନର ବିବିଧ ବିଭାବ ଓ ସମସ୍ୟା ବିଷୟରେ ବହୁତ ଆଲୋଚନା ହେଲା । ବିନୋବା ତ ପୂର୍ବରୁ ଉପବାସଦାନର ଯୋଜନା ବାଢ଼ିଥିଲେ, ଏ ଶିବିରରେ ସେ ପୁଣି ତାହାରି ଉପରେ ଜୋର୍ ଦେଲେ ଓ ପ୍ରତ୍ୟେକ ରାଜ୍ୟର କର୍ମୀମାନଙ୍କୁ ତାହା ସଂଗ୍ରହ କରିବା ପାଇଁ ସଂକଳ୍ପ କରାଇବାକୁ ଆରମ୍ଭ କଲେ । ସେଠି ସର୍ବ ସେବା ସଂଘର ବୈଠକ ହେଉ ନଥିଲା କି ରାଜ୍ୟମାନଙ୍କରୁ ପ୍ରତିନିଧି ସ୍ଥାନୀୟ କର୍ମୀ ଆସି ନଥିଲେ । ରାଜ୍ୟର ଅନ୍ୟ କର୍ମୀଙ୍କ ସହିତ ପରାମର୍ଶ ନ କରି କୌଣସି ସଂଖ୍ୟା କହିଦେବା ଓ ସେଥିପାଇଁ ସଂକଳ୍ପ କରିଦେବା ସେଠି ଉପସ୍ଥିତ କର୍ମୀଙ୍କ ପକ୍ଷରେ ଅନଧିକାର ଚର୍ଚ୍ଚା ହେଇଥାନ୍ତା । ମାତ୍ର ମୁଁ ଦେଖିଲି ଯେ, ନିଜର କୌଣସି ଗୋଟାଏ ବିଚାର ଲଦିବାବେଳେ ବିନୋବା ସର୍ବସମ୍ମତି କଥା ମୋଟେ ଖିଆଲରେ ରଖୁନାହାନ୍ତି । ରାଜ୍ୟର କର୍ମୀମାନେ ବସି ବିଚାର କରି ନିଷ୍ପତ୍ତି ଗ୍ରହଣ କରିବେ, ସେଥିପାଇଁ ଅପେକ୍ଷା ନାହିଁ । ସଂଖ୍ୟା ବିଷୟରେ ତାଙ୍କର ଆବେଶ ବା ଆସକ୍ତି ହେଇଯାଇଛି । ବଡ଼ ବଡ଼ ସଂଖ୍ୟାର ସଂକଳ୍ପ କର୍ମୀମାନଙ୍କ ଦ୍ୱାରା କରାଇ ନେବାକୁ ସେ ବ୍ୟଗ୍ର, ତାହା ପୂରଣ କରିବା ବାଟରେ ଯେଉଁସବୁ ବ୍ୟାବହାରିକ ସମସ୍ୟା ଉଠିବ ଓ କ୍ଷମତା ବହିର୍ଭୂତ ସଂକଳ୍ପ ବିନୋବାଙ୍କ ଉପସ୍ଥିତିରେ ମୁଲାହିଜାରେ କରିଦେଇ ତାକୁ ପୂରଣ ନ କରିବା ଯୋଗୁଁ କର୍ମୀଙ୍କ ଭିତରେ ଯେଉଁ ଆତ୍ମବିଶ୍ୱାସ ହାନି ଘଟିବ ସେଥିକୁ ତାଙ୍କର ଆଦୌ ପରବାୟ ନାହିଁ ।

ଏଇ ଶିବିରରେ ଜେ.ପି. ମଧ୍ୟ ଶେଷ ଆଡ଼କୁ ଆସି ପହଞ୍ଚିଲେ । ଦିନେ ଜେ.ପି.ଙ୍କ ଉପସ୍ଥିତିରେ ବିନୋବା ଶିବିରରେ ଏକ ମନ୍ତବ୍ୟ କଲେ ଯେ, ଜେ.ପି. ବିରୋଧୀ ଦଳମାନଙ୍କ ସହିତ ମିଶୁଛନ୍ତି ବୋଲି ଲୋକେ କହୁଛନ୍ତି । ଏଇଟା ଠିକ୍ ହେଉନାହିଁ । କଥାଟା ଜେ.ପି.ଙ୍କୁ ଭାରି ବାଧିଲା । ସମସ୍ତଙ୍କ ଆଗରେ ଏପରି ଅଭିଯୋଗ କରିବା ପୂର୍ବରୁ ସେ ଜେ.ପି.ଙ୍କୁ ତ ଅଲଗା ପଚାରି ତାଙ୍କର ସ୍ପଷ୍ଟୀକରଣ ଶୁଣି ପାରିଥାନ୍ତେ ? ଏହା ପରେ ପରେ ସେ ତୁରନ୍ତ ବିନୋବାଙ୍କୁ ଭେଟି ନିଜର ଆଭିମୁଖ୍ୟ ପୁଙ୍ଖାନୁପୁଙ୍ଖ ଭାବରେ ଜଣାଇଲେ । ସେ ଦଳଗତ ଦୃଷ୍ଟିରୁ କାମ କରୁନାହାନ୍ତି, ସବୁ ଦଳରେ ତାଙ୍କର ବନ୍ଧୁ ଅଛନ୍ତି ଓ କଂଗ୍ରେସରେ ମଧ୍ୟ ଅଛନ୍ତି । ଇନ୍ଦିରାଙ୍କ ସହିତ ମଧ୍ୟ ସେ ସମ୍ପର୍କ ରଖିଛନ୍ତି ଓ ତାଙ୍କ ସହିତ ଦେଖା ସାକ୍ଷାତ କରନ୍ତି । ନିର୍ବାଚନରେ ଦୁର୍ନୀତିର ବିରୋଧ ସେ କରିବାକୁ ଚାହାନ୍ତି । ସବୁ ଦଳ ତ ଦୁର୍ନୀତି କରୁଛନ୍ତି ମାତ୍ର କଂଗ୍ରେସ ସବୁଠୁଁ ବଡ଼ ହେଇ ଥିବାରୁ ତାର ପରିମାଣଟା ବେଶୀ । ସେଥିପାଇଁ ତାଙ୍କର ଦୁର୍ନୀତି ବିରୋଧ କଂଗ୍ରେସର ବିରୋଧ ବୋଲି ପାଟିତୁଣ୍ଡ ହେବ । ଏ ସବୁ କଥା ସେ ବିନୋବାଙ୍କୁ ଲେଖିକରି ଦେଲେ । ଏଥିରେ ବିନୋବା ପୂରା ସନ୍ତୁଷ୍ଟ ହେଲେ ବୋଲି ପୁଣି ଶିବିରରେ ପ୍ରକାଶ କଲେ ଓ ଜେ.ପି. ମଧ୍ୟ ନିଜ କଥା କହିଲେ ।

ଏଇଟା ଗୋଟାଏ ଭଲ କଥା ହେଲା ବୋଲି ଆମେ ସମସ୍ତେ ବିଚାରିଲୁ । ଜେ.ପି.ଙ୍କର ଭୂମିକା ବିଷୟରେ ମୋ ମନରେ ଯେଉଁ କିନ୍ତୁ କିମ୍ବା ଥିଲା ତାହା ବି ବହୁତ ଜଣା ହେଇଗଲା । ଉତ୍ତର ପ୍ରଦେଶରେ ତା'ର ଅଳ୍ପଦିନ ପରେ ହେବାକୁ ଥିବା ବିଧାନସଭାର ମଧ୍ୟବର୍ତ୍ତୀ ନିର୍ବାଚନ ବେଳେ ସେଠି ଛାତ୍ରଯୁବକମାନଙ୍କୁ ଶୁଦ୍ଧତା ରକ୍ଷା କାମରେ ଲଗାଇବା ପାଇଁ ଜେ.ପି. ୟୁଥ୍ ଫର ଡିମୋକ୍ରାସି ନାଁରେ (ଗଣତନ୍ତ୍ର ସମର୍ଥକ ଯୁବଦଳ) ଏକ ସଙ୍ଗଠନର ପରିକଳ୍ପନା କଲେ । ଏଥିପାଇଁ ସେ ସେଇ ପଓନାରରେ ଥିବାବେଳେ ଗୋଟିଏ ନିବେଦନ ଚିଠା କରି କାଗଜକୁ ଦେଲେ ଓ ବିନୋବାଙ୍କୁ ମଧ୍ୟ ଦେଖାଇଲେ । ବିନୋବା ତାକୁ ପଢ଼ି ତାହାକୁ ପସନ୍ଦ କରୁଛନ୍ତି ବୋଲି କହିଲେ ଓ ତାର ସୂଚନା ଅନୁସାରେ ସେଥିରେ ଲୋକନୀତି ବିଷୟରେ ମଧ୍ୟ କେତୋଟି ବାକ୍ୟ ଯୋଡ଼ାଗଲା । କିନ୍ତୁ ପରେ ଉତ୍ତର ପ୍ରଦେଶରେ ଏ ୟୁଥ୍ ଫର୍ ଡିମୋକ୍ରାସିର କାମ ଚାଲିଥିବା ବେଳେ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର କର୍ମୀମାନଙ୍କର ଏକ ଶିବିର ୱାରଧା ବା ସେବାଗ୍ରାମରେ ହେଉଥିବାରୁ ସେମାନେ ବିନୋବାଙ୍କୁ ଭେଟିବାକୁ ଆସିଲେ । ସେମାନଙ୍କର ଗୋଟିଏ ପ୍ରଶ୍ନର ଉତ୍ତରରେ ବିନୋବା କହିଲେ ଯେ, ଯାହାର ଅନ୍ୟ କୌଣସି କାମ କରିବାର ନାହିଁ ସେ ଯାଇ ଜେ.ପି.ଙ୍କର ଏ କାମ କରୁ । ବିନୋବା ଏଭଳି ତାଚ୍ଛଲ୍ୟବ୍ୟଞ୍ଜକ ମନ୍ତବ୍ୟ କରିଛନ୍ତି ଶୁଣି ଜେ.ପି. ବହୁତ ଦୁଃଖୀ ହେଲେ ।

ଏହି ଶିବିର ସମୟରେ ଧୀରେନ୍‌ଭାଇ ଅସୁସ୍ଥ ହେଇ ସେବାଗ୍ରାମ ହାସପାତାଲରେ ଥାନ୍ତି । ମୁଁ ତାଙ୍କ ସହିତ ଦେଖାକରିବାକୁ ଗଲି ଓ ତାଙ୍କ ସହିତ ବିନୋବା ଓ ଜେ.ପି.ଙ୍କର ଆଭିମୁଖ୍ୟ ନେଇ ଆଲୋଚନା ହେଲା । ଧୀରେନ୍‌ଭାଇ ଏଇ ପ୍ରସଙ୍ଗରେ କହିଲେ ଯେ, ବିନୋବା ତାଙ୍କର ପ୍ରଥମ ଜୀବନରେ ଆତ୍ମାଭିମୁଖ ସନ୍ନ୍ୟାସୀ ଥିଲେ । ନିଜ ପଢ଼ାଶୁଣା ନେଇ ବ୍ୟସ୍ତ ଥାନ୍ତି, କାହାରି ସହିତ କଥା ବି କହୁ ନଥାନ୍ତି । ମାତ୍ର ଭୂଦାନ ଆନ୍ଦୋଳନରେ କୋଉଠୁ ଗୋଟାଏ ନୂଆ ବିନୋବା ସାରା ଦେଶରେ ଏତେ କାମ କରିଗଲା । ଏବେ ସେ ପୁଣି ସେହି ପ୍ରଥମ ଯୁଗର ବିନୋବା ହେଇଗଲାଣି । ପୁଣି ଅନ୍ତର୍ମୁଖ ହୋଇବସିଛି । ତାଠୁଁ ଆଉ ବେଶି କିଛି ଆଶ କରିବାର ନାହିଁ । ମନେ ହେଉଛି ଯେମିତି ଇଶ୍ୱର ଗୋଟାଏ କାମ କରେଇବାକୁ ଚାହୁଁଥିଲା । ବିନୋବା ଦ୍ୱାରା କରେଇ ନେଲା । ଜେ.ପି. ଜଣେ ଉତ୍ତମ ସାଧୁ ରାଜନୀତିକ ଲୋକ । ତାଙ୍କର ଚିନ୍ତା ତାହା ବାହାରକୁ ବେଶୀ ଦୂର ଯାଏ ନାହିଁ । ବିପ୍ଳବ ଦିଗରେ ତାଙ୍କଠୁଁ ବେଶୀ ଆଶା କରିବାର ନାହିଁ । ବର୍ତ୍ତମାନ ଆମର କାମ ହେବ 'ମାର୍ଗ ଖୋଜନ' । ବାଟ ଖୋଜିବାକୁ ହେବ । ଧରାବନ୍ଧା ବାଟ ସରିଗଲାଣି ।

ଧୀରେନ୍‌ଭାଇଙ୍କର ଏ ବିଶ୍ଳେଷଣ ମୋର ମନକୁ ପାଇଥିଲା, କାରଣ ମୁଁ ବି ବିଚାରୁଥିଲି ଯେ ବିନୋବା ଓ ଜେ.ପି. ଉଭୟ ଯଥାକ୍ରମେ ସନ୍ଥ ଓ ରାଜନୀତିକ ନେତାର ପରଂପରାଗତ ଛାଞ୍ଚରେ ପଡ଼ିଯାଉଛନ୍ତି । ପରେ ବିନୋବା ଯେତେବେଳେ ଇନ୍ଦିରା ସରକାରକୁ ପୂର୍ଣ୍ଣ ସମର୍ଥନ ଜଣାଇଲେ ସେ ସନ୍ଥ ଭୂମିକାରୁ ଓହରିଗଲେ ବୋଲି ମୁଁ ବିଚାରିଥିଲି । ମାତ୍ର ପୁଣି ଦେଖିଲି ଯେ

ତାହା ନୂହେଁ । ସାଧୁସନ୍ଥମାନେ ରାଜାମାନଙ୍କର ଗୁରୁଗିରି କରିବାର ପରମ୍ପରା ମଧ୍ୟ ପୁରୁଣା । ସମର୍ଥ ରାମଦାସ ଶିବାଜୀଙ୍କର ଗୁରୁ ଥିଲେ । ବଶିଷ୍ଠ ମଧ୍ୟ ରାଜଗୁରୁ ଥିଲେ । ଏହିପରି ବହୁତ ନଜିର ଅଛି । ବିନୋବା ସତରଙ୍କ ଶତାବ୍ଦୀ ଯାଏ ଚାଲି ଆସିଥିବା ସେଇ ପରମ୍ପରା ଅନୁସାରେ ନିଜର ଭୂମିକା ସ୍ଥିର କରିଛନ୍ତି । ପରେ ବରଂ ଜେ.ପି.ଙ୍କର ଭୂମିକା ସୁଦ୍ ରାଜନୀତିରୁ ଆଗେଇ ପୂର୍ଣ୍ଣ ବିପ୍ଳବର ଲକ୍ଷ୍ୟ ଯାଏ ପହଞ୍ଚିଲା । ଏ ଦୃଷ୍ଟିରୁ ତାଙ୍କର ଭୂମିକାରେ ବିକାଶ ହେଇଛି । ଧୀରେନ୍‌ଭାଇ ପରେ ବିହାର ଆନ୍ଦୋଳନକୁ ସମର୍ଥନ ଜଣାଇଥିଲେ, ତେବେ ତାଙ୍କର ଭୂମିକା ଥିଲା ଯେ, ଗାନ୍ଧୀ ଯୁଗରେ ରଚନାତ୍ମକ କର୍ମୀମାନେ ଯେମିତି ରାଜନୀତିକ କାର୍ଯ୍ୟକ୍ରମରେ ଜଡ଼ିତ ନହୋଇ ରଚନାତ୍ମକ କାମରେ ଲାଗି ରହୁଥିଲେ ଏବେ ମଧ୍ୟ ସେହିପରି ସଙ୍ଗଠନ କାମରେ ଲାଗି ରହିବା ଉଚିତ ।

ଡିସେମ୍ବର ୧୯୭୩ ରେ ଗୁଜରାଟରେ ଛାତ୍ର ଆନ୍ଦୋଳନ ତେଜିଲା । ରବିଶଙ୍କର ମହାରାଜ ପ୍ରଭୃତି ସେଠାରେ ସମସ୍ତ ସର୍ବୋଦୟ କର୍ମୀ ଆନ୍ଦୋଳନର ବ୍ୟାପ୍ତି ଓ ତାହା ପଛରେ ଥିବା ଜନସମର୍ଥନର ସ୍ୱରୂପ ଦେଖି ତାହାକୁ ସମର୍ଥନ କରିବା ପାଇଁ ସ୍ଥିର କଲେ । ଜେ.ପି. ଗୁଜରାଟକୁ ତିନି ଚାରି ଦିନ ପାଇଁ ଗଲେ । ସେହି ସମୟରେ ସେଠି ସର୍ବୋଦୟବାଲାଙ୍କ ଅଭିକ୍ରମରେ ଏକ ଲୋକ ସ୍ୱରାଜ ଆନ୍ଦୋଳନର ସୂତ୍ରପାତ କରାଗଲା । ନିର୍ଦ୍ଦଳୀୟ ଲୋକପ୍ରାର୍ଥୀ ଛିଡ଼ା କରାଇବା ପାଇଁ ଉଦ୍ୟମ କରିବା ଏହାର କାମ ହେଲା । ଏ ଆନ୍ଦୋଳନ ଓ ଗୁଜରାଟର ପରିସ୍ଥିତି ବିଷୟରେ ରବିଶଙ୍କର ମହାରାଜ ବିନୋବାଙ୍କୁ ଏକ ଲମ୍ବାଚିଠି ଲେଖି କେତେକ ବିଷୟରେ ତାଙ୍କର ପରାମର୍ଶ ଲୋଡ଼ିଲେ । ମାତ୍ର ବିନୋବା ସେ ଚିଠିର ପ୍ରାପ୍ତି ସ୍ୱୀକାର ମଧ୍ୟ କରିବା ଆବଶ୍ୟକ ମଣିଲେ ନାହିଁ । ଗୁଜରାଟର କେତେକ ସର୍ବୋଦୟ କର୍ମୀ ଆସି ତାଙ୍କୁ ଭେଟି ପରାମର୍ଶ ମାଗିବାରୁ ଜବାବ ମିଳିଲା ଯେ, ଛାତ୍ର ଆନ୍ଦୋଳନ ବିଷୟରେ ତମମାନଙ୍କର କିଛି କରିବାର ନାହିଁ । ଉପବାସବାନ ସଂଗ୍ରହ ଓ ଭୂମିପୁତ୍ରର (ଗୁଜରାଟର ସର୍ବୋଦୟ ଆନ୍ଦୋଳନ ମୁଖପତ୍ର) ଗ୍ରାହକ ବଢ଼ାଇବା କାମ ଜୋରସୋରରେ ଚଳାଇ ଯାଅ ।

ମୋର ମନେହୁଏ, ମନେହୁଏ କାହିଁକି, ମୋର ସମ୍ପୂର୍ଣ୍ଣ ଧାରଣା ଯେ ଜେ.ପି. ଓ ବିନୋବାଙ୍କ ଭିତରେ ଭେଦ ସୃଷ୍ଟି କରିବା ପାଇଁ କେତେକ ବ୍ୟକ୍ତି ରୀତିମତ ଉଦ୍ୟମ ଚଳାଇଥିଲେ ଓ ବିନୋବାଙ୍କୁ ନାନାପ୍ରକାରର ମିଥ୍ୟା ଓ ଅର୍ଦ୍ଧସତ୍ୟ ତଥ୍ୟ ଯୋଗାଇ ତାଙ୍କର ଜେ.ପି.ଙ୍କ ପ୍ରତି ପୂର୍ବଗ୍ରହ ବଢ଼ାଇବାରେ ଲାଗିଥିଲେ । ସେମାନେ ବିନୋବାଙ୍କର ଦୁର୍ବଳତାଗୁଡ଼ିକରୁ ପୂରାପୂରି ଲାଭ ଉଠାଉ ଥିଲେ ।

ୟୁଥ୍ ଫର୍ ଡେମୋକ୍ରାସିର କାମ ବିଷୟରେ ବିନୋବାଙ୍କ ମନ୍ତବ୍ୟ ଓ ସର୍ବୋଦୟ ମହଲରେ ଜେ.ପି.ଙ୍କ ବିରୋଧରେ କେତେକ କର୍ମୀଙ୍କ ଦ୍ୱାରା ଚାଲିଥିବା ଫୁସ୍‌ଫାସ୍ ଅଭିଯାନରେ ଜେ.ପି. ବହୁତ ବିଚଳିତ ହେଇ ପଡ଼ିଥିଲେ । ୧୯୭୪ ଜାନୁୟାରୀରେ ତୁରନ୍ତ ଦିଲ୍ଲୀ ଯିବା ପାଇଁ ମୁଁ ଗୋଟାଏ ତାର ପାଇଲି । ଟ୍ରେନ୍‌ରେ ଜାଗା ନ ମିଳିବା ହେତୁ ମୁଁ ଡେରିରେ ଦିଲ୍ଲୀରେ ପହଞ୍ଚି

ଶୁଣିଲି ଯେ, ଜେ.ପି. ଅତି ବିଚଳିତ ଓ ଦୁଃଖିତ ହୋଇ ସର୍ବୋଦୟ ଆନ୍ଦୋଳନରୁ ଅଲଗା ହୋଇ ଯିବେ ବୋଲି ବିଚାରୁଥିଲେ । ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ପାଇଁ ନାରାୟଣ, ସିଦ୍ଧରାଜ, ଗୋବିନ୍ଦରାଓ ପ୍ରଭୃତିଙ୍କୁ ମଧ୍ୟ ଡକାଯାଇଥିଲା । ସେମାନେ ଯଥା ସମୟରେ ପହଞ୍ଚି ଜେ.ପି.ଙ୍କ ସାଙ୍ଗରେ ଆଲୋଚନା କରିଥିଲେ ଓ ଜେ.ପି.ଙ୍କର ବିମର୍ଷତା କଟି ଯାଇଥିଲା । ଫଳରେ ସେ ସର୍ବୋଦୟ ଆନ୍ଦୋଳନରୁ ଅଲଗା ହେବା ବିଚାର ଛାଡ଼ି ଦେଇଥିଲେ ।

## ଓଡ଼ିଶାରେ ସର୍ବୋଦୟ ମହଲରେ ଗତିବିଧି

ଇତିମଧ୍ୟରେ ଓଡ଼ିଶାର ସର୍ବୋଦୟ ମହଲରେ ଯାହାସବୁ ଘଟୁଥିଲା ତା' ଉପରେ ଥରେ ଆଖି ବୁଲାଇ ନେବା ଆବଶ୍ୟକ । ମୁଁ ଫେବୃୟାରୀ ୧୯୭୩ ରେ ଛଅମାସ ଛୁଟି ନେବା ପୂର୍ବରୁ ଓଡ଼ିଶାରେ ଭୂଦାନ ଯଜ୍ଞ ସମିତିର ପୁନର୍ଗଠନର କଥା ଉଠିଥିଲା । ଓଡ଼ିଶା ଭୂଦାନ ଯଜ୍ଞ ଆଇନରେ ବ୍ୟବସ୍ଥା ଅଛି ଯେ ସମିତି ଆଚାର୍ଯ୍ୟ ବିନୋବାଙ୍କର ପରାମର୍ଶ ଅନୁସାରେ ଗଢ଼ାଯିବ । ବିନୋବା ତାଙ୍କର ଏ ଅଧିକାର ସର୍ବ ସେବା ସଂଘ ଉପରେ ନ୍ୟସ୍ତ କରିଥିବାରୁ ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗ ସର୍ବ ସେବା ସଂଘକୁ ଏ ବିଷୟରେ ଲେଖନ୍ତି । ସର୍ବ ସେବା ସଂଘ ଉତ୍କଳ ସର୍ବୋଦୟ ମଣ୍ଡଳର ମତ ଲୋଡ଼ନ୍ତି । ସର୍ବୋଦୟ ମଣ୍ଡଳର ବୈଠକରେ ଏ କଥା ପଡ଼େ ଓ ମଣ୍ଡଳ ସର୍ବ ସେବା ସଂଘକୁ ନାମ ସୁପାରିଶ କରି ପଠାଏ ଓ ସଂଘ ତାହା ଓଡ଼ିଶା ସରକାରଙ୍କୁ ଜଣାନ୍ତି ।

ଏଥର ମଧ୍ୟ ସେହିପରି ପ୍ରାଦେଶିକ ସର୍ବୋଦୟ ମଣ୍ଡଳରେ ଆଲୋଚନା ହୋଇ ଭୂଦାନ ସମିତି ପାଇଁ ନାମ ତାଲିକା ସୁପାରିଶ କରାଗଲା । ମାତ୍ର ସମିତି ଗଢ଼ାହେଲା ବେଳକୁ ଦେଖାଗଲା ଯେ ସେଥିରୁ ସର୍ବୋଦୟ ମଣ୍ଡଳ ଦ୍ୱାରା ସୁପାରିଶ କରାଯାଇଥିବା ଚାରୋଟି ନାମ ବାଦ ଦେଇ ସରକାର ଆଉ ଚାରୋଟି ନାଁ ସଦସ୍ୟ ତାଲିକାରେ ଚଢ଼େଇ ଦେଇଛନ୍ତି । ଯଦି ବା ସରକାରଙ୍କର ଏ ବିଷୟରେ କୌଣସି ଖାସ ମତାମତ ଥିଲା ତେବେ ସେ ବିଷୟରେ ସର୍ବ ସେବା ସଂଘକୁ ଲେଖାଲେଖି କରିବା ଉଚିତ ଥିଲା । ମାତ୍ର ତାହା ନ କରି ମନମୁଖୀ ଭାବରେ ନାଁ ବଦଳାଇ ଦେବାଟା ସର୍ବ ସେବା ସଂଘ ଓ ପ୍ରାଦେଶିକ ସର୍ବୋଦୟ ମଣ୍ଡଳପ୍ରତି ଅବମାନନାପୂର୍ଣ୍ଣ ଓ ସମ୍ମାନହାନିକର ପଦକ୍ଷେପ । ସର୍ବୋଦୟ ମଣ୍ଡଳ ଏହାର ପ୍ରତିବାଦ କରିବା ଉଚିତ ଓ ଏହାର ପ୍ରତିକାର ପାଇଁ ପଦକ୍ଷେପ ନେବା ଉଚିତ ବୋଲି ବାରମ୍ବାର ଦାବି କରାଗଲା ଓ ଏ ବିଷୟରେ ସର୍ବୋଦୟ ମଣ୍ଡଳରେ ଆଲୋଚନା ହୋଇ ନିର୍ଣ୍ଣୟ ମଧ୍ୟ କରାଗଲା । ମାତ୍ର ଦେଖାଗଲା ଯେ, ମଣ୍ଡଳର କର୍ମକର୍ତ୍ତା ଏ ବିଷୟରେ କୌଣସି ପଦକ୍ଷେପ ନେଉନାହାନ୍ତି । କ୍ରମେ ଜଣାପଡ଼ିଲା ଯେ ଓଡ଼ିଶା ସରକାରଙ୍କର ସଂପୃକ୍ତ ମନ୍ତ୍ରୀ ପ୍ରାଦେଶିକ ସର୍ବୋଦୟ ମଣ୍ଡଳର ତଦାନୀନ୍ତନ ଅଧ୍ୟକ୍ଷ ହରମୋହନ ବାବୁଙ୍କ ସହିତ ପରାମର୍ଶ କରି ଏ ନାମ ପରିବର୍ତ୍ତନ କରିଛନ୍ତି । ହରମୋହନ ବାବୁ ନିଜର ଭୂମିକା ସର୍ବୋଦୟ ମଣ୍ଡଳଠାରୁ ଗୁପ୍ତ ରଖିଲେ ମଧ୍ୟ ଓଡ଼ିଶା ସରକାରଙ୍କର ନିଜର ପସନ୍ଦ ଅନୁସାରେ ସମିତିରେ ଚାରୋଟି ନାମ ଦେବାର ଅଧିକାର ଅଛି ବୋଲି ଯୁକ୍ତି କରିଥିଲେ ।

ମଣ୍ଡଳର ଚାଳଚଳନ ନୀତି ଯୋଗୁଁ ଏ ବିଷୟରେ ସର୍ବ ସେବା ସଂଘକୁ ଲେଖାହେବା ବେଳକୁ ସାତ ଆଠ ମାସ ବିତିଗଲା । ଇତିମଧ୍ୟରେ ସମିତିର ବୈଠକ କେତେ ଥର ହେଇ ସାରିଥିଲା । ତେଣୁ ସର୍ବ ସେବା ସଂଘ ଓଡ଼ିଶା ସରକାରଙ୍କ ସହିତ ଲେଖାପଢ଼ା କରି ଏତକ ଆଶ୍ୱାସନା ପାଇଲେ ଯେ, ଭବିଷ୍ୟତରେ ସରକାର ସଂଘର ସୁପାରିଶକୁ ଉଚିତ ସମ୍ମାନ ଦେବେ ଓ ସେତିକିରେ କଥା ରହିଲା ।

୧୯୭୪ର ଓଡ଼ିଶାର ଉପନିର୍ବାଚନରେ ହରମୋହନ ବାବୁ ଢେଙ୍କାନାଳ ଜିଲ୍ଲାରେ ପୂରାପୂରି କଂଗ୍ରେସ ପ୍ରଚାରରେ ଲାଗିଛନ୍ତି ବୋଲି ବିଶ୍ୱାସଯୋଗ୍ୟ ସମ୍ବାଦ ମିଳିଲା । ସେ କେତେକ ସଂବାଦପତ୍ର ପ୍ରତିନିଧିଙ୍କ ସହିତ କଥାବାର୍ତ୍ତାରେ ଗ୍ରାମଦାନୀ ଗାଁର ଲୋକେ କଂଗ୍ରେସକୁ ଭୋଟ ଦେବା ଉଚିତ ବୋଲି ବିଚାରୁଛନ୍ତି ଆଦି କେତେକ କଥା କହିଲେ ଯେଉଁଥିରୁ ତାଙ୍କର କଂଗ୍ରେସ ସପକ୍ଷରେ ପ୍ରଚାରର ସ୍ପଷ୍ଟ ଆଭାସ ମିଳୁଥିଲା । ନିର୍ବାଚନ ପୂର୍ବରୁ ପ୍ରାଦେଶିକ ସର୍ବୋଦୟ ମଣ୍ଡଳ ବୈଠକ ବସି ଓ ସାରା ପ୍ରଦେଶର ମୁଖ୍ୟ କର୍ମୀମାନଙ୍କର ଏକ ଶିବିର କରାଯାଇ ନିର୍ବାଚନ ବେଳେ ସର୍ବୋଦୟ ଆନ୍ଦୋଳନର ଆଭିମୁଖ୍ୟ ବିଷୟରେ ଏକ ସ୍ପଷ୍ଟ ନିର୍ଣ୍ଣୟ ନିଆଯାଇଥିଲା । ଏଥିରେ ସ୍ଥିର କରାଯାଇଥିଲା ଯେ, ସର୍ବୋଦୟ ମଣ୍ଡଳ ତା'ର ପୂର୍ବ ନୀତି ଅନୁସାରେ ନିର୍ବାଚନରେ ନିରପେକ୍ଷ ରହିବ । ମାତ୍ର ନିର୍ବାଚନର ଉପଲକ୍ଷ୍ୟକୁ ନାଗରିକମାନଙ୍କୁ ଦେଶର ପରିସ୍ଥିତି ଓ ସେଥିରେ ତାଙ୍କର କର୍ତ୍ତବ୍ୟ ବିଷୟରେ ଶିକ୍ଷା ଦେବାର ଏକ ସୁଯୋଗ ରୂପେ ବ୍ୟବହାର କରିବ । ଲୋକେ ଜାତି, ଧର୍ମ ଆଦିର ଭାବନା ବା ଟଙ୍କା ପଇସାର ଲୋଭ ବା ଭୟଦ୍ୱାରା ପ୍ରଭାବିତ ହେଇ ଭୋଟ ଦେବେ ନାହିଁ । ଦଳର ଛାପାକୁ ଗୁରୁତ୍ୱ ନ ଦେଇ ନିଃସ୍ୱାର୍ଥପର, ସେବାଭାବି ପ୍ରାର୍ଥୀ କେହି ଥିବ ତ ତାଙ୍କୁ ଭୋଟ ଦେବେ । ମନମୁତାବକ ପ୍ରାର୍ଥୀ ନ ଥିବେ ତ କାହାରିକୁ ଭୋଟ ନ ଦେବାର ଅଧିକାର ମଧ୍ୟ ତାଙ୍କର ଅଛି । ଏହି ଅନୁସାରେ କର୍ମୀମାନେ ସବୁଆଡ଼େ ପ୍ରଚାର କାମରେ ଲାଗିବାର ଯୋଜନା ମଧ୍ୟ ଗଢ଼ାହେଲା ।

ହରମୋହନ ବାବୁ ପ୍ରାଦେଶିକ ମଣ୍ଡଳର ସଭାପତି ଥାଇ ମଧ୍ୟ ମଣ୍ଡଳର ନିର୍ଦ୍ଧାରିତ ନୀତିର ଅବମାନନା କରି କଂଗ୍ରେସ ପାଇଁ ପ୍ରଚାର କରୁଥାନ୍ତି । ଏହି ସମୟରେ ପ୍ରାଦେଶିକ ସର୍ବୋଦୟ ମଣ୍ଡଳର ଏକ ବୈଠକ ବସିଲା । ସେଠିକୁ ସେ ଆସିଲେ ନାହିଁ । ମଣ୍ଡଳରେ ଏ ବିଷୟରେ ଆଲୋଚନା ହେଇ ତାଙ୍କଠାରୁ ଏ ବିଷୟରେ ସ୍ପଷ୍ଟୀକରଣ ମଗାହେଲା । ଦୁଇଜଣ କର୍ମୀ ତାଙ୍କ ସାଙ୍ଗରେ କଥାବାର୍ତ୍ତା ପାଇଁ ଢେଙ୍କାନାଳ ଗଲେ । ସେ ଇସ୍ତଫା ଦେଇଦେଲେ ଓ ମଦନମୋହନ ସାହୁ ମଣ୍ଡଳର ଅଧ୍ୟକ୍ଷ ହେଲେ ।

ଏ ସବୁର ଅନେକ ପୂର୍ବରୁ, ଗୁଜରାତ ଆନ୍ଦୋଳନ ବା ବିହାର ଆନ୍ଦୋଳନର ବର୍ଷାଧିକ କାଳ ପୂର୍ବରୁ, ମୁଁ ଖବର ପାଉଥାଏ ଯେ, କେତେ ଆଡ଼େ ସର୍ବୋଦୟ ମହଲରେ ପ୍ରଚାର ଚାଲିଛି, ଜେ.ପି.ଙ୍କୁ ଖୁବ୍ ଶୀଘ୍ର ସର୍ବୋଦୟ ଆନ୍ଦୋଳନରୁ ବାହାର କରି ଦିଆଯିବ । ଓଡ଼ିଶାର କେତେଜଣ ସର୍ବୋଦୟ କର୍ମୀ ସର୍ବୋଦୟ ମଣ୍ଡଳ ଓ ଅନ୍ୟ କର୍ମୀମାନଙ୍କ ଅଜାଣତରେ ନନ୍ଦିନୀ

ଶତପଥୀ ଓ ଦେବେନ୍ଦ୍ର ଶତପଥୀଙ୍କ ସହିତ  ନାନା ପ୍ରକାର ପରାମର୍ଶ କରୁଛନ୍ତି ବୋଲି ସମ୍ବାଦ ମିଳିବାକୁ ଲାଗିଲା । ଏସବୁ ଘଟଣାରୁ ମୋର କ୍ରମେ ହୃଦ୍‌ବୋଧ ହେଲା ଯେ, କଂଗ୍ରେସ ଦଳ ପକ୍ଷରୁ ସର୍ବୋଦୟ ଆନ୍ଦୋଳନକୁ କଂଗ୍ରେସ ସରକାରର ହାତ  ବାରିସୀରେ ପରିଣତ କରିବାର ଉଦ୍ୟମ ଚାଲିଛି । ଏହା କିଛି ନୂଆ ନୁହେଁ । ଏହା ପୂର୍ବରୁ ମଧ୍ୟ ଓଡ଼ିଶାରେ ଓ ଅନ୍ୟତ୍ର ଶକ୍ତିଶାଳୀ କ୍ଷମତାସୀନ ନେତାମାନେ ସର୍ବୋଦୟ ଆନ୍ଦୋଳନକୁ ହାତ ମୁଠାରେ ରଖିବାକୁ ବା ତାହା ନ କରିପାରିଲେ  ତାକୁ ଲୋକ ଚକ୍ଷୁରେ ହେୟ ପ୍ରତିପାଦିତ କରିବା ପାଇଁ ଉଦ୍ୟମ କରିଛନ୍ତି । କିନ୍ତୁ ଏଥର ନୂତନତ୍ୱ ଏଇ କଥାରେ ଥିଲା ଯେ, ସର୍ବୋଦୟ ଆନ୍ଦୋଳନ ଭିତରୁ କେତେକ ସାଥୀ ଏ ଉଦ୍ୟମରେ ସହଯୋଗ କରିବାକୁ ବାହାରିଲେ ।

ଜେ.ପି.ଙ୍କ ଠାରୁ କେତେ ଥର ଶୁଣିଥିଲି ଯେ, ଇନ୍ଦିରା ସବୁ ଦଳରେ ଭେଦ ସୃଷ୍ଟି କରିଛି । ସର୍ବୋଦୟକୁ ମଧ ଦୁଇ ଭାଗ କରି ଛାଡ଼ିବ । ମୋର ଏ କଥାରେ ବିଶ୍ୱାସ ହେଉ ନଥିଲା, ମାତ୍ର ଓଡ଼ିଶାର ଏ ସବୁ ଗତିବିଧି ଓ ଆଉ କେତେକ ଘଟଣା ଦେଖି ମୋର କ୍ରମେ ଏ ଧାରଣା ଗଭୀରତର ହେବାକୁ ଲାଗିଲା ଯେ କଂଗ୍ରେସ ପକ୍ଷରୁ ସର୍ବୋଦୟ ଆନ୍ଦୋଳନକୁ ନିଜ ବୋଲରେ ରଖିବା ପାଇଁ ନ ହେଲେ ସେଥିରେ ଭେଦ ସୃଷ୍ଟି କରିବା ପାଇଁ ଚେଷ୍ଟା ଚାଲିଛି । ନୂଆ ଖଦୀ କମିଶନ ଗଠନ ଗୋଟିଏ ଦୃଷ୍ଟାନ୍ତ । ସେଥିରେ ପାଞ୍ଚଜଣଙ୍କ ଭିତରୁ ତିନିଜଣ କଂଗ୍ରେସ ଲୋକଙ୍କୁ ନିଆଗଲା ଯେଉଁମାନଙ୍କର ଖଦୀ ଗ୍ରାମୋଦ୍ୟୋଗ ବିଷୟରେ ପୂର୍ବ ଅଭିଜ୍ଞତା ଶୂନ୍ୟ କହିଲେ ଚଳେ । କୁରୁକ୍ଷେତ୍ରରେ ସର୍ବୋଦୟ ସମ୍ମିଳନୀ ଚାଲିଥିବା ବେଳେ ତେଣେ ଉତ୍ତର ପ୍ରଦେଶର ଏକ ସ୍ଥାନରେ ଏକ ଅଖିଳ ଭାରତୀୟ ଖଦୀକର୍ମୀ ସମ୍ମିଳନୀ ସେହି ଏକା ଦିନମାନଙ୍କରେ ଆୟୋଜିତ ହେଲା ଓ ସେଥିରେ ଇନ୍ଦିରା ଗାନ୍ଧୀ ଉଦ୍‌ବୋଧନ ଦେଲେ ।

୧୯୭୪ ଜାନୁୟାରୀ ଫେବୃୟାରୀରେ ଇନ୍ଦିରା ଗାନ୍ଧୀ ଦୁଇଥର ବିନୋବାଙ୍କୁ ଭେଟିଲେ । ଏହା ପୂର୍ବରୁ ଇନ୍ଦିରାଙ୍କର ବୋଧହୁଏ ଧାରଣା ଥିଲା ଯେ, ସାରା ସର୍ବୋଦୟ ଆନ୍ଦୋଳନ ତାଙ୍କର ବିରୋଧୀ । ମାତ୍ର ସର୍ବୋଦୟ ମହଲରୁ ହିଁ କେତେକ ବ୍ୟକ୍ତି ଅନୁଭବ କରୁଥିଲେ ଯେ, ଇନ୍ଦିରାଙ୍କର ସମର୍ଥନ ସର୍ବୋଦୟ ପକ୍ଷରୁ କରାଯିବା ଉଚିତ । ସେଥିପାଇଁ ବିନୋବାଙ୍କ ସହିତ ତାଙ୍କୁ ଭେଟୋଇବାର ଆୟୋଜନ ହେଲା ଓ ପ୍ରଥମ ଭେଟର ବ୍ୟବସ୍ଥା ଓଡ଼ିଶା ବାଟେ ହିଁ ହେଇଥିଲା ।

ମୁଁ ପୂର୍ବରୁ କହିଛି ଯେ, ବିରୋଧୀ ଦଳ ଓ ଅନ୍ୟମାନଙ୍କ ଭିତରେ ଯେଉଁ ଶସ୍ତା ଇନ୍ଦିରା ବିରୋଧ ଦେଖାଯାଉଥାଏ ତାହା ମତେ ଭଲ ଲାଗୁ ନଥାଏ । ଜେ.ପି.ଙ୍କ ଆଭିମୁଖ୍ୟରେ ବି ଇନ୍ଦିରାଙ୍କ ପ୍ରତି ବ୍ୟକ୍ତିଗତ ଆକ୍ଷେପ ଓ ବିରୋଧର ପୁଟ ଥାଏ । ବିରୋଧୀ ଦଳ, ବିଶେଷ କରି ସଙ୍ଗଠନ କଂଗ୍ରେସ ଓ ଜନସଂଘ, ସହିତ ତାଙ୍କର ନଟରପଟର ହେବାଟା ମୁଁ ପସନ୍ଦ କରୁ ନଥାଏ । ସେଥିପାଇଁ ମୋତେ କେତେକ ବନ୍ଧୁ 'ପ୍ରୋ-ଇନ୍ଦିରା' କହୁଥାନ୍ତି । ଦାଦା ଖୁଡ଼ୀ ହେଲିକା ପଶ୍ଚିମବଙ୍ଗର ହତ୍ୟାକାଣ୍ଡ ସଂପର୍କରେ ଇନ୍ଦିରାଙ୍କୁ ଫାସିଷ୍ଟ କହୁଥାନ୍ତି । ତାହା ମଧ୍ୟ ମତେ ଅତିଶୟୋକ୍ତି ଜଣା ପଡୁଥାଏ ।

ମାତ୍ର ଉପରୋକ୍ତ ଘଟଣାବଳୀ ଅନୁଭୂତିରୁ ମୋର ଧାରଣା ବଦଳିଲା । ପଶ୍ଚିମବଙ୍ଗରେ କଂଗ୍ରେସ ପକ୍ଷରୁ କରାଯାଇଥିବା ହତ୍ୟାକାଣ୍ଡର ଉଲ୍ଲେଖ ଜେ.ପି.ଙ୍କ ଠାରୁ ଆମର ବାଙ୍ଗାଲୋର ବୈଠକରେ ଶୁଣିଥିଲି । ମୋର ସେତେବେଳେ ଧାରଣା ଥିଲା ଯେ, ପଶ୍ଚିମବଙ୍ଗରେ ସି.ପି.ଏମ୍, କଂଗ୍ରେସ ଓ ଅନ୍ୟାନ୍ୟ ଦଳଙ୍କ ଭିତରେ ମଝିରେ ମଝିରେ ଯେଉଁ ପିଟାପିଟି ହୁଏ ଓ ସେଥିରେ ଲୋକ ମରନ୍ତି ସେମିତି ପିଟାପିଟି ଅଧିକ ସଂଖ୍ୟାରେ ହେଉଛି, ସେଥିରେ ଉଭୟ ପକ୍ଷରୁ ଲୋକ ମରିଛନ୍ତି । କଂଗ୍ରେସ ବିରୋଧୀମାନେ କେବଳ ନିଜ ପକ୍ଷର ମୃତାହତଙ୍କ ସଂଖ୍ୟାର ପ୍ରଚାର କରୁଛନ୍ତି । କିନ୍ତୁ ପଶ୍ଚିମବଙ୍ଗର ବନ୍ଧୁମାନଙ୍କଠାରୁ ଏ ବିଷୟରେ ଯାହା ସବୁ ତଥ୍ୟ ପାଇଲି ସେଥିରେ ମୋର ଧାରଣା ଏକାବେଳକେ ବଦଳି ଗଲା । ପ୍ରକୃତ ଘଟଣା ଶୁଣି ମୁଁ ଏକାବେଳକେ ସ୍ତମ୍ଭିତ ହେଇଗଲି । ସେଠି କଂଗ୍ରେସ ପକ୍ଷର ଗୁଣ୍ଡାଦଳ ବିରୋଧୀ ଲୋକମାନଙ୍କୁ ଘରୁ ଟାଣି ଟାଣି ହତ୍ୟା କରୁଥିଲେ ଓ ପୁଲିସ୍ ପହରାର ବନ୍ଦୋବସ୍ତ କରାଯାଇଥିଲା ଯେପରି କେହି ପ୍ରତିରୋଧ ନ କରିପାରିବେ । ବରାନଗରରେ ତିନିଦିନ ଧରି ହତ୍ୟାକାଣ୍ଡ ଚାଲିଲା ଓ ମୁର୍ଦାର ସବୁ ଟ୍ରକରେ ବୁହାହେଇ ଗଙ୍ଗାରେ ପଡ଼ିଲା । ସାତଶହରୁ ହଜାରେ ଯାଏ ଲୋକ ଏପରି ଭାବରେ ଖୁନ୍ ହେଲେ ଓ ଆହୁରି ହଜାର ହଜାର ଯୁବକ ପ୍ରାଣ ଭୟରେ ପଶ୍ଚିମ ବଙ୍ଗ ବାହାରକୁ ପଳାଇଲେ । ଏ ସବୁ ଜାଣିବା ପରେ କଂଗ୍ରେସ ରାଜତ୍ୱର ପ୍ରକୃତ ସ୍ୱରୂପ ବିଷୟରେ ମୋର ଆଖି ଫିଟିଗଲା ।

କୁରୁକ୍ଷେତ୍ର ପରେ ସର୍ବୋଦୟ ସମ୍ମିଳନୀ ପଶ୍ଚିମବଙ୍ଗରେ ହେବାର ସ୍ଥିର ହେଲା । ଖବର ମିଳିଲା ଯେ ଇନ୍ଦିରା ଗାନ୍ଧୀଙ୍କୁ ସମ୍ମିଳନୀକୁ ଉଦ୍‌ବୋଧନ ଦେବା ପାଇଁ ନିମନ୍ତ୍ରଣ କରିବାର ବିଚାର ଚାଲିଛି । ଏହା ଶୁଣିବା ମାତ୍ରେ ମୁଁ ସଂଘର ସଂପାଦକ ବଙ୍ଗସାହେବଙ୍କୁ ଚିଠି ଲେଖି ଏହାର ବିରୋଧ କଲି ଓ ସେଥିରେ ପଶ୍ଚିମବଙ୍ଗର ହତ୍ୟାକାଣ୍ଡ ମଧ୍ୟ ଉଲ୍ଲେଖ କରି ଏଭଳି ହତ୍ୟା ପାଇଁ ଦାୟୀ ବ୍ୟକ୍ତିଙ୍କୁ ସର୍ବୋଦୟ ସମ୍ମିଳନୀକୁ ଡାକି ପ୍ରାଧାନ୍ୟ ଦେବା ଉଚିତ ନୁହେଁ ଲେଖିଲି । ପରେ ଏ କଥା ପ୍ରବନ୍ଧ ସମିତିରେ ପଡ଼ିଲା ଓ ଅନ୍ୟମାନେ ମଧ୍ୟ ଇନ୍ଦିରାଙ୍କୁ ନିମନ୍ତ୍ରଣ କରାଯିବା ବିରୋଧରେ ମତ ଦେଲେ । ସେତେବେଳେ ଏ କଥା ମଧ୍ୟ ଦେଖାଗଲା ଯେ, ସଂଘର ପ୍ରବନ୍ଧ ସମିତିର ଅଧିକାଂଶ ସଦସ୍ୟ ଏ ବିଷୟରେ ପୂର୍ବରୁ କିଛି ଜାଣି ନଥିଲେ । ସଂଘର ଅଧ୍ୟକ୍ଷ ଓ ସଂପାଦକଙ୍କୁ ଏ ପ୍ରସ୍ତାବ ବିଷୟରେ କୁହାଯିବାରୁ ସେମାନେ ଏଥିରେ ଅସମ୍ମତି ପ୍ରକାଶ କରିଥିଲେ । ଅଥଚ ଯେଉଁମାନେ ଅନ୍ୟ ସମୟରେ 'ସର୍ବସମ୍ମତି'ର ଗୁଣଗାନ ଓ ଆବଶ୍ୟକତା ପ୍ରତିପାଦନ କରିବାବେଳେ ଗଦଗଦ ହେଇ ଭାବାବେଗରେ ତରଳି ଯାନ୍ତି ସେଇମାନେ ହିଁ ନିଜର ଉଦ୍ଦେଶ୍ୟ ସିଦ୍ଧ କରିବା ପାଇଁ କେତେକ ବିଶିଷ୍ଟ ସଦସ୍ୟଙ୍କର ଜଣା ବିରୋଧ ସତ୍ତ୍ୱେ ଓ ଅନ୍ୟମାନଙ୍କୁ ଅନ୍ଧାରରେ ରଖି ଏ କାମଟି ବାଗେଇ ନେବାକୁ ବସିଥିଲେ । କୁରୁକ୍ଷେତ୍ରରେ ନିର୍ମଳା ପ୍ରଭୃତି କେତେଜଣ ପଶ୍ଚିମବଙ୍ଗର କର୍ମୀମାନଙ୍କୁ ବୁଝାଇଲେ ଯେ ଇନ୍ଦିରାଙ୍କୁ ଡକାହେଉ ବୋଲି ବିନୋବା ଚାହାନ୍ତି ଓ ପ୍ରବନ୍ଧ ସମିତିର ମଧ୍ୟ ସମର୍ଥନ ଏହି ପ୍ରସ୍ତାବ ପଛରେ ଅଛି । ସମିତିକୁ ଅନ୍ଧାରରେ ରଖି, ପଶ୍ଚିମ ବଙ୍ଗର ଅଭ୍ୟର୍ଥନା ସମିତିକୁ ଭ୍ରାନ୍ତ ଧାରଣା ଦେଇ, ଇନ୍ଦିରାଙ୍କୁ ନିମନ୍ତ୍ରଣ କରାଯାଉଥିଲା ।

# ଜେ.ପି. ଓ ବିନୋବାଙ୍କ ମତଭେଦ

୧୯୭୩ ଶେଷ ଆଡ଼କୁ ବନାରସରେ ଗୋଟାଏ କି ବୈଠକ ଉପଲକ୍ଷ୍ୟରେ ଆମେ ଥାଉ, ଜେ.ପି. ବି ଥାନ୍ତି । ତାଙ୍କ ସାଙ୍ଗରେ ଏକ ଆଲୋଚନା ପ୍ରସଙ୍ଗରେ ମୁଁ ଲୋକନୀତି ବିଷୟରେ ଏକ ମନ୍ତବ୍ୟ ଦେଲି ଯେ, ଆମେ ପରିସ୍ଥିତିର ସଠିକ ମୂଲ୍ୟାଙ୍କନ କରିପାରୁନୁ କି ନାହିଁ ତାହା ହିଁ ଲୋକନୀତିର ମୁଖ୍ୟ କଷଟି । ଜେ.ପି. ହଠାତ୍ କହିଲେ "ମୁଁ ତମ ବିଚାର ଭଲ ଭାବରେ ବୁଝିବାକୁ ଚାହେଁ, ଯା' ଭିତରେ ଥରେ ଭଲ ଭାବରେ ଆଲୋଚନା କରିବା ପାଇଁ ସମୟ ବାହାର କରିବାକୁ ହେବ ।" ତା' ପରେ ନାରାୟଣ ଘରେ ନାରାୟଣ, ବୁବୁ, ଚୁନୀଭାଇ ଓ ମୁଁ ଥାଇ ତାଙ୍କ ସହିତ ଦେଢ଼ଘଣ୍ଟା ଖଣ୍ଡେ ବିଶଦ ଆଲୋଚନା ହେଲା । ସେଥିରେ ପ୍ରଥମେ ମୁଁ ମୋର ଦୃଷ୍ଟିକୋଣ ଉପସ୍ଥାପିତ କଲି ଯେ, ପଛୁଆ ଦେଶର ରାଜନୀତି ଆର୍ଜେଣ୍ଟିନାରେ ପେରନ୍ ଧରିଥିବା ପନ୍ଥାରେ ହିଁ ଚାଲିବ ବୋଲି ମନେ ହେଉଛି । ଗରିବ ଲୋକଙ୍କ ପାଇଁ ଚରମପନ୍ଥୀ ସ୍ଲୋଗାନ, ବଡ଼ଲୋକଙ୍କ ପଇସା ଓ ସୈନ୍ୟବାହିନୀ ତଥା ଗୁଣ୍ଡାଦଳମାନଙ୍କର ସାହାଯ୍ୟରେ କ୍ଷମତା ହାତରେ ରଖିବା ହେଲା ଏହାର ନୀତି ଏ ଅବସ୍ଥାକୁ ବଦଳାଇବାକୁ ହେଲେ ସମାଜ ବିପ୍ଳବ ଛଡ଼ା ଗତି ନାହିଁ ।

'ପେରନ୍‌ବାଦ' ସହିତ ଭାରତର ରାଜନୀତିର ସାଦୃଶ୍ୟ ଅଛି ବୋଲି ଜେ.ପି. ଏକମତ ହେଲେ, କେବଳ ଏଠି ଶାସକ ଦଳ ହାତରେ ସେନାବାହିନୀ ହାତବାରିସୀ ହୋଇନାହିଁ, ଏତିକି ଫରକ ଅଛି ବୋଲି କହିଲେ । ସମାଜ ବିପ୍ଳବ ବିଷୟରେ ସେ କହିଲେ ଯେ, ସେଥିପାଇଁ ତାଙ୍କର ଶକ୍ତିନାହିଁ । "ତମେମାନେ ତାହା କରିବ । ମୁଁ ବିଚାରୁଛି, ଯେ, ଲୋକନୀତି ସ୍ଥାପନ କାମଟା ଅପେକ୍ଷାକୃତ ସହଜ ଓ ମୁଁ ତାହା କରିପାରିବି ବୋଲି ବିଚାରୁଛି ।"

ମୁଁ କହିଲି ଯେ, ଲୋକନୀତିକୁ ଆପଣ ଯେତେ ବିଚାରୁଛନ୍ତି ତାହା ସେତେ ସହଜ ନୁହେଁ । ଗ୍ରାମସଭା ଆଦିର ବାହ୍ୟ ଢାଞ୍ଚା ତ ଗଢ଼ା ହୋଇଯିବ, ମାତ୍ର ନ୍ୟସ୍ତସ୍ୱାର୍ଥମାନେ ତାକୁ ଦଖଲ କରିବେ । ଆଗେ ସମାଜ ବିପ୍ଳବ ନ ହେଲେ ଲୋକନୀତି ସଫଳ ହେବ ନାହିଁ । ସେ କହିଲେ "ହଁ ସେ କଥା ସତ । ବାବୁମାନେ ଓ ବଡ଼ବଡ଼ ଜମିମାଲିକମାନେ ତ ଗ୍ରାମସଭାମାନଙ୍କୁ ଦଖଲ କରିଯିବେ ।" ଏହାପରେ କି ପ୍ରକାର କାର୍ଯ୍ୟକ୍ରମ ହେଲେ ଗରିବ ଲୋକେ ଜାଗ୍ରତ ଓ ସକ୍ରିୟ ହେବେ, ତା' ଉପରେ ଆଲୋଚନା ହେଲା । ଗ୍ରାମଦାନ କାହିଁକି ସକ୍ରିୟ ନ ହୋଇ ପାରିଲା ସେ କଥା ବି ପଡ଼ିଲା । ଗାଁରେ ଶ୍ରେଣୀଭେଦକୁ ଅସ୍ୱୀକାର କରିବାର ଯେଉଁ ମନୋଭାବ ରହିଛି ସେ ବିଷୟରେ ବି ଆଲୋଚନା ହେଲା । ଶେଷରେ ଜେ.ପି.ମନ୍ତବ୍ୟ କଲେ ଯେ, ଏ ସବୁ ବିଷୟରେ ଆମର କର୍ମୀମାନଙ୍କର ଜ୍ଞାନ ବଢ଼ାଇବାର ବ୍ୟବସ୍ଥା ଆବଶ୍ୟକ । ମତେ ମୋର ବିଚାର ଲେଖି ପକାଇବା ପାଇଁ ପରାମର୍ଶ ଦେଲେ, ଯାହାଦ୍ୱାରା କି ତାହା ଉପରେ ଆଲୋଚନା ହୋଇପାରିବ । ଏହା ପରେ ସର୍ବୋଦୟର ରାଜନୀତିକ ଦର୍ଶନ ଉପରେ ଏକ ପ୍ରବନ୍ଧ ଲେଖି ଜେ.ପି.ଙ୍କୁ ଓ ସର୍ବ ସେବା ସଂଘକୁ ପଠେଇଦେଲି ।

୧୯୭୪ ମାର୍ଚ୍ଚ ଶେଷ ସପ୍ତାହରେ ମହାରାଷ୍ଟ୍ରର ଜଲଗାଓଁ ଠାରେ ସର୍ବ ସେବା ସଂଘର ପ୍ରବନ୍ଧ ସମିତି ବୈଠକ ହେଲା । ସେଠି ସର୍ବୋଦୟ ଆନ୍ଦୋଳନ ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା ହେବାର ଥାଏ । ପୂର୍ବରୁ ସର୍ବ ସେବା ସଂଘରେ ଦୁର୍ନୀତି, ମୂଲ୍ୟବୃଦ୍ଧି, ବେକାରୀ ଆଦି ସମସ୍ୟା ଉପରେ ଆନ୍ଦୋଳନ କରିବା ପ୍ରସ୍ତାବ ତ ଗୃହୀତ ହୋଇଥାଏ । ବିହାରରେ ଛାତ୍ର ଆନ୍ଦୋଳନ ନଗଦ ଆରମ୍ଭ ହୋଇଥାଏ । ଗୁଜରାତ ଆନ୍ଦୋଳନ ତ ସେତେବେଳକୁ ସରିଥାଏ । ଆଲୋଚନା ଏହି ସବୁ ପରିପ୍ରେକ୍ଷୀରେ ହେବାର ଥାଏ ।

ବୈଠକ ଆରମ୍ଭରେ ସର୍ବ ସେବା ସଂଘର ଅଫିସ ସଂପାଦକ ସତ୍ୟବ୍ରତ ବିନୋବାଙ୍କ ଠାରୁ ଏକ ବାର୍ତ୍ତା ନେଇ ଆସି ପହଞ୍ଚିଲେ । ସେ ବାର୍ତ୍ତାରେ ପରାମର୍ଶ ଦିଆଯାଇଥିଲା ଯେ, ଯେଉଁ ପର୍ଯ୍ୟନ୍ତ ଭାରତ, ବଙ୍ଗଳାଦେଶ ଓ ପାକିସ୍ତାନରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠିତ ନ ହେଉଛି ସେ ପର୍ଯ୍ୟନ୍ତ ଦେଶରେ ସରକାର ବିରୋଧରେ ଅହିଂସା ଆନ୍ଦୋଳନ ସୁଦ୍ଧା କରାଯିବାର ନୁହେଁ । ସର୍ବୋଦୟର ସେବକମାନେ ରଚନାତ୍ମକ କାମରେ ଲାଗିପଡ଼ିବା ଚାହିଁ । ତାହାଦ୍ୱାରା ସେମାନେ ଗରିବଙ୍କର ବହୁତ ସେବା କରିପାରିବେ ।

ଏହା ସଙ୍ଗେ ସଙ୍ଗେ ସତ୍ୟବ୍ରତ ଆଉ ଗୋଟିଏ ସଂବାଦ ମଧ୍ୟ ଆଣିଥାନ୍ତି । ନନ୍ଦିନୀ ଶତପଥୀଙ୍କଠାରୁ ଏକ ତାର ବିନୋବାଙ୍କ ପାଖରେ ପହଞ୍ଚିଛି ଯେଉଁଥିରେ କୁହାଯାଇଛି ଯେ, ଓଡ଼ିଶାରେ ନାନା ଗଣ୍ଡଗୋଳ କରାଯାଉଛି, ଧନୀମାନେ ଦରିଦ୍ରଙ୍କ ଉପରେ ଅତ୍ୟାଚାର କରୁଛନ୍ତି, ମହିଳାମାନଙ୍କର ସମ୍ମାନ ଉପରେ ଆକ୍ରମଣ ହେଉଛି, ଗଣତନ୍ତ୍ରକୁ ଜୋର କରି ଭାଙ୍ଗିଦେବା ଉଦ୍ୟମ ହେଉଛି । ଯେଉଁ ପତାକା ତଳେ ଆମେ ସ୍ୱାଧୀନତା ପାଇଁ ଲଢ଼ିଥିଲୁ ତାର ଟେକ ବଜାୟ ରଖିବା ପାଇଁ ପ୍ରାଣପାତ କରିବାକୁ ଆମେ ସଂକଳ୍ପ କରିଛୁ । ବାବାଙ୍କର ପରାମର୍ଶ ଆମେ ଚାହୁଁଛୁ ।

ବିନୋବାଙ୍କ ପକ୍ଷରୁ ନିର୍ମଳା ଦେଶପାଣ୍ଡେ ଏ ତାରର ଜବାବ ତୁରନ୍ତ ତାରରେ ଦେଇଛନ୍ତି ଯେ, "Your wire donot bend before violence use force if necessary Babas blessings keep informed phone no, so and so" ଅର୍ଥାତ୍ ତାର ମିଳିଲା, ହିଂସା ଆଗରେ ମୁଣ୍ଡ ନୁଆଁଅ ନାହିଁ । ଦରକାର ହେଲେ ବଳ ପ୍ରୟୋଗ କର । ବାବାର ଆଶୀର୍ବାଦ । ସବୁ ଖବର ଜଣାଉଥିବ । ଫୋନ୍ ନଂ ଅମୁକ ।

ଫତୁଆ ସାଙ୍ଗକୁ ଏ ଖବର ପାଇ ସମସ୍ତଙ୍କର ଅସନ୍ତୋଷର ପାରା ଏକାବେଳକେ ଉପରକୁ ଚଢ଼ିଗଲା– କେବଳ ନିର୍ମଳା ଓ ନରେନ୍ଦ୍ର ଦୁହିଁଙ୍କ ଛଡ଼ା । ରବିଶଙ୍କର ମହାରାଜାଙ୍କର ଚିଠିର ଜବାବ ହପ୍ତା ହପ୍ତା ବିତିଗଲେ ବି ଦିଆଯାଇ ପାରିଲା ନାହିଁ । ଆଉ ନନ୍ଦିନୀର ତାରର ଜବାବ ଦେବାକୁ ଡର ସହିଲା ନାହିଁ । ଯଦି କେହି ବିନୋବାଙ୍କର ପରାମର୍ଶ ଲୋଡ଼ିଲା ତ କ'ଣ ପୁଲିସ ବ୍ୟବହାର କରିବାକୁ ଅନୁମତି ମାଗିବା ପାଇଁ ? ବିନୋବାଙ୍କ ଠାରୁ ଅନୁମତି ନ ପାଇଲେ ଓଡ଼ିଶା ସରକାର ପୁଲିସ ବ୍ୟବହାର କରୁନାହାନ୍ତି ? ସେପରି ପରାମର୍ଶ ପାଇଁ କେନ୍ଦ୍ର ଘରୋଇ ମନ୍ତ୍ରୀ ଉମାଶଙ୍କର ଦୀକ୍ଷିତ ତ ଅଧିକ ଯୋଗ୍ୟ ଲୋକ ଥିଲେ । ସେ ପରାମର୍ଶ ସାଙ୍ଗକୁ କେନ୍ଦ୍ର ରିଜର୍ଭ ପୁଲିସ୍ ବି ପଠେଇ ଦେଇପାରିଥାନ୍ତେ !

ଆନ୍ଦୋଳନ ବିରୋଧରେ ବିନୋବାଙ୍କ ଫତୁଆର ସେଠି ସମସ୍ତେ ତୀବ୍ର ଭାଷାରେ ସମାଲୋଚନା କଲେ– ଅବଶ୍ୟ ଉପରୋକ୍ତ ଦୁଇ ବନ୍ଧୁଙ୍କ ଛଡ଼ା, ଯେଉଁମାନେ କି ତାର ପ୍ରବଳ ସମର୍ଥନ କଲେ । ସେଠି ଯେତେବେଳେ ଏକ ପ୍ରସ୍ତାବ ଚିଠି ହେଲା ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ, ସେତେବେଳେ ସେଥିରେ ଗ୍ରାମଦାନ ଆନ୍ଦୋଳନ ଶବ୍ଦର ପ୍ରୟୋଗର ମଧ୍ୟ ନିର୍ମଳା ହେରିକା ବିରୋଧ କଲେ । ଗ୍ରାମଦାନ ବି ଏଣିକି 'ଆନ୍ଦୋଳନ' ନୁହେଁ 'କାର୍ଯ୍ୟକ୍ରମ' ହେବ । ତେଣୁ ଏ ବିଷୟରେ ଶେଷ ପର୍ଯ୍ୟନ୍ତ କୌଣସି ପ୍ରସ୍ତାବ ଗୃହୀତ ହୋଇପାରିଲା ନାହିଁ । ସର୍ବ ସେବା ସଂଘର ଇତିହାସରେ ଏହା ପ୍ରଥମ ଥର ପାଇଁ ଘଟିଲା ।

ଏ ବୈଠକରେ ରାଜନୀତିକ ଦର୍ଶନ ଉପରେ ମୋର ପ୍ରବନ୍ଧ ମଧ୍ୟ ଆଲୋଚ୍ୟ ବିଷୟ ଭିତରେ ଥିଲା । ଏ ପରିସ୍ଥିତିରେ ତା' ଉପରେ ସମ୍ୟକ ଆଲୋଚନା ହୋଇପାରିଲା ନାହିଁ । ନାରାୟଣ ହେରିକା ଅନେକ ତା'ର ସମର୍ଥନ କଲେ । ସେଥିରେ ଶ୍ରେଣୀସଂଘର୍ଷ ଶବ୍ଦ ଥିବାରୁ ନିର୍ମଳା ତାର ବିରୋଧ କଲା । ଅନ୍ୟ ଅନେକେ ତାହା ଭଲ ଭାବରେ ପଢ଼ିବାର ସମୟ ପାଇ ନଥିଲେ । ଏମିତି ଭାବରେ ତାହାର ଆଲୋଚନା ଅଧାପନ୍ତରିଆ ହୋଇ ରହିଲା ।

ଜଲଗାଓଁରୁ ଫେରିବା ବାଟରେ ବିନୋବାଙ୍କ ସହିତ କଥାବାର୍ତ୍ତା ପାଇଁ ବଙ୍ଗସାହେବ, ରାମମୂର୍ତ୍ତି, ଜଗନ୍ନାଥନ୍, ଯଶପାଲ ମିତ୍ତଲ, ନିର୍ମଳା ଓ ମୁଁ ପଉନାର ଗଲୁ । ସତ୍ୟବ୍ରତ ବି ଥିଲେ । ସର୍ବ ସେବା ସଂଘର ସବୁ ବୈଠକର ବିବରଣୀ, ଆଲୋଚନାରେ ପ୍ରତ୍ୟେକଙ୍କର ବକ୍ତବ୍ୟର ସାରାଂଶ ନିର୍ମଳା ବିନୋବାଙ୍କୁ ଲେଖି କରିଦିଏ । ଏଥରର ବିବରଣୀ ବିନୋବା ଆମମାନଙ୍କୁ ଭେଟିବା ପୂର୍ବରୁ ଦେଖି ଯାଇଥିଲେ ଓ ସେଥିରୁ ଆମର ମିଜାସର ଅବସ୍ଥା ଜାଣିପାରିଥିଲେ । ତେଣୁ ଟିକିଏ ସାଉଁଳେଇବା ଢଙ୍ଗରେ କଥାବାର୍ତ୍ତା ଆରମ୍ଭ କଲେ । ପ୍ରଥମେ ଭାରତର ଏକତାର ଗୁରୁତ୍ୱ ବୁଝାଇ ବସିଲେ ଓ କହିଲେ ଯେ, ଭାରତ ହଜାରେ ବର୍ଷ ପରେ ପୁଣି ଏକ ହେଇଛି । ତା'ର ଏ ଏକତାରେ କୌଣସି ଆଞ୍ଚ ଆଣିବା ଉଚିତ ନୁହେଁ । ତା' ପରେ ତାଙ୍କର 'ଏ.ବି.ସି. ତ୍ରିକୋଣ'ର କଳ୍ପନା ଦୋହରେଇଲେ । ଏ.ବି.ସି. ଅର୍ଥ ଆଫଗାନିସ୍ଥାନ, ବର୍ମା ଓ ସିଲୋନ । ଏ ତିନି ଦେଶ ମଝିରେ ଥିବା ସବୁ ଦେଶ ଭିତରେ ଏକତା ଆଣିବା ଓ ଏକ ମହାସଂଘ ଗଢ଼ିବା ଆବଶ୍ୟକ ବୋଲି ବିନୋବା କହିଥାନ୍ତି । ଏବେ ସେ କହିଲେ ଯେ, ଏ ଉପମହାଦେଶରେ ଶାନ୍ତି ଆଣିବା ଓ ଏ.ବି.ସି. ତ୍ରିକୋଣର କଳ୍ପନା ପୂରା କରିବା ଇନ୍ଦିରାର 'ମିଶନ' । ତେଣୁ ଦୁନିଆରେ ଭାରତ ସରକାରର ପ୍ରତିଷ୍ଠାରେ ଯେଉଁଥିରେ ଅଞ୍ଚ ଆସିବ ସେପରି କାର୍ଯ୍ୟ କରାଯିବା ଉଚିତ୍ ନୁହେଁ । କୌଣସି ରାଜ୍ୟରେ ସରକାରଙ୍କୁ ଗାଦିଚ୍ୟୁତ କରିବାପାଇଁ ମଧ୍ୟ ଉଦ୍ୟମ ହେବା ଉଚିତ୍ ନୁହେଁ ।

ଏହା ଭିତରେ ସେ ଇନ୍ଦିରାର ବି ଟିକିଏ ଭାଉ କମେଇବା ପାଇଁ କହିଲେ "ମତେ ନିର୍ମଳା କହୁଥିଲା ଯେ, ଇନ୍ଦିରା ସାକ୍ଷାତ୍ ଜଗଦମ୍ବା । ମୁଁ କହିଲି – ସେପରି କହିବା ଠିକ୍ ନୁହେଁ । ସେ ଆଖର ରାଜନୀତିବାଲା । ରାଜନୀତି ଛାଡ଼ି ଦେଶ ସେବା କରିବାକୁ ବାହାରିବ ତ ତା'ର

ପ୍ରକୃତ କଦର ଜଣାପଡ଼ିବ । ରାଜନୀତିବାଲାଙ୍କୁ ଦୁନିଆ କେତେଦିନ ମନେ ରଖିବ ? କବୀର, ଜ୍ଞାନଦେବ ଆଦିଙ୍କର ଦେହାନ୍ତ ହେବାରେ ତ ଚାରି ଶହ ବର୍ଷ ହେଇଗଲାଣି । ଏବେ ବି ଲୋକେ ତାଙ୍କୁ ମନେ ରଖିଛନ୍ତି । ଇନ୍ଦିରାଙ୍କୁ ଏତେ ଦିନ ମନେ ରଖିବେ ? ଜୟପ୍ରକାଶଙ୍କୁ ଲୋକେ ଚାରିଶହ ବର୍ଷପରେ ମନେ ପକାଇବେ ?"

ଏହା ମଧ୍ୟରେ ସେ ଭକ୍ତିର ମହିମା ମଧ୍ୟ ବର୍ଣ୍ଣନା କଲେ । ତାଙ୍କୁ ମହାରାଷ୍ଟ୍ରର କେଉଁ ଏକ ଧର୍ମ ମଣ୍ଡଳୀ ସନ୍ଥ ତାଲିକାଭୁକ୍ତ କରିଛନ୍ତି । ମହାବୀର ଜୟନ୍ତୀ ଉପଲକ୍ଷ୍ୟରେ ଜୈନ ସାଧୁମାନେ ତାଙ୍କର ପରାମର୍ଶ ନେଉଛନ୍ତି, ଅତଏବ ଆମ ପାଇଁ ସବୁ ଆଡୁ ଅନୁକୂଳତା ବଢ଼ିଯାଇଛି ବୋଲି ବୁଝାଇଲେ ଓ ସର୍ବ ସେବା ସଂଘ ସଂସ୍ଥାକୁ ହଜାର ବର୍ଷ କାଏମ ରଖିବାକୁ ହେଲେ ଆଧ୍ୟାତ୍ମିକ ସ୍ତରରେ କାମ କରିବାକୁ ହେବ, ଏହିଭଳି ବହୁତ କଥା ବୁଝାଇଲେ ।

ଗୁଜରାତର ଛାତ୍ରମାନେ ମନ୍ତ୍ରୀମଣ୍ଡଳର ଇସ୍ତଫା ପାଇଁ ଯେଉଁ ଦାବି କରିଥିଲେ ସେ ବିଷୟରେ ଜେ.ପି. ସେମାନଙ୍କୁ ଓଲଟା ପଚାରିଥିଲେ ଯେ, ମ ମନ୍ତ୍ରୀମଣ୍ଡଳ ଭାଙ୍ଗିବା ପରେ ପୁଣି କ'ଣ ହେବ ସେ ବିଷୟରେ ସେମାନଙ୍କର କି ପରିକଳ୍ପନା ଅଛି ? ପୁଣି ତ ଏ ମନ୍ତ୍ରୀମଣ୍ଡଳ ପରି ଆଉ ଏକ ମନ୍ତ୍ରୀମଣ୍ଡଳ ଆସିବ ଓ ସବୁ ଯେମିତିଚାଲିଥିଲା ସେମିତି ଚାଲିବ । ବିହାରରେ ମଧ୍ୟ ମନ୍ତ୍ରୀମଣ୍ଡଳର ଇସ୍ତଫା ଦାବି କରିବା ପାଇଁ ଛାତ୍ରମାନଙ୍କର ପ୍ରସ୍ତାବକୁ ସେ ସମର୍ଥନ କରୁନଥାନ୍ତି । ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ କ'ଣ ହେବ, ନାଗନାଥ ଯିବେ, ସାପନାଥ ଆସିବେ ବୋଲି ସେ ଏକ ସାଧାରଣ ସଭାରେ କହିଥାନ୍ତି । ପଓନାରରୁ ଜେ.ପି.ଙ୍କ ସହିତ ଟେଲିଫୋନ୍‌ରେ ସିଦ୍ଧରାଜଜୀ କଥାବାର୍ତ୍ତା କରିଥିଲେ ଓ ସେତେବେଳେ ମଧ୍ୟ ଜେ.ପି. କହିଲେ ଯେ, ସେ ଏକ ବିବୃତି କାଗଜକୁ ଦେଇଛନ୍ତି, ଯେଉଁଥିରେ ଏଇ ମତ ମଧ୍ୟ ବ୍ୟକ୍ତ କରିଛନ୍ତି ।

ଆମମାନଙ୍କର ମଧ୍ୟ ଏ ମନ୍ତ୍ରୀମଣ୍ଡଳ ଭଙ୍ଗାଭଙ୍ଗି ବ୍ୟାପାରରେ କୌଣସି ସ୍ପୃହା ନଥାଏ । ତେଣୁ ଆମେମାନେ ବେଶ୍ ସ୍ପଷ୍ଟ ଭାବରେ କହିଲୁ ଯେ, ଆମର ମନ୍ତ୍ରୀମଣ୍ଡଳ ଭାଙ୍ଗିବା ଖେଳରେ କୌଣସି ରୁଚି ନାହିଁ । ଅବଶ୍ୟ ନିର୍ମଳା ଆମ ଭିତରେ ନଥାଏ । ସେ ତା'ର ସ୍ୱତନ୍ତ୍ର ଭୂମିକାରେ ରହିଥାଏ । ଆମେ କହିଲୁ ଯେ, ଆମେ ଜନତାର ସମସ୍ୟା ନେଇ ଆନ୍ଦୋଳନ କରିବାକୁ ଚାହୁଁ । ରାମମୂର୍ତ୍ତି ଏ ଭଳିବିଭିନ୍ନ ସମସ୍ୟାଗୁଡ଼ିକୁ ଏକ ଦୁଇ ତିନି କରି ଲେଖି ପକେଇ ପ୍ରତ୍ୟେକ ଉପରେ ବିନୋବାଙ୍କ ମତ ଚାହିଁଲେ । ଏଥିରେ ନିମ୍ନ ବିଷୟଗୁଡ଼ିକ ଥିଲା । (୧) ବେଦଖଲୀ ଆଦି ଜମିବାଡ଼ି ସଂକ୍ରାନ୍ତ ସମସ୍ୟା, (୨) ସାହୁକାରମାନଙ୍କର ସୁଧଖୋରୀ, (୩) ବେପାରୀଙ୍କର କଳାବଜାର ଓ ମୂଲ୍ୟବୃଦ୍ଧି, (୪) ବିଧାନସଭା ଓ ଲୋକସଭାର ସଦସ୍ୟ ଲୋକଙ୍କୁ ପ୍ରତିଶ୍ରୁତି ଦେଇ ତାହା ପାଳନ ନକରିବା, (୫) ନିର୍ବାଚନରେ ବୁଥ୍ ଦଖଲ ଆଦି ଦୁର୍ନୀତି, (୬) ସରକାରୀ କର୍ମଚାରୀମାନଙ୍କର ଦୁର୍ନୀତି ଓ (୭) ଶିକ୍ଷାରେ ଆମୂଳ ପରିବର୍ତ୍ତନର ଆବଶ୍ୟକତା ।

ବିନୋବା ଏ ସବୁର ଜବାବ ମଧ୍ୟ ଗୋଟି ଗୋଟି କରି 'ହଁ' ରେ ଦେଲେ । ସରକାରୀ କର୍ମଚାରୀ ଲାଞ୍ଚ ନେଲେ ତାକୁ ପିଟ ଓ ବୁଥ୍ ଦଖଲ କରୁଥିବା ଲୋକଙ୍କୁ ମଧ୍ୟ ଧରି ପିଟ ବୋଲି ବି ଜୋର ଦେଇ କହିଲେ । ମାତ୍ର ମନ୍ତ୍ରୀମଣ୍ଡଳ ଭାଙ୍ଗିବା ଚେଷ୍ଟା ନ ହେବା ଉଚିତ୍ ବୋଲି ପୁଣି ତାଗିଦ କଲେ ।

ଏତକରେତ ଆମେ ଖୁବ୍ ସନ୍ତୁଷ୍ଟ ହେଲୁ । ଏ ସବୁ ବିଷୟ ଭିତରେ ବିହାର ଆନ୍ଦୋଳନରେ ସବୁଗୁଡ଼ିକ ଲକ୍ଷ୍ୟ ଆସି ଯାଉଥିଲା । ଆଲୋଚନା ଭିତରେ 'ଆନ୍ଦୋଳନ' ଶବ୍ଦ ବ୍ୟବହାରର ବିରୋଧ ମଧ୍ୟ ଭାଙ୍ଗିଯାଇଥିଲା । ଏ ସବୁ ସାଙ୍ଗରେ ନନ୍ଦିନୀଙ୍କର ତାର ଓ ତାର ଜବାବର ପ୍ରଶ୍ନ ମଧ୍ୟ ଉଠାଯାଇଥିଲା । ଜଗନ୍ନାଥନ୍ ଖୁବ୍ ଦୁଃଖିତ ହୋଇ ମନ୍ତବ୍ୟ କଲେ ଯେ, ଏ ଜବାବଟା "Most un-Vinoba like" – "ଅତି ଅଣ-ବିନୋବା କାର୍ଯ୍ୟ" ହେଲା । ଆପଣଙ୍କୁ ସେ ପରାମର୍ଶ ମାଗିଲେ ତ ଆପଣ ଆପଣଙ୍କର ଲାଖି ପରାମର୍ଶ ଦେଇଥାନ୍ତେ । ମୁଁ ଜଣାଇଲି ଯେ, ଓଡ଼ିଶାରେ ଏଭଳି କୌଣସି ଅସ୍ୱାଭାବିକ ପରିସ୍ଥିତି ଉପୁଜିବାର ଆଦୌ ଜଣା ନାହିଁ । ବିଧାନସଭା ବୈଠକ ଆରମ୍ଭରେ ଯାହା କିଛି ଗଣ୍ଡଗୋଳ ହୋଇଥିଲା ମାତ୍ର । ଧନୀ ଲୋକମାନେ ଗରିବଙ୍କ ଉପରେ ସବୁଦିନ ପରି ଶୋଷଣ ଓ ଦମନ ଚଳାଇଛନ୍ତି । ସେଥିରେ ବି କିଛି ନୂତନତ୍ୱ ନାହିଁ ।

ଆମମାନଙ୍କର କଥା ଶୁଣିସାରି ବିନୋବା ସଫେଇ ଦେଲେ ଯେ, ଯାହାର ଯାହା ଧର୍ମ ତା'ର ପ୍ରଶ୍ନର ଉତ୍ତର ସେ ସେହି ଅନୁସାରେ ଦିଅନ୍ତି । ଶାନ୍ତି ସେନା ପ୍ରଶ୍ନ ପଚାରିଲେ ଗୋଟାଏ ପ୍ରକାର ଜବାବ ପାଇବେ ଓ ମନ୍ତ୍ରୀ ପଚାରିଲେ ଆଉ ପ୍ରକାରେ । ଶାନ୍ତି ସେନାର କାମ ଅଶାନ୍ତିର ଅହିଂସା ପ୍ରତିକାର କରିବା ଓ ମନ୍ତ୍ରୀଙ୍କ ଧର୍ମ ଶାସନ କରିବା । ଏ ଉତ୍ତରରେ ଆମମାନଙ୍କର କାହାରି ମନଃପୂତ ହେଲାନାହିଁ । ଶାସନ ଅର୍ଥ କେବଳ ଠେଙ୍ଗାର ବ୍ୟବହାର ନୁହେଁ, ବୁଦ୍ଧି ଓ ବୁଝାମଣାର ବ୍ୟବହାର ଓ ନିଜର ଦୋଷତ୍ରୁଟିର ସଂଶୋଧନ ମଧ୍ୟ ଶାସନ ଦାୟିତ୍ୱରେ ଥିବା ଲୋକର ଧର୍ମ ଭିତରେ ଆସେ । ଯାହା ହେଉ ଏ ବିଷୟରେ ଆଉ ବେଶୀ କିଛି କରିବାର ନଥିଲା । ତେଣୁ ଆମେ ଏ ପ୍ରଶ୍ନକୁ ଏତିକିରେ ଛାଡ଼ିଦେଲୁ ।

ଇତିମଧ୍ୟରେ ଆଉ ଏକ ପରିସ୍ଥିତି ଉପୁଜିଲା । ଦ୍ୱିତୀୟ ଦିନ ଖବର କାଗଜରେ ଦେଖିଲୁ ଯେ, ଇନ୍ଦିରା ଗାନ୍ଧୀ ଭୁବନେଶ୍ୱରରେ ଏକ ବକ୍ତୃତାରେ ଅଭିଯୋଗ କରିଛନ୍ତି ଯେ,ସର୍ବୋଦୟବାଲା ରାଜନୀତି କରୁଛନ୍ତି, ଗ୍ରାମ ନିର୍ମାଣ ଆଦି କାମ ଆଉ କେତେବେଳେ କରିବେ ? ଓ ଏକଥା ବି କହିଛନ୍ତି ଯେ, ବିନୋବା ସେଥିପାଇଁ ଚିନ୍ତିତ ଓ ସେମାନଙ୍କୁ ସେ ନିବର୍ତ୍ତେଇବାକୁ ଚେଷ୍ଟା କରୁଛନ୍ତି, ଯଦିଓ ତାଙ୍କର ନାମ ଏ ପରିପ୍ରେକ୍ଷୀରେ ସିଧା ବ୍ୟବହାର କରିନାହାନ୍ତି ।

ଏ ଖବର ପଢ଼ି ଆମେ ସମସ୍ତେ ଦୁଃଖିତ ଓ ଉତ୍ତେଜିତ ହେଲୁ । ଇନ୍ଦିରାଙ୍କର ତ କମ୍ ସାହାସ ନୁହେଁ । ବିନୋବା ନାଁ ଧରି ଜୟପ୍ରକାଶଙ୍କୁ ବାଡ଼େଇବା ଚେଷ୍ଟା । ଆମ ଦଳଟା ଆମେ ବସି ସ୍ଥିର କଲୁଁ ଯେ, ଏହାର ଏକ ପ୍ରତିବାଦ ଦେବାପାଇଁ ବିନୋବାଙ୍କୁ ଅନୁରୋଧ କରାଯିବ । ଆଲୋଚନା ବେଳେ ସେ ବ୍ରହ୍ମଚର୍ଯ୍ୟ, ନଗରଲିପି ଆଦି ଅନ୍ୟ କଥା ଉଠେଇ ଦିଅନ୍ତି ଓ ଆଲୋଚନା ମୂଳଧାରା ଛାଡ଼ି ସେଇ ବାଟରେ ଚାଲିଯାଏ । ତେଣୁ ସମସ୍ତେ ଠିକ୍ କଲୁ ଯେ, ସେଭଳି ଅନ୍ୟ ବିଷୟ ମଝିରେ ଉଠିଲେ ତାକୁ ଧରି ଅଧିକ ଆଲୋଚନା ଚଳାଯିବ ନାହିଁ, ଏ ଗୋଟିଏ ବିଷୟରେ ନିଷ୍ପତ୍ତି ନ ହେବାଯାଏ ।

ବୈଠକରେ ଆମେ ଏକଥା ଉଠାଇବାରୁ ତାଙ୍କର ପ୍ରଥମ ଜବାବ ହେଲା ଯେ – ଖରାପ କ'ଣ କହିଛି ? ଖୁବ୍ କୁଶଳତାର ସହିତ କହିଛି । ଜେ.ପି.ଙ୍କର ନାଁ ସିଧା ଧରି ନାହିଁ । ତା' ପରେ କିଛି ଆଲୋଚନା ଚାଲିଲା, ମାତ୍ର ଇନ୍ଦିରାଙ୍କର ବକ୍ତବ୍ୟର କୌଣସି ପ୍ରତିବାଦ ଦେବାରେ ମନୋଭାବ ତାଙ୍କର ଥିବାପରି ଜଣାପଡ଼ିଲା ନାହିଁ । ଏହାପରେ ଆମେ ତାଙ୍କୁ ଗୋଟିଏ ଲମ୍ବା ଲେଖାରେ ସର୍ବୋଦୟ ଆନ୍ଦୋଳନରେ ଜେ.ପି. ଓ ବିନୋବା ଉଭୟଙ୍କର ମହାନ ଭୂମିକା, ଜେ.ପି.ଙ୍କ ପ୍ରତି ଇନ୍ଦିରାଙ୍କର ପ୍ରତିକୂଳ ଭାବ, ସର୍ବୋଦୟ ଆନ୍ଦୋଳନରେ ଭେଦ ସୃଷ୍ଟି କରିବା ଇନ୍ଦିରାଙ୍କର ଚେଷ୍ଟାର ଉଦାହରଣ ଆଦି ବିଷୟର ଉଲ୍ଲେଖ କରି ବିନୋବାଙ୍କୁ ଏ ସବୁ ପ୍ରତି ଅଭିହିତ ରହିବା ପାଇଁ ଅନୁରୋଧ କଲୁଁ ।

ଏହାପରେ ଯେତେବେଳେ ଆମେ ତାଙ୍କୁ ଭେଟିଲୁ ସେ ପ୍ରଥମେ ଆମକୁ ଜଣ ଜଣ କରି ଖୁସି କରିବା ଚେଷ୍ଟା କଲେ; "ଗନ୍ନାଥନ୍, ତେମେ ମନ୍ଦିରଜମି ନେଇ ଅନଶନ କରିବା କଥା ବିଚାରୁଥିଲ ପରା ? ତେମେ ତାହା କରିପାର । ରାମମୂର୍ତ୍ତି ! ତେମେ ଭୂମିହୀନଙ୍କ କଥା ନେଇ ସତ୍ୟାଗ୍ରହ କରିବ ବୋଲି କହୁଥିଲ ପରା ? ତେମେ ସତ୍ୟାଗ୍ରହ କରିପାର..... ଏଥର ସନ୍ତୋଷ ହେଲ ତ ? ନା ଆଉ କ'ଣ ବାକୀ ରହିଲା ?" ମାତ୍ର ଏ ପିଲା ଭଣ୍ଡେଇବା ଉଦ୍ୟମର କେହି କୌଣସି ଜବାବ ଦେଲେ ନାହିଁ ।

ତା' ପରେ କୌଣସି ଏକ ଗୁଜରାଟୀ ପତ୍ରିକାରେ ବାହାରିଥିବା ଗୁଜରାଟର ଗୌରବ ଗାନ କରିଥିବା ଏକ କବିତା ପଢ଼ି ସେ ଆମକୁ ଶୁଣାଇଲେ ଓ କହିଲେ ଯେ ଦେଶକୁ ଖଣ୍ଡ ଖଣ୍ଡ କରିବାର ଏହିପରି ମନୋଭାବ ଦେଖାଗଲାଣି । ଓଡ଼ିଶାରେ ବିରୋଧୀ ଦଳ ଦ୍ୱାରା "ବନ୍ଦେ ଉତ୍କଳ ଜନନୀ" ଧ୍ୱନି ଦିଆହେଉଛି । ଡି.ଏମ୍.କେ ଦ୍ରାବିଡ଼ସ୍ଥାନ କଥା ଉଠାଉଛି ଇତ୍ୟାଦି । ବଙ୍ଗସାହେବ ଜବାବ ଦେଲେ ଯେ, ସେଥିରେ ସର୍ବ ସେବା ସଂଘ ବା ଜେ.ପି.ଙ୍କର କି ସମ୍ପର୍କ ଅଛି ? ସେମାନେ ତ ଏସବୁକୁ ସମର୍ଥନ କରୁନାହାନ୍ତି ? ସେଠୁ ବିନୋବା ଆରମ୍ଭ କଲେ - "ସର୍ବୋଦୟବାଲା ରାଜନୀତିରେ ନାହାନ୍ତି ତ ଏ ହରମୋହନ– ମନମୋହନ ଝଗଡ଼ା କାହିଁକି ? ଗୁଜରାଟରେ ନାରାୟଣ କ'ଣ କରୁଛି ? ସେତେବେଳକୁ ବିନୋବାଙ୍କର ବିଲକୁଲ ପକ୍ଷପାତ ଦୁଷ୍ଟ ଓ ପୂର୍ବଗ୍ରହଗ୍ରସ୍ତ କଥାବାର୍ତ୍ତାର ଢଙ୍ଗ ଦେଖି ମୁଁ ଏକାବେଳକେ ସ୍ତମ୍ଭିତ ହେଇଗଲିଣି । ମୋର ଆଉ ଆଦୌ କଥା କହିବାର ଇଚ୍ଛା ହେଉ ନଥାଏ । ବଙ୍ଗସାହେବ ଜବାବ ଦେଲେ ଯେ, ହରମୋହନ ବାବୁ କଂଗ୍ରେସ ସମର୍ଥନରେ ରାଜନୀତି କରୁଛନ୍ତି । ଗୁଜରାଟରେ ପ୍ରବୋଧ ଓ ହରିବଲ୍ଲଭ ରାଜନୀତି କରୁଛନ୍ତି । ସେମାନେ ମଧ୍ୟ ଇନ୍ଦିରାଙ୍କର ସମର୍ଥକ । ଏହା ଭିତରେ ପୁଣି ବିନୋବାଜୀ ମନ୍ତବ୍ୟ କଲେ ଯେ, ଓଡ଼ିଶାରେ ଆଦିବାସୀମାନଙ୍କ ଉପରେ ଅତ୍ୟାଚାର ହେଉଛି ବୋଲି ତ ମାଳତୀ ଦେବୀ କହୁଛନ୍ତି, କିନ୍ତୁ ତାହା ଯଦି ସତ ତେବେ ଆଦିବାସୀମାନେ କଂଗ୍ରେସକୁ ଭୋଟ ଦେଲେ କିପରି ? ଏଥିରୁ ମୁଁ ବୁଝିଲି ଯେ, ଆମମାନଙ୍କ ବିଷୟରେ ଓ ଓଡ଼ିଶା ପରିସ୍ଥିତି ସମ୍ବନ୍ଧରେ ତାଙ୍କୁ ବହୁତ କିଛି ମିଛ କଥା କୁହାହେଇଛି ଓ ସେ ସବୁକୁ ସେ ନିର୍ବିଚାରରେ ବିଶ୍ୱାସ

କରି ଯାଉଛନ୍ତି । ଆମମାନଙ୍କୁ ପଚାରିବାର ସୌଜନ୍ୟ ବି ତାଙ୍କର ଖିଆଲକୁ ଆସିନାହିଁ । ଏହା ଫଳରେ ମୋର ଆହୁରି ବେଶୀ ଦୁଃଖ ହେଲା ।

ସେ ଦିନର ଆଲୋଚନାର କ୍ରମିକ ସ୍ମୃତି ମୋର ନାହିଁ, ସେତେବେଳେ ମୁଁ କୌଣସି ନୋଟ ନ ନେଇଥିବାରୁ ସ୍ମୃତିକୁ ଉଝାଳିବା ପାଇଁ କୌଣସି ସାହାଯ୍ୟ ନାହିଁ ଓ ତାହା ଛଡ଼ା ଏସବୁ ଲେଖୁଛି ଜେଲ୍ ଭିତରେ ବସି । ସେଥିପାଇଁ ଆଲୋଚନାର ମୋଟାମୋଟି ଛାପ ଓ କେତେ ଗୁଡ଼ାଏ ମନରେ ପୋଡ଼ି ଦେଲା ଭଳି କଥା ମନେ ରହିଯାଇଛି । ନିର୍ବାଚନରେ ଲାଞ୍ଚମିଛ କଥା ଉଠିଲା । ବିନୋବା କହିଲେ – "ସେଥିପାଇଁ ଜୁଡ଼ିସିୟାରୀ ଅଛି । କେଶ୍ କରୁନାହଁ କାହିଁକି ?" ବଙ୍ଗସାହେବ ଉତ୍ତର ଦେଲେ – "କେସ୍‌ର ଖରଚ ତ ବହୁତ ବେଶୀ ହେବ । ତାହା କିଏ ଦେବ ? ତା' ଛଡ଼ା ଏ ଦେଶର ଜୁଡ଼ିସିୟାରୀକୁ ତ କମିଟେଡ୍ କରିଦିଆ ହେଲାଣି (କଂଗ୍ରେସ ପକ୍ଷଭୁକ୍ତ) ।" ଏଥିରେ ବିନୋବା ଏକମତ କ୍ରୁଦ୍ଧ ସ୍ୱରରେ କହିଲେ – "ଆପଣଙ୍କର ଯଦି ଏ ଦେଶ ଉପରେ ବିଶ୍ୱାସ ନାହିଁ ତେବେ ଏ ଦେଶ ଛାଡ଼ି ଚାଲିଯାଉ ନାହାନ୍ତି କାହିଁକି ?"

ତାଙ୍କର ଏ କଥାରେ ଉପସ୍ଥିତ ସମସ୍ତଙ୍କ ଭିତରେ ଗୋଟାଏ ବିକ୍ଷୁବ୍ଧ ସ୍ତବ୍ଧତା ବ୍ୟାପିଗଲା । କେହି ଆଉ କୌଣସି କଥା କହିଲେ ନାହିଁ, ବିନୋବା ନାନା କଥା କହିଚାଲିଲେ ଓ ଯେ କ'ଣ କହୁଛି, ସେ କ'ଣ କହୁଛି ଆଦି ପଚାରି ଲାଗିଲେ । ଶେଷକୁ ପଚାରିଲେ ମନମୋହନ କ'ଣ କହୁଛି ? ମୁଁ ଆଉ ସମ୍ଭାଳି ପାରିଲି ନାହିଁ । କାନ୍ଦି ଉଠିଲି । ବିନୋବା ଅପ୍ରସ୍ତୁତ ହେଇ କହିବାକୁ ଲାଗିଲେ – "ସମତା ହରେଇବା ଠିକ୍ ନୁହେଁ, କ୍ଷୋଭ ହେବା ଠିକ୍ ନୁହେଁ–" "ରାମମୂର୍ତ୍ତି ମଧ୍ୟ ସମ୍ପୂର୍ଣ୍ଣ ଗମ୍ଭୀର ହେଇ ବସିଥାନ୍ତି, ଆଦୌ କିଛି କହୁନଥାନ୍ତି । ସେ ସେଠୁ କହିଲେ – "ଚାଲ, ଯିବା । ଆଉ କଥାବାର୍ତ୍ତା କରି ଲାଭ ନାହିଁ ।"

ଯା' ପୂର୍ବରୁ ସେ ଆଲୋଚନା ପ୍ରସଙ୍ଗରେ ବିଶ୍ୱାସ ଉପରେ ଏକ ଲମ୍ବା ବକ୍ତୃତା ଦେଇ କହିଥିଲେ ଯେ, ତାଙ୍କର ଇନ୍ଦିରାଙ୍କ ଉପରେ ବିଶ୍ୱାସ ଅଛି । ବିଡ଼ଲାଜୀଙ୍କ ଉପରେ ବିଶ୍ୱାସ ଅଛି । ସେ ପ୍ରତିଦିନ ପୂଜାପାଠ କରନ୍ତି । ତେଣୁ ତାଙ୍କ ଜାଣତରେ ତାଙ୍କର ବ୍ୟବସାୟରେ କୌଣସି ଦୁର୍ନୀତି ହେଉଥିବ ବୋଲି ମୁଁ ବିଚାରେ ନାହିଁ । ଇତ୍ୟାଦି ଇତ୍ୟାଦି । ମୁଁ ଏହି ପ୍ରସଙ୍ଗରେ ମୋର ବିଚାର ବାଢ଼ିଥିଲି ଯେ, ମଣିଷ ପ୍ରତି ବିଶ୍ୱାସ ରଖିବା ଅର୍ଥ ତା'ର ପ୍ରକଟ ମତାମତ ଓ କାର୍ଯ୍ୟକଳାପରେ ଦେଖାଯାଉଥିବା ତ୍ରୁଟିର ସମାଲୋଚନା ଓ ବିରୋଧ ନ କରିବା ନୁହେଁ । ବିଶ୍ୱାସର ଅର୍ଥ ଯଦି ଏପରି କରାଯିବ ତେବେ ସର୍ବସାଧାରଣ ଜୀବନ ଅଚଳ ହେଇଯିବ । ବଙ୍ଗ ସାହେବ ଖୁବ୍ ବ୍ୟଥିତ ସ୍ୱରରେ କହିଥିଲେ – "ଆପଣଙ୍କର ସମସ୍ତଙ୍କ ଉପରେ ବିଶ୍ୱାସ ଅଛି । କେବଳ ଆମ ଉପରେ ନାହିଁ ।"

ସେ ଦିନର ରାତି ଖୁବ୍ ମାନସିକ ଟଣକ ଭିତରେ କଟିଲା । ନିର୍ମଳା ଆସି ବଙ୍ଗସାହେବ ହେରିକାଙ୍କୁ କ'ଣ ସବୁ ବୁଝାଇବା ଚେଷ୍ଟା କରୁଥିଲା । ବହୁତ କଡ଼ାକଡ଼ା କଥା ଶୁଣି ଫେରିଗଲା । ସେ ରାତିରେ ମୋର ଆଦୌ ନିଦ ହେଲା ନାହିଁ । କଣ କରାଯିବ କିଛି ବାଟ ଦିଶୁ ନଥାଏ । ଭୋର ଆଡ଼କୁ ଗୋଟାଏ କଥା ସୁଝିଲା ଯେ, ଏକ ଲିଖିତ ପ୍ରତିବାଦ ବିବୃତି ନେଇ ବିନୋବାଙ୍କୁ ଦେଖାଯାଉ ଓ ତାହାକୁ ସେ ସ୍ୱାକ୍ଷର କରିବା ପାଇଁ ଅନୁରୋଧ କରାଯାଉ । ପ'ର ଦିନ ସକାଳୁ

ଏହି ସୂଚନା ଉପରେ ସମସ୍ତେ ବିଚାର କରି ସେହି ଅନୁସାରେ କରିବାର ସ୍ଥିର ହେଲା ଓ ଆମେ ଏ ପ୍ରତିବାଦ ବିବୃତି ଠିଠା କରି ନେଇ ବିନୋବାଙ୍କ ପାଖକୁ ଗଲୁ । ସେ ଆମକୁ ଆଶ୍ୱସ୍ତ କରିବା ପାଇଁ ଖୁବ୍ କୋମଳ ଭାବରେ କଥାବାର୍ତ୍ତା ଆରମ୍ଭ କଲେ । ଜେ.ପି.ଙ୍କୁ ପ୍ରଶଂସା କରି କେତେକ କଥା କହିଲେ । ମନମୋହନ ମୋର ପୁଅ ଭଳି, ତାର ପରିବାର ସହିତ ମୋର ସଂପର୍କ ଅତି ଘନିଷ୍ଠ ଆଦି କହି ମତେ ସାନ୍ତ୍ୱନା ଦେଲେ । ଏହାପରେ ଆମେ ସେହି ପ୍ରତିବାଦ କଥା ଉଠାଇଲୁ । ସେ କହିଲେ ଯେ, ସେ ସୂକ୍ଷ୍ମ ପ୍ରବେଶ ପରେ ଆଉ ବିବୃତି ଆଦି ଦେଉନାହାନ୍ତି । ନନ୍ଦିନୀଙ୍କୁ ଦିଆଯାଇଥିବା ତାର କଥା ଦର୍ଶେଇବାରୁ ପୁଣି କହିଲେ ଯେ, ତାଙ୍କ ପକ୍ଷରୁ ଅନ୍ୟ କେହି ତାହା ଦେଇପାରେ ।  ଆମେ ଲେଖିନେଇ ଯାଇଥିବା ବିବୃତିଟି ତାଙ୍କୁ ଦିଆ ହେଲା । ସେ ସେଥିରେ ସାମାନ୍ୟ ସଂଶୋଧନ କରିଦେଲେ ଓ ବଙ୍ଗସାହେବଙ୍କ ଦ୍ୱାରା ସର୍ବ ସେବା ସଂଘ ପକ୍ଷରୁ ତାହା କାଗଜକୁ ଦିଆହେଲା । ସେ ବିବୃତିରେ ଜେ.ପିଙ୍କ ସହିତ ବିନୋବାଙ୍କର ଅଧିକାଂଶ ବିଷୟରେ ମତୈକ୍ୟ ଅଛି ଓ ଜେ.ପି.ଙ୍କର ପ୍ରତି ଆସ୍ଥା ଅଛି ବୋଲି କୁହାଯାଇଥିଲା ।

ପୂର୍ବରୁ ଆଲୋଚନା ପ୍ରସଙ୍ଗରୁ ଆହୁରି ଅନେକ କଥା ଉଠିଥିଲା । ସେ ସବୁ ବିଷୟରେ ଆମର ମତାମତ ଆମେ ଗୋଟିଏ ଲମ୍ବା ବକ୍ତବ୍ୟ ଆକାରରେ ଲେଖି ତାଙ୍କୁ ଦେଇଥିଲୁ । ସେ ସବୁ ଉପରେ ସେ ନିଜର ମନ୍ତବ୍ୟ ପୂର୍ବରୁ ଦେଇ ନଥିଲେ । ଏ ବିବୃତି ପର୍ବ ସରିଲାପରେ ସେ କାଗଜକୁ ବାହାର କରି ତା' ଉପରେ ଦଫା ଦଫା କରି ମନ୍ତବ୍ୟ ପୂର୍ବରୁ ଦେଇ ନଥିଲେ । ଏ ବିବୃତି ସର୍ବ ସରିଲାପରେ ସେ କାଗଜକୁ ବାହାର କରି ତା' ଉପରେ ଦଫା କରି ମନ୍ତବ୍ୟ ଦେଲେ । ଏ ସବୁ ମତାମତ ଯେ ଆମ ପକ୍ଷରେ ପୂରାପୂରି ଗ୍ରହଣୀୟ ଥିଲା ତାହା ନୁହେଁ । ମାତ୍ର ଆମ ମତ ବିନୋବା ଜାଣିଲେ ଓ ଆମେ ତାଙ୍କ ମତ ଜାଣିଲୁ ଏତକ ଆଦାନ ପ୍ରଦାନରେ ସେ ସମୟରେ ଆମେ ସନ୍ତୁଷ୍ଟ ହେଲୁ । ବିନୋବା ଶେଷରେ ପଚାରିଲେ – "କ'ଣ ସନ୍ତୋଷ ହେଲା ? ବଙ୍ଗସାହେବ କହିଲେ –" ହଁ ! ସାଢ଼େ ଷୋଳ ଅଣା !"

ଏଇଥରର ଆଲୋଚନାରେ କଟକ ଉପନିର୍ବାଚନରେ କଂଗ୍ରେସ ପକ୍ଷରୁ କୋଡ଼ିଏ ତିରିଶ ଲକ୍ଷ ଟଙ୍କା ଖର୍ଚ୍ଚ ହେବାର କଥା ମଧ୍ୟ ଉଠିଥିଲା । ସେ ପ୍ରସଙ୍ଗରେ ବିନୋବା କହି ଉଠିଲେ ଯେ ଟଙ୍କା ଖର୍ଚ୍ଚ ହେଲା ତ କ'ଣ ହେଲା ? ଯେ ଖର୍ଚ୍ଚ ନ କରିବ ସେ ତ ବୋକା । ନିର୍ବାଚନରେ ଟଙ୍କା ଖୁବ୍ ଖର୍ଚ୍ଚ କରିବା ଉଚିତ୍ । ତାଙ୍କର ଏ ଉକ୍ତିରେ ଆମେ ସମସ୍ତେ ବିସ୍ମିତ ହେଇଥିଲୁ ଓ ତାଙ୍କୁ ଏ ଟଙ୍କା ଖର୍ଚ୍ଚର ପ୍ରକୃତ ଉଦ୍ଦେଶ୍ୟ ଓ ରୂପ ବିଷୟରେ ବିସ୍ତୃତ ଭାବରେ ଲେଖି ଜଣାଇଥିଲୁ । ଏହା ଲୋକଙ୍କୁ ଲାଞ୍ଚ ଦେବାପାଇଁ, ଭୋଟ କିଣିବା ପାଇଁ, ଲୋକଙ୍କୁ ଡରେଇ ଧମକେଇ ଭୋଟ ଦେବାରୁ ନିବୃତ୍ତ କରିବା ଓ ସେମାନଙ୍କ ନାଁରେ ଜାଲ ଭୋଟ ଦେବା ପାଇଁ ଗୁଣ୍ଡାଙ୍କୁ ପୋଷିବାକୁ ଓ ଏହିପରି ସବୁ କାର୍ଯ୍ୟରେ ଖର୍ଚ୍ଚ କରାଯାଇଛି । ଲୋକଙ୍କର ନୈତିକତା ଓ ସତ୍‌ସାହସକୁ ଧ୍ୱଂସ କରିବା ହିଁ ଏହାର ଉଦ୍ଦେଶ୍ୟ ଓ ପରିଣାମ । କଥାଟା ତାଙ୍କ ମନରେ ଭେଦିଥିବା ପରି ମନେ ହେଲା ନାହିଁ । "ଭୋଟରେ ଖୁବ୍ ଟଙ୍କା ଖର୍ଚ୍ଚ କରିବା ଉଚିତ୍" ବୋଲି ସେ ତାହା ପରେ ପୁଣି ଥରେ କହିଥିବାର ମନେ ପଡୁଛି ।

# ବିହାର ଆନ୍ଦୋଳନ ଓ ଆମେ

ବିହାର ଆନ୍ଦୋଳନ ସମ୍ବନ୍ଧରେ ବିଚାର କରିବା ପାଇଁ ଗୋଟିଏ ବୈଠକ ପାଟନାରେ ଏପ୍ରିଲ ୧୯ ଓ ୨୦, ୧୯୭୪ ତାରିଖରେ ସର୍ବ ସେବା ସଂଘ ପକ୍ଷରୁ ଡକା ହେଲା । ସେଥିରେ ଦେଶର ସବୁ ଆଡୁ ପଚାଶ ଜଣ ଖଣ୍ଟେ କର୍ମୀ ଯୋଗଦେଇଥିଲେ । ସେଠି ବିହାର ଆନ୍ଦୋଳନର ଆନୁପୂର୍ବିକ ପରିଚୟ ଦେବାକୁ ଯାଇ ରାମମୂର୍ତ୍ତି ଉଲ୍ଲେଖ କଲେ ଯେ, ପାଟନା ଗାନ୍ଧୀ ମଇଦାନ ସଭାରେ ଛାତ୍ରନେତାମାନେ କେବଳ ଶାସକଦଳ ନୁହେଁ ବିରୋଧୀ ଦଳମାନଙ୍କର ମଧ୍ୟ ତୀବ୍ର ସମାଲୋଚନା କରିଥିଲେ ଓ କୌଣସି ଦଳ ପ୍ରତି ସେମାନଙ୍କର ଆସ୍ଥା ନାହିଁ ବୋଲି କହିଥିଲେ । କିନ୍ତୁ ଜେ.ପି. ତାଙ୍କର ବକ୍ତୃତାରେ କଥାଟାକୁ ସାଉଁଳେଇବା ଚେଷ୍ଟା କଲେ ଓ ବିରୋଧୀ ଦଳମାନଙ୍କୁ ଏପରି କହିବା ଠିକ୍ ନୁହେଁ ବୋଲି ମତ ଦେଲେ । ନାରାୟଣ ମତ ଦେଲା ଯେ, ଆନ୍ଦୋଳନରେ ବିଦ୍ୟାର୍ଥୀ ପରିଷଦ, ଜନସଂଘ ଆଦି ବେଶୀ ସକ୍ରିୟ ହେବାରୁ ଏହା ଏକ ଦକ୍ଷିଣପନ୍ଥୀ ଆନ୍ଦୋଳନ ବୋଲି ସମାଲୋଚନା କରିବାର ସୁଯୋଗ ମିଳୁଛି । ତେଣୁ ଆନ୍ଦୋଳନକୁ ଚରମପନ୍ଥୀ ରୂପ ଦେବା କଥା ଭାବିବାକୁ ହେବ । ମୁଁ ମଧ୍ୟ ନାରାୟଣ ଅନୁରୂପ ମତବ୍ୟକ୍ତ କଲି ଓ କେବଳ ଦୁର୍ନୀତି ବିରୋଧରେ ଆନ୍ଦୋଳନ କରିବାରେ ମୋର ଉତ୍ସାହ ନାହିଁ ବୋଲି କହିଲି । ଏ କଥାରେ ନାରାୟଣ ହେରିକା ଟିକିଏ ଉତ୍ତେଜିତ ହେଲେ ।

ଜେ.ପି. ତାଙ୍କର ଶେଷ ବକ୍ତୃତାରେ ସଂକେତ ଦେଲେ ଯେ, ସେ ଏପରି ଏକ ପଦକ୍ଷେପ ନେବାକୁ ଯାଉଛନ୍ତି ଯାହା ଆମମାନଙ୍କୁ ବିସ୍ମିତ କରି ଦେଇପାରେ । ଦିନେ ଦୁଇଦିନପରେ ସେ ମନ୍ତ୍ରୀମଣ୍ଡଳର ଇସ୍ତଫା ଓ ବିଧାନସଭା ଭଙ୍ଗ ଦାବୀ ଉଠେଇଥିଲେ । ସେଠି ବୈଠକରେ ପ୍ରକାଶ ପାଇଥିବା ବିଭିନ୍ନ ମତାମତ ଉପରେ ନିଜର ମତ ମଧ୍ୟ ଦେଲେ ଓ ଆନ୍ଦୋଳନକୁ ଚରମପନ୍ଥୀ ରୂପ ଦେବାର ସୂଚନାକୁ ଏ କଥା କହି ନାକଚ କରିଦେଲେ ଯେ, ବର୍ତ୍ତମାନ ଆଇଡ଼ିଓଲୋଜି ବା ମତବାଦର ଯୁଗ ଗଲାଣି । ବାମପନ୍ଥୀ ଓ ଦକ୍ଷିଣପନ୍ଥୀ ଆଦି ସଂଜ୍ଞାର ଯୁଗ ଗଲାଣି । ତା'ପରେ ସେ ଟିକିଏ ଅଧୈର୍ଯ୍ୟ ହେଲାପରି କହିଲେ ଯେ, ଆପଣମାନେ ମୋତେ ସମର୍ଥନ କରନ୍ତୁ ବା ନ କରନ୍ତୁ, ଯାହାକରିବାକୁ ଚାହାନ୍ତି କରନ୍ତୁ, ମୁଁ ଯାହା ଠିକ୍ କରିଛି କରିବି । ଏ କଥାଟା ଆମଭିତରୁ ଅନେକଙ୍କୁ ଭଲ ଲାଗିଲା ନାହିଁ । ସେଠି ତ ସମସ୍ତେ ତାଙ୍କୁ ସମର୍ଥନ କରୁଥିଲୁ । ବିରୋଧ ଦୃଷ୍ଟିରୁ ସମାଲୋଚନା କେହି କରି ନଥିଲେ ।

ଆଇଡିଓଲୋଜୀ ନିରର୍ଥକ ହେଇଗଲାଣି ଏ କଥାଟା ମୁଁ ଗ୍ରହଣ କରିପାରିଲି ନାହିଁ । ଏବିଷୟରେ ମୁଁ ପରେ ତାଙ୍କୁ ଚିଠି ଲେଖିଥିଲି । ସେଥିରେ ମୁଁ ଦର୍ଶେଇଥିଲି ଯେ, ଦଳମାନଙ୍କର ଦକ୍ଷିଣପନ୍ଥୀ, ବାମପନ୍ଥୀ ଆଦି ଲେବେଲ ନିରର୍ଥକ ହେଇଯାଇଛି ସତ, କିନ୍ତୁ ଯେଉଁସବୁ ପ୍ରଶ୍ନ ଓ ଲକ୍ଷ୍ୟ ନେଇ ଏ ସବୁ ମତବାଦର ଉଦ୍‌ଭବ ହେଇଥିଲା, ସେ ସବୁ ପ୍ରଶ୍ନ କାଏମ ରହିଛି ଓ ଯେକୌଣସି ଆନ୍ଦୋଳନକୁ ସେ ବିଷୟରେ ଆପଣାର ଆଭିମୁଖ୍ୟ ଅବଶ୍ୟ ନିଶ୍ଚିତ କରିବାକୁ ହେବ ।

ଏ ବୈଠକର ତିନି ଚାରିଦିନ ପରେ ଜେ.ପି ଙ୍କର ପ୍ରୋଷ୍ଟେଟ ଗ୍ରନ୍ଥିର ଅସ୍ତ୍ରୋପଚାର ପାଇଁ ଭେଲ୍ଲୋର ଯିବାର ଥିଲା । ସେ ତାଙ୍କ ଅନୁପସ୍ଥିତିରେ କାମ ଚଳାଇବା ପାଇଁ ଚାରିଜଣଙ୍କର ଏକ ମଣ୍ଡଳୀ ନିଯୁକ୍ତି କରିବା କଥା ଘୋଷଣା କଲେ । ରାମମୂର୍ତ୍ତିଜୀ, ନାରାୟଣ, ବିହାର ପ୍ରାଦେଶିକ ସର୍ବୋଦୟ ମଣ୍ଡଳର ଅଧ୍ୟକ୍ଷ ତ୍ରିପୁରାରୀ ଶରଣ ଓ ମୁଁ ସେଥିରେ ରହିଲୁ । ସେ ପର୍ଯ୍ୟନ୍ତ ମୁଁ ଜେ.ପି.ଙ୍କ ବିରୋଧରେ ଇନ୍ଦିରାଙ୍କର ଚକ୍ରାନ୍ତ ଓ ତାଙ୍କର ଉଦ୍ଦେଶ୍ୟମୂଳକ ସମାଲୋଚନାର ବିରୋଧ କଲେ ମଧ୍ୟ ଜେ.ପି.ଙ୍କର ଚିନ୍ତାଧାରା ସହିତ ଏକମତ ହେଇ ନଥାଏ । ତାଙ୍କର ବିଚାରର ସମାଲୋଚକର ଭୂମିକା ହିଁ ମୋର ଥାଏ । ଏହା ପୂର୍ବରୁ ଜେ.ପି. ଓ ବିନୋବା ଉଭୟଙ୍କର ଆଭିମୁଖ୍ୟକୁ ମୁଁ ସମାଲୋଚନା ଦୃଷ୍ଟିରେ ଦେଖୁଥାଏ ଓ ଏ ଦୁହିଁଙ୍କର ବିଚାରକୁ ସୁଧାରି ଗୋଟାଏ ସର୍ବସମ୍ମତ ତୃତୀୟ ପନ୍ଥାରେ ପକେଇବା ପାଇଁ ଆମେ ଚେଷ୍ଟା କରିବା ଉଚିତ ବୋଲି ବିଚାରୁଥାଏ । ପଉନାରରେ ବିନୋବାଙ୍କର ପକ୍ଷପାତଦୁଷ୍ଟ ମନୋଭାବ ଦେଖି ମୋର ଖୁବ୍ ନିରାଶା ହେଇଥିଲା । ତଥାପି ଜେ.ପି. ଙ୍କର ଷୋଳ ଅଣା ସମର୍ଥକ ମୁଁ ହେଇ ନଥିଲି । ସେଥିପାଇଁ ମତେ ଏ ପରିଚାଳକ ମଣ୍ଡଳୀରେ ରଖାଯିବାରେ ମୁଁ ଟିକିଏ ବିସ୍ମିତ ହିଁ ହେଇଥିଲି ।

ଏହାପରେ ମୁଁ ଦୁଇ ଖେପରେ ପାଟନାରେ ପନ୍ଦର ଦିନ ରହିଥିଲି । ପ୍ରଥମଥର ପହଞ୍ଚିବାର ଦୁଇ ଘଣ୍ଟା ଭିତରେ ଯେ, ଆସି ମତେ ପ୍ରଥମେ ଭେଟିଲେ ଓ ଆନ୍ଦୋଳନର ପରିସ୍ଥିତି ଓ ଗତିବିଧି ବିଷୟରେ ସବୁକଥା ଜଣେଇଲେ ସେ ହେଲେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସଂଗଠକ ଗୋବିନ୍ଦଚାରୀ । ଏ ମହାଶୟ ଦକ୍ଷିଣର ଲୋକ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ । ସେ କାମ ଛାଡ଼ି ଦେଇ ପୂରା ସମୟ ଦେଇ କେତେ ବର୍ଷ ହେଲା ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର କାମରେ ଲାଗିଛନ୍ତି । ସେ ମତେ ଆନ୍ଦୋଳନରେ ବିଦ୍ୟାର୍ଥୀ ପରିଷଦ, ତରୁଣ ଶାନ୍ତି ସେନା ଓ ଅନ୍ୟାନ୍ୟ ଛାତ୍ର ସଂଗଠନର ଭୂମିକା ବିଷୟରେ ନିଜର ବିଶ୍ଳେଷଣ ଦେଲେ । ରା. ସ୍ୱ. ସଂଘ ବିଷୟରେ ସେ କହିଲେ ଯେ, ଏ ସଂସ୍ଥା ଏ ଆନ୍ଦୋଳନରେ ରୁଚି ରଖେ ନାହିଁ । ସେ ସଂଘର ବିଶ୍ୱାସ ଯେ, ପ୍ରଥମେ କ୍ୟାଡ଼ର ତିଆରି କରି ତା'ପରେ ଯାହା ହେଲେ କରିବାକୁ ହେବ । ତରୁଣ ଶାନ୍ତି ସେନାରେ ଖୁବ୍ ଭଲ ଲୋକ ଅଛନ୍ତି, କିନ୍ତୁ ତା'ର ସଦସ୍ୟ ସଂଖ୍ୟା ବହୁତ କମ୍, ବିଦ୍ୟାର୍ଥୀ ପରିଷଦ ଭଲ ସଂଗଠନ ଓ ସବୁଠି ଶାଖା ଅଛି ଇତ୍ୟାଦି । ତାଙ୍କ କଥାରୁ ମୁଁ ବୁଝିନେଲି ଯେ, ସେ ମତେ ଜନସଂଘ ଓ ବିଦ୍ୟାର୍ଥୀ ପରିଷଦର ଗୁରୁତ୍ୱ ହୃଦୟଙ୍ଗମ କରାଇବା ଚେଷ୍ଟାରେ ଅଛନ୍ତି । ଏ ଖୁବ୍ ବିଚକ୍ଷଣ ଓ ବୁଦ୍ଧିମାନ ବ୍ୟକ୍ତି ବୋଲି ମୋର ଧାରଣା ହେଲା ।

ବିହାରରେ ଥିବାବେଳେ ମୁଁ ପ୍ରାୟ ପୂରା ସମୟ ପାଟନାରେ ହିଁ ରହିଥିଲି । ରାମମୂର୍ତ୍ତି ତାହା ଚାହିଁଥିଲେ । କେବଳ ଦିନେ ବିହାର ଶରିଫରେ ଏକ ସାଧାରଣ ସଭା ପାଇଁ ଯାଇଥିଲି । ପାଟନାରେ ମହିଳା ଚର୍ଖା ସମିତିରେ ଜେ.ପି.ଙ୍କର ରହିବା ପରେ ପ୍ରତିଦିନ ସକାଳ ଆଠଟାରେ ଆମର ବୈଠକ ବସୁଥିଲା । ପାଟନାର ଅନ୍ୟ ମୁଖ୍ୟ କର୍ମୀ ସବୁ ମଧ୍ୟ ସେଥିରେ ଯୋଗଦିଅନ୍ତି । ଘଣ୍ଟାଏ ଦୁଇଘଣ୍ଟା ଆନ୍ଦୋଳନର ଗତିବିଧି ଓ ସମସ୍ୟା ବିଷୟରେ ଆଲୋଚନା ଚାଲି ଆଗକୁ କ'ଣ

କରାଯିବ ତାହା ସ୍ଥିର ହୁଏ । ଏହା ଭିତରେ ଲକ୍ଷ୍ୟ କଲୁ ଯେ, ବିଦ୍ୟାର୍ଥୀ ପରିଷଦର ଛାତ୍ର ନେତାମାନେ ଯେଉଁଠିକି ଯାଉଛନ୍ତି ସେଠି ନିଜର ବୈଠକ ମଧ୍ୟ ଅଲଗା କରୁଛନ୍ତି ଓ ନିଜର ଦଳ ବଢ଼େଇବା ଚେଷ୍ଟାରେ ଲାଗିଛନ୍ତି । ଏହାଛଡ଼ା ଜନସଂଘର ନେତାମାନଙ୍କର ବରାବର ଚେଷ୍ଟାଥାଏ ଯେ, ଆନ୍ଦୋଳନରୁ କିପରି ମାର୍କସବାଦୀ କମ୍ୟୁନିଷ୍ଟ ଆଦିଙ୍କୁ ଅଲଗା ରଖାଯିବ ।

ବିଦ୍ୟାର୍ଥୀ ପରିଷଦ ଓ ଜନସଂଘର ଲୋକେ ସଂଘର୍ଷ ସମିତି ସବୁକୁ ଦଖଲ କରିବା ବା ଅନ୍ୟମାନଙ୍କୁ ବାଦ ଦେଇ କେବଳ ନିଜ ଲୋକଙ୍କୁ ନେଇ ସମିତି ଗଢ଼ିବା ଉଦ୍ୟମ ମଧ୍ୟ ଚଳାଇଥାନ୍ତି । ଏ ସବୁ କାରବାର ଦେଖି ରା.ସ୍ୱ. ସଂଘ ଓ ବିଦ୍ୟାର୍ଥୀ ପରିଷଦ ବିଷୟରେ ମୋର ପୂର୍ବରୁ ଥିବା ପ୍ରତିକୂଳ ଧାରଣା ଦୃଢ଼ ହେଇଥିଲା । ରାମମୂର୍ତ୍ତି ଓ ତ୍ରିପୁରାରୀ ମଧ୍ୟ ସେହିପରି ଅନୁଭବ କରୁଥାନ୍ତି । କିନ୍ତୁ ନାରାୟଣ ବିଦ୍ୟାର୍ଥୀ ପରିଷଦର ପିଲାମାନଙ୍କ ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥାଏ । ସେମାନଙ୍କର ଶୃଙ୍ଖଳାବୋଧର ସେ ଖୁବ୍ ପ୍ରଶଂସା କରୁଥାଏ ।

ବିଧାନସଭା ଭଙ୍ଗ ଓ ମନ୍ତ୍ରୀମଣ୍ଡଳ ଇସ୍ତଫା ଦାବୀ କଥାଟାରେ ମତେ ଖଟକା ଲାଗିଥିଲା । ମାତ୍ର ଜେ.ପି. ଯେଉଁ କାରଣ ବତେଇଲେ ତାହା ଯୁକ୍ତିସଂଗତ ବୋଧ ହେଲା । ତା'ଛଡ଼ା ଥରେ ରାମମୂର୍ତ୍ତିଙ୍କ ସହିତ ଦୀର୍ଘ ଆଲୋଚନା ପ୍ରସଙ୍ଗରେ ସେ କହିଲେ ଯେ, ଜେ.ପି. ଯେତେବେଳେ ଆନ୍ଦୋଳନ ଆରମ୍ଭ କରିଛନ୍ତି ସେତେବେଳେ ସର୍ବୋଦୟର ପ୍ରତିଷ୍ଠା ସେଥିରେ ଜଡ଼ିତ ହେଇଗଲାଣି । ତାକୁ ଠିକ୍ ବାଟରେ ରଖି ସଫଳ କରିବା ଆମର କର୍ତ୍ତବ୍ୟ । ତାଙ୍କର ଏ କଥାଟା ମତେ ଠିକ୍ ଜଣାଗଲା ।

ଜେ.ପି. ଭେଲୋରରୁ ଫେରିବା ସମୟରେ ମୁଁ ପାଟନାରେ ଥାଏ । ତାଙ୍କ ସହିତ କଥାବାର୍ତ୍ତା ପ୍ରସଙ୍ଗରେ ମୁଁ ତାଙ୍କୁ ବିଦ୍ୟାର୍ଥୀ ପରିଷଦ ଓ ଜନସଂଘ ବିଷୟରେ ମୋର ଧାରଣା ଜଣାଇଲି । ସେ କହିଲେ ଯେ, ତାଙ୍କର ନେତାମାନେ ଜବାବ ଦେଇଛନ୍ତି ଯେ, ସେମାନେ ଆମ ନିର୍ଦ୍ଦେଶ ମାନି ଚଳିବେ । ମୁଁ ପୁଣି କହିଲି ଯେ, ରାଜନୀତିକ ନେତାମାନଙ୍କର କଥା ଓ କାର୍ଯ୍ୟରେ ମେଳ ନହେବାଟା ତ ଜଣାଶୁଣା କଥା । ମୋର ଦ୍ୱିତୀୟ ବକ୍ତବ୍ୟ ଥିଲା ଯେ, ଆନ୍ଦୋଳନକୁ ବହୁତ ଅଧିକ ସଂଖ୍ୟକ ଛାତ୍ର ଏପରି ଆସିଛନ୍ତି ଯେଉଁମାନେ କୌଣସି ଦଳଭୁକ୍ତ ନୁହଁନ୍ତି । ସେମାନଙ୍କୁ ପ୍ରତ୍ୟେକ ଦଳ ନିଜ ଆଡ଼କୁ ଟାଣିବାକୁ ବ୍ୟସ୍ତ ସେମାନେ ଯେପରି ଆନ୍ଦୋଳନର ନିଜସ୍ୱ ଓ ମୌଳିକ ନୀତି ସହିତ ପରିଚିତ ହେବେ ଓ ସେମାନଙ୍କର ପ୍ରଥମ ଅନୁରକ୍ତି ଆନ୍ଦୋଳନ ପ୍ରତି ହେବ ସେଥିପାଇଁ ଗୋଟାଏ କିଛି ସଂଗଠନ ରହିବା ଚାହି । ତୃତୀୟତଃ ମୁଁ ନିବେଦନ କରିଥିଲି ଯେ, ଛାତ୍ରମାନଙ୍କର ଯେଉଁ ନିଜକୁ ସାଧାରଣ ଲୋକଙ୍କଠାରୁ ଶ୍ରେଷ୍ଠ ଓ ତେଣୁ ଅଧିକ ସୁବିଧା ପାଇବାର ହକ୍‌ଦାର ବୋଲି ମନୋବୃତ୍ତି ରହିଛି ତାକୁ ବଦଳାଇବା ପାଇଁ ତାଲିମର ବ୍ୟବସ୍ଥା ହେବା ଚାହି ।

ଛାତ୍ର ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିବାକୁ ସ୍ୱୀକାର କରିବାବେଳେ ଜେ.ପି. ସର୍ତ୍ତ ରଖିଥିଲେ ଯେ, ଛାତ୍ର ସଂଘର୍ଷ ସମିତିର ସଦସ୍ୟମାନେ ନିଜ ନିଜ ଦଳରୁ ଇସ୍ତଫା ଦେଇ

ନିର୍ଦ୍ଦଳୀୟ ଭୂମିକାରେ ରହି କାମ କରିବେ । ସେମାନେ ସେଭଳି ଇସ୍ତଫା ଘୋଷଣା କଲେ । ମାତ୍ର କାର୍ଯ୍ୟତଃ ଦେଖାଗଲା ଯେ ସେମାନେ ନିଜ ନିଜ ଦଳର ବିଚାର ଧରି ଓ ଦଳର ନେତାମାନଙ୍କଠାରୁ ପରାମର୍ଶ ନେଇ କାମ କରୁଛନ୍ତି । ଜେ.ପି. ଏହା ଯେତେବେଳେ ଲକ୍ଷ୍ୟ କଲେ ସେଇଟାକୁ ହିଁ ମାନିନେଲେ । ଇତି ମଧ୍ୟରେ ବିରୋଧୀ ଦଳମାନେ ଆନ୍ଦୋଳନକୁ ସମର୍ଥନ ଜଣାଇ ନିଜ ନିଜ ଦଳର ସଦସ୍ୟମାନଙ୍କୁ ବିଧାନସଭାରୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦେଲେ । ଏହାପରେ ପ୍ରତ୍ୟେକ ବିରୋଧୀ ଦଳ ମଝିରୁ ଦୁଇଫାଳ ହୋଇ ଫାଟିଗଲା । ଅଧେ ଲୋଖାଁ ସଦସ୍ୟ ଇସ୍ତଫା ଦେଲେ ଓ ଅଧେ ଲୋଖା ଦେଲେ ନାହିଁ । ଜନସଂଘ ଇସ୍ତଫା ଦେଇ ନଥିବା ସଦସ୍ୟମାନଙ୍କୁ ଦଳରୁ ବାହାର କରିଦେଇ ଦୃଢ଼ତାର ପରିଚୟ ଦେଲା । ମାତ୍ର ଅନ୍ୟ କୌଣସି ଦଳ ତାହା କଲେ ନାହିଁ । ଇସ୍ତଫା ନ ଦେଇ ମଧ୍ୟ ବିଧାନସଭା ସଦସ୍ୟମାନେ ଆନ୍ଦୋଳନକୁ ସମର୍ଥନ କରି ଚାଲିଲେ ।

## ଜୁନ ପାଞ୍ଚର ଶୋଭାଯାତ୍ରା

ବିଧାନସଭା ଭଙ୍ଗ ଓ ମନ୍ତ୍ରୀମଣ୍ଡଳର ଇସ୍ତଫା ଦାବି କରି ରାଜ୍ୟପାଳଙ୍କୁ ଏକ ନିବେଦନରେ ସାରା ରାଜ୍ୟର ଭୋଟରମାନଙ୍କ ଠାରୁ ଦସ୍ତଖତ ସଂଗ୍ରହ ଅଭିଯାନ ସାରା ମଇ ମାସ ଧରି ଚାଲିଥିଲା । ଜେ.ପି.ଙ୍କ ନେତୃତ୍ୱରେ ଏକ ଶୋଭାଯାତ୍ରା ଯାଇ ରାଜ୍ୟପାଳଙ୍କୁ ଏ ସବୁ ନିବେଦନ ପତ୍ର ଅର୍ପଣ କରିବେ ବୋଲି ସ୍ଥିର ହୋଇଥିଲା । ଏ ଶୋଭାଯାତ୍ରା ପାଞ୍ଚ ଜୁନ୍ ଦିନ ଧାର୍ଯ୍ୟ ହୋଇଥାଏ । ସାରା ରାଜ୍ୟରୁ କୋଡ଼ିଏ ଲକ୍ଷ ଖଣ୍ଡେ ଦସ୍ତଖତ ସଂଗ୍ରହ ହୋଇଥିବାର ସଂବାଦ ମିଳୁଥାଏ । ଜୁନ୍ ତିନି ତାରିଖ ଦିନ କମ୍ୟୁନିଷ୍ଟଙ୍କ ପକ୍ଷରୁ ଏକ ଓଲଟା ବିକ୍ଷୋଭ ପ୍ରଦର୍ଶନ କରାଯାଇ ରାଜ୍ୟପାଳଙ୍କୁ ନିବେଦନ କରାଗଲା ଯେ, ସେ ବିଧାନସଭା ଭଙ୍ଗ ଓ ମନ୍ତ୍ରୀମଣ୍ଡଳ ଇସ୍ତଫା ଦାବି ଗ୍ରହଣ ନ କରନ୍ତୁ । ସେମାନଙ୍କ ପକ୍ଷରୁ ପ୍ରଚାର ହେଉଥାଏ ଯେ, ଜେ.ପି. ଯେ ବିଧାନସଭା ଭଙ୍ଗ ଦାବି କରୁଛନ୍ତି ସେଇଥିରୁ ପ୍ରମାଣ ମିଳୁଛି ଯେ ସେ ଫାସିଷ୍ଟ, କାରଣ ସେ ଚାହୁଁଛନ୍ତି ଯେ ବିଧାନସଭା ମୂଳରୁ ଉଠିଯାଉ ।

କମ୍ୟୁନିଷ୍ଟଙ୍କ ଶୋଭାଯାତ୍ରା ପାଇଁ ରେଳ ଓ ଷ୍ଟିମରରେ ଲୋକଙ୍କୁ ବିନା ଟିକେଟରେ ଆସିବାକୁ ଦେବାପାଇଁ ଇଶାରା ଦିଆ ହୋଇଥିଲା । ଟ୍ରକ୍ ବସ୍‌ରେ ମଧ୍ୟ ଲୋକ ବୁହା ହୋଇଥିଲେ । ଶୋଭାଯାତ୍ରା ଦେଖିବାପାଇଁ ତ୍ରିପୁରାରୀଭାଇ ଓ ମୁଁ ଗଲୁ ଓ ଦେଖିଲୁ ଯେ, ସେମାନେ ଲାଠି, ଭାଲା, ଲୁହାଛଡ଼ ଆଦି ନେଇ ଚାଲିଛନ୍ତି । ପୁଲିସ୍ ପକ୍ଷରୁ କୌଣସି ବାଧା ନାହିଁ । ଶୋଭାଯାତ୍ରା ସାଙ୍ଗେ ସାଙ୍ଗେ ରିକ୍ସାରେ ଯାଇ ମୁଁ ଦେଢ଼ହଜାର ଯାଏ ଲୋକ ଗୋଟି ଗୋଟି କରି ଗଣିଲି ଓ ବାକିତକର ଅଟକଳ ଏହାରି ଭିତିରେ ମୋଟରେ କୋଡ଼ିଏ ହଜାରରୁ ଅଧିକ ଲୋକ ନଥିବାର ହିସାବ କଲୁ । ଏଥିରେ ମୁଖ୍ୟତଃ କେତେକ ଆଦିବାସୀ ଓ ଶିଳ୍ପ ଶ୍ରମିକ ଥିଲେ । ପାଟନା ସହରରେ ଅତି କମ୍ ଲୋକ ଥିଲେ ।

ଜୁନ୍ ପାଞ୍ଚ ତାରିଖ ଶୋଭାଯାତ୍ରା ପାଇଁ ସରକାର ପକ୍ଷରୁ ବିପରୀତ ବ୍ୟବସ୍ଥା ହେଲା । ବସ୍, ଟ୍ରେନ୍ ଓ ଷ୍ଟିମରମାନଙ୍କରେ ଟିକେଟ ଯାଞ୍ଚର ଖୁବ୍ କଡ଼ାକଡ଼ି ବ୍ୟବସ୍ଥା କରାହେଲା । ଟ୍ରକ୍ ଓ ଟ୍ୟାକ୍ସିମାନଙ୍କୁ ଯାଞ୍ଚ କରିବାପାଇଁ ଠା'କୁ ଠା ପୁଲିସ୍ ଜଗୁଆଳ ରହିଲେ ଓ କୌଣସି ନା କୌଣସି ଆଳରେ, ପରମିଟ୍ ଠିକ୍ ନାହିଁ, ବ୍ରେକ୍ ଠିକ୍ ନାହିଁ, ଟାୟାର ଖରାପ ଇତ୍ୟାଦି କହି – ସେ ସବୁକୁ ପାଟନାଠାରୁ ତିରିଶ ପଇଁତିରିଶ ମାଇଲ ଦୂରରେ ଅଟକାଇ ରଖାଗଲା । ଚାରି ତାରିଖର ଦିଲ୍ଲୀ ଅପର ଇଣ୍ଡିଆ ଏକ୍ସପ୍ରେସ୍‌କୁ କିଉଲଠାରୁ ପାଟନା ଲାଇନ୍‌ରେ ନ ଆଣି ଗୟା ଆଡ଼କୁ ନେଇ ନିଆ ହେଉଥିଲା । ଯାତ୍ରୀମାନେ ଦେଖିପାରି ଶିକୁଳି ଟାଣି ଟାଣି ଗାଡ଼ି ଅଟକେଇ ହୋ ହଲ୍ଲା କରିବାରୁ ପୁଣି ଫେରାଇ ଠିକ୍ ବାଟରେ ଅଣାଗଲା । ଚାରି ତାରିଖ ଦିନ ସଶସ୍ତ୍ର ପୁଲିସ ବାହିନୀ ସଂଗୀନ ଲଗା ରାଇଫଲ ଓ ଷ୍ଟେନ୍‌ଗନ୍ ଆଦି ନିଷ୍ଠି କରି ଧରି ସାରା ସହରଯାକ ଯୁଦ୍ଧ ଗାଡ଼ିରେ ବସି ପଇଁତରା ମାରିଲେ । ଶୋଭାଯାତ୍ରା ସକାଳୁ ବାହାରିବାର ଥିଲା, ମାତ୍ର ଲୋକେ ପଚିଶ ତିରିଶ ମାଇଲ ଲେଖା ଚାଲି ଚାଲି ଆସି ଡେରିରେ ପହଞ୍ଚିବେ ସେଥିପାଇଁ ସମୟ ଉପରଓଳିକୁ ବଦଳାଇ ଦିଆଗଲା । ଶୋଭାଯାତ୍ରାରେ ଚାରି ଲକ୍ଷ ଲୋକ ହେଇଥିଲେ ବୋଲି ସମ୍ବାଦପତ୍ର ସମ୍ବାଦଦାତାମାନଙ୍କର ଅଟକଳ ଥିଲା ମାତ୍ର ଆମେ ହିସାବ କରିଥିଲୁ ଯେ, ଲୋକ ଦେଢ଼ଲକ୍ଷ ଖଣ୍ଡେ ଥିଲେ ।

ଏ ଶୋଭାଯାତ୍ରା ପୂର୍ବରୁ ଜେ.ପି. ଆମ ସମସ୍ତଙ୍କୁ ଡାକି ସେ ଦିନ ସନ୍ଧ୍ୟାରେ କି କାର୍ଯ୍ୟକ୍ରମ ଘୋଷଣା କରିବେ ସେ ବିଷୟରେ ଆଲୋଚନା କଲେ । ଆମେ ଚାରିଜଣଙ୍କ ଛଡ଼ା ବିହାରର ବୟୋଜ୍ୟେଷ୍ଠ ସର୍ବୋଦୟ ସେବକ ବୈଦ୍ୟନାଥ ବାବୁ ମଧ୍ୟ ଥାନ୍ତି । ଅନ୍ୟାନ୍ୟ କାର୍ଯ୍ୟକ୍ରମ ଭିତରେ ଜେ.ପି. ଖଜଣା ବନ୍ଦ ପାଇଁ ଡାକ ଦେବା କଥା ବିଚାରିଛନ୍ତି ବୋଲି ସୂଚାଇଲେ । ବୈଦ୍ୟନାଥବାବୁ ଓ ରାମମୂର୍ତ୍ତିଜୀ କହିଲେ ଯେ, ଖଜଣା ବନ୍ଦ ପାଇଁ ଆବଶ୍ୟକ ହାୱା ଓ ସଂଗଠନ ବର୍ତ୍ତମାନ ନାହିଁ । ତେଣୁ ଏବେ ସେ ଏହା ଘୋଷଣା ନ କରନ୍ତୁ । ଜେ.ପି. କହିଲେ ଯେ, ସେ ନିଜ ଭିତରେ ଅନୁଭବ କରୁଛନ୍ତି ଯେ, ଲୋକେ ଏଥିପାଇଁ ତିଆରି । ତା'ଛଡ଼ା ସଂଗଠନ ଆନ୍ଦୋଳନ ଭିତରୁ ଗଢ଼ିଉଠିବ । ପରେ ଯାହା ଦେଖିଲି ଖଜଣା ବନ୍ଦ ପ୍ରକୃତରେ ସଫଳ ହେଲା ନାହିଁ । ଆନ୍ଦୋଳନ ଭିତରୁ ସଂଗଠନ ଗଢ଼ି ଉଠେ ସତ, ମାତ୍ର ପୁଣି ସଂଗଠନର ଏକ ନ୍ୟୂନତମ ଢାଞ୍ଚା ନ ଥାଇ ମଧ୍ୟ ଆନ୍ଦୋଳନ ହେଇପାରେ ନାହିଁ ।

ଶୋଭାଯାତ୍ରାରେ ଜେ.ପି.ଙ୍କ ଉପରେ ଆକ୍ରମଣ ଆଶଙ୍କା କରି ତାଙ୍କ ପାଖ ଆଖରେ କେତେଜଣ ବିଶ୍ୱସ୍ତ ଦକ୍ଷ କର୍ମୀଙ୍କୁ ରଖାଯାଇଥିଲା । ମତେ ତାଙ୍କ ଜିପ୍‌ରେ ଠିକ୍ ତାଙ୍କ ପଛପଟେ ବସିବା ପାଇଁ କୁହାଯାଇଥିଲା । ସେଦିନ ସାରା ମୁଁ ବହୁତ ମାନସିକ ଟଣକ ଭିତରେ ଥିଲି । ଶୋଭାଯାତ୍ରା ତ ନିର୍ବିଘ୍ନରେ ସରିଲା । ସାଧାରଣ ସଭାକୁ ଯିବା ପୂର୍ବରୁ ଜେ.ପି. ଆସି କିଛି ସମୟ ଗାନ୍ଧୀ ସଂଗ୍ରହାଳୟରେ ବିଶ୍ରାମ କଲେ । ସେତେବେଳେ ଯାଇ ମୁଁ ଆଶ୍ୱସ୍ତ ହେଲି ଓ ଗଙ୍ଗାକୂଳରେ ବସି ଗୋଟାଏ ବୁଢ଼ା ଅଶ୍ୱତ୍ଥ ଗଛର ସ୍କେଚ୍ କରିବାରେ ଅଧଘଣ୍ଟାକ ପାଇଁ ବାହାର ଦୁନିଆକୁ

ଭୁଲିଗଲି । ପରେ ଖବର ମିଳିଲା ଯେ, ଫେରନ୍ତା ଶୋଭାଯାତ୍ରା ଉପରେ ଇନ୍ଦିରା ବିଗ୍ରେଡ୍ ଦ୍ୱାରା ଗୁଳି ଚାଲି କେତେ ଜଣ ଆହତ ହୋଇଛନ୍ତି । ଏହାପରେ ମୁଁ ପାଟନାରୁ ଫେରି ଆସିଲି । ତା'ପରେ ଜେ.ପି.ଙ୍କ ସହିତ କୁଲଦୀପ୍ ନାୟାରଙ୍କର ସାକ୍ଷାତକାରର ଏକ ଲମ୍ବା ବିବରଣୀ ଷ୍ଟେଟସ୍‌ମ୍ୟାନ୍‌ରେ ବାହାରିଲା । ସେଥିରେ ସେ ଆନ୍ଦୋଳନ, ଗଣତନ୍ତ୍ର, ଅର୍ଥବ୍ୟବସ୍ଥା, ମତବାଦ ଆଦି ବିଷୟରେ ଆପଣାର ମତାମତ ବିଶଦ ଭାବରେ ବୟାନ କରିଥାନ୍ତି । ମତବାଦ – ଆଇଡିଓଲୋଜି–ବିଷୟରେ ସେ ପାଟନାରେ ଦେଇଥିବା ମତକୁ ଏଥିରେ ଦୋହରେଇଥାନ୍ତି । ଅର୍ଥ ବ୍ୟବସ୍ଥା ବିଷୟରେ କହିଥାନ୍ତି ଯେ, ସେ ବିଷୟରେ ବୈଜ୍ଞାନିକ ଓ ଅର୍ଥନୀତିଜ୍ଞମାନଙ୍କ ପରାମର୍ଶ ହିଁ ଗ୍ରହଣୀୟ । ଆହୁରି ଦୁଇ ଚାରିଟି କଥା ଥାଏ ।

ଏହାର କିଛିପୂର୍ବରୁ ଆନ୍ଦୋଳନ ବିଷୟରେ ବିନୋବାଙ୍କର କେତେକ ମତାମତ କାଗଜରେ ବାହାରିଥାଏ । ଯଦିଓ ବିନୋବା ପୂର୍ବରୁ ସିଦ୍ଧରାଜଜୀଙ୍କୁ କହିଥିଲେ ଯେ, ଜେ.ପି.ଙ୍କ ସାଙ୍ଗରେ କଥାବାର୍ତ୍ତା ନ କରି ସେ ବିହାର ଆନ୍ଦୋଳନ ବିଷୟରେ ମତ ଦେବେ ନାହିଁ ତଥାପି ପାଟିଲ ସାହେବଙ୍କ ସହିତ ଏକ ଆଲୋଚନାରେ ସେ ଏଭଳି ମତ ଦେଇ ଦେଇଥାନ୍ତି । ମୂଲ୍ୟବୃଦ୍ଧି, ଦୁର୍ନୀତି, ଆଦି ସମସ୍ୟାର ସମାଧାନ ଆନ୍ଦୋଳନ ଦ୍ୱାରା ହେବ ନାହିଁ, ସେଥିପାଇଁ ଚିନ୍ତନ ଲୋଡ଼ା, ବିଧାନସଭା ଭାଙ୍ଗିଲେ ମୂଲ୍ୟବୃଦ୍ଧି କମିବ ନାହିଁ, ଇତ୍ୟାଦି ମତ ସେ ପ୍ରକାଶ କରିଥାନ୍ତି । ପୁଣି ଇନ୍ଦିରା ବିଗ୍ରେଡ୍ ଦ୍ୱାରା ଗୁଳିଚାଳନା ବିଷୟରେ ତାଙ୍କୁ କେହି ପଚାରିବାରୁ ସେ କହିଥାନ୍ତି ଯେ, ପାଟନାରେ ଯାହାକିଛି ହେଲା ତାହା ଈଶ୍ୱରଙ୍କୁ ସମର୍ପଣ । ଏଇ ଦୃଶ୍ୟତଃ ଏକତରଫା ଓ ଅନ୍ୟାୟପୂର୍ଣ୍ଣ ବକ୍ତବ୍ୟର ଜବାବ 'ଏଭରୀମ୍ୟାନ୍‌ସ' ପତ୍ରିକାରେ ଏକ ଲେଖାରେ ଜେ.ପି. ଦେଇଥାନ୍ତି । ସେ କହିଥାନ୍ତି ଯେ, ପାଟନାର ଗୁଳିକାଣ୍ଡ ପରି ବିହାର ଆନ୍ଦୋଳନର ଅନ୍ୟ ସବୁ କଥାକୁ ବି ବିନୋବା ଈଶ୍ୱରଙ୍କୁ ସମର୍ପଣ କରି ଦେଇଥିଲେ ଭଲ ହୋଇଥାନ୍ତା । ଯଦି ଗୁଳିକାଣ୍ଡ କଥା ଈଶ୍ୱରଙ୍କୁ ସମର୍ପିତ ହେଲା ତ ଅନ୍ୟ ସବୁ ବିଷୟରେ ମତ ଦେବାର କି ଆବଶ୍ୟକତା ଥିଲା ?

ଜେ.ପି.ଙ୍କର ଏଇ ଜବାବଟା ମତେ ଭଲ ଲାଗିଲା । ମୁଁ ଜେ.ପି.ଙ୍କୁ ଖଣ୍ଡେ ଚିଠି ଲେଖି ସେଥିରେ ଏ ପ୍ରତିକ୍ରିୟା ଜଣେଇଲି । ତାଙ୍କର ସାକ୍ଷାତକାରରେ ପ୍ରକାଶିତ ମତାମତରୁ ଯେଉଁଗୁଡ଼ିକ ମୋ ମନକୁ ପାଇ ନଥିଲା ସେ ବିଷୟରେ ମୋର ମତାମତ ମଧ୍ୟ ଏ ଚିଠିରେ ଜଣାଇଲି ଓ ବାହାର ଆନ୍ଦୋଳନ ବିଷୟରେ କେତେକ ସୂଚନା ଦେଲି । ମତବାଦ ବିଷୟରେ ମୋର ମତର ଉଲ୍ଲେଖ ପୂର୍ବରୁ କରିଛି ଯେ, ସେ ସବୁ ଲକ୍ଷ୍ୟ ଓ ପ୍ରଶ୍ନ ନେଇ ବିଭିନ୍ନ ମତବାଦର ଉଦ୍‌ଭବ ହୋଇଥିଲା ସେସବୁ ଏବେ ବି କାଏମ ରହିଛି । ନୂଆ ନୂଆ ପ୍ରଶ୍ନ ଓ ଲକ୍ଷ୍ୟର ମଧ୍ୟ ଉଦ୍‌ଭବ ହେଉଛି । ସେ ସବୁ ଦୃଷ୍ଟିରୁ ରକ୍ଷଣଶୀଳ ଓ ପ୍ରଗତିବାଦୀ ବା ବୈପ୍ଳବିକ, ଏ ପାର୍ଥକ୍ୟ ଅବଶ୍ୟ ପ୍ରାସଙ୍ଗିକ ।

ଆର୍ଥିକ ବ୍ୟବସ୍ଥାଟା କେବଳ ବୈଜ୍ଞାନିକ ଓ ଅର୍ଥନୀତିବିଦ୍‌ଙ୍କର ବିଚାରର ବିଷୟ, ତାଙ୍କର ଏ ମତ ଉପରେ ମୁଁ ଲେଖିଲି ଯେ, ସେମାନଙ୍କ ଭିତରେ ମଧ୍ୟ ଦୃଷ୍ଟିଭେଦ ରହିଛି ଓ ପୁଣି

ସାମାଜିକ ଆଦର୍ଶ ବା ଲକ୍ଷ୍ୟ ସେମାନେ ସ୍ଥିର କରି ପାରିବେ ନାହିଁ । ଅଥଚ ଆର୍ଥିକ ବ୍ୟବସ୍ଥାର ରୂପରେଖ ସମାଜରେ ଗୃହୀତ ଆଦର୍ଶ ବା ଲକ୍ଷ୍ୟ ଦ୍ୱାରା ହିଁ ସ୍ଥିର ହେବ । ବିହାର ବିଷୟରେ ମୁଁ ପୁଣି ବିଦ୍ୟାର୍ଥୀ ପରିଷଦ ଓ ରା.ସ୍ୱ.ସଂଘ ବିଷୟରେ ମୋର ଆଶଙ୍କା ପ୍ରକଟ କରି ନିର୍ଦ୍ଦଳୀୟ ଛାତ୍ରମାନଙ୍କର ସ୍ୱତନ୍ତ୍ର ସଂଗଠନ ଗଠନ ଓ ସେମାନଙ୍କ ପାଇଁ ଉପଯୁକ୍ତ ତାଲିମ ଉପରେ ଜୋର ଦେଲି ।

ବିନୋବାଙ୍କୁ ମଧ୍ୟ ମୁଁ ଏତିକିବେଳେ ଗୋଟିଏ ଚିଠି ଏପ୍ରିଲ ମାସରେ ତାଙ୍କ ସହିତ ହୋଇଥିବା ଆଲୋଚନାର କେତେକ ପ୍ରସଙ୍ଗ ଉପରେ ବିଶଦ ଭାବରେ ବୁଝାଇ ଲେଖିଲି । ଦୁର୍ନୀତିକୁ କିପରି ସାଧାରଣ ଲୋକଙ୍କର ମେରୁଦଣ୍ଡକୁ ଭାଙ୍ଗି ଦେବା ପାଇଁ ବ୍ୟବହାର କରାଯାଉଛି ତାହା ସେତେବେଳକୁ ମୁଁ ସମ୍ପୂର୍ଣ୍ଣ ଉପଲବ୍ଧି କଲିଣି ଓ ତାହା ମୁଁ ବିନୋବାଙ୍କୁ ବୁଝାଇ ଲେଖିଲି । ପଶ୍ଚିମ ବଙ୍ଗରେ କଂଗ୍ରେସ ତରଫରୁ ହୋଇଥିବା ହତ୍ୟାକାଣ୍ଡ ଓ ରେଲୱେ ହରତାଳକୁ ଦମନ କରିବାପାଇଁ ବ୍ୟବହାର କରାଯାଇଥିବା ନୃଶଂସତାର ମଧ୍ୟ କିଛି ବର୍ଣ୍ଣନା ଦେଲି ଓ ବର୍ତ୍ତମାନର ଶାସନ ବ୍ୟବସ୍ଥା ବିଷୟରେ ମତାମତ ସ୍ଥିର କରିବାବେଳେ ଏସବୁ କଥାକୁ ଖିଆଲରେ ରଖିବାପାଇଁ ତାଙ୍କୁ ଅନୁରୋଧ କରିଥିଲି । ଏ ଚିଠିର ଜବାବ ତ ମିଳି ନଥିଲା । ପରେ ଜୁଲାଇ ମାସରେ ୱାରଧାରେ ସର୍ବ ସେବା ସଂଘର ଅଧିବେଶନ ବେଳେ ବ୍ରହ୍ମବିଦ୍ୟା ମନ୍ଦିରର ଜଣେ ଅନ୍ତେବାସିନୀ ବିନୋବାଙ୍କୁ ସେ ଚିଠି ବିଷୟରେ ମୋ ସହିତ କଥାବାର୍ତ୍ତା କରିବା କଥା ମନେ ପକେଇ ଦେବାରୁ ସେ ଜବାବ ଦେଲେ ଯେ, ଏବେ ମନମୋହନର ମିଜାସ ଗରମ ଅଛି । ପରେ କଥା ହେବା । ଜେ.ପି.ଙ୍କୁ ଲିଖିତ ଚିଠିର କେତେକ ଦଫା ଉପରେ ଜେ.ପି.ଙ୍କ ସାଙ୍ଗରେ ଆଲୋଚନା ହୋଇଥିଲା ।

## ସର୍ବ ସେବା ସଂଘରେ ବିଭେଦ

ଜୁଲାଇ ମାସରେ ୱାରଧାରେ ସର୍ବ ସେବା ସଂଘର ଅଧିବେଶନ ଡକା ହେଲା । ସେଠି ବିହାର ଓ ଗୁଜରାତ ଆନ୍ଦୋଳନର ପରିପ୍ରେକ୍ଷୀରେ ଭବିଷ୍ୟତ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ଓ ନିଷ୍ପତ୍ତି ହେବାର କଥା । ନିର୍ମଳା ନେତୃତ୍ୱରେ କେତେଜଣ ବିହାର ଆନ୍ଦୋଳନର ସମର୍ଥନରେ କୌଣସି ପ୍ରସ୍ତାବ କରାଇଦେବେ ନାହିଁ ବୋଲି କଟିବଦ୍ଧ ହୋଇଥା'ନ୍ତି । ଏ ବିଷୟରେ ଯେତେବେଳେ ଚିଠା ପ୍ରସ୍ତାବ ଆଲୋଚନା ପାଇଁ ଆସିଲା ସେଥିରେ ବିହାର ଆନ୍ଦୋଳନ ପାଇଁ 'ଶାନ୍ତି ପୂର୍ଣ୍ଣ' ବିଶେଷଣର ବ୍ୟବହାରରେ ମଧ୍ୟ ଏମାନଙ୍କର ଆପତ୍ତି ଥିଲା । ଆନ୍ଦୋଳନ ଶାନ୍ତିପୂର୍ଣ୍ଣ କିପରି ନୁହେଁ ତାହା ପଚାରିବା ବେଳକୁ କିନ୍ତୁ ସେମାନେ କୌଣସି କାରଣ ବା ଉଦାହରଣ ନ ଦେଇ ଚୁପ୍ ରହୁଥା'ନ୍ତି । ଏ ଆନ୍ଦୋଳନ ସର୍ବ ସେବା ସଂଘ ପକ୍ଷରୁ ଚାଲୁ ନାହିଁ, ମାତ୍ର ଲୋକସେବକମାନେ ଇଚ୍ଛା କଲେ ଏଥିରେ ଯୋଗ ଦେଇପାରନ୍ତି ଏତକ କୁହାଯିବାରେ ମଧ୍ୟ ସେମାନଙ୍କର ଘୋର ବିରୋଧ ଥାଏ । ଏ ସମସ୍ୟାନେଇ ବିନୋବାଙ୍କ ପାଖକୁ ଯିବାରୁ ସେ ଏକଥା କହିଦେଇ ଖସିଗଲେ ଯେ, ତମେମାନେ ସର୍ବସମ୍ମତିରେ ଯାହା କରିବ ସେଥିରେ ମୁଁ ରାଜି । ସର୍ବସମ୍ମତି ଆଣିବାରେ ଆପଣ ସାହାଯ୍ୟ କରନ୍ତୁ ବୋଲି ଅନୁରୋଧ କରିବାରୁ ନାନା ପ୍ରକାରର ବାକ୍‌ଚାତୁରୀ ଦ୍ୱାରା ତାଙ୍କୁ

ସେ ଟାଳିଲେ । ପଓନାରରେ ସର୍ବ ସେବା ସଂଘର ଗୋଟାଏ ବୈଠକ ହେଲାବେଳେ ସେଥିରେ ସେ ବିହାର ଆନ୍ଦୋଳନ ବିଷୟରେ ସଦସ୍ୟମାନଙ୍କର ପ୍ରଶ୍ନର ଉତ୍ତର ଯେପରି ବାକ୍‌ଚାତୁରୀର ସହିତ ଦେଲେ ସେଥିରେ କେତେକ ଅତି ନିରୀହ ଓ ଭକ୍ତ କିସମର ସଦସ୍ୟ ମଧ୍ୟ ଉତ୍ତ୍ୟକ୍ତ ହୋଇ ବିନୋବାଙ୍କୁ ଏ ମନ୍ତବ୍ୟ ଲେଖି ଜଣାଇଲେ ଯେ, ଆପଣ ସନ୍ଥବୁଦ୍ଧି ଅପେକ୍ଷା ବାରିଷ୍ଟରୀ ବୁଦ୍ଧିରେ ଅଧିକ ପାରଙ୍ଗମ ।

ଏସବୁ ଭିତରେ ଶ୍ରୀମାନ୍ ନାରାୟଣ ଗୋଟାଏ ସର୍ବସମ୍ମତିର ସୂତ୍ର ବାହାର କରିବାକୁ ଆପ୍ରାଣ ଚେଷ୍ଟା କରୁଥା'ନ୍ତି । ସେଇ ନାନାପ୍ରକାରର ସଂଶୋଧିତ ପ୍ରସ୍ତାବ ଗଢୁଥା'ନ୍ତି । ସେସବୁ ସର୍ବ ସେବା ସଂଘର ଅନ୍ୟମାନେ ମାନିନେଉଥା'ନ୍ତି; କିନ୍ତୁ ସବୁ ନିର୍ମଳା ଓ ଦୟାନିଧି ପଟ୍ଟନାୟକଙ୍କ ପାହାଡ଼ରେ ବାଜି ବୁଡ଼ିଯାଉଥାଏ । ଶେଷକୁ ଯେତେବେଳେ ସବୁଚେଷ୍ଟା ବିଫଳ ହେଲା ପ୍ରବନ୍ଧ ସମିତି ଇସ୍ତଫା ଦେଇଦେବାପାଇଁ ଆମେ ସମସ୍ତେ ସ୍ଥିର କଲୁ । ସେତେବେଳେ ପ୍ରବନ୍ଧ ସମିତିର ଉପସ୍ଥିତ ସତର ଜଣ ସଦସ୍ୟଙ୍କ ଭିତରୁ ପନ୍ଦର ଜଣ ଇସ୍ତଫା ଦେଲେ । କେତେକ ଯୁବକ ସାଥୀ ପୁଣି ଗୋଟିଏ ସମାଧାନ ଉଦ୍ୟମ ଚଳାଇଲେ । ମାତ୍ର ତାହା ବିଫଳ ହେଲା । ରାତିରେ ମଧ୍ୟ ବୈଠକ ଚାଲିଥାଏ, କିନ୍ତୁ ମୁଁ ସେଥିରେ ଯୋଗ ଦେବାକୁ ଯାଉ ନଥାଏ, କାରଣ ଏ ବିଷୟରେ କଥା ବେଶି ଲମ୍ବାଇବାର କିଛି ଅର୍ଥ ମୁଁ ଦେଖୁ ନଥାଏ । ଦାଦା ଧର୍ମାଧିକାରୀ ସର୍ବ ସେବା ସଂଘରେ ବୁଝାଉଥା'ନ୍ତି ଯେ, ଏ ଯେଉଁ ବିଫଳତାର ଅନୁଭବ ମିଳୁଛି ସେଥିପାଇଁ କାହାରି ମନରେ କ୍ଷୋଭ ଜନ୍ମିବା ଉଚିତ୍ ନୁହେଁ; କିନ୍ତୁ ମୋ ମନକୁ ଆସୁଥାଏ ଯେ, ଯେଉଁ ଭାବରେ ସର୍ବ ସେବା ସଂଘର ଅତି ଅଧିକସଂଖ୍ୟକ ସଦ୍ୟସ୍ୟଙ୍କୁ ଅଳ୍ପ କେତେଜଣ ଏକ ନିର୍ଣ୍ଣୟରେ ପହଞ୍ଚିବାରେ ବାଧା ଦେଇଛନ୍ତି ତାହା ଯୋଗୁଁ ମୋ ମନରେ ଯେଉଁ କ୍ଷୋଭ ଜନ୍ମିଛି ତାହା ଯଥାର୍ଥ ଓ ତାହା ମୋ ମନରେ ଉଠୁନଥା'ନ୍ତା ତ ମୁଁ ନିଜକୁ ଅମଣିଷ ବୋଲି ବିଚାରିଥା'ନ୍ତି ।

ହଠାତ୍ ମୋର ଗୋଟିଏ ଖିଆଲ ହେଲା । ମୁଁ ସର୍ବ ସେବା ସଂଘରେ ଯାଇ ଏଇ କଥା କହିଲି ଓ ତେଣୁ ଆତ୍ମନିରୀକ୍ଷଣ ପାଇଁ ଚବିଶ ଘଣ୍ଟା ଅନଶନ କରିବି ବୋଲି ଘୋଷଣା କଲି । ଏହା ବ୍ୟତୀତ ମୁଁ ଏକଥା ମଧ୍ୟ କହିଲି ଯେ, କେବଳ ପ୍ରବନ୍ଧ ସମିତି ନୁହେଁ, ସର୍ବସେବା ସଂଘର ସମସ୍ତ ସଦସ୍ୟ ଇସ୍ତଫା ଦେଇଦବା ଉଚିତ ଓ ସଂଘର ପାନି ନିର୍ବାଚନ ହୋଇ ନୂଆ ସଦସ୍ୟ ଆସି ପୁଣି ଏ ବିଷୟରେ ବିଚାର କରିବା ନାହିଁ ।

ଜେ.ପି. ମଧ୍ୟ ପଓନାରରେ ରହୁଥା'ନ୍ତି । ପରଦିନ ସକାଳେ ଆମେ କେତେଜଣ ତାଙ୍କୁ ଭେଟିବାକୁ ସେଠାକୁ ଗଲୁ । ଯୁବକ ସାଥୀ କେତେଜଣ ଆମେ ଯିବାବେଳକୁ ତାଙ୍କ ପାଖରେ ବସିଥା'ନ୍ତି । ସେମାନଙ୍କଠାରୁ ଖବର ମିଳିଲା ଯେ, ସେମାନେ ଭୋରରୁ ବିନୋବାଙ୍କୁ ଭେଟିଥିଲେ । ବିନୋବା ସେମାନଙ୍କୁ କହିଛନ୍ତି – "ଚିନ୍ତା କର ନାହିଁ । ଈଶ୍ୱରଙ୍କ କୃପାରୁ ଗୋଟିଏ ବାଟ ବାହାରିବ ।" ଅଳ୍ପ ସମୟପରେ ଖବର ଆସିଲା ଯେ, ବିନୋବା ଜେ.ପି.ଙ୍କ ସମେତ ସମସ୍ତଙ୍କୁ ଡାକୁଛନ୍ତି । ଜେ.ପି. ଜଳଖିଆ ଖାଉଥା'ନ୍ତି । ସେ ଖାଇ ସାରିଲେ ଆମେ ସମସ୍ତେ ଯିବୁ ବୋଲି

ଅପେକ୍ଷା କରିଛୁ ଏଥିଭିତରେ ଭିତରେ ବିନୋବା ଖୋଦ୍ ଆସି ପହଞ୍ଚିଗଲେ ଓ କହିଲେ ଯେ, ଏଇଟା ମହାବୀର ଜୟନ୍ତୀ ବର୍ଷ । ଏହି ବର୍ଷ ଭିତରେ ଯୋଡ଼ିବା କାମ ହିଁ କରିବା ଉଚିତ୍ । ତେଣୁ ସେ ସଂଘ ଭିତରେ ଉପୁଜିଥିବା ମତଭେଦକୁ ଦୂର କରିବାର ସୂତ୍ର ବାହାର କରିଛନ୍ତି । ଗ୍ରାମ ସ୍ୱରାଜ ଆନ୍ଦୋଳନ ଓ ବିହାର ଆନ୍ଦୋଳନ ଉଭୟେ ସର୍ବ ସେବା ସଂଘର କାମ । ଯେ ଯେଉଁ କାମ କରିବାକୁ ଚାହାନ୍ତି କରନ୍ତୁ, ମାତ୍ର ସତ୍ୟ, ଅହିଂସା ଓ ସଂଯମର ମର୍ଯ୍ୟାଦା ଭିତରେ ଥାଇ କାମ କରନ୍ତୁ । ଉଭୟ ଆନ୍ଦୋଳନର ଅଭିଜ୍ଞତାରୁ ସମସ୍ତେ ଉପକୃତ ହେବେ । ଏ ଉଭୟ କାମ ଗଙ୍ଗା ଓ ବ୍ରହ୍ମପୁତ୍ର ପରି ପବିତ୍ର । ଜେ.ପି.ଙ୍କୁ ପଚରାଯିବାରୁ ସେ କହିଲେ ଯେ, ଏ ସୂତ୍ର ତାଙ୍କୁ ଷୋଳଅଣା ସନ୍ତୋଷ ଦେଉଛି । ଏହାର ଦୁଇଘଣ୍ଟା ପରେ ସର୍ବ ସେବା ସଂଘର ସବୁ ପ୍ରତିନିଧିମାନେ ସେଠାକୁ ଆସିଲେ । ସେଠି ସଂଘର ବୈଠକ ବସିଲା ଓ ସେଥିରେ ମଧ୍ୟ ବିନୋବା ଏହି ମର୍ମରେ ବକ୍ତୃତା ଦେଲେ । ଏଇ ଅନୁସାରେ ସଂଘରେ ସର୍ବସମ୍ମତିକ୍ରମେ ଏକ ପ୍ରସ୍ତାବ ଗୃହୀତ ହେଲା ଓ ଆନନ୍ଦର ସହିତ ସବୁ ଅଡୁଆ ତୁଟିଲା ।

କିନ୍ତୁ ଦେଖାଗଲା ଯେ, ନିର୍ମଳା ହେରିକା ଏ ସମାଧାନରେ ସନ୍ତୁଷ୍ଟ ହେଇ ନଥିଲେ । ଏଇଟା ଇନ୍ଦିରାଙ୍କ ରମନକୁ ପାଇ ନଥିଲା । ନିର୍ମଳା ଏହାପରେ ତୁରନ୍ତ ଦିଲ୍ଲୀ ଯାଇ ଇନ୍ଦିରାଙ୍କ ସାଙ୍ଗରେ ପରାମର୍ଶ କଲା ଓ ହିନ୍ଦୁସ୍ତାନ ଟାଇମ୍ସର ପ୍ରଥମ ପୃଷ୍ଠାରେ ଉକ୍ତ ଦୈନିକର ସମ୍ବାଦଦାତାଙ୍କ ସହିତ ତା'ର ଏକ ସାକ୍ଷାତକାରର ସମ୍ବାଦ ବଡ଼ ବଡ଼ ଶିରୋନାମା ଦିଆଯାଇ ବାହାରିଲା । ସେଥିରେ ନିର୍ମଳା ଏ କଥା କହିଥିଲା ଯେ, ବିହାର ଆନ୍ଦୋଳନ ରାଜନୀତିକ ଓ ହିଂସାତ୍ମକ ବୋଲି ସେମାନେ ତା'ର ବିରୋଧ କରୁଛନ୍ତି । ବିନୋବା ତାକୁ ସମର୍ଥନ କରିନାହାନ୍ତି, ସଜାଗ ରହି ଲକ୍ଷ୍ୟ କରୁଛନ୍ତି ଇତ୍ୟାଦି । ପଉନାରରେ ଯେଉଁ ସମାଧାନ ହେଲା ତା'ର ଅନ୍ତରତମ ଭାବନାକୁ ଏପରି ଭାବରେ କାଦୁଅରେ ଘୋଷାଡ଼ିବା ଯୋଗୁଁ କ୍ଷୁବ୍ଧ ହେଇ ବୁବୁ ପଉନାର ଆଶ୍ରମରେ ଥିବା କୁସୁମ ଦେଶପାଣ୍ଡେଙ୍କୁ ଏକ ଚିଠି ଲେଖିଲା । ମୁଁ ମଧ୍ୟ ନିର୍ମଳାକୁ ଏକ କଡ଼ା ଚିଠି ଲେଖିଲି ।

## ଜେ.ପି. ଙ୍କ ସହ ଆଲୋଚନା

ଏଣେ ଜେ.ପି. ବିରୋଧୀ ଦଳମାନଙ୍କ ସହିତ ଯେପରି ଅଧିକ ପରିମାଣରେ ରଙ୍ଗଘସ ହେଉଥା'ନ୍ତି ତାହା ମତେ ଭଲ ଲାଗୁ ନଥାଏ । ମୋର ଏ ବିଷୟରେ ପୂର୍ବରୁ ଥିବା ମତ ବଦଳି ନଥାଏ । ବରଂ ଦାଦା ଓ ଖୁଡ଼ୀଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା କରିବା ପରେ ଦାଦାର ଓ ମୋର ଉଭୟଙ୍କ ମନରେ ଏକପ୍ରକାରର ଶଙ୍କା ଥିବାର ଦେଖାଗଲା । ଜେ.ପି. ଯା' ଭିତରେ କଲିକତା ଆସିଲେ ଓ ପଞ୍ଜାବ ମଧ୍ୟ ଗଲେ । କଲିକତାରେ ସଂଗଠନ କଂଗ୍ରେସ ଓ ଜନସଂଘ, ଯେଉଁ ଦୁଇ ଦଳର ଅସ୍ତିତ୍ୱ ପଶ୍ଚିମ ବଙ୍ଗର ରାଜନୀତିରେ ଶୂନ୍ୟପ୍ରାୟ, ତାଙ୍କର ମୁଖ୍ୟ ସମର୍ଥକ ରୂପେ ବାହାରିଲେ । ପଞ୍ଜାବରେ ବିରୋଧୀ ଦଳଙ୍କର ସାମ୍ମୁଖ୍ୟ ନାଁରେ ଏକ ସମିତି ଗଢ଼ାହେଲା । ସେଥିରେ ପ୍ରକାଶ ସିଂହ ବାଦଲ ପ୍ରଭୃତି ଆଗୁଆ ହେଲେ । ମୋର ଧାରଣା ହେଲା ଯେ, ଏସବୁ ଦ୍ୱାରା ଲୋକଙ୍କ ମନରେ ଆନ୍ଦୋଳନର ଭାବମୂର୍ତ୍ତି ମଳିନ ହେଇଯାଉଛି । ଜଣାଶୁଣା ଦୁର୍ନୀତିଗ୍ରସ୍ତ

ଲୋକଙ୍କ ନେତୃତ୍ୱରେ ଦୁର୍ନୀତି ବିରୋଧରେ କି ଆନ୍ଦୋଳନ ହେବ ? ଏ ବିଷୟରେ ମୁଁ ମୋର ମନୋଭାବ ଦୃଢ଼ ଭାବରେ ବ୍ୟକ୍ତ କରି ଜେ.ପି.ଙ୍କୁ ଏକ ଚିଠି ଲେଖିଲି । ସେଥିରେ ମୁଁ ଲେଖିଲି ଯେ, ଏହାଦ୍ୱାରା ଆମର ବହୁ ଇପ୍ସିତ ବିପ୍ଳବ ଏକ ପ୍ରହସନରେ ପରିଣତ ହେବାର ଆଶଙ୍କା ରହିଛି ।

ଏ ଚିଠିପାଇ ଜେ.ପି. ମତେ ପାଟନା ଡାକିଲେ । ସେଠି ବିହାର ଆନ୍ଦୋଳନ ବିଷୟରେ ବିଚାର କରିବା ପାଇଁ ଅକ୍ଟୋବର ଶେଷ ସପ୍ତାହରେ ମୁଖ୍ୟ କର୍ମୀମାନଙ୍କର ଏକ ବୈଠକ ଥାଏ । ସେଠି ମୋର ଚିଠି କଥା ପଡ଼ିଲା । ସେପର୍ଯ୍ୟନ୍ତ ଆନ୍ଦୋଳନ କିପରି ଭାବରେ ବିକାଶ ଲାଭ କରିଆସିଛି ଓ ସେଥିରେ ଦଳମାନଙ୍କର ଭୂମିକା ଜେ.ପି. ଆନୁପୂର୍ବିକ ବର୍ଣ୍ଣନା କଲେ ଓ କହିଲେ ଯେ, ନିର୍ଦ୍ଦଳୀୟ ଗଣତନ୍ତ୍ରର ସମୟ ଏ ପର୍ଯ୍ୟନ୍ତ ଆସିନାହିଁ । ତେଣୁ ବର୍ତ୍ତମାନ ଦଳମାନଙ୍କର ଅସ୍ତିତ୍ୱ ମାନିନେଇ ଚାଲିବାକୁ ହେବ । ବିନୋବା ତ ଭୂଦାନ ଆନ୍ଦୋଳନରେ ସବୁ ଦଳର ସହଯୋଗ କାମନା କରିଥିଲେ । ସେହିପରି ଏ ଆନ୍ଦୋଳନରେ ମଧ୍ୟ ଦଳମାନଙ୍କର ସହଯୋଗ ମିଳିବାରେ ଆପତ୍ତି କ'ଣ ?

ମୁଁ ମୋର ଯୁକ୍ତି ବାଢ଼ିଲି ଯେ, ମୁଷ୍ଟିମେୟ ବାମପନ୍ଥୀଙ୍କୁ ଛାଡ଼ିଦେଲେ ବାକି ସବୁ ଦଳ ଓ କଂଗ୍ରେସର ଚରିତ୍ରରେ ଖାସ୍ ଫରକ ନାହିଁ । ସେମାନେ ବିପ୍ଳବ ବା ମୌଳିକ ପରିବର୍ତ୍ତନ ଚାହାନ୍ତି ନାହିଁ । ନିର୍ବାଚନ ଜିତିବା ପାଇଁ ଜେ.ପି.ଙ୍କ ନାମରୁ ଲାଭ ଉଠେଇବାକୁ ଚାହାନ୍ତି । ଆନ୍ଦୋଳନ ପ୍ରତି ଜେ.ପି.ଙ୍କ ବ୍ୟକ୍ତିତ୍ୱ ଯୋଗୁଁ ଲୋକେ ଆକୃଷ୍ଟ । ଦଳମାନେ ଆସିଲେ ଯେ, ଆକର୍ଷଣ ବେଶି କିଛି ବଢ଼ିବ ତାହା ନୁହେଁ । ସେ ଯେ ବିଚାରୁଛନ୍ତି ଯେ, ଦଳମାନଙ୍କର କର୍ମୀ ଅଛନ୍ତି ତାହା ବି ଏକ ଭ୍ରମ । ସେମାନଙ୍କର କର୍ମୀ ଆନ୍ଦୋଳନ ପାଇଁ ନୁହଁନ୍ତି, ଭୋଟ ଓ କ୍ଷମତା ପାଇଁ ।

ମୋ ଯୁକ୍ତିକୁ ଅନ୍ୟ ଅନେକେ ସମର୍ଥନ କଲେ । ଜେ.ପି.ମଧ୍ୟ କହିଲେ ଯେ, ଦଳ ବିଷୟରେ ମୋର ବିଶ୍ଳେଷଣରେ ସେ ଏକମତ । ଜନସଂଘ ଓ ରା.ସ୍ୱ.ସଂଘର ଭୂମିକା ବିଷୟରେ ମଧ୍ୟ ସେ ସମାଲୋଚନାମୂଳକ ମନ୍ତବ୍ୟ କଲେ । ଭୂଦାନ ସହିତ ତୁଳନା ବିଷୟରେ ମୁଁ କହିଥିଲି ଯେ, ସେଥିରେ ନିଜ ଜମିରୁ କାଟି ବାଣ୍ଟି ଦେବା କଥା ଥିଲା । ଏଥିରେ ଯଦି ସେଇଭଳି କିଛି ପ୍ରତ୍ୟକ୍ଷ ଆଚରଣର କଷଟି ରହିବ ତେବେ ହିଁ ବୁଝାଯିବ ଯେ ଦଳମାନେ ନିଜର ଚରିତ୍ର ବଦଳାଇବାର ଉଦ୍ୟମ ପ୍ରକୃତରେ କେତେ କରୁଛନ୍ତି । ଜେ.ପି. କହିଲେ – ଏକଥା ଠିକ୍ । ତେବେ ପ୍ରତ୍ୟକ୍ଷ ଆଚରଣ ପାଇଁ କି ବିଷୟ ରଖାଯିବ ବୋଲି ପଚାରିଲେ । ଆମେ ସବୁ ଭାବିଚିନ୍ତି ଜବାବ ଦେବୁ ବୋଲି କହିଲୁ । ସେ ନିଜେ ବୁଝେଇଲେ ଯେ, ଆନ୍ଦୋଳନକୁ ସମର୍ଥନ କରୁଥିବା ଦଳମାନଙ୍କର ସଭ୍ୟମାନେ ନିଜ ସମ୍ପତ୍ତିର ପରିମାଣ ସର୍ବସାଧାରଣରେ ଘୋଷଣା କରିବେ । ଏହା ଏକ ଆଚରଣ ବିଧି ହୋଇପାରେ ।

ମଝିରେ ପଞ୍ଜାବ ପ୍ରଭୃତିରେ କିପରି ସମିତି ଗଢ଼ା ହୋଇଥିଲା ତା'ର ବିସ୍ତୃତ ବିବରଣୀ ଦେଇ ସେ କହିଲେ ଯେ, ମତେ ଯେମିତି ସୁଝୁଛି ମୁଁ କରୁଛି । ତମମାନଙ୍କୁ ତ ସେଥିରେ ଜଡ଼ିତ

କରୁନାହିଁ । ସର୍ବ ସେବା ସଂଘର ନୀତି ସହିତ ତାହା ଖାପ ନ ଖାଉଛି ବୋଲି ବିଚାରୁଛ ତ ତମେମାନେ ଅଲଗା ରହିପାର । ଆମେ ଦର୍ଶେଇଲୁ ଯେ, ଆମ ଧର୍ମରେ ଛୁଆଁତା ଲାଗିଯିବା ଭୟରେ ଆମେ ଦଳ ବା ବ୍ୟକ୍ତିବିଶେଷ ଆନ୍ଦୋଳନରେ ସଂପୃକ୍ତ ହେବାର ବିରୋଧ କରୁନାହୁଁ । ଆନ୍ଦୋଳନର ସ୍ୱାର୍ଥ, ତା'ର ସଫଳତା ଦୃଷ୍ଟିରୁ କରୁଛୁ ।

ଯାହାହେଉ ଏ ଦୀର୍ଘ ଆଲୋଚନାର ଏତକ ଫଳ ହେଲା ଯେ, ସେ ଦିନ ସାମ୍ୟାଦିକ ସମ୍ମିଳନୀରେ ଜେ.ପି. ଘୋଷଣା କଲେ ଯେ, ସେ ଜନଆନ୍ଦୋଳନ ଚାହାନ୍ତି । ଜନତା ସେଥିରେ ମୁଖ୍ୟ ହେବେ । ବିରୋଧୀ ଦଳମାନଙ୍କର ଯୋଗା ଦାନକୁ ଅବଶ୍ୟ ସ୍ୱାଗତ କରାଯିବ, ମାତ୍ର ଆନ୍ଦୋଳନର ରୂପ କେବଳ ବିରୋଧୀ ଦଳମାନଙ୍କର କଂଗ୍ରେସ ବିରୋଧରେ ମେଣ୍ଟ ଭଳି ହେବା ଉଚିତ ନୁହେଁ । ସେପରି ହେଲେ ସେ ତାହା ସହିତ ସଂପର୍କ ରଖିବେ ନାହିଁ । ପରେ ପଞ୍ଜାବର ସଂଘର୍ଷ ସମିତି ପୁନର୍ଗଠିତ ହେଲା ଓ ବାଦଲ ପ୍ରଭୃତି ସେଥିରୁ ଅଲଗା ହେଲେ ।

ଏହାରି ପରେ ପରେ ନଭେମ୍ବର ଚାରି ତାରିଖରେ ପାଟନାରେ ରାଜଧାନୀ ଘେରାଉର କାର୍ଯ୍ୟକ୍ରମ ଥାଏ । ଅକ୍ଟୋବର ତିନିରୁ ପାଞ୍ଚଯାଏ ତିନି ଦିନ ବିହାର ବନ୍ଦର ଅଭୂତପୂର୍ବ ସାଫଲ୍ୟ ଦେଖି ଇନ୍ଦିରା ଗାନ୍ଧୀ ଘାବଡ଼େଇ ଯାଇଥା'ନ୍ତି । ସେ ସେହି ଅକ୍ଟୋବର ଶେଷଆଡ଼କୁ ଗୋଟାଏ ମିଳାମିଶା ଉଦ୍ୟମ ପାଇଁ ସଙ୍ଗଠନ କଂଗ୍ରେସର ଶ୍ୟାମନନ୍ଦନ ମିଶ୍ରଙ୍କୁ ଡାକି କଥାବାର୍ତ୍ତା କଲେ । ମିଶ୍ରଜୀ ଆଜି ଜେ. ପି.ଙ୍କ ସହିତ ପରାମର୍ଶ କଲେ ଓ ତାହାପରେ ଦୀନେଶ ସିଂହ ପାଟନା ଆସି ଜେ.ପି.ଙ୍କ ସହିତ କଥାବାର୍ତ୍ତା ହେଲେ । ଏସବୁ ଆଲୋଚନା ଗୁପ୍ତରେ ହେଲା । ବିହାର ବିଧାନସଭାକୁ ଭାଙ୍ଗି ନ ଦେଇ କେତେ ମାସ ପାଇଁ ସସ୍‌ପେଣ୍ଡ କରି ରଖାଯିବ ବୋଲି ପ୍ରସ୍ତାବ ଆସିଥିଲା । ଜେ.ପି. ସେଥିରେ ରାଜି ବି ହେଇଥିଲେ । ପରେ ନଭେମ୍ବର ପହିଲାରେ ଜେ.ପି ଇନ୍ଦିରାଙ୍କୁ ଦିଲ୍ଲୀରେ ଭେଟିଲେ । ମାତ୍ର କଥାବାର୍ତ୍ତା ବିଫଳ ହେଇଗଲା । ଏହାପରେ ଇନ୍ଦିରା ଗାନ୍ଧୀ କହିଲେ ଯେ, ବିହାରର ଲୋକେ କ'ଣ ଚାହାନ୍ତି ତାହା ଆସନ୍ତା ନିର୍ବାଚନରେ ପ୍ରମାଣିତ ହେବ ଓ ଜେ.ପି ଏ ଆହ୍ୱାନକୁ ଗ୍ରହଣ କଲେ ।

ନଭେମ୍ବର ଶେଷ ଆଡ଼କୁ ଦିଲ୍ଲୀରେ ବିରୋଧୀ ଦଳ ଓ ଆନ୍ଦୋଳନର ଅନ୍ୟ ସମର୍ଥକମାନଙ୍କର ସମ୍ମିଳନୀ ହେଲା । ବିହାର ଆନ୍ଦୋଳନକୁ ସମର୍ଥନ କରି ସାରା ଦେଶରେ ସେହି ସବୁ ସମସ୍ୟା ନେଇ ଆନ୍ଦୋଳନ କରିବା ପ୍ରସ୍ତାବ ହେଲା । ଏକ 'ଜନତାର ଦାବିପତ୍ର' ତିଆ କରିବା କଥା ମଧ୍ୟ ସ୍ଥିର ହେଲା । ଏ ସମ୍ମିଳନୀରେ କେତେକ ଏ ମତ ପ୍ରକାଶ କରିଥିଲେ ଯେ, ବିହାର ଆନ୍ଦୋଳନ ଯେଉଁସବୁ ସମସ୍ୟାକୁ ନେଇ ଆରମ୍ଭ ହୋଇଥିଲା ସେ ସବୁର ପ୍ରତିକାର ଦିଗରେ ସେଠାରେ ଏପର୍ଯ୍ୟନ୍ତ କିଛି ନ ହେବାରୁ ଅନ୍ୟାନ୍ୟ ରାଜ୍ୟର ଲୋକଙ୍କ ମନରେ ଗୋଟିଏ ପ୍ରଶ୍ନବାଚକ ଚିହ୍ନ ରହିଯାଇଛି । ତେଣୁ ସାରା ଦେଶରେ ଆନ୍ଦୋଳନକୁ ପ୍ରେରଣା ଦେବାକୁ ହେଲେ ବିହାରରେ ସେ ସବୁ ଦିଗରେ କିଛି ହେବା ଚାହି । ପରେ ଜେ.ପି.ଏ ମନ୍ତବ୍ୟ କରିବାର ଶୁଣାହେଲା ଯେ, ଏ ସମ୍ମିଳନୀ ଡାକିବା ଠିକ୍ ହେଲା ନାହିଁ । କାହିଁକି ଠିକ୍ ହେଲା ନାହିଁ ସେ ବିଷୟରେ ତାଙ୍କ ସହିତ ଆଲୋଚନା କରାଯାଇ ପାରି ନଥିଲା ।

## ସର୍ବ ସେବା ସଂଘରେ ସଂକଟ

ଡିସେମ୍ବରରେ ଉତ୍ତରପ୍ରଦେଶର ଗାଜିପୁରରେ ସର୍ବ ସେବା ସଂଘର ପ୍ରବନ୍ଧ ସମିତିର ବୈଠକ ବସିଲା । ସେଠି ନିର୍ମଳା ଏ ପଏଣ୍ଟ ବାହାର କଲା ଯେ, ଜେ.ପି. ନିର୍ବାଚନ ଲଢ଼ିବେ ବୋଲି ଘୋଷଣା କରିବା ଦ୍ୱାରା ଏକ ନୂଆ ପରିସ୍ଥିତି ଉତ୍ପନ୍ନ ହେଉଛି । ସର୍ବ ସେବା ସଂଘର ଜୁଲାଇ ଅଧିବେଶନ ପରର ସ୍ଥିତି ଆଉ ନାହିଁ । ବିହାର ଆନ୍ଦୋଳନକୁ ସେଠି ଯେଉଁ ସ୍ୱୀକୃତି ଦିଆଯାଇଥିଲା ତାହା ଏବେ ଆଉ ଲାଗୁ ହେବ ନାହିଁ । ଲୋକସେବକ ଦଳଗତ ରାଜନୀତିରେ ଅଂଶ ଗ୍ରହଣ କରିବା ନିଷିଦ୍ଧ । ଏପରି ଅବସ୍ଥାରେ ସର୍ବ ସେବା ସଂଘର ସବୁ କାମଦାମ ବନ୍ଦ ରହୁ । ରାମମୂର୍ତ୍ତି ଦର୍ଶାଇଲେ ଯେ, ଏ ନିର୍ବାଚନ ଲଢ଼ିବାର ଘୋଷଣା ଜେ.ପି. ପରେ ସିନା କଲେ, କିନ୍ତୁ ଏପ୍ରିଲ ମାସରେ ଆନ୍ଦୋଳନର ଉଦ୍ଦେଶ୍ୟ ଓ କର୍ମପନ୍ଥା ବିଷୟରେ ଯେଉଁ ନିବେଦନ ବାହାରିଥିଲା, ସାନି ନିର୍ବାଚନ ହେଲେ ସେଥିରେ ଜନତା ପ୍ରାର୍ଥୀ ଲଢ଼ିବା କଥା ରହିଛି । ଏ ସବୁ ଜାଣିକରି ହିଁ ଜୁଲାଇ ମାସରେ ବିନୋବା ବିହାର ଆନ୍ଦୋଳନକୁ ସ୍ୱୀକୃତି ଦେଇଛନ୍ତି । ମାତ୍ର ସେ କଥା ଶୁଣୁଛି କିଏ ? ନିର୍ମଳା ଓ ଆଉ ଜଣେ ଦୁଇଜଣ ଏ ବିଷୟରେ ଏକା ଜିଦ୍ ଧରି ସମିତିର କାମ ଅଚଳ କରିଦେଲେ । ଫଳରେ ଏଠୁ ପୁଣି ପଞ୍ଚାଏ ବିନୋବାଙ୍କ ପାଖକୁ ଗଲୁ । ଏଥର ସିଦ୍ଧରାଜଜୀ, ବୈଦ୍ୟନାଥ ବାବୁ ହେରିକା ବି ଥା'ନ୍ତି ।

ବିହାରରେ ଆଗକୁ ନିର୍ବାଚନ ହେଲେ ସେଥିରେ ପ୍ରଚାର କରିବା ଲୋକସେବକଙ୍କର ସଂକଳ୍ପର ବିରୁଦ୍ଧାଚରଣ ହେବ ବୋଲି ନିର୍ମଳା ହେରିକାଙ୍କର ଯୁକ୍ତି ଥାଏ । ବିନୋବାଙ୍କର ପ୍ରଶ୍ନର ଉତ୍ତରରେ ବଙ୍ଗସାହେବ, ସିଦ୍ଧରାଜଜୀ, ଜଗନ୍ନାଥନ୍, ମୁଁ, ବୈଦ୍ୟନାଥ ବାବୁ ପ୍ରଭୃତି ମତ ଦେଲୁ ଯେ, ନାହିଁ; ତାହା ବିରୋଧାଚରଣ ହେବ ନାହିଁ, କାରଣ ବିହାରର ନିର୍ବାଚନ ଗୋଟାଏ ରେଫରେଣ୍ଡମ୍ ପରି ହେବ । ତା'ଛଡ଼ା ସେଠି ଯେଉଁ ପ୍ରାର୍ଥୀମାନଙ୍କ ସମର୍ଥନରେ ପ୍ରଚାର କରାଯିବ ସେମାନେ କୌଣସି ଦଳ ପକ୍ଷରୁ ନୁହେଁ, ସଂଘର୍ଷ ସମିତି ପକ୍ଷରୁ ଛିଡ଼ା କରାହେଇଥିବେ । ଗ୍ରାମଦାନ ଗାଁମାନଙ୍କ ପକ୍ଷରୁ ନିର୍ବାଚନରେ ପ୍ରାର୍ଥୀ ଛିଡ଼ା କରାଯିବାର କଳ୍ପନା ବିନୋବା ନିଜେ ଦେଇଥିଲେ ଓ ସେପରି ପ୍ରାର୍ଥୀ ଛିଡ଼ା କରାଇବା ପାଇଁ ଉଦ୍ୟମ କରିବା ସର୍ବୋଦୟର ଏକ କାର୍ଯ୍ୟକ୍ରମ ଭାବରେ ଗୃହୀତ ହେଇଥାଏ । ଆମେ ଯୁକ୍ତି କଲୁ ଯେ, ସଂଘର୍ଷ ସମିତି ପକ୍ଷରୁ ପ୍ରାର୍ଥୀ ଛିଡ଼ା କରାଯିବାଟା ସେହି ଦିଗରେ ହିଁ ଗୋଟାଏ ଅଧାବାଟିଆ ପଦକ୍ଷେପ; କିନ୍ତୁ ବିନୋବା ଏ ଯୁକ୍ତି ଆଦୌ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନ ଥିଲେ । ସେ ଏକ ସତର୍କବାଣୀ ଶୁଣାଇଦେଲେ ଯେ, ସର୍ବ ସେବା ସଂଘ ନିର୍ବାଚନ ସହିତ ସଂପୃକ୍ତ ହେଲେ ସେ ତାହା ସହିତ ସଂପର୍କ ତୁଟାଇ ଦେବେ ।

ଅଳ୍ପ କେତେ ମାସ ପୂର୍ବରୁ କେନ୍ଦ୍ରମନ୍ତ୍ରୀ ରାଜବାହାଦୂର ବିନୋବାଙ୍କୁ ଭେଟିବାକୁ ଆସିଥିଲେ । ସେତେବେଳେ ବିନୋବା ତାଙ୍କୁ କହିଥିଲେ ଯେ, ରାଜସ୍ଥାନରେ ନିଶାନିବାରଣ କରିବାର ପ୍ରତିଶ୍ରୁତି ଯଦି ସରକାର ପାଳନ ନ କରନ୍ତି, ତେବେ ଆସନ୍ତା ନିର୍ବାଚନରେ ସେ ରାଜସ୍ଥାନର ଲୋକଙ୍କୁ କଂଗ୍ରେସ ବିରୋଧରେ ଭୋଟ ଦେବା ପାଇଁ ପରାମର୍ଶ ଦେବେ । ସିଦ୍ଧରାଜଜୀ ଉପରୋକ୍ତ

ଧମକର ନଜିର ଦେଖାଇ କହିଲେ ଯେ, ବିହାରରେ ଜେ.ପି.ଙ୍କର ଆଭିମୁଖ୍ୟର ତୁଳନା ଏହା ସହିତ କରାଯାଇପାରେ । ତା'ଛଡ଼ା ବିହାରରେ ତ ଜନତା ପ୍ରାର୍ଥୀମାନଙ୍କୁ ଭୋଟ ଦେବାକୁ ଲୋକଙ୍କୁ ପ୍ରବର୍ତ୍ତାଯିବ । ରାଜସ୍ଥାନରେ ତ ତାହା ବି ନ ଥାଇ ଆପଣ ଲୋକଙ୍କୁ କଂଗ୍ରେସ ବିରୋଧରେ ଭୋଟ ଦେବା ପାଇଁ ପରାମର୍ଶ ଦେବେ ।

ଏ ନଜିର ବାହାର କରାଯିବା ମାତ୍ରେ ବିନୋବା ତୁରନ୍ତ ନିଜର କଥା ଓ୍ୱାପସ ନେଇ କହିଲେ ଯେ, ରାଜସ୍ଥାନ ବା ଅନ୍ୟ କେଉଁଠି ନିଶାନିବାରଣ ହେଲେ ନ ହେଲେ ତାଙ୍କର କିଛି ଯାଏ ଆସେ ନାହିଁ । ତାଙ୍କ ଆଖପାଖରେ ସମସ୍ତ ଲୋକ ନିଶା ଖାଇଲେ ବି ସେ ପରଓ୍ୱାୟ କରିବେ ନାହିଁ, କେବଳ ସେ ନିଜେ ତା' ପାଲରେ ନ ପଡ଼ିଲେ ହେଲା ।

ପୂର୍ବରୁ ତାଙ୍କ ସହିତ ସର୍ବସମ୍ମତିର ତାତ୍‌ପର୍ଯ୍ୟ ଓ ବ୍ୟାଖ୍ୟା ସମ୍ବନ୍ଧରେ ବଙ୍ଗସାହେବ ହେରିକାଙ୍କର ଅନେକ ଥର ଆଲୋଚନା ହେଇଥିଲା ଓ ସେ ମତ ଦେଇଥିଲେ ଯେ, କୌଣସି ବିଷୟରେ ଯଦି ଶତକଡ଼ା ନବେ ବା ତହିଁରୁ ଅଧିକ ମତ ସପକ୍ଷରେ ଥାଏ ତେବେ ତାହା ସର୍ବସମ୍ମତି ବୋଲି ଧରାଯିବ । ଏବେ ତ ପ୍ରବନ୍ଧ ସମିତିରେ ଶତକଡ଼ା ନବେରୁ ଅଧିକ ମତ ବିହାର ଆନ୍ଦୋଳନ ପଟରେ ରହିଥାଏ । ମାତ୍ର ବିନୋବାଙ୍କୁ ଏ କଥା ଦର୍ଶେଇବାରୁ ସେ ସର୍ବସମ୍ମତିର ନିଜେ ଦେଇଥିବା ବ୍ୟାଖ୍ୟାକୁ ତୁରନ୍ତ ଓ୍ୱାପସ ନେଇ ନେଲେ ଓ ଶତକଡ଼ା ଶହେ ଏକମତ ହେଲେ ଯାଇ ସର୍ବସମ୍ମତି ନିର୍ଣ୍ଣୟ ନିଆ ହେଇପାରିବ ବୋଲି ନୂଆ ରାୟ ଦେଲେ । ସେ ଯେପରି ତୃତୀୟ ଶ୍ରେଣୀର ରାଜନୀତିବାଲାଙ୍କ ପରି ସେତେବେଳେ କଥାବାର୍ତ୍ତା କଲେ ତାହା ଦେଖି ଦୁଃଖ ହେଲା ।

ଏହାପରେ ସର୍ବ ସେବା ସଂଘ ଆଗରେ ତିନୋଟି ବାଟ ଖୋଲା ରହିଲା: ଏକ, ବିହାର ଆନ୍ଦୋଳନର ସମର୍ଥକ ସଂଘରୁ ଇସ୍ତଫା ଦେବେ, ଦୁଇ ତା'ର ବିରୋଧୀ ଇସ୍ତଫା ଦେବେ, ନଚେତ ତିନି, ସଂଘ ଭାଙ୍ଗି ଦିଆଯିବ । ସେଦିନ ସିଦ୍ଧରାଜଜୀ ଦୁଃଖିତ ହୃଦୟରେ କୁସୁମବେନ୍‌ଙ୍କୁ କହିଲେ ଯେ, ବାବା ସମସ୍ତଙ୍କୁ ହୃଦୟ ଯୋଡ଼ିବା ବିଷୟରେ ଉପଦେଶ ଦେଉଛନ୍ତି, ସେ ନିଜେ ଟିକିଏ ସର୍ବ ସେବା ସଂଘ ବାବଦରେ ସେହି କାମଟା କଲେ ବହୁତ ଉପକାର ହୁଅନ୍ତା । କୁସୁମବେନ୍ ବିନୋବାଙ୍କୁ ସେ କଥା କହିଥିବେ । ବିନୋବା ତହିଁଆରଦିନ ସକାଳୁ ସମସ୍ତଙ୍କୁ ଡାକି ପଠେଇଲେ ଓ ଖଣ୍ଡେ ଖଣ୍ଡେ 'ଅଭଙ୍ଗବ୍ରତ' ବହି ପ୍ରତ୍ୟେକଙ୍କୁ ଉପହାର ଦେଲେ । ତା' ପରେ ସେ ପ୍ରସ୍ତାବ ଦେଲେ ଯେ ଯେଉଁମାନେ ବିହାରର ନିର୍ବାଚନରେ ସଂପୃକ୍ତ ହେବେ ସେମାନେ ସେତେ ଦିନ ପାଇଁ ସର୍ବ ସେବା ସଂଘରୁ ଛୁଟି ନେଇଯିବେ । ଏ ପ୍ରସ୍ତାବକୁ ଆମେ ସାବଧାନତାର ସହିତ ତୌଲିକରି କହିଲୁ ଯେ, ଆମେ ଏ ବିଷୟରେ ଜେ.ପି., ଦାଦା ଧର୍ମାଧିକାରୀ ଓ ଅନ୍ୟମାନଙ୍କ ସହିତ ପରାମର୍ଶ କରିବା ପରେ ଶେଷ ନିଷ୍ପତ୍ତି ଦେଇପାରିବୁ । ତେବେ କଥାଟା ଭଲ ଲାଗୁଛି ।

ଏହି ଆଲୋଚାନ ଭିତରେ ବିବୋବା କହିଲେ ଯେ, ନଭେମ୍ବର ଚାରି ତାରିଖ ଦିନ ପାଟନାଠାରେ ଜେ.ପି.ଙ୍କ ଉପରେ ଯେଉଁ ମାଡ଼ ହେଲା ସେ ବିଷୟରେ ସେ କୌଣସି ମନ୍ତବ୍ୟ ନ ଦେଇଥିବାର କାରଣ ହେଉଛି ଯେ, ମାଡ଼ଖାଇ ମଧ ଯଦି ମଣିଷ କ୍ଷୁବ୍‌ଧ ନ ହୁଏ ତେବେ ତା'ର ଆଧାତ୍ମିକ ଉନ୍ନତି ହୁଏ । ଆଉ ମାଡ଼ଦେବାବାଲାଙ୍କ ବିରୋଧରେ କିଛି କହିଲା ନାହିଁ, କାରଣ ସବୁ

ବଚନ ଅଛି –ନିନ୍ଦା ନ କରେ କେନୀରେ ! କଥାଟା ସମସ୍ତଙ୍କୁ ବିସ୍ୱାଦ ଲାଗିଲା । ଜଣେ କିଏ ମନ୍ତବ୍ୟ କଲେ ଯେ, ଏଇ କଥାଟା ବି କହିଦେଇଥିଲେ ଲୋକେ ଆଶ୍ୱସ୍ତ ହେଇଥା'ନ୍ତେ । ଲକ୍ଷ ଲକ୍ଷ ଲୋକଙ୍କ ମନରେ ଦୁଃଖ ରହିଗଲା ଯେ, ଆପଣ ସେ ବିଷୟରେ କିଛି କହିଲେ ନାହିଁ । ବିନୋବା ଜବାବ ଦେଲେ – ଯାହା ପାଖରେ "ରିସିଭିଂ ସେଟ୍" ଥିବ ସେ ମୋର ମନର କଥା ଜାଣିପାରିବ । ଆମେ କହିଲୁ ଯେ, ତାଙ୍କୁ ବୁଝିବାକୁ ଚେଷ୍ଟା କରନ୍ତୁ ଓ ତାଙ୍କୁ ବାଟ ବତାନ୍ତୁ । ସେ ଜବାବ ଦେଲେ – ମୁଁ ତ ଜୁଲାଇ ମାସରେ ଏହାକୁ ସ୍ୱୀକୃତି ଦେଇଥିଲି । ମଝିରେ ନିର୍ବାଚନ କଥାଟା ଉଠିବାରୁ ଅଡୁଆ ହେଉଛି । ତା' ପରେ ସେ ପଚାରିଲେ ଯେ ବିହାରରେ କୌଣସି ଜିଲ୍ଲାରେ ଗ୍ରାମସ୍ୱରାଜର ନମୁନା ଗଢ଼ାହେଇ ପାରିବ କି ? ଆମେ ଜବାବ ଦେଲୁ ଯେ, ସେ ଦିଗରେ ଚିନ୍ତା ତ କରାଯାଉଛି । ମାତ୍ର କ'ଣ ହେଇପାରିବ ନ ହେଇପାରିବ ତାହା ଆନ୍ଦୋଳନର ଭବିଷ୍ୟତ ଗତିବିଧି ଓ ପରିଣତି ଉପରେ ନିର୍ଭର କରିବ । ଏହି ସମୟରେ ସେ ତାଙ୍କର ଗୋଟିଏ ପୁରୁଣା, ବାରମ୍ବାର ଦୋହରା ଯାଇଥିବା ମତ ପୁଣି ଆମ ଆଗରେ ବାଢ଼ିଲେ ଯେ, ଆମେ ଯାହାସବୁ କାମ କରୁଛୁ ସେ ସବୁର ଫଳ 'ଶୂନ୍ୟ' ବୋଲି ବାପୁ କହିଥିଲେ । ତେଣୁ ପଞ୍ଚାବନ କୋଟିଙ୍କର ସମସ୍ୟା ସମାଧାନ କରିବାର କଳ୍ପନା ଅହଂକାର ମାତ୍ର, ସମାଜର ଖାଉଛୁ, ତେଣୁ ତା'ର କିଛି ସେବା କରିବା । ମୃତ୍ୟୁ ନିକଟେଇ ଆସିଲାଣି ବୋଲି ଜାଣିଲେ ମଣିଷ ଆଧ୍ୟାତ୍ମିକ ଚିନ୍ତା କରିବ ନା ଏଇ ସବୁ ଧନ୍ଦା କରିବ ? ଏହା କହି ସେ ପୁଣି ବ୍ରହ୍ମଚର୍ଯ୍ୟ, ନାଗରୀଲିପି ଆଦି ପ୍ରଚାରର ମହତ୍ତ୍ୱ ବାଢ଼ିଲେ ।

ଏଥିପୂର୍ବରୁ ସେ ଜଣେଇଥିଲେ ଯେ, ସେ ଉତ୍ତର ପ୍ରଦେଶ ସରକାରଙ୍କୁ ଜମି ବାଣ୍ଟିବାରେ ସାହାଯ୍ୟ କରିବା ପାଇଁ ରାମକୃଷ୍ଣ ପାଟିଲଙ୍କୁ ପଠାଉଛନ୍ତି । ମୁଁ ଆଉ ସଂଭାଳି ପାରିଲି ନାହିଁ, କହିଲି – "ଆପଣ ତା' ହେଲେ ପାଟିଲ ସାହେବଙ୍କୁ ହିମାଳୟକୁ ନ ପଠେଇ ଜମିବଣ୍ଟା ଧନ୍ଦାରେ ପୂରାଉଛନ୍ତି କାହିଁକି ?" ଏଇଟା ମୋ ବିରୋଧରେ ପ୍ରଚାରରେ ନିର୍ମଳା ଦେଶପାଣ୍ଡେଙ୍କର ଗୋଟାଏ ପଏଣ୍ଟ ହେଇ ରହିଲା । ଏହାରି ପରେ, ଆମେ ସେଠୁ ଚାଲି ଆସିବାର ଘଣ୍ଟାଏ ଦେଢ଼ଘଣ୍ଟା ଭିତରେ ବିନୋବା ବର୍ଷେ କାଳ ମୌନବ୍ରତ ଅବଲମ୍ବନ କରିବାର ସଂକଳ୍ପ କଲେ ।

## ମୌନ ରହିବାର ନିଷ୍ପତ୍ତି

ସର୍ବ ସେବା ସଂଘର ଅଧିବେଶନ ପୁଣି ଶୀଘ୍ର ସବୁକଥା ବିଚାର କରିବା ଆବଶ୍ୟକ ବୋଲି ଦାବି ନିର୍ମଳା ପ୍ରଭୃତିଙ୍କ ଆଡୁ ହେଲା ଓ ମାର୍ଚ୍ଚ ମାସରେ ତାହା ପଉନାରଠାରେ ବସିବ ବୋଲି ସ୍ଥିର ହେଲା । ବିନୋବା ଯେଉଁ 'ଛୁଟି'ର ସୂତ୍ର ବୁଝାଇଥିଲେ ସେ ବିଷୟରେ ଆଲୋଚନା କରିବା ପାଇଁ ଉଭୟ ପକ୍ଷରୁ କେତେଜଣ ଲେଖାଁ ଜାନୁୟାରୀ ମାସରେ ଲକ୍ଷ୍ନୌଠାରେ ଏକାଠି ହେଲେ । ମାତ୍ର ସେଠି ଛୁଟିର ଅର୍ଥ ନିର୍ମଳା ଦେଶପାଣ୍ଡେ କଲେ ଯେ, ଯେଉଁ କର୍ମୀ ଛୁଟି ନେଇ ନିର୍ବାଚନ କାମ କରିବାକୁ ଯିବ ସେ ସର୍ବ ସେବା ସଂଘର କୌଣସି କର୍ମକର୍ତ୍ତା ତ ରହିବ ନାହିଁ, ସେ ଲୋକସେବକ ହେଇ ସୁଦ୍ଧା ରହିବ ନାହିଁ ।ଭୂଦାନ ଗ୍ରାମଦାନ ଆଦି କାମ ମଧ୍ୟ ସେ କରିପାରିବ ନାହିଁ ।

ଏ ଆଲୋଚନା ସର୍ବ ସେବା ସଂଘ ଅଧିବେଶନ ବେଳେ ତ ଚାଲିଲା । ସମସ୍ତେ ଅନୁଭବ କଲେ ଯେ, ନିର୍ମଳା ଦେଶପାଣ୍ଡେ କହିଲେ ଯେଉଁ ଅର୍ଥ କରୁଛନ୍ତି ତାହା ସର୍ବ ସେବା ସଂଘରୁ ବିତାଡନ କରାଯିବାଠାରୁ ମଧ୍ୟ ଅଧିକ ଅପମାନଜନକ, ରାସ୍ତା ଚାଲିବା ଲୋକଙ୍କୁ ମଧ୍ୟ ଭୂଦାନ-ଗ୍ରାମଦାନ କାମରେ ଯୋଗଦାନ କରିବା ପାଇଁ ଡାକରା ଦିଆଯାଉଛି । ଆଉ ବିହାର ଆନ୍ଦୋଳନର ସମର୍ଥକ ଏତେ ଅଛୁଆଁ ଯେ ତାଙ୍କର ହାତ ବାଜିଲେ ସେ କାମ ମାରା ହୋଇଯିବ । ଏ ବିଷୟରେ ଗୋଟାଏ କିଛି ସମାଧାନ କରିବାକୁ ଶ୍ରୀମନ୍‌ଜୀ ଆପ୍ରାଣ ଚେଷ୍ଟା କରୁଥା'ନ୍ତି । ରାତି ତିନି ପହର ଯାଏ ସେ ଧୈର୍ଯ୍ୟର ସହିତ ବସିରହି କଥାବାର୍ତ୍ତା ଚଳାଉଥା'ନ୍ତି । କିନ୍ତୁ ଏ ସବୁ ଉଦ୍ୟମ ବୃଥା ହେଲା ଓ କଥାବାର୍ତ୍ତା ଭାଙ୍ଗିଗଲା । ଶେଷକୁ ପ୍ରବନ୍ଧ ସମିତିର କର୍ମକର୍ତ୍ତା ଓ ସଦସ୍ୟମାନେ ଇସ୍ତଫା ଦେବେ ବୋଲି ସ୍ଥିର କଲେ । ଅଧିକାଂଶ ଲୋକସେବକ, ଶତକଡ଼ା ନବେ ଭାଗରୁ ଅଧିକ ତ ଆନ୍ଦୋଳନ ସପକ୍ଷରେ ଥିଲେ । ସେମାନେ କିନ୍ତୁ ଇସ୍ତଫା ପକ୍ଷରେ ନ ଥିଲେ । କେତେଜଣ ଯୁବକ ସାଥୀ କହିଲେ ଯେ, ଆମେ ସଂଘକୁ କଦାପି ଇନ୍ଦିରା ଗାନ୍ଧୀ ହାତକୁ ଯିବାକୁ ଦେବୁ ନାହିଁ –"ହମ୍ ଉସମେଁ ଡଟେ ରହେଙ୍ଗେ ।"

ଶ୍ରୀମନ୍‌ନାରାୟଣଜୀ ତାଙ୍କର ସମାଧାନର ଚେଷ୍ଟା ତଥାପି ଛାଡ଼ି ନଥା'ନ୍ତି । ଶେଷରେ ସେ ଗୋଟାଏ ପ୍ରସ୍ତାବ ଦେଲେ ଯେ, ଯେଉଁମାନେ ବିହାରରେ କାମ କରିବାକୁ ଚାହାନ୍ତି ସେମାନେ ସେଠି ନିଜ ଦାୟିତ୍ୱରେ କାମ କରିବେ । ସର୍ବ ସେବା ସଂଘର ନାମ ବ୍ୟବହାର କରିବେ ନାହିଁ । ପାଟିଲ ସାହେବ ପ୍ରଭୃତି କେତେଜଣ, ଯେକି ନିର୍ମଳାର ପ୍ରସ୍ତାବ ସହିତ ଏକମତ ଥା'ନ୍ତି, ଏ ପ୍ରସ୍ତାବକୁ ପସନ୍ଦ କଲେ । ପାଟିଲ ସାହେବ ହିଁ ଏ ପ୍ରସ୍ତାବ ସଭାରେ ଆଗତ କରିବାର ସ୍ଥିର ହେଲା । ସେ ଏହା ପଢ଼ିବାକୁ ଯାଉଛନ୍ତି, ଏତିକିବେଳେ ଜଣେ କିଏ ଖଣ୍ଡେ ଚିପା କାଗଜ ଆଣି ତାଙ୍କ ହାତରେ ଗୁଞ୍ଜି ଦେଲା । ସେ ମୂଳ ପ୍ରସ୍ତାବଟି ଆଉ ନ ପଢ଼ି ସେ ଚିପା କାଗଜରେ ଲେଖାଥିବା ଆଉ ଏକ ପ୍ରସ୍ତାବ ପଢ଼ିଲେ । ଏଥିରେ ଲେଖାଥିଲା ଯେ, ବିହାର ଆନ୍ଦୋଳନରେ ସର୍ବ ସେବା ସଂଘ, ସର୍ବୋଦୟ ମଣ୍ଡଳ ଓ ଲୋକସେବକ କେହି ହେଲେ କାମ କରି ପାରିବେ ନାହିଁ । ଶ୍ରୀମନନଜୀ ବିସ୍ମିତ ହୋଇ ପଚାରିଲେ – "ଏ କ'ଣ ହେଲା ? ଅସଲ ପ୍ରସ୍ତାବଟା କୁଆଡ଼େ ଗଲା ?" ପାଟିଲ ସାହେବ କହିଲେ – "ନିର୍ମଳାବେନ୍ ପରା ଏ ଚିପା ପଠେଇଲେ ?" ଶ୍ରୀମନ୍‌ଜୀ ବ୍ୟଙ୍ଗ ଓ ବିରକ୍ତିମିଶା ସ୍ୱରରେ କହିଲେ – "ପାଟିଲ୍ ସାହେବ ! ଆପଣ ଶେଷକୁ ଏଇପରି ଚିପା କାଗଜରେ ହୁକୁମ ତାମିଲ କରିବା ଲୋକ ହୋଇଗଲେ ? ଆପଣଙ୍କର ନିଜସ୍ୱ ଆଉ କିଛି ନାହିଁ ?"

ଏହାପରେ ଆଉ କିଛି କହିବା କରିବା ନିଷ୍ଫଳ ଥିଲା । ସନ୍ଧ୍ୟାରେ ସଭାପତି ଓ ପ୍ରବନ୍ଧ ସମିତିର ଅଧିକାଂଶ ସଦସ୍ୟ ଇସ୍ତଫା ଦେଇଦେଲେ । ତା' ପରଦିନ ନିର୍ମଳା ଦେଶପାଣ୍ଡେ ଚଉବନ ଜଣ ସର୍ବ ସେବା ସଂଘରୁ ଅଲଗା ହୋଇଗଲେ । କିନ୍ତୁ ପାଟିଲ ସାହେବ ଏମାନଙ୍କ ସହିତ ଯୋଗ ଦେଇ ନଥିଲେ । ତାଙ୍କୁ ଯେଉଁ ଅପମାନଜନକ ପରିସ୍ଥିତିକୁ ଠେଲି ଦିଆ ହୋଇଥିଲା ତାର ଧକ୍କା

ତାଙ୍କ ମନରେ ବାଜିଥିଲା ବୋଧହୁଏ । ଏ ସବୁ ପରେ ସଂଘକୁ ଡିସେମ୍ବର ୨୫ ଯାଏ ମୌନ ରଖିବାର ନିଷ୍ପତ୍ତି ଗ୍ରହଣ କରାହେଲା । ଏହାର ଅର୍ଥ ହେଲା ଯେ ଏ ସମୟ ଭିତରେ ସଂଘର ନାମରେ କୌଣସି କାମ ଚାଲିବ ନାହିଁ । ତାହାର ଅଫିସ ଓ ପତ୍ରିକା ଆଦି ସବୁ ବନ୍ଦ ରହିବ ।

ଏଥିରେ ସବୁଠାରୁ କୌତୂହଳୋଦ୍ଦୀପକ କଥା ହେଲା ଯେ ୧୯୭୪ ଜୁଲାଇ ଅଧିବେଶନ ବେଳେ ସର୍ବ ସେବା ସଂଘର ଶତକଡ଼ା ନବେ ସଦସ୍ୟ ଜେ.ପି.ଙ୍କର ସପକ୍ଷରେ ଥିଲେ । ଏ ସାତ ଆଠ ମାସ ଧରି ବିନୋବାଙ୍କ ନାମ ଧରି ଓ ତାଙ୍କର ମତାମତକୁ ବିକୃତ କରି ବହୁତ ପ୍ରଚାର ଚାଲିଲା । ବହି ଛପା ଯାଇ ମଧ୍ୟ ବଣ୍ଟା ହେଲା । ମାତ୍ର ୧୯୭୫ ମାର୍ଚ୍ଚରେ ମଧ୍ୟ ସେହି ଶତକଡ଼ା ନବେ ହିଁ ଆନ୍ଦୋଳନ ସପକ୍ଷରେ ରହିଥିଲେ । ଏତେସବୁ ପ୍ରଚାରର କୌଣସି ପ୍ରଭାବ ପଡ଼ି ନଥିଲା । ଏଇଟା ସର୍ବୋଦୟ କର୍ମୀଙ୍କର ଆଧ୍ୟାତ୍ମିକ ସ୍ୱାସ୍ଥ୍ୟର ଗୋଟିଏ ବଡ଼ ପ୍ରେରଣାପ୍ରଦ ନିଦର୍ଶନ ।

## ଓଡ଼ିଶାରେ ଘାତପ୍ରତିଘାତ

ଭାରତୀୟ ସ୍ତରରେ ଏ ସବୁ ଚାଲିଥିବା ବେଳେ ଓଡ଼ିଶାରେ ଯାହାସବୁ ଘଟୁଥିଲା ତାହା ପ୍ରତି ଏବେ ଦୃଷ୍ଟି ପକାଇବା ଆବଶ୍ୟକ । ୧୯୭୪ ଏପ୍ରିଲରେ ମୁଁ ପଉନାରରୁ ଫେରି ଖବର ପାଇଲି ଯେ, ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ ବିନୋବାଙ୍କର ଆଶୀର୍ବାଦ ଭିକ୍ଷାକରି ଚିଠି ଲେଖିଥିଲେ ଓ ବିନୋବା ତାଙ୍କୁ ଏକ ଆଶୀର୍ବାଦ ପତ୍ର ପଠେଇ ଦେଇଛନ୍ତି, ଯେଉଁଥିରେ ନନ୍ଦିନୀଙ୍କୁ "ଭୂଦାନ କନ୍ୟା" ବୋଲି ଅଭିହିତ କରାଯାଇ ତାଙ୍କର ଶାସନରେ ଓଡ଼ିଶାରେ ସର୍ବୋଦୟ ରାଜ୍ୟ ସ୍ଥାପିତ ହେବ ବୋଲି ଆଶା ପ୍ରକାଶ କରାଯାଇଛି । ଏଥିରେ ସନ୍ଦେହ ରହିଲା ନାହିଁ ଯେ, ଭୂଦାନ ଆନ୍ଦୋଳନ ସହିତ ନନ୍ଦିନୀଙ୍କର ସଂପର୍କ ବିଷୟରେ ବିନୋବାଙ୍କୁ କୌଣସି ସୂତ୍ରରୁ ଅତି ଅତିରଞ୍ଜିତ ଧାରଣା ଦିଆଯାଇଛି । ଏ 'ସାର୍ଟିଫିକେଟ' ଖବରକାଗଜମାନଙ୍କରେ ବାହାରିଲା । ଏହାପରେ ଓଡ଼ିଶାର ଶାସକଦଳଙ୍କୁ ଯେଉଁ ଦ୍ୱିତୀୟ ସାର୍ଟିଫିକେଟ ମିଳିଲା ତାହା ହେଲା ପୂର୍ବରୁ ଆଲୋଚିତ ସେହି କୁଖ୍ୟାତ ତାର, ଯେଉଁଥିରେ 'ବଳପ୍ରୟୋଗ' କର ବୋଲି ନିର୍ଦ୍ଦେଶ ଦିଆ ଯାଇଥିଲା ।

ନନ୍ଦିନୀ ହେରିକା ପୁଣି ଯାଇ ଏପ୍ରିଲ ଦ୍ୱିତୀୟ ସପ୍ତାହରେ ବିନୋବାଙ୍କ ସହିତ ଦେଖାକରି ଓଡ଼ିଶା ଭୂସଂସ୍କାର ଆଇନ ଉପରେ ମତାମତ ଓ ସମର୍ଥନ ମାଗିଲେ ଏବଂ ସରକାରୀ ଜମିସବୁ ଭୂମିହୀନଙ୍କୁ ବାଣ୍ଟି ଦେବାକୁ ସ୍ଥିର କରିଛନ୍ତି ବୋଲି ତାଙ୍କୁ ଜଣାଇଲେ । ବିନୋବା ତାଙ୍କୁ କହିଲେ ଯେ, ସେ ସର୍ବ ସେବା ସଂଘକୁ କାହିଁକି ସବୁତକ ଜମି ବାଣ୍ଟିବାର ଦାୟିତ୍ୱ ଦେଇଦେଉ ନାହାନ୍ତି ? "ତାହାହେଲେ ତମେ ମୁକ୍ତ ହେଇଯିବ ଓ ସର୍ବୋଦୟ କର୍ମୀ ଯୁକ୍ତ ହେଇଯିବେ ।" ଏ ପ୍ରସ୍ତାବରେ ସେଠି ନନ୍ଦିନୀ ହଁ ଭରି ଆସିଛନ୍ତି ବୋଲି ଶୁଣାଗଲା । ଏ ସାକ୍ଷାତକାର ବିଷୟରେ ଓଡ଼ିଶା ସରକାରଙ୍କର ଯେଉଁ ପ୍ରେସ୍‌ନୋଟ୍ ବାହାରିଲା ସେଥିରେ ଏହା ମଧ୍ୟ ଲେଖାହୋଇଥିଲା ଯେ "ଓଡ଼ିଶାରେ ପ୍ରଶାସନ କାର୍ଯ୍ୟ ଯେପରି ଚାଲିଛି ସେଥିରେ ବିନୋବା ସନ୍ତୋଷ ପ୍ରକାଶ କରିଥିଲେ ।"

ମୁଁ ଏ ପ୍ରେସ୍‌ନୋଟ୍‌ର ନକଲ ବିନୋବାଙ୍କର ସହକାରୀଙ୍କୁ ପଠେଇଥିଲି । ସେଠୁ ଏହା ପରେ କୌଣସି ମନ୍ତବ୍ୟ ବା ସ୍ପଷ୍ଟୀକରଣ ନ ମିଳିବାରୁ ଧରି ନେବାକୁ ହେବ ଯେ, ବିନୋବା ଉପରୋକ୍ତ ମନ୍ତବ୍ୟ ଦେଇଥିଲେ । ଏ ହେଲା ନନ୍ଦିନୀ ସରକାରଙ୍କୁ ତାଙ୍କର ଦ୍ୱିତୀୟ ସାର୍ଟିଫିକେଟ୍ ।

ଜମିବଣ୍ଟା କାମ ବିଷୟରେ ଆଲୋଚନା କରିବା ପାଇଁ ଏହା ପରେ ପରେ ଓଡ଼ିଶା ସରକାର ଏକ ବୈଠକ ଡକାଇଲେ । ସେ ବୈଠକକୁ ବଙ୍ଗସାହେବ ମଧ ନିମନ୍ତ୍ରିତ ହେଲେ । ବଙ୍ଗସାହେବ ମଧ ଓଡ଼ିଶା ପ୍ରାଦେଶିକ ସର୍ବୋଦୟ ମଣ୍ଡଳର ଏକ ଜରୁରୀ ବୈଠକ ଡକାଇବା ପାଇଁ ତାରବାର୍ତ୍ତା ପଠାଇଲେ । ଏ ବୈଠକ ସମ୍ଭବତଃ ଏପ୍ରିଲ ୨୨ ରେ ବସିଲା । ନନ୍ଦିନୀଙ୍କ ସହିତ ବିନୋବାଙ୍କ କଥାବାର୍ତ୍ତାରେ ସର୍ବ ସେବା ସଂଘ ସରକାରୀ ଜମି ବାଣ୍ଟିବା ଦାୟିତ୍ୱ ନେବା ପ୍ରସ୍ତାବ ଉଠିଥିବାରୁ ସେ ବିଷୟରେ ଓଡ଼ିଶାର ସର୍ବୋଦୟ କର୍ମୀ ଓ ସରକାରଙ୍କ ସହିତ ଆଲୋଚନା କରିବାକୁ ଆସିଛନ୍ତି ବୋଲି ସେ ବୈଠକରେ ଜଣାଇଲେ । ସର୍ବୋଦୟ କର୍ମୀ ସରକାରୀ ଜମି ବଣ୍ଟାର ଦାୟିତ୍ୱ ନେବାର ମୁଁ ବିରୋଧ କଲି । ଏହାର ତିନୋଟି ମୁଖ୍ୟ କାରଣ ମୁଁ ଦେଇଥିଲି । ଏକରେ, ସର୍ବୋଦୟ ଆନ୍ଦୋଳନକୁ ପୁଣି ତେଜୀୟାନ କରିବାକୁ ହେଲେ କର୍ମୀମାନଙ୍କୁ ପୁରୁଣା ଗତ ଛାଡ଼ି, ନୂଆ ବାଟ ଖୋଜିବାରେ ଲାଗିବାକୁ ହେବ । ଜମିବଣ୍ଟା ଧନ୍ଦାରେ ପଶିଲେ ପୁଣି ସମସ୍ତେ ଏକ ଗତରେ ପଡ଼ିଯିବେ । ଦୁଇରେ, ସରକାରୀ ପଇସା ନେଇ କାମ କରିବା ଦ୍ୱାରା ସରକାର ଉପରେ ଯେଉଁ ନିର୍ଭରଶୀଳତା ବ୍ୟାପକ ଭାବରେ ଉତ୍ପନ୍ନ ହେବ ସେଥିରୁ ଉଧୁରିବା ପରେ ଅସମ୍ଭବ ହେବ । ଦୁର୍ନୀତିର ସମ୍ଭାବନା ମଧ କିଛି କଣା ସୃଷ୍ଟି ହେବ ନାହିଁ । ତିନିରେ, କଂଗ୍ରେସ ଓ କମ୍ୟୁନିଷ୍ଟଙ୍କର ମେଣ୍ଟରେ ସର୍ବୋଦୟ ବି ଯୋଗ ଦେଇଛି ଏଇଟା ଦେଖାଇବା ପାଇଁ ଏଠି ଏକ ଉଦ୍ୟମ ଚାଲିଛି । ଏ ରାଜନୀତିକ ଚାଲ୍ ପ୍ରତି ମଧ ସାବଧାନ ରହିବାକୁ ହେବ ।

ଏ ବିଷୟରେ ଅନେକ ଆଲୋଚନା ପରେ ସ୍ଥିର ହେଲା ଯେ, ଏ ବିଷୟରେ ବର୍ତ୍ତମାନ କୌଣସି ନିଷ୍ପତ୍ତି ନିଆଯିବ ନାହିଁ । ବିନୋବା ପରାମର୍ଶ ଦେଇଥିଲେ ଯେ, ଗାଁମାନଙ୍କରେ ଗ୍ରାମସଭା ଗଢ଼ାଯାଇ ତାହାରି ମାଧମରେ ଜମି ବଣ୍ଟାଯାଉ । ବଙ୍ଗସାହେବଙ୍କର କହିବା ଅନୁସାରେ ନନ୍ଦିନୀ ଏ ପ୍ରସ୍ତାବରେ ମଧ ହଁ ଭରିଥିଲେ । ସ୍ଥିର ହେଲା ଯେ, ଭୁବନେଶ୍ୱରରେ ସରକାର ଯେଉଁ ବୈଠକ ଡାକିଛନ୍ତି ସେଥିରେ ଏ ସବୁ ବିଷୟରେ କି ପ୍ରକାର ଆଭିମୁଖ୍ୟ ପ୍ରକାଶ ପାଉଛି ତାହା ଜାଣିବା ପରେ ଯାଇ କିଛି ନିଷ୍ପତ୍ତି ନିଆଯିବ ।

ଭୁବନେଶ୍ୱରର ସେ ବୈଠକକୁ କଂଗ୍ରେସ ଓ କମ୍ୟୁନିଷ୍ଟ ନେତାମାନଙ୍କୁ ଡକା ହେଇଥିଲା ଓ ସର୍ବୋଦୟର କେତେଜଣଙ୍କୁ ମଧ । ସେଠି ମୁଖ୍ୟମନ୍ତ୍ରୀ ଆଦୌ ଏ କଥାର ଉଲ୍ଲେଖ କଲେ ନାହିଁ ଯେ, ସର୍ବ ସେବା ସଂଘକୁ ଜମି ବାଣ୍ଟିବା ଦାୟିତ୍ୱ ଦେବା ପାଇଁ ସେ ଗ୍ରାମସଭା ମାଧ୍ୟମରେ ତାହା ବାଣ୍ଟିବା ପାଇଁ ବିନୋବା ତାଙ୍କୁ ପରାମର୍ଶ ଦେଇଛନ୍ତି ଓ ସେ ପରାମର୍ଶ ସେ ଗ୍ରହଣ କରିଛନ୍ତି । ସେ କେବଳ ଏତିକି କହିଲେ ଯେ, ଏ କାମରେ ସର୍ବ ସେବା ସଂଘକୁ କିପରି ସଂଶ୍ଳିଷ୍ଟ କରାଯିବ ତା'ର ଉପାୟ ବିଚାର କରାଯାଉ । ଗ୍ରାମସଭା ମାଧମରେ ଜମିବଣ୍ଟା କଥା ଓ ଏ କାମରେ ସବୁ

ଦଳଙ୍କୁ ସଂପୃକ୍ତ କରିବା ପ୍ରସ୍ତାବ ବଙ୍ଗସାହେବ ସେଠି ଉଠେଇଲେ । ସେ ବିଷୟରେ ବିଚାର କରାଯିବ ବୋଲି କୁହାଗଲା । ଏହାପରେ ଅନେକ ଦିନଯାଏ ସରକାରଙ୍କ ଆଡୁ ଏ ବିଷୟରେ କୌଣସି ସୋର ଶବ୍ଦ ଶୁଣାଗଲା ନାହିଁ ।

କିଛି ଦିନ ପରେ କଂଗ୍ରେସ ମେଣ୍ଟରେ ପଶିଥିବା ବନ୍ଧୁମାନେ ପୁଣି ବିନୋବାଙ୍କର ପ୍ରଭାବର ଉପଯୋଗ କରି ସର୍ବୋଦୟ ମଣ୍ଡଳକୁ ଏ ଜମିବଣ୍ଟା କାରବାରରେ ପୂରେଇବାର ଏକ ଚେଷ୍ଟା ଚଳେଇଲେ । ସର୍ବୋଦୟ ମଣ୍ଡଳର ଅନ୍ୟ ସଦସ୍ୟମାନଙ୍କ ସହିତ ଆଲୋଚନା ନ କରି ଓ ସେମାନଙ୍କୁ ତା'ର ପୂର୍ବ ସୂଚନା ସୁଦ୍ଧା ନଦେଇ କେତେକ ସଦସ୍ୟଙ୍କୁ ନେଇ ସେମାନେ ପଓନାରରେ ବିନୋବାଙ୍କ ପାଖରେ ଯାଇ ପହଞ୍ଚିଥିଲେ । ମୁଁ ସେତେବେଳେ ବିହାରରେ ଥିଲି ଓ ସେଠୁ ଫେରି ଏ ସମାଚାର ପାଇଲି । ପଓନାରରେ ନିର୍ମଳା ଏ ବନ୍ଧୁମାନଙ୍କର ମସ୍ତିଷ୍କ ଧୋଲେଇର ପ୍ରବଳ ଉଦ୍ୟମ ଚଳାଇବାପରେ ସେମାନେ ବିନୋବାଙ୍କୁ ଭେଟିଲେ । ସରକାରୀ ଜମିବଣ୍ଟା ବିଷୟରେ ସର୍ବୋଦୟ ମଣ୍ଡଳର ମତ କ'ଣ ବୋଲି ବିନୋବା ଜାଣିବାକୁ ଚାହିଁବାରୁ ମଣ୍ଡଳର ସଭାପତି ମଣ୍ଡଳର ମତ ଏହା ସପକ୍ଷରେ ବୋଲି କହିଥିବାର ସେ ଆଲୋଚନାର ଲିଖିତ ବିବରଣୀରୁ ଦେଖିବାକୁ ମିଳୁଛି । ବିନୋବାଙ୍କୁ ଭେଟିବାର ଏ ଯୋଜନା ଯେ ନନ୍ଦିନୀ ହେରିକାଙ୍କ ସହିତ ପ୍ରଥମେ ପରାମର୍ଶ କରି କରାଯାଇଥିଲା ତାହା ମୁଁ ପରେ ଅନ୍ୟାନ୍ୟ ସୂତ୍ରରୁ ଜାଣିବାକୁ ପାଇଲି ।

ଯା ହେଉ ଏମାନେ ଫେରିବା ପରେ ଏ ବିଷୟରେ ଆଲୋଚନା କରିବା ପାଇଁ ପ୍ରାଦେଶିକ ସର୍ବୋଦୟ ମଣ୍ଡଳର ବୈଠକ ଡକାହେଲା ଓ ଏ ବିଷୟରେ ବୁଝାବୁଝି କରିବା ପାଇଁ ତେଣୁ ପାଟିଲ ସାହେବ, ନିର୍ମଳା ଓ ବାବୁଲାଲ ମିତ୍ତଲଜୀ ଆସିଲେ । ସର୍ବୋଦୟ ମଣ୍ଡଳ ବୈଠକରେ ମୁଁ ସରକାରୀ ଜମିବଣ୍ଟା ଧନ୍ଦାରେ ପଶିବାର ବିରୋଧ କଲି । ଦେଖାଗଲା ଯେ, କେବଳ ତିନିଚାରିଜଣ ସଦସ୍ୟଙ୍କ ଛଡ଼ା ବାକି ସମସ୍ତଙ୍କ ମନରେ ଏ ବିଷୟରେ ସନ୍ଦେହ ବା ବିରୋଧ ରହିଛି । ମୁଁ ସେଠି ସ୍ପଷ୍ଟ କହିଲି ଯେ, ସର୍ବୋଦୟ ଆନ୍ଦୋଳନକୁ ରାଜନୀତିକ ମତଲବ ସାଧିବାର ହାତ ବାରସୀ ରୂପେ ବ୍ୟବହାର କରିବା ପାଇଁ ଏ ଏକ କୌଶଳ । ଏହା କଲେ ଏ ପ୍ରଦେଶରେ ସର୍ବୋଦୟ ଆନ୍ଦୋଳନର ମୃତ୍ୟୁ ଘଟିବ । ତେଣୁ ଏହା ହେବାକୁ ଦିଆଯାଇ ପାରିବ ନାହିଁ । ଅନ୍ୟ ଅଧିକାଂଶ ସଦସ୍ୟ ଏହା ସମର୍ଥନ କଲେ । ଯାହା ହେଉ ଶେଷକୁ ନିଷ୍ପତ୍ତି ହେଲା ଯେ, ସର୍ବୋଦୟ ମଣ୍ଡଳ ଓ କର୍ମୀମାନେ କୌଣସି ଦାୟିତ୍ୱ ନ ନେଇ ବାହାରେ ରହି ଜମିବଣ୍ଟା କାମରେ ସାହାଯ୍ୟ କରିବେ । ମାତ୍ର ଏହାପୂର୍ବରୁ ସରକାର ଏ ନୀତି ସ୍ୱୀକାର କରିବା ଚାହି ଯେ, ଜମିବଣ୍ଟା ଗ୍ରାମସଭା ମାଧ୍ୟମରେ ହେବ । ସର୍ବୋଦୟ ମଣ୍ଡଳ ସରକାରଠାରୁ କୌଣସି ଆର୍ଥିକ ସାହାଯ୍ୟ ନେବ ନାହିଁ ଓ କୌଣସି ସରକାରୀ ସମିତିରେ ତା'ର ପ୍ରତିନିଧି ରହିବେ ନାହିଁ ବୋଲି ମଧ୍ୟ ସ୍ଥିର ହେଲା । ପରେ ପୁଣି ଥରେ ସର୍ବୋଦୟ ମଣ୍ଡଳ ବୈଠକ ବସି ଏ ବିଷୟରେ ସବୁକଥା ପୁଙ୍ଖାନୁପୁଙ୍ଖ ଭାବରେ ବୟାନ କରି ଏକ ପ୍ରସ୍ତାବ ଗ୍ରହଣ କରାହେଲା ଓ ରାଜ୍ୟ ସରକାରଙ୍କୁ ପଠାହେଲା । ମାତ୍ର ଶେଷ ପର୍ଯ୍ୟନ୍ତ ତା'ର କୌଣସି ଉତ୍ତର ସରକାରଙ୍କଠାରୁ ମିଳିଲା ନାହିଁ ।

ସର୍ବ ସେବା ସଂଘ ମୌନ ହେବା ପରେ ନିର୍ମଳା ଓ ନରେନ୍ଦ୍ର ଦୁହେଁ ଏକ ଅଖିଳ ଭାରତ ଭୂଦାନ ରୌପ୍ୟ ଜୟନ୍ତୀ ସମିତି ଭାରତ ସରକାରଙ୍କ ଆନୁକୂଲ୍ୟରେ ଗଢ଼ିଲେ । ସେଥିରେ ଜେ.ପି.ଙ୍କର ସମର୍ଥକ କାହାରିକୁ ରଖାଗଲା ନାହିଁ । ଓଡ଼ିଶାରେ ମଧ୍ୟ ରାଧାନାଥ ରଥଙ୍କ ସଭାପତିତ୍ୱରେ ସେହିଭଳି ଏକ ସମିତି ଗଢ଼ାଗଲା ଓ ଭୂଦାନ ସହିତ କେବେ କୌଣସି ସମ୍ପର୍କ ନଥିବା ଲୋକେ ହିଁ ସେଥିରେ ଅଧିକାଂଶ ସଦସ୍ୟ ସ୍ଥାନ ପୂରଣ କଲେ ।

## ପୁଅ ଝିଅଙ୍କ ବାହାଘର

ଜରୁରୀକାଳୀନ ପରିସ୍ଥିତି ଘୋଷଣା ଓ ସେଥିରୁ ଉପୁଜିଥିବା ରାଷ୍ଟ୍ରୀୟ ସଙ୍କଟକାଳର ଅଳ୍ପଦିନ ପୂର୍ବରୁ ଆମର ପୁଅ ଓ ଝିଅ ବାହାଘର କାମ ସରିଗଲା । ପୁଅ କବୀର ବନାରସରେ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଇଲେକ୍‌ଟ୍ରିକାଲ ଇଞ୍ଜିନିୟରିଂ ପଢୁଥିଲା । ସେଇଠି ସେ ଆମର ଭବିଷ୍ୟତ ପୁତ୍ରବଧୂ ଆରତି ସହିତ ପରିଚିତ ହେଇଥିଲା ଓ ଉଭୟେ ବାହା ହେବାକୁ ଠିକ୍ କରିଥିଲେ । ଆରତିର ବାପା ସୁବଳଚନ୍ଦ୍ର ଚକ୍ରବର୍ତ୍ତୀ ଉତ୍ତର ପ୍ରଦେଶରେ ବହୁକାଳରୁ ବସବାସ କରୁଥିବା ବଙ୍ଗାଳୀ । ସେ ଭାରତୀୟ ସାମ୍ୟବାଦୀ ଦଳରେ ଥାଇ ଶ୍ରମିକ ସଙ୍ଗଠନରେ ସକ୍ରିୟ ଥିଲେ । ଆରତିର ମା' ଇନ୍ଦିରା ଦେବୀ ତାମିଲ । ସେମାନେ ବହୁକାଳ ବନାରସରେ ବସବାସ କରି ରହିଥିବାରୁ ପିଲାମାନେ ସବୁ ହିନ୍ଦୀ ମାଧ୍ୟମରେ ପାଠ ପଢୁଥିଲେ ଓ ଘରେ ଅଧିକାଂଶ ସମୟରେ ହିନ୍ଦୀରେ କଥାବାର୍ତ୍ତା କରୁଥିଲେ । ଏହିରୂପେ ଏ ପରିବାରର ଏକ ମହାଭାରତୀୟ ଚରିତ୍ର ପରିସ୍ଫୁଟ ହେଇଥିଲା ।

ବାହାଘର ହେବ ହେବ କରି ୧୯୭୫ ଜାନୁଆରୀ ମାସରେ ହେବା ଠିକ୍ ହେଲା । ବନାରସରେ ହେଲା । କବୀରକୁ ନେଇ ଦାଦା, ଜୀଜୀ (ରମ୍ଭାଦେବୀ) ଓ ମୁଁ ଗଲୁ । ସାଧନା କେନ୍ଦ୍ର, ଯେଉଁଠି ସର୍ବ ସେବା ସଂଘର ମୁଖ୍ୟ କାର୍ଯ୍ୟାଳୟ  ସେତେବେଳେ ଥିଲା ଆମମାନଙ୍କର ପ୍ରଧାନ ଆଡ୍‌ଡା ସ୍ଥାନ । ସେଠି ନାରାୟଣ (ଦେଶାଇ) ଓ ବୁବୁ ରହୁଥା'ନ୍ତି । ସେଇ ଏକା ହତା ଭିତରେ ଗାନ୍ଧୀ ବିଦ୍ୟା ସଂସ୍ଥାନ । ଆମେ ବରଯାତ୍ରୀ ଦଳ ଯାଇ ସେଇଠି ରହିଲୁ । ବାହାଘରରେ ଦେବାନେବାର ପ୍ରଶ୍ନ ହିଁ ନଥାଏ । ଠିକ୍ ହେଲା ଯେ, ବର ଓ ବରଯାତ୍ରୀମାନେ ଚାଲି ଚାଲି କନ୍ୟା ଘରକୁ ଯିବେ । ସୁବଳବାବୁ ଏକ ଗାଡ଼ିର ବ୍ୟବସ୍ଥା କରିବେ ବୋଲି କହୁଥିଲେ, ମାତ୍ର ଗାଡ଼ି ପ୍ରସ୍ତାବ କାଟ ଖାଇଗଲା । ସର୍ବ ସେବା ସଂଘର କର୍ମୀ ଓ ଗାନ୍ଧୀବିଦ୍ୟା ସଂସ୍ଥାନର ବିଦ୍ୱାନମାନେ ମିଶି ପଚିଶ, ତିରିଶ ଲୋକଙ୍କର ଏକ ବେଶ୍ ଆଖିଦୁରୁସିଆ ଶୋଭାଯାତ୍ରାରେ ଯାଇ ବର କନ୍ୟା ଘରେ ପହଞ୍ଚିଲା । ଦେଖାଗଲା ଯେ, ସେଠି କନ୍ୟାର ଖୁଡୁତାମାନେ ହିଁ ବାହାଘରରେ ପୌରୋହିତ୍ୟ କରିବା ସ୍ଥିର ହେଇଛି । ବହି ଦେଖି ଦେଖି ସେମାନେ କାମ ଚଳେଇ ଦେଲେ । ତାହା ପରିଦିନ ଟ୍ରେନ୍‌ରେ କଲିକତା ହେଇ କଟକ ଫେରିଲୁ । ସେତେବେଳ ତ ନୀଳାଚଳ ଏକ୍ସପ୍ରେସ୍ ନଥାଏ । ତେଣୁ ହାଓଡ଼ାରେ ଗାଡ଼ି ବଦଳାଇବାକୁ ପଡୁଥାଏ । ସକାଳେ ହାଓଡ଼ା ପହଞ୍ଚିଲୁ । ରାତିରେ ପୁରୀ

ଏକ୍ସପ୍ରେସ୍ । ଦୀପେନଦାଙ୍କ ଘରେ ରହଣି ହେଲା । ଦୀପେନଦା ଉତ୍ସାହରେ ମାତି ସେଦିନ ଦ୍ୱିପହର ଭୋଜନଟାକୁ ଏକ ଭୋଜିରେ ପରିଣତ କରିଦେଲେ, କଲିକତାରେ ଏ ପାଖଆଖରେ ଥିବା ବନ୍ଧୁବାନ୍ଧବଙ୍କମାନଙ୍କୁ ଡାକି ।

କଟକରେ ଆମ ଘରେ ବରକନ୍ୟାଙ୍କୁ ଏକ ସମ୍ବର୍ଦ୍ଧନା ଦେବାର ସ୍ଥିର ହେଉଥାଏ । ମୋର ଝୁଙ୍କ ଥାଏ ଖର୍ଚ୍ଚକାଟ ଉପରେ । ଯେତେ କମ୍ ଖର୍ଚ୍ଚରେ ସମ୍ଭବ ବାହାଘରର ସବୁ କୃତ୍ୟ ସାରିବାକୁ ହେବ । ତେଣୁ ସନ୍ଧ୍ୟାରେ ଏକ ଚା' ଜଳଖିଆର ଆୟୋଜନ କରିବା ଠିକ୍ ହେଲା । ଶହେ ଖଣ୍ଡେ ବନ୍ଧୁବାନ୍ଧବଙ୍କୁ ଡକାହେଲା । ଅଢ଼େଇ ଟଙ୍କା ନା କେତେର ଗୋଟିଏ ଗୋଟିଏ ପ୍ଲେଟ୍ ଜଳଖିଆ ଦିଆଯିବାର ସ୍ଥିର ହେଲା । ସେଥିରେ ମୋର ଆଗ୍ରହ ଥିଲା ଯେ ଶୁଖିଲା ଖଜୁରୀ ଗୁଡ଼ ଖଣ୍ଡେ ଖଣ୍ଡେ ମିଠେଇ ଭାବରେ ଦିଆଯାଉ । ତାଳଗୁଡ଼ ସମବାୟ ସମିତିର ଦାୟିତ୍ୱରେ ସେତେବେଳେ ଅନିଲଦା (ଘୋଷ) ଥାନ୍ତି । ସେ ମଧ୍ୟ ଉତ୍ସାହିତ ହୋଇ ବର୍ଫି ଆକାରର ଖଜୁରୀ ଗୁଡ଼ର ଖଣ୍ଡ ତିଆରି କରିଦେବା ଦାୟିତ୍ୱ ନେଲେ ଓ ତାହା ଯୋଗାଇ ଦେଲେ । କୋଉଠୁ ସବୁ ଚଉକୀ ଧାର କରି ଅଣାଯାଇ ସନ୍ଧ୍ୟାରେ ଆସର ବସିଲା । କଥା ହୋଇଥିଲା ଯେ, ଡାକବାଜି ଯନ୍ତ୍ର ଲାଗିବ ନାହିଁ । କେବଳ ଟେପ୍‌ରେକର୍ଡ଼ର ଦ୍ୱାରା ମୃଦୁ ସଙ୍ଗୀତ ପରିବେଷଣ କରାଯିବ । ତାହା ସାଙ୍ଗକୁ ଏକ କଣ୍ଠ ସଙ୍ଗୀତର ଆସର ମଧ୍ୟ ଆରମ୍ଭ ହୋଇଗଲା । ଉପସ୍ଥିତ ଥିବା ବନ୍ଧୁବାନ୍ଧବଙ୍କ ଭିତରୁ ଅନେକ ବାହାରି ଉତ୍ସାହର ସହିତ ସଙ୍ଗୀତ ପରିବେଷଣ କଲେ । ଆମୋଦ ପ୍ରମୋଦର ହାୱାଟା ଖୁବ୍ ଘନୀଭୂତ ହେଲା । ତେବେ ଗୋଟିଏ କେଁ ରହିଗଲା ।

ପୁରୀର ପଦ୍ମଚରଣ ସାମନ୍ତସିଂହାର ସପରିବାର ଆସିଥିଲେ ସେଠି ଘରେ ରୋଷେଇର ପ୍ରଶ୍ନ ନରଖି । ସେହିପରି ଆଉ କେହି କେହି ରୋଷେଇବାସ ବନ୍ଦକରି ଦେଇ ଆସିଥିଲେ । ସେମାନଙ୍କ ପାଇଁ ଖାଇବାର ତରତରିଆ ବ୍ୟବସ୍ଥା କରିବାକୁ ପଡ଼ିଲା । ଦ୍ୱିତୀୟତଃ ଦେଖାଗଲା ଯେ, ଅଧିକାଂଶ ଅତିଥି ଖଜୁରୀଗୁଡ଼ ବର୍ଫିର ରସାସ୍ୱାଦନ ନ କରି ତାକୁ ଛାଡ଼ି ଦେଇଛନ୍ତି । ସେଗୁଡ଼ିକ ଏତେ ଟାଣ ହୋଇ ଯାଇଥିଲା ଯେ, ରସାସ୍ୱାଦନ କରୁ କରୁ ଦନ୍ତଭଞ୍ଜନର ଆଶଙ୍କା ଥିଲା ।

ଏହା ପରେ ମାଧବୀର ବାହାଘର ଠିକ୍ ହୋଇଗଲା । ପାତ୍ର ରାଧାନାଥ ଧାତୁବିଦ୍ୟା ବିଶାରଦ । ଆମେରିକାରେ ଅନେକ ବର୍ଷ ଥାଇ ଦେଶକୁ ଫେରିଥିଲେ । ତାଙ୍କର ବାପା ବିଶ୍ୱନାଥ ବାବୁ ଡାକ ବିଭାଗରେ କାମ କରୁଥିଲେ । ସେ ଜଣେ ନୈଷ୍ଠିକ ବୈଷ୍ଣବ ଓ ଗାନ୍ଧୀବାଦୀ । ପରିବାରରେ ଅଭ୍ୟସ୍ତ ଭାବରେ ଖଦଡ଼ ଲୁଗା ବ୍ୟବହାର କରୁଥିଲେ । ପିଲାମାନଙ୍କୁ ମଧ୍ୟ ଗାନ୍ଧୀ ଆଦର୍ଶରେ ମଣିଷ କରିବା ଚେଷ୍ଟା କରୁଥିଲେ । ସୂତାକଟା, ପ୍ରାର୍ଥନା ଆଦି ଘରେ ନିୟମିତ ଚାଲୁଥିଲା । ସ୍ୱାଧୀନତା ସଂଗ୍ରାମ ଯୁଗରେ ସେ ସଂଗ୍ରାମରେ ଝାସ ଦେଇ ନ ପାରିଥିଲେ ମଧ୍ୟ ସ୍ୱାଧୀନତାର ଆଦର୍ଶରେ ନିଜକୁ ଯତ୍‌ପରୋନାସ୍ତି ଢାଳିଥିଲେ । ପରେ କଟକରେ ଗୁଣନିଧି ଭବନରେ ଓ ଭୁବନେଶ୍ୱରରେ ସେତେବେଳେ ଥିବା ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ କେନ୍ଦ୍ରରେ କୌଣସି ଆଲୋଚନା ବୈଠକ ହେଲେ ସେ ବରାବର ଆସି ଯୋଗ ଦେଉଥିଲେ । ତାଙ୍କ ସହିତ ସେହି

ସୂତ୍ରରେ ବହୁକାଳରୁ ପରିଚୟ ହୋଇଥିଲା । ମାତ୍ର ଦିନେ ଆମେ ଅତି ସମ୍ବନ୍ଧରେ ବାନ୍ଧିହେବୁ, ଏ କଥା କେହି କଳ୍ପନା କରି ନଥିଲୁ ।

ପୁଅ ବାହାଘର ଅପେକ୍ଷା ଝିଅ ବାହାଘର ଝାମେଲା ବେଶି । ବିଶେଷକରି ବରପକ୍ଷ କନ୍ୟାପକ୍ଷ ଉପରେ ଘୋଡ଼ା ଚଢ଼ିବାର ପରମ୍ପରା ରହିଛି । ତେଣୁ କନ୍ୟାପକ୍ଷକୁ ବରାବର ଶଙ୍କିକରି ରହିବାକୁ ପଡ଼େ । ତେଣୁ ବାହାଘର ଯଥାସମ୍ଭବ କମ୍ ଖର୍ଚ୍ଚରେ ସାରିବାକୁ ମୋର ଜିଦ୍ କାଳେ କନ୍ୟାପକ୍ଷକୁ କୌଣସି କଥାରେ ଉତ୍ତ୍ୟକ୍ତ କରିବ ବୋଲି କେତେକ ପରାମର୍ଶଦାତା କୋହଳ ନୀତି ଧରିବାର ପରାମର୍ଶ ଦେଉଥା'ନ୍ତି : ଯଥା ଭୋଜିରେ ଆମିଷ ପଦ ରଖାଯିବା ବ୍ୟାପାରରେ । ମୋର ଆଗ୍ରହ ଥାଏ ଯେ, ବାହାଘରେ ମାଛମାଂସ ହେବ ନାହିଁ । ଶୁଭ କାର୍ଯ୍ୟରେ ପ୍ରାଣୀ ହତ୍ୟା ହେବା ଉଚିତ୍ ନୁହେଁ, ଏ ଦୃଷ୍ଟିରୁ ଓ ଖର୍ଚ୍ଚ କମ୍ ଦୃଷ୍ଟିରୁ ମଧ୍ୟ । ଆମିଷ ନଥିଲେ ବରଯାତ୍ରୀମାନେ ଅସନ୍ତୁଷ୍ଟ ହୋଇ ଉଠିଯିବା ଓ ଅନ୍ୟ ପ୍ରକାରର ଗଣ୍ଡଗୋଳ କରିବାର ଆଶଙ୍କା ଅଛି ବୋଲି ଅନେକ ସଂତ୍ରସ୍ତ ଥିଲେ । ଆଜିକାଲି ଅନେକ ଏଇ ସମସ୍ୟାଟାକୁ ଏଡ଼େଇବା ପାଇଁ ମହାପ୍ରସାଦ ସେବନର ବ୍ୟବସ୍ଥା କରୁଛନ୍ତି । ମାତ୍ର ଆମେ ମହାପ୍ରସାଦର ଆଳ ନ ଧରି ସିଧାସଳଖ ନିରାମିଷ ଭୋଜିର ବ୍ୟବସ୍ଥା କରିବାସାବ୍ୟସ୍ତ କଲୁ । ଏ କଥା ଜାଣିବା ପୂର୍ବରୁ ବିରଜା ରାୟ ମତେ ପଚାରିଲେ ଯେ,ମାଛର କ'ଣ ବ୍ୟବସ୍ଥା ହେଲା ? ମୁଁ ତାଙ୍କୁ ପରିହାସରେ କହିଲିଯେ, ବଂଗବନ୍ଧୁ ମୁଜିବୁର ରହମନଙ୍କୁ ଖବର ଦେଇଛି, ସେ ଗୋଟିଏ ଉଡ଼ାଜାହାଜ ବୋଝେଇ ପଦ୍ମାର ଇଲିସୀ ପଠାଉଛନ୍ତି ।

ନିମନ୍ତ୍ରିତଙ୍କ ସଂଖ୍ୟାର ସମସ୍ୟା ମଧ୍ୟ ଉଠିଲା । ଓଡ଼ିଶାରେ ଏକ ଅତିଥି ନିୟନ୍ତ୍ରଣ ଆଇନ ଅଛି ଯାହାର ବିଧାନ ହେଲା ଯେ, ଶହେରୁ ଅଧିକ ଅତିଥିଙ୍କୁ ଭୋଜିଭାତ ଦିଆଯାଇ ପାରିବ ନାହିଁ । ସେହି ଅନୁସାରେ ବାଛି ବାଛି ଶହେ ଲୋକଙ୍କୁ ନିମନ୍ତ୍ରଣ ନ କରି ବରବଧୂଙ୍କୁ ଆଶୀର୍ବାଦ ଜଣାଇବା ପାଇଁ ଅନୁରୋଧ କରାହେଲା । ନିମନ୍ତ୍ରଣ ପତ୍ରରେ ସ୍ପଷ୍ଟ ଲେଖା ହେଲା ଯେ, ବାହାଘର ଖର୍ଚ୍ଚ ଯଥାସମ୍ଭବ ଊଣା କରି କିଛି ଟଙ୍କା ବଳେଇ ଗୋଟିଏ କୂଅ ଖୋଳିବା ପାଇଁ ଦାନ କରିବାକୁ ଆମେ ଚାହୁଁ । ଅନେକଙ୍କର ମନେଥିବ ଯେ, ବିନୋବାଜୀ ଓଡ଼ିଶାରେ ବୁଲିବାବେଳେ ଏକ ସୂତ୍ର ଦେଇଥିଲେ, 'ଯେତେ ଝିଅ, ସେତେ କୂଅ ।' ପ୍ରତି ଝିଅ ବାହାଘର ଉପଲକ୍ଷ୍ୟରେ ଗୋଟିଏ କୂଅ ଖୋଳାଇ ଦିଆଗଲେ ଦେଶର ଜଳକଷ୍ଟ ଦୂର ହେବାକୁ ଅଧିକ ଦିନ ଲାଗିବ ନାହିଁ ଆମେ ସେହି ନୀତି ଅନୁସରଣ କରିବାକୁ ସ୍ଥିର କଲୁ । ଦେଢ଼ ହଜାର ଟଙ୍କା ବଳେଇ କୂଅ ପାଇଁ ରଖାଯାଇଥିଲା ଓ ଆମେସବୁ ଜରୁରୀକାଳୀନ ପରିସ୍ଥିତିରେ ଜେଲରେ ଥିବାବେଳେ ସେଥିରେ ଫୁଲବାଣୀ ଜିଲ୍ଲାରେ ଏକ କୂଅ ଖୋଳା ଯାଇଥିଲା ।

ନିମନ୍ତ୍ରିତଙ୍କ ସଂଖ୍ୟା ଯେତେ ଚେଷ୍ଟା କଲେ ବି କୋଉଠି ସୀମାଭିତରେ ରହୁଛି ? କଟକ, ଭୁବନେଶ୍ୱର ଓ ଆଖପାଖରେ କ'ଣ ଊଣା ସୁହୃଦ୍ ଓ ଶୁଭେଚ୍ଛୁ ଅଛନ୍ତି ? କ'ଣ କରାଯିବ ? ଖୁଡ଼ୀ ବରାବର ଗୋଟିଏ କଥା ବାରମ୍ବାର କହୁଥିଲେ ଯେ, ଦାଦା ଅର୍ଥାତ ଆମ ବାପା ତ ଏସବୁ ଦେଖିବାକୁ ରହିଲେ ନାହିଁ । ବାହାଘର ଉତ୍ସବରେ ତାଙ୍କ ସ୍ମୃତିରେ କିଛି କରାଯିବା ଉଚିତ୍ ।

ଶେଷକୁ ଠିକ୍ ହେଲା ଯେ, ବାହାଘର ଉତ୍ସବରେ ତାଙ୍କ ସ୍ମୃତିରେ କିଛି କରାଯିବା ଉଚିତ । ଶେଷକୁ ଠିକ୍ ହେଲା ଯେ, ବାହାଘର ବାସି ସକାଳେ ଏକ ପ୍ରାର୍ଥନା ସଭା ହେଇ ବାପାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯିବ ଓ ସେଥିକୁ ସମସ୍ତଙ୍କୁ ନିମନ୍ତ୍ରଣ କରାଯିବ । ତାହା ହିଁ ହେଲା । ସେଥିରେ ସମସ୍ତଙ୍କୁ ସରବତ ପରିବେଷଣ କରାଗଲା ।

ବାହାଘରରେ ବାଣ ରୋଷଣି ଓ ବାଜା ସମ୍ପୂର୍ଣ୍ଣ ବର୍ଜନ କରିବା କଥା ହେଲା । ମୁଁ ବିଶ୍ୱନାଥବାବୁଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କଲି । ସେ ତ ଅତି ସଦାଶୟ ଉଦାରଚରିତ୍ର ବ୍ୟକ୍ତି । ତାହା ଉପରକୁ ଗାନ୍ଧୀଜୀଙ୍କର ଆଦର୍ଶ ପ୍ରତି ତାଙ୍କର ଅଟଳା ଭକ୍ତି । ସବୁ କଥାରେ ରାଜି ହେଇଗଲେ । ମୋର ଆଉ ଗୋଟାଏ ସିଦ୍ଧାନ୍ତ ଥିଲା ଯେ, କନ୍ୟାଦାନ ହେବ ନାହିଁ । ଆଗରୁ ଲେଖିଛି ଯେ, ବୁବୁ (ଉତ୍ତରା) ଓ ତିନୁ (କୃଷ୍ଣା) ବାହାଘରବେଳେ ଏହି କଥା ଉଠିଥିଲା । କନ୍ୟା କ'ଣ ଜମିବାଡ଼ି ବା ଟଙ୍କା ସୁନା ପରି ସମ୍ପତ୍ତି ଯେ ତାକୁ ଦାନରେ ଦିଆଯିବ ? ବହୁ ପୂର୍ବରୁ କାକାସାହେବ କାଲେଲକର ବିବାହ ବିଧି ସଂସ୍କାର ଉଦ୍ୟମ କରି କନ୍ୟାଦାନର ବିକଳ୍ପରୂପେ ସମାଶ୍ରୟର ସିଦ୍ଧାନ୍ତ ବାହାର କରିଥିଲେ । ସମାଶ୍ରୟ ଅର୍ଥାତ୍ ବରକନ୍ୟା ପରସ୍ପରକୁ ଆଶ୍ରୟ କରିବେ । ଜଣେ ଆଶ୍ରିତ ଓ ଅନ୍ୟ ଜଣକ ଆଶ୍ରୟଦାତା ନୁହେଁ । ଉଭୟେ ଉଭୟଙ୍କୁ ସମାନ ଭାବରେ ଆଶ୍ରାକରି ଜୀବନର ବାଟ ସାଥୀ ଭାବରେ ଚାଲିବେ । ଏଥିପାଇଁ ଏକ ଅନୁରୂପ ମନ୍ତ୍ର ମଧ ସେ ରଚନା କରିଥିଲେ । ସର୍ବ ସେବା ସଂଘ ପ୍ରକାଶନ ଏହି ସଂସ୍କାରବାଦୀ ବିଚାରର ଏକ ପୁସ୍ତିକା ମଧ ପ୍ରକାଶ କରିଥିଲେ । ସେ ଖଣ୍ଡ ଅଣା ହେଲା । ବିଶ୍ୱନାଥବାବୁଙ୍କୁ କହିବାରୁ ସେ ସେଥିରେ ମଧ ରାଜି ହେଇଗଲେ ।

ବାହାଘରମାନଙ୍କରେ ନାନା ମନ୍ତ୍ର ବୋଲାଯାଏ । ତା'ର ଅର୍ଥ ଅନ୍ୟ କେହି ତ ଦୂରର କଥା ଖୋଦ ପୁରୋହିତ ବି କ୍ୱଚିତ ବୁଝିଥା'ନ୍ତି । ମାତ୍ର ଏସବୁ ମନ୍ତ୍ର ଭିତରୁ କନ୍ୟାଦାନ ଭଳି କେତେକ ବିଧିସଂକ୍ରାନ୍ତ ମନ୍ତ୍ର ଛାଡ଼ିଦେଲେ ଅନ୍ୟ ଅଧିକାଂଶ ମନ୍ତ୍ରରେ ଅତି ଉଦାର ଭାବନା ସବୁ ଭରି ରହିଛି । ସେ ସବୁକୁ ବୁଝିଲେ, ତା'ର ମର୍ମ ହୃଦୟଙ୍ଗମ କଲେ, ନବଦମ୍ପତି ଓ ସେମାନଙ୍କର ପାରିପାର୍ଶ୍ୱିକ ସମାଜରେ ସଦ୍‌ଗୁଣ ଓ ସଦ୍‌ଭାବନାର ବିକାଶରେ ନିଶ୍ଚୟ ସାହାଯ୍ୟ ମିଳିବ । ସେଥିପାଇଁ କଟକର ଜଣାଶୁଣା ବିଦ୍ୱାନ ପଣ୍ଡିତ ଦୋଳଗୋବିନ୍ଦ ଶାସ୍ତ୍ରୀଙ୍କ ସହାୟତାରେ ବିବାହ ମନ୍ତ୍ରସବୁର ଓଡ଼ିଆ ଅନୁବାଦ କରାଯାଇ ଖଣ୍ଡେ ପତ୍ରିକା ଆକାରରେ ଛାପି ବାଣ୍ଟି ଦିଆଗଲା । ସର୍ବୋଦୟ କର୍ମୀ ସର୍ବଶ୍ରୀ ଶ୍ୟାମସୁନ୍ଦର ପଣ୍ଡା ଓ ବୈଦ୍ୟନାଥ ଦାସ କନ୍ୟା ପକ୍ଷରୁ ପୌରୋହିତ୍ୟ କଲେ ।

କଥାହେଲା ଯେ, ବାହାଘରେ ବାଣ ରୋଷଣି ଓ ବାଜା ସିନା ବର୍ଜନ କରାଯିବ, ମାତ୍ର ତାହାବୋଲି ତାହା ଯେ, ଏକ ନିରାନନ୍ଦ ବା ଗୁରୁଗମ୍ଭୀର ବାତାବରଣ ଭିତରେ ହେବ ତାହା ନୁହେଁ । ବାହାଘର ଆଦିରେ ବାହ୍ୟ ଆଡ଼ମ୍ବରର ପ୍ରାଚୁର୍ଯ୍ୟ ଏକ ସାଆନ୍ତିଆ ସଂସ୍କୃତିର ନିଦର୍ଶନ । ଏଥିରେ ସାଆନ୍ତିଆ ବୈଭବର ପ୍ରଦର୍ଶନ ମାତ୍ର ହୁଏ । ଆନନ୍ଦ, ଆମୋଦ, ଆହ୍ଲାଦ ସହିତ ତା'ର ସମ୍ବନ୍ଧ ନଥାଏ । ଆନନ୍ଦ ଉପଭୋଗ ପାଇଁ ବୈଭବର ଲୋଡ଼ା ନାହିଁ । ପ୍ରାଣପ୍ରାଚୁର୍ଯ୍ୟ ଲୋଡ଼ା ।

ପୁଅ ଝିଅଙ୍କ ବାହାଘରବେଳେ ଏ ପ୍ରାଣପ୍ରାଚୁର୍ଯ୍ୟର ବିପୁଳ ଧାରା ବହିଥିଲା । ବାହାଘରର ତିନି ଚାରିଦିନ ଆଗରୁ ଆତ୍ମୀୟସ୍ୱଜନ ସବୁ ଆସି ଜମା ହେବାକୁ ଲାଗିଲେ । କାନ୍ଥମାନଙ୍କରେ ସବୁ ନାନା ପ୍ରକାରର ଚିତା ପଡ଼ିଲା । ଚିତ୍ର ଅଙ୍କା ହେଲା । ଅଗଣାକୁ ଲିପିପୋଛି ସେଥିରେ ସବୁ ଚିତା ପଡ଼ିଲା । ଘରର ଝୁଲାଣ, ଦରଜା, କାନ୍ଥ ସବୁ ଫୁଲ ଓ ପତ୍ରରେ ସଜା ହେଲା । ବାହାଘରର ଦୁଇଦିନ ଆଗରୁ ଗୀତର ଆସର ଆରମ୍ଭ ହେଇଗଲା । ବାହାଘରର କ୍ରିୟାକର୍ମ ଚାଲିଥିବାବେଳେ ତ ଗୀତର ଆସର ସରଗରମ ହେଇଥାଏ । ତା'ର ପୂର୍ବ ଦିନମାନଙ୍କର ଆସର ବି କମ୍ ସରଗରମ ନଥିଲା । ଦିନେ ସନ୍ଧ୍ୟାରେ ଗୀତ ହେଉ ହେଉ ଜଣେ ଆତ୍ମୀୟ ନାଚ ଆରମ୍ଭ କଲେ । ସେଠୁ ଖୁଡ଼ୀ ବି ଉଠିଲେ ତାଙ୍କର ବିଗତ ଦିନର ବାକୀ ଥିବା କୃତିତ୍ୱ ଦେଖାଇବା ପାଇଁ । ସେଥିରେ ନାରାୟଣ ହେରିକା ବି ଜୁଟିଗଲେ ଆପଣାର ଅଶିକ୍ଷିତ ପଟୁତାର ପ୍ରଦର୍ଶନ ପାଇଁ । ମୁଁ ଦେଖେ ବାହାଘରମାନଙ୍କରେ ନିମନ୍ତ୍ରିତମାନେ କର୍ତ୍ତବ୍ୟ ଦୃଷ୍ଟିରୁ ଯୋଗ ଦିଅନ୍ତି ଓ ବୋର୍ ହୁଅନ୍ତି । ଆମ ବାହାଘରମାନଙ୍କରେ କେହି 'ବୋର୍' ହେଇଥିଲେ ବୋଲି ମୋର ମନେ ହୁଏ ନାହିଁ ।

ତେବେ ଶେଷକୁ ଏକ କାଣ୍ଡ ମୁଁ ଘଟେଇଲି । ସୁନା ଅଳଙ୍କାର ବର୍ଜନ କରାଯିବ ବୋଲି ଆମେ ସ୍ଥିର କରିଥିଲୁ । ଝିଅ ବିଦାବେଳେ ଦେଖାଗଲା ଯେ, ବନ୍ଧୁବାନ୍ଧବମାନେ ଉପହାର ରୂପେ ଆଣିଥିବା ଗହଣାରେ ମାଧବୀକୁ ସଜେଇ ଦେଇଛନ୍ତି । କେହି ଭରସିକରି ସେମାନଙ୍କୁ କିଛି କହି ନାହାନ୍ତି । ମୋର ପାରା ଚଢ଼ିଗଲା । ମୁଁ ଚାଲିଯାଇ ମହାନଦୀ କୂଳରେ ବସିରହିଲି ଓ ଦୁଇଘଣ୍ଟା ଖଣ୍ଡେ ପରେ ଫେରିଲି । ଶୁଣିଲି ଯେ, ସବୁ ସୁନା ଅଳଙ୍କାର ଉତାରି ମାଧବୀକୁ ଫୁଲରେ ସଜେଇ ବିଦା କରାହେଲା । ମୋର ଏ ରାଗିବାଟା ସଙ୍ଗତ ହେଲା ନାହିଁ ବୋଲି ମୋର ପରେ ମନେହେଲା । ମୁଁ ଶାନ୍ତଭାବରେ ବୁଝେଇ କହିଥିଲେ ନିଶ୍ଚୟ ସମସ୍ତେ ମୋ କଥା ବୁଝିଥା'ନ୍ତେ ।

## ଆନ୍ଦୋଳନ ଘନେଇଲା

୧୯୭୫ର ଜାନୁୟାରୀରେ ଦିଲ୍ଲୀରେ ଜେ.ପି. ବୈଠକ ଡାକିଲେ । ସେଥିରେ ବିରୋଧୀଦଳମାନଙ୍କର ନେତାମାନେ ଥିଲେ ଓ ସର୍ବ ସେବା ସଂଘରୁ ଆମେ କେତେଜଣ ଥିଲୁ । ସେଠି ଜେ.ପି. ତାଙ୍କ ବକ୍ତୃତାରେ ଏକ ନୂଆ ସ୍ଲୋଗାନ ଦେବାର ଶୁଣିଲି, 'ସିଂହାସନ ଖାଲିକରୋ । ଜନତା ଆ ରହୀ ହେି' । ସେଇଠି ଠିକ୍ ହେଲା ଯେ, ମାର୍ଚ୍ଚ ପାଞ୍ଚ ତାରିଖରେ ନୂଆଦିଲ୍ଲୀର ବୋଟ କ୍ଲବ ମଇଦାନରେ ଏକ ବିରାଟ ଜନସମାବେଶ ଓ ସଭା କରାଯିବ ଓ ସେଥିରେ ଜନତାର ଏକ ଦାବିପତ୍ର ଘୋଷଣା କରାଯିବ ।

ଏ ସମାବେଶ ଦିଲ୍ଲୀ ଇତିହାସରେ ଅଭୂତପୂର୍ବ ଥିଲା ବୋଲି କୁହାଯାଇପାରେ । ଏଥିରେ ଯେଉଁ ଦାବିପତ୍ର ଘୋଷଣା କରାହେଲା, ସେଥିରେ ତ ସବୁ ଠିକ୍ ଥିଲା, ମାତ୍ର ଗୋଟିଏ କଥାରେ ସେଥିରେ ମୋର ଆପତ୍ତି ଥିଲା । ସେଥିରୁ କୁହାଯାଇଥିଲା ଯେ ରାଜନୀତିକ ଜୀବନରେ ନୀତିମତ୍ତାକୁ ଦୃଢ଼ କରିବାପାଇଁ ଆଇନ ପ୍ରଣୟନ କରି କେତେକ କାମ କରିବା ପାଇଁ ବ୍ୟବସ୍ଥା କରାଯାଉ । ମୋର ବିଚାର ଥିଲା ଯେ, ଆଇନ ତ ହେବା ଆବଶ୍ୟକ । ମାତ୍ର ଆନ୍ଦୋଳନରେ ଯୋଗ

ଦେଇଥିବା ବିରୋଧୀ ଦଳମାନେ ନିଜ ପକ୍ଷରୁ ଏକତରଫା ଏହି ପ୍ରକାରର ସବୁ ନୀତି ପାଳନ କରିବା କଥା ଗ୍ରହଣ ଓ ଘୋଷଣା କରିବା ଚାହି । ଏଭଳି ଏକ ଆଚରଣବିଧିର ଆବଶ୍ୟକତା ବିଷୟରେ ଜେ.ପି.ଙ୍କ ସହିତ ଥରେ ଆମେ କେତେଜଣଙ୍କର ଆଲୋଚନା ବି ହେଲା । ଥରେ ଏକ ସାମ୍ବାଦିକ ସମ୍ମିଳନୀରେ ସେ ଏକଥା କହିଲେ ବି ଯେ, ଏଭଳି ଏକ ଆଚରଣବିଧି ଆବଶ୍ୟକ ଓ ସେ ବିଷୟରେ ବିରୋଧୀଦଳମାନଙ୍କ ସହିତ ଆଲୋଚନା କରିବେ ବୋଲି ମଧ୍ୟ ସେ କହିଲେ, ମାତ୍ର ତାହାପରେ ଘଟଣା ଅତି ଦ୍ରୁତ ବେଗରେ ଗଡ଼ିକଲା ଓ ଏକଥା ପଛରେ ପଡ଼ିଗଲା ।

୧୯୭୫ ମାର୍ଚ୍ଚ ମାସ ଶେଷଆଡ଼କୁ ଜୟପ୍ରକାଶଜୀ ଓଡ଼ିଶା ଗସ୍ତରେ ଆସିଲେ । ଉତ୍କଳ ସର୍ବୋଦୟ ମଣ୍ଡଳ ତାଙ୍କର ଗସ୍ତର କାର୍ଯ୍ୟକ୍ରମ ତିଆରି କରିଥିଲା । ଝାରସୁଗୁଡ଼ାରେ ଓହ୍ଲେଇ ସମ୍ବଲପୁର, ଢେଙ୍କାନାଳ, ଅନୁଗୁଳ, କଟକ ଓ ଭୁବନେଶ୍ୱର, ଏହିପରି ଭାବରେ କାର୍ଯ୍ୟକ୍ରମ ଗଢ଼ା ହେଇଥାଏ ଓ ମୋଟରରେ ଆସିବାର ଥାଏ । ମଦନ ମୋହନ ସାହୁଙ୍କୁ ଗସ୍ତର ଦେଖାଶୁଣା ଦାୟିତ୍ୱରେ ରଖା ହେଇଥାଏ । ଝାରସୁଗୁଡ଼ା ଓ ସମ୍ବଲପୁରରେ ଭଲ ସଭା ହେଲା । ସମ୍ବଲପୁରରୁ ଆସି ରାତିରେ ଅନୁଗୁଳରେ ପହଞ୍ଚିଲେ । ସେଠି ତହିଁଆରଦିନ ସକାଳେ ବାଜି ରାଉତ ଛାତ୍ରାବାସ ଦେଖି ଓ ସେଠି ଖୁଡ଼ୀଙ୍କୁ ଭେଟି କଟକ ଆସିବାର କଥା । ସେତେବେଳେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥାଏ ଓ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥା'ନ୍ତି । ତାଙ୍କ ତରଫରୁ ଗସ୍ତରେ ନାନା ପ୍ରକାର ବାଧା ସୃଷ୍ଟିର ଉଦ୍ୟମ ହେଉଥାଏ । ଅପରପକ୍ଷରେ ବିରୋଧୀ ଦଳ ଜୟପ୍ରକାଶଙ୍କୁ ସମର୍ଥନ କରୁଥାନ୍ତି ଓ ବିଜୁ ପଟ୍ଟନାୟକ ସବୁପ୍ରକାର ସାହାଯ୍ୟ କରୁଥା'ନ୍ତି । ମାତ୍ର ଅନେକ ସମୟରେ ଏ ସାହାଯ୍ୟ ସୀମା ଅତିକ୍ରମ କରିଯାଉଥାଏ ଓ ସର୍ବୋଦୟକୁ ନ ପଚାରି ବିରୋଧୀ ଦଳର କର୍ମୀମାନେ ଅନେକ କିଛି କରିଯାଉଥା'ନ୍ତି ଯାହା ମତେ ଭଲ ଲାଗୁ ନଥାଏ ।

ଅନୁଗୁଳରେ ପହଞ୍ଚି ଏକ ଘଟଣା ହେଲା ଯେଉଁଥିରେ ମୋର କ୍ଷୋଭ ବହୁତ ବଢ଼ିଗଲା । ସେଠିକା ସର୍କିଟ ହାଉସ୍‌ରେ ଜୟପ୍ରକାଶଙ୍କର ରହିବା ବ୍ୟବସ୍ଥା ହେଇଥାଏ । ସେଠି ପହଞ୍ଚି ମୁଁ ଦେଖିଲି ଯେ, ସେଠାର ସବୁ ଘର ରାଜନୀତିକ କର୍ମୀମାନେ ଦଖଲ କରି ନେଇଛନ୍ତି । ଆମର ରହିବା ପାଇଁ ଜାଗା ନାହିଁ । ସେଠୁ ମୁଁ ରାତିରେ ଗୋଟାଏ ବସ୍ ଧରି କଟକ ଚାଲି ଆସିଲି ଓ ଦାଦାଙ୍କୁ ଆସି ସବୁକଥା କହିଲି । ଦାଦା ଓ ମୁଁ ଯାଇ ଭୁବନେଶ୍ୱରରେ ଜୟପ୍ରକାଶଜୀଙ୍କ ସହିତ ଏ ବିଷୟରେ ଆଲୋଚନା କଲୁ । ବିଜୁବାବୁଙ୍କର ବେପରୱା କାରବାର ବିଷୟରେ ମଧ୍ୟ ତାଙ୍କୁ କହିଲୁ । ଜେ.ପି. ସବୁକଥା ଶୁଣିଲେ । ତାପରେ ଅନ୍ୟ ଲୋକସବୁ ଆସିଯିବାରୁ ଆଉ ଅଧିକ ଆଲୋଚନା ହେଇପାରିଲା ନାହିଁ ।

ଅନୁଗୁଳରୁ କଟକ ଆସିବା ବାଟରେ ଢେଙ୍କାନାଳରେ ଏକ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ମାତ୍ର ନନ୍ଦିନୀ ଦେବୀଙ୍କ ପ୍ରରୋଚନାରେ ସେଠି ଗୁଣ୍ଡା ଶ୍ରେଣୀର ଲୋକ ଗଣ୍ଡଗୋଳ କରି ସଭା ଭଣ୍ଡୁର କରି ଦେଇଥିଲେ । ଢେଙ୍କାନାଳର ମୁଖ୍ୟ ସର୍ବୋଦୟ କର୍ମୀ ଓ ଅନେକ ଦିନଯାଏ ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ଥିବା ଶ୍ରୀହରମୋହନ ପଟ୍ଟନାୟକ ସେତେବେଳେ

ଜେ.ପି.ଙ୍କର ଓ ତାଙ୍କ ଆନ୍ଦୋଳନର ଘୋର ବିରୋଧୀ ଥା'ନ୍ତି । ଏ ସଭା ଭାଙ୍ଗିବାବେଳେ ତାଙ୍କର ମଧ୍ୟ ସମର୍ଥନ ଥିଲା ବୋଲି ଶୁଣିବାକୁ ମିଳିଲା । ତାଙ୍କୁ ଅନୁସରଣ କରୁଥିବା କେତେକ ସ୍ଥାନୀୟ କର୍ମୀ ମଧ୍ୟ ସଭା ଭଣ୍ଡୁର କରିବାରେ ଲିପ୍ତ ଥିଲେ ।

ଭୁବନେଶ୍ୱର ସଭା ଏପ୍ରିଲ ପହିଲା ଦିନ ଥିଲା । ପ୍ୟାରେଡ୍ ପଡ଼ିଆ ନ ମିଳିବାରୁ ମାର୍କେଟ ସାମନା ଜାଗାରେ ସଭାର ଆୟୋଜନ ହେଲା । ଏଠି ମଧ୍ୟ ସଭା ଭଣ୍ଡୁର କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଉତ୍କଳ ଦିବସ ପାଳନର ଆୟୋଜନ ପ୍ୟାରେଡ୍ ପଡ଼ିଆରେ ହେଲା; "ଦିନେ ନାହିଁ, କାଲେ ନାହିଁ, ଗହ୍ଲା ପୁନେଇରେ ମାଇଁ ମାଇଁ" ନୀତିରେ ସ୍ୱତନ୍ତ୍ର ପ୍ରଦେଶ ହେବାର ଅଣଚାଳିଶ ବର୍ଷ ପରେ ହଠାତ୍ ସେ ଦିବସର ମହତ୍ତ୍ୱ ରାଜ୍ୟ ସରକାରଙ୍କ ହୃଦୟରେ ଉଦ୍ଭାସିତ ହୋଇଉଠିଲା ଓ ଦିବସ ପାଳନର ଆଡ଼ମ୍ବରପୂର୍ଣ୍ଣ ଆୟୋଜନ କରାହେଲା । ବାଣ ରୋଷଣି ଆଦିର ପ୍ରଭୂତ ବ୍ୟବସ୍ଥା ହେଲା । ମାତ୍ର ଦେଖାଗଲା ଯେ, ଭୁବନେଶ୍ୱର ସହର ଜୟପ୍ରକାଶଙ୍କ ସଭାରେ ଭାଙ୍ଗି ପଡ଼ିଛି । 'ଉତ୍କଳ ଦିବସ' ଉତ୍ସବରେ ମୁଷ୍ଟିମେୟ ଲୋକ । ମଜାର କଥା ଯେ, ଏକ ଅସତ୍ ଉଦ୍ଦେଶ୍ୟ ନେଇ ଉତ୍କଳ ଦିବସ ପାଳନ ସେ ବର୍ଷ କରାଗଲେ ମଧ୍ୟ ପରେ ସେଇଟା ଏକ ପରମ୍ପରା ହୋଇଗଲା ଓ ଏବେ ବି ତାହା ପାଳିତ ହୋଇଆସୁଛି ।

ଭୁବନେଶ୍ୱର ସଭାରେ ବୋଉ ସଭାନେତ୍ରୀ ହୋଇଥିଲା । ସେଇ ଦିନଠାରୁ ତା'ର ଜୟପ୍ରକାଶଜୀଙ୍କର କର୍ମଧାରା ପ୍ରତି ଅକୁଂଠ ସମର୍ଥନ ରହି ଆସିଥିଲା ଓ ଜରୁରୀକାଳୀନ ପରିସ୍ଥିତିରେ ମଧ୍ୟ ସେ ତାହା ବିରୋଧରେ ଲଢ଼େଇର ପ୍ରଥମ ପଂକ୍ତିରେ ଥିଲା । ଏତେ ବୟସରେ ବି ବୋଉର ତେଜସ୍ୱିତାରେ ମୁଗ୍ଧ ହୋଇ ଜେ.ପି. ମନ୍ତବ୍ୟ କରିଥିଲେ, "ସ୍ୱାଧୀନତା ଆନ୍ଦୋଳନରେ ଆଗୁଆ ଥିଲେ ତ, ଏଥିରେ ବି ପଛରେ ରହନ୍ତେ କେମିତି ।"

ଏହାପରେ ଅଳ୍ପଦିନ ଭିତରେ ଏଲ୍ଲାହାବାଦ ହାଇକୋର୍ଟରେ ବିଚାରାଧୀନ ଥିବା ନିର୍ବାଚନ ମକଦ୍ଦମାର ରାୟ ବାହାରିଲା । ଏ ମକଦ୍ଦମା ରାଜନାରାୟଣ କରିଥିଲେ ଓ ତା'ର କିଛି ସୁଫଳ ମିଳିବ ବୋଲି ବୋଧହୁଏ କେହି ହେଲେ, ରାଜନାରାୟଣ ନିଜେ ବି, ଆଶା କରି ନଥିଲେ । ମାତ୍ର ବିଚାରପତି ଶ୍ରୀ ଜଗମୋହନ ଲାଲ୍ ସିଂହ ରାୟ ଘୋଷଣା କରିଲେ ଓ ସେଥିରେ ନିର୍ବାଚନ ବେଳେ ସରକାରୀ କର୍ମଚାରୀଙ୍କୁ ତାଙ୍କ କାମରେ ଲଗାଇଥିବା ଓ ଆଇନଦ୍ୱାରା ଧାର୍ଯ୍ୟ ସୀମାକୁ ଲଂଘନ କରି ଅତ୍ୟଧିକ ଖର୍ଚ୍ଚ କରିଥିବା ଆଦି ଅପରାଧରେ ଇନ୍ଦିରାଜୀଙ୍କୁ ଦୋଷୀ ସାବ୍ୟସ୍ତ କରିଲେ ।

ଏ ରାୟ ସାରା ଦେଶରେ ଏ ଚହଳ ପକେଇ ଦେଲା । ବିରୋଧୀ ଦଳର ନେତାମାନେ ଇନ୍ଦିରାଙ୍କର ଇସ୍ତଫା ଦାବିକଲେ ଓ ସେଥିପାଇଁ ସ୍ଥାନେ ସ୍ଥାନେ ସାଧାରଣ ସଭା ମଧ୍ୟ ଆରମ୍ଭ ହେଲା । ଇନ୍ଦିରାଙ୍କର ଏକଛତ୍ରବାଦୀ ରୂପ ଏହା ପୂର୍ବରୁ ପ୍ରକଟ ହେବାକୁ ଲାଗିଥିଲା । ଏହାପରେ ତାହା ଆହୁରି ଉଗ୍ର ହେଲା । ଫ୍ରାନ୍ସର ସମ୍ରାଟ ପଞ୍ଚଦଶ ଲୁଇ ଯେପରି ଅହଂକାରର ସହିତ କହିଥିଲେ ଯେ; 'ମୁଁ ହିଁ ହେଉଛି ରାଷ୍ଟ୍ର' ଇନ୍ଦିରା ଅବିକଳ ସେହି ଢଙ୍ଗରେ କଥାବାର୍ତ୍ତା ଆରମ୍ଭ କଲେ । ବିରୋଧୀ ଦଳମାନେ ଓ ତାଙ୍କର ସମାଲୋଚନା କରୁଥିବା ଅନ୍ୟ ସମସ୍ତେ ଦେଶର ଶତ୍ରୁ ବୋଲି ବାରମ୍ବାର କହିବାକୁ ଲାଗିଲେ ।

ସେତେବେଳେ ତାଙ୍କର ପ୍ରଧାନ ଚାଟୁକାର କଂଗ୍ରେସ (ଇ) ର ସଭାପତି ଦେବକାନ୍ତ ବଡୁଆ ଥା'ନ୍ତି । ଖୋସାମଦର ଚରମ ସୀମାକୁ ଯାଇ ସେ ଘୋଷଣା କରିଥା'ନ୍ତି ଯେ, India is Indira ଇଣ୍ଡିଆ ବା ଭାରତ ହେଉଛି ଇନ୍ଦିରା । ଜେ.ପି. ତାଙ୍କୁ ଦରବାରୀ ଚାଟୁକାର ଆଖ୍ୟା ଦେଇଥା'ନ୍ତି । ମନେପଡୁଛି ଯେ, ଜେ.ପି.ଙ୍କ ପ୍ରତି ବଡୁଆ ସାହେବ ଯେଉଁସବୁ କଟୂ ମନ୍ତବ୍ୟ କରିଥିଲେ ତାକୁ ଭିତ୍ତିକରି ବିଶିଷ୍ଟ ହିନ୍ଦୀ କବି ଦିନକର ଏକ ବ୍ୟଙ୍ଗ କବିତା ଲେଖିଥିଲେ । ଜେ.ପି.ଙ୍କ ଓଡ଼ିଶା ଗସ୍ତବେଳେ ଏହି କବିତାରୁ ପ୍ରେରଣା ନେଇ ଆମେ ଏକ ପୋଷ୍ଟର ତିଆରି କରିଥିଲୁ । ସର୍କସର ଜୋକର ପରି ଗୋଳିଆ ଟୋପି ପିନ୍ଧି ଦେବକାନ୍ତ ବଡୁଆ ଏକ ନଗରା ବଜାଉଥିବାର ଛବି ଥିଲା ଓ ତା' ତଳେ ଲେଖା ହୋଇଥିଲା "ସାବଧାନ ସାବଧାନ ! ମାର୍ଚ୍ଚ ୩୧ ତାରିଖରେ କଟକକୁ ଏକ ପିଲାଧରା ଆସୁଛି । ସେଦିନ କେହି ପଦାକୁ ବାହାରିବ ନାହିଁ । ପିଲାଛୁଆଙ୍କୁ ରାସ୍ତାକୁ ଛାଡ଼ିବ ନାହିଁ । ଇତ୍ୟାଦି । ପୋଷ୍ଟରଟି ଖୁବ୍ ଆମୋଦ ସୃଷ୍ଟି କରିଥିଲା । ଏଇଠି କୃତଜ୍ଞତା ସ୍ୱୀକାର କରିନିଏ ଯେ, ବିଖ୍ୟାତ ଚିତ୍ରଶିଳ୍ପୀ ବିଭୁତି ଭୂଷଣ କାନୁନ୍‌ଗୋ ସେତେବେଳେ ସେ ପୋଷ୍ଟର ପାଇଁ ବେଶ୍ ବଡ଼ ଆକାରର ବ୍ଲକ ବିନା ମୂଲ୍ୟରେ ତିଆରି କରି ଦେଇ ନିଜର ଦେଶପ୍ରେମର ପରିଚୟ ଦେଇଥିଲେ ।

ଏଇ ଜୁନ୍ ମାସରେ ମୁଁ ଏକ ପ୍ରବନ୍ଧ ଇନ୍ଦିରାଙ୍କର ମତିଗତି ବିଷୟରେ ଲେଖିଥିଲି ଯେଉଁଟା ପ୍ରଜାତନ୍ତ୍ରରେ ବାହାରିଥିଲା । ସେଥିରେ ମୁଁ ଲେଖିଥିଲି ଯେ, ପ୍ରଧାନମନ୍ତ୍ରୀଙ୍କ ଓ ତାଙ୍କର ସ୍ତାବକମାନଙ୍କର କଥାବାର୍ତ୍ତାରୁ ଜଣାପଡୁଛି ଯେ, ଭାରତରେ ଏକଚ୍ଛତ୍ରଶାସନ ଜାଗିର ଦିନ ଆସନ୍ନ, ମାତ୍ର ଏହା ଲେଖିଲାବେଳେ ଏକଥା ଏତେ ଶୀଘ୍ର ବାସ୍ତବରେ ପରିଣତ ହେବ ବୋଲି ମୋର ଧାରଣା ନଥିଲା ।

## ଅନ୍ଧାରୀ ଶାସନ ଜାରି

ସେଦିନ ଜୁନ୍ ୨୬ ତାରିଖ । ମୋର ଶାଶୁଙ୍କର ଗୋଟିଏ ତୈଳ ଚିତ୍ର ଆଙ୍କିବାପାଇଁ ସ୍ଥିରକରି ମୋର ସଢୁ ଶ୍ରୀ କୃଷ୍ଣପଦ ଭୌମିକଙ୍କ ବସାକୁ ମୁଁ ଯାଇଥାଏ । କୃଷ୍ଣ ସେତେବେଳେ ପୁଲିସ୍‌ରେ ଉଚ୍ଚପଦସ୍ଥ କର୍ମକର୍ତ୍ତା ଥା'ନ୍ତି । ମୁଁ ଘଣ୍ଟାଏ ଦେଢ଼ଘଣ୍ଟା ଛବି ଅଙ୍କାରେ ଦେଇଛି କି ନାହିଁ ହଠାତ୍ ଫୋନ୍ ବାଜିଲା । ଥୋରିଆ ସାହି, ଗୁଣନିଧି ଭାବନରୁ ମତେ କିଏ ଡାକୁଛନ୍ତି ବୋଲି ଶୁଣି ମୁଁ ଯାଇ ଫୋନ୍ ଧରିଲି । ମତେ ସେଠୁ କ୍ଷେତ୍ରବାସୀ ପତି ଜଣେଇଲେ ଯେ, ଆଜି ଭୋରରୁ ଜୟପ୍ରକାଶଜୀ ଓ ଅନ୍ୟ ନେତାମାନେ ଗିରଫ ହୋଇଯାଇଛନ୍ତି । ଦେଶରେ ଜରୁରୀକାଳୀନ ଶାସନ ଜାରି କରାଯାଇଛି । ମୁଁ ତୁରନ୍ତ ରଙ୍ଗ ତୂଳି ଆଦି ବିଡ଼ାବାନ୍ଧି ଘରକୁ ଫେରିଗଲି । ଶୁଣା ଶୁଣିରେ ଅଧିକ ଖବର କିଛି ମିଳିଲା, ଖବରକାଗଜ ଉପରେ ଯାଞ୍ଚ ବ୍ୟବସ୍ଥା ଜାରି କରାଯାଇଥାଏ । ମାତ୍ର ସେଥିପାଇଁ ତନ୍ତ୍ର ସେ ପର୍ଯ୍ୟନ୍ତ ସୃଷ୍ଟି ହୋଇ ନଥାଏ । ପି.ଟି.ଆଇ. ପ୍ରଭୃତିଙ୍କ ମାରଫତ୍‌ରେ ଖବର ସମ୍ବାଦପତ୍ର ଅଫିସମାନଙ୍କରେ ପହଞ୍ଚି ଯାଉଥାଏ । ଦୈନିକ ସମାଜର ସେ ଦିନର ପୂରା ଖବର ଦେଇ ବିଶେଷ ସଂସ୍କରଣରେ କିଛି ଛପା ବି ହୋଇଗଲା ଓ ତା' ପରେ ଯାଞ୍ଚ ବ୍ୟବସ୍ଥା ଲାଗୁ ହୋଇ ସେସବୁ ଖବରକୁ ସରକାରୀ ଡାଷ୍ଟାରେ ପକାଗଲା ।

ପରାମର୍ଶ କରି ସ୍ଥିର ହେଲା ଯେ, ସେଇଦିନ ଉପରଓଳି ଆମଘରେ ଏ ବିଷୟରେ ଆଲୋଚନା କରିବାକୁ ଏକ ବୈଠକ ଡକାଯିବ । ସେ ଅନୁସାରେ କଟକର ପଚିଶ ତିରିଶ ଜଣଙ୍କୁ ସୂଚନା ଦିଆହେଲା । ଚାରିଟା ବେଳକୁ ପଚିଶ ଜଣ ଖଣ୍ଡେ ଏକାଠି ହେଲେ । ସେମାନଙ୍କ ଭିତରେ ଥିଲେ ତ, ହରେକୃଷ୍ଣ ମହତାବ, ସର୍ବଶ୍ରୀ ନୀଳମଣି ରାଉତରାୟ, ପୂର୍ଣ୍ଣଚନ୍ଦ୍ର ପରିଜା, ଶ୍ରୀକାନ୍ତ ପଣ୍ଡା, ବିରଜା ରାୟ, ବୋଉ, ଶ୍ୟାମଳୀ ମହାପାତ୍ର, ବିଶ୍ୱମ୍ଭର ପରିଡ଼ା, ସର୍ବୋଦୟ କର୍ମୀ ସର୍ବଶ୍ରୀ ସୁରେନ୍ଦ୍ର ମହାନ୍ତି, କ୍ଷେତ୍ରବାସୀ ପତି, ନିକୁଞ୍ଜ ଦାସ, ଗୋପାଳ ପ୍ରସାଦ ଦାସ ପ୍ରଭୃତି ଥିଲେ । ଦାଦା (ନବବାବୁ) ଅନୁଗୁଳରେ ଥିଲା । ତାକୁ ଖବର ଦିଆହେଇଥିଲା ଓ ସେ ପରେ ପହଞ୍ଚିଲା । ବୈଠକରେ ଅନେକ କଳ୍ପନା ଜଳ୍ପନା ଚାଲିଲା । ଜରୁରୀକାଳୀନ ପରିସ୍ଥିତି ଘୋଷଣା ଯେ, ସମସ୍ତଙ୍କୁ ସ୍ତମ୍ଭିତ କରିଦେଇଛି ତାହା ଜଣା ପଡ଼ିଲା । ଦୀର୍ଘ ଆଲୋଚନା ପରେ ସ୍ଥିର ହେଲା ଯେ, ଏହାର ବିରୋଧ କରିବାକୁ ହେବ ଓ ଖବରକାଗଜରେ ସତ ଖବର ବାହାରିବାର ସମ୍ଭାବନା ନଥିବାରୁ ଲୋକଙ୍କୁ ପ୍ରକୃତ ପରିସ୍ଥିତି ବିଷୟରେ ଅବହିତ କରିବା ପାଇଁ କିଛି କରିବାକୁ ହେବ ।

ସ୍ଥିର ହେଲା ଯେ, ଖଣ୍ଡେ ସାନ ପ୍ରଚାରପତ୍ର ଛାପି ରେଳ ଷ୍ଟେସନ୍ ଓ ବାଦାମବାଡ଼ି ବସ୍ ଷ୍ଟାଣ୍ଡରେ ବାଣ୍ଟି ଦେଲେ ତାହା ସାରା ଓଡ଼ିଶାରେ ରାତାରାତି ପହଞ୍ଚି ଯିବ । ସେହି ଅନୁସାରେ ଏକ ପ୍ରଚାରପତ୍ର ଚିଠା ହେଲା । କେଉଁମାନେ ସେଥିରେ ସ୍ୱାକ୍ଷର କରିବେ ଏକଥା ଉଠିଲାରୁ ତାହା ରମାଦେବୀଙ୍କ ସ୍ୱାକ୍ଷରରେ ବାହାରୁ ବୋଲି ମତ ପ୍ରକାଶ ପାଇଲା । କେତେକ ବନ୍ଧୁ ନାଁ ଦେବାକୁ ଇତସ୍ତତ କରୁଥିବାର ମନେହେଲା । ପରେ ଦେଖା ବି ଗଲା ଯେ ସେଦିନ ଉପସ୍ଥିତ ବନ୍ଧୁମାନଙ୍କ ଭିତରୁ କେହି କେହି ଧରପଗଡ଼ ଭିତରକୁ ନଯାଇ ଚୁପ୍‌ଚାପ୍ ରହିଗଲେ ।

ଯାହା ହେଉ ପ୍ରଚାରପତ୍ର ଗ୍ରାମସେବକ ପ୍ରେସ୍‌ରେ ସାଙ୍ଗେ ସାଙ୍ଗେ ଛପା ହେଲା ଓ କର୍ମୀମାନେ ତାକୁ ନେଇ ବାଦାମବାଡ଼ି ବସ୍ ଆଡ୍‌ଡା ଓ ରେଳ ଷ୍ଟେସନ୍‌ରେ ବାଣ୍ଟି ଦେଇ ଆସିଲେ । ସେ ଦିନ ସନ୍ଧ୍ୟାରେ ବର୍ଷା ବି ହେଉଥିଲା । ମାତ୍ର ତାକୁ କିଏ ଖାତିର କରେ ? ଲୋକେ ଏ ପ୍ରଚାରପତ୍ରକୁ ଅତି ଆଗ୍ରହରେ ନେବାକୁ ଚାହୁଁଥିବାର ଦେଖାଗଲା ।

ଦ୍ୱିତୀୟ ଦିନ ଦାଦା ଆସିଲା ଓ ସେଦିନ ବି ବୈଠକ ବସିଲା । ଏଥିରେ ସ୍ଥିର ହେଲା ଯେ, ଜରୁରୀକାଳୀନ ପରିସ୍ଥିତି ବିରୋଧରେ ଆଇନ ଅମାନ୍ୟ କରାଯିବ । ସେତେବେଳେ କଟକରେ ୧୪୪ ଧାରା ଜାରି ହେଇଥାଏ । ତୁରନ୍ତ ସର୍ବଶ୍ରୀ ବିରଜା ରାୟ, ଶ୍ୟାମଳୀ ମହାପାତ୍ର ଓ ସୁରେନ୍ଦ୍ର ମହାନ୍ତି ସେଥିପାଇଁ ଆଗଭର ହେଲେ ଓ ଗୌରୀଶଙ୍କର ପାର୍କ ନିକଟରେ ଜୟଧ୍ୱନି ଦେଇ ଓ ବକ୍ତୃତା ଦେବାର ଚେଷ୍ଟାକରି ଗିରଫ ହେଲେ । ଦେଶବାସୀଙ୍କୁ ଜରୁରୀକାଳୀନ ପରିସ୍ଥିତିର ବିରୋଧ କରିବାକୁ ଆହ୍ୱାନ କରି ଆଉ ଏକ ପ୍ରଚାରପତ୍ର ବି ତା ପରଦିନ ବାହାରିଲା । ଗିରଫଦାରୀ ଆରମ୍ଭ ହେବ ବୋଲି ପ୍ରତୀକ୍ଷା କରାଯାଉଥାଏ ଓ କେହି ଜଣେ ଖବର ଦେଲେ ଯେ, ନବକୃଷ୍ଣ ଚୌଧୁରୀଙ୍କ ସମେତ ନଅ ଜଣ ଗିରଫ ହେବାର ଆଦେଶ ଆସିଛି । ଏଇ ସବୁ ଭିତରେ ଆଗକୁ କାମର ଯୋଜନା ବିଷୟରେ ଆଲୋଚନା ହେଇ ଠିକ୍ ହେଲା ଯେ, ମୁଁ ହଠାତ୍ ଧରା ନଦେଇ

ପାଞ୍ଚ, ସାତ ଦିନ ଲୁଚି ରହି ଜରୁରୀକାଳୀନ ପରିସ୍ଥିତି ବିରୋଧୀ ଆନ୍ଦୋଳନ ପାଇଁ କିଛି ଆୟୋଜନ କରି ଦେଇ ନାନା ପରେ ଆଇନ୍ ଅମାନ୍ୟ କରିବି ।

ମାତ୍ର ମୋର ଲୁଚି ରହିବା ପାଇଁ ଜାଗା ଖୋଜା ହେଇ ଯେତେଜଣ ବନ୍ଧୁଙ୍କର ଘରର କଥା ଉଠିଲା ସେମାନେ ନାନା ଅସୁବିଧା ଦର୍ଶେଇ ନାମଙ୍ଗ ହେଲେ । ତେଣେ ଦାଦା ଗିରଫ ହେବ ବୋଲି ଜନରବ ଶୁଣାଯାଉଥାଏ ଓ ସେଥିପାଇଁ ଅଠେଇଶ ତାରିଖରୁ ଲୁଗାପଟା ବହିପତ୍ର ସଜାଡ଼ି ଅପେକ୍ଷାକରି ବସିଥାଏ । ଅଥଚ ମୋର ଗିରଫଦାରୀର କୌଣସି ଖବର ନଥାଏ । ପରେ କେହି କେହି କହିଲେ ଯେ, ଆମମାନଙ୍କୁ ଭ୍ରମରେ ପକାଇବା ପାଇଁ ଗିରଫଦାରୀ ବିଷୟରେ ଭୁଲ ତଥ୍ୟ କେତେକ ବନ୍ଧୁଙ୍କୁ ସରକାରୀ ସୂତ୍ରରୁ ଯୋଗାଇ ଦିଆଯାଇଥିଲା ଓ ସେମାନେ ଆମକୁ ଆସି ତାହା ହିଁ ଜଣାଇଥିଲେ ।

ଇତି ମଧ୍ୟରେ ମୁଁ ବିଭିନ୍ନ ଜିଲ୍ଲାର କର୍ମୀଭାଇମାନଙ୍କୁ ଖବର ଦେବାର ବ୍ୟବସ୍ଥା କରି ବିନୋବାଜୀଙ୍କୁ ଏକ ଚିଠି ଲେଖା ଆରମ୍ଭ କରିଥାଏ । ଏଥିରେ ମୁଁ ଲେଖିଥାଏ ଯେ, ବର୍ତ୍ତମାନ ଗଣତନ୍ତ୍ର ଲୋପ କରି ଏକଛତ୍ର ଶାସନ ପ୍ରତିଷ୍ଠା କରିବାର ଇନ୍ଦିରା ଗାନ୍ଧୀଙ୍କର ମତଲବ ସ୍ପଷ୍ଟ ଜଣା ପଡ଼ିଲାଣି ଓ ସେଥିପାଇଁ ଆପଣ ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ସପକ୍ଷରେ ସ୍ୱର ଉତ୍ତୋଳନ କରନ୍ତୁ ବୋଲି ମୋର ନିବେଦନ । ଏ ଚିଠି ମୁଁ ଶେଷକରି ନଥାଏ । ଅନେକ ରାତି ହେଇଗଲା ଓ ସେଦିନ ଅନ୍ୟ କେଉଁଠି ଯାଇ ରହିବାର ବ୍ୟବସ୍ଥା ହେଇପାରିଲା ନାହିଁ, ତେଣୁ ମୁଁ ଶୋଇପଡ଼ିଲି । ଅଣତ୍ରିଶ ତାରିଖ ଭୋର ତିନିଟା ଖଣ୍ଡେ ବେଳକୁ ଆସି ପୁଲିସ ପହଞ୍ଚିଲେ । ଦାଦା ମଝିଘରେ ଶୋଇଥିଲା । ଉଠି ବସିଲା ଓ କହିଲା, "ମୁଁ ତ କାଲିଠାରୁ ଆପଣମାନଙ୍କୁ ଅପେକ୍ଷା କରି ବସିଛି ।" ତାହାପରେ ସେ ବିଛଣାପତ୍ର ବନ୍ଧାବନ୍ଧି କରି ଯିବାକୁ ପ୍ରସ୍ତୁତ ହେଲା । ଫୋନ୍ କରି ଥୋରିଆସାହିରେ ବୋଉକୁ ଖବର ଦିଆଗଲା । ନିକୁଞ୍ଜ ହେରିକା ଉଠିଆସି ପହଞ୍ଚିଗଲେ । ଆମେସବୁ ଦାଦାକୁ ବିଦାୟ ଦେବାକୁ ଉଦ୍ୟତ ହେଉଛୁ, କିଏ ସବୁ ବିଛଣାପତ୍ର ଉଠେଇବା ଆରମ୍ଭ କଲେଣି, ଏତିକିବେଳେ ଦାଦା କହିଲା, "ଆରେଷ୍ଟ ଓ୍ୱାରେଣ୍ଟଟା ଟିକେ ଦେଖାନ୍ତୁ ତ ।"

ହରି । ହରି । ଓ୍ୱାରେଣ୍ଟ ଦେଖିଲାବେଳକୁ ସେଥିରେ ମୋ ନାଁ । ସେଠୁ ମୁଁ ଲୁଗାପଟା ବିଛଣାପତ୍ର ସଜାଡ଼ିଲି । ବିନୋବାଙ୍କୁ ଅସମାପ୍ତ ଚିଠିର ଶେଷରେ ଲେଖିଦେଲି ଯେ, ଏ ଚିଠି ନ ସରୁଣୁ ମୁଁ ଗିରଫ ହେଇଯାଉଛି । ଚିଠିକୁ ସୁମିତ୍ରାଙ୍କ ଜିମା ଦେଇ ଓ ବିନୋବାଙ୍କ ପାଖକୁ ପଠାଇବାକୁ କହି ମୁଁ ବିଦା ହେଲି । ପୁଲିସ୍ ସବଡଇନିସ୍‌ପେକ୍ଟର ଦୁଇଜଣ ଥିଲେ । ଜିପ୍‌ରେ ବସି ତାକୁ ଷ୍ଟାର୍ଟ କରିବା ଏକ ସମସ୍ୟା ହେଲା । ଶେଷକୁ ଧକ୍କା ଦେବାକୁ ପଡ଼ିଲା । ମୁଁ ବିଦ୍ରୂପ କରି କହିଲି – "ଏବେ ସରକାରର ଅବସ୍ଥା ଏଇ ଜିପ୍ ପରି ହେଲାଣି । ନ ଠେଲିଲେ ଚାଲୁ ନାହିଁ ।" ପୁଲିସ ସବ୍‌ଇନସ୍‌ପେକ୍ଟର ଦୁଇଜଣ ସ୍ମିତହାସ୍ୟ କଲେ ।

ମତେ ନେଇ କଟକ ଜେଲ୍‌ରେ ପହଞ୍ଚେଇ ଦିଆହେଲା । ଚିର ପରିଚିତ ସତର ନମ୍ବର ଓ୍ୱାର୍ଡ଼ । ଦେଖିବା ବେଳକୁ ସେଠି ମଦନ ବାବୁ (ସାହୁ), ଅନାଦି ନାୟକ, ମନମୋହନ ମିଶ୍ର

ହେରିକା ସତ୍ୟ ଧରାହେଇ ପହଞ୍ଚିଛନ୍ତି । ପରେ ପରେ ଆଉ ସାଥୀ ବି ଆସି ପହଞ୍ଚିଲେ । ଯାଜପୁରର ଅଶୋକ ଦାସ ତାହା ଭିତରେ ଥିଲେ । ନରକ ଗୁଲଜାର, ହୋ-ହା କରି ଦିନଟା କଟିଲା । ଗପସପ, କଳ୍ପନା, ଜଳ୍ପନା, ପ୍ରଥମ ଶ୍ରେଣୀ ଅଟକବନ୍ଦୀଙ୍କର ଅଧିକାର ଓ ଜେଲଠାରୁ ପ୍ରାପ୍ୟ ନେଇ ଜେଲ କର୍ମଚାରୀଙ୍କ ସାଙ୍ଗରେ ଆଲୋଚନା ଓ ତର୍କ ଏଇସବୁ ଚାଲିଲା । ଧୀରେ ଧୀରେ ଯେ, ଯାହାର ପିଂଡି ଆଦିର ଥଇଥାନ ହେଲୁ । ପାଠକଙ୍କର ମନେଥିବ, ଅନେକ ଆଗରୁ ମୁଁ ବର୍ଣ୍ଣନାକ କରିଛି ଯେ, ଜେଲଖାନାମାନଙ୍କରେ କଏଦୀମାନଙ୍କର ଶୋଇବା ପାଇଁ ଛ' ଫୁଟ ଲମ୍ବ ଓ ପ୍ରାୟ ଅଢ଼େଇ ଫୁଟ ଓସାର ଓ ଖଟ ପରି ଉଚ୍ଚ ଇଟା ତିଆରି ପିଂଡି ଥାଏ । ତା'ର ଗୋଟିଏ ପାଖରେ ଗୋଟିଏ ଉଚ୍ଚ ହିଡ଼, ତକିଆ କାମ କରିବା ଉଦ୍ଦେଶ୍ୟରେ । ଏହାର ଉପରେ କମ୍ବଳ ଓ ସତରଞ୍ଜି ବିଛେଇ ଶୁଆବସା କରାଯାଏ ।

ସତର ନମ୍ବରରେ ବେଶ୍ ଜମେଇ କରି ବସିବାକୁ ପ୍ରସ୍ତୁତ ହେଉଥିଲୁ, ମାତ୍ର ମୋ ପାଇଁ ଅନ୍ୟ ପ୍ରକାର ବରାଦ ଥିଲା । ତୃତୀୟ ଦିନ ରାତି ଦଶଟା ଖଣ୍ଡେ ବେଳକୁ ମନମୋହନ ମିଶ୍ର, ଅଶୋକ ଦାସ ଓ ମତେ ଡାକରା ଆସିଲା ଯେ ଅନ୍ୟତ୍ର ଯିବାକୁ ହେବ । ପୁଟୁଳା ପୁଟୁଳି ବାନ୍ଧି ଜେଲ ଫାଟକକୁ ଗଲୁ । ମୁଁ ଗୀତ ଧରିଲି, କାଜୀ ନଜରୁଲଙ୍କର,

"କାରାର ଏଇଲୌ କପାଟ୍,<br>ଭେଂଗେ ଫେଲ୍, ଭେଂଗେ ଫେଲ୍<br>କରରେ ଲୋପାଟ୍ ରକ୍ତଜମାଟ୍<br>ଶିକଲ ପୂଜାରେ ପାଷାଣ ବେଦୀ ।"

ଆମକୁ ଦୁଇଟା ଜିପ୍‌ରେ ବସାହେଲା ଓ ବକ୍ସିବଜାର ଆଡ଼କୁ ଗାଡ଼ି ଚାଲିଲା ଓ ସେଠୁ ମହାନଦୀ ପୋଲ ପାରିହେଇ ଆଗେଇଲା । ଅଶୋକବାବୁ ଓ ମୁଁ ଗୋଟିକରେ ଜଣେ ଥାଉ । ଆମକୁ କେଉଁଠିକି ନିଆ ହେଉଚି ପଚାରିବା ବେଳକୁ ପୁଲିସ କର୍ମଚାରୀମାନେ କୌଣସି ଉତ୍ତର ଦେଲେ ନାହିଁ । ବଜାରବାଟେ ଯିବାବେଳେ ସ୍ଲୋଗାନ ଦେବା ପାଇଁ ଇଚ୍ଛା ହେଲା, ମାତ୍ର ରାତି ଏଗାରଟା ଉପରେ ହେଲାଣି, ଦୋକାନ ସବୁ ବନ୍ଦ । ରାସ୍ତାରେ ଲୋକ ଚଳାଚଳ ବି ନାହିଁ, କିଏ ଶୁଣିବ ?

ମତେ ଓ ଅଶୋକକୁ ନେଇ ଗାଡ଼ି ଢେଙ୍କାନାଳ ରାସ୍ତାକୁ ମୁହାଁଇଲା । ଜଣାଗଲା ଯେ, ଢେଙ୍କାନାଳ ବା ଅନୁଗୁଳକୁ ଆମକୁ ନିଆ ହେଉଛି । ସମ୍ବଲପୁର ବି ହୋଇପାରେ । ଯାହା ହେଉ ରାତି ଗୋଟାଏ ଖଣ୍ଡେ ବେଳେ ଢେଙ୍କାନାଳ ଜେଲ ଫାଟକରେ ଗାଡ଼ି ଅଟକିଲା ଓ ମତେ ସେଠି ଛାଡ଼ି ଦେଇ ଅଶୋକଙ୍କୁ ନେଇ ପୁଲିସ୍‌ବାଲା ଆଗକୁ ଗଲେ । ମତେ ଜେଲର୍ ମହାଶୟ ନେଇ ଜେଲ୍‌ର ଗୋଟାଏ କୋଣରେ ଥିବା ଏକ ସାନ ୱାର୍ଡ଼ରେ ରଖିଲେ । ସେଥିରେ ମୁଁ ଏକା । ଆଉ କେହି ନଥାନ୍ତି । ମୁଁ ବେଶି ଡେରି ନ କରି ଶୋଇପଡ଼ିଲି ।

## ଢେଙ୍କାନାଳ ଜେଲ୍

ସକାଳେ ଗହଳି ଶୁଣି ନିଦ ଭାଙ୍ଗିଗଲା । ଦେଖିଲି ବାହାର ହତାରେ ଜୋରଦାର ସଫେଇ କାମ ଚାଲିଛି । ବହୁତ ଦିନର ସଞ୍ଚିତ ଆବର୍ଜନା ଓ ବଣବୁଦା ସଫା କରା ହେଉଛି । ଦିନ ଆଲୁଅରେ ଦେଖିଲି ୱାର୍ଡ଼ଟି ଛୋଟ । ଆଠଜଣ ଖଣ୍ଡେ ବେଶୀ ଭିଡ଼ ନହେଇ ରହିପାରିବେ । ମୋ ପାଇଁ ଗୋଟିଏ ଲୁହା ଖଟ ମିଳିଥିଲା । ଘରର ଗୋଟାଏ ପାଖକୁ କାନ୍ଥରୁ ପଦାକୁ ଏକ ପିଞ୍ଜରା ପରି ବାହାରିଥିବା ପାଇଖାନା, ରାତିରେ ବ୍ୟବହାର ପାଇଁ । ହତାଟି ୬୦ ଫୁଟ୍‌ରେ ୬୦ ଫୁଟ ହେବ । ଗାଧୋଇବା ପାଇଁ ପାଣି କୁଣ୍ଡ ଓ ପାଇଖାନା ଅଛି । ଚଳନୀୟ ରକମର ପରିଷ୍କାର ।

ସଫେଇକାମ କରୁଥିବା କଏଦୀମାନେ କାମସାରି ଚାଲିଗଲେ । ହତାର ଫାଟକରେ ପଦାରୁ ତାଲା ପଡ଼ିଲା ମୁଁ ନିତ୍ୟକର୍ମ ସାରିଲି । ଜଳଖିଆ କ'ଣ ଗୋଟାଏ ଆସିଲା, ମନେନାହିଁ । କିଛି ସମୟ ପରେ ଜେଲର୍ ଆସି କୁଶଳ ପ୍ରଶ୍ନ ପଚାରିଗଲେ । ଘର କଟକ ଜିଲ୍ଲାର ଜଗତ୍‌ସିଂହପୁର ଆଡ଼େ । ଯୁବକ, ମନେହେଲା ଖୋଲପାଟା ଏପର୍ଯ୍ୟନ୍ତ ବେଶି ପାକଳ ହେଇନାହିଁ ।

ଦିପହର ବେଳକୁ ଆସି ପହଞ୍ଚିଲେ ପୁରୀ ବ୍ରହ୍ମଗିରି ଅଞ୍ଚଳର ଅଜୟ ଜେନା । ପରେ ସେ ଜନତା ଦଳର ଏମ.ଏଲ.ଏ. ହେଇଥିଲେ । ତାଙ୍କର ବାପା ସେଠାକର ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ ଉଦୟନାଥ ଜେନା, ସ୍ୱାଧୀନତା ପରେ ବି ସେବାକାର୍ଯ୍ୟରେ ଲାଗିରହିଛନ୍ତି । ଅଜୟବାବୁ ଯୁବକ । ତାଙ୍କ ଜୀବନରେ ସବୁଠାରୁ ବଡ଼ ଦୁଃଖ ହେଲା ଯେ, ମୁଣ୍ଡଟା ଅକାଳରେ ଚନ୍ଦା ହେଇଯାଇଛି । ତାଙ୍କର ବାହାଘର ବେଳେ ସେ କିପରି ଟୋପି ପିନ୍ଧି ଚନ୍ଦାଟକୁ ଘୋଡେଇଲେ ଓ ରାତିରେ ଶୋଇବା ବେଳେ ବି ଟୋପି ପିନ୍ଧି ରହିଲେ ତା'ର ସାରା କାହାଣୀ ସେ ମତେ ଆସିବାର ଅଳ୍ପ ସମୟ ଭିତରେ ଶୁଣାଇଲେ ।

ତା' ପରେ ଆସିଲେ ରାଉରକେଲାର ସି.ପି.ଆଇ.ଏମ. କର୍ମୀ ବିଷ୍ଣୁ ମହାନ୍ତି । ଉତ୍ସାହୀ ଆଦର୍ଶବାଦୀ କର୍ମୀ, ଯୁବକ । ଏହା ପରେ କ୍ରମେ କ୍ରମେ ଆଗନ୍ତୁକଙ୍କ ସଂଖ୍ୟା ବଢ଼ି ଚାଲି ଶେଷକୁ ଘରଟି ଭରପୂର ହୋଇଗଲା । ଆସିଲେ ବିଶିଷ୍ଟ ନେତା ପ୍ରତାପ ମହାନ୍ତି, ପୁଲିସ ଡି.ଆଇ.ଜି. ଯତୀନ୍ଦ୍ରନାଥ ସାମଲ । ନନ୍ଦିନୀଙ୍କ ସହିତ କୌଣସି ବ୍ୟାପାରରେ ମତଭେଦ ହେବାରୁ ତାଙ୍କୁ ମିସାରେ ଅଟକ କରି ଆମ ସାଙ୍ଗକୁ ପଠେଇଦିଆ ହେଇଥିଲା । ତାଙ୍କର ବାପା କନିକା ଅଞ୍ଚଳର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ, କନିକା ରାଜାଙ୍କର ଅତ୍ୟାଚାର ବିରୁଦ୍ଧରେ ଆନ୍ଦୋଳନର ନେତା ଚକ୍ରଧର ବେହେରାଙ୍କର ମୁଖ୍ୟ ସହକାରୀ ଥିଲେ । ଏହାପରେ ଦିନେ ଅଧରାତିରେ ଆସି ପହଞ୍ଚିଲେ ତାଳଚେର ଆଡ଼ର ଶରତଚନ୍ଦ୍ର ପ୍ରଧାନ, ଆନନ୍ଦ ମାର୍ଗର ଜଣେ ମୁଖ୍ୟ କର୍ମୀ ଏବଂ ଅନେକ ଦିନ ପରେ ହଠାତ୍ ଆସି ପହଞ୍ଚିଲେ ଧାନବାଦରୁ ଧରାହେଇ ଆସିଥିବା ଜଣେ ତାମିଲ ଭଦ୍ରଲୋକ, ରାମଚନ୍ଦ୍ରନ୍ । ଏ ଜଣେ ଶ୍ରମିକ ସଂଗଠନର କର୍ମକର୍ତ୍ତା ବୋଲି ନିଜର ପରିଚୟ ଦେଲେ ।

ଆଇନ ଅନୁସାରେ ମିସାରେ ଅଟକଥିବା ବନ୍ଦୀମାନଙ୍କର ଆତ୍ମୀୟମାନଙ୍କ ସହିତ

ଦେଖାସାକ୍ଷାତ ଓ ଚିଠିପତ୍ର ଲେଖିବାର ଯଥେଷ୍ଟ ସୁବିଧା ମିଳିବାର କଥା । ସାକ୍ଷାତ ପ୍ରତିଦିନ ହୋଇପାରେ ଓ ଚିଠିପତ୍ର ମଧ୍ୟ ଆବଶ୍ୟକମତେ ନିଜ ଖର୍ଚ୍ଚରେ ଯେତେ ଦରକାର ଲେଖାଯାଇପାରେ । ମାତ୍ର ଢେଙ୍କାନାଳରେ ପହଞ୍ଚି ସମସ୍ତଙ୍କୁ ଜାଣିବାକୁ ମିଳିଲା ଯେ, ସାକ୍ଷାତକାର ଓ ଚିଠିପତ୍ର ଲେଖାର ସୁବିଧା ପୂରାପୂରି ପ୍ରତ୍ୟାହୃତ ହୋଇଛି । କେବଳ ଏତିକି ନୁହେଁ, ପରେ ଜାଣିବାକୁ ପାଇଲୁ ଯେ, ମାସେରୁ ଅଧିକ ସମୟ ଯାଏ ମିସା ଅଟକବନ୍ଦୀମାନଙ୍କର ଘର ଲୋକେ ଜାଣିବାକୁ ହିଁ ପାଇଲେ ନାହିଁ ଯେ, ବନ୍ଦୀମାନେ କିଏ କେଉଁଠି ଅଛନ୍ତି ଓ ବଞ୍ଚିକରି ଅଛନ୍ତି ନା ନାହିଁ । ଶ୍ରୀମତୀ ଗାନ୍ଧୀ, ଯେ ପୁଲିସ୍ ଓ ଗୁଣ୍ଡାଙ୍କ ଦ୍ୱାରା ପଶ୍ଚିମବଙ୍ଗରେ ହଜାରେ ସରିକି ବାମପନ୍ଥୀ କର୍ମୀଙ୍କୁ ମରେଇଥିଲେ ଓ ଯାହାଙ୍କର କଥାବାର୍ତ୍ତା ଓ କାର୍ଯ୍ୟକଳାପରେ ହିଟ୍‌ଲରୀ ଢଙ୍ଗ ସୁସ୍ପଷ୍ଟ ଥିଲା, ସେ ଯେ ବିରୋଧୀ ଲୋକଙ୍କୁ ସାବାଡ଼୍ କରିଦେବା ଚେଷ୍ଟା କରିବା କିଛି ଅବାସ୍ତବ କଳ୍ପନାର କଥା ନଥିଲା । ଅନ୍ତତଃ ଜେ.ପି.ଙ୍କ କ୍ଷେତ୍ରରେ ସେପରି ଚେଷ୍ଟା ହୋଇଥିଲା ବୋଲି ମୋର ଦୃଢ଼ ବିଶ୍ୱାସ । ସେ କଥା ପରେ ଯଥାସ୍ଥାନରେ ଆସିବ ।

ବାହାର ଖବର ବି ଜାଣିବା ପାଇଁ ମନ ଛଟପଟ ହେଉଥାଏ । ମାତ୍ର ଖବରକାଗଜ ମିଳିବାର ବ୍ୟବସ୍ଥା ହିଁ ବନ୍ଦ । ଅନେକ ଦିନପରେ ଯେତେବେଳେ ଖବରକାଗଜ ମିଳିଲା ଦେଖାଗଲାଯେ, ସେଥିରେ ପ୍ରକୃତ ଖବର କିଛି ନାହିଁ । ସବୁ ସରକାରୀ ଯାଞ୍ଚ । ଦପ୍ତରମାନଙ୍କରେ କାଟଛାଣ୍ଟ ଓ ସଂପୂର୍ଣ୍ଣ ବିକୃତ ହୋଇଥିବା ଖବର । ଅଧିକାଂଶ କଞ୍ଚାମିଛ । ତେଣୁ ବାହାର ଜଗତରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଦୀର୍ଘକାଳ ଜେଲରେ ରହିବାକୁ ହେବ ବୋଲି ଧରିନେଇ ଯେ, ଯାହାର ପ୍ରସ୍ତୁତ ହେଲୁ ଓ ସାମୂହିକ ଭାବରେ ଏକ ପରିବାର ଭଳି ଘର ସଜାଡ଼ିବାରେ ବି ଲାଗିଲୁ । ଯଥା – ଖାଇବା ବ୍ୟବସ୍ଥା । ମିସା ବନ୍ଦୀମାନଙ୍କୁ ଦିନକୁ ଖାଦ୍ୟ ପାଇଁ ଅଢ଼େଇ ଟଙ୍କା ନା କେତେ ମିଳୁଥିଲା । ସେଥିରେ ହିସାବ କରି ନିଜର ରୁଚି ଅନୁସାରେ ଡାଲି, ଚାଉଳ, ଅଟା, ପନିପରିବା, ଦୁଧ, ଘିଅ, ତେଲ, ମାଛ, ମାଂସ ଯାହା ଦରକାର ମଗେଇ ହେଉଥିଲା । ପ୍ରତାପବାବୁ, ଅଜୟ ଓ ବିଷ୍ଣୁ ପରାମର୍ଶ କରି ଏସବୁ ରସଦ ତାଲିକା ସ୍ଥିର କରନ୍ତି । ଆମ ୱାର୍ଡ଼ ହତାରେ ଏକ ସାନ ରୋଷେଇଘର ବି ଥିଲା । ବାଲେଶ୍ୱର ଜିଲ୍ଲାର ଧାମନଗର ଆଡ଼ର ଜଣେ ଯାବଜ୍ଜୀବନ କାରାବାସ ଦଣ୍ଡ ପାଇଥିବା କଏଦୀଙ୍କୁ ଆମ ପାଇଁ ରୋଷେଇ କରିବାକୁ ନିଯୁକ୍ତ କରାଗଲା । ସେ ଜଣେ ଗୁଡ଼ିଆ ଓ ତେଣୁ ଭଲ ରୋଷେଇ କରେ ଓ ମିଠେଇ ଆଦି ତିଆରି କରି ଜାଣିଥିଲା । ତା'ଠାରୁ ମୁଁ ପରଟା ତିଆରି ଶିଖିଲି । ଆମେ କେତେଜଣ ରୁଟି ଖାଉଥାଉ, ବଜାରର ତେଲ ଘିଅକୁ ଯଥାସମ୍ଭବ ଏଡ଼ାଇ ଯାଉଥାଉ । ଯତୀନବାବୁ କେତିକା ପରଟା ଖାଇବାକୁ ଭଲ ପାଉଥା'ନ୍ତି । ମୁଁ ସେମାନଙ୍କ ପାଇଁ ପ୍ରତିଦିନ ଉପରଓଳି ପରଟା କରିବାର ଦାୟିତ୍ୱ ଢେଙ୍କାନାଳ ଜେଲରେ ଥିବାଯାଏ ନେଇଥିଲି । ମୋ ତିଆରି ପରଟା ଉତ୍କୃଷ୍ଟ ହେଉଥିଲା ବୋଲି ଖାଇବାବାଲା ତାରିଫ୍ କରୁଥିଲେ ।

ଆମର ଅଧିକାଂଶ ସମୟ ଆପଣା ରୁଚି ମୁତାବକ ପଢ଼ାପଢ଼ି ଓ ଗପସପରେ ଯାଉଥିଲା ।

କେବଳ ରାମଚନ୍ଦ୍ରନ୍ ଅଧିକାଂଶ ସମୟ ଶୋଇକରି କଟାଉଥିଲେ । ଯତୀନ୍ଦ୍ରବାବୁ ତାଙ୍କ ଖଟ ଚାରିପାଖେ ପର୍ଦ୍ଦା ଟାଣି ଆପଣାର ଏକ ଏକାନ୍ତ ସ୍ଥାନ କରି ନେଇଥିଲେ । ଇତିହାସ ଓ ବିଶେଷକରି ପ୍ରାଚୀନ ଭାରତର ଇତିହାସରେ ତାଙ୍କର ଅଧ୍ୟୟନ ବହୁତ ବ୍ୟାପକ ଥିଲା ଓ ସେ କେତେକ ଇତିହାସ ବହି ମଗେଇଥିଲେ ଓ ଓଡ଼ିଆରେ ଗୋଟାଏ ବହି ଲେଖା ଆରମ୍ଭ କରିଥିଲେ । ଜେଲ ପୁସ୍ତକାଗାରରେ କିଛି ବହିପତ୍ର ଥିଲା । ସେଥିରୁ ମଗେଇ ଓ ଘରୁ ମଗେଇ ଅନ୍ୟମାନେ ପଢ଼ାବହି ଜୁଟାଉଥିଲେ ।

ମୁଁ ପଢ଼ା, ଲେଖା ଓ ଛବି ଅଙ୍କାରେ ସମୟ ଦେଉଥିଲି । ମୋର ପଦାର୍ଥ ବିଜ୍ଞାନରେ ବରାବର ରୁଚି । ଏଠି ଆଣବିକ ପଦାର୍ଥବିଜ୍ଞାନ ବିଷୟରେ କେତେଖଣ୍ଡ ବହି ମଗେଇ ପଢ଼ିଗଲି ଓ ସେ ବିଷୟରେ ଓଡ଼ିଆରେ ଖଣ୍ଡେ ସରଳ ବହି ଲେଖା ଆରମ୍ଭ କଲି । ଏହି ଆତ୍ମକଥା ବି ଆରମ୍ଭ କଲି । ଏହାଛଡ଼ା, ଅନ୍ୟାନ୍ୟ ବହି ମଧ୍ୟ ଯାହା ମିଳିଲା ପଢ଼ିଲି । ଏହି ଜେଲରେ ହିଁ ଫକୀର ମୋହନଙ୍କର ପୂରା ଗ୍ରନ୍ଥାବଳୀଟା ପଢ଼ିବାର ସମୟ ଓ ସୁଯୋଗ ମିଳିଲା । ଛବି ଆଙ୍କିବା ପାଇଁ ରଙ୍ଗ, ତୂଳି ଓ କାଗଜ ମିଳିପାରିବାରୁ ପ୍ରତିଦିନ ପାଣିରଙ୍ଗରେ ଛବି ଅଙ୍କା ଓ କଲମରେ ସ୍କେଚିଂ ମଧ୍ୟ କିଛି ସମୟ ନିୟମିତ ଭାବରେ କଲି । ମୋର ନିୟମିତ ଆସନ ଓ ବୁଲିବା ତ ସେଠାରେ ଚାଲିଥାଏ । ହତା ଭିତରେ ପାଚିରୀ କଡ଼େ କଡ଼େ ଘେର ପକେଇ ବୁଲେ । ବୁଲିବାବେଳେ ରବୀନ୍ଦ୍ରନାଥଙ୍କର କବିତାସବୁ ମନେ ମନେ ଆବୃତ୍ତି କରେ । ପ୍ରତାପବାବୁ ମଧ୍ୟ ବୁଲନ୍ତି । ବୁଲିବାବେଳେ ମଝିରେ ମଝିରେ ହାତରେ ନାନା ଭଙ୍ଗୀ କରନ୍ତି । ଦିନେ ପଚାରିବାରୁ କହିଲେ ଯେ,ସେ ବାହାରକୁ ଗଲେ ସାଧାରଣ ସଭାରେ ଯେଉଁ ବକ୍ତୃତା ଦେବେ ସେଇଟା ମନେ ମନେ ଅଭ୍ୟାସ କରୁଛନ୍ତି ।

ଜେଲ୍‌ଖାନାରେ ଅଳ୍ପ ଜାଗା ଭିତରେ ଅନେକ ଲୋକ ସଦାସର୍ବଦା ରହିବାଯୋଗୁଁ ଗୋଟିଏ ପ୍ରକାରର ମାନସିକ ଚାପ ସୃଷ୍ଟି ହୁଏ । ଅନ୍ୟମାନଙ୍କର ଚାଲି ଚଳଣିରେ ଅତି କ୍ଷୁଦ୍ର ଅଭ୍ୟାସଗୁଡ଼ିକ ବି ସହ୍ୟ କରିହୁଏ ନାହିଁ । କିଏ କେମିତି କାଶିଲା ବା ବସିଲା ତାହା ବି ଅସହ୍ୟ ଲାଗେ । ଏହାଛଡ଼ା ନାନାପ୍ରକାରର ସଂଦେହ ବି ମନରେ ବସା ବାନ୍ଧନ୍ତି । ଦିନେ ଅଜୟ ମତେ ଡାକିନେଇ ଖୁବ୍ ଗମ୍ଭୀର ଭାବରେ ବୁଝାଇଲେ ଯେ, ଯତୀନବାବୁଙ୍କୁ ଏଠିକି ଆମର ସବୁ ଗୁପ୍ତ ଖବର ସଂଗ୍ରହ କରି ସରକାରଙ୍କୁ ଯୋଗାଇବା ପାଇଁ ପଠା ହେଇଛି । ତେଣୁ ତାଙ୍କ ସହିତ ବା ତାଙ୍କ ସାମନାରେ କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା ନ କରିବା ଉଚିତ । ସେତେବେଳେ ମୁଁ ବି ତାଙ୍କ କଥାରେ ପ୍ରଭାବିତ ହେଲି । ମାତ୍ର ପରେ ଭାବି ଦେଖିଲି ଯେ, ଏଭଳି ଗୁଇନ୍ଦା କାମ କରିବାକୁ ଜଣେ ଡି.ଆଇ.ଜି. ପାହ୍ୟାର ଅଫିସରଙ୍କୁ ବନ୍ଦୀ କରି ରଖାଯିବା ଏକ ଅତି ଅବିଶ୍ୱାସୀ କଥା । ତାହାଛଡ଼ା ଆମ କେତେଜଣଙ୍କର କ'ଣ ଏମିତି ଭୟଙ୍କର ଗୋପନୀୟ ଚିନ୍ତାଧାରା ଅଛି ଯେ, ଏପରି ଏକ ପଦକ୍ଷେପ ନିଆଯିବ ।

ମାସେ ଖଣ୍ଡେ କଟିଯିବାପରେ ଖବର ମିଳିଲା ଯେ, ଦେଖାସାକ୍ଷାତ ଓ ଚିଠି ଲେଖାର

ନୂଆ ନିୟମ ପ୍ରଣୟନ ହୋଇ ଆସିଛି । ପନ୍ଦର ଦିନରେ ଥରେ ସାକ୍ଷାତ ଓ ସେହିପରି ପନ୍ଦର ଦିନରେ ଖଣ୍ଡେ ଚିଠି ଲେଖିବାକୁ ମିଳିବ । ମାତ୍ର ସାକ୍ଷାତକାର ପାଇଁ ପୁଲିସ୍‌ର ଆଇ.ଜି.ଙ୍କୁ ଦରଖାସ୍ତ କରି ତାରିଖ ଓ ସମୟ ଆଣିବାକୁ ହେବ । ପୁଣି କେଉଁମାନେ ଦେଖା କରିପାରିବେ ତା'ର ଏକ ବିସ୍ତୃତ ତାଲିକା ଦିଆହୋଇଥାଏ । ସେଥିରେ ଝିଆରୀ, ପୁତୁରା, ଭଣଜା, ଭାଣିଜୀ, ଶଳା, ଭିଣୋଇ ଆଦିଙ୍କର ସ୍ଥାନ ନଥାଏ । ଚିଠିପତ୍ର ପୂର୍ବ କାଳରେ ଜେଲ କର୍ତ୍ତୃପକ୍ଷ ଯାଞ୍ଚ କରୁଥିଲେ । ଏବେ ସେସବୁ ପୁଲିସ ଆଇ.ଜି.ଙ୍କର ଅଫିସରେ ଯାଞ୍ଚ ହେବାର ବ୍ୟବସ୍ଥା ହେଲା । ଚିଠିରେ ପୁଳାଏ ପୁଳାଏ ଜାଗାରେ ପ୍ରେସ୍‌କାଳି ନେସା ହୋଇ ଲେଖାକୁ ଲିଭେଇ ଦିଆ ହୋଇଥାଏ । ସାକ୍ଷାତ ବେଳେ ଜଣେ ପୁଲିସ୍ ଅଫିସର ଉପସ୍ଥିତ ରହନ୍ତି ଓ ରାଜନୀତି ସଂକ୍ରାନ୍ତ କଥାବାର୍ତ୍ତା ଉପକ୍ରମ ଦେଖିଲେ ବାଧା ଦିଅନ୍ତି । ତଥାପି ଚିଠିପତ୍ର ଓ ସାକ୍ଷାତରେ ନାନା ଛଦ୍ମଶବ୍ଦ ବ୍ୟବହାର କରି ମୋଟାମୋଟି ଖବର ସଂଗ୍ରହ କଲୁ । ଯଥା, ବୋଉ ବରୀରେ ଚାଷବାସ ଖବର ବୁଝିବାକୁ ଯାଇଥିଲା ପରା ? କ'ଣ ହେଲା ? ଉତ୍ତର : ଯୋଗାଡ଼ ତ ଚାଲିଛି, ମାତ୍ର ମୂଲିଆ ମିଳିବାରେ ଅସୁବିଧା ହେଉଛି । ଅର୍ଥାତ୍ ବରୀ ଅଞ୍ଚଳରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରାଯାଇପାରିବ ବୋଲି ଆଶା ଥିଲା । ବୋଉ ତେଣେ ଯାଇଥିଲା ମଧ୍ୟ, ଏହାର ସମ୍ଭାବନାର ଖୋଜଖବର ନେବା ପାଇଁ । ମାତ୍ର ଦେଖାଗଲା ଯେ, ଲୋକ ବାହାରୁ ନାହାଁନ୍ତି ।

ପରେ ଜେଲରୁ ବାହାରିବାପରେ, ଜଣାଗଲା ଯେ, ବୋଉକୁ କାହିଁକି ଗିରଫ କରାହୋଇ ନଥିଲା । କଟକର ଅନେକ ବିଶିଷ୍ଟ ମହିଳା ସରକାରଙ୍କୁ ଜଣାଇଥିଲେ ଯେ, ରମାଦେବୀଙ୍କୁ ଗିରଫ କରାଗଲେ ସେମାନେ ସତ୍ୟାଗ୍ରହ କରିବେ । ମାତ୍ର ଗୁଣନିଧି ଭବନରେ ପୁଲିସ୍ ପହରା ରଖାହେଲା ଓ ଯିଏ ସେଠିକି ଯିବା ଆସିବା କଲେ ସେମାନଙ୍କର ନାମଧାମ ଟିପାହେଲା । ବୋଉ ଯେଉଁଠିକି ଗଲା ତା' ପଛେ ପଛେ ପୁଲିସ୍ ଚର ଚାଲିଲେ । ବରୀ ଅଞ୍ଚଳରେ ପୁଲିସ୍ ପକ୍ଷରୁ ପ୍ରଚାର ହେଲା ଯେ, ରମାଦେବୀଙ୍କୁ ସିନା ଗିରଫ କରାଯାଇ ନାହିଁ,ମାତ୍ର ତାଙ୍କ ସଭାକୁ ଯେ ଯିବ ତାକୁ ଗିରଫ କରାଯିବ । ଏହି ପରିସ୍ଥିତିରେ ଗୁଣନିଧି ଭବନକୁ ଲୋକ ଆସିବା ବନ୍ଦ ହୋଇଗଲା । କେବଳ ପାଞ୍ଚ ସାତ ଜଣ ଲୋକଙ୍କର ସେଠିକି ଆସିବାର ସାହସ ଥିଲା । ତାଙ୍କ ଭିତରେ ମୁଖ୍ୟ ଭୂତପୂର୍ବ ବିଚାରପତି ଶ୍ରୀ ହରିହର ମହାପାତ୍ର ଓ ଶ୍ରୀ ବିଶ୍ୱନାଥ ପଣ୍ଡିତ ।

ଢେଙ୍କାନାଳ ଜେଲରେ ଥିବାବେଳେ ଖବର ମିଳିଲା ଯେ, ମନମୋହନ ମିଶ୍ର ଏକ ରିଟ୍ ଦରଖାସ୍ତ କରି ଖଲାସ ହୋଇ ଯାଇଛନ୍ତି । ତାଙ୍କର ବକ୍ତବ୍ୟ ଥିଲା ଯେ, ଯେଉଁ ଅର୍ଡିନାନ୍‌ସ ବଳରେ ତାଙ୍କୁ ଓ ଆମମାନଙ୍କୁ ଗିରଫ କରାଯାଇଥିଲା ତାହା ଜାରି ହେବା ତାରିଖର ପୂର୍ବରୁ ଆମର ଗିରଫ ପରୱାନା ତାହା ବଳରେ ଜାରି କରାହୋଇଛି । ତେଣୁ ତାହା ବେଆଇନ୍ । ମୋର ଗିରଫଦାରୀ ପରୱାନ ରେ ମଧ୍ୟ ସେହି ଏକା ଦୋଷ ଥିଲା । ତେଣୁ ମୁଁ ବି ଏକ ଦରଖାସ୍ତ କଲି । ଫଳ ହେଲା ଯେ ଜାନୁୟାରୀ ୧୯୭୬ ରେ ମତେ ହଠାତ୍ ଦିନେ କଟକ ଜେଲକୁ ବଦଳି କରାହେଲା । ଢେଙ୍କାନାଳରେ ଯେ ଆମର ଗୋଟିଏ ପାରିବାରିକ ବନ୍ଧନ ଗଢ଼ିଉଠିଥିଲା ତାକୁ ଛାଡ଼ି ମୁଁ କଟକ ଗଲି ।

## ପୁଣି କଟକ ଜେଲ୍

ସେତେବେଳକୁ କଟକ ଜେଲ ଭରପୁର । ଷୋଳ ଓ ସତର ନମ୍ବର ଦୁଇଟାଯାକ ୱାର୍ଡ଼ରେ ଅଟକ ବନ୍ଦୀ ରହିଥା'ନ୍ତି । ତାହା ଛଡ଼ା କେନ୍ଦ୍ରାପଡ଼ା ଆଡ଼ୁ ଆଇନ ଅମାନ୍ୟ କରି ଗିରଫ ହୋଇଥିବା ପଞ୍ଚାଏ ଛାତ୍ର ଓ ଭୂଦାନକର୍ମୀ ସୁରେନ୍ଦ୍ର ମହାନ୍ତି ସଙ୍ଗାପାଇ ଓ ସି.ଶ୍ରୀଭୁକ୍ତ ହୋଇ ଆଉ ଗୋଟିଏ ୱାର୍ଡ଼ରେ ଥା'ନ୍ତି । ମାତ୍ର କେତେଦିନ ପରେ ମୁଁ ଷୋଳ ନମ୍ବରକୁ ଚାଲିଆସିଲି । ସେତେବେଳେ ଅଟକଥିବା ଛାତ୍ରଯୁବକମାନଙ୍କର ଦାବି ଫଳରେ ଏହି ୱାର୍ଡ଼ମାନଙ୍କରେ ଡାକବାଜିଯନ୍ତ୍ର ଖଞ୍ଜାହେଇଥାଏ । ଅଫିସରେ ଥିବା ରେଡ଼ିଓରୁ ସେଥିରେ ସମ୍ବାଦ ଓ ସଂଗୀତ ପରିବେଷଣ କରାଯାଇଥାଏ । ପିଲାମାନଙ୍କର ଆଗ୍ରହ ଯୋଗୁଁ ବୋଧହୁଏ ରେକର୍ଡ଼ ବି ବଜାଯାଉଥାଏ । ପିଲାମାନଙ୍କୁ ତ ଉଚ୍ଚ ସ୍ୱରରେ ପରଷା ଯାଉଥିବା ସଂଗୀତର ନିଶା ଲାଗିଥାଏ, ମାତ୍ର ମୋର ଓ ଅନ୍ୟ କେତେକଙ୍କର ପ୍ରାଣ ଅତିଷ୍ଠ ହେଉଥାଏ । ସେଠି ତ ମୋର ଲତା ମଙ୍ଗେସ୍କରଙ୍କ ପ୍ରତି ଏପରି କ୍ରୋଧ ଜନ୍ମିଲା ଯେ, ତାଙ୍କୁ ହାତପାଖରେ ପାଇଥିଲେ କ'ଣ କରିଥା'ନ୍ତି କେଜାଣି । ଉଚ୍ଚସ୍ୱରରେ ପରିବେଷିତ ତାଙ୍କର ସ୍ୱର କାନରେ ଏକାବେଳେକେ ଫୋଡ଼ି ହେଇଯାଉଥାଏ । ପୁଣି ଡାକବାଜି ଚୁଂଗାଟା ଠିକ୍ ମୋରି ପିଣ୍ଡିଆଡ଼କୁ ମୁହଁକରିଥାଏ । ଷୋଳ ନଂବରଟା ଅନେକ ବଡ଼ ଓସେଥିରେ ମୁଁ ଗୋଟାଏ କୋଣକୁ ରହିଲି । ଚୁଙ୍ଗାଠାରୁ ଯଥାସମ୍ଭବ ଦୂରରେ । ପରେ ପିଲାମାନଙ୍କ ସହିତ କଥାବାର୍ତ୍ତା କରି ସଂଗୀତ ପରିବେଷଣର ସମୟ ବି କମେଇ ଦିଆହେଲା ।

କଟକରେ ଆସି ମୁଁ ମୋର ଲେଖାପଢ଼ା ଓ ଛବି ଅଙ୍କା ଧନ୍ଦାରେ ଲାଗିଗଲି । ବହି ଭିତରେ ଅର୍ଥନୀତି ଓ ରାଜନୀତିର ସାହିତ୍ୟ କିଛି ଥାଏ । ତା' ଭିତରେ ଇଂଲଣ୍ଡର ସୁବିଖ୍ୟାତ ଅର୍ଥନୀତିବିଦ୍ ଜୋନ୍ ରବିନ୍‌ସନ୍‌ଙ୍କର ଖଣ୍ଡେ ସାନ ବହିଥାଏ । ସ୍ୱାଧୀନତା ଓ ଆବଶ୍ୟକତା (Freedom and Necessity) । ଏଥିରେ ପୃଥିବୀର ଅର୍ଥନୀତିର କ୍ରମବିକାଶର ଏକ ସଂକ୍ଷିପ୍ତ ଇତିହାସ ସରଳ ଭାଷାରେ ଦିଆଯାଇଛି ଓ ଭବିଷ୍ୟତର ଲକ୍ଷ୍ୟ ବିଷୟରେ ବି ଉପାଦେୟ ଆଲୋଚନା କରାଯାଇଛି । ଛାତ୍ର-ଯୁବକ ତ ସେଠି ବହୁତ ଥା'ନ୍ତି । ମଦନବାବୁ ହେରିକାଙ୍କ ସଙ୍ଗରେ ଆଲୋଚନା କରି ସ୍ଥିରହେଲା ଯେ, ପ୍ରତିଦିନ ଘଣ୍ଟାଏ ପାଠଚକ୍ର କରାଯିବ । ସେହି ଅନୁସାରେ ପ୍ରଥମେ ଦିନେ ରବିନ୍‌ସନଙ୍କ ବହିପଢ଼ା ଆରମ୍ଭ ହେଲା । ଏ ପାଠଚକ୍ରରେ ପ୍ରାୟ ସମସ୍ତେ ଜୁଟିଗଲେ । ପଢ଼ା ଆରମ୍ଭ ହେଲା, ଦୁଇ ତିନି ପୃଷ୍ଠା ପଢ଼ା ହେଇଛି କି ନାହିଁ ବିବର୍ତ୍ତନବାଦର ଉଲ୍ଲେଖ ଆସିଲା; ମନୁଷ୍ୟେତର ପ୍ରାଣୀମାନଙ୍କର ଅର୍ଥନୀତି କିପରି ତାହାର ଆଲୋଚନା । ଏ ପ୍ରସଙ୍ଗ ଆସିବାମାତ୍ରେ ମୋର ପୁରାତନ ବନ୍ଧୁ ଶ୍ରୀ ଭୂପେନ୍ଦ୍ରନାଥ ବସୁ, ଓକିଲ, ହଠାତ୍ ଉଠିପଡ଼ି ଛିଡ଼ାହେଲେ ଓ ଘୋଷଣା କଲେ ଯେ, ବିବର୍ତ୍ତନବାଦ ହିନ୍ଦୁଧର୍ମର ସିଦ୍ଧାନ୍ତର ବିରୁଦ୍ଧାତ୍ମକ ଓ ଏହାର ଆଲୋଚନା ଶୁଣିବା ପାପ । ତେଣୁ ସେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସଦସ୍ୟ ଯୁବକମାନଙ୍କୁ ସେଠି ଉଠିଯିବା ପାଇଁ ନିର୍ଦ୍ଦେଶ ଦେଲେ ଓ ନିଜେ ଉଠିଗଲେ । ତାଙ୍କ ପଛେ ପଛେ ରା. ସ୍ୱ. ସଂଘର କୋଡ଼ିଏଜଣ ସରିକି ପିଲା ଉଠିଗଲେ । ତଥାପି ପିଲାମାନଙ୍କର କୌତୂହଳ

ଅନୁଶାସନ ନିଷ୍ଠାକୁ ବଳିଯାଇଥାଏ ଓ ନିଷେଧାଜ୍ଞା ସତ୍ତ୍ୱେ କେତେକ ପିଲା ଆସି ପରବର୍ତ୍ତୀ ଦିନମାନଙ୍କରେ ଯୋଗଦେଉଥା'ନ୍ତି । କିନ୍ତୁ ଏଥିପ୍ରତି ପୂର୍ଣ୍ଣ ସତର୍କତା ଅବଲମ୍ବନ କରାଯାଇଥାଏ ଓ କୌଣସି ପିଲା ପାଠଚକ୍ରରେ ବସିଥିବାର ଦେଖାଗଲେ କେହି ଜଣେ ଆସି ତାଙ୍କୁ ଡାକି ନେଇ ଯାଉଥାଏ । ତଥାପି ଅଳ୍ପ କେତେଜଣ ଯୁବକ ବରାବର ପାଠଚକ୍ରରେ ଯୋଗ ଦେଉଥିଲେ । ସେମାନଙ୍କର କହିବାର କଥା ଯେ, ବିଷୟଟା କ'ଣ ତା' ତ ଜାଣିବା, ସେଥିରେ ବିଶ୍ୱାସ କରିବାକୁ ହିଁ ହେବ ଏମିତି କିଛି କଥା ନାହିଁ ।

କଟକରେ ଜେଲ କର୍ତ୍ତୃପକ୍ଷଙ୍କ ସହିତ ମଝିରେ ମଝିରେ କୌଣସି ନା କୌଣସି ବିଷୟ ନେଇ ଝଗଡ଼ା ଲାଗୁଥିଲା । ଢେଙ୍କାନାଳର ଅଳ୍ପ କେତେକ ଥିବାରୁ ଜେଲ କର୍ତ୍ତୃପକ୍ଷ ବରାପର କଏଦୀଙ୍କ ପାଇଁ ବରାଦ ଥିବା ଖାଦ୍ୟ, ଲୁଗାପଟା ଆଦିରୁ ଚୋରି କରନ୍ତି, ଏକଦୀଙ୍କ ପାଇଁ ବରାଦ ହୋଇଥିବା ପନିପରିବା, ଅଟା, ଚାଉଳରୁ ଜେଲର ପ୍ରଭୃତିଙ୍କ ଘରକୁ ଭାଗ ଯାଏ । ସାଧାରଣ କଏଦୀ ଏସବୁ ବିରୋଧରେ କିଛି କହିପାରିବ ନାହିଁ । ରାଜନୀତିକ ବନ୍ଦୀମାନେ ଏସବୁ ବ୍ୟାପାରକୁ ସହ୍ୟ କରନ୍ତ ନାହିଁ ଓ ଦାବୀ ଉଠେଇ ଝଗଡ଼ା କରନ୍ତି । ଏହା ଛଡ଼ା ଖାସ ଦାବୀ ବି ଥାଏ । ଯେମିତି ଥରେ ଯୁଝିଆନାଙ୍କର (ଯୁଧିଷ୍ଠିର ଦାସ, ୧୯୯୦ ରେ ଓଡ଼ିଶାର ବାଚସ୍ପତି) ଜୋତା ଦାବି ନେଇ । ଚପଲ ବର୍ଷକରେ ହଳେ ଅଟକ ବନ୍ଦୀମାନଙ୍କୁ ଦେବାର ନିୟମ ଥାଏ । ଯୁଝିଆନା କହିଲେ ଯେ, ତାଙ୍କର ପାଦର କେତେକ ଦୋଷ ଯୋଗୁଁ ତାଙ୍କୁ ଜୋତା ପିନ୍ଧିବାକୁ ହୁଏ । ହେଲେ କର୍ତ୍ତୃପକ୍ଷ ନାସ୍ତିବାଣୀ ଶୁଣାଇଲେ । ଯୁଝିଆନା ନମ୍ବରରେ ବନ୍ଦ ହେବେ ନାହିଁ ବୋଲି ଧମକ ଦେଲେ । ତାଙ୍କୁ ନେଇ ଦିନାକେତେ ସେଲ୍‌ରେ ଏକୁଟିଆ ରଖାହେଲା । ଶେଷକୁ ତାଙ୍କୁ ଜୋତା ମିଳିଲା । ମାତ୍ର ସେଲ୍‌ର ନିର୍ଜନତା ତାଙ୍କର ପସନ୍ଦ ହେବାରୁ ପରେ ସେ ସେଇଠି ରହିଗଲେ ।

ମୁଁ କଟକ ଫେରିବାପରେ ରବିସାହୁ ଓ ଅନ୍ୟ କିଏ ଜଣେ ଦୁଇଜଣ ଖଲାସ ହେଇଗଲେ । ତା'ପରେ ଦିନେ ମୋର ଖଲାସ ହେବାର ପରୱାନା ଆସିଲା । ଉପରଓଳି ପାଞ୍ଚଟାବେଳେ ହେବ । ବନ୍ଧୁମାନେ ଖୁବ୍ ଅଭିନନ୍ଦନ ଜଣାଇଲେ । ବାହାରେ ଯାଇ କ'ଣ କରାଯିବ ତା'ର ପରାମର୍ଶ ମଧ ଦେଲେ । ବନ୍ଦୀସାଥୀମାନଙ୍କୁ ଛାଡ଼ିଯାଉ ଥିବାରୁ ଟିକିଏ ବିଷାଦମିଶା ଖୁସି ମନରେ ଜେଲ ଅଫିସକୁ ଗଲି । ସେଠି ଆବଶ୍ୟକ ଲେଖାପଢ଼ିପରେ ମତେ ବାହାରକୁ ଛାଡ଼ିଦିଆଗଲା । ଗୋଟିଏ ରିକ୍ସା ଡକାହେଇ ରହିଥାଏ । ସେଥିରେ ମୋର ଜିନିଷପତ୍ର ଥୋଇଛିକି କି ନାହିଁ, ଏଇ ପୁଲିସ ଜିପ୍ ଆସି ପହଞ୍ଚିଲା । ସେଥିରୁ ଜଣେ ଅଫିସର ଓହ୍ଲେଇ ଆସି ମତେ କହିଲେ, "ରିକ୍ସାରେ କାହିଁକି ଯିବେ ? ଚାଲନ୍ତୁ, ଆମେ ଘରେ ଛାଡ଼ିଦେବୁ ।" ସେଠି ଯଦି ମୁଁ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ରିକ୍ସାରେ ରମାନା ହେଇଥାନ୍ତି ତେବେ ସେ କ'ଣ କରିଥା'ନ୍ତେ କେଜାଣି, ମାତ୍ର ମୁଁ କେତେକଟା ସରଳ ବିଶ୍ୱାସରେ ଓ କେତେକଟା ସେ ପରିସ୍ଥିତିରେ ମୋର ନିଜର ନାଚାର ଅବସ୍ଥା ଯୋଗୁଁ ରାଜି ହେଇଗଲି ।

ଜିପ୍ ସେତେବେଳେ ନୟାସଡ଼କ ଦେଇ ନିମଚୌଡ଼ିଆଡ଼େ ମୁହାଁଇଲା, ସେତେବେଳେ ମୁଁ ପଚାରିବାରୁ ଅଫିସର ଜଣକ କହିଲେ ଯେ, ଲାଲ୍‌ବାଗ ଥାନାରେ ଟିକିଏ କାମସାରି ମତେ ଘରେ ପହଞ୍ଚେଇ ଦେବେ । ମାତ୍ର ଥାନାରେ ମତେ ବସେଇଦେଇ ସେ କୁଆଡ଼େ ଚାଲିଗଲେ ଓ ଘଣ୍ଟାଏ ଦେଢ଼ଘଣ୍ଟା ପରେ ଏକ ନୂଆ ଅଟକ ପରୱାନା ନେଇ ପହଞ୍ଚିଲେ ଓ ମତେ ପୁଣି ନେଇ କଟକ ଜେଲରେ ଦାଖଲ କଲେ । ପ୍ରଥମ ଅଟକ ପରୱାନାରେ ଯେଉଁ ତ୍ରୁଟି ଥିଲା ତାକୁ ଦୂରକରିବା ପାଇଁ ଏ ନାଟକ କରାହେଲା ତ୍ରୁଟିରହିତ ନୂଆ ପରୱାନା ଜାରି କରି । ମୁଁ ପୁଣି ଷୋଳ ନମ୍ବରରେ ଯାଇ ପହଞ୍ଚିଲି । ସେତେବେଳକୁ ୱାର୍ଡ଼ ବନ୍ଦ ହେଲାଣି । ପୁଣି ଖୋଲି ମତେ ସେଥିରେ ପୁରାହେଲା । ମୁଁ ପହଞ୍ଚୁ ଆଗେ ଖାଦ୍ୟ କିଛି ଅଛି କି ନାହିଁ ପଚାରିଲି । ବିସ୍ମିତ ବନ୍ଧୁମାନେ ତରତର ହୋଇ ଖାଦ୍ୟ ଯୋଗାଡ଼ କରିଦେଲେ ।

କଟକ ଜେଲରେ ମଧ ଖାଦ୍ୟ ଓ ରୋଷେଇ ବ୍ୟବସ୍ଥାର ଦାୟିତ୍ୱ ଅଟକ ବନ୍ଦୀମାନେ ନିଜେ ନେଇଥା'ନ୍ତି । ଶାରଦା ମହାନ୍ତି ତା'ର ଦାୟିତ୍ୱରେ ଥା'ନ୍ତି । ସେ ଅତି ଅମାୟିକ ଓ କର୍ମଠ ବ୍ୟକ୍ତି, ମାମୁଁଘର ସଂପର୍କରେ ଆମର ବନ୍ଧୁବାନ୍ଧବ । ସେ ସାରାଦିନ ରସଦ ସଂଗ୍ରହ, ରୋଷେଇବାସ, ପରିବେଷଣ ଆଦି କାମରେ ମାତିଥା'ନ୍ତି । କେବେ କ୍ଳାନ୍ତ ହେବାର ବା ବିରକ୍ତ ହେବାର ଦେଖୁନାହିଁ । ସଂଗ୍ରାମ ମହାପାତ୍ର ମଧ ଖାଇବା ଓ ଅନ୍ୟ ସୁବିଧା, ଅସୁବିଧା ବୁଝିବା ଭାର ନେଇଥା'ନ୍ତି । ବରାବର ଅଫିସକୁ ଯାଇ କର୍ତ୍ତୃପକ୍ଷଙ୍କ ସହିତ ବୁଝାପଡ଼ା କରନ୍ତି ।

ଏଥର ଜେଲ୍‌ରେ ଭଲିବଲ୍ ଆଦି ଖେଳ ପ୍ରତି ବିଶେଷ ଆଗ୍ରହ ଥିବାର ଦେଖାଗଲା ନାହିଁ । ତେବେ ଗୁଡ଼ିଉଡ଼ାର ଖୁବ୍ ଧୂମ ଚାଲିଲା । କଟକ ଜେଲ ସହରର ଏକାବେଳେ ମଝିରେ । ଶୀତଦିନେ କଟକରେ ଗୁଡ଼ିଉଡ଼ାର ଧୂମ୍ ଚାଲେ ଓ ଅନେକ ଗୁଡ଼ି ଜେଲ ଉପରେ ଉଡ଼େ ଓ କଟି କରି ଜେଲ ଭିତରେ ପଡ଼େ ବା ତା' ଉପରଦେଇ ସୂତା ଝୁଲେଇ ଯାଏ । ସେସବୁକୁ ଧରି ପିଲାମାନେ ଉଡ଼ାନ୍ତି, ବାହାର ଗୁଡ଼ି ସାଙ୍ଗରେ ପେଞ୍ଚ କଷାକଷି ମଧ ବେଳେବେଳେ ହୁଏ । ଗୁଡ଼ି ଉଡ଼ାରେ ଅଟକ ଥିବା କାଗଜ-ବ୍ୟବସାୟୀ ଶଙ୍କରଲାଲ ଭୂତ ପାରଙ୍ଗମ ଥିଲେ । ପହରା ଦେଉଥିବା ୱାର୍ଡ଼ର ଜଣକ ଏଥିରେ ଆପତ୍ତି ନ କରି ଚୁପ୍ ରହନ୍ତି । ଜେଲ କର୍ତ୍ତୃପକ୍ଷ ବି ଜାଣି ନ ଜାଣିଲା ପରି ଥା'ନ୍ତି ।

ଏଥର ଜେଲ୍‌ରେ ମିସାରେ ନାନା ପ୍ରକାରର ଲୋକ ଅଟକ ହେଇଥିଲେ । ବିରୋଧୀ ଦଳମାନଙ୍କର ନେତା ଓ କର୍ମୀ ତ ଥା'ନ୍ତି । ମାତ୍ର ଜରୁରୀକାଳୀନ ପରିସ୍ଥିତି ଘୋଷଣାର ରାଜନୀତିକ ମତଲବକୁ ଘୋଡ଼ାଇବା ପାଇଁ ମାଳେ ସାଂପ୍ରଦାୟିକ ଓ ଅନ୍ୟ ଅଖ୍ୟାତ ସଂସ୍ଥାକୁ ବେଆଇନ କରାଗଲା ବୋଲି ସରକାର ପକ୍ଷରୁ ଘୋଷଣା ଓ ପ୍ରଚାର କରାଗଲା । ସେହି ଅନୁସାରେ ବହୁ ଲୋକଙ୍କୁ ଗିରଫ କରାଗଲା । ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ତ ଜେ.ପି.ଙ୍କ ଆନ୍ଦୋଳନରେ ଯୋଗ ଦେଇଥିଲା ଓ ତାହାଦ୍ୱାରା ପ୍ରଭାବିତ ଛାତ୍ରମାନେ ଅନେକକାଳ ପର୍ଯ୍ୟନ୍ତ କଟକରେ ଓ ଅନ୍ୟତ୍ର ଆଇନ ଅମାନ୍ୟ କରି କାରାବରଣ ବି କରୁଥିଲେ, ମାତ୍ର ଆନନ୍ଦମାର୍ଗ, ଜମାତେ ଇସଲାମି ପ୍ରଭୃତିର ଲୋକଙ୍କୁ ମଧ ଗିରଫ କରି ଅଟକ ରଖାଯାଇଥିଲା । ଏମାନଙ୍କର ଜେ.ପି.ଙ୍କ ସହିତ ବା ଜରୁରୀକାଳୀନ ପରିସ୍ଥିତି ବିରୋଧୀ ଆନ୍ଦୋଳନ ସହିତ କୌଣସି ସଂପର୍କ ନଥିଲା । ଏହାଛଡ଼ା

କଳାବଜାର ଦମନ ନାଁରେ କେତେକ ବ୍ୟବସାୟୀଙ୍କୁ ମଧ୍ୟ ଅଟକ ରଖା ହେଉଥିଲା ଓ ଜଣାଗଲା ଯେ ସେମାନଙ୍କଠାରୁ ମୋଟ ଟଙ୍କା, ଲକ୍ଷ ଲକ୍ଷ ପରିମାଣରେ, ଦାବୀ କରାହେଲା ଓ ଆଦାୟ କରାହେଇ ସେମାନଙ୍କୁ ଛାଡ଼ିଦିଆଗଲା । ଟଙ୍କା ନ ଦେଲେ ସେହିମାନଙ୍କ ପରି ଅବସ୍ଥା ହେବ ବୋଲି ଧମକ ଦେଇ ଅନ୍ୟ ସମସ୍ତ ବ୍ୟବସାୟୀଙ୍କଠାରୁ ମଧ୍ୟ ଟଙ୍କା ଆଦାୟ କରାଗଲା ।

କଟକରେ ଆମ ସାଙ୍ଗରେ ବିଶିଷ୍ଟ ବ୍ୟବସାୟୀ ଶ୍ରୀ ଗଜାନନ୍ଦ ଅଗ୍ରୱାଲଙ୍କୁ ଅଟକ କରିରଖା ହେଉଥାଏ । ସେ ବେଶ୍ ପ୍ରଫୁଲ୍ଲ ଥା'ନ୍ତି । ତାଙ୍କର କେହି ସାକ୍ଷାତ କରିବାକୁ ଆସିଲେ ଭଲ ଲୁଗାପଟା ପିନ୍ଧି ଛାତିରେ ଏକ ଗୋଲାପ ଫୁଲ ଲଗେଇ ଦେଖା କରିବାକୁ ଯା'ନ୍ତି, କହନ୍ତି, "ମୁଁ ଘରବାଲାଙ୍କୁ ଜଣେଇବାକୁ ଚାହେଁ ଯେ, ମୁଁ ଏଠି ବେଶ୍ ଖୁସିରେ ଅଛି । ତା' ହେଲେ ସେମାନେ ମୋ ପାଇଁ ଚିନ୍ତାଗ୍ରସ୍ତ ହେବେ ନାହିଁ ।" ମାତ୍ର ସମସ୍ତେ ଏଭଳି ନଥିଲେ । ବ୍ୟବସାୟ ବା ରାଜନୀତି ସହିତ ସଂପର୍କ ନ ଥିବା ଅନ୍ୟ ଅଟକ ବନ୍ଦୀଙ୍କ କଥା ତ ଛାଡ଼, ରାଜନୀତିରେ ବୁଡ଼ି ରହିଥିବା କେହି କେହି ସାଥୀ ଘରଲୋକଙ୍କ ସହିତ ସାକ୍ଷାତବେଳେ ଭାଙ୍ଗି ପଡୁଥିବାର ମୁଁ ଜାଣିଛି । ସେମାନଙ୍କୁ ସମାଲୋଚନା କରିବାକୁ ମୁଁ ଏକଥା କହୁନାହିଁ । ବିନା ବିଚାରରେ ଅନନ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଅଟକ ରହିବା, ପରିବାରଠାରୁ ଅଲଗା ହେଇ ଘରର ନାନା ଦୈନନ୍ଦିନ ସମସ୍ୟାରେ କୌଣସି ସାହାଯ୍ୟ ନ କରିପାରିବା ଓ ଅସହାୟ ଭାବରେ ଘର ଲୋକଙ୍କର ନାନା ପ୍ରକାର ଦୁଃଖକଷ୍ଟର ମୂକ ସାକ୍ଷୀ ହେଇ ରହିବା କିଛି କମ୍ ଯନ୍ତ୍ରଣା ନୁହେଁ । ଦେଶ ପକ୍ଷରେ ଗର୍ବର କଥା ଯେ, ବହୁ ଅଧିକ ସଂଖ୍ୟକ ଅଟକବନ୍ଦୀ ଏ ଯାତନାକୁ ଛାତି ପଥର କରି ସହିଥିଲେ ଏବଂ ମନେ ରଖିବାକୁ ହେବ ଯେ, ସମସ୍ତେ କିଛି ସରକାରର ଗଣତନ୍ତ୍ର ବିରୋଧୀ ନୀତିର ବିରୋଧ କରି ଅଟକ ହେଇ ନଥିଲେ । ଅନେକଙ୍କୁ ଉପରେ କୁହାଯାଇଥିବା ଭଳି ମନମୁଖୀ ଭାବରେ ଅଟକ କରାହେଉଥିଲା ।

କଟକରେ ମୋର ବେଶିଦିନ ରହିବାର ବରାଦ ନଥିଲା । ଦିନେ ସକାଳେ ହଠାତ୍ ହୁକୁମ ଆସିଲା ଯେ ମତେ ପୁରୀ ଯିବାକୁ ହେବ । ସେ ସମୟରେ ମୋର ବେକକଷେରେ ପୂର୍ବରୁ ଥିବା ଏକ ସମସ୍ୟା ବଢ଼ିଥାଏ । ବେକ ଡାହାଣ ବାଁକୁ ବୁଲେଇଲାବେଳକୁ ପୂରା ଯାଉ ନଥାଏ, କଷ୍ଟ ହେଉଥାଏ । ପୂର୍ବରୁ ଡାକ୍ତର ଦେଖି ତାହା spondylosis ବୋଲି କହିଥିଲେ । ମେରୁଦଣ୍ଡର ହାଡ଼ମାନଙ୍କ ମଝିରେ ଥିବା ନରମ ମାଂସପେଶୀ ଜାତୀୟ ବସ୍ତୁର ଗଦୀ ବୟସ ହେଲେ ଘୋରି ହେଇଯାଏ ଓ ତାକୁ ଚିକ୍‌କଣ ରଖି ଘର୍ଷଣ ଊଣା କରୁଥିବା ତରଳପଦାର୍ଥ ମଧ୍ୟ କମିଯାଏ । ଫଳରେ ହାଡ଼ହାଡ଼ ଭିତରେ ଘର୍ଷଣ ବଢ଼ି ଏପରି ହୁଏ । ବାହାରେ ମୁଁ ଏହାର ଚିକିତ୍ସା କରାଉଥିଲି । ଜେଲରେ ଆସି ଏଇ ସମସ୍ୟାଟା ବଢ଼ିଗଲା । କଟକ ଜେଲରେ ବ୍ରହ୍ମପୁରରୁ ଧରାହେଇ ଆସିଥିବା ଶ୍ରମିକ ନେତା ଶ୍ରୀ ଅବିର ପାଢ଼ୀ ଥା'ନ୍ତି । ତାଙ୍କର ଏହି ସମସ୍ୟା ଏତେ ବଢ଼ିଯାଇଥାଏ ଯେ, ସେ ମୁହଁ ଆଦୌ ବୁଲେଇ ପାରୁ ନଥାନ୍ତି କି ଟେକି ପାରୁନଥା'ନ୍ତି । ତାଙ୍କୁ ଡାକ୍ତରଖାନାରୁ ନେଇ ରଶ୍ମିବିକିରଣ ଚିକିତ୍ସା କରାଗଲା । ଫଳରେ ତାଙ୍କର ବେକକଷେର ଗୁମସବୁ

ଢଳିଯାଇ ସେ ଅରାକ ଚନ୍ଦା ହୋଇଗଲା । ମାତ୍ର କଷ୍ଟର ଉପଶମ କିଛି ହେବାର ଜଣାଗଲା ନାହିଁ । ତାଙ୍କ ଅବସ୍ଥା ଦେଖି ମୋର ଭୟ ହୋଇଗଲା । ଡଃ ରାଧାଚରଣ ମହାନ୍ତି ମୋର ଚିକିତ୍ସା କରୁଥା'ନ୍ତି । ସେ ଏକ୍ସ-ରେ ଆଦି ସରିବା ଯାଏ ଦୁଇ ଚାରିଦିନ ବଦଳି ରହିତ କରିବା ପାଇଁ ଜେଲର ମହୋଦୟଙ୍କୁ ଅନୁରୋଧ କଲି । ଜେଲର୍ କୌଣସି ଦାୟିତ୍ୱ ନେବାକୁ ପ୍ରସ୍ତୁତ ନଥିଲେ । ସେ ସେଠୁ ଜେଲ୍ ସୁପରିଟେଣ୍ଡେଣ୍ଟ ଦାୟିତ୍ୱ ତୁଲାଇଥିବା ଜିଲ୍ଲାର ସିଡ଼ିଏମ୍.ଓ. ବା ମୁଖ୍ୟ ଚିକିତ୍ସା ଅଧିକାରୀଙ୍କୁ ଖୋଜିଲେ । ସେ ନଥିଲେ । ତାଙ୍କ ତଳକୁ ଥିବା ଅଧିକାରୀ ଡଃ ମହାମାୟା ପଟ୍ଟନାୟକ ଆସିଲେ । ଆସି ସବୁ କାଗଜପତ୍ର ଦେଖିଲେ, ମାତ୍ର ଉପରୁ ଆସିଥିବା ହୁକୁମରେ କୌଣସି ପରିବର୍ତ୍ତନ ସୁପାରିଶ କରିବାର ତାଙ୍କର ବୋଧହୁଏ ସାହସ ହେଲା ନାହିଁ । ତେଣୁ ମୋତେ ପୁରୀ ଯିବାକୁ ହେଲା, ଏଥର ଆଉ ରାତି ଅଧିଆ ପୁଲିସ୍ ଗାଡ଼ି ନୁହେଁ । ମତେ ବସ୍‌ରେ ନିଆ ହେଲା । ଜଣାଗଲା ଯେ, ଦେଶର ଅବସ୍ଥା ଅପେକ୍ଷାକୃତ ଶାନ୍ତ । ତେଣୁ ଶାସକମାନେ ଆଉ ସେତେ ତ୍ରସ୍ତ ଅବସ୍ଥାରେ ନାହାନ୍ତି ।

## ପୁରୀ ଜେଲ୍ ଓ କଟକ ଡାକ୍ତରଖାନା

ପୁରୀ ଜେଲ୍‌ରେ ଗୋଟିଏ ଏକପାଖିଆ ସାନ ୱାର୍ଡ଼ରେ ଅଟକବନ୍ଦୀମାନେ ରଖାଯାଇଥା'ନ୍ତି । ଏଠି ପ୍ରାୟ କୋଡ଼ିଏ ଜଣ ବନ୍ଦୀମାନଙ୍କ ପାଇଁ ସ୍ଥାନ ଥାଏ ଓ ସେତିକି ଥା'ନ୍ତି । ଏଠି ଚିତ୍ତରଂଜନ ମହାନ୍ତି ଓ ତାଙ୍କ ଭାଇ ମୀନକେତନ ଥା'ନ୍ତି । ସେମାନେ ମୋ ପାଇଁ ଗୋଟିଏ ମୁଣ୍ଡକୁ ଝରକା ପାଖରେ ଗୋଟିଏ ସୁବିଧାଜନକ ସ୍ଥାନ କରିଦେଲେ । ସେଠି ଅନ୍ୟମାନଙ୍କ ଭିତରେ ଜଟଣୀର ସମାଜବାଦୀ କର୍ମୀ ଶରତ ମହାନ୍ତି ଓ ଅଜୟ ମିଶ୍ର ଥା'ନ୍ତି । ରା.ସ୍ୱ. ସଂଘର ଜଣେ ମହାରାଷ୍ଟ୍ରୀ ପ୍ରଚାରକ ଶ୍ରୀ ଗୋବିନ୍ଦ ଆଚାର୍ଯ୍ୟ ଓ ଅନ୍ୟ କେତେଜଣ ସ୍ୱୟଂସେବକ ମଧ ଥା'ନ୍ତି । ମହାଜନୀ କରୁଥିବା ନାଁରେ ଧରାହୋଇଥିବା ଦୁଇ ତିନିଜଣ ମଧ ଥା'ନ୍ତି । ଏଠିକା ଜେଲର୍ ଶ୍ରୀ ତ୍ରିପାଠୀ ବେଶ୍ ସହୃଦୟ ବ୍ୟକ୍ତି ଓ ତାଙ୍କର ରାଜନୀତିକ ବନ୍ଦୀମାନଙ୍କ ପ୍ରତି ଖୁବ୍ ସହାନୁଭୂତି ଥାଏ । ଏଠି ମୋର ଲେଖାପଢ଼ା ଆଦି କାମ ନିୟମିତ ଚାଲିଲା । ଇତି ପୂର୍ବରୁ ଆରମ୍ଭ କରିଥିବା 'ହାଟବଜାରର ବ୍ରହ୍ମଜ୍ଞାନ' ଲେଖା ମଧ ଅନେକଟା ଆଗେଇଲା । 'ପରଶମଣିର ସନ୍ଧାନେ' ଲେଖା ସରିଗଲା ଓ ତା'ର ପାଣ୍ଡୁଲିପିର ପରିଷ୍କାର ନକଲ କରିବାରେ ସେଠାରେ ଥିବା ବନ୍ଧୁମାନେ ବହୁତ ପରିଶ୍ରମ କଲେ, ବିଶେଷକରି ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ର ଓ ଶ୍ରୀ ଦେବେନ୍ଦ୍ର ପ୍ରସାଦ ଦାସ ।

ଏଠି ମୋର ମନେହେଲା ଯେ କେତେକ ବନ୍ଦୀଙ୍କ ଭିତରେ କର୍ମଚାରୀ ଓ ଅନ୍ୟମାନଙ୍କର ସହାନୁଭୂତିର ସୁଯୋଗ ନେବାର ଝୁଙ୍କ ଦେଖାଯାଉଛି । ବାହାର ଡାକ୍ତର ନିୟମିତ ଆମକୁ ଦେଖିବାକୁ ଆସନ୍ତି ଓ କେତେକଙ୍କ ପାଇଁ ଖାସ୍ ଆବଶ୍ୟକତା ନଥିଲେ ବି ଦାମୀ ଦାମୀ ଟନିକ୍ ଆଦି ବରାଦ କରିଦିଅନ୍ତି । ରା.ସ୍ୱ. ସଂଘର ପ୍ରଚାରକ ମହୋଦୟ ଦିନେ ହଠାତ୍ ଜିଦି ଧରିବସିଲେ ଯେ, ସେ କେବଳ ଦୁଧ ପିଇ ରହିବେ । ଦୈନିକ ଖୋରାକୀ ପାଇଁ ବରାଦ ଅର୍ଥରେ ସେତେ ପରିମାଣ

ଦୁଧ କିଣାଯାଇ ପାରି ନଥା'ନ୍ତା । ତେଣୁ ଆଚାର୍ଯ୍ୟଙ୍କୁ କେତେଦିନ ଅନଶନ କରିବାକୁ ପଡ଼ିଲା ଓ ତାହାପରେ ତାଙ୍କର ଦାବୀ ପୂରଣ ହେଲା ।

କଟକରେ ଚିକିତ୍ସା ପାଇଁ ମୁଁ ତ ଆଗରୁ ଦରଖାସ୍ତ କରିଥିଲି । କେତେ ମାସପରେ ତାହାର ବିଚାର ହୋଇ ମତେ କଟକ ବଦଳି କରିବାକୁ ହୁକୁମ ଆସିଲା । ମୁଁ କଟକ ଗଲି ଓ ଅଳ୍ପଦିନ ଭିତରେ ମତେ କଟକ ଡାକ୍ତରଖାନାରେ ଭର୍ତ୍ତି କରିବା ପାଇଁ ଡାକ୍ତର ପରାମର୍ଶ ଦେଲେ ଓ ଦିନେ ମୁଁ ଡାକ୍ତରଖାନାକୁ ନିଆହୋଇ ଅସ୍ତ୍ରଶଲ୍ୟ ଚିକିତ୍ସା ବିଭାଗର ନୂଆ ହୋଇ ତିଆରି ହୋଇଥିବା ଦୋତାଲା କୋଠାର ଦୋମାହାଲାରେ ଗୋଟିଏ ଖଟିଆ ଦଖଲ କଲି । ସୌଭାଗ୍ୟକ୍ରମେ ୱାର୍ଡ଼ଟି ନୂଆ ଖୋଲା ହୋଇଥିବାରୁ ଅପେକ୍ଷାକୃତ ପରିଷ୍କାର ଥାଏ, ମାତ୍ର ତଥାପି ହିନସ୍ତାର ଅନ୍ତ ନଥାଏ । ଗାଧୁଆଘର ଓ ପାଇଖାନାର ନକ୍ସା କରାହେବାବେଳେ ଡାକ୍ତରଖାନାର ବିଶିଷ୍ଟ ଆବଶ୍ୟକତାକୁ ଦୃଷ୍ଟିରେ ରଖାହୋଇ ନ ଥିବାର ଜଣାଗଲା । କାରଣ ସେଠି ରୋଗୀଙ୍କର ବେଡ୍‌ପ୍ୟାନ ଓ ୟୁରିନାଲ ଧୋଇବା ଓ ରଖିବା ପାଇଁ କୌଣସି ସ୍ଥାନ ରଖା ହୋଇନଥାଏ । ପରିଶ୍ରା ଜାଗାରେ ସେସବୁ ଜମା କରାହେବାରୁ ସେ ସ୍ଥାନ ଆଉ କେହି ବ୍ୟବହାର କରିପାରନ୍ତି ନାହିଁ । ଦୁଇଟି ଗାଧୁଆଘରୁ ଗୋଟିକରେ ଅଇଁଠା ବାସନ ଜମା କରାହୁଏ ଓ ଧୂଆହୁଏ ଓ ସେଇଟି ଅକାମୀ ହୋଇ ରହିଥାଏ ।

ରୋଗୀଙ୍କ ପାଖରେ କେବଳ ନିର୍ଦ୍ଦିଷ୍ଟ ସାକ୍ଷାତ ସମୟ ଛଡ଼ା ଅନ୍ୟ ସମୟରେ ବାହାର ଲୋକ କେହି ନ ରହିବା କଥା, ମାତ୍ର ଆମ ଦେଶର ବାସ୍ତବତା ହେଲା ଯେ, ରୋଗୀଙ୍କ ପାଖରେ ତାଙ୍କର ଯତ୍ନ ନେବା ପାଇଁ ଘରଲୋକ ନ ରହନ୍ତେ ତ ଡାକ୍ତରଖାନାମାନଙ୍କରେ ମୃତ୍ୟୁହାର ଅସମ୍ଭବ ରକମର ବଢ଼ିଯା'ନ୍ତା । ତେଣୁ କାର୍ଯ୍ୟତଃ ରୋଗୀଙ୍କ ନିଜ ଲୋକଙ୍କୁ ବରାବର ରୋଗୀଙ୍କ ପାଖରେ ରହିବାକୁ ଦିଆଗଲେ ବି ନିୟମ ଅନୁସାରେ ସେମାନଙ୍କର ଅସ୍ତିତ୍ୱ ସ୍ୱୀକୃତ ନୁହେଁ । ତେଣୁ ସେମାନଙ୍କୁ ଆଖିଆଗରେ ରଖି ପର୍ଯ୍ୟାପ୍ତ ସଂଖ୍ୟାରେ ପାଇଖାନା ଆଦିର ବ୍ୟବସ୍ଥା ୱାର୍ଡ଼ମାନଙ୍କରେ କରାଯାଇ ନାହିଁ । ଆମ ଲୋକଙ୍କୁ ସାର୍ବଜନୀକ ପରିଚ୍ଛନ୍ନତା ବିଷୟରେ ଶିକ୍ଷା ଦେବାର କୌଣସି ବ୍ୟବସ୍ଥା କେଉଁଠି ନାହିଁ । ଡାକ୍ତରଖାନାରେ ମଧ 'ଯା କରନାହିଁ ତା କର' ବୋଲି ଖଣ୍ଡେ ଖଣ୍ଡେ ପୋଷ୍ଟର ମରାହେଲେ ବି କେତେ କଥା ହୁଅନ୍ତା । ମାତ୍ର ସେ କଥା କେହି ଭାବିବାକୁ ନାହିଁ ।

ଫଳରେ ଗାଧୁଆଘର ପାଇଖାନା ଅବସ୍ଥା ବେଳେବେଳେ ଭୟଙ୍କର ହୋଇଯାଏ । ଆଧୁନିକ ଧରଣର ପାଣିଢଳା ପାଇଖାନାକୁ ଅନେକ ଅଳିଆ ଡବାପରି ବ୍ୟବହାର କରି ସେଥିରେ ଠୁଙ୍ଗା, ପାଉଁରୁଟି ଗୁଡ଼ା କାଗଜ, ଫଳଚୋପା ଆଦି ପକେଇ ଦିଅନ୍ତି ଓ ଅନ୍ୟମାନେ ପାଣିକଳକୁ ଖୋଲା ଛାଡ଼ିଦେଇ ଆସନ୍ତି । ଫଳରେ ପାଇଖାନା ଭିତରଯାକ ପୋଖରୀ ଭଳି ପାଣି ଜମା ହୋଇଯାଏ, କେହି ସଫେଇବାଲା ଆସି ପରିଷ୍କାର ନ କରିବାଯାଏ । ଦିନେ ରାତିରେ ତ ଘଟଣା ଶେଷ ସୀମାରେ ପହଞ୍ଚିଲା । ମୁଁ ଅଧରାତିରେ ପରିସ୍ରା କରିବାକୁ ଉଠି ୱାର୍ଡ଼ ଦରଜାରେ ଗୋଡ଼ ଦେବାବେଳକୁ ଦେଖିଲି ଯେ, ବାରନ୍ଦାଯାକ ପାଣି । ମତେ ଜଗିବା ପାଇଁ ଯେଉଁ ଛଅଜଣ ସଶସ୍ତ୍ର

ପୋଲିସ୍ ସେ ବାରନ୍ଦାର କିଛି ଅଂଶ ଦଖଲ କରି ତାଙ୍କର ବୋକଚାବୋକଚି ଧରି ବସିଥା'ନ୍ତି ସେମାନେ କୁଆଡ଼େ ପଳେଇଗଲେଣି । ପାଇଖାନାଆଡ଼କୁ ଚାହିଁବା ବେଳକୁ ତା' ଦୁଆରେ ବଳାଗଣ୍ଠିଏ ପାଣି । ପାଣି ୱାର୍ଡ଼ ଭିତରକୁ ପଶି ନାହିଁ, ମାତ୍ର ପାହାଚ ଦେଇ ତଳକୁ ବହିଚାଲିଛି । ପହରାବାଲାମାନେ ବାରନ୍ଦାର ବିପରୀତ ମୁଣ୍ଡରେ ଯାଇ ଆଶ୍ରୟ ନେଇଛନ୍ତି । ମୁଁ ତଳମହଲାକୁ ଯାଇ କାମ ସାରିଲି । ସକାଳେ ଡେରିରେ ସଫେଇବାଲା ଆସି ପାଇଖାନାରୁ ଅଳିଆ ସଫା କରିବାରୁ ଆମେ ହଟହଟାରୁ ରକ୍ଷା ପାଇଲୁ ।

ଆମେ ପିଲାଦିନେ ଖେଳିବାବେଳେ ଥଟାରେ କହୁଥିଲୁ, "ତତେ ସାତଦିନ ଫାଶୀ ହୁକୁମ ହେଲା ।" ମୋର ସେମିତି ସେଠି ଚିକିତ୍ସାର ବ୍ୟବସ୍ଥା ମାସେ ଖଣ୍ଡେ ଝୁଲେଇ ରଖିବାର କରାହେଲା । ମୁଁ ଗୋଟାଏ ଚୌକିରେ ବନ୍ଧାହେଇ ବସେ । ଚୌକି ପଛରେ ଏକ ଖୁଣ୍ଟ ଉପରେ ଏକ ଶଗଡ଼ି ଲାଗିଥାଏ । ତା' ଉପରଦେଇ ଗୋଟିଏ ରସ ଆସିଥାଏ ଓ ରସି ଆଗରେ ଥିବା ଚମଡା ପଟି ମୋର ଥୋମଣି ଓ ବେକକଷଣାରେ ବନ୍ଧା ହୁଏ । ରସିର ଅପର ମୁଣ୍ଡରେ ଦଶ କିଲୋ କି କେତେ ଓଜନ ଝୁଲାଇ ଦିଆଯାଏ । ମୋର ମୁଣ୍ଡକୁ ଗଣ୍ଡିରୁ ଅଲଗା କରିବାର ଯନ୍ତ୍ର ଏହିରୂପେ ଖଞ୍ଜାହେଇ ମୁଁ ସେଥିରେ ପ୍ରଥମେ ପାଞ୍ଚ ଦଶ ମିନିଟ୍‌ରୁ ଆରମ୍ଭକରି ଶେଷକୁ ପଚିଶ ମିନିଟ୍ ଯାଏ ବନ୍ଧା ହେଇ ରହେ । ମାତ୍ର ପ୍ରକୃତରେ ଏହାଦ୍ୱାରା ମେରୁଦଣ୍ଡଟା ଟାଣିହେଇ ତା'ର ହାଡ଼ମାନଙ୍କ ଭିତରେ ବ୍ୟବଧାନ ବଢ଼ିଯିବାରୁ ଚାପ ଓ ଘର୍ଷଣ ଉଣା ହେଇ ମତେ ବେଶ୍ ଆରାମ ଲାଗିଲା । ଏହା ସାଙ୍ଗକୁ ମୋର ଆଉ ଏକ ସମସ୍ୟା ଡାହାଣ ହାତ ଖୁଆ ବିନ୍ଧିବାର ବି ଚିକିତ୍ସା ଚାଲିଲା । ଚକ ବୁଲାଇବା ଆଦି କେତେକ ବ୍ୟାୟାମ ସେ ବିଭାଗରେ ଥିବା ଯନ୍ତ୍ରମାନଙ୍କରେ ମୁଁ ପ୍ରତିଦିନ କରେ ।

ଡାକ୍ତରଖାନାରେ ବହୁବିଧ ରୋଗୀଙ୍କ ଭିତରେ ଦିନରାତି ପଡ଼ିରହିବା, ଯନ୍ତ୍ରଣା, ମୃତ୍ୟୁ ଅହରହ ଦେଖିବା, ଗୋଟିଏ ପ୍ରକାରର ଦଣ୍ଡ । ୱାର୍ଡ଼ ବାହାରକୁ ଯାହା ସକାଳୁ ଘଣ୍ଟାଏ ଦେଢ଼ଘଣ୍ଟା ଚିକିତ୍ସା ପାଇଁ ତଳ ମହଲାକୁ ଯାଏ । ଉପର ତେତାଲା ମହଲା ଖାଲିପଡ଼ିଥାଏ । ସେଠି ଯାଇ ମୁଁ ଉପରଓଳି ଘଣ୍ଟାଏ ବାରନ୍ଦାରେ ଏ ମୁଣ୍ଡରୁ ସେ ମୁଣ୍ଡ ଚାଲିବା ବ୍ୟାୟାମ କରେ । ବାକିତକ ସମୟ ୱାର୍ଡ଼ ଭିତରେ ରହିବାକୁ ପଡ଼େ । ତେବେ ଏସବୁ ସତ୍ତ୍ୱେ ଗୋଟିଏ ସୁବିଧା ଥିଲା । ଅନ୍ୟ ରୋଗୀଙ୍କୁ ଦେଖିବାକୁ ତ ଲୋକ ଆସୁଥାନ୍ତି, ତାହା ଭିତରେ କେହି କେହି ପଶି ଆସି ମୋ ପାଖରେ ମୁହଁମାରି ଦେଇ ଯାନ୍ତି । ଏହାଛଡ଼ା ଘରୁ ଖାଇବା ଆସିବାକୁ ଅନୁମତି ମିଳିଥାଏ । ପ୍ରତିଦିନ ସୁମିତ୍ରା ଓ ଦିନେ ଦିନେ ଅନ୍ୟ କେହି ଖାଇବା ନେଇ ଆସନ୍ତି । ତାଙ୍କ ସାଙ୍ଗରେ ସାକ୍ଷାତ ଓ କଥାବାର୍ତ୍ତା ହୁଏ । ଖବର ମିଳେ । ନିୟମ ଅନୁସାରେ ସପ୍ତାହରେ ଥରେ ବିଧିବଦ୍ଧ ସାକ୍ଷାତ ହୁଏ । ପୁଲିସ୍ ଅଫିସର ଆସି ବସନ୍ତି ଓ ସୀମା ଜଗି କଥାବାର୍ତ୍ତା ହୁଏ । ଡାକ୍ତରଖାନାରେ ମୁଁ ସାତ ସପ୍ତାହ ରହି ପୁଣି ଜେଲ୍‌କୁ ଫେରିଲି । କଟକ ଡାକ୍ତରଖାନାରେ ଥିବାବେଳେ କେତେଗୁଡ଼ିଏ କଥା ଲକ୍ଷ୍ୟକଲି । ଦେଖିଲି ଯେ ସେଠି ଦୀର୍ଘଦିନ ଧରି କାମ କରୁଥିବା ସ୍ତ୍ରୀ ଓ ପୁରୁଷ ସେବାକାରୀ

ନର୍ସ ଓ ୱାର୍ଡ଼ ବୟମାନଙ୍କର ଚିକିତ୍ସା ବିଷୟରେ ଯଥେଷ୍ଟ ଅଭିଜ୍ଞତାଲବ୍ଧ ଜ୍ଞାନ ଅଛି । ଯଦି ଓଡ଼ିଆରେ ପାଠ ପଢ଼ା ଯାଉଥାନ୍ତା ଓ ସେମାନଙ୍କୁ ପଢ଼ିବାର ସୁଯୋଗ ମିଳନ୍ତା ତେବେ ସେମାନଙ୍କ ଭିତରୁ କିଛି କିଛି ଡାକ୍ତର ଓ ସର୍ଜନ ହୋଇପାରନ୍ତେ । ମାତ୍ର ଇଂରେଜୀ ପାଠ ଏକ ଜାତିଭେଦ ସୃଷ୍ଟିକରି ରଖିଦେଇଛି । ୱାର୍ଡ଼କୁ ମଝିରେ ମଝିରେ ଅଧ୍ୟାପକମାନେ ତାଙ୍କର ଛାତ୍ରଙ୍କୁ ନେଇ ଆସନ୍ତି ଓ ବିଭିନ୍ନ ରୋଗ ବିଷୟରେ ସେଠି ଥିବା ରୋଗୀଙ୍କ ଉଦାହରଣ ଦେଇ ପଦାର୍ଥପାଠ ଦିଅନ୍ତି । ଏଥିରେ ଅନେକ ସମୟ ଓ ଶକ୍ତି ଖର୍ଚ୍ଚ ହୁଏ ଦେହର ବିଭିନ୍ନ ଅଂଗର ଲାଟିନ୍ ନାମ ମୁଖସ୍ଥ କରି ମନେରଖିବାରେ ।

ଆଉ ଗୋଟିଏ ବ୍ୟାପାର ଦେଖିଲି । ବ୍ୟାପକ ଦୁର୍ନୀତି । ରୋଗୀମାନଙ୍କୁ ଡାକ୍ତରଖାନାର ଭଣ୍ଡାରରୁ କୌଣସି ଜିନିଷ ମିଳେ ନାହିଁ । ସବୁ, ତୁଳା ଓ ବ୍ୟାଂଡ଼େଜ ଯାଏ, ବାହାରୁ କିଣିବାକୁ ହୁଏ । ଯାହା ଯୋଗାଣ ଆସେ ସେ ସବୁ କୁଆଡ଼େ ଉଭେଇ ଯାଏ ଭଗବାନ ଜାଣନ୍ତି । ଫଳରେ କିଳାପୋଡେଇ ଅସମ୍ଭବ ରକମର ଚାଲେ । ଗୋଟାଏ ନିଶ୍ଚେତକର ଏମ୍ପୁଲର ଟଙ୍କାଏ ସତୁରୀ ପଇସା ନା କେତେ ନିର୍ଦ୍ଧାରିତ ମୂଲ. କିନ୍ତୁ ବଜାରରେ ମନଇଚ୍ଛା ପଚିଶ ତିରିଶ ଟଙ୍କାରେ ବିକ୍ରି ହେଉଥାଏ । ଏହାଛଡ଼ା ଚିକିତ୍ସା କରିବାରେ ରୋଗୀଙ୍କଠାରୁ ପଇସା ନେବା ବି ଥାଏ ।

ଦିନେ ଜଣେ ଗରିବ ଶଗଡ଼ଗାଡ଼ି ବାଲା ଆସି ପହଞ୍ଚିଲା । ତା' ପେଟ ଉପରେ ଶଗଡ଼ ମାଡ଼ିଯାଇ ସେ ଗୁରୁତର ଜଖମ ହୋଇଥିଲା । କେତେଦିନ ଅନ୍ୟ ଚିକିତ୍ସା କରି ଅବସ୍ଥା ଅସମ୍ଭାଳ ହେବାରୁ ଡାକ୍ତରଖାନାକୁ ଆସିଲା ଉପରଓଳି । ଡାକ୍ତର ତାକୁ ସଙ୍ଗେ ସଙ୍ଗେ ଅସ୍ତ୍ରୋପଚାର ପାଇଁ ଓ.ଟି.କୁ ନେଲେ । ଦୁଇ ତିନି ଘଣ୍ଟା ପରେ ତାକୁ ୱାର୍ଡ଼କୁ ଫେରେଇ ଅଣାହେଲା, ଅସ୍ତ୍ରୋପଚାର ନ କରାଯାଇ । ଡାକ୍ତର ତା'ର ପରିବାରର ଲୋକଙ୍କୁ ବୁଝେଇ ଦେଲେ ଯେ, ତାର ପେଟରେ ଅସାଧ କ୍ୟାନସର ହୋଇଛି । ଅସ୍ତ୍ରୋପଚାର କରିବା ଅବସ୍ଥାରେ ନାହିଁ । ମାତ୍ର ସେଠାର ନର୍ସ, ୱାର୍ଡ଼ବୟ ଆଦି ଯାବତ ଅନ୍ୟମାନେ କୁହାକୁହି ହେଲେ ଯେ, ଅସ୍ତ୍ରୋପଚାର ପାଇଁ ଡାକ୍ତର, ନର୍ସ ପ୍ରଭୃତି ସମସ୍ତେ ଉପସ୍ଥିତ ଥିଲେ, ମାତ୍ର ନିଶ୍ଚେତକ ଔଷଧ ଦେବା ଡାକ୍ତର କେତେ ଶହ ଟଙ୍କା ନ ପାଇଲେ ଆସିବାକୁ ମନାକଲେ । ସେ ବିଚାରି ଶଗଡ଼ିଆର ନିଜ ଲୋକେ ଏତେ ଟଙ୍କା ହଠାତ୍ ଯୋଗାଡ଼ ନ କରିପାରିବାରୁ ଅସ୍ତ୍ରୋପଚାର ହୋଇପାରିଲା ନାହିଁ । ସେ ଲୋକ ରାତିଯାକ ଯନ୍ତ୍ରଣାରେ ଚିତ୍କାର କରି ଭୋରକୁ ମରିଗଲା । ଏଇ ଆମର ସମାଜବାଦୀ ରାଷ୍ଟ୍ରର ସାର୍ବଜନୀନ ଚିକିତ୍ସା ବ୍ୟବସ୍ଥା ।

## ଦେଶର ଅବସ୍ଥା

ଏଇ ସମୟରେ ଇନ୍ଦିରାଜୀଙ୍କର ଶାସନର ଭୟାନକ ରୂପ ବିଷୟରେ କ୍ରମେ ଅଧିକ ଖବର ମିଳୁଥାଏ । ଜରୁରୀକାଳୀନ ଶାସନ ଜାରୀହେବା ଦ୍ୱାରା ଭାରତର ସମସ୍ତ ନାଗରିକଙ୍କର

ସମସ୍ତ ନାଗରିକ ଅଧିକାର ତ ସଂବିଧାନରେ ଥିବା ବ୍ୟବସ୍ଥା ଅନୁସାରେ ଚାଲିଯିବାର କଥା, ମାତ୍ର ତା'ର ସୀମା କୋଉଠାଏ ? ଖବର ବାହାରିଲା ଯେ ଜବଲପୁର (ମଧ୍ୟପ୍ରଦେଶ)ର କେତେଜଣ ଅଟକବନ୍ଦୀଙ୍କ ପକ୍ଷରୁ କେହି ଓକିଲ ହାଇକୋର୍ଟରେ ହେବିୟସ୍ କୋର୍ପସ୍ ରିଟ୍ କଲେ । ଏହାର ଅର୍ଥ ହେଲା ଯେ, ସଂପୃକ୍ତ ବନ୍ଦୀଙ୍କୁ ସଶରୀରେ କୋର୍ଟରେ ହାଜର କରାଯାଉ । ମଧ୍ୟଯୁଗରେ ୟୁରୋପରେ (ଅନ୍ୟତ୍ର ଏବେ ବି) ଲୋକଙ୍କୁ ଧରିନେଇ ବନ୍ଦୀ କରି ରଖିବା ନାଁରେ ମାରିଦିଆ ହେଉଥିଲା । ଏହାର ପ୍ରତିକାର ସ୍ୱରୂପ ହେବିୟସ୍ କର୍ପସର ଅଧିକାର ବାହାରିଲା ଯେ, ଆସାମୀଙ୍କୁ ସଶରୀରେ କୋର୍ଟରେ ହାଜର କରାଯାଇ ତାହାଦ୍ୱାରା ପ୍ରମାଣ ଦିଆଯିବ, ଯେ ସେ ବଞ୍ଚିକରି ରହିଛି ।

ଯାହାହେଉ ଏ ଦରଖାସ୍ତ ଉପରେ ହାଇକୋର୍ଟ ଦରଖାସ୍ତକାରୀଙ୍କ ସପକ୍ଷରେ ରାୟ ଦେଲେ, ମାତ୍ର ଭାରତ ସରକାର ସୁପ୍ରିମକୋର୍ଟରେ ଅପିଲ କଲେ । ଅପିଲର ଶୁଣାଣିରେ ସରକାରଙ୍କର ଅଟର୍ଣ୍ଣି-ଜେନେରାଲ ନୀରେନ୍ ଦେ ଯୁକ୍ତି କଲେ ଯେ, ଜରୁରୀକାଳୀନ ଶାସନ ଜାରିହେବା ଦ୍ୱାରା ଭାରତବାସୀଙ୍କର ନାଗରିକ ଅଧିକାର ସାଙ୍ଗକୁ ବଞ୍ଚିବାର ଅଧିକାର ମଧ୍ୟ ଲୋପ ହେଇଯାଇଛି । ତେଣୁ କୌଣସି ଲୋକଙ୍କୁ ଜୀବନରେ ମାରି ଦିଆଗଲେ ମଧ୍ୟ ତାହାପାଇଁ କେହି କଚେରୀରେ ଫେରାଦ ହେଇପାରିବ ନାହିଁ । କାହାରିକୁ ଦୋଷ ଲାଗିବ ନାହିଁ । ଜେରାର ଉତ୍ତରରେ ସେ ସ୍ପଷ୍ଟକରି କହିଲେ ଯେ, ଯଦି କୌଣସି ଲୋକକୁ କୌଣସି ସରକାରୀ କର୍ମଚାରୀ ସଂପୂର୍ଣ୍ଣ ଅନ୍ୟାୟ ଓ ବେଆଇନ୍ ଭାବରେ ହତ୍ୟା କରେ, ତାହା ହେଲେ ବି ପୁଲିସ ବା କୋର୍ଟ କଚେରୀରେ ତା'ର କୌଣସି ପ୍ରତିକାର ଲୋଡ଼ାଯାଇପାରିବ ନାହିଁ । ଏ ଅପିଲ ଶୁଣୁଥିବା ବେଞ୍ଚର ସ୍ୱୟଂ ପ୍ରଧାନ ବିଚାରପତି ଶ୍ରୀ ଚନ୍ଦ୍ରଚୂଡ଼ ବି ଥିଲେ ଓ ନୀରେନ ଦେଙ୍କର ଯୁକ୍ତି ବିଚାରପତିମାନେ ଯଥାର୍ଥ ବୋଲି ସେମାନଙ୍କ ରାୟରେ ମାନିନେଲେ । ଭାରତରେ ଯେଉଁ ଅନ୍ଧାରୀ ଶାସନରେ ସର୍ବୋଚ୍ଚ ନ୍ୟାୟାଳୟର ମୋହର ମରିଗଲା ତାହା ତୁଳନାରେ କଂସର ଶାସନ ବି ଅପେକ୍ଷାକୃତ ସଭ୍ୟ ଥିଲା । ଏଇଟା ସରକାରୀ କର୍ମଚାରୀ ଓ ଅନ୍ୟ ଶକ୍ତିଶାଳୀ ଲୋକଙ୍କର ଧର୍ମଭୟର ପରିଣାମ ଯେ, ଏ ପରିସ୍ଥିତିର ସୁବିଧା ନେଇ ଦେଶରେ ବ୍ୟାପକ ହତ୍ୟାକାଣ୍ଡ ଚାଲିଲା ନାହିଁ ।

ଏହି ସମୟରେ ସଂବିଧାନରେ ଏକ ସଂଶୋଧନ କରାଯିବାପାଇଁ ସଂସଦରେ ୩୯ କ ସଂବିଧାନ ସଂଶୋଧନ ଆଇନ ଗୃହୀତ ହେଇଗଲା । ଏଥିରେ ରାଷ୍ଟ୍ରପତି, ଉପରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କୁ ସମସ୍ତ ଦେୱାନୀ ଓ ଫୌଜଦାରୀ ଆଇନର ଉର୍ଦ୍ଧ୍ୱରେ ରଖିବାର ବ୍ୟବସ୍ଥା ହେଲା ଏବଂ ଏହା ପିଛିଲା ତାରିଖରୁ କାର୍ଯ୍ୟକାରୀ ହେବାର ବ୍ୟବସ୍ଥା ଆଇନରେ ରହିଲା । ଅର୍ଥାତ୍ ତିନିଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଭିତରୁ ଯଦି କେହି ଏ ସଂଶୋଧନ ଗୃହୀତ ହେବାପରେ ଚୋରୀ, ନାରୀ କି ହତ୍ୟାକାଣ୍ଡ ଭିଆନ୍ତି ତାହାହେଲେ ତାଙ୍କ ବିରୋଧରେ କୌଣସି ମକଦ୍ଦମା ତ ହେଇପାରିବ ନାହିଁ, ମାତ୍ର ଉପରୋକ୍ତ ପଦରେ ଅଧିଷ୍ଠିତ ହେବା ପୂର୍ବରୁ ଯଦି ସେଭଳି କିଛି କରିବାର ଅଭିଯୋଗ ଥାଏ, ତେବେ ତା'ର ବି ବିଚାର ହେଇପାରିବ ନାହିଁ । ସୌଭାଗ୍ୟର କଥା ଯେ, ଏ ସଂବିଧାନ

ସଂଶୋଧନକୁ ସୁପ୍ରିମ୍‌କୋର୍ଟ ସଂବିଧାନର ମୂଳନୀତିର ବିରୋଧୀ ବୋଲି ରାୟ ଦେବାରୁ ତାହାକୁ ସରକାର ଆଉ ଉଠେଇଲେ ନାହିଁ । ଏହାପରେ ଆସିଲା ମାରାତ୍ମକ ବିଲ୍, ସଂବିଧାନର ୪୨କ ସଂଶୋଧନ ପାଇଁ । ଏଥିରେ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଏକ ମୁଖା ରୂପ ରଖି ଭାରତରେ ସଂପୂର୍ଣ୍ଣ ଏକଚ୍ଛତ୍ର ଶାସନ ଜାରିର ବ୍ୟବସ୍ଥା ହେଲା । ଏହାର ମାରାତ୍ମକତା ଏଥିଯୋଗୁଁ ବଢ଼ିଗଲା ଯେ, ଏଥିରେ ଲୋକଙ୍କୁ ଭଣ୍ଡେଇବା ପାଇଁ ଅନେକ ନୂଆକଥା ରହିଥିଲା । ଏ ସଂଶୋଧନ ଅନୁସାରେ ଭାରତ ଏକ ଗଣତାନ୍ତ୍ରିକ ସମାଜବାଦୀ ଧର୍ମନିରପେକ୍ଷ ଗଣରାଜ୍ୟ ହେଲା । ସାମାଜିକ ନ୍ୟାୟ କଥା ବହୁତ କୁହାଯାଇଥିଲା ଓ ଲୋକଙ୍କର ଅଧିକାର ସାଙ୍ଗକୁ କେତେକ କର୍ତ୍ତବ୍ୟ ସଂବିଧାନରେ ଲିପିବଦ୍ଧ ହେଉଥିଲା । ବିଧାନସଭାମାନଙ୍କର ଓ ସଂସଦର ଅଧିକାଂଶ ଅଧିକାର କାଢ଼ିନେଇ ସେମାନଙ୍କୁ କେବଳ ସଭାସୁନ୍ଦର କରାହେଲା । ନ୍ୟାୟ ବିଭାଗର ସ୍ୱାଧୀନତା ଖର୍ବ କରାହେବା ସାଙ୍ଗେ ସାଙ୍ଗେ ଖବରକାଗଜମାନଙ୍କ ପାଇଁ ଏକ ପ୍ରକାର ସ୍ଥାୟୀ ଯାଞ୍ଚ ବ୍ୟବସ୍ଥା ଚାଲୁକରିବାର ବିଧାନ ସେଥିରେ ରହିଲା ।

ସେତେବେଳେ ତ ସବୁ ସାନବଡ଼ ବିରୋଧୀ ନେତା ଜେଲ୍‌ରେ । ବାହାରେ ଯେ କେତେ ଜଣ ଥା'ନ୍ତି ସେମାନେ କ'ଣ କରିବେ ତା'ର କିଛି ବାଟ ପାଉ ନଥା'ନ୍ତି । ଏତିକିବେଳେ ମୁଁ ଅର୍ଶ ରୋଗର ଅସ୍ତ୍ରୋପଚାର ପାଇଁ ପ୍ୟାରୋଲ୍‌ରେ ଏକମାସ ପାଇଁ ବାହାରକୁ ଆସିବାର ଅନୁମତି ପାଇଲି । ଡାକ୍ତର ଗିରିଜାଶଙ୍କର ଦାସ ମହାପାତ୍ରଙ୍କ କ୍ଲିନିକ୍‌ରେ ସେ ଅସ୍ତ୍ରୋପଚାର କରିବା କଥା ହେଲା । ଅସ୍ତ୍ରୋପଚାରର ଦିନ ଠିକ ହେଲା ଓ ଡା. ଦାସ ମହାପାତ୍ରଙ୍କ ସୁପାରିଶକ୍ରମେ ପ୍ୟାରୋଲ୍ ଆଉ ମାସେ ବଢ଼ାହେଲା । ମୋର ବାହାରକୁ ଆସିବା ଖବର ପାଇ ନାରାୟଣ (ଦେଶାଇ) ମୋ ସାଙ୍ଗରେ ଦେଖା କରିବାକୁ ଆସିଲା ।ସେ ପଉନାର ଆଶ୍ରମରେ ବିନୋବାଙ୍କ ସାଙ୍ଗରେ ଦେଖାକରିବାକୁ ଓ୍ୱାର୍ଦ୍ଧା ଆସିଥିଲା ଓ ମୋ ସହିତ ଦେଖାକରି ତା'ର ସେଇଠିକି ଫେରିଯିବାର ଥିଲା । ତା'ଠାରୁ ଅନେକ କିଛି ଖବର ମିଳିଲା । ସେ ଗିରଫ ନ ହେଇ ବାହାରେ ରହି ଯାଇଥିଲା । ଜରୁରୀକାଳୀନ ଶାସନ ଜାରି ହେବାବେଳେ ଗୁଜରାଟରେ ଜନତା ଦଳର ମନ୍ତ୍ରୀମଣ୍ଡଳ ଥିଲା ଓ ଶ୍ରୀ ବାବୁଭାଇ ପଟେଲ ମୁଖ୍ୟମନ୍ତ୍ରୀ ଥିଲେ । ଏ ରାଜ୍ୟ ସରକାର ଜରୁରୀକାଳୀନ ଶାସନକୁ ଉପେକ୍ଷା କରି ଚାଲିଥିଲେ ଓ କୌଣସି ଗିରଫଦାରୀ, ସଂବାଦପତ୍ର ଯାଞ୍ଚ ବ୍ୟବସ୍ଥା ଆଦି କରିନଥିଲେ । ଗଣତନ୍ତ୍ରର ସୁରକ୍ଷା ବିଷୟରେ ବିଚାର ଆଲୋଚନା ପାଇଁ ଏକ ଅଖିଳ ଭାରତୀୟ ସମ୍ମିଳନୀ ମଧ୍ୟ ସେଠି ହେଇଗଲା । ସେଥିରେ ଅବସରପ୍ରାପ୍ତ ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ଏମ୍.ସି. ଚଗଲା, ଶ୍ରୀମିନୁ ମସାଣୀ ପ୍ରଭୃତି ଉଦ୍ୟୋକ୍ତା ଥିଲେ । ପରେ ଗୁଜରାଟରେ ରାଷ୍ଟ୍ରପତି ଶାସନ ଜାରି କରାହେଲା, ମାତ୍ର ସେଠାର ହାଇକୋର୍ଟ ନାଗରିକ ଅଧିକାର ବାବଦରେ ଅତି ଦୃଢ଼ ଓ ପ୍ରଶଂସନୀୟ ଆଭିମୁଖ୍ୟ ନେଲେ ।

ଗୁଜରାଟରେ ସର୍ବୋଦୟ ଆନ୍ଦୋଳନର ମୁଖପତ୍ର ପାକ୍ଷିକ 'ଭୂମିପୁତ୍ର' ବରୋଦାରୁ ବାହାରେ । ତାହା ଉପରେ କେତେକ ନିଷେଧାଜ୍ଞା ଜାରି ହେଇଥିଲା । ତାକୁ ହାଇକୋର୍ଟ ଖାରଜ

କରିଦେଲେ । ସେଠୁ 'ଭୂମିପୁତ୍ର'ର ପ୍ରେସ୍‌କୁ ସରକାର ଜବତ କରିନେଲେ । ତାହାପରେ 'ଭୂମିପୁତ୍ର'ର ପରିଚାଳକଙ୍କ ପକ୍ଷରୁ ଏକ ନିବେଦନର ଜବାବରେ ସପ୍ତାହେ ଖଣ୍ଡେ ଭିତରେ ଲକ୍ଷାଧିକ ଟଙ୍କା ଚାନ୍ଦା ଉଠି ନୂଆ ପ୍ରେସ୍ କିଣାହେଇ ପତ୍ରିକା ପ୍ରକାଶନ ଅବ୍ୟାହତ ରହିଲା । ଏ ସମୟରେ 'ଭୂମିପୁତ୍ର' ଯେପରି ଭାବରେ ଜରୁରୀକାଳୀନ ଆଇନ ବିରୋଧରେ ସଂଗ୍ରାମ କରି ତିଷ୍ଠି ରହିଥିଲା, ତାହା ଭାରତର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବାର କଥା । ଏ ସମୟରେ ବଡ଼ ବଡ଼ ଦୈନିକଙ୍କ ଭିତରେ ଇଣ୍ଡିୟାନ୍ ଏକ୍ସପ୍ରେସ୍ ଓ ଷ୍ଟେଟ୍‌ସମ୍ୟାନ୍ ଦବି ନଯାଇ ଯାଞ୍ଚ ବ୍ୟବସ୍ଥାର ସୀମା ଭିତରେ ଯତ୍‌ପରୋନାସ୍ତି ସ୍ୱାଧୀନତାର ପତାକା ଟେକିଧରିଥା'ନ୍ତି । ଇଣ୍ଡିୟାନ୍ ଏକ୍ସପ୍ରେସ୍‌ର ମାଲିକ ଶ୍ରୀ ରାମନାଥ ଗୋଏଂକା ସ୍ୱାଧୀନତା ସଂଗ୍ରାମୀ ଥିଲେ ଓ ଜେ.ପି.ଙ୍କର ଏକ ବଡ଼ ସମର୍ଥକ । ତାଙ୍କରି ସାହାଯ୍ୟରେ ହିଁ ଜେ.ପି. ୧୯୭୪ ରେ ଏଭରିମ୍ୟାନ୍‌ସ ନାମରେ ଇଂରାଜୀ ସାପ୍ତାହିକ ଆରମ୍ଭ କରିଥିଲେ । ଟେକ ବଜାୟ ରଖିବା ପାଇଁ ଇଣ୍ଡିୟାନ୍ ଏକ୍ସପ୍ରେସ୍‌କୁ ଜରୁରୀକାଳୀନ ଶାସନବେଳେ ବହୁତ ସହିବାକୁ ପଡ଼ିଥିଲା । ଭୋରରୁ କାଗଜ ଛପାବେଳକୁ ବିଦ୍ୟୁତ୍ ଲାଇନ୍ କାଟିଦିଆଯିବ ଓ ପୁଣି ମିଳିବା ବେଳକୁ ଅନ୍ୟ କାଗଜସବୁ ବଣ୍ଟା ଓ ବିକ୍ରି ସରିଥିବ । ୧୯୮୦ ରେ ଶ୍ରୀମତୀ ଗାନ୍ଧୀ ପୁଣି କ୍ଷମତାକୁ ଆସିବା ପରେ ଇଣ୍ଡିୟାନ ଏକ୍ସପ୍ରେସ୍ ଓ ଷ୍ଟେଟସ୍‌ମ୍ୟାନ୍ ଉପରେ ଦାଉ ସାଧିବା ପାଇଁ କମ୍ ଉଦ୍ୟମ କରିନଥିଲେ । ଓଡ଼ିଶାରେ ଦୈନିକ ସମାଜ ପୂରାପୂରି ସରକାରୀ କାଗଜ ହେଇଗଲା । ରାଧାନାଥ ବାବୁଙ୍କ ପରି ସ୍ୱାଧୀନଚେତା ଓ ନୀତିନିଷ୍ଠ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ କାଗଜ ଏପରି ମତିଗତି ଧରିବାର ଦେଖି ଅତ୍ୟନ୍ତ ଦୁଃଖ ହେଲା । ଅଥଚ ଲୋକସେବକ ମଣ୍ଡଳ ନିର୍ଭୀକ ଭାବରେ କାମକରୁଥାଏ । ତା'ର ଅଧ୍ୟକ୍ଷ ଶ୍ରୀ ଭୀମସେନ ସଚ୍ଚାର୍ ଜରୁରୀକାଳୀନ ଶାସନ ବିରୋଧରେ ବିବୃତି ମଧ୍ୟ ଦେଉଥାନ୍ତି । ମଣ୍ଡଳର କେତେକ କର୍ମୀ ଗିରଫ ମଧ୍ୟ ହେଇଥିଲେ । ପରେ ଶୁଣାଗଲା ଯେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀ ସମାଜ ସଂସ୍ଥାକୁ କରଗତ କରିବାପାଇଁ ସୁଯୋଗ ଖୋଜୁଥିଲେ ଓ ତାହା ନକରାଇ ଦେବାପାଇଁ ରାଧାନାଥ ବାବୁ ଏ ନୀତି ଧରିଥିଲେ ।

ପରେ ପ୍ରଜାତନ୍ତ୍ର ବି ସରକାରୀ କାଗଜ ହେଇଯାଇଥିଲା, ମାତ୍ର ମହତାବ ବାବୁ ଜେଲରୁ ଖଲାସ ହେବା ପରେ ତା'ର ଆଭିମୁଖ୍ୟ ବଦଳିଗଲା । ଖବରତ ସବୁ ଯାଞ୍ଚ ହେଉଥାଏ । ମାତ୍ର 'ଗାଁ ମଜଲିସ୍'ରେ ମହତାବ ବାବୁ ଆଇନର ସୀମାରେଖାକୁ ସାବଧାନରେ ଜଗି ମଧ୍ୟ ଏପରିସବୁ ଆଲୋଚନା କରୁଥା'ନ୍ତି ଯାହା ଭିତରେ ଜରୁରୀକାଳୀନ ଶାସନର ସୂକ୍ଷ୍ମ ସମାଲୋଚନା ଥାଏ । କଟକ ଜେଲରେ ଆମେ ସବୁ ପ୍ରଜାତନ୍ତ୍ର ପାଇବାକୁ ଉଦ୍‌ଗ୍ରୀବ ହେଇ ବସିଥାଉ । ରାତି ପ୍ରାୟ ଏଗାରଟା ବେଳକୁ ଜେଲ ଅଫିସ୍ ବାଟେ କାଗଜ ଆମ ପାଖରେ ପହଞ୍ଚେ । ଆମେ ଗାଁ ମଜଲିସ୍ ସାମୂହିକ ଭାବରେ ପଢ଼ା ଯିବା ପରେ ବିଛଣା ଧରୁ ।

ନାରାୟଣଠାରୁ ଜାଣିବାକୁ ମିଳିଲା ଯେ, ବାହାରେ ଥିବା ନେତା, ଏସ୍.ଏମ୍. ଯୋଶୀ ପ୍ରଭୃତି ବିଚାର କଲେ ଯେ, ୪୨ କ ସଂଶୋଧନକୁ ରୋକିବା ପାଇଁ ଶେଷ ଆଶାଭରସା ହେଲା

ଯଦି ବିନୋବା ସେ ବିଷୟରେ କିଛି କରିବେ, ଇନ୍ଦିରାଜୀଙ୍କୁ କିଛି କହିବେ । ବିନୋବାଙ୍କୁ ପ୍ରବର୍ତ୍ତାଇବା ଚେଷ୍ଟା କରିବାକୁ ଶ୍ରୀମନ୍‌ନାରାୟଣ ଓ ନାରାୟଣ ଆସି ପଉନାରରେ ପହଞ୍ଚିଲେ । ବିନୋବାଙ୍କ ସାଙ୍ଗରେ କିଛି କଥାବାର୍ତ୍ତା ହେଉଥିଲା । କଟକରୁ ନାରାୟଣ ଫେରିଲେ ଆଉ ହେବାର ଥିଲା । ନାରାୟଣ ହାତରେ ମୁଁ ବିନୋବାଙ୍କୁ ଖଣ୍ଡେ ଚିଠି ଲେଖି ପଠେଇଲି । ବିନୋବା ସେତେବେଳେ ତ ଦୁଆ ଧରିଥିଲେ ଯେ, ସେ କର୍ମମୁକ୍ତି ନୀତି ଗ୍ରହଣ କରିଛନ୍ତି, ତେଣୁ କୌଣସି ବିଷୟରେ କିଛି ପ୍ରତ୍ୟକ୍ଷ କାର୍ଯ୍ୟକ୍ରମରେ ଜଡ଼ିତ ହେବେନାହିଁ । ମୁଁ ଜରୁରୀକାଳୀନ ଶାସନର ଭୟାବହତା ଓ ଅନୈତିକତା କଥା ଦର୍ଶେଇ ଲେଖିଥିଲେ ଯେ, ବିନୋବା କୌଣସି ଆନ୍ଦୋଳନ ନିଜେ କରିବା ଦରକାର ନାହିଁ । ସେ କେବଳ ଏ ଶାସନ ବିରୋଧରେ ପଦେ କଥା କହିଲେ ତାହା ହିଁ ଦେଶବାସୀଙ୍କୁ ବିରାଟ ପ୍ରେରଣା ଦେବ । ମୁଁ କବିଗୁରୁ ରବୀନ୍ଦ୍ରନାଥଙ୍କର ଉଦାହରଣ ଦେଇଥିଲି ଯେ, ସେ ଆନ୍ଦୋଳନକାରୀ ନେତା ନଥିଲେ, ମାତ୍ର ଜାଲିଆନାୱାଲାବାଗ୍‌ର ହତ୍ୟାକାଣ୍ଡର ପ୍ରତିବାଦରେ ସେ 'ସାର୍' ଉପାଧି ଫେରାଇଦେଇ ଯେତିକି କଥା କହିଲେ ସେତିକି ଦେଶର ଲକ୍ଷ ଲକ୍ଷ ଲୋକଙ୍କଠାରେ ପ୍ରାଣ ସଂଚାର କରିଥିଲା ।

ପରେ ଖବର ପାଇଲି ଯେ, ଶ୍ରୀମନ୍‌ଜୀ ଓ ନାରାୟଣ ଯେତେ ଯୁକ୍ତି କଲେ ବି ବିନୋବା ଟସ୍‌ରୁ ମସ୍ ହେଲେ ନାହିଁ । ତାଙ୍କର ଏକ ରାହା ହେଲା ଯେ ବ୍ରହ୍ମସୂତ୍ର ଭଳି ଶାସ୍ତ୍ରର ଅଧ୍ୟୟନରେ ତାଙ୍କର ବୁଦ୍ଧି ଖୁବ୍ ଚଳେ, ମାତ୍ର ଆଇନ୍ କାନୁନ୍ ତାଙ୍କୁ ସୁହାଏ ନାହିଁ । ତାଙ୍କୁ ଯେତେ ବୁଝାଗଲା ଯେ, ଦେଶର ଏକ ବିଶେଷ କଠିନ ପରିସ୍ଥିତିରେ ତାଙ୍କୁ ସମ୍ବିଧାନର ବ୍ୟାପାରରେ ମୁଣ୍ଡ ପୂରାଇବାକୁ ହେବ, ତଥାପି ସେ ଅଟଳ ରହିଲେ । ଶେଷକୁ ନାରାୟଣ କାନ୍ଦି ପକେଇଲା । ତଥାପି ତାଙ୍କର ହୃଦୟ ତରଳିଲା ନାହିଁ । ଏମାନେ ନିରାଶ ହୋଇ ଫେରିଲେ ।

ମୋର ଅସ୍ତ୍ରୋପଚାର ଭଲରେ ହେଇଗଲା । ମତେ ଯେଉଁମାନେ କ୍ଲିନିକ୍‌ରେ ଦେଖିବାକୁ ଆସିଥିଲେ ସେମାନଙ୍କ ଭିତରେ କଟକର ଜେଲର୍ ଶ୍ରୀ ତ୍ରିପାଠୀ ଥିଲେ ଓ ବିଜୁ ପଟ୍ଟନାୟକ ବି ସେହି ସମୟରେ ଖଲାସ ହେଇଥିଲେ ଓ ମତେ ଦେଖିବାକୁ ଆସିଥିଲେ । ସେ ଦିଲ୍ଲୀରେ ତିହାର ଜେଲରେ ଥିଲେ ଓ ସେଠୁ ପ୍ୟାରୋଲରେ ଯାଇ କିଛିଦିନ କାଶ୍ମୀରରେ ରହିବା ପରେ ମୁକ୍ତି ପାଇଲେ । ସେ ଓଡ଼ିଶାରେ ପହଞ୍ଚି ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ବିଷୟରେ କ'ଣ ଗଣ୍ଡଗୋଳିଆ କଥା କହିବାରୁ ତାଙ୍କ ଦଳର ଯୁବକମାନେ ତାଙ୍କ ବିରୋଧରେ ଅତି କ୍ଷୁବ୍‌ଧ ହେଇଥିଲେ । ସେ ସେଠୁ ଆଭିମୁଖ୍ୟ ବଦଳାଇଲେ ।

ବାହାରେ ଥିବାବେଳେ କଟକ ସହରରେ ହିଁ ମୋତେ ରହିବାକୁ ହେଉଥିଲା ଓ ସେଠି ଆତଂକର ବାୟୁମଣ୍ଡଳ କେତେ ବ୍ୟାପିଥିଲା ତା'ର ଅଭ୍ୟାସ ମୋତେ ବାଟଘାଟରେ ମିଳିଥିଲା । ଅତିପରିଚିତ ଲୋକ ବାଟରେ ଦେଖାହେଲେ ନ ଚିହ୍ନିବା ଭଳି ଚାଲି ଯାଉଥିଲେ । ଦିନେ ମୁଁ ଜାଉଁଳିଆପଟି ଦେଇ ଯିବାବେଳେ ଜଣେ ବନ୍ଧୁଙ୍କୁ ତାଙ୍କ ଦୋକାନରେ ଦେଖି ପଶିଗଲି । ସେ ମତେ ଦେଖି ଏଭଳି ଆଖି ଖୋସିଦେଇ ଓ ମୁଖଭଙ୍ଗୀ କଲେ ଯେପରି ସେ ଜାଣି ଏକ ଭୂତ

ଦେଖିଲେ । ମୁଁ ତୁରନ୍ତ ସେଠୁ ପଳେଇ ଆସିଲି । ମାତ୍ର ନିର୍ଭୀକ ଲୋକ ବି ଥିଲେ ।ଶ୍ରୀ ହରିହର ମହାପାତ୍ର ଓ ବିଶ୍ୱନାଥ ପଣ୍ଡିତଙ୍କ କଥା ପୂର୍ବରୁ କହିଛି । ହରିବାବୁ ମୁଁ ପ୍ୟାରୋଲ୍‌ରେ ଥିବାବେଳେ ଆମ ଘରକୁ ନିତି ଆସୁଥିଲେ । ଶ୍ରୀ ବିଶ୍ୱନାଥ ଦାସଙ୍କ କଥା ବି ଶୁଣିଲି ଯେ, ସେ ନିର୍ଭୟରେ ଖୋଲାଖୋଲି ଆନ୍ଦୋଳନ ପାଇଁ ଚାନ୍ଦା ଦେଉଥିଲେ । ମାତ୍ର ସବୁଠାରୁ ଭଲ ଓ ମଜା ଲାଗିଲା ଝୋଲାସାହିର ଖଇରାତି ମିଆଁଙ୍କ ଘଟଣା । ଏ ମହାଶୟ ଦାଦାର ଖୁବ୍ ଭକ୍ତ । ଦାଦା ମନ୍ତ୍ରୀ ଥିବାବେଳେ ଇଯେ କ'ଣ ଗୋଟାଏ ଛୋଟିଆ ଚାକିରୀ କରୁଥିଲେ ବୋଧହୁଏ । ମୋ ସାଙ୍ଗରେ ବାଟରେ ଦେଖାହେଲେ ବରାବର ଖୁବ୍ ଆନ୍ତରିକତାର ସହିତ କୁଶଳ ପ୍ରଶ୍ନ ଆଦି ପଚାରନ୍ତି । ପ୍ୟାରୋଲ୍ ସମୟରେ ଦିନେ ଚୌଧୁରୀ ବଜାର ଅଞ୍ଚଳରେ ଦେଖାହେଲା । ମୋତେ ଦେଖି ଖୁସି ହେଇ ସବୁ ହାଲଚାଲ ବୁଝିଲେ ଓ ତା'ପରେ ସେଇଠି ଛକ ଉପରେ ଛିଡ଼ାହେଇ ଚିତ୍କାର କରି ମନ୍ତବ୍ୟ କଲେ – "ଏ ଶଳାଙ୍କର ଶାସନ ଆଉ ବେଶି ଦିନ ରହିବ ନାହିଁ । ଏମିତିସବୁ ଭଲ ଭଲ ଲୋକଙ୍କୁ ନେଇ ଜେଲରେ ପୁରେଇଛନ୍ତି । ଯେ ଆଉ ଟିକ୍ଷି ପାରିବେ ?" ସେ ଦିନ ଖଇରାତି ମିଆଁ ଯାହା ନିର୍ଭୟରେ କହିଥିଲେ ତାହା ହିଁ ଯେ, ଭାରତର କୋଟି କୋଟି ଲୋକଙ୍କର ହୃଦୟର କଥା ତାହା ଆଉ ପାଞ୍ଚ ଛଅ ମାସରେ ଜଣାପଡ଼ିଲା ।

## ନବବାବୁ ଓ କେ.ପି.ଙ୍କ ଅସୁସ୍ଥତା

ଦାଦା ମୋର ଦୁଇ ତିନିଦିନ ପରେ ଗିରଫ ହେଇ ବାରିପଦା ଜେଲରେ ସଂପୂର୍ଣ୍ଣ ଏକୁଟିଆ ଅଟକ ରଖା ହେଇଥିଲା । ଢେଙ୍କାନାଳ ଜେଲ୍‌ରେ ଥିବାବେଳେ ତା'ଠୁ ଖଣ୍ଡେ ପୋଷ୍ଟକାର୍ଡ଼ ଚିଠି ପାଇଥିଲି । ତା'ପରେ ଆଉ ଖବର ନାହିଁ । ତା'ପରେ ଖବର ପାଇଲି ଯେ, ସେ ଅସୁସ୍ଥ ହେଇ ଛାଡ଼ ପାଇଛି । ଅନେକ ଦିନ ପରେ ସେ ସୁସ୍ଥ ହେଇ ମୋ ସାଙ୍ଗରେ ଦେଖା କରିବାକୁ ଜେଲ୍‌କୁ ଆସିଥିଲା । ସେ କେତେ ଅସୁସ୍ଥ ହେଇଥିଲା ତା'ର ସବୁ ବିବରଣୀ ପ୍ୟାରୋଲ୍‌ରେ ବାହାରକୁ ଆସି ପାଇଲି ।

ବାରିପଦା ଜେଲ୍‌ରେ ତାକୁ ସଂପୂର୍ଣ୍ଣ ଏକୁଟିଆ ରଖା ହେଇଥିଲା । କେବଳ ବୋଲହାକ କରିବାକୁ ଜଣେ ସାଧାରଣ କଏଦୀ ଥାଏ । ନଭେମ୍ବର ୨୩ ତାରିଖରେ ତା'ର ଜନ୍ମଦିନ । ସେଦିନ ତିନୁ ଓ ବିଭୂତି, ତା'ର ସାନ ଝିଅ ଓ ଜୁଆଇଁ, ତାହା ସହିତ ଦେଖା କରିବେ ବୋଲି ପୂର୍ବରୁ ଅନୁମତି ନେଇଥିଲେ ଓ ଯଥାସମୟରେ ଜେଲ ଫାଟକରେ ପହଞ୍ଚିଲେ । ସେମାନଙ୍କୁ ଜେଲର୍ କହିଲେ ଯେ, ନବବାବୁ ସାମାନ୍ୟ ଅସୁସ୍ଥ ଅଛନ୍ତି । ତେଣୁ ଦେଖା ହେଇପାରିବ ନାହିଁ । ଏମାନେ ଯେତେ ଜିଗର କଲେ ବି ନାସ୍ତିବାଣୀ ବଦଳିଲା ନାହିଁ । ଜେଲରଙ୍କ ଭାବଭଙ୍ଗୀ ଓ କଥାବାର୍ତ୍ତାରୁ ମନେ ହେଲା ଯେ, ସେ କିଛି ଲୁଚେଇବାକୁ ଚେଷ୍ଟା କରୁଛନ୍ତି । ସେଠୁ ତିନୁ ଓ ବିଭୂତି କଟକ ଆସି ବୋଉ ହେରିକାଙ୍କୁ ଏ କଥା କହିଲେ ।

କଟକରେ ସଂପୃକ୍ତ ଉଚ୍ଚ ଅଧିକାରୀମାନଙ୍କୁ ଟେଲିଫୋନ୍ ଯୋଗେ ପଚାରାଉଚରା କରିବାରୁ ସେମାନେ କିଛି ଜାଣି ନାହାନ୍ତି ବୋଲି କହିଲେ । ସନ୍ଦେହ ଗଭୀରତର ହେବାରୁ ବୋଉ, ଖୁଡ଼ୀ,

ଚୁନୀ ଓ ତିନୁ ବାରିପଦା ଗଲେ । ସେଠି ସେତେବେଳକୁ ଦାଦାକୁ ଡାକ୍ତରଖାନାକୁ ନିଆହେଲାଣି । ପ୍ରଥମେ ଅଳ୍ପ ଦେହ ଖରାପ ହେଉଛି ବୋଲି କହି ବାଆଁରେଇ ଦେବା ଚେଷ୍ଟା କର୍ତ୍ତୃପକ୍ଷ କଲେ । ତା'ପରେ ମାନିଲେ ଯେ, ସେ ଗୁରୁତର ଭାବରେ ଅସୁସ୍ଥ । ବହୁ କଷ୍ଟରେ ପ୍ୟାରୋଲ୍‌ରେ ଛାଡ଼ିଦେଇ କଟକ ନେଇ ଆସିବାକୁ ସରକାର ଅନୁମତି ଦେଲେ । ସଙ୍ଗେ ସାଙ୍ଗେ ଗୋଟାଏ ଗାଡ଼ି ଯୋଗାଡ଼ କରି ତାକୁ କଟକ ଅଣା ହେଲା । ଜଣାଗଲା ଯେ, ସେ ପାଇଖାନା ଯାଇଥିବା ବେଳେ ପକ୍ଷାଘାତର ଆକ୍ରମଣ ହେଇଥିଲା । ସେ ପାଇଖାନା ଭିତରୁ କୌଣସି ମତେ ଘୁଷୁରି ଘୁଷୁରି ଆସି ୱାର୍ଡ଼ ଘର ଭିତରେ ପହଞ୍ଚି ଅନେକ ସମୟ, ପ୍ରାୟ ଦୁଇ ଘଣ୍ଟା, ପଡ଼ି ରହିବାପରେ ତା'ର ବୋଲହାକ କରିବାକୁ ଥିବା ସାଧାରଣ କଏଦୀ ପହରାୱାଲା ଜଣକ ଦେଖି ଖବର ଦେବାରୁ ଜେଲ କର୍ତ୍ତୃପକ୍ଷ ତା'ର ଚିକିତ୍ସାର ବ୍ୟବସ୍ଥା କଲେ । କଟକ ପହଞ୍ଚିବା ବେଳକୁ ଅବସ୍ଥା ଅତି ଶୋଚନୀୟ ହେଇଥିଲା । ଆଉ ଡେରି ହେଇଥିଲେ ଆରୋଗ୍ୟ ହେବା ମୁସ୍କିଲ ହେଇଥାନ୍ତା । ଯାହା ହେଉ ଚିକିତ୍ସାରେ କ୍ରମେ ଭଲ ହେଇଗଲା । ମାତ୍ର ତଥାପି ବାଁ ଗୋଡ଼ରେ ଟିକିଏ ଦୋଷ ରହିଗଲା ।

ଜୟପ୍ରକାଶ ନାରାୟଣ ମଧ୍ୟ ଗୁରୁତର ଭାବରେ ଅସୁସ୍ଥ ହେଇ ଜେଲ୍‌ରୁ ମୁକ୍ତ ହେଇଛନ୍ତି ଓ ବମ୍ବେର ଯଶଲୋକ ହାସ୍‌ପାତାଲରେ ଚିକିତ୍ସିତ ହେଉଛନ୍ତି ବୋଲି ଜେଲ୍‌ରେ ଥିବାବେଳେ ଖବର ପାଇଥିଲୁ । ପରେ ବାହାରେ ଆସି ବିଶଦ ବିବରଣୀ ଜଣାପଡ଼ିଲା । ତାଙ୍କୁ ଜୁନ୍ ୨୬, ୧୯୭୫ ରେ ଅଟକ ବନ୍ଦୀ କରି ହରିୟାଣା ରାଜ୍ୟରେ ନେଇ ଏକ ମଫସଲ ଜାଗାରେ ଥିବା ସରକାରୀ ବିଶ୍ରାମ ଭବନରେ ସଂପୂର୍ଣ୍ଣ ଏକୁଟିଆ ରଖା ହେଇଥିଲା । ପ୍ରଥମେ ତ ତାଙ୍କର ଅଟକ ସ୍ଥାନ ଗୁପ୍ତ ରଖାଯାଇଥିଲା । କାହାରିକି ଦେଖା ସାକ୍ଷାତ କରିବାକୁ ମଧ୍ୟ ଦିଆଯାଉ ନଥିଲା । ତାଙ୍କର ସେବାରେ ନିଯୁକ୍ତ ଥିବା ସାଧାରଣ କଏଦୀ ଓ ଜଗୁଆଳୀ ପୁଲିସ୍‌ବାଲାଙ୍କୁ ମଧ୍ୟ ତାଙ୍କ ସହିତ କଥାବାର୍ତ୍ତା ନ କରିବାକୁ କଡ଼ା ନିର୍ଦ୍ଦେଶ ଥିଲା ।

ତାଙ୍କର ବହୁମୂତ୍ର ରୋଗ ଅନେକକାଳରୁ ଥିଲା । ପୁଣି କ'ଣ ସାମାନ୍ୟ ଅସୁସ୍ଥତା ଯୋଗୁଁ ତାଙ୍କର ଚିକିତ୍ସା କରାଯାଇ ତାଙ୍କୁ କେତେକ ଔଷଧ ଖାଇବାକୁ ଦିଆଗଲା । ସେଥିରେ ସେ ଅନୁଭବ କଲେ ଯେ, ତାଙ୍କର ଅବସ୍ଥା ଆହୁରି ଖରାପ ହେଉଛି । ମାତ୍ର ତାଙ୍କୁ ଆଶ୍ୱାସନା ଦିଆଗଲା ଯେ, ଔଷଧ ଠିକ୍ ଅଛି । ଚିନ୍ତାର କୌଣସି କାରଣ ନାହିଁ । ଶେଷକୁ ସେ ଗୁରୁତର ଅସୁସ୍ଥ ହେଇପଡ଼ିଲେ । ପ୍ରାୟ ମରଣାପନ୍ନ ଅବସ୍ଥାରେ ତାଙ୍କୁ ଚଣ୍ଡୀଗଡ଼ ଅଣା ହେଲା । ଜେ.ପି. ଠାକ୍ତରଖାନାକୁ ଅଣାହେଉଛନ୍ତି ବୋଲି ଖବର ପାଇ ବୋଉ, ଖୁଡ଼ୀ ଓ ଶ୍ରୀ ଫକୀର ମିଶ୍ର ତାଙ୍କୁ ଦେଖା କରିବାକୁ ଚଣ୍ଡୀଗଡ଼ ଯାଇଥିଲେ । ତାଙ୍କର ଯାହା ଅବସ୍ଥା ହେଇଥିଲା ସେଥିରେ ସେ ଆଉ ବଞ୍ଚିବେ ବୋଲି ଏମାନଙ୍କର କାହାରି ଆଶା ନଥିଲା । ସେଠି ସେ ଆଉ ପାଞ୍ଚ ସାତ ଦିନ ବଞ୍ଚିବେକି ନାହିଁ ଏହି ଅବସ୍ଥାରେ ଥିବାବେଳେ ବମ୍ବେରେ ରହୁଥିବା ତାଙ୍କର ସାନଭାଇ ରାଜେଶ୍ୱର ପ୍ରସାଦଙ୍କର ଜିଗରରେ ତାଙ୍କୁ ବମ୍ବେ ନେଇଯିବାକୁ ଅନୁମତି ମିଳିଲା ଓ ମୁକ୍ତି ମଧ୍ୟ ଦିଆଗଲା । ବମ୍ବେରେ ତାଙ୍କୁ ଯଶଲୋକ ହାସ୍‌ପାତାଳରେ ଭର୍ତ୍ତି କରାହେଲା । ସେଠି ଡ. ମଣି ଓ ତାଙ୍କର ସହକର୍ମୀମାନଙ୍କର ଅକ୍ଳାନ୍ତ ପରିଶ୍ରମ ଫଳରେ ସେ କ୍ରମେ ଆରୋଗ୍ୟ ଲାଭ କଲେ । ମାତ୍ର ତାଙ୍କର ଦୁଇଟି ଯାକ ବୃକ୍କ୍‌ଯନ୍ତ୍ର ବା କିଡ୍‌ନୀ ସଂପୂର୍ଣ୍ଣ ନଷ୍ଟ ହେଇଯାଇଥିଲା । ସେଆଉ ସାଢ଼େ ଚାରିବର୍ଷ ବଂଚିଲେ ।

ସେତକ ସମୟଯାକ ତାଙ୍କର ରକ୍ତକୁ ସପ୍ତାହରେ ତିନିଥର ଡାୟାଲିସିସ୍ ପ୍ରକ୍ରିୟା ଦ୍ୱାରା ପରିଷ୍କୃତ କରାଯାଉଥିଲା । ଏ ପ୍ରକ୍ରିୟା ବେଶ୍ କଷ୍ଟଦାୟକ ଓ ତାହା ପାଞ୍ଚ ଛଅ ଘଣ୍ଟା ଚାଲିଥାଏ । ଡାୟାଲିସିସ୍ ଦିନ ଜେ.ପି. କାହାରି ସହିତ ଦେଖା ସାକ୍ଷାତ ବା ଅନ୍ୟ କୌଣସି କାମ କରିପାରୁ ନଥିଲେ । ଡାୟାଲିସିସ୍ ସାହାଯ୍ୟରେ ଯେ ସେ ଏତେଦିନ ବଞ୍ଚିଲେ ତାହା ବି ପୃଥିବୀରେ ଏକ ରେକର୍ଡ଼ ବୋଲି କୁହାଯାଏ । ସେ ଯେତେ ଅସୁସ୍ଥ ହେଇ ଯଶଲୋକକୁ ଆସିଥିଲେ ସେଥିରେ ତାଙ୍କର ମନର ବଳ ଓ ଭଗବାନ ତାଙ୍କୁ ବଞ୍ଚେଇଲେ ବୋଲି ଡ. ମଣିଙ୍କର କହିବାର କଥା । ଚିକିତ୍ସକର ସାମର୍ଥ୍ୟ ବାହାରକୁ ତାଙ୍କର ଅବସ୍ଥା ଚାଲିଯାଇଥିଲା ବୋଲି ସେ କହିଥିଲେ ।

ଯେତେବେଳେ ଜଣାଗଲା ଯେ, ଜେ.ପି.ଙ୍କର ସବୁଦିନ ପାଇଁ ଡାୟାଲିସିସ୍ ଆବଶ୍ୟକ ହେବ ସେତେବେଳେ ସେଥି ନିମନ୍ତେ ଏକ ଯନ୍ତ୍ର କିଣିବାକୁ ଚାନ୍ଦା ଉଠେଇବାର ଉଦ୍ୟମ ହେଲା ଓ ଆବଶ୍ୟକ ଲକ୍ଷାଧିକ ଟଙ୍କା ଅଳ୍ପ ଆୟାସରେ ଜରୁରୀକାଳୀନ ପରିସ୍ଥିତିରେ ଅନ୍ଧାର ଭିତରେ ମଧ ମିଳିଗଲା । ସେଥିରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମଧ କିଛି ଅର୍ଥଦାନ କରିବାର ଇଚ୍ଛା ପ୍ରକାଶ କରିଥିଲେ, ମାତ୍ର ତାଙ୍କ ପ୍ରତି ଥିବା ତୀବ୍ର ବିରୋଧ ଭାବ ଯୋଗୁଁ ଶେଷପର୍ଯ୍ୟନ୍ତ ତାଙ୍କର ଦାନକୁ ପ୍ରତ୍ୟାଖ୍ୟାନ କରାଗଲା ।

ତାଙ୍କର ଚିକିତ୍ସାରେ କିଛି ଭୁଲ ହେଇଛି ଓ ହୁଏତ ତାହା ଜାଣିଶୁଣି ହେଇଥାଇପାରେ ବୋଲି ଜେ.ପି. ସନ୍ଦେହ କରୁଥିଲେ । ଜନତା ସରକାର ଗଢ଼ାହେବାରୁ ଡା. କେ ନାଗପ୍ପା ଆଲଭାଙ୍କୁ ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ ଜଣକିଆ କମିଶନ ଭାବରେ ନିଯୁକ୍ତ କରାଗଲ । ସେ ଯେଉଁ ରିପୋର୍ଟ ଦେଲେ, ତାହାର ବିଷୟବସ୍ତୁ ବିଷୟରେ ଖବର ବାହାରିଲା ଯେ, ଜେ.ପି.ଙ୍କୁ ଭୁଲ ଔଷଧ ଦିଆଯିବାରୁ ତାଙ୍କର ବୃକ୍କଯନ୍ତ୍ର ନଷ୍ଟ ହୋଇଯାଇ ଥିଲା । ମାତ୍ର ସେ ରିପୋର୍ଟ ସ୍ୱାସ୍ଥ୍ୟମନ୍ତ୍ରୀ ସଂସଦରେ ଉପସ୍ଥାପିତ କରିପାରିଲେ ନାହିଁ । ଅଭିଯୋଗ ହେଲା ଯେ, ସେ ଅନୁସନ୍ଧାନ ଓ ରିପୋର୍ଟ ଅସିଦ୍ଧ, କାରଣ ସାକ୍ଷ୍ୟ ନେବାବେଳେ ସାକ୍ଷୀମାନଙ୍କୁ ଶପଥପାଠ କରାହେଇନଥିଲା । ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି ଯେ, ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ସରକାରୀ ଅ[illegible]ରୀ ଜାଣିଶୁଣି ଅନୁସନ୍ଧାନ ପ୍ରକ୍ରିୟାରେ ଏ ତ୍ରୁଟି ଟି ରଖି ଦେଇଥିଲେ । ଆୟୋଗର ଅଧକ୍ଷ ଡାକ୍ତର ଆଲଭା ଆଇନ୍ କାନୁନ୍‌ର ଜଟିଳତା ବିଷୟରେ ଅଭିଜ୍ଞ ଥିବେ ବୋଲି ଆଶା କରିବାର କଥା ନୁହେଁ । ଆୟୋଗର ଲେଖାପଢ଼ି କାମ କରୁଥିବା ସମ୍ପାଦକ ଯଥେଷ୍ଟ ପୁରୁଖା ଅଭିଜ୍ଞ ଅଧିକାରୀ ଓ ସେ ସବୁ ବିଷୟରେ ପୂରାପୂରି ସାବଧାନ ରହିବାର କଥା । ତାଙ୍କର ଓ ତାଙ୍କର ଅନ୍ୟ ତଳିଆ କର୍ମଚାରୀମାନଙ୍କର ଅଜ୍ଞତା ଯୋଗୁଁ ଏଭଳି ଏକ ତ୍ରୁଟି ରହିଗଲା ଏହା ବିଶ୍ୱାସଯୋଗ୍ୟ ନୁହେଁ ।

ସେତେବେଳେ କଥା ଉଠିଲା ଯେ ଏ ତ୍ରୁଟି ସୁଧାରି ନେବାପାଇଁ ଆଉଥରେ ସାକ୍ଷୀମାନଙ୍କୁ ଡାକି ଶପଥ ପାଠ କରାଇ ସାକ୍ଷ୍ୟ ନିଆଯିବ, ମାତ୍ର ସେସବୁ କିଛି ହେଲା ନାହିଁ । ସ୍ୱାସ୍ଥ୍ୟମନ୍ତ୍ରୀ ରାଜନାରାୟଣ ମୋରାରଜୀଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ତଡ଼ିବାର ଷଡ଼ଯନ୍ତ୍ରରେ ମାତିଲେ ଓ ଆଲଭା

କମିଶନ୍ ରିପୋର୍ଟକୁ ଅପରାଧୀମାନେ ବେଶ୍ ସଫଳଭାବରେ ଚପେଇ ଦେଲେ । ଜେ.ପି.ଙ୍କ ବିରୋଧରେ ଏହି କୁତ୍ସିତ ଷଡ଼ଯନ୍ତ୍ରର ମୁଖ୍ୟ ଅଭିନେତା ଜଣେ ବିଶିଷ୍ଟ ଚିକିତ୍ସକଙ୍କୁ ରକ୍ଷା କରିବାପାଇଁ ଜନତା ଦଳର କେହି କେହି ଉଦ୍ୟମୀ ହେଉଥିବାର କଥା ମଧ୍ୟ ଶୁଣିବାକୁ ମିଳିଲା ।

ପରେ ଆଲାହାବାଦର 'ମାୟା' ମାସିକ ପତ୍ରିକାରେ ଏକ ଲେଖା ଜେ.ପି.ଙ୍କର ପ୍ରସ୍ତାବିତ ଅନ୍ତ୍ୟେଷ୍ଟି କ୍ରିୟା ବିଷୟରେ ବାହାରିଲା । ଜେ.ପି. ମରିବା ନିଶ୍ଚିତ ଜାଣି ତାଙ୍କୁ ମୁକ୍ତ କରାହେଉଥିଲା ଓ ସପ୍ତାହକ ଭିତରେ ତାଙ୍କର ମୃତ୍ୟୁ ଘଟିବ ବୋଲି ଧରିନେଇ ପାଟନାରେ ଜାକଜମକରେ ତାଙ୍କର ଅନ୍ତ୍ୟେଷ୍ଟି ସତ୍କାର କରାଯିବ ବୋଲି ସବୁ ଆୟୋଜନ ପ୍ରାୟ ସଂପୂର୍ଣ୍ଣ କରାହେଉଥିଲା । ଯଥା : ଗଙ୍ଗା କୂଳରେ ଶ୍ମଶାନ ଭୂମିରେ ସ୍ଥାନ ନିର୍ବାଚନ କରାଯାଇ ତା'ର ସଫେଇ ଆଦି କରା ହେଉଥିଲା । ଶବ ଶୋଭାଯାତ୍ରାର ଚଳଚ୍ଚିତ୍ର ଉଠେଇବାର ବ୍ୟବସ୍ଥା ହେଉଥିଲା ଏହା ଦେଖେଇବାକୁ ଯେ, ସେଥିରେ କଂଗ୍ରେସ (ଇ) ନେତାମାନେ କିପରି ଶୋମଗ୍ନ ହୋଇ ଆଗରେ ଚାଲୁଛନ୍ତି ଓ ଲୋକେ କିପରି ସ୍ୱାଧୀନତା ଭାବରେ ସେଥିରେ ଯୋଗ ଦେଉଛନ୍ତି । ଶୋଭାଯାତ୍ରାର ମାର୍ଗ ନିର୍ଦ୍ଦିଷ୍ଟ କରାଯାଇଥିଲା ଓ ଅନ୍ୟାନ୍ୟ ସବୁ ଯୋଗାଡ଼ ମଧ୍ୟ ସରିଥିଲା । ମାତ୍ର ବିଧିର ବିଧାନ ଯେ, ଏ ଅଭିନୟର ସୁଯୋଗ ଇନ୍ଦିରାଜୀଙ୍କୁ ମିଳିଲା ନାହିଁ ।

ପରେ ଡା: ଆଲ୍‌ଭା ତାଙ୍କ ରିପୋର୍ଟର ମୂଳ ନକଲ ମତେ ଦେଖିବାକୁ ଦେଇଥିଲେ । ସେଥିରୁ ସ୍ପଷ୍ଟ ଜାଣିବାକୁ ମିଳିଲା ଯେ, ଜେ.ପି.ଙ୍କର ତଥାକଥିତ ଚିକିତ୍ସା ପାଇଁ ଯେଉଁସବୁ ଔଷଧ ତାଙ୍କୁ ଖାଇବାକୁ ଦିଆଯାଉଥିଲା ସେ ସବୁ ସ୍ପଷ୍ଟତଃ ବହୁମୂତ୍ର ରୋଗୀମାନଙ୍କ ପାଇଁ ନିଷିଦ୍ଧ । ସେସବୁ ବ୍ୟବହାର କଲେ ବୃକ୍କଯନ୍ତ୍ର ନଷ୍ଟ ହେବାର ଓ କ୍ରମେ ଜୀବନ ଉପରେ ଆଞ୍ଚ ଆସିବାର ପୂର୍ଣ୍ଣ ସମ୍ଭାବନା ରହିଥାଏ । ଚିକିତ୍ସାଶାସ୍ତ୍ରର ସାହିତ୍ୟରେ ଏଇଟା ସାଧାରଣ ଭାବରେ ଜଣା ତଥ୍ୟ ଓ ଯେକୌଣସି ଅଭିଜ୍ଞ ଚିକିତ୍ସକଙ୍କୁ ଏହା ଜଣାଥିବାର କଥା । ଅଥଚ ଡ: ବୁଟାନୀଙ୍କ ପରି ପୁରୁଖା ଚିକିତ୍ସକ ଏହା ଯେ ଜାଣିପାରିଲେ ନାହିଁ ଓ ଆଗ୍ରହପୂର୍ବକ ଭୁଲ ଚିକିତ୍ସା ଯେ କରି ଚାଲିଲେ ତାହା ଅଜ୍ଞତାବଶତଃ କରିଲେ ବୋଲି କୌଣସି ପ୍ରକୃତିସ୍ଥ ଲୋକ ବିଶ୍ୱାସ କରିବ ନାହିଁ ।

## ଓଲଟପାଲଟ

ମୁଁ ବାହାରେ ଥିବା ଭିତରେ ଖବର ମିଳିଲା ଯେ, ଆମର ବୋହୂ ଆରତିର ବାରଣାସୀରେ ଅକ୍ଟୋବର ତିନି ତାରିଖରେ ଗୋଟିଏ ପୁଅ ହେଇଛି । ମୋର ପୁଅ କବୀର ସେତେବେଳେ ଭୋପାଳରେ ହେଭୀ ଇଲେକ୍‌ଟ୍ରିକାଲସ୍‌ରେ ଚାକିରୀ କରୁଥାଏ । ମୋର ଅସ୍ତ୍ରଚିକିତ୍ସା ବେଳେ କଟକଆସି ବାରଣାସୀ ଯାଇଥିଲା । ନାତି ମାସକର ହେଇଗଲାରୁ ବାରଣାସୀରୁ ସମସ୍ତେ କଟକ ଆସିଲେ । ଘରଯାକ ଲୋକ ସମସ୍ତ ବାପା ଓ ମା' ପୁଅକୁ ପାଛୋଟି ଆଣିବାପାଇଁ କଟକ ଷ୍ଟେସନ୍‌କୁ ଗଲୁ । ଏକ ଲମ୍ବା ରିକ୍‌ସା ଶୋଭାଯାତ୍ରାରେ ଘରକୁ ଫେରିଲୁ । ତା' ପରେ ସେଠି ପୁଅର ନାମକରଣ କଥା ଉଠିଲା । ନାଁ ବାଛିବା ପାଇଁ ଏକ ଆଲୋଚନାଚକ୍ର ବସିଲା । କଥା ହେଲା ଯେ, ଗୋଟିଏ କିଛି ଅସାଧାରଣ ନାମ ଦିଆଯିବ । ଦୀର୍ଘ ଆଲୋଚନା ଓ ଅନେକ

ଯୁକ୍ତିତର୍କ ପରେ ଠିକ୍ ହେଲା ନାଁ ହେବ 'ଅରସ୍ତୁ'– ଗ୍ରୀକ୍ ଦାର୍ଶନିକ ଆରିଷ୍ଟଟଲ୍‌ଙ୍କର ନାମର ଆରବୀ ରୂପ – ଯେଉଁଟା ହିନ୍ଦୀରେ ଚଳେ । ଡାକ ନାମ ହେଲା, ଶାଶା– ଏକ ରୁଷିୟ ଡାକନାମ ଅନୁସାରେ ।

ମୋର ଜ୍ୱାଇଁ ରାଧାନାଥ ସେତେବେଳେ ରାଞ୍ଚିରେ ହିନ୍ଦୁସ୍ଥାନ ଷ୍ଟିଲର ଗବେଷଣା ବିଭାଗରେ କାମ କରୁଥାନ୍ତି । ଝିଅ ଓ ସେ ମଧ କଟକ ଆସିଥିଲେ । ସେତେବେଳେ ଖୁଡ଼ୀ ଜେଲ୍‌ରେ । ବେଆଇନ୍ ପ୍ରଚାରପତ୍ର ରଖିବା ଓ ବାଣ୍ଟିବା ଅଭିଯୋଗରେ ସେ ଗିରଫ ହେଇ ତାଙ୍କର ବିଚାର ଚାଲିଥାଏ । ତାଙ୍କୁ ସ୍ତ୍ରୀ କଏଦୀଙ୍କ ସାଙ୍ଗରେ ରଖା ହେଇଥାଏ । ତା ଭିତରେ ଜଣେ ପାଗଳୀ ବି ଥାଏ । ପରିଚ୍ଛନ୍ନତାର ଅତ୍ୟନ୍ତ ଅଭାବ । ଏହି ପରିସ୍ଥିତିରେ ସେ ଯେତେ ଅଶାନ୍ତି, ଅସୁବିଧା ଓ କଷ୍ଟ କଟକ ଜେଲ୍‌ରେ ଭୋଗକଲେ ତାହା ସେ ଇଂରେଜ ସରକାର ବିରୋଧରେ ଲଢ଼ିବାବେଳେ ବି ଭୋଗ କରି ନଥିଲେ । ସେ ୧୯୭୬ ଫେବୃୟାରୀ ସାତ ତାରିଖରେ ଗିରଫ ହେଇଥିଲେ । ସେ ଯେତେଦିନ ହାଜତରେ ରହିଥିଲେ ସେତିକି ଦିନ ଅର୍ଥାତ୍ ତିନିମାସ କାରାଦଣ୍ଡ ଦିଆଯାଇ ତାଙ୍କୁ ମେ ପହିଲାରେ ଛାଡ଼ି ଦିଆଗଲା ।

ଏଇ ବାହାରେ ଥିବାବେଳେ ଆମ ଗ୍ରାମସେବକ ପ୍ରେସ୍‌ର ଘଟଣା ଭଲରୂପେ ଜାଣିଲି । ପୂର୍ବରୁ ଜେଲ୍‌କୁ ନବାଗନ୍ତୁକଙ୍କ ଠାରୁ କିଛି କିଛି ଅଭ୍ୟାସ ପାଇଥିଲି । ଏ ପ୍ରେସ୍‌ରେ ତ ଜରୁରୀକାଳୀନ ଶାସନ ଜାରୀ ହେବା ସାଙ୍ଗେ ସାଙ୍ଗେ ଦୁଇଟି ପ୍ରଚାରପତ୍ର ତାହା ବିରୋଧରେ ଛପା ହେଇ ବଣ୍ଟା ହେଇଥିଲା । ଫଳରେ ଦୁଇ ତିନି ଦିନ ପରେ ପୁଲିସ୍ ତାକୁ ଘେରଉ କରି ସେଥିରେ ତାଲା ପକେଇ ଦେଲେ ଓ ଜରୁରୀକାଳୀନ ଶାସନ ସରିବା ଯାକେ ଉଣେଇଶ ମାସ କାଳ ସେଠି ପୁଲିସ ପହରା ବସାଇ ରଖାଗଲା । ମାତ୍ର ଆଶ୍ଚର୍ଯ୍ୟର କଥା ଯେ, ଜନତା ଦଳର ସରକାର ଗଢ଼ା ହେଇ ଗଣତନ୍ତ୍ର ଫେରିବା ପରେ ଯେତେବେଳେ ପୁଲିସ୍ ଅଫିସ୍‌ରେ ସନ୍ଧାନ ନିଆଗଲା, ସେତେବଳେ ଗ୍ରାମସେବକ ପ୍ରେସ୍‌ରେ ତାଲା ପକେଇ ପୁଲିସ୍ ପହରା ବସା ଯିବାର କୌଣସି କାଗଜପତ୍ର ମିଳିଲା ନାହିଁ ।

ଗ୍ରାମସେବକ ପ୍ରେସ୍ ବନ୍ଦ ହେବା ସତ୍ତ୍ୱେ ଗୁପ୍ତ ପତ୍ର ଛପା ହେଇ ବଣ୍ଟା ହେବାରେ ଲାଗିଥିଲା । ପୁଲିସ୍ ସନ୍ଦେହ କରି ଗ୍ରାମସେବକ ପ୍ରେସ୍‌ର ପରିଚାଳକ ନିକୁଞ୍ଜ ବାବୁଙ୍କୁ ଧରିନେଇ ଲାଲବାଗ ଥାନାରେ ଅଟକ ରଖି ପଚରାପଚରି କଲେ । ତାଙ୍କୁ ଏକ ହାଜତ ଘରେ ବନ୍ଦ କରି ରଖା ହେଲା ଯାହା ମଳମୂତ୍ରରେ ଭରି ରହିଥିଲା । ତଳେ ଗୋଡ଼ ରଖିବାକୁ ରାହା ନଥିଲା । ନିକୁଞ୍ଜବାବୁ ହାଜତର ଲୁହା ଛଡ଼ରେ ତିଆରି କବାଟର ତଳପାଖ ଆଡ଼ିପାତ ଉପରେ ଗୋଡ଼ରଖି ବସି ଛିଡ଼ାବାଗର ଛଡ଼କୁ ଦୁଇ ହାତରେ ଧରି ସାରାରାତି କଟେଇଲେ ।

ଏହି ସମୟରେ ରା.ସ୍ୱ. ସଂଘରେ ବାହାରେ ଥିବା ଯୁବକ କର୍ମୀମାନେ ବୋଉ ସହିତ ଯୋଗାଯୋଗ ରଖିଥାନ୍ତି ଓ ପ୍ରଚାରପତ୍ର ଆଦି ସେଠୁ ନେଇ ବାଣ୍ଟୁଥାନ୍ତି । ମଝିରେ ମଝିରେ ଆଇନ୍ ଅମାନ୍ୟର କାର୍ଯ୍ୟକ୍ରମ ବି କରୁଥାନ୍ତି । ୧୯୭୫ ଗାନ୍ଧୀ ଜୟନ୍ତୀ ଦିନ, ଅକ୍ଟୋବର ୨,

କଟକରେ ବୋଉ ଓ ଖୁଡ଼ୀଙ୍କ ଉଦ୍ୟମରେ ଏକ ନୀରବ ଶୋଭାଯାତ୍ରା ବାହାରିଥିଲା ଓ ପ୍ରାର୍ଥନା ସଭା ହୋଇଥିଲା । ସେଥିରେ ପୁଲିସ ହସ୍ତକ୍ଷେପ କରିନଥିଲେ ।

ମୋର ପ୍ୟାରୋଲ ସରିବାରୁ ମୁଁ ନଭେମ୍ବର ୧୯ ତାରିଖରେ କଟକ ଜେଲରୁ ଫେରିଗଲି । ମତେ ଦାଦା, ନିକୁଞ୍ଜ ଓ ବାହାରେ ଥିବା ଅନ୍ୟାନ୍ୟ ଅନେକ ସାଥୀ ଏକ ଶୋଭାଯାତ୍ରାରେ ନେଇ କଟକ ଜେଲ୍ ଫାଟକରେ ଛାଡ଼ିଦେଇ ଆସିଲେ । ଜେଲର ଧରାବନ୍ଧା ଜୀବନଯାତ୍ରାର ଚକ ପୁଣି ଘୂରିବାକୁ ଲାଗିଲା । ମାତ୍ର ହଠାତ୍ ଜାନୁୟାରୀ ମାସ ଶେଷ ଆଡ଼କୁ ସାଧାରଣ ନିର୍ବାଚନ ଘୋଷଣା କରାଗଲା ଓ ରାଜବନ୍ଦୀମାନଙ୍କୁ ଖଲାସ କରିବା ଆରମ୍ଭ ହେଲା । ନିର୍ବାଚନ ମାର୍ଚ୍ଚ ମାସରେ ହେବାର ଧାର୍ଯ୍ୟ କରାଯାଇଥାଏ । ମାତ୍ର ଜରୁରୀକାଳୀନ ଶାସନ ଉଠାହୋଇ ନଥାଏ । କେତେକ ଲୋକ ଓ ସେମାନଙ୍କ ଭିତରେ ବିନୋବାଙ୍କର ପଦାଙ୍କ ଅନୁସରଣକାରୀ ମଧ୍ୟ ଅନେକ ଥିଲେ, ଏ ନିର୍ବାଚନ ଘୋଷଣାଟାକୁ ଇନ୍ଦିରାଜୀଙ୍କର ଗଣତନ୍ତ୍ର ପ୍ରତି ନିଷ୍ଠାର ଏକ ପ୍ରମାଣରୂପେ ବ୍ୟାଖ୍ୟା କଲେ, ମାତ୍ର ଏ ପ୍ରକାରର ବ୍ୟାଖ୍ୟା ସଂପୂର୍ଣ୍ଣ ଭାବରେ ସାରହୀନ ଥିଲା । ଇନ୍ଦିରାଜୀ ୪୨ କ ସମ୍ବିଧାନ ସଂଶୋଧନ ଦ୍ୱାରା ଭାରତରୁ ଗଣତନ୍ତ୍ରକୁ ଲୋପ କରିବାର ବ୍ୟବସ୍ଥା କରିଥିଲେ । ନିର୍ବାଚନ ଜରୁରୀକାଳୀନ ଶାସନ ବ୍ୟବସ୍ଥା ଚାଲୁରହିଥିବା ଭିତରେ ହିଁ କରାହେବାର ସ୍ଥିରହେଲା । ଅର୍ଥାତ୍ ନିର୍ବାଚନ ପରେ ମଧ୍ୟ ତାହା ଜାରି ରହିବ ବୋଲି ତାଙ୍କର କଳ୍ପନା ଥିଲା । ବିରୋଧୀ ଦଳର ନେତାମାନଙ୍କୁ ଆଗେ ଖଲାସ କରିଦିଆଗଲା ସତ, ମାତ୍ର କର୍ମୀମାନଙ୍କୁ ଖଲାସ କରିବା କାର୍ଯ୍ୟ ଅତି ଧୀରେ ଧୀରେ ଆଗେଇଲା । ନିର୍ବାଚନ ପନ୍ଦର ଦିନ ପୂର୍ବଯାଏ ବି ସବୁ କର୍ମୀ ଜେଲରୁ ବାହାରି ନଥା'ନ୍ତି ।

ଇନ୍ଦିରାଜୀଙ୍କର ନିର୍ବାଚନ କରାଇବାର ଉଦ୍ଦେଶ୍ୟ ଥିଲା ପାଶ୍ଚାତ୍ୟ ଦେଶମାନଙ୍କ ଆଖିରେ ଆପଣାର ଭାବମୂର୍ତ୍ତି ଟିକିଏ ଉଜ୍ଜ୍ୱଳ କରାଇବା ଓ ଆମେରିକା ପ୍ରଭୃତିରୁ ଆର୍ଥିକ ସାହାଯ୍ୟର ପଥ ସୁଗମ କରାଇବା । ସେତେବେଳକୁ ସାରା ପୃଥିବୀର ଗଣତନ୍ତ୍ରପ୍ରେମୀ ମହଲରେ ଇନ୍ଦିରାଜୀଙ୍କର ଶାସନର ଯଥେଷ୍ଟ ନିନ୍ଦା ହେବାକୁ ଲାଗିଲାଣି । ଫଳରେ ଭାରତକୁ ଆର୍ଥିକ ସାହାଯ୍ୟ ଦେବା ବିରୋଧରେ ବି ହାୱା ବେଶ୍ ପ୍ରବଳ ହେବାକୁ ଲାଗିଲାଣି । ଏ ଅବସ୍ଥାରେ ନିର୍ବାଚନଟାଏ କରେଇ ଦେଇ ବହୁ ଅଧିକ ଭୋଟରେ ଜିତିଗଲେ ପୃଥିବୀରେ ସମାଲୋଚନାର ମୁହଁ ବନ୍ଦ ହୋଇଯିବ । ବିଧିବଦ୍ଧ ଭାବରେ ଗଣତାନ୍ତ୍ରିକ ପନ୍ଥାରେ ନିର୍ବାଚିତ ନେତା ଓ ଶାସକଭାବରେ ତାଙ୍କର ନ୍ୟାୟସଙ୍ଗତତା (Legitimacy) ଦୃଢ଼ ହୋଇଯିବ । ବିରୋଧୀ ଦଳମାନଙ୍କର ନେତାମାନେ ହଠାତ୍ ଜେଲରୁ ବାହାରି ଅଳ୍ପସମୟ ଭିତରେ ସୁସଙ୍ଗଠିତ ହୋଇପାରିବେ ନାହିଁ, ଏକମତ ବି ହୋଇପାରିବେ ନାହିଁ । କର୍ମୀମାନେ ବି ଜେଲରୁ ଡେରିରେ ବାହାରି ହଠାତ୍ କାମରେ ଲାଗିପାରିବେ ନାହିଁ । ଏହିସବୁ ହିସାବ କରି ଇନ୍ଦିରା ନିର୍ବାଚନ ଘୋଷଣା କରିଥିଲେ ବୋଲି ସ୍ପଷ୍ଟ ଜଣାଯାଏ । ଭାରତ ସରକାରର ଗୁପ୍ତଚର ସଂସ୍ଥା 'ର' (RAW) ମଧ୍ୟ ସବୁଆଡୁ ଖବର ନେଇ କଳନା କରି ଭବିଷ୍ୟତବାଣୀ କରିଥିଲା ଯେ, ନିର୍ବାଚନରେ କଂଗ୍ରେସ (ଇ) ବହୁତ ଅଧିକ ବହୁମତରେ ଜିତିବ ।

ମାତ୍ର ସେମାନେ କେହି ଦେଶବାସୀଙ୍କର ପ୍ରକୃତ ଭାବନା ଓ ଜୟପ୍ରକାଶଜୀଙ୍କୁ ହିସାବକୁ ନେଇ ନଥିଲେ । ଜେ.ପି.ତ ପ୍ରାୟ ବର୍ଷେ ହେବ ବାହାରେ ଥା'ନ୍ତି, ମାତ୍ର ନଷ୍ଟ ବୃକକ୍ ଯନ୍ତ୍ର ଯୋଗୁଁ ଏକରକମ ଅଥର୍ବ ହୋଇ ଲୋକଙ୍କ ସାଙ୍ଗରେ ଦେଖାସାକ୍ଷାତ କରୁଥାନ୍ତି, ଦେଶକୁ ସଙ୍କଟ ଭିତରୁ ଉଦ୍ଧାର କରିବା ବିଷୟରେ ପରାମର୍ଶ କରୁଥା'ନ୍ତି । ନିର୍ବାଚନ ଘୋଷଣା ହୋଇଯିବାରୁ ନିର୍ବାଚନ ଲଢ଼ିବା ନ ଲଢ଼ିବା ନେଇ ମତ ପାର୍ଥକ୍ୟ ଦେଖାଗଲା । କେତେକ କର୍ମୀ ବିଚାରୁଥା'ନ୍ତି ଯେ,ନିର୍ବାଚନ ଲଢ଼ି କିଛି ଲାଭ ହେବନାହିଁ । ଯେପରି ପରିସ୍ଥିତିରେ ତାହା ହେଉଛି ସେଥିରେ କଂଗ୍ରେସ (ଇ) ବିରୋଧରେ କେହି ଜିତିବାର ଆଶା ନାହିଁ । ମାତ୍ର ଜେ.ପି. ନିର୍ବାଚନ ଲଢ଼ିବା ସପକ୍ଷରେ ଥା'ନ୍ତି ଓ ବିରୋଧୀ ଦଳମାନଙ୍କୁ ଏକାଠି କରିବା ଚେଷ୍ଟା କରୁଥାନ୍ତି । ଏଣେ ବିରୋଧୀ ଦଳମାନଙ୍କର ନେତାମାନଙ୍କ ଭିତରେ କନ୍ଦଳର ସୀମା ନଥାଏ । ଦଳର ନାମ କ'ଣ ହେବ ତାହା ନେଇ ବହୁତ ମତଭେଦ ଥାଏ । ପତାକା କିପରିହେବ ତାହା ନେଇ ମଧ୍ୟ । ଏଣେ ନିର୍ବାଚନ ତାରିଖ ପାଖେଇ ଆସୁଥାଏ । ଶେଷକୁ ଜେ.ପି.ଧମକ ଦେଲେ ଯେ, ଦଳମାନେ ଏକାଠି ନ ମିଶିଲେ ସେ ସେମାନଙ୍କ ସାଙ୍ଗରେ ସମ୍ପର୍କ ରଖିବେ ନାହିଁ । ସେଠୁ ତରବରରେ ଜନତା ଦଳ, ଲୋକଦଳ, ଜନସଂଘ ମିଶିବା ଠିକ୍ ହେଲା । ନାଁ ଜନତା ଦଳ ରହିଲା । ଏସବୁ ସିନା କେବଳ କଥାରେ ହେଲା । ପ୍ରକୃତ ମିଶ୍ରଣ ଯାଇ ନିର୍ବାଚନ ପରେ ହେଲା । କଟକ ଜେଲରୁ ଆମେ ପଞ୍ଚାଏ ଜାନୁଆରୀ ୨୯ ତାରିଖରେ ଖଲାସ ହେଲୁ । ମୁଁ ବାହାରିବା ପରେ ଖବର ପାଇଲି ଯେ, ନିର୍ବାଚନରେ ସର୍ବୋଦୟ କର୍ମୀଙ୍କର ଭୂମିକା ବିଷୟରେ ବିଚାର କରିବାପାଇଁ ଦିଲ୍ଲୀରେ ଏକ ବୈଠକ ଡକାହେଇଛି । ମୁଁ କଟକରୁ ରାଞ୍ଚି ଓ ଭୋପାଳ ହୋଇ ଦିଲ୍ଲୀ ଗଲି । ଭୋପାଳରେ ମୁଁ ଜାଣି ପ୍ରଥମେ ନିର୍ବାଚନ ପ୍ରଚାର ସଭା କରିଥିଲି । ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ଭୋପାଳ କେନ୍ଦ୍ରର କର୍ମୀ ଗୋଟିଏ ସାଧାରଣ ସଭାରେ ମତେ କହିବାକୁ ଅନୁରୋଧ କଲେ, ଏମିତି ସର୍ବୋଦୟ ଆନ୍ଦୋଳନ ବିଷୟରେ ସାଧାରଣ ଭାବରେ କିଛି କହିବାକୁ । ସଭା ସନ୍ଧ୍ୟାବେଳେ ଏକ ବଜାର ଛକ ପାଖରେ ହେଲା । ସେତେବେଳଯାଏ ଭୟର ହାଓ୍ୱା ହଟି ନଥାଏ । ସଭାରେ ବଡ଼ ଜୋର ପନ୍ଦରଜଣ ଲୋକ ପାଖରେ ଆସି ବସିଥା'ନ୍ତି । ଆଉ ପନ୍ଦରଜଣ ଲୋକ ଟିକିଏ ଦୂରରେ ଠିଆହୋଇ ଶୁଣୁଥା'ନ୍ତି । ଇନ୍ଦିରା ଗାନ୍ଧୀଙ୍କ ଶାସନକୁ ହଟେଇବାକୁ ହେବ ବୋଲି ମୁଁ ସିଧାସଳଖ କହିଲି । ସଭା ସରିବାପରେ ଆମର କର୍ମୀଜଣକ ବିସ୍ମିତ ହୋଇ ମତେ କହିଲେ, "ଆପଣ ସିଧାସଳଖ ଏପରି କଥା କହିଲେ ?" ଟିକିଏ ଭୟର ଭାବ ତାଙ୍କର ଥିବାର ମନେ ହେଲା । ଏମିତି କଥା କହିଲେ କ'ଣ ହେଇଯିବ କିଏ ଜାଣେ ? ତା'ଛଡ଼ା କେତେକ ସର୍ବୋଦୟ କର୍ମୀ ବିନୋବାଙ୍କ ପ୍ରଭାବରୁ କାହାରି ସପକ୍ଷ ବିପକ୍ଷରେ ନ କହିବା ହିଁ ସର୍ବୋଦୟର ନୀତିସମ୍ମତ ବୋଲି ବିଚାରୁଥା'ନ୍ତି ଓ ଏବେ ବି ବିଚାରନ୍ତି ।

ଭୋପାଳରୁ ମୁଁ ଦିଲ୍ଲୀ ଗଲି । ସେଠି ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନର ସଭାଘରେ ବୈଠକ ଥାଏ । ସେଥିରେ ସିଦ୍ଧରାଜଜୀ, ରାମମୂର୍ତ୍ତି ପ୍ରଭୃତି କୋଡ଼ିଏ ଜଣ ଖଣ୍ଡେ ଥା'ନ୍ତି । ଆଲୋଚନାରେ

ଦେଖାଗଲା ଯେ, କୌଣସି ଦଳର ସପକ୍ଷ ବିପକ୍ଷରେ କହିବା ସର୍ବୋଦୟର ନୀତି ଓ ଖାସ୍‌କରି ଲୋକସେବକଙ୍କର ସଙ୍କଳ୍ପର ବିରୋଧାଚରଣ ହେବ । ଲୋକସେବକ ସଙ୍କଳ୍ପ ପତ୍ରରେ ଥାଏ ଯେ, ସେ କୌଣସି ଦଳର ସଦସ୍ୟ ହେବେ ନାହିଁ, ନିର୍ବାଚନରେ ପ୍ରାର୍ଥୀ ହେବେ ନାହିଁ ଓ ଦଳଗତ ରାଜନୀତିରେ ଲିପ୍ତ ହେବେ ନାହିଁ । ଆମର ଯୁକ୍ତି ଯେ କଂଗ୍ରେସ (ଇ) ଶାସନକୁ ହଟେଇବା ଦଳଗତ ରାଜନୀତି ନୁହେଁ, ତାହା ଗଣତନ୍ତ୍ରର ଜୀବନମରଣର ଘଡ଼ିସନ୍ଧିବେଳେ ଏକ କର୍ତ୍ତବ୍ୟ କର୍ମ । ଶ୍ରୀ ରାମକୃଷ୍ଣ ପାଟିଲ ଯୁକ୍ତି କଲେ ଯେ ଯେହେତୁ ଇନ୍ଦିରାଜୀ ନିର୍ବାଚନ କରାଉଛନ୍ତି ସେ ହେତୁ ସେ ଗଣତନ୍ତ୍ର ବିରୋଧୀ ନୁହନ୍ତି । ତେଣୁ କଂଗ୍ରେସ (ଇ) ର ବିରୋଧ କରିବା ଉଚିତ୍ ନୁହେଁ । ସର୍ବୋଦୟ କର୍ମୀ ନିର୍ବାଚନରେ ନିରପେକ୍ଷ ରହିବା ଉଚିତ୍ ।

ଯାହହେଉ ଶେଷ ପର୍ଯ୍ୟନ୍ତ ନିଷ୍ପତ୍ତି ହେଲା ଯେ, କୌଣସି ଦଳର ନାଁ ଧରିବା ବା କୌଣସି ନିର୍ଦ୍ଦିଷ୍ଟ ପ୍ରାର୍ଥୀଙ୍କର ସପକ୍ଷ ବିପକ୍ଷରେ ନ କହି ସାଧାରଣ ଭାବରେ ଗଣତନ୍ତ୍ରର ସମର୍ଥକ ପ୍ରାର୍ଥୀଙ୍କୁ ଭୋଟ ଦେବାପାଇଁ କୁହାଯିବ ।

ସେଠୁ ଫେରି ମୁଁ ଓଡ଼ିଶାରେ ନିର୍ବାଚନ ପ୍ରଚାରରେ ଲାଗିପଡ଼ିଲି । ଓଡ଼ିଶାର ସମସ୍ତ ସର୍ବୋଦୟ କର୍ମୀ ମଧ୍ୟ । ମୁଁ କଟକ, ପୁରୀ, ବାଲେଶ୍ୱର ଓ କୋରାପୁଟ ଜିଲ୍ଲାର ଛଅଟି ଲୋକସଭା ନିର୍ବାଚନ ମଣ୍ଡଳୀରେ ବୁଲି ପ୍ରଚାର କରିଥିଲି । ଜନତା ଦଳର ନିର୍ବାଚନ ଇସ୍ତାହାର ରବୀନ୍ଦ୍ର ବର୍ମା ପ୍ରଭୃତି ଚିଠା କରୁଥିଲେ । ସେଥିରେ ଗାନ୍ଧୀ ବିଚାରର ଛାପ ବହୁତ ଥିଲା । ମାତ୍ର ଜନତା ନେତାମାନଙ୍କ ସମେତ କେହି ତାକୁ ପଢ଼ିଥିଲେ କି ନା ସନ୍ଦେହ । ଓଡ଼ିଶା ପାଇଁ ଦଳର ଏକ ସଂକ୍ଷିପ୍ତ ଇସ୍ତାହାର ବାହାରିଲା । ସେଥିରେ ଏକ ପ୍ରତିଶ୍ରୁତି ଥିଲା ଯେ ଦିଲ୍ଲୀରୁ ଭୁବନେଶ୍ୱର ସିଧା ଉଡ଼ାଜାହାଜ ସେବାର ବ୍ୟବସ୍ଥା କରାଯିବ ।

ଆମେ ସର୍ବୋଦୟବାଲା ସ୍ଥିର କରିଥିଲୁ ଯେ, ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତାର ମୌଳିକ ପ୍ରଶ୍ନ ଉପରେ ଜୋର୍ ଦେଇ ପ୍ରଚାର କରିବାକୁ ହେବ । ସେତେବେଳେ 'ଦାନାକନା ବନାମ ସ୍ୱାଧୀନତା'ର ସ୍ଲୋଗାନ ଇନ୍ଦିରାଜୀଙ୍କ ପକ୍ଷରୁ ଜୋର ଚାଲିଥାଏ । ମାର୍କ୍ସପନ୍ଥୀ ଓ ଅନେକ ସମାଜବାଦୀ ମଧ୍ୟ ବିଶ୍ୱାସ କରୁଥା'ନ୍ତି ଓ ପ୍ରଚାର ମଧ୍ୟ କରିଆସି ଥା'ନ୍ତି ଯେ, ଏ ଦୁଇଟା ଏକାଠି ମିଳିପାରିବ ନାହିଁ । ଦୁଇଟାଯାକ ପରସ୍ପର ବିରୋଧୀ । ଗୋଟାକୁ ବାଛିବାକୁ ହେବ । ସର୍ବୋଦୟବାଲାଙ୍କ ଭିତରୁ ଅନେକେ, କେତେକ ଚିନ୍ତାଶୀଳ ଲୋକ ମଧ୍ୟ, ଏହି ହାଓ୍ୱା ଦ୍ୱାରା ପ୍ରଭାବିତ ହେଉଥା'ନ୍ତି । ସର୍ବୋଦୟ ଲୋକେ ସ୍ୱାଧୀନତା ଓ ଦାନାକନା ଉଭୟର ଅପରିହାର୍ଯ୍ୟତାରେ ବିଶ୍ୱାସ କରୁଥିଲେ ମଧ୍ୟ ସାଧାରଣ, ବିଶେଷ କରି ଦରିଦ୍ର ଲୋକଙ୍କୁ, ଯେ ସ୍ୱାଧୀନତାର ମହତ୍ତ୍ୱ ବୁଝାଇହେବ ସେ ବିଷୟରେ ସନ୍ଦିହାନ ଥା'ନ୍ତି । ମାତ୍ର ମୋର ବିଶ୍ୱାସ ଥାଏ ଯେ, ଦୁଇଟାଯାକ ପରସ୍ପର ନିର୍ଭରଶୀଳ । ଦାନାକନା ନ ମିଳିବାଯାଏ ସ୍ୱାଧୀନତା ପରିପୂର୍ଣ୍ଣ ହେବନାହିଁ ଓ ସ୍ୱାଧୀନତା ନଥିଲେ ଦାନାକନା କେବେ ମିଳିବ ନାହିଁ, ଏବଂ ଏକଥା ସାଧାରଣ ଦରିଦ୍ର ଅପାଠୁଆ ଲୋକଙ୍କୁ ମଧ୍ୟ ବେଶ୍ ବୁଝାଇ ହେବ । ମୋର କଟକର ସେହି ରିକ୍ସାବାଲାର କଥା ମନରେ ଥାଏ । ଯେ ମନ୍ତବ୍ୟ କରିଥିଲେ,

"ବାବୁ, ଆଗ ଅମଳରେ ଆମର ପେଟ ପୂରୁ ନଥିଲା କି ଏ (ଇନ୍ଦିରା ଗାନ୍ଧୀ) ଅମଳରେ ବି ପୂରୁନାହିଁ; ମାତ୍ର ଆମେ ସେତେବେଳେ ଦୁଃଖରେ କାନ୍ଦି ହେଲେ ପାରୁଥିଲୁ, ଏବେ କାନ୍ଦିବା ବି ମନା ।"

ସର୍ବୋଦୟ ମଣ୍ଡଳ ପକ୍ଷରୁ 'ଦାନାକନା ଓ ସ୍ୱାଧୀନତା' ଉପରେ ପ୍ରଚାରପତ୍ର ବାହାରିଲା ଓ ସର୍ବତ୍ର ଆଦୃତ ହେଲା । ନିର୍ବାଚନ ପ୍ରଚାର ସଭାମାନଙ୍କରେ ମୁଁ ଏଇ ପ୍ରଶ୍ନ ନେଇ କହୁଥାଏ ଓ ଦେଖୁଥାଏ ଯେ, ଲୋକେ କଥାଟା ବେଶ୍ ବୁଝୁଛନ୍ତି । କୋରାପୁଟ ଜିଲ୍ଲାରେ ସଭାଗୁଡ଼ିକ ସାନସାନ ହେଉଥିଲା । ସେଠାକାର ଜନତା ଦଳର ନେତା ଝିଆରୀ ନା କାହା ବାହାଘରରେ ବ୍ୟସ୍ତ ଥିଲେ । ତେଣୁ ମୋ ଗସ୍ତରେ ବିଶେଷ କିଛି ସାହାଯ୍ୟ କରି ପାରିନଥିଲେ । ଆଦିବାସୀଙ୍କର ଏସବୁ ସଭାରେ ଆଲୋଚନା ପ୍ରଶ୍ନ ଉତ୍ତର ଆକାରରେ କରୁଥିଲି ଓ ଦେଖିଲି ଯେ, ସ୍ୱାଧୀନତାର ଗୁରୁତ୍ୱ ଓ ଦାନାକନା ସହିତ ତାର ସଂବନ୍ଧ ସେଠି ମଧ୍ୟ ଲୋକେ ଭଲ ଭାବରେ ବୁଝୁଛନ୍ତି । ଆମେ ଭୁଲିଯାଉ ଯେ କୋରାପୁଟର ଲୋକ ସ୍ୱାଧୀନତା ପାଇଁ ଯେଉଁ ସଂଗ୍ରାମ କରିଥିଲେ ତାହା ଆମର ଇତିହାସର ଏକ ଗୌରବମୟ ଅଧ୍ୟାୟ ।

ସବୁଠାରେ ମୁଁ ସିଧାସଳଖ କଂଗ୍ରେସ (ଇ) ବିରୋଧରେ ଓ ବିରୋଧୀ ମେଣ୍ଟ ସପକ୍ଷରେ କହୁଥିଲି । ଦେଢ଼ଶୁର ନାଁ ନ ଧରିବା ନୀତିଗ୍ରହଣ କରି ନଥିଲି । ନିର୍ବାଚନ ପ୍ରଚାର ସାରି ଓ ନିଜର ଭୋଟଟିମାନ ଦେଇ ସୁମିତ୍ରା ଓ ମୁଁ ରାଞ୍ଚି ଚାଲିଗଲୁ । ସେଠି ରାତିସାରା ବସି ରେଡ଼ିଓରୁ ଫଳାଫଳ ଘୋଷଣା ଶୁଣିଲୁ । ଇନ୍ଦିରା ଗାନ୍ଧୀଙ୍କର ହାରିବା ଖବର ଭୋରଆଡ଼କୁ ମିଳିଲା । ସ୍ପଷ୍ଟ ଜଣାଗଲା ଯେ କଂଗ୍ରେସ (ଇ) ଜୋରଦାର ମାଡ଼ ଖାଇଯାଇଛି । ସକାଳୁ ପଦାକୁ ବାହାରି ଦେଖିଲୁ ରାସ୍ତା ଉପରେ ଥିବା 'ଅନୁଶାସନ ପର୍ବ' ର ସ୍ଲୋଗାନ୍ ଲେଖା ଏକ ପଟାକୁ କିଏ ଉପାଡ଼ି ଫିଙ୍ଗି ଦେଇଛି ।

## ନୂଆ ପରିସ୍ଥିତି ଓ ଆମେ

ଇନ୍ଦିରା ଗାନ୍ଧୀଙ୍କର ଶାସନ ହଟିବାରେ ସାରା ଦେଶରେ ଯେଉଁ ଆନନ୍ଦର ଲହରୀ ଖେଳିଗଲା ତା'ର ତୁଳନା କେବଳ ୧୯୪୭ ର ଅଗଷ୍ଟ ୧୫ ର ଅଧରାତିରେ ସ୍ୱାଧୀନତା ଘୋଷଣା ବେଳର ଆନନ୍ଦଲହରୀ ସହିତ ହୋଇପାରେ । ଲୋକେ ଯେ ଏକ ଅସହ୍ୟ ପରିସ୍ଥିତିରୁ ଉଦ୍ଧାର ପାଇଛନ୍ତି ବୋଲି ଅନୁଭବ କଲେ ତାହା ସ୍ପଷ୍ଟ ଜଣାପଡ଼ିଲା । ନିର୍ବାଚନ ପ୍ରଚାରବେଳେ ମଧ୍ୟ ମୁଁ ଏକଥା ଲକ୍ଷ୍ୟ କରିଥିଲି ଯେ, ଲୋକେ ରାଜନୀତିକ ଦଳମାନଙ୍କଠାରୁ ଆଗରେ ଅଛନ୍ତି । ଅନ୍ଧାରୀ ଶାସନକୁ ଲୋପକରିବା ପାଇଁ ସାରା ଦେଶରେ ଲକ୍ଷ ଲକ୍ଷ ଯୁବକ ଓ ପ୍ରୌଢ଼ ବାହାରି କାମ କଲେ ଯାହାଙ୍କର କୌଣସି ଦଳ ସହିତ ସମ୍ପର୍କ ନଥିଲା କି କୌଣସି ବ୍ୟକ୍ତିଗତ ପ୍ରତ୍ୟାଶା ନଥିଲା । ୧୯୩୭ ରେ ନିର୍ବାଚନ ପ୍ରଚାରବେଳେ ମୁଁ ଏହିପରି ହାୱା ଦେଖିଥିଲି ବୋଲି ଆଗରୁ ଲେଖିଛି ଓ ଚାଳିଶ ବର୍ଷ ପରେ ଏବେ ପୁଣି ଦେଖିଲି ।

ଜେ.ପି. ଏହି ହାୱାକୁ ଭଲରୂପେ ଚିହ୍ନି ପାରିଥିଲେ, ବରଂ ସେ ତାଙ୍କର ପ୍ରତିଭା ବଳରେ ପୂର୍ବରୁ ଅନୁମାନ କରି ପାରିଥିଲେ ବୋଲି ମନେ ହୁଏ । ତେଣୁ ସେ ଏହି ନୂତନ ହାୱାକୁ କାମରେ ଲଗାଇ ଏକ ନୂତନ ଶକ୍ତି ଛିଡ଼ା କରିବାପାଇଁ ପରାମର୍ଶ ଦେଲେ । ସେ ସ୍ଥାନେ ସ୍ଥାନେ ଜାଗରୁକତା ସମିତି ଗଢ଼ିବା ପାଇଁ ପରାମର୍ଶ ଦେଲେ । ଏହି ସବୁ ସମିତିର କାମ ହେବ ବିଧାୟକ ଓ ସାଂସଦମାନଙ୍କର କାର୍ଯ୍ୟକଳାପର ତଦ୍‌ବୀର କରିବା ଓ ସରକାରର ଗତିବିଧି ଉପରେ ମତାମତ ଦେଇ ତାକୁ ଠିକଣା ବାଟରେ ରଖିବା । ମାତ୍ର ଅଳ୍ପଦିନ ପରେ ସେ ଏ ସମିତିମାନଙ୍କରେ କାର୍ଯ୍ୟକ୍ଷେତ୍ରକୁ ବଢ଼ାଇଦେଲେ ଓ ସେସବୁକୁ ଲୋକ ସମିତି ଆଖ୍ୟା ଦେଲେ । ସମିତି ସମ୍ପୂର୍ଣ୍ଣ ବିପ୍ଳବର ଲକ୍ଷ୍ୟ ନେଇ ରଚନାତ୍ମକ କାମ, ଆନ୍ଦୋଳନ, ଲୋକଶିକ୍ଷଣ ଆଦି କାମ ମଧ୍ୟ ପୂର୍ବରୁ ନିର୍ଦ୍ଦେଶିତ ରାଜନୀତିକ କାମ ସାଙ୍ଗକୁ କରିବ ବୋଲି ଜେ.ପି. ସୂଚନା ଦେଲେ । ଲୋକେ ଆପଣାର ପ୍ରାର୍ଥୀ ବାଛି ନିର୍ବାଚନମାନଙ୍କରେ ଛିଡ଼ା କରାଇବା କଥା ଅନେକ ପୂର୍ବରୁ ଜେ.ପି. ଓ ବିନୋବା ଉଭୟେ କହିଥିଲେ । ଏ ଲୋକ ସମିତି ସେ କାମ ମଧ୍ୟ କରିବ ବୋଲି ସେ ସୂଚନା ଦେଲେ ।

ରାଜନୀତିକ ସାମ୍ମୁଖ୍ୟ ସାଙ୍ଗକୁ ଏକ ଟାଣୁଆ ଜନସଂଗଠନ ଓ ଆନ୍ଦୋଳନର ସାମ୍ମୁଖ୍ୟ ମଧ୍ୟ ଗଢ଼ିତୋଳିବା ଆବଶ୍ୟକ ବୋଲି ଜେ.ପି.ଙ୍କର ସ୍ପଷ୍ଟ ବିଚାର ଥିଲା । ଏକ ରାଜନୀତିକ ପରିବର୍ତ୍ତନ ଦ୍ୱାରା ଯେଉଁ ନୂତନ ବାତାବରଣର ସୃଷ୍ଟି ହେଲା ତାହାର ଲାଭ ସେ ଜନଆନ୍ଦୋଳନ ଗଢ଼ି ତୋଳିବାପାଇଁ ନେବାକୁ ଚାହୁଁଥିଲେ । ଜନତା ଦଳର ନେତା ଓ ଭବିଷ୍ୟତ ପ୍ରଧାନମନ୍ତ୍ରୀ ନିର୍ବାଚନର ଦାୟିତ୍ୱ ଦଳ ଆଚାର୍ଯ୍ୟ କୃପାଲାନୀ ଓ ଜେ.ପି.ଙ୍କ ଉପରେ ଦେଇଥିଲେ । ସେମାନେ ଶ୍ରୀ ମୋରାରଜୀ ଦେଶାଇଙ୍କୁ ବାଛିଲେ । ଏହି ଉପଲକ୍ଷ୍ୟରେ ହେଇଥିବା ଜନତା ଦଳର ସାଂସଦମାନଙ୍କ ସଭାରେ ଜେ.ପି. ମୋରାରଜୀଭାଇ ଓ ଅନ୍ୟ ନେତାମାନଙ୍କୁ ସୂଚେଇ ଦେଇଥିଲେ ଯେ, ଦେଶର ଅଗ୍ରଗତି ପାଇଁ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ସମୂହର ଅପରିହାର୍ଯ୍ୟ ଆବଶ୍ୟକତା ରହିଛି ଓ ଏଭଳି ସବୁ ଆନ୍ଦୋଳନ ପ୍ରତି ନୂଆ ସରକାର ସଦ୍‌ଭାବର ମନୋଭାବ ପୋଷଣ କରିବେ ବୋଲି ସେ ଆଶା ଓ ଅନୁରୋଧ ବ୍ୟକ୍ତ କରିଥିଲେ ।

ଲୋକ ସମିତିର ରୂପରେଖ ଓ କାର୍ଯ୍ୟକଳାପ ବିଷୟ ବିଚାର କରିବା ପାଇଁ ପାଟନାରେ ଏକ ବୈଠକ ଜେ.ପି. ଡକେଇଥିଲେ । ସେଥିରେ ମୁଖ୍ୟ ସର୍ବୋଦୟ କର୍ମୀମାନଙ୍କ ଛଡ଼ା ଜେ.ପିଙ୍କୁ ସମର୍ଥନ କରୁଥିବା ଅନ୍ୟ ଅନେକେ ଯୋଗ ଦେଇଥିଲେ । ଏଠି ସ୍ଥିର ହେଲା ଯେ ଦେଶରେ ଲୋକ ସମିତିର କାର୍ଯ୍ୟକ୍ରମ ଚଳାଇବାକୁ ଏକ ରାଷ୍ଟ୍ରୀୟ ଲୋକ ସମିତି ଗଢ଼ାଯିବ । ଏ ରାଷ୍ଟ୍ରୀୟ ସମିତିର ଅଧ୍ୟକ୍ଷ ଜେ.ପି. ହେଲେ । ଏହା ପରେ ପରେ ବିଭିନ୍ନ ରାଜ୍ୟରେ ସେହିପରି ରାଜ୍ୟସ୍ତରୀୟ ସମିତିମାନ ଗଢ଼ା ହେଲା । ଏସବୁ ଆଡ୍‌ହକ୍ ବା କାମଚଳା ସମିତି ହେଲା । କଥା ହେଲା ଯେ, ଲୋକ ସମିତିର ପ୍ରାଥମିକ ଏକକ ଗୋଟିଏ ଗୋଟିଏ ଗାଁର ସମସ୍ତ ସାବାଳକ ବ୍ୟକ୍ତିଙ୍କୁ ନେଇ ଗଢ଼ା ହେବ । ଏଭଳି ଜନଭିତ୍ତିକ ସମିତିମାନ ତଳଆଡୁ ଯଥେଷ୍ଟ ସଂଖ୍ୟାରେ ଗଢ଼ାହେଲେ

ସେସବୁର ପ୍ରତିନିଧିମାନଙ୍କୁ ନେଇ ଜିଲ୍ଲା, ରାଜ୍ୟ ଓ ରାଷ୍ଟ୍ର ସ୍ତରରେ ଯଥାର୍ଥ ଲୋକ ସମିତିମାନ ଗଢ଼ାଯିବ । ସେଥିପାଇଁ କାମଚଳା ସମିତିମାନଙ୍କର ଏକ ଆୟୁକାଳ ମଧ୍ୟ ସ୍ଥିର କରିଦିଆହେଲା ଯେ, ଦୁଇବର୍ଷପରେ ଏସବୁର ସ୍ଥାନ ନିର୍ବାଚିତ ସମିତିମାନ ନେବେ ।

ମାତ୍ର ଏ ଲୋକ ସମିତି ଆନ୍ଦୋଳନ ଯେପରି ଭାବରେ ବ୍ୟାପିବ ବୋଲି ଆଶା ଥିଲା ତାହା ହେଲା ନାହିଁ । ବିହାର, ମହାରାଷ୍ଟ୍ର ଓ ଅନ୍ୟ କେଉଁଠି କେଉଁଠି ସ୍ଥାନେ ସ୍ଥାନେ ଲୋକ ସମିତିମାନ ବେଶ୍ ସୁସଂଗଠିତ ହୋଇ କାମ କଲେ । ମାତ୍ର ଦେଶର ଅଧିକାଂଶ ଅଞ୍ଚଳକୁ ଏ କାର୍ଯ୍ୟକ୍ରମ ଛୁଇଁ ପାରିଲା ନାହିଁ । ତା'ର ପ୍ରଧାନ କାରଣ ହେଲା ଜେ.ପି.ଙ୍କର ଅସୁସ୍ଥତା । ସେଯେପରି ଭାବରେ ଅସୁସ୍ଥ ହେଇପଡ଼ିଥିଲେ ସେଥିରେ ତାଙ୍କର କୌଣସି ପ୍ରକାର ଗସ୍ତ କରିବାର ସାମର୍ଥ୍ୟ ଆଉ ନଥିଲା । ତଥାପି ସେ ନିର୍ବାଚନବେଳେ ପ୍ରଚଣ୍ଡ ମନର ବଳଦ୍ୱାରା ଦେଶର ଅନେକ ଅଞ୍ଚଳ ଗସ୍ତ କରି ନିର୍ବାଚନ ପ୍ରଚାର କରିଥିଲେ । ତା'ପରେ ଆଉ ଲୋକ ସମିତି ବା ଅନ୍ୟ କାମରେ ତାଙ୍କର ଗସ୍ତ କରିବାର ପ୍ରଶ୍ନ ହିଁ ନଥିଲା ।

ଦ୍ୱିତୀୟ କାରଣ ହେଲା ଯେ, ଗାଁ ଗାଁର ଜନସାଧାରଣଙ୍କୁ କୌଣସି ଆନ୍ଦୋଳନକୁ ଟାଣି ଆଣିବାକୁ ହେଲେ ଗାଁ ଗାଁ ଯାଏ ବ୍ୟାପିଥିବା ଏକ କର୍ମୀ ସଙ୍ଗଠନ ଆବଶ୍ୟକ । ଗୋଟିଏ ଗାଁ ବା ଅଞ୍ଚଳରେ କୌଣସି କାମର ସୂତ୍ରପାତ କରିବାକୁ ସେଠି କେହି ଜଣେ ବା ପାଞ୍ଚଜଣ ଆଗୁଆ ହେଇ ବାହାରିବା ଦରକାର । ମାତ୍ର ଏଭଳି କର୍ମୀ ଗୋଷ୍ଠୀ ଗଢ଼ିବା ପ୍ରତି ବିନୋବାଙ୍କ ଯୁଗରୁ ଏକ ଉଦାସୀନତା ଦେଖିବାକୁ ମିଳୁଥିଲା । ଗୋଟାଏ କିଛି କାର୍ଯ୍ୟକ୍ରମକୁ ତୁରନ୍ତ ସଫଳ କରିବା ପାଇଁ ନାନାପ୍ରକାରର ଲୋକଙ୍କୁ ଜୁଟେଇ କାମ ଉଦ୍ଧାର କରିବା ନୀତି ହିଁ ଭୂଦାନ ଗ୍ରାମଦାନବେଳୁ ଚାଲିଆସିଥିଲା । ଯେକୌଣସି ଆନ୍ଦୋଳନ ପାଇଁ ଏପରି ଲୋକ ଜୁଟାଇବାକୁ ପଡ଼େ, ମାତ୍ର ଆନ୍ଦୋଳନର ଏକ ମେରୁଦଣ୍ଡରୂପୀ କର୍ମୀଗୋଷ୍ଠୀ ତ ଦରକାର । ଆଉ ଭାରତଭଳି ବିରାଟ ଦେଶରେ ପାଞ୍ଚଲକ୍ଷରୁ କମ୍ କର୍ମୀରେ କ'ଣ କାମ ହେବ ?

ତୃତୀୟ କଥା ହେଲା ଯେ, ସାରା ଗାଁକୁ ଏକାଠି କରିବାକୁ ହେଲେ ତାହା ଭିତରେ ଥିବା ଜାତିଗତ, ଶ୍ରେଣୀଗତ ବିବାଦ ସବୁର ସମାଧାନ କରି, ଉଚ୍ଚନୀଚ, ଶୋଷକ-ଶୋଷିତ ଆଦି ଅସମାନ ସମ୍ପର୍କକୁ ଲୋପ କରିବା ଦିଗରେ ଆଗେଇବାକୁ ହେବ । ମାତ୍ର ଏ ବିଷୟରେ ଦୁଇପ୍ରକାରର ଆଭିମୁଖ୍ୟ ରହିଲା । କେତେକ ଗାଁରେ ଥିବା ଭେଦଭାବର ଗୁରୁତ୍ୱକୁ ଉପଲବ୍ଧି କରି ନ ପାରି ମୂଳରୁ ସାରା ଗାଁକୁ ଏକାଠି ଧରି ଆଗେଇବା ଚେଷ୍ଟା କଲେ ଓ ଅନ୍ୟ କେତେକ ଗାଁର ଦରିଦ୍ର, ନିପୀଡ଼ିତ ଶ୍ରେଣୀଙ୍କ ସଙ୍ଗଠନ ଶ୍ରେଣୀ ସଂଘର୍ଷ ଧାରାରେ ଆରମ୍ଭ କଲେ । ଉଭୟେ ପ୍ରକୃତ ଆବଶ୍ୟକ ପନ୍ଥାରୁ ଦୂରେଇ ଗଲେ ।

ଜେ.ପି.ଙ୍କ ଅନ୍ତେ ମତେ ରାଷ୍ଟ୍ରୀୟ ଲୋକ ସମିତିର ଅଧ୍ୟକ୍ଷ କରି ଦିଆଗଲା, ଏ ଦାୟିତ୍ୱ ମୁଁ କେତେ ବର୍ଷ ତୁଲେଇଲି ସତ, ମାତ୍ର ଏହା ମୋର ଏକ ବିଫଳତାର କାହାଣୀ ବୋଲି କହିବାକୁ ହେବ ।

ଇତି ମଧ୍ୟରେ ୧୯୭୭ ର ମଇ ମାସରେ ବମ୍ବେଠାରେ ସର୍ବ ସେବା ସଂଘର ଏକ ବୈଠକ ବସି ତାକୁ ପୁଣି ସଜୀବ କରାଯିବା ପାଇଁ ସ୍ଥିର ହେଲା । ଏ ବୈଠକରେ ଲୋକସେବକ ସଙ୍କଳ୍ପ ପତ୍ରରେ ସଂଶୋଧନ କରି ଗଣତନ୍ତ୍ର ପ୍ରତି ଲୋକସେବକଙ୍କର ଅନୁରକ୍ତି ରହିବ ଓ ତା'ର ସୁରକ୍ଷା ପାଇଁ ସେ କାମ କରିବେ, ଏକଥା ଯୋଡ଼ାଗଲା । ଏହାଦ୍ୱାରା ସଂକଳ୍ପ ପତ୍ରର ଅସ୍ପଷ୍ଟତା ଦୂର କରିଦିଆଗଲା ଓ ଅର୍ଥଅର୍ଥାନ୍ତର ନେଇ ବିବାଦର ସମ୍ଭାବନା ଊଣା କରି ଦିଆଗଲା । ବିନୋବାଙ୍କର ଆଉ ଏକ ପରାମର୍ଶ ଥିଲା ଯେ, ଲୋକସେବକଙ୍କର ସଂକଳ୍ପପତ୍ରରେ ରଖାଯାଉ ଯେ, ସେ କୌଣସି ନିର୍ବାଚନରେ ଭୋଟ ଦେବେ ନାହିଁ । ସର୍ବୋଦୟ ଆନ୍ଦୋଳନକୁ ସମାଜର ରାଜନୀତିକ ଜୀବନରୁ ପୂରାପୂରି ଅଲଗା କରିବାର ଏହା ଏକ ଉଦ୍ୟମ ଥିଲା । ଏହା ମଧ୍ୟ ଅଧିକାଂଶଙ୍କର ଗ୍ରହଣୀୟ ହେଲା ନାହିଁ ।

ଘଟଣାର ସମୟକ୍ରମେ ଟିକିଏ ଏପାଖ ସେପାଖ କରି ମୁଁ ପ୍ରସଙ୍ଗର କ୍ରମକୁ ବଜାୟ ରଖିବା ଚେଷ୍ଟା କରୁଛି । ସର୍ବ ସେବା ସଂଘ ଭୋଟ ନ ଦେବା ସିଦ୍ଧାନ୍ତକୁ ଗ୍ରହଣ ନ କରିବାରୁ ବିନୋବା ଆଉ ଏକ ପନ୍ଥା ଧରିଲେ । ସେ ବିଭିନ୍ନ ସମାନ୍ତର ସଂସ୍ଥା ଗଢ଼ିବା ଆରମ୍ଭ କଲେ । ଶାନ୍ତି ସେନା ସଙ୍ଗଠନ ସର୍ବ ସେବା ସଂଘର ଅନ୍ତର୍ଭୁକ୍ତ ହୋଇ ତାର ଏକ ଶାଖା ଭାବରେ କାମ କରୁଥିଲା । ବିନୋବା ଏକ ନୂଆ 'ଭାରତୀୟ ଶାନ୍ତି ସେନା' ସ୍ଥାପନା କଲେ, ଯାହାର ସଦସ୍ୟ ଶାନ୍ତିସୈନିକମାନେ କଦାପି ଭୋଟ ନ ଦେବାର ସଙ୍କଳ୍ପ କରିବେ । ଏହାକୁ ନେଇ ପଶ୍ଚିମବଙ୍ଗର ଖଡ଼ଗପୁରଠାରେ ହୋଇଥିବା ସର୍ବ ସେବା ସଂଘର ଅଧିବେଶନରେ ଖୁବ୍ ଚହଳ ପଡ଼ିଲା । ଦୁଇଟା ଶାନ୍ତି ସେନା ଦେଶରେ ଚାଲିଲେ ଗୋଟିଏ ମନ୍ଦ କଥା ହେବ, ଲୋକଙ୍କ ଭିତରେ ବିଭ୍ରମ ସୃଷ୍ଟି ହେବ । ମାତ୍ର ଅନେକ ଏ ସତ୍ୟଟାର ସାମ୍ନା କରିବାକୁ ପ୍ରସ୍ତୁତ ନଥା'ନ୍ତି ଯେ ଏଭଳି ଏକ ସମାନ୍ତର ସଂସ୍ଥା ଗଢ଼ି ବିନୋବା ଅବିକଳ ସେହିପରି ଏକ କାର୍ଯ୍ୟ କରିଛନ୍ତି, ଯାହାକୁ ନିମ୍ନ ସ୍ତରର ରାଜନୀତି ବୋଲି ନିନ୍ଦା କରାଯାଏ । ଯାହାହେଉ ଏ ଅଧିବେଶନରେ ସ୍ଥିର ହେଲା ଯେ,ସର୍ବ ସେବା ସଂଘ ଆପାତତଃ ତା'ର ଶାନ୍ତି ସେନା କାମକୁ ବନ୍ଦ ରଖିବ ଓ ବିନୋବାଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା ଚଳାଯିବ । ଅନେକ ଦିନ ଯାଏ ନାରାୟଣ ଦେଶାଇ ପ୍ରଭୃତି ବିନୋବାଙ୍କ ସହିତ କଥାବାର୍ତ୍ତା ଚଳେଇଲେ । ମାତ୍ର କିଛି ଫଳ ହେଲା ନାହିଁ । ଉଭୟ ପକ୍ଷ ନିଜ ନିଜର ମତରେ ଦୃଢ଼ ରହିଲେ ।

ପରେ ପୁଣି ୧୯୮୨-୮୩ ରେ ବିହାର ରାଜ୍ୟରେ ଅତିମାତ୍ରାରେ ବଢ଼ିଚାଲିଥିବା ନାନାପ୍ରକାରର ହିଂସାକାଣ୍ଡର ପ୍ରତିକାର ଦୃଷ୍ଟିରୁ ଆଚାର୍ଯ୍ୟ ରାମମୂର୍ତ୍ତିଙ୍କ ପରାମର୍ଶକ୍ରମେ ବ୍ୟାପକ ଶାନ୍ତି ସେନା ସଙ୍ଗଠନ ଆରମ୍ଭ କରାହେଲା । ରାଜ୍ୟରେ ଛଅ ହଜାର ସରିକି ଶାନ୍ତି ସୈନିକ ସଂଗୃହୀତ ହେଲେ । ଏହାର ସୁଫଳ ମଧ୍ୟ ଦେଖାଗଲା । ଏହାପରେ ୧୯୮୫ ଅଧିବେଶନରେ ସର୍ବସେବା ସଂଘ ଶାନ୍ତି ସେନାର କାର୍ଯ୍ୟକ୍ରମକୁ ପୁଣି ହାତକୁ ନେଲା ।

# ଜନତା ସରକାରର ଗତି ଓ ଦୁର୍ଗତି

ସର୍ବୋଦୟ ଆନ୍ଦୋଳନର କେତେକ କ୍ରମପରିଣତିର ଆଲୋଚନା କରିବାକୁ ଯାଇ ଅନେକ ବର୍ଷ ଆଗେଇଗଲି । ୧୯୭୭ କଥା ପଡ଼ିଥିଲା । ନୂଆ ସରକାର ତ ପ୍ରଚୁର ସଦ୍‌ଭାବ ନେଇ କାମ ଆରମ୍ଭ କଲେ । ଜନତାଦଳର ଦୁଇ-ତୃତୀୟାଂଶ ସଂଖ୍ୟାଧିକ ସଂସଦରେ ଥିବାରୁ ତାହା ଖୁବ୍ ବଳିଷ୍ଠ ଓ ଅନେକ କିଛି କରିପାରିବା ଅବସ୍ଥାରେ ଥିଲା । ପ୍ରଥମ ଯାହା କରଣୀୟ ତାହା ସେ ଯଥାସମୟରେ କଲେ, ସମ୍ବିଧାନର ୪୨କ ସଂଶୋଧନକୁ ୪୪କ ସଂଶୋଧନଦ୍ୱାରା ନାକଚ କରିବା । ଭାରତରେ ସୁସ୍ଥ ଗଣତାନ୍ତ୍ରିକ ବ୍ୟବସ୍ଥାର ପୁନଃ ପ୍ରତିଷ୍ଠା କରିବା ପାଇଁ ସେତେବେଳର ଜନତା ସରକାର ଏହି ଗୋଟିଏ ମାତ୍ର କାମ ପାଇଁ ଭାରତର ଇତିହାସରେ ଅମର ହୋଇ ରହିବ । ଇନ୍ଦିରା ଗାନ୍ଧୀ ସମ୍ବିଧାନରେ ଯେଉଁ ଭୟାନକ ବିକୃତି ଭରି ଦେଇଥିଲେ ସେଗୁଡ଼ିକ ଦୂରହେଲା । ତେବେ ଯୋଡ଼ିଏ ତିନୋଟି ବିଷୟ ବଦଳା ହେଲା ନାହିଁ । ଭାରତକୁ ଏକ "ସାର୍ବଭୌମ ସମାଜବାଦୀ ଗଣତାନ୍ତ୍ରିକ ଧର୍ମନିରପେକ୍ଷ ଗଣରାଜ୍ୟ" ବୋଲି ଯେ ମନଫୁଲାଣିଆ ନାମକରଣ କରାହୋଇଥିଲା, ନାଗରିକଙ୍କର ଅଧିକାର ସମୂହ ସାଙ୍ଗକୁ ଯେ କର୍ତ୍ତବ୍ୟ ସମୂହର ନୂଆ ଧାରା ଯୋଡ଼ା ଯାଇଥିଲା ଓ କେନ୍ଦ୍ର ମନ୍ତ୍ରୀମଣ୍ଡଳର କୌଣସି ସୁପାରିଶକୁ ଫେରେଇ ଦେବାର ରାଷ୍ଟ୍ରପତିଙ୍କ ଅଧିକାରକୁ ସୀମିତ କରାଯାଇଥିଲା, ସେସବୁ ସଂଶୋଧନକୁ ଆଉ ଟିକିଏ ଟିକିଏ ବଦଳାଇ ଗ୍ରହଣ କରି ନିଆଗଲା ।

ମୋରାରଜୀ ଦେଶାଇଙ୍କ ସହିତ ତ ସିଦ୍ଧରାଜଜୀ, ଗୋବିନ୍ଦରାଓ ପ୍ରଭୃତିଙ୍କର ଭଲ ପରିଚୟ ଥାଏ । ଆମେ ଛଅ ସାତ ଜଣ କେତେଥର ତାଙ୍କ ସହିତ ଦେଖାକରି ବିଭିନ୍ନ ବିଷୟରେ ଆଲୋଚନା କରିଥିଲୁ । ନୂଆ ସରକାର ଗଢ଼ାହେବା ପରେ ଦେଶର ଆର୍ଥିକ ବିକାଶର ଆଭିମୁଖ୍ୟ କ'ଣ ହେବ ତାହା ପାଇଁ ଏକ ଆଲୋଚନାଚକ୍ରର ଆୟୋଜନ କରାଯାଇଥିଲା । ସେଥିରେ ବିଶିଷ୍ଟ ଅର୍ଥନୀତିବିଦ୍‌ମାନଙ୍କ ଭିତରେ ଡ. ଜୟଦେବ ସେଠୀ, ଅଧ୍ୟାପକ ରାଜକୃଷ୍ଣ, ଅଧ୍ୟାପକ ହରେକୃଷ୍ଣ ପରାଂଜପେ ପ୍ରଭୃତି ଯୋଗ ଦେଇଥିଲେ । ପୂର୍ଣ୍ଣ କର୍ମଯୋଗାଣ ସର୍ବପ୍ରଥମ ଲକ୍ଷ୍ୟ ହେବା ଉଚିତ ବୋଲି ପ୍ରତିପାଦିତ କରି ତାହା କିପରି କାର୍ଯ୍ୟକାରୀ କରିହେବ ସେ ବିଷୟରେ ମୋଦ୍ୱାରା ଲେଖା ଯାଇଥିବା ଏକ ପ୍ରବନ୍ଧ ସେଠି ଆଲୋଚନାର ଭିତ୍ତି ହୋଇଥିଲା । ଯାହାହେଉ ମୋର ଏହା ଦେଖି ସନ୍ତୋଷ ହେଲା ଓ ଆତ୍ମବିଶ୍ୱାସ ବଢ଼ିଲା ଯେ, ମୋର ପ୍ରବନ୍ଧରେ ଦିଆଯାଇଥିବା କେତେକ ମତାମତ ଅଧିକାଂଶ ଅର୍ଥନୀତିବିଦ୍‌ମାନଙ୍କ ଦ୍ୱାରା ଗ୍ରହଣୀୟ ହେଲା ।

ମୋରାରଜୀଭାଇଙ୍କ ସହିତ ଏ ବିଷୟରେ ଏବଂ କ୍ଷମତାର ବିକେନ୍ଦ୍ରୀକରଣ ବିଷୟରେ ମୁଖ୍ୟତଃ ଆଲୋଚନା ହୋଇଥିଲା । ମୋରାରଜୀଭାଇ ମୋଟାମୋଟି ଗାନ୍ଧୀ ବିଚାରର ସମର୍ଥକ ଥିବାରୁ ଆମର ଅନେକ କଥା ସହିତ ଏକମତ ହେଉଥିଲେ, ମାତ୍ର ତାଙ୍କର ସ୍ୱଭାବଟା ଓଡ଼ିଶାରେ ଯାହାକୁ କହନ୍ତି ଟିଣା । ତାଙ୍କ ମୁଣ୍ଡରେ ଯାହା ପଶିଥିବ ତାଠୁଁ ଅନ୍ୟ କଥା କିଛି ବୁଝିବା ଚେଷ୍ଟା ତାଙ୍କୁ ମୋଟେ ଆରାଏ ନାହିଁ । ଗ୍ରାମପଞ୍ଚାୟତକୁ କ୍ଷମତାର ବିକେନ୍ଦ୍ରୀକରଣ ସପକ୍ଷରେ ସେ

ମୋଟାମୋଟି ଏକମତ ଥିଲେ ଓ ଆମକୁ କହିଥିଲେ ଯେ, ପୁଲିସ୍ ବିଭାଗ ଜିଲ୍ଲାସ୍ତରଯାଏ ବିକେନ୍ଦ୍ରିତ ହେବା ଉଚିତ; ମାତ୍ର ଏ ବିଷୟରେ ବିଚାରକରି ସୁପାରିଶ କରିବା ପାଇଁ ଯେଉଁ ଅଶୋକ ମେହତା କମିଟି ନିଯୁକ୍ତ ହେଲା ତା'ର ରିପୋର୍ଟ ଏକାବେଳକେ ସଫାଚଟ୍ ଥିଲା । ପ୍ରଥମତଃ ସେଥିରେ କ୍ଷୁଦ୍ରତମ ଏକକ ପାଞ୍ଚ ଛଅ ହଜାର ଜନସଂଖ୍ୟା ବିଶିଷ୍ଟ ଅଞ୍ଚଳ ହେବ ଚାହି ବୋଲି ସୁପାରିଶ କରାହେଇଥିଲା ଓ ତାହାକୁ ମଧ୍ୟ କେବଳ ବିକାଶ କାର୍ଯ୍ୟକ୍ରମ ସଂକ୍ରାନ୍ତ ଦାୟିତ୍ୱ ଦେବା କଥା କୁହାଯାଇଥିଲା । ତାକୁ ଶାସନ କ୍ଷମତା ହସ୍ତାନ୍ତର କରିବା ପ୍ରଶ୍ନ ହିଁ ଉଠାହେଇ ନଥିଲା । ଜନତା ସରକାର ଭାଙ୍ଗିଯିବାରୁ ଏ ସୁପାରିଶ ବି ଅକାମୀ ହେଇ ରହିଲା । ସେହିପରି ଆକାଶବାଣୀ ଓ ଦୂରଦର୍ଶନକୁ ପୂର୍ଣ୍ଣ ସ୍ୱାୟତ୍ତତା ଦିଆଯିବାର ପ୍ରତିଶ୍ରୁତି କିପରି ପୂରଣ କରାଯିବ ତାହା ସୁପାରିଶ କରିବା ପାଇଁ ବି.ଜି. ଭର୍ଗିଜ୍‌ଙ୍କ ଅଧ୍ୟକ୍ଷତାରେ କମିଟି ନିଯୁକ୍ତ ହେଲା ଓ ତାହା ବେଶ୍ ସନ୍ତୋଷଜନକ ସୁପାରିଶ କଲେ । ମାତ୍ର ପ୍ରଚାର ଓ ତଥ୍ୟ ମନ୍ତ୍ରୀ ଶ୍ରୀ ଲାଲକୃଷ୍ଣ ଆଡଓ୍ୱାନୀ ଯେଉଁ ବିଲ୍ ଚିଠା କରାଇଲେ ସେଥିରେ ସ୍ୱାୟତ୍ତତାକୁ କ୍ଷୁର୍ଣ୍ଣ କରିବା ଭଳି ଅନେକ କଥା ଥିଲା । ସେ ବିଲ୍ ବି ସରକାରର ପତନ ଯୋଗୁଁ ସେମିତି ରହିଗଲା ।

ଜର୍ଜ ଫର୍ଣ୍ଣାଣ୍ଡିସ୍ ଶିଳ୍ପମନ୍ତ୍ରୀ ଥା'ନ୍ତି । ତାଙ୍କସାଙ୍ଗରେ ମଧ୍ୟ ଆମେ ଦେଖାକରିଥିଲୁ ଓ କୁଟୀର ଓ କ୍ଷୁଦ୍ର ଶିଳ୍ପର ବିକାଶ ବିଷୟରେ ଆଲୋଚନା କରିଥିଲୁ । ଏ ବିଷୟରେ ସେ ଯଥେଷ୍ଟ ଆଗ୍ରହୀ ଥିଲେ । ସେତେବେଳେ ଆଠ ଶହ ସରିକି ସାମଗ୍ରୀ କେବଳ କ୍ଷୁଦ୍ର ଶିଳ୍ପରେ ଉତ୍ପାଦିତ ହେବ, ବୃହତ୍ ଶିଳ୍ପ ସେ ସବୁଥିରେ ମୁଣ୍ଡ ଗଳେଇ ପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦିଆଯାଇଥିଲା । ସାବୁନ, ଦିଆସିଲ ଓ ଜୋତା ପୂରାପୂରି କୁଟୀରଶିଳ୍ପ ଦ୍ୱାରା ତିଆରି କରାଯିବା ତାଙ୍କର ଲକ୍ଷ୍ୟ ଥିଲା । ଖଦୀ ଗ୍ରାମୋଦ୍ୟୋଗ ଆୟୋଗର ଜରିଆରେ ଏ ଦିଗରେ କାମ ବି ଆରମ୍ଭ ହେଇଥିଲା । ଆଇ.ବି.ଏମ୍. ଓ କୋକାକୋଲା – ଏ ଦୁଇଟି ଆମେରିକାନ୍ ବହୁରାଷ୍ଟ୍ରୀୟ କମ୍ପାନୀକୁ ସେ ତଡ଼ି ଦେଇଥିଲେ । ମାତ୍ର ଅଢ଼େଇ ବର୍ଷ ପରେ ପୁଣି କଂଗ୍ରେସ (ଇ) ର ରାଜତ୍ୱ ଫେରି ଆସିବାରୁ ଏସବୁ ଓଲଟାଇ ଦିଆଗଲା ।

ଗ୍ରାମ ଶିଳ୍ପକୁ ବୃହତ୍ ଶିଳ୍ପମାନେ କିପରି ଧ୍ୱଂସ କରୁଛନ୍ତି ତା'ର ଏକ ଘଟଣା ପରେ ମୋର ଗୋଚରକୁ ଆସିଲା । ତାମିଲନାଡୁର ଶିବକାଶୀ ଅଞ୍ଚଳରେ ବହୁତ ବାଣ ତିଆରି ହୁଏ ଓ ଏସବୁ ଗାଁ ଗାଁରେ କୁଟୀରଶିଳ୍ପ ମାଧ୍ୟମରେ ହୁଏ । ଦିଆସିଲି ମଧ୍ୟ ଏହି କାରିଗରମାନେ ସହଜରେ ତିଆରି କରିପାରିବେ ବୋଲି ବିଚାର କରି ଖଦୀ ଗ୍ରାମୋଦ୍ୟୋଗ ଆୟୋଗର ସଂପୃକ୍ତ ବିଭାଗ ସେଠିକା ପ୍ରତି ବହୁତ ଦୃଷ୍ଟି ଦେଲେ ଓ ଆୟୋଗର ସହାୟତାରେ ସେଠି ଦିଆସିଲି ଉତ୍ପାଦନ ଖୁବ୍ ବଢ଼ିଲା । ଏଥିରେ ଭାରତରେ ଦିଆସିଲି ଶିଳ୍ପକୁ ପ୍ରାୟ ଏକଚାଟିଆ କରି ରଖିଥିବା 'ୱିମ୍‌କୋ', ୱେଷ୍ଟର୍ଣ୍ଣ ଇଣ୍ଡିଆ ମ୍ୟାଚ୍ କମ୍ପାନୀ ଆତଙ୍କିତ ହେଲା । ମାତ୍ର ଜନତା ଅମଳରେ ବିଶେଷ କିଛି କରିପାରିଲା ନାହିଁ । ଜନତା ସରକାର ଭାଙ୍ଗିଯିବା ପରେ ସେ କମ୍ପାନୀ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ ଯାଇ ଧରାଧରି କରି ଖଦୀ ଗ୍ରାମୋଦ୍ୟୋଗ ଆୟୋଗକୁ ନିରସ୍ତ କରିବାପାଇଁ ବ୍ୟବସ୍ଥା କଲା ।

ସେତେବେଳକୁ ଖଦୀ ଆୟୋଗର ଅଧ୍ୟକ୍ଷ ଓ ସଦସ୍ୟମାନେ ବଦଳିଯାଇ ଇନ୍ଦିରାଜୀଙ୍କର ଅନୁଗତମାନେ ଆସି ଗଲେଣି । ତେଣୁ ପ୍ରଧାନମନ୍ତ୍ରୀଙ୍କର ଦପ୍ତରର ଇଙ୍ଗିତରେ ଦିଆସିଲି ଶିଳ୍ପର ଗ୍ରାମୀକରଣର ଉଦ୍ୟମକୁ ସମ୍ପୂର୍ଣ୍ଣରୂପେ ବନ୍ଦ କରିଦିଆହେଲା ।

ଜନତା ଦଳ ଭିତରେ କ୍ରମେ କନ୍ଦଳ ଆରମ୍ଭ ହେଲା ଓ ଏକ ସମୟରେ ଚୌଧୁରୀ ଚରଣ ସିଂହଙ୍କୁ ପ୍ରଧାନମନ୍ତ୍ରୀ ମୋରାରଜୀଭାଇ ମନ୍ତ୍ରୀମଣ୍ଡଳରୁ ବାହାର କରିଦେଲେ । ତେଣେ କ୍ଷମତାର ବିକେନ୍ଦ୍ରୀକରଣ ଆଦି ବାବଦରେ ଜନତା ଦଳର ପ୍ରତିଶ୍ରୁତି ସବୁକୁ ପୂରଣ କରିବାରେ ମଧ୍ୟ ଅବହେଳା ଦେଖାଗଲା । ଏହି ଅବସ୍ଥାରେ ସର୍ବସେବା ସଂଘ ପକ୍ଷରୁ ଦିଲ୍ଲୀରେ ୧୯୭୯ ଜାନୁୟାରୀ ୩୦ ତାରିଖରେ ଏକ ଧ୍ୟାନାକର୍ଷଣ ସତ୍ୟାଗ୍ରହର ଆୟୋଜନ କରାଗଲା । ସାରାଦେଶରୁ ତିନିଶହ ସରିକି ଲୋକସେବକ ଆସି ରାଜଘାଟରେ ଗାନ୍ଧୀ ସମାଧିଠାରେ ଚବିଶ ଘଣ୍ଟା ଉପବାସ କଲୁ ଓ ପୁରୁଣା ଦିଲ୍ଲୀରେ ଏକ ମୌନ ଶୋଭାଯାତ୍ରା ମଧ୍ୟ ବାହାର କଲୁ । କାହିଁକି ଏହା କରାଯାଉଛି ସେକଥା ବୁଝେଇ ପ୍ରଚାରପତ୍ର ମଧ୍ୟ ବଣ୍ଟାହେଲା । ସନ୍ଧ୍ୟାରେ ପ୍ରାର୍ଥନାସଭାକୁ ଜନତା ଦଳର ମନ୍ତ୍ରୀମଣ୍ଡଳ ଓ ନେତୃମଣ୍ଡଳୀ ଭିତରୁ କେବଳ ଶ୍ରୀ ମଧୁ ଦଣ୍ଡବତେ ଆସି କେତେକ କଥା କହିଲେ । ପ୍ରତିଶ୍ରୁତି ପୂରଣରେ ଅବହେଳା ସ୍ୱୀକାର କଲେ ଓ ଭବିଷ୍ୟତରେ ଅଧିକ ତତ୍ପରତାର ଆଶ୍ୱାସନା ଦେଲେ ।

ଅଢ଼େଇବର୍ଷ ପରେ ଚୌଧୁରୀ ଚରଣ ସିଂହ ଓ ରାଜନାରାୟଣଙ୍କ ଚକ୍ରାନ୍ତରେ ଜନତା ସରକାର ଓ ପରେ ପରେ ଦଳ ମଧ୍ୟ ଭାଙ୍ଗିଲା । ୧୯୮୦ ରେ ପୁଣି କେନ୍ଦ୍ର ଓ ତାହା ପରେ ରାଜ୍ୟ ବିଧାନସଭାମାନଙ୍କୁ ନିର୍ବାଚନ ହେଲା । ଏଥର କେନ୍ଦ୍ରରେ କଂଗ୍ରେସ (ଇ) ପୁଣି ବିପୁଳ ସଂଖ୍ୟାଗରିଷ୍ଠତା ହାସଲକଲା । ଜନତା ଦଳର କନ୍ଦଳ ଓ ଦଳ ଭାଙ୍ଗିବାରେ ଉତ୍ତ୍ୟକ୍ତ ହୋଇ ଲୋକେ ପୁଣି କଂଗ୍ରେସ (ଇ)କୁ ଅଧିକ ସମର୍ଥନ ଦେଲେ । ଓଡ଼ିଶା ବିଧାନସଭା ନିର୍ବାଚନବେଳକୁ ଅନେକେ ଅନୁଭବ କଲେ ଯେ, ଏଠି କଂଗ୍ରେସ (ଇ) ବିରୋଧରେ ବିରୋଧୀ ଦଳର ମେଣ୍ଟ ଅଧିକ ଆସନ ପାଇବାରେ ସଫଳ ହୋଇପାରିବ । ଏଠି ଜନସଂଘର ବିଶେଷ ଅସ୍ତିତ୍ୱ ନଥିଲା ଓ ଚରଣ ସିଂହଙ୍କର ଅନୁଗାମୀ ମଧ୍ୟ ବହୁତ କମ୍ ଥିଲେ । ତେଣୁ ଜନତା ଦଳ ଏକପ୍ରକାର ଅକ୍ଷୁର୍ଣ୍ଣ ରହିଥିଲା । ନନ୍ଦିନୀ ଶତପଥୀ ଜାଗ୍ରତ ଓଡ଼ିଶା ଦଳ ଗଢ଼ିଥିଲେ । ସି.ପି.ଆଇ.ଏମ୍‌ର ଜନତା ଦଳ ସହିତ ପୂର୍ବରୁ ନିର୍ବାଚନ ମେଣ୍ଟ ଥିଲା । ଏହି ଅବସ୍ଥାରେ ବିରୋଧୀ ଦଳମାନଙ୍କୁ ଏକାଠି କରିବା ଚେଷ୍ଟା ଓଡ଼ିଶାରେ ସଫଳ ହେବାରେ ଆଶା ଅଧିକ ଥିଲା । ଏ ଉଦ୍ୟମରେ ମୁଁ ମଧ୍ୟ ହାତ ଲଗେଇଲି । ଭୁବନେଶ୍ୱରରେ ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କର ବସାରେ ଏକ ବୈଠକର ଆୟୋଜନ ହେଲା । ସେଥିରେ ଆଲୋଚନା ବେଶ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ଆବହାଓ୍ୱାରେ ହେଲା । ମାତ୍ର ଦେଖାଗଲା ଯେ, ବିଜୁବାବୁ ବିଚାରୁଛନ୍ତି ଯେ, ଅନ୍ୟ କାହାରି ସହିତ ମେଣ୍ଟ ମଧ୍ୟ ନ କରି ଜନତା ଦଳ ସଂଖ୍ୟାଗରିଷ୍ଠତା ପାଇଯିବ ଓ ନନ୍ଦିନୀ ଦେବୀ ଭାବୁଛନ୍ତି ଯେ, ସେ ୩୫-୪୦ଟା ଆସନ ଅନାୟାସରେ ଜିତିଯିବେ । କୌଣସି ଦଳ ଏକକ ସଂଖ୍ୟାଗରିଷ୍ଠତା ପାଇବ ନାହିଁ ଓ ତାଙ୍କ ଦଳ

ବରଦସ୍ତର କରିବା ପାଇଁ ଏକ ସୁବିଧାଜନକ ସ୍ଥିତିରେ ରହିବ । ଭୁବନେଶ୍ୱରର ଉପରୋକ୍ତ ବୈଠକ ପରେ ନେତାମାନେ ପରସ୍ପର ଆଲୋଚନା କରି ଆସନ ବଣ୍ଟାକୁଣ୍ଟା କରିବାକଥା ହେଉଥିଲା; ମାତ୍ର ତାହା ହେଇପାରିଲା ନାହିଁ । ଯେଯାହା ଜିଦ୍‌ରେ ଅଟଳ ରହିଲେ ଓ କଂଗ୍ରେସ (ଇ) ଅସମ୍ଭବ ପ୍ରକାରର ଅଧିକ ସଂଖ୍ୟାରେ ନିର୍ବାଚନ ଜିତିଲା ।

କଂଗ୍ରେସ (ଇ) ର ପୁଣି କ୍ଷମତାକୁ ଫେରିବାରେ ଦେଶରେ ଗଣତନ୍ତ୍ର ପ୍ରେମୀଗୋଷ୍ଠୀରେ ନିରାଶା ବ୍ୟାପିଗଲା । ସର୍ବୋଦୟ କର୍ମୀଙ୍କ ଭିତରେ ମଧ୍ୟ ସେହିପରି ନାନା ପ୍ରତିକ୍ରିୟା ଦେଖାଗଲା । ବିନୋବାପନ୍ଥୀମାନେ କହିବାକୁ ଲାଗିଲେ ଯେ, ରାଜନୀତିକୁ ପ୍ରଭାବିତ କରିବା ଚେଷ୍ଟା ଯେବୃଥା ତାହା ଏହାଦ୍ୱାରା ପ୍ରମାଣିତ ହେଲା । ଅନ୍ୟ ଅନେକେ ଭାବିଲେ ଯେ, କାହିଁ ଜନତା ସରକାର ତ ଖଦୀ, ଗ୍ରାମଶିଳ୍ପ, ନିଶାନିବାରଣ, ଗୋହତ୍ୟା ନିଷେଧ ଆଦି ଦିଗରେ କିଛିହେଲେ କରିପାରିଲେ ନାହିଁ । ତାକୁ ଆଣି କ୍ଷମତାରେ ବସେଇ କ'ଣ ଲାଭ ହେଲା ? ବରଂ ଜନତା ଦଳର ବିଫଳତାରେ ଲୋକଙ୍କର ଯେଉଁ ଅସନ୍ତୋଷ ତାହାର ଆମେ ବି ଶିକାର ହେଉଛୁ । କାରଣ ଆମେ ଲୋକଙ୍କୁ ଜନତା ଦଳକୁ ଭୋଟ ଦେବାପାଇଁ ପ୍ରବର୍ତ୍ତେଇ ଥିଲୁ । ଆଉ ତା' ସାଙ୍ଗକୁ ଆମେ କଂଗ୍ରେସ (ଇ) ବିରୋଧରେ ଯାଇ ତା'ର ମଧ୍ୟ ବିରାଗଭାଜନ ହେଲୁ ।

ଏସବୁ ଯୁକ୍ତି ପଛରେ ନୈରାଶ୍ୟ ଯଥେଷ୍ଟ ଥିଲେ ମଧ୍ୟ କେତେକଟା ସୁବିଧାବାଦୀ ମନୋବୃତ୍ତି ମଧ୍ୟ କାମ କରୁଥିଲା । ପ୍ରାୟ ଖଦୀ ଆନ୍ଦୋଳନ ଓ ଅନ୍ୟ ଅନେକ ରଚନାତ୍ମକ ସଂସ୍ଥା ସାଧାରଣ ଜୀବନରେ ଏକ ଆଶ୍ରିତର ଭୂମିକା ଗ୍ରହଣ କରିନେଇଛନ୍ତି । କ୍ଷମତାରେ ଥିବା ଲୋକଙ୍କ ବିରୋଧରେ ଯିବେ ନାହିଁ । ଯାହାକୁ କହନ୍ତି କୌଣସି କଥାରେ ଚିହ୍ନା ପଡ଼ିବେ ନାହିଁ । ଗାନ୍ଧୀ ଆଦର୍ଶ ବା ବିଚାର କହିଲେ ଖଦୀ, ନିଶାନିବାରଣ, ଗୋରକ୍ଷା ଆଦି ବାହାରେ ଏମାନଙ୍କୁ କିଛି ଦେଖାଯାଏ ନାହିଁ । ତେଣୁ ଆଶ୍ଚର୍ଯ୍ୟର କଥା କିଛି ନ ଥିଲେ ମଧ୍ୟ ଏମାନଙ୍କ ଭିତରେ କେତେକ ପୁଣି କଂଗ୍ରେସ (ଇ) ସରକାର ସହିତ ଭଲେଇ ହେବାକୁ ଚାହିଁଲେ । ମାତ୍ର ସେତେବେଳକୁ ଇନ୍ଦିରାଜୀ ଗାନ୍ଧୀବାଲାଙ୍କୁ ପାନେ ଦେବାପାଇଁ କୁଡ଼ାଲ ଆୟୋଗର ବ୍ୟବସ୍ଥା କଲେଣି । ତେଣୁ ଭଲେଇ ହେବା ଚେଷ୍ଟାଟା ପଛେଇ ଗଲା ।

ଅବଶ୍ୟ ସର୍ବ ସେବା ସଂଘର ମୁଖ୍ୟ ବ୍ୟକ୍ତିମାନେ ଆପଣାର ରାଜନୀତିକ ଭୂମିକାର ଯଥାର୍ଥତା ବିଷୟରେ ଦୃଢ଼ ରହିଥିଲୁ । ସିଦ୍ଧରାଜଜୀ, ଠାକୁରଦାସ ବଙ୍ଗ, ଆଚାର୍ଯ୍ୟ ରାମମୂର୍ତ୍ତି, ଗୋବିନ୍ଦରାଓ, ନାରାୟଣ, ଚୁନୀଭାଇ ବୈଦ୍ୟ, ତ୍ରିପୁରାରୀ ଶରଣ ପ୍ରଭୃତିଙ୍କୁ କୌଣସି ପ୍ରକାରର ଶଙ୍କା ସ୍ପର୍ଶ କରିନଥିଲା । ମୋ ନିଜ ବିଷୟରେ କହିପାରେ ଯେ, ୧୯୭୭ ରେ କଂଗ୍ରେସ (ଇ) କୁ ହଟାଇବା ଓ ଜନତା ଦଳକୁ କ୍ଷମତାକୁ ଆଣିବାପାଇଁ ମୁଁ ଯେତେ ନିଃସଂଦିଗ୍ଧ ଭାବରେ କାମ କରିଥିଲି ସେପରି ମୁଁ ଜୀବନରେ କମ୍ ଥର କରିଛି । ଅନେକ ସାନବଡ଼ ନିଷ୍ପତ୍ତି କରିବାବେଳେ ମନରେ ସନ୍ଦେହ ଥାଏ ଯେ, ନିଷ୍ପତ୍ତିଟା ଠିକ୍ ହେଲା ନା ନାହିଁ । ମାତ୍ର କଂଗ୍ରେସ (ଇ) ହଟାଓ ନିଷ୍ପତ୍ତିରେ ମନରେ ଲେଶମାତ୍ର ଦ୍ୱିଧା ନ ଥିଲା। ପରେ ଜନତା ସରକାର ଭାଙ୍ଗିଯିବା ଦ୍ୱାରା

ନୈରାଶ୍ୟ ଓ ବିରକ୍ତି ଆସିଛି ସତ, ମାତ୍ର ତାହା ବୋଲି ନିର୍ବାଚନ ବେଳର ମୋର ଭୂମିକାକୁ ମୁଁ କେବେ ଭୁଲ ବୋଲି ଭାବିନାହିଁ । ଗାନ୍ଧୀ କଳ୍ପିତ ସମାଜ ସଂସଦୀୟ ଗଣତନ୍ତ୍ରଠାରୁ ବହୁତ ଆଗୁଆ ସ୍ଥିତି, ମାତ୍ର ସେଠାକୁ ଯିବା ବାଟରେ ସଂସଦୀୟ ଗଣତନ୍ତ୍ର ଏକ ରହଣୀ । ଗଣତନ୍ତ୍ରର ବିପରୀତ ଦିଗରେ ଯାଇ ଗାନ୍ଧୀଙ୍କର ସର୍ବୋଦୟରେ ପହଞ୍ଚି ହେବ ନାହିଁ । ସେଥିପାଇଁ ଗଣତନ୍ତ୍ର ବିପନ୍ନ ଓ ପର୍ଯ୍ୟୁଦସ୍ତ ହେବାବେଳେ ତାକୁ ରକ୍ଷାକରିବାକୁ ପ୍ରାଣପାତ ଉଦ୍ୟମ କରିବା ମୋର କର୍ତ୍ତବ୍ୟ ବୋଲି ମୁଁ ବିଚାରେ । ଯଦି ୧୯୭୭ ରେ ଇନ୍ଦିରାଜୀ ଜବରଦସ୍ତ ଧକ୍କା ଖାଇ ନ ଥା'ନ୍ତେ, ତେବେ ଭାରତର ଅବସ୍ଥା ଯେ କି ଭୟଙ୍କର ହୋଇଯାଇଥା'ନ୍ତା, ତାହା କେତେ ଶତାବ୍ଦୀ ପଛେଇ ଯାଇଥା'ନ୍ତା କଳ୍ପନା କରିବା କଠିନ ।

ଜନତା ଦଳଠାରୁ ମୋର ବହୁତ ବେଶି ଆଶା ନଥିଲା । ତାହା ଏକ ଗାନ୍ଧୀବାଦୀ ଦଳ ଓ ଗାନ୍ଧୀଜୀଙ୍କର ସମସ୍ତ କାର୍ଯ୍ୟକ୍ରମକୁ ତାହା କାର୍ଯ୍ୟକାରୀ କରିବ ବୋଲି ମୁଁ କେବେ ଭାବି ନଥିଲି । ସର୍ବୋଦୟର ବିଭିନ୍ନ କାର୍ଯ୍ୟକ୍ରମକୁ ରୂପଦେବାପାଇଁ ଓ ସରକାର ଦ୍ୱାରା ସେଗୁଡ଼ିକୁ ସ୍ୱୀକୃତ କରାଇନେବା ପାଇଁ ବ୍ୟାପକ ରଚନାତ୍ମକ କାର୍ଯ୍ୟ, ଜନତାର ଚାପ ଓ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଅପରିହାର୍ଯ୍ୟ । ଜନତା ସରକାର ବଞ୍ଚି ରହିଥିଲେ ଏସବୁ ପ୍ରତି ଅବଶ୍ୟ ଅଧିକ ଅନୁକୂଳତା ଦେଖାଇଥା'ନ୍ତା । ଗଣତନ୍ତ୍ରର ପୁନଃପ୍ରତିଷ୍ଠା ତାହା କରିପାରିବ ଏତିକି ଆଶା ମୋର ଥିଲା ଓ ସେତକ ଐତିହାସିକ କର୍ତ୍ତବ୍ୟ ଜନତା ସରକାର ପୂରଣ କରି ତାହାପରେ ଆତ୍ମହତ୍ୟା କଲା ।

## ସାହି ପିଲାଙ୍କ ମେଳରେ

କଟକରେ ଏକରକମ ସ୍ଥାୟୀଭାବରେ ରହିବାକୁ ହେବାରୁ ସ୍ଥାନୀୟ ଲୋକଙ୍କ ଭିତରେ କିଛି କାମ କରିବାର କଥା ଅନେକ ଦିନୁ ମନରେ ଉଠୁଥିଲା। ତା'ର ଏକ ସୁଯୋଗ ଆପେ ଆପେ ପହଞ୍ଚିଗଲା । ଆମ ଘର ସାମନା ହତାଟା ବହୁବର୍ଷ ଧରି ଏକ ଧ୍ୱସ୍ତଭୂମି ହୋଇ ପଡ଼ିରହିଥିଲା । ତା'ର ଫାଟକ ଲୋପ ପାଇଥିଲା । ସେଥିରେ ବୁଲା ଗାଈ ଆସି ଚରୁଥିଲେ । କେତେବେଳେ କେମିତି ସାନପିଲା ଖେଳୁଥିଲେ । ଏକ ସମୟରେ ସେଥିରେ ଫାଟକ ଲାଗିଲା ଓ ସୁମିତ୍ରାଙ୍କର ଓ ମୋ ଝିଅର ଯତ୍ନରେ ସେଥିରେ ଏକ ଫୁଲ ବଗିଚା ଗଢ଼ି ଉଠିଲା । ଅଳ୍ପଦିନ ଭିତରେ ଏକ ସମସ୍ୟା ଦେଖାଗଲା । ସାଇ ପିଲାମାନେ ଆସି ଫୁଲ ଛିଣ୍ଡେଇ ନେଇଯିବା ଆରମ୍ଭ କଲେ । ଫାଟକ ବନ୍ଦ କଲେ ପାଚିରୀ ଡେଇଁ ଆସି ଭୋରରୁ ଫୁଲ ତୋଳି ନେଇଯିବାକୁ ଲାଗିଲେ । ଗଣେଶ ଚତୁର୍ଥୀ, ବସନ୍ତ ପଞ୍ଚମୀ ଆଦି ଉପଲକ୍ଷ୍ୟରେ ରାତି ଦୁଇଟା ତିନିଟାବେଳକୁ ଆସି ପିଲାମାନେ ହମଲା କରନ୍ତି । ରାତିରେ ବାରନ୍ଦାରେ ଶୋଇ କାନଡେରି ରହିବାକୁ ହୁଏ । ସକାଳୁ ଯେଉଁସବୁ ପିଲା ପାଚିରୀ ଉପରେ ଚଢ଼ନ୍ତି ସେମାନଙ୍କ ଆଡ଼କୁ କେତେଦିନ ଯାଏ ଗାଳିମନ୍ଦ ସାଙ୍ଗକୁ "ଚୋରି କରିବା ଖରାପ" ଏଇଭଳି ସବୁ ସତ୍ ଉପଦେଶ ଆମେ ଫିଙ୍ଗିଲୁ । ଦେଖାଗଲା ଯେ, ଏଭଳି ଦୂରରୁ ନିକ୍ଷିପ୍ତ ଉପଦେଶ ବାଣୀ କିଛି କାମ କରୁନାହିଁ । ନ କରିବାର କଥା ।

ସେଠୁ ମୋ ମନରେ ଗୋଟିଏ ବିଚାର ଆସିଲା ଯେ, ଏସବୁ ପିଲାମାନଙ୍କ ସାଙ୍ଗରେ ବନ୍ଧୁତା କରାଯାଉ । ସେମାନଙ୍କୁ ଭଲ ମନରେ ଫୁଲଦେଇ ପାଖକୁ ଅଣାଯାଉ । ସେଠୁ ଦିନେ ସେମାନଙ୍କୁ ସବୁ କୁହାଗଲା ଯେ, ଲୁଚି କରି ପାଚିରୀ ଡେଇଁ ପଶିବା ଦରକାର ନାହିଁ । ଫାଟକ ବାଟେ ଆସ, ଫୁଲ ଦିଆଯିବ । ସେମାନେ ପ୍ରଥମେ ଶଙ୍କିତ ଚିତ୍ତରେ ଆସିଲେ । ମୁଁ ନିଜେ ସେମାନଙ୍କୁ କିଛି କିଛି ଫୁଲ ତୋଳିଦେଲି । କ୍ରମେ ସେମାନଙ୍କର ସଂଖ୍ୟା ବଢ଼ିଲା ଓ ଫୁଲ ବାଣ୍ଟିବା ମୋର ଏକ ଦୈନିକ କାମ ହେଲା । କ୍ରମେ ସେ ପିଲାମାନଙ୍କର ନାମଧାମ ପଚାରି ବୁଝି ସେମାନଙ୍କ ସାଙ୍ଗରେ ପରିଚୟ ହେଲା । କ୍ରମେ ମନକୁ ଆସିଲା ଯେ, ସେମାନଙ୍କୁ ଆନନ୍ଦ ଦେବାପାଇଁ କିଛି କରାଯାଉ । ବହି ପଢ଼ିବାକୁ ଦେବା କଥା ମନକୁ ଆସିଲା । ଆମ ଘରେ ଥିବା ବହିପତ୍ରସବୁ ଖୋଜି ମିଳିଲା ସତେଇଶ ଖଣ୍ଡ ସାନ ସାନ ଓଡ଼ିଆ ବହି ଯାହା ଦଶବାର ବର୍ଷର ପିଲାଙ୍କର ଉପଯୋଗୀ । ତାହା ଭିତରେ ୧୯୨୮ ର ଛପା-ଏକାବନ ବର୍ଷ ତଳର-ଖଣ୍ଡେ ଚଟି ବହି ବି ଥିଲା ।

ବହି ସଜ ହେବା ପରଦିନ ସକାଳୁ ପିଲାଙ୍କୁ ପଚାରିଲି ସେମାନେ ବହି ପଢ଼ିବାକୁ ନେବେ କି ? କେତେ ପିଲା ହଁ ଭରିଲେ ଓ ବହି ଖଣ୍ଡେ ଖଣ୍ଡେ ବାଛିକରି ନେଲେ । ଦିନେ ଦୁଇ ଦିନ ଭିତରେ ସେମାନେ ବହି ଫେରେଇ ଦେଇ ନୂଆ ବହି ନେଲେ । ଏମିତି କେତେଦିନ ଚାଲିଲା । ମାତ୍ର ସତେଇଶ ଖଣ୍ଡ ବହି କେତେଦିନ ଅଣ୍ଟିବ ? କଟକର ଇଣାଶୁଣା ବହି ଦୋକାନ–ଗ୍ରନ୍ଥ ମନ୍ଦିର, ଜନଶକ୍ତି ପୁସ୍ତକାଳୟ, ବିଦ୍ୟାପୁରୀ– ପ୍ରଭୃତିରେ ଦିନେ ବୁଲି ଚାନ୍ଦା କଲି ଓ ପଚିଶି ତିରିଶ ଖଣ୍ଡ ସାନ ସାନ ବହି ଯୋଗାଡ଼ କଲି । ପାଠାଗାରର କଳେବର ବଢ଼ିଲା ଓ ପାଠକ ସଂଖ୍ୟା ମଧ୍ୟ । ଇତି ମଧ୍ୟରେ ବହି ଦେବାନେବା କାରବାରରେ ସମୟ ଉପରଓଳିକୁ ବଦଳେଇ ଦିଆହେଲା । କ୍ରମେ ଖେଳକୁଦ ଆରମ୍ଭ ହେଲା । ସେତେବେଳେ ମୋର ବୋହୂ ଓ ନାତି କଟକରେ ଥା'ନ୍ତି । ବୋହୂ ପିଲାମାନଙ୍କୁ ନୂଆ ନୂଆ ଖେଳ ଶିଖାଇଲା ଓ ଖେଳାଇଲା । ଦୌଡ଼ାଦୌଡ଼ି ଖେଳସାଙ୍ଗକୁ ବସି ବସି ଖେଳିବା ଖେଳ ବି କେତେଟା ଆରମ୍ଭ ହେଲା । ମୋର ତିନି ବର୍ଷର ନାତି ଖୁବ୍ ଅଭିନୟ ପ୍ରିୟ ହେଉଥାଏ । କୌଣସି କାହାଣୀ ଶୁଣିଲେ ଅଙ୍ଗଭଙ୍ଗୀ କରି ତାହା ଅଭିନୟ କରି ଦେଖାଏ । ତା'ର ପ୍ରେରଣାରେ ପିଲାଙ୍କର କେତେକ ରୂପ କାହାଣୀର ଅଭିନୟ ଖେଳ ଆରମ୍ଭ ହେଲା । ପାଞ୍ଚ ସାତ ମିନିଟ୍‌ରେ ଗୋଟାଏ ଗୋଟାଏ କାହାଣୀ ଅଭିନୀତ ହେଉଥାଏ ।

ଏସବୁର ଆକର୍ଷଣରେ ଅନେକ ନୂଆ ପିଲା ଆସିଲା । ସମସ୍ତେ ଛ' ସାତରୁ ତେର ଚୌଦ ଯାଏ ବୟସର । କିଛି ଦିନ ପରେ ଏକ ସଂଘ ଗଢ଼ିବାକୁ ସ୍ଥିର କରାହେଲା । ନାଁ ଦିଆ ହେଲା 'କାଠଯୋଡ଼ି ବାଳୁତ ସଂଘ' । ଇଂରାଜୀରେ Child ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ପିଲା, ମାତ୍ର ପିଲା ଶବ୍ଦଟା ଅନେକ ଜାଗାରେ ବ୍ୟବହାର କରିହୁଏ ନାହିଁ । "ପିଲାଙ୍କ ରାମାୟଣ" ଚଳିବ, ମାତ୍ର 'ପିଲା ସଂଘ, ଶ୍ରୁତିକଟୁ ହେବ । ତେଣୁ ଅନେକ ଜାଗାରେ 'ଶିଶୁ' ଶବ୍ଦ ବ୍ୟବହାର

କରାଯାଏ । 'ଶିଶୁ ସଙ୍ଗୀତ' 'ଶିଶୁ ରାଜକ' ଇତ୍ୟାଦି । ମାତ୍ର ଶିଶୁ 'ପିଲାର' ପ୍ରତିଶବ୍ଦ ନୁହେଁ । ଶିଶୁ ଅର୍ଥ Baby । ପ୍ରାଚୀନ ଓଡ଼ିଆରେ Child ଅର୍ଥରେ ବାଳୁତ ଶବ୍ଦ ଅଛି । ଏହାକୁ ହିଁ ବ୍ୟବହାର କରିବାକୁ ଠିକ୍ କଲୁ ।

ସଂଘରେ ପ୍ରାୟ ୫୦ ଜଣ ସରିକି ପିଲା ସଦସ୍ୟ ହେଲେ । ପୁଅ ଝିଅଙ୍କ ସଂଖ୍ୟା ପ୍ରାୟ ସମାନ । ମାସିକ ଚାନ୍ଦା ଦଶ ପଇସା ସ୍ଥିର ହେଲା । ପ୍ରତିଦିନ ଚାରିଟାରୁ ଛ'ଟା ଯାଏ ପିଲା ଆସିବାବେଳ ସ୍ଥିର ହେଇଥାଏ । ପ୍ରତିଦିନ ପଚିଶ ତିରିଶ ପିଲା ଆସନ୍ତି । ସୁମିତ୍ରା ଓ ମୁଁ ସେମାନଙ୍କ ପିଛା ଅନ୍ତତଃ ଘଣ୍ଟାଏ ଲେଖା ସମୟ ଦେଉ । ପୁସ୍ତକାଗାର ଓ ଖେଳକୁଦ ଛଡ଼ା ଛବି ଅଙ୍କା, ନାଟକ, ଖେଳ ପ୍ରତିଯୋଗିତା, ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତା ଆଦିର ଆୟୋଜନ ବି କରାଯିବାକୁ ଲାଗିଲା । ମଝିରେ ମଝିରେ ବିଶେଷ ଉପଲକ୍ଷ୍ୟ ଯଥା : ଗାନ୍ଧୀ ଜୟନ୍ତୀ, ସ୍ୱାଧୀନତା ଦିବସ ଆଦିରେ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କୁ ଡାକି ତାଙ୍କ କଥା ଶୁଣିବାର ବ୍ୟବସ୍ଥା ହୁଏ । ରାମକୃଷ୍ଣ ନନ୍ଦ, ମନୋରମା ମହାପାତ୍ର, କ୍ଷେତ୍ରମୋହନ ଶତପଥୀ, ରବି ରାୟ, ଡାକ୍ତର ମାଧବାନନ୍ଦ ଷଡ଼ଙ୍ଗୀ ପ୍ରଭୃତି ଆସିବାର ମନେ ପଡୁଛି । ନନ୍ଦକୃଷ୍ଣ ଦାସ ଏଭଳି ଆଲୋଚନାରେ ଯୋଗଦେବା ଛଡ଼ା ଅନେକ ଦିନ ନିୟମିତ ଆସି ପିଲାମାନଙ୍କୁ କରାଟେ ଶିଖାଇଥିଲେ । ବିଶିଷ୍ଟ ଚିତ୍ରକର ଅସିତ୍ ମୁଖାର୍ଜୀ ଥରେ ଆସି ପିଲାମାନଙ୍କୁ ଛବି ଅଙ୍କାରେ ଉତ୍ସାହିତ କରିଯାଇଥିଲେ ।

ପାଖରେ ସନ୍‌ସାଇନ୍ ପଡ଼ିଆ । ସେଠି ଶୀତଦିନ ଖେଳକୁଦ ପ୍ରତିଯୋଗିତା ହୁଏ । ଅନ୍ୟ ସ୍କୁଲ କଲେଜର ଖେଳକୁଦ ପ୍ରତିଯୋଗିତା ପାଇଁ ଆବଶ୍ୟକ ଗାରସବୁ ଟଣା ହୁଏ । ସେମାନଙ୍କର ସରିଲେ ଆମେ ସେଇସବୁ ଗାର ବ୍ୟବହାର କରୁ ।

ସବୁ ପ୍ରକାର ପ୍ରତିଯୋଗିତାରେ କିଛି କିଛି ପୁରସ୍କାର ଦିଆହୁଏ । ବେଶି ନୁହେଁ, ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପୁରସ୍କାର ମିଶି ଗୋଟିଏ ଗୋଟିଏ ଖେଳପାଇଁ ପାଞ୍ଚ ଛ' ଟଙ୍କାର ଜିନିଷ । ମୋଟ ଦୁଇଶହ ସରିକି ଟଙ୍କା । ସାହିର ବନ୍ଧୁମାନଙ୍କଠାରୁ ଚାନ୍ଦାକରି ଖର୍ଚ୍ଚ ତୁଲାଉ । ଠିକ୍ କରିଥିଲୁ ଯେ, ଯେତେ କମ୍ ଖର୍ଚ୍ଚରେ ପାରିବୁ କାମ ଚଳାଇବୁ । ସାଧ୍ୟମତେ ସାହି ଭିତରୁ ହିଁ ଖର୍ଚ୍ଚ ଉଠେଇବୁ । ସରକାରୀ ବା ଅଧାସରକାରୀ ଅନୁଦାନ ନେବୁ ନାହିଁ ।

ଏହା ପଛରେ ଏକ ବିଶେଷ ଦୃଷ୍ଟିକୋଣ ଥିଲା । ପିଲା ମଣିଷ କରିବାର ଦାୟିତ୍ୱ ବାପ, ମା'ଙ୍କର ହିଁ ସର୍ବପ୍ରଥମ ଓ ସର୍ବପ୍ରଧାନ । ମାତ୍ର ଆଜିକାଲି ବିଦ୍ୟାଳୟ ସେ ଦାୟିତ୍ୱ ତୁଲାଇବା ବୋଲି ସମସ୍ତେ ଭାବୁଛନ୍ତି ଓ ପୁଣି ଶିକ୍ଷା ଅନୁଷ୍ଠାନ ମଧ୍ୟ ସରକାରୀ ତନ୍ତ୍ର କବଳକୁ ଚାଲିଯାଉଛି । ନେତା, ଅମଲାତନ୍ତ୍ର ଓ ଶିକ୍ଷିତ – ସମସ୍ତ ମିଶି ବାପା, ମା ଅର୍ଥାତ୍ ସାଧାରଣ ନାଗରିକଙ୍କୁ ଶିକ୍ଷା କ୍ଷେତ୍ରରେ ଅପ୍ରାସଙ୍ଗିକ କରିଦେବାକୁ ବସିଛନ୍ତି, କରିଦେଲେଣି । ଏହା କୌଣସି ସଭ୍ୟତା ପକ୍ଷରେ ଏକ ଆତ୍ମଘାତୀ ପନ୍ଥା । ବାପା, ମା'ମାନେ ପିଲା ମଣିଷ କରିବା ପ୍ରତି ଅଧିକ ଧ୍ୟାନଦେବା ଚାହି ଓ ଶିକ୍ଷା ଅନୁଷ୍ଠାନ ଉପରେ ମଧ୍ୟ ଆପଣାର କର୍ତ୍ତୃତ୍ୱ ଜାହିର କରିବା ଆବଶ୍ୟକ । ଏ ସବୁ ଚିନ୍ତା ମନରୁ କେତେ ଦିନୁଁ ଉଠୁଥିଲା । ରବି ସାହୁଙ୍କ ସହିତ ଆଲୋଚନାପରେ ତାହା ଅଧିକ ସ୍ପଷ୍ଟ

ହେଲା । ଏକ ଅଭିଭାବକ ଆନ୍ଦୋଳନ ଦେଶରେ ଚାଲିବା ଆବଶ୍ୟକ ବୋଲି ଅନୁଭବ କଲୁ । ସେ ଅନୁସାରେ ଏକ ଇସ୍ତାହାର ତିଆ ହେଲା । ଏଥିରେ ବିଶିଷ୍ଟ ମନସ୍ତତ୍ତ୍ୱବିତଦ୍ ଡଃ ଜଗନ୍ନାଥ ପ୍ରସାଦ ଦାସ ପ୍ରଭୃତି ଓ ଆମ କେତେ ଜଣଙ୍କର ଦସ୍ତଖତ ରହିଲା ।

ସରକାରୀ ବା ଅନ୍ୟ ସେହିଭଳି ସାହାଯ୍ୟ ନ ନେବାର ଗୋଟାଏ କାରଣ ହେଲା ଯେ, ସରକାରୀ ଓ ଅଧାସରକାରୀ ସଂସ୍ଥାମାନଙ୍କର ନାନା ପ୍ରକାର ଯୋଜନା ବା ପ୍ରକଳ୍ପ ଅଛି ଯେଉଁଥିରୁ ସାହାଯ୍ୟ ମିଳିପାରେ । ମାତ୍ର ସେସବୁ ଅତି ଜଡ଼ତାଗ୍ରସ୍ତ । ତା'ର ଧରାବନ୍ଧା ରେଲଲାଇନ୍ ଅଛି, ଯେଉଁଥିରେ ଚାଲିବାକୁ ହେବ । ସେଥିରେ କୌଣସି ପ୍ରକାର ପରୀକ୍ଷାନିରୀକ୍ଷାର ସୁଯୋଗ ନଥାଏ ।

କଟକ ପାଇଁ ଏହାର ଏକ କାର୍ଯ୍ୟକ୍ରମ ଆମେ ହାତକୁ ନେଲୁ, ଅଭିଭାବକ ଓ ଶିକ୍ଷକମାନଙ୍କର ଏକ ପାଠଚକ୍ର ଚଳାଇବାର । ହାରାହାରି ମାସରେ ଥରେ ବୈଠକ ହେଉଥିଲା । କୋଡ଼ିଏ ଜଣ ଖଣ୍ଡେ ନିୟମିତ ଯୋଗଦାନ କରୁଥିଲେ । ବେଳେବେଳେ ତିରିଶ ଚାଳିଶ ଯାଏ ସଂଖ୍ୟା ଯାଉଥିଲା । ଶିକ୍ଷା ଓ ମନସ୍ତତ୍ତ୍ୱର ଅଦ୍ୟତନ ଜ୍ଞାନ ଓ ପଦ୍ଧତି ଉପରେ ଆଲୋଚନା ହେଉଥିଲା । ଦୁଇ ବର୍ଷ ଖଣ୍ଡେ ବେଶ୍ ଚାଲିବା ପରେ ଆମେ ଆମେରିକା ଯିବାପରେ ଏହା କ୍ରମେ ଧିମେଇ ବନ୍ଦ ହେଇଗଲା ।

ଆମେ ପିଲାଙ୍କର ଅଭିଭାବକଙ୍କ ସହିତ ସମ୍ପର୍କ ରଖିବା ଉଦ୍ୟମ କରୁଥାଉ । ସେମାନଙ୍କର ବୈଠକ କରିବା ଚେଷ୍ଟା ସଫଳ ହେଲାନାହିଁ । ସୁମିତ୍ରା ଓ ମୁଁ ମଝିରେ ମଝିରେ ଯାଇ ସେମାନଙ୍କ ଘର ବୁଲିଆସୁ । ଘରର ହାଲଚାଲ୍‌ର ଖବର ରଖୁ । କେତେବେଳେ କେମିତି ପିଲା ଅତି ଦୁଷ୍ଟାମି କଲେ ବାପା, ମା'ଙ୍କୁ କହୁ ଓ ମାରଧର ନ କରି କିପରି ସେମାନଙ୍କୁ ବାଟକୁ ଆଣିହେବ ସେ ବିଷୟରେ ଆଲୋଚନା କରୁ ।

'ବାଲୁତ ସଂଘ' ଦେଖାଦେଖି ଓ ଅଭିଭାବକ ଆନ୍ଦୋଳନ ଏକ କାର୍ଯ୍ୟକ୍ରମ ସ୍ୱରୂପ ରବି ସାହୁ ଖାନ୍‌ନଗରରେ ପିଲାଙ୍କୁ ନେଇ ଏକ 'ନଚିକେତା ସଂଘ' ଆରମ୍ଭ କଲେ । ସେ ଆମ ଅପେକ୍ଷା ଅଧିକ ସମୟ ଓ ଶକ୍ତି ତାହା ପିଛା ଦେଇ ତାହାଦ୍ୱାରା ବିଜ୍ଞାନ ପ୍ରଦର୍ଶନୀ ଆଦିର ଆୟୋଜନ କେତେଥର କରିଥିଲେ । ସାହିର ଅଭିଭାବକମାନଙ୍କର ଏକ ଆଲୋଚନାଚକ୍ର ନିୟମିତ ଚଳାଇଥିଲେ । ନନ୍ଦକୃଷ୍ଣ ଦାସ ଦଳେ ଯୁବକଙ୍କୁ ତାଙ୍କ ଘରେ କରାଟେ ଶିଖାଇବା ଆରମ୍ଭ କରି ତାହା ମାଧ୍ୟମରେ ସେମାନଙ୍କର ଚରିତ୍ର ଗଠନରେ ସାହାଯ୍ୟ କରିଥିଲେ ।

ଆମର ଦଶ ମିନିଟିଆ ନାଟକ ଖେଳ କଥା ଆଗରୁ କହିଛି । ସେଥିରୁ ଆଉ ଟିକିଏ ଆଗେଇ ବ୍ୟବସ୍ଥିତ ନାଟକର ଆୟୋଜନ ହେଲା । ଆମ ବାରଣ୍ଡାରେ ବିଛଣା ଚାଦର ଟାଙ୍ଗି ମଞ୍ଚ ବାନ୍ଧି ରବୀନ୍ଦ୍ରନାଥଙ୍କର ଏକ ସାନ ପ୍ରହସନର ଓଡ଼ିଆ ଅନୁବାଦର ଅଭିନୟ ହେଲା ଓ ବାପା ମା'ମାନେ ଅନେକ ଆସି ଦେଖି ଖୁସି ହେଲେ । ମଞ୍ଚ ବାନ୍ଧି ରବୀନ୍ଦ୍ରନାଥ ଓ ସୁକୁମାର ରାୟଙ୍କର କେତୋଟି ନାଟିକାର ଅନୁବାଦ କରି ଅଭିନୟ କରାହେଲା । 'ବାଜି ରାଉତ' ମଧ୍ୟ ଅଭିନୀତ ହେଲା । ଏଭଳି ଗୋଟିଏ ନିୟମିତ ବାର୍ଷିକ ବାର୍ଷିକ କାର୍ଯ୍ୟକ୍ରମ ହେଇଗଲା । ପିଲାଙ୍କ ପାଇଁ

ଉପଯୁକ୍ତ ଭଲ ଓଡ଼ିଆ ନାଟକ ଖୋଜି ଖୋଜି ଅଳ୍ପ କେତୋଟି ମିଳିଲା । ଶେଷକୁ ମୁଁ ନାଟକ ଲେଖିବାକୁ ସ୍ଥିରକରି ତିନୋଟି ନାଟକ ଲେଖି ପକେଇଲି । ହାରାମଣୀ, ସପ୍ତଦ୍ୱୀପର ରାଣୀ ଓ ଲୁଣର ଗୁଣ । ଏ ଶେଷ ଦୁଇଟି ଶ୍ରୀ ରାମଚନ୍ଦ୍ର ଭବନରେ ଅଭିନୀତ ହେଇଥିଲା ଓ ଦର୍ଶକଙ୍କ ଭିତରେ କଟକର ବହୁ ବିଶିଷ୍ଟ ଲୋକ ଥିଲେ । ବାଲୁତ ସଂଘର ପିଲାମାନେ ଅନୁଗୁଳ ଯାଇ ମଧ୍ୟ ବାଜୀ ରାଉତ ଛାତ୍ରାବାସରେ ସପ୍ତଦ୍ୱୀପର ରାଣୀ ଅଭିନୟ କରିଥିଲେ ।

ପିଲାଙ୍କ ଭିତରେ ସେବା ମନୋଭାବ ଆଣିବା ପାଇଁ ମଧ୍ୟ ଉଦ୍ୟମ କରାହେଉଥାଏ । ୧୯୮୨ ରେ ମହାନଦୀରେ ଯେଉଁ ପ୍ରବଳ ବନ୍ୟା ହେଇ କଟକ ଜିଲ୍ଲାର ବହୁତ କ୍ଷତି କରିଥିଲା ତାହାଦ୍ୱାରା ପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ପିଲାମାନେ ପ୍ଲାକାର୍ଡ଼ ଧରି ସାହିରେ ବୁଲି ଚାନ୍ଦାକରି ୨୫୦-୩୦୦ ଟଙ୍କା ସଂଗ୍ରହ କଲେ । ସେଥିରେ ମୁଢ଼ି, ଗୁଡ଼ ଆଦି କିଣାହେଲା । ଆଦିତ୍ୟ ପଟ୍ଟନାୟକଙ୍କର ଏକ ସ୍ୱେଚ୍ଛାସେବକଙ୍କ ଦଳ ସାଙ୍ଗରେ ଚାରି ପାଞ୍ଚ ଜଣ ପୁଅ ଝିଅ ଯାଇ ତିର୍ତ୍ତୋଲ ରାସ୍ତାରେ ଗୋଟାଏ ଗାଁରେ ବାଣ୍ଟିଆସିଲେ । ଆଉ ଥରେ କିଛି ଶୀତ ଲୁଗା ନେଇ ସୁମିତ୍ରାଙ୍କ ସାଙ୍ଗରେ କେତେଜଣ ଯାଇ ବାଗଲପୁର ଗାଁର ହରିଜନ ସାହିରେ ବାଣ୍ଟି ଆସିଲେ । ଘୋର ବର୍ଷା ହେଇ କଟକର ପଟାପୋଲ ଅଞ୍ଚଳ ଜଳମଗ୍ନ ହେଇଥିବାବେଳେ ମଧ୍ୟ ପିଲାମାନେ ଯାଇ ସଂଗ୍ରହ କରିଥିବା ସାହାଯ୍ୟ ବାଣ୍ଟିଥିଲେ ।

ଏସବୁ ପଛରେ ଏକ ଦୃଷ୍ଟି ଥିଲା ଯେ, ପିଲାମାନଙ୍କୁ ସେମାନଙ୍କର ବଢ଼ନ୍ତା ବୟସରେ ଏଭଳି ଅନୁଭୂତି ଦେବା ଜରୁରୀ ଯାହାଦ୍ୱାରା ସେମାନଙ୍କ ଭିତରେ ସହାନୁଭୂତି, କରୁଣା, ଭାଇଚାରା, ସୃଜନଶୀଳତା, ପରାକ୍ରମ, ନିର୍ଭୀକତା ଆଦି ଗୁଣର ବିକାଶ ହେବ । ପିଲାଙ୍କ ସହିତ ଏ କାମ ସହଜ ନଥିଲା । ଅନେକ ପିଲା ଥିଲେ ଯେଉଁମାନଙ୍କ ସ୍ୱଭାବ ନାନା କାରଣରୁ ତେଢ଼ା ହେଇଯାଇଥିଲା । କାହାରି କାହାରି ଚୋରି କରିବା ଅଭ୍ୟାସ ହେଇଯାଇଥିଲା । କାହାରି କାହାରି ଭିତରେ ପୁଞ୍ଜିଭୂତ କ୍ରୋଧ ଥିଲା । ଘରେ ମାରପିଟ୍, ଗାଳିମନ୍ଦ ସହିବାକୁ ପଡ଼େ । ଏଠି ସେସବୁ ନଥାଏ । ତେଣୁ ମନୋବିଜ୍ଞାନର displaced aggression ବା 'ସ୍ଥାନାନ୍ତରିତ ଆକ୍ରମଣ'ର ସିଦ୍ଧାନ୍ତ ଅନୁସାରେ ସେସବୁ ମାଡ଼ଗାଳି ବିରୋଧରେ ପୁଞ୍ଜିଭୂତ କ୍ରୋଧ ଆମ ଉପରେ ବରଷେ । ଅନେକ ପିଲା ସାମାଜିକ ଶୃଙ୍ଖଳା ଶିଖି ନଥା'ନ୍ତି । ପୁଅମାନଙ୍କ ଭିତରେ ଏଇଟା ବେଶି । କେତେକ ଆମକୁ ଚିଡ଼େଇ ମଜା ଦେଖିବାକୁ ଚାହୁଁଥାନ୍ତି । ଏସବୁର ସାମନା ଓ ପ୍ରତିକାର କରିବାକୁ ପଡୁଥାଏ । ଏସବୁ ଝାମେଲା ଭିତରେ ମୁଣ୍ଡ ଥଣ୍ଡା ରଖିବା କଷ୍ଟକର ହେଇପଡୁଥାଏ । ପିଲାଙ୍କୁ ମାରଧାର କରିବା ସବୁଠାରୁ ହିଂସା ବୋଲି ମୁଁ ମନେକରେ । ବୈଷମ୍ୟ ଓ ଶୋଷଣମୂଳକ ସମାଜର ଚେର ଏଇଠି । ଭବିଷ୍ୟତ ବଂଶଧରଙ୍କୁ ମାଡ଼ ଗାଳିଦ୍ୱାରା ହିଁ ଡରୁଆ, ଖୋସାମତିଆ, ଜୋହୁକୁମ କରି ଗଢ଼ାଯାଏ  କିମ୍ବା ଯାହାଙ୍କର ବ୍ୟକ୍ତିତ୍ୱ ବଳିଷ୍ଠ ଥାଏ ସେପରି ପିଲା ବିଦ୍ରୋହ କରିସାଧାରଣତଃ ସମାଜବିରୋଧୀ ହୁଅନ୍ତି । ଅଳ୍ପ କେତେକ କିଛି ନୂଆ ଭଲ କଥା କରିବା ଦିଗରେ ଯା'ନ୍ତି । ଏଭଳି ବିଶ୍ୱାସ ସତ୍ତ୍ୱେ ପିଲାଙ୍କ ସହିତ କାରବାର କରିବା ବେଳେ ପାଞ୍ଚ ସାତ ଥର ଚଟକଣା ବା ଧକ୍କା ଯେ ବ୍ୟବହାର ନ କରିଛି ତାହା ନୁହେଁ । ମାତ୍ର ମୋଟାମୋଟି ମୁଣ୍ଡ ଥଣ୍ଡା ରଖି ସେମାନଙ୍କ ସହିତ କାରବାର କରିବାକୁ ସମର୍ଥ ହେଉଥିଲି ।

ଥରେ ସୁମିତ୍ରା ଦାଶ ପିଣ୍ଡାରେ ଝିଅମାନଙ୍କୁ ଗୋଟାଏ ନାଟକ ଅଭ୍ୟାସ କରାଉଥିଲେ । କେତେ ଜଣ ପୁଅପିଲା ସେମାନଙ୍କୁ ଘେରି ନାନା ମନ୍ତବ୍ୟ କରିବାକୁ ଲାଗିବାରୁ ସୁମିତ୍ରା ଝିଅମାନଙ୍କୁ ଭିତର ବାରଣ୍ଡାକୁ ନେଇ କବାଟ ବନ୍ଦ କରିଦେଲେ । ସେଠୁ ପିଲା ପଞ୍ଚାକ ଯାଇ ସନ୍‌ସାଇନ୍ ପଡ଼ିଆ ପାଚିରୀ ଉପରେ ବସିଲେ । ଘର କାନ୍ଥର ଏକ ଜାଲି ବାଟେ ସେ ଜାଗାରୁ ଭିତର ପାଖ ବାରଣ୍ଡା ଦେଖାଯାଏ । ସେଠୁ କେତେଜ ପିଲା ଗୋବର ଓ କାଦୁଅ ମେଞ୍ଚା ସେ ଜାଲିବାଟେ ଫିଙ୍ଗିଲେ । ସେଥିରୁ ମେଞ୍ଚାଏ ଆସି ସୁମିତ୍ରାଙ୍କ ପିଠିରେ ପଡ଼ିଲା । ଝିଅମାନେ ଆସି ମତେ କହିବାରୁ ମୁଁ ଦୌଡ଼ିଯାଇ ଦେଖିଲି ଯେ, ପିଲାପଞ୍ଚାକ ପାଚିରୀ ଉପରେ ବସିଛନ୍ତି, ସେମାନେ ମତେ ଦେଖି ଦୌଡ଼ି ପଳେଇଲେ । ତେବେ ସେମାନଙ୍କୁ ଚିହ୍ନିଲି । ଯା'ପରେ ସୁମିତ୍ରା ଆସି କାନ୍ଦକାନ୍ଦ ହୋଇ ମତେ କହିଲେ ଯେ, ଏ କାମକୁ ଆମେ ଆଉ ପାରିବା ନାହିଁ । ଆମର ବୟସ ହେଲାଣି । ଏ କାମ ଛାଡ଼ିଦେବା । ମୁଁ କହିଲି ଲାଭ କ'ଣ ହେବ ? ଆଜି ଏଠିକି ଆସୁଛନ୍ତି ବୋଲି ସେମାନଙ୍କୁ କିଛି କହି ହେଉଛି । କାଲି ଯଦି ଆସିବା ବନ୍ଦ ହେବ ଓ ରାସ୍ତାରେ ଟେକା ପକାଇବେ ତ କ'ଣ କରିବା ?

କେମିତି ପିଲାଙ୍କୁ ଆୟତ୍ତ କରାଯିବ ଭାବୁଥାଏ । ଏତିକିବେଳେ ତାହା ପରିଦିନ ସକାଳେ ନଈକୁ ଗାଧୋଇଯିବା ବାଟରେ ଜଣେ ପିଲା ମୋ ପାଖକୁ ପଶି ଆସିଲା । ତା' ସାଙ୍ଗରେ ଏଣ୍ଡୁତେଣ୍ଡୁ ଗପ କରି ପୂର୍ବଦିନର ଘଟଣା କଥା କହିଲି ଓ ଆହୁରି କହିଲି, "ତତେ ମୁଁ ସେଠି ପାଚିରୀ ଉପରେ ବସିଥିବାର ଦେଖିଛି ।" ସେ କହିଲା, "ମୁଁ ଥିଲି କିନ୍ତୁ କାଦୁଅ ଫୋପାଡ଼ି ନାହିଁ ।" ମୁଁ କହିଲି, "ତୁ ମନା ନ କଲୁ କାହିଁକି ?" "ମୋ କଥା ଶୁଣି ନଥାନ୍ତେ ।" "ତେବେ ତୁ ସେଠୁ ଚାଲିଯାଇଥା'ନ୍ତୁ । ସେମାନଙ୍କ ସାଙ୍ଗରେ ରହିବା ଦ୍ୱାରା ତୁ ବି ଦୋଷୀ ହେଲୁ ।"

କଥାଟା ଟିକିଏ ଭେଦିଲାପରି ମୋର ମନେ ହେଲା । ପରଦିନ ପଞ୍ଚାଟା ଯାକ ପିଲା ଯଥାବିଧି ଉପରଓଳି ଆସିଲେ । ମୁଁ ଠିକ୍ କରିଥିଲି ଯେ, ସେମାନଙ୍କ ସହିତ ଦଳବଦ୍ଧ ଭାବରେ କଥାବାର୍ତ୍ତା ନକରି ଜଣ ଜଣ କରି କରିବି । ସେହି ଅନୁସାରେ ସମସ୍ତଙ୍କୁ ଏକାଠି ବସେଇ ଜଣ ଜଣ କରି କଥାବାର୍ତ୍ତା କଲି । ପ୍ରତ୍ୟେକ ପିଲା ନିଜକୁ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ କରିବାକୁ ଚେଷ୍ଟା କରି ଶେଷକୁ ଥଙ୍ଗେଇ ଥଙ୍ଗେଇ ଭୁଲ ବୁଝିଲେ ଓ ମାନିଲେ । ପୁଣି ପ୍ରତ୍ୟେକେ ଯାଇ ସୁମିତ୍ରା ଓ ଝିଅମାନଙ୍କ ଠାରେ ଜଣ ଜଣ କରି ଦୋଷ ମାନିଲେ । ନେତୃସ୍ଥାନୀୟ ପିଲା ଜଣେ ଖୁବ୍ ଦର୍ପର ସହିତ "ମୋର ଭୁଲ ହୋଇଛି" ବୋଲି କହିଲା । ତଥାପି କହିଲା ତ ବୋଲି ସନ୍ତୋଷ ଅନୁଭବ କଲି ।

ଏହିପରି ସାନବଡ଼ ଘଟଣା ଲାଗି ରହିଥାଏ । ଥରେ କେତେଜଣ ପିଲା ଢେଲାମାରି ଫାଟକର ଟିଣ ଫୁଟେଇ ଦେଲେ । ସୁମିତ୍ରା ତାଙ୍କ ଘରକୁ ବାପା, ମାଙ୍କୁ କହିବାକୁ ଗଲେ । ବାପା ସୁମିତ୍ରାଙ୍କ ସହିତ ଅତି ଉଦ୍ଧତ ଭାବରେ କଥାବାର୍ତ୍ତା କଲେ । ଜଣାଗଲା ତାଙ୍କ ଘରର ଢଙ୍ଗ ସେୟା । ପିଲାଏ ସେଇ ଢଙ୍ଗ ଶିଖୁଛନ୍ତି ।

ଥରେ ଗଣେଶ ଚତୁର୍ଥୀରେ କେତେଜଣ ପିଲା ଗ୍ରାମସେବକ ପ୍ରେସ୍ ସାମନା ପଡ଼ିଆ ଜାଗାରେ ଗଣେଶ ପୂଜା କରିବାକୁ ଅନୁମତି ଚାହିଁଲେ । ଅନୁମତି ଦେଲି । ପୂର୍ବଦିନ ସଂଧ୍ୟାରେ ସେଠି ଛାମୁଣ୍ଡିଆ ବାନ୍ଧି ତାଳପତ୍ରରେ ସଜାସଜି କରି, ମୂର୍ତ୍ତି ଥୋଇ ସବୁ ଆୟୋଜନ କରି ରଖିଲେ । ପୂଜାଦିନ ଭୋରରୁ ମୁଁ ତେଣେ ଦେଖିବାକୁ ଯାଉଛି ଏହି ସମୟରେ ପଡ଼ିଶା ଘର ସ୍ୱର୍ଗତ ଅଧ୍ୟାପକ ବିପିନ୍ ବିହାରୀ ରାୟଙ୍କର ଜଣେ ପୁଅ ଆସି ଅଭିଯୋଗ କଲେ ଯେ, ପିଲାମାନେ ରାତିରେ ବାଡ଼ିରୁ କଦଳୀ ଗଛ କାଟି ଆଣିଛନ୍ତି । ଗୋଟାଏ ଗଛରେ କାନ୍ଦି ପଡ଼ିଥିଲା । ମା' କାନ୍ଦୁଛନ୍ତି । ସେ ଛାମୁଡ଼ିଆରେ ସଜା ଯାଇଥିବା କଦଳୀ ଗଛକୁ ସେ ସନାକ୍ତ କଲେ ମଧ୍ୟ ।

ମୁଁ ପୂଜାର ଜଣେ ପ୍ରଧାନ ଉଦ୍ୟୋକ୍ତାଙ୍କୁ ଡାକି ପଠେଇଲି । ଖବର ମିଳିଲା ଯେ, ତା'ର ଖୁବ୍ ଜ୍ୱର, ଉଠି ପାରୁ ନାହିଁ । ଆଉ ଜଣକ ବିଷୟରେ ବି ସେହିପରି ଏକ ବାହାନାର ଖବର ମିଳିଲା । ମୁଁ କହିଦେଲି ଯେ, ମୋ ସାଙ୍ଗରେ ଦେଖା ନ ହେଲେ ଓ ଗଛ କଥା ନିଷ୍ପତ୍ତି ନ ହେଲେ ପୂଜା ହେଇ ପାରିବ ନାହିଁ । ସାରାଦିନ କାହାରି ଦେଖାନାହିଁ । ସଂଧ୍ୟାବେଳକୁ ଦୁଇଜଣ ମାତବ୍ବର ପିଲା ଆସି ପହଞ୍ଚିଲେ । ମୁଁ ସେମାନଙ୍କୁ ଗଛ ଚୋରି କଥା କହିଲି । ଯଥାବିଧି ସେମାନେ ଅଭିଯୋଗ ଅସ୍ୱୀକାର କଲେ ଓ କହିଲେ ଯେ, ରାତି ପ୍ରାୟ ତିନିଟାରେ ଜଣେ ଲୋକ ପଟା ରିକ୍ସାରେ କଦଳୀ ଗଛ ଏବାଟେ ବିକିବାକୁ ନେଉଥିଲା । ଆମେ ତାହାଠାରୁ କିଣିଲୁ । "ରାତି ତିନିଟାରେ ନଈ କୂଳକୁ କାହାକୁ ବିକିବାକୁ ନେଉଥିଲା ?" ମୁଁ ପଚାରିଲି । କିଛି ସମୟ ଯୁକ୍ତିତର୍କ ଓ ବୁଝାସୁଝା ପରେ ସେମାନେ ଭୁଲ ମାନିଲେ । ବିପିନ୍ ବାବୁଙ୍କ ଘରକୁ ସେମାନଙ୍କୁ ନେଇଗଲି । ସେମାନେ ବୂଢ଼ୀଙ୍କ ଠାରେ କ୍ଷମାପ୍ରାର୍ଥନା କଲେ ଓ ତା'ପରେ ସମାରୋହରେ ପୂଜା ହେଲା ।

ଆଜିକାଲି ଆତଙ୍କବାଦୀମାନେ ନିର୍ବିଚାରରେ ନିରୀହ ଲୋକଙ୍କୁ ମାରିଦେବାକୁ ଟିକେହେଲେ ଇତସ୍ତତଃ କରୁନାହାନ୍ତି । ଅବଶ୍ୟ ସରକାରୀ ସୁରକ୍ଷା ବାହିନୀଙ୍କର ଆଚରଣ ବି ତଦ୍ରୂପ । ମନୋବିଜ୍ଞାନ ବହିରେ ପଢ଼ିଛି ଯେ, ମଣିଷ ପିଲାଦିନେ ଉପଯୁକ୍ତ ଆଦର ଯତ୍ନ, ସ୍ନେହ ନ ପାଇଲେ ଓ ଅନ୍ୟ କେତେକ କାରଣରୁ ତାର କୋମଳ ବୃତ୍ତି ମରିଯାଏ । ସେ ମଣିଷର ଦୁଃଖକଷ୍ଟରେ ସହାନୁଭୂତି ଅନୁଭବ କରିପାରେ ନାହିଁ । ଅନ୍ୟ ମଣିଷକୁ କାଠ ପଥରଭଳି ବସ୍ତୁ ବୋଲି ବିଚାରେ । ମୁଁ ସାଇ ପିଲାଙ୍କ ସହିତ କାରବାର କରିବାବେଳେ କେତେକ ପିଲାଙ୍କ ଭିତରେ ଏଇ ଚରିତ୍ରର ଆଭାସ ଦେଖି ଆତଙ୍କିତ ହେଇଛି । ସେମାନେ ଅନ୍ୟର ଦୁଃଖସୁଖ ଅନୁଭବ କରିବାର ଶକ୍ତି ହରେଇବା ଆରମ୍ଭ କରିଥା'ନ୍ତି । ଅନ୍ୟର ଦୁଃଖ ବା କଷ୍ଟ ଦେଖିଲେ ସେମାନଙ୍କୁ ମଜା ଲାଗେ । ବାଳୁତ ସଂଘରେ ସଂପୃକ୍ତ ହେବାଦ୍ୱାରା ସେମାନଙ୍କର ମଣିଷପଣିଆର କିଛି ବିକାଶ ହେଇଛି ବୋଲି ମୁଁ ଭାବେ ।

କୌଣସି ପିଲା ସହିତ ସ୍ନେହ ସଂବନ୍ଧ ସ୍ଥାପିତ ହେଲେ, ସେ ତମ ପ୍ରତି କିଛି ସ୍ନେହ, ଆଦର ଦେଖେଇଲେ ଯାଇ ଜଣାଯିବ ଯେ, ଏକ ସୃଜନଶୀଳ ସମ୍ପର୍କର ମୂଳଦୁଆ ପଡ଼ିଲା,ଯାହା ଭିତରୁ କିଛି ଭଲ କଥା ବାହାରିବ । ଦିନେ ଜଣେ ଅତି ଉଦ୍‌ବାର୍ଯ୍ୟ ପିଲା ମୁଠାଏ ଚମ୍ପାଫୁଲ

ଧରିଆସି ପହଞ୍ଚିଲା । ଟେବୁଲ ଉପରେ ଥୋଇଦେଇ କହିଲା, "ବାବୁ ! ତମ ପାଇଁ ଆଣିଛି, ଆଉ କାହାକୁ ଦେଇଦେବ ନାହିଁ ।" ମୋ ଆଖି ଛଳ ଛଳ ହେଇଗଲା । ସେ ପିଲାର ଥରେ କେମିତି ଗୋଡ଼ ଖଣ୍ଡିଆ ହେଇଗଲା । ସେ ଘରକୁ ନଯାଇ ଆମ ଘରକୁ ଆସିଲା । ତାକୁ ଧୂଆଧୋଇ କରି ଔଷଧ ଦେଇ ପଟି ବାନ୍ଧି ଦେଲୁ । ଏମିତି ସବୁ ସାନସାନ କଥାରେ ପରିବର୍ତ୍ତନର ଆଭାସ ଥାଏ । ଏଭଳି ସାନ ସାନ କଥାର ତାତ୍ପର୍ଯ୍ୟ ଧରି ନ ପାରିଲେ, ତାକୁ ବେଖାତିର କଲେ କେତେ ସୁନେଲୀ ସଂଭାବନା ଚୂନା ହେଇଯାଏ ।

ଟୁବୁଲା ଏକ ଅତି ଅମାନିଆ ପିଲା ଥିଲା । ପ୍ରତିଦିନ କିଛି ନା କିଛି ଉତ୍ପାତ କରିବ । କ୍ୟାରମ୍ ବୋର୍ଡ଼ ଉପରେ ଜାଣିଶୁଣି ପାଦ ପକେଇ ଚାଲିଯିବ । ସେ ଥିବାବେଳେ ସର୍ବଦା ସଂତ୍ରସ୍ତ ରହିବାକୁ ପଡ଼େ । ଦିନେ ସକାଳଓଳି ସେ ଆସି ଗଭୀର ଅଭିନିବେଶ ଯୋଗେ ମୋଟାଏ ପଟ୍ଟମାଟି ଓ କେତେଖଣ୍ଡ ଖଡ଼ିକା କାଠି ନେଇ ଗୋଟାଏ ଥର ତିଆରି କରିବାରେ ପ୍ରାୟ ଦେଢ଼ଘଣ୍ଟା ଲାଗିଲା । ମୋର ମନେ ହେଲା ଯେ, ତା'ର ଅବରୁଦ୍ଧ ସୃଜନୀଶକ୍ତି ପାଇଁ ଏଇ ଟିକିଏ ବାଟ ଫିଟିଲା । ଏମିତି ସାନ ଉପକ୍ରମରୁ ବଡ଼ ପରିବର୍ତ୍ତନ ଆସେ । ମାତ୍ର ଟୁବୁଲା ପାଇଁ ଆଉ ଅଧିକ ସମୟ ଦେବାର ସୁଯୋଗ ମିଳିଲା ନାହିଁ । ଅନ୍ୟ ନାନା କାମରେ ମୋର ସମୟର ଅଭାବ ପଡ଼ିଲା । ତା'ପରେ ଆମେରିକା ଚାଲିଗଲୁ । ଆମେ ସେଠି ଥିବାବେଳେ ଟୁବୁଲା କାଠଯୋଡ଼ି ବଢ଼ିପାଣିରେ ବୁଡ଼ି ମରିଗଲା । ଗୋଟାଏ ସମ୍ଭାବନା ଅକାଳରେ ମଉଳି ଗଲା ।

ମୁଁ ଜୀବନରେ ଅନେକ ପ୍ରକାରର କାମ କରିଛି । ମାତ୍ର ତାହା ଭିତରେ ଏଇ ପିଲାଙ୍କ ସହିତ କାମକୁ ହିଁ ମୁଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ ସାର୍ଥକ ବୋଲି ମନେକରେ । ସେଇଥିରୁ ମୁଁ ସବୁଠାରୁ ଅଧିକ ଆନନ୍ଦ ପାଇଛି । ମୋର ଦୁଃଖ ଯେ ଚାହିଁଲେ ବି ନାନା କାରଣରୁ ମୁଁ ଏଥିପାଇଁ ସମୟ ଦେଇ ପାରୁନାହିଁ । ବାଲୁତ ସଂଘ ଚାଲିଛି ।

ପୁରୁଣା ପିଲାସବୁ କିଏ କଲେଜକୁ ଗଲେଣି, କିଏ ଚାକିରୀ କଲେଣି । କିଏ ଛୋଟିଆ ମୋଟିଆ ବ୍ୟବସାୟରେ ଲାଗିଛି, ନୂଆପିଲା ସବୁ ଆସୁଛନ୍ତି । ବଡ଼ମାନେ ଗୋଟିଏ ନୂଆ ସଂଗଠନ ଗଢ଼ିଛନ୍ତି; ରମାଦେବୀ ଯୁବଚେତନା ସଂଘ । କେତେଜଣ ବଡ଼ ପିଲା ବାଲୁତ ସଂଘର ସାନ ପିଲାଙ୍କ ପାଇଁ ଆଗ୍ରହର ସହିତ ସମୟ ଦେଉଛନ୍ତି । ଆଶା କରୁଛି ଏଇ ଧାରା ଏହିପରି ଅକ୍ଷୁର୍ଣ୍ଣ ରହିବ । ଏସବୁ ଭିତରୁ ମୁଁ ସବୁଠାରୁ ମହାର୍ଘ ଯେଉଁ ସଂପଦ ପାଇଛି ତାହା ହୋଇଛି ସାହି ଯାକରେ ବାଟରେ 'ଜେଜେ' ଡାକ ।

## ପୁଣି ମନମୁଖୀ ଶାସନ ଓ ସର୍ବୋଦୟ ଆନ୍ଦୋଳନ

୧୯୮୦ ରେ ତ କଂଗ୍ରେସ (ଇ) ପୁଣି କେନ୍ଦ୍ର ଓ ଅଧିକାଂଶ ରାଜ୍ୟରେ କ୍ଷମତାକୁ ଆସିଲା ଓ ଇନ୍ଦିରାଗାନ୍ଧୀ ପୁଣି ପ୍ରଧାନମନ୍ତ୍ରୀ ହେଲେ । ଅନେକ ବିଚାରିଥିଲେ ଯେ, ସେ ଗତ ଚାରି ପାଞ୍ଚ ବର୍ଷର ଅଭିଜ୍ଞତାରୁ କିଛି ଶିକ୍ଷା ଲାଭ କରିଥିବେ ଓ ଆଉ ବେଶି ଉତ୍ପାତ କରିବେ

ନାହିଁ । ସେ ଅଭିଜ୍ଞତାରୁ ଶିକ୍ଷା ଗ୍ରହଣ କରିଥିଲେ ନିଶ୍ଚୟ । ମାତ୍ର ଲୋକେ ଯେପରି ବିଚାରୁଥିଲେ ତାହାଠାରୁ ଭିନ୍ନ ପ୍ରକାରର । ସେ ଏଣିକି ଏକଛତ୍ରବାଦ ଧୂମଧାମ୍ କରି ଲଦିବା ପରିବର୍ତ୍ତେ ଖୁବ୍ ସନ୍ତର୍ପଣରେ ଦାଖଲ କରିବା ଆରମ୍ଭ କଲେ । ପ୍ରଭେଦଟା ବାତ୍ୟା ଓ ମରୁଡ଼ି ଭିତରେ ଥିବା ପରି । ବାତ୍ୟା ତାଣ୍ଡବ ନୃତ୍ୟ କରି ଆସେ ଓ ଘଣ୍ଟାକ ଭିତରେ ହଜାର ହଜାର ଲୋକଙ୍କର ପ୍ରାଣ ନିଏ । ଲକ୍ଷ ଲକ୍ଷ ଲୋକଙ୍କୁ ନିରାଶ୍ରୟ କରିଦିଏ । ଏହାର ନାଟକୀୟ କାଣ୍ଡକାରଖାନା ସାରା ପୃଥିବୀର ଦୃଷ୍ଟି ଆକର୍ଷଣ କରେ । ମାତ୍ର ମରୁଡ଼ି କେତେବେଳେ କେମିତି ଆସି ତା'ର କରାଳ ଛାୟା ବିସ୍ତାର କରେ ତାହା କେହି ଜାଣି ପାରନ୍ତି ନାହିଁ । ତା'ର ପରିଣାମ ଏକ ପ୍ରଚଣ୍ଡ ବାତ୍ୟାଠାରୁ ଅଧିକ ଭୟାବହ ହୋଇପାରେ । ଅନେକ ବେଶି ଲୋକ ସେଥିରେ ପ୍ରାଣ ହରେଇଥା'ନ୍ତି । ଅଥଚ ତାହା କମ୍ ଲୋକଙ୍କର ଦୃଷ୍ଟି ଆକର୍ଷଣ କରେ ।

ଠିକ୍ ସେହିପରି ଏଥର ଇନ୍ଦିରା ଗାନ୍ଧୀ ନାଗରିକ ସ୍ୱାଧୀନତା ଅପହରଣ ଓ ଗଣତାନ୍ତ୍ରିକ ପରମ୍ପରାର ବିନାଶ ସାଧନ ଧୀରେ ଧୀରେ, ପାହାଚ ପାହାଚ କରି କରି ଚାଲିଲେ । ନାନା ପ୍ରକାର ବାହାନ ଦେଖେଇ ବିନା ବିଚାରରେ ଅଟକ ଆଇନ, ଶ୍ରମିକଙ୍କର ଧର୍ମଘଟ ଅଧିକାର କାଢ଼ିନେବା, ସନ୍ତ୍ରାସବାଦୀ ନାଁରେ ନିର୍ବିଚାରରେ ଲୋକଙ୍କୁ ମାରିଦେବାର ଅଧିକାର ସୁରକ୍ଷା ବାହିନୀମାନଙ୍କୁ ଦେବା ଆଦି ଅନେକ ଆଇନ ଗୋଟିକ ପରେ ଗୋଟିଏ ଗଢ଼ା ହୋଇ ଚାଲିଲା । ସଂସଦ ଓ କଂଗ୍ରେସ (ଇ) ଶାସିତ ରାଜ୍ୟ ବିଧାନସଭାମାନଙ୍କୁ ଦଳୀୟ ବାଚସ୍ପତିମାନେ ପ୍ରହସନ ମଞ୍ଚରେ ପରିଣତ କରିବାକୁ ଲାଗିଲେ ।

ନ୍ୟାୟ ବିଭାଗ ଓ ସମ୍ବାଦପତ୍ରମାନଙ୍କର ସ୍ୱାଧୀନତା ଅପହରଣ କରିବାକୁ ନାନା କୂଟକୌଶଳ ପ୍ରୟୋଗ କରାଗଲା । ଦଳୀୟସ୍ୱାର୍ଥ ପାଇ ପଞ୍ଜାବ ସମସ୍ୟାକୁ ଜଟେଇ ରଖି ଅଧିକ ଜଟିଳ ଓ ଭୟଙ୍କର କରାଗଲା । ପଶ୍ଚିମବଙ୍ଗର ବାମପନ୍ଥୀ ସରକାରଙ୍କୁ ହିନସ୍ତା କରିବାପାଇଁ ସୁଭାଷ ଘିଙ୍ଗଙ୍କୁ ବ୍ୟବହାର କରି ଗୋର୍ଖାଭୂମି ସମସ୍ୟାକୁ ଉତ୍ତେଜ ଦିଆଗଲା । ଏପରିକି କେତେ ଯେ କ'ଣ ଉତ୍ପାତ ସାରା ଦେଶରେ ଚାଲିଲା ତା'ର ଇୟତ୍ତା ନାହିଁ ।

ଆଉ ଏକ ତାମସା ଆରମ୍ଭ ହେଲା, ଗାନ୍ଧୀପନ୍ଥୀମାନଙ୍କୁ ଜବତ କରିବା ପାଇଁ, ଯେହେତୁ ସେମାନେ ଇନ୍ଦିରାଜୀଙ୍କର ମନମୁଖୀ ଶାସନର ବିରୋଧ କରିଥିଲେ ଓ କରୁଥିଲେ । ସେମାନେ ସାଧାରଣ ପାଣ୍ଠିର ବହୁତ ଅପବ୍ୟବହାର କରୁଛନ୍ତି, ବିଦେଶରୁ ଟଙ୍କା ଆଣି ରାଷ୍ଟ୍ରର ସ୍ୱାର୍ଥବିରୋଧୀ କାମ କରୁଛନ୍ତି ବୋଲି ଅଭିଯୋଗ ଜଣେ କଂଗ୍ରେସ (ଇ) ସଦସ୍ୟ ପ୍ରଥମେ ସଂସଦରେ ଆଣିଲେ । ତା'ପରେ ରାଜସ୍ଥାନର ଜଣେ ଅବସରପ୍ରାପ୍ତ ବିଚାରପତି ଶ୍ରୀ କୁଡ଼ାଲଙ୍କୁ ନେଇ ଏ ବିଷୟରେ ଅନୁସନ୍ଧାନ କରିବାପାଇଁ ଏକ ଆୟୋଗ ନିଯୁକ୍ତ କରାଗଲା । କୁଡ଼ାଲ ଆୟୋଗର ଅନୁସନ୍ଧାନ କରିବାପାଇଁ ଏକ ଆୟୋଗ ନିଯୁକ୍ତ କରାଗଲା । କୁଡ଼ାଲ ଅୟୋଗର କାରବାର ଆଇନର ସମସ୍ତ ବ୍ୟବସ୍ଥାକୁ ବେଖାତିର କରି ମନମୁଖୀ ଢଙ୍ଗରେ ଚାଲିଲା । କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ନଥାଇ ସଂସ୍ଥା ମାନଙ୍କଠାରୁ ୩୫-୪୦ ବର୍ଷ ତଳର ହିସାବ ଓ ତଥ୍ୟ ମଗା ହେଲା । ସଂସ୍ଥାମାନଙ୍କୁ ନ

ଜଣେଇ ଓ ଜେରା କରିବାର ସୁଯୋଗ ନ ଦେଇ ସାକ୍ଷ୍ୟ ନିଆହେଲା । ଦେଶର ପ୍ରାୟ ନଅଶହ ସାନ ବଡ଼ ଗାନ୍ଧୀପନ୍ଥୀ ଓ ଜୟପ୍ରକାଶଜୀଙ୍କୁ ସମର୍ଥନ କରିଥିବା ସଂସ୍ଥାମାନଙ୍କ ବିରୋଧରେ ଏ ଯାଞ୍ଚ ଅଭିଯାନ ଚାଲିଲା ।

ପ୍ରଥମ ସଂସ୍ଥାମାନେ ଯାଞ୍ଚରେ ସହଯୋଗ କରୁଥିଲେ । ସେମାନେ ବିଚାରିଥିଲେ ଯେ, ଯେତେହେଲେ ଏକ ବିଚାରପତି ତ ଆୟୋଗରେ ଅଛନ୍ତି । ଆମର ତ ଘୋଡ଼େଇବାର କିଛି ନାହିଁ । ଆୟୋଗର ନିଯୁକ୍ତି ଅଭିସନ୍ଧିମୂଳକ ହେଲେ ବି ତା'ର ଯାଞ୍ଚର ପରିଣାମ ନ୍ୟାୟ ସଙ୍ଗତ ହିଁ ହେବାର ଆଶା । ମାତ୍ର କ୍ରମେ ଯେତେବେଳେ ଦେଖାଗଲା ଯେ, କୁଡ଼ାଲ ସାହେବ ସଂସ୍ଥାମାନଙ୍କୁ ବଦନାମ କରିବା ପାଇଁ ଯଥେଚ୍ଛ ଭାବରେ କାରବାର କରି ଲାଗିଛନ୍ତି ସେତେବେଳେ ଏ ଆୟୋଗ ସହିତ ଅସହଯୋଗ କରିବାପାଇଁ ସ୍ଥିର କରାଗଲା । ଚାରିବର୍ଷ ପରିଶ୍ରମ କରି ଓ ଚାରିକୋଟିରୁ ଅଧିକ ସାଧାରଣ ଧନର ଅପବ୍ୟୟ କରି ଆୟୋଗ ଯେଉଁସବୁ ଅଭିଯୋଗ ସାବ୍ୟସ୍ତ କଲେ ସେସବୁ ଏତେ ଅନ୍ତଃସାରଶୂନ୍ୟ ଥିଲା ଯେ, ସି.ବି.ଆଇ.ସୁଦ୍ଧା ସେ ସବୁରୁ ଅଧିକାଂଶର ଅଧିକ ଅନୁସନ୍ଧାନ ଓ ମକଦ୍ଦମାର ଉପଯୁକ୍ତ ମନେ କଲା ନାହିଁ । ଅଳ୍ପ କେତୋଟିର ଅନୁସନ୍ଧାନ ସି.ବି.ଆଇ. ଆରମ୍ଭ କଲା । ମାତ୍ର ସେ ବି ସବୁ ଆଗେଇ ପାରିଲା ନାହିଁ । କେବଳ ମାତ୍ର ଦୁଇ ତିନୋଟି କ୍ଷୁଦ୍ର ସଂସ୍ଥାର କେତେକ କାରବାର ଅନୈତିକ ହୋଇଥିବାର ଜଣାପଡ଼ିଲା । ଏକଥା ନୁହେଁ ଯେ, କୌଣସି ସଂସ୍ଥାର ତିରିଶ ଚାଳିଶ ବର୍ଷର କାର୍ଯ୍ୟକଳାପରେ କୌଣସି ତ୍ରୁଟିବିଚ୍ୟୁତି ନଥିଲା । ପ୍ରଶ୍ନ ହେଉଛି ଯେ, ସେସବୁ ତ୍ରୁଟିବିଚ୍ୟୁତିକୁ ସଂସ୍ଥାର ଦୃଷ୍ଟିକୁ ଆଣନ୍ତି ଓ ସଂସ୍ଥା ସେବୁକୁ ସୁଧାରିବାର ବ୍ୟବସ୍ଥା କରନ୍ତି । ଅନ୍ୟାୟ କାମ କଲେ ସଂସ୍ଥାର କର୍ତ୍ତୃପକ୍ଷ ତା'ର ପ୍ରତିକାର ବିଧାନ କରିବାର କଥା । ଏସବୁ ତ ଯେକୌଣସି ସଂସ୍ଥାର ନିତିଦିନିଆ କାରବାର । କୌଣସି ସଂସ୍ଥାର ପରିଚାଳନାରେ ହିଁ ଗୁରୁତର ତ୍ରୁଟି ଦେଖାଗଲେ ସେଥିପ୍ରତି ସର୍ବସାଧାରଣ ଓ ରାଷ୍ଟ୍ର ଧ୍ୟାନ ଦେବା ବିହିତ । ମାତ୍ର କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ନଥାଇ କେବଳ କ'ଣ ଗୋଟାଏ ମିଳିବ ବୋଲି ଯେମିତି ଜାଲ ପକାଇବା କାରବାର କୁଡ଼ାଲ ଆୟୋଗ କଲେ ସେଥିରେ ସେ ନିଜେଇ ହାସ୍ୟାସ୍ପଦ ହୋଇଗଲେ ଓ ଶେଷକୁ ରାଜୀବ ସରକାର ନିଜକୁ ଅପଦସ୍ଥ ହେବାରୁ ରକ୍ଷା କରିବାପାଇଁ ସେ ଆୟୋଗକୁ ଭାଙ୍ଗିଦେବାକୁ ବାଧ୍ୟ ଦେଲେ ।

ଇନ୍ଦିରାଜୀଙ୍କର ପୁଣି କ୍ଷମତାକୁ ଫେରି ଏ ପ୍ରକାରର କାର୍ଯ୍ୟକଳାପ ଆରମ୍ଭ କରିବାରୁ ଆମେସବୁ ଅନେକ ଚିନ୍ତାଗ୍ରସ୍ତ ହେଲୁ । ଦେଶର ପରିସ୍ଥିତି ବିଷୟରେ ଆଲୋଚନା କରିବାପାଇଁ କେତେଗୁଡ଼ିଏ ବୈଠକ ହେଲା । ପ୍ରଥମ ବୈଠକ ସୌରାଷ୍ଟ୍ରରେ ସଣୋସରାଠାରେ ଥିବା ମୌଳିକ ଶିକ୍ଷାସଂସ୍ଥା ଗ୍ରାମ ଭାରତୀଠାରେ ହୋଇଥିଲା । ସେଥିରେ ମୋରାରଜୀ ଦେଶାଇ, ରବିରାୟ, ବାବୁଭାଇ ପଟେଲ ପ୍ରଭୃତି କେତେକ ଗାନ୍ଧୀ ବିଚାର ପ୍ରତି ଆସ୍ଥାବାନ ରାଜନୀତିକ ନେତାଙ୍କୁ ମଧ୍ୟ ଡକାଯାଇଥିଲା । ଏସବୁ ଆଲୋଚନାରେ ସ୍ଥିର ହେଲା ଯେ, କୌଣସି ରାଜନୀତିକ ଦଳ ସହିତ ଯୁକ୍ତ ନଥିବା ବିଶିଷ୍ଟ ନାଗରିକମାନଙ୍କୁ ଏକତ୍ର କରି ସଚ୍ଚା ଓ ନୀତିଭିତ୍ତିକ ରାଜନୀତି, ଗଣତନ୍ତ୍ରକୁ

ସବଳ କରିବା ଓ ଦେଶର ଦାରିଦ୍ର୍ୟ, ବେକାରୀଆଦି ମୌଳିକ ସମସ୍ୟାର ସମାଧାନ ପାଇଁ ଆବଶ୍ୟକ ରାଜନୀତିକ ଓ ଆର୍ଥନୀତିକ ପରିବର୍ତ୍ତନ ସପକ୍ଷରେ ଏକ ସକ୍ଷମ ଜନମତ ସୃଷ୍ଟି କରିବାକୁ ହେବ । ଏହି ଦିଗରେ ପ୍ରଥମ ପଦକ୍ଷେପ ସ୍ୱରୂପ 'ରାଷ୍ଟ୍ରପତି ଆହ୍ୱାନ' ଶୀର୍ଷକରେ ଏକ ନିବେଦନରେ ସାରା ଦେଶର ଷାଠିଏ ଜଣରୁ ଊର୍ଦ୍ଧ୍ୱ ବିଶିଷ୍ଟ ନାଗରିକଙ୍କର ସ୍ୱାକ୍ଷର ସଂଗ୍ରହ କରହେଲା ଓ ତାହାକୁ ସାରା ଦେଶରେ ଦୂର ଦୂରାନ୍ତରେ ପହଞ୍ଚାଇବାର ଉଦ୍ୟମ ହେଲା । ଏ ନିବେଦନର ସ୍ୱାକ୍ଷରକାରୀଙ୍କ ଭିତରେ ସର୍ବଶ୍ରୀ ନିଟ୍ଟୁର ଶ୍ରୀନିବାସ ରାଓ, ହରିହର ମହାପାତ୍ର ଆଦିଙ୍କ ଭଳି ଅବସରପ୍ରାପ୍ତ ବିଚାରପତି, ସର୍ବଶ୍ରୀ ଶିବରାମ କରନ୍ଥ ଓ ଅନ୍ନଦା ଶଙ୍କର ରାୟଙ୍କ ପରି ବିଶିଷ୍ଟ ଲେଖକ, ସର୍ବଶ୍ରୀ କୁଲଦୀପ ନାୟାର, ଏମ୍.ଭି.କାମ ତ ଆଦିଙ୍କ ଭଳି ବିଶିଷ୍ଟ ସାମ୍ବାଦିକ ଓ ଅନ୍ୟ ଅନେକେ ଥିଲେ । ଏହାପରେ ସ୍ଥିର ହେଲା ଯେ, ଗାନ୍ଧୀବିଚାର ଅନୁସାରେ ରାଜନୀତିରେ କାର୍ଯ୍ୟକରିବା ପାଇଁ, ବିଶେଷକରି ସ୍ଥାନେ ସ୍ଥାନେ ମତଦାତା ପରିଷଦ ମାଧ୍ୟମରେ ଭୋଟରମାନଙ୍କୁସଂଗଠିତ କରି ସେମାନଙ୍କ ଦ୍ୱାରା ସେମାନଙ୍କର ନିଜର ପ୍ରାର୍ଥୀ ନିର୍ବାଚନରେ ଛିଡ଼ା କରାଇବା ପାଇଁ ଓ ସେହି ସଂକ୍ରାନ୍ତ ଅନ୍ୟାନ୍ୟ କାର୍ଯ୍ୟ କରିବାପାଇଁ 'ସ୍ୱରାଜ୍ୟ ସଂଗମ' ନାମରେ ଏକ ସଂଗଠନ ଗଢ଼ାଯିବ । ଏହାର ସଦସ୍ୟମାନେ ନିଜେ କେହି କୌଣସି ନିର୍ବାଚନରେ ପ୍ରାର୍ଥୀ ହେବେ ନାହିଁ । ରାଜ୍ୟସ୍ତରରେ ମଧ୍ୟ ଏହାର ଶାଖା ରହିବ ଓ ସେସବୁର ସଦସ୍ୟମାନଙ୍କ ପ୍ରତି ମଧ୍ୟ ଏହି ପ୍ରାର୍ଥୀ ନ ହେବା ନିୟମ ପ୍ରଯୋଜ୍ୟ ହେବ । ରାଷ୍ଟ୍ରପ୍ରତି ନିବେଦନରେ ସମସ୍ତ ସ୍ୱାକ୍ଷରକାରୀ ସ୍ୱରାଜ୍ୟ ସଙ୍ଗମର ସଦସ୍ୟ ହେବା ପାଇଁ ସ୍ୱୀକୃତି ଦେଲେ । ମାତ୍ର କାର୍ଯ୍ୟତଃ ସେମାନେ ଏ ସଂସ୍ଥାର କାର୍ଯ୍ୟକଳାପରେ ବିଶେଷ ଆଗ୍ରହ ଦେଖାଇଲେ ନାହିଁ । ଏଥିରେ ମତେ ଅଧ୍ୟକ୍ଷ କରାଗଲା ।

ପରେ ଅନେକଥର ଅନେକ ଆଲୋଚନାରେ ଏ ସଂସ୍ଥାର ରୂପରେଖ ଓ ନୀତିନିୟମ ଅଧିକ ସ୍ପଷ୍ଟ ହେଲା । ଏଥିରେ ଏକ ନିର୍ବାଚନ ଇସ୍ତାହାର ମଧ୍ୟ ସ୍ୱୀକୃତ ହେଲା । ଏ ଇସ୍ତାହାରର ନାମକରଣ ହେଲା 'ଜନତାର ଇସ୍ତାହାର' କାରଣ ବିଚାର ହେଲା ଯେ, ନିର୍ବାଚନ ମଣ୍ଡଳୀ ସ୍ତରରେ ଭୋଟରମାନଙ୍କୁ ନେଇ ଗଢ଼ାଯାଇଥିବା ମତଦାତା ପରିଷଦମାନେ ହିଁ ଏହି ଇସ୍ତାହାରକୁ ସ୍ଥାନୀୟ ସମସ୍ୟା ଦୃଷ୍ଟିରୁ କିଛି ଅଦଳବଦଳ କରି ଗ୍ରହଣ କରିବେ ଓ ଏଇଟା ସେମାନଙ୍କର ଇସ୍ତାହାର ହେବ । ପ୍ରତ୍ୟେକ ମତଦାତା ପରିଷଦ ଆପଣାର ନିର୍ବାଚିତ ପ୍ରତିନିଧିଙ୍କ ଦ୍ୱାରା କ'ଣ କରାଇବାକୁ ଚାହାନ୍ତି ଓ ଲୋକେ ବି ନିଜେ ସେ ଦିଗରେ କ'ଣ କରିବେ ତାହା ତାହାରି ଘୋଷଣାପତ୍ର ହେବ । ରାଜନୀତିକ ଦଳ ସହିତ ସ୍ୱରାଜ୍ୟ ସଂଗମର ଅନେକ ସାଦୃଶ୍ୟ ରହିଲେ ବି ତିନୋଟି ଗୁରୁତର ପାର୍ଥକ୍ୟ ରହିଲା । ଦଳର ନେତାମାନେ ନିଜେ କ୍ଷମତାର ଆସନରେ ବସିବାର ଅଭିଳାଷ ନେଇ ଦଳ ଗଢ଼ିଥା'ନ୍ତି । ସ୍ୱରାଜ୍ୟ ସଂଗମର ମୁଖ୍ୟମାନେ କ୍ଷମତାର ଆସନକୁ ନ ଯିବାପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ଦଳର ପ୍ରାର୍ଥୀମାନେ ଦିଲ୍ଲୀ ବା ରାଜ୍ୟ ରାଜଧାନୀରେ ବଛାଯା'ନ୍ତି । ଏହାର ପ୍ରାର୍ଥୀ ତଳ ସ୍ତରରୁ ଭୋଟରମାନଙ୍କର ସଂଗଠନ ଦ୍ୱାରା ବଛାଯିବେ ଓ ତୃତୀୟତଃ ଦଳମାନେ

ଠିକାଦାର ପରି ରାଜ୍ୟର କାମ ଚଳାଇବା ପାଇଁ ଜାଣି ଟେଣ୍ଡର ଦିଅନ୍ତି । ସ୍ୱରାଜ୍ୟ ସଙ୍ଗମ ଟେଣ୍ଡର ଦେବନାହିଁ । ପ୍ରତ୍ୟେକ ମତଦାତା ପରିଷଦ କ'ଣ ଚାହେଁ ଓ କ'ଣ ନିଜେ କରିବ ତାହା ସ୍ଥିର କରିବ ଓ ଘୋଷଣା କରିବ ।

ଏସବୁ ସତ୍ତ୍ୱେ ସ୍ୱରାଜ୍ୟ ସଂଗମର କାମ ସାତ ଆଠ ବର୍ଷରେ କିଛି ମାତ୍ର ଆଗେଇଛି ବୋଲି କହି ହେବ ନାହିଁ । ଗୋଟାଏ ମତ ପ୍ରକାଶ ପାଉଛି ଓ ପ୍ରବଳ ହେଉଛି ଯେ, ଗୋଟାଏ ବିଧିବଦ୍ଧ ଗାନ୍ଧୀବାଦୀ ରାଜନୀତିକ ଦଳ ଗଠନ କରାଯାଉ । ସ୍ୱରାଜ୍ୟ ସଂଗମର ନୀତି ଯେ ମତଦାତା ପରିଷଦ ଗଠନ କରାଯାଇ ତାହା ମାଧ୍ୟମରେ ପ୍ରାର୍ଥୀ ବଛାଯିବ ତାହା ଅବ୍ୟାବହାରିକ ବୋଲି କେତେକ ମନେ କରନ୍ତି ।କେତେକ କହନ୍ତି ଯେ, ତା'ର ପ୍ରକ୍ରିୟା ଅତି ଜଟିଳ ହେଉଛି, ତାକୁ ସରଳ କରାଯାଉ । ଅନ୍ୟମାନଙ୍କର ମତ ଯେ, ପ୍ରାର୍ଥୀ ଉପର ସ୍ତର ସମିତି ଆଦି ଦ୍ୱାରା ବଛାଯିବା ଚାହି । ସେ ଦୃଷ୍ଟିରୁ ଦଳ ଗଢ଼ାଟା ବ୍ୟାବହାରିକ ହେବ । ତାହାଛଡ଼ା ସିଧାସଳଖ ରାଜନୀତିକ ଦଳ ହେଲେ ତାହା ଅଧିକା ଦୃଷ୍ଟିଆକର୍ଷଣ କରିବ ଓ ଲୋକଙ୍କୁ ଆକୃଷ୍ଟ କରିବ । ଏସବୁ ନେଇ ବହୁତ ଆଲୋଚନା ଓ ପରାମର୍ଶ ଚାଲିଛି । ମାତ୍ର ବ୍ୟର୍ଥତାର କାରଣ ଅନ୍ୟତ୍ର । ତାହାପ୍ରତି ଦୃଷ୍ଟି ପଡୁଛି । ତାହା ହେଉଛି ସ୍ୱଷ୍ଟ ଓ ସମଗ୍ର ଦୃଷ୍ଟିସମ୍ପନ୍ନ, ସଂକଳ୍ପବଦ୍ଧ ଓ ସୁସଂଗଠିତ କର୍ମୀ ଗୋଷ୍ଠୀର ଅଭାବ । ନିଷ୍ଠାପର ଓ ଯୋଗ୍ୟ କର୍ମୀ ଭାରତରେ ସର୍ବୋଦୟ ଆନ୍ଦୋଳନ ସହିତ ଯୋଡ଼ି ହୋଇ ଯେତେ ଅଛନ୍ତି ସେତେ ପୃଥିବୀରେ ଅନ୍ୟ କୌଣସି ଆନ୍ଦୋଳନ ସହିତ ନଥିବେ । ମାତ୍ର ସମସ୍ୟା ହେଉଛି ଯେ, ନିଜ ନିଜର ସୀମିତ କାର୍ଯ୍ୟକ୍ରମ ନେଇ ସେମାନଙ୍କ ଭିତରୁ ଅଧିକାଂଶ ବ୍ୟସ୍ତ । ସମଗ୍ର ଦୃଷ୍ଟିରୁ ଅଭାବ ଓ ବିଶେଷକରି ରାଜନୀତିକ ବ୍ୟାପାର ପ୍ରତି ବିନୋବା ଯୁଗର ଉଦାସୀନତାର ପ୍ରଭାବ ପୂରା କଟିନାହିଁ । ତାହା ଉପରକୁ ସରକାରୀ ଯୋଜନାର ଆକର୍ଷଣ ଅଧିକ ବିଭ୍ରାନ୍ତି ସୃଷ୍ଟି କରୁଛି । ଏ ବାବଦରେ କେତେକ ଅନୁଭୂତିର ଆଲୋଚନା ପରବର୍ତ୍ତୀ ଅଧ୍ୟାୟରେ କରାଯାଇଛି ।

ଘଟଣାବଳୀର ସମୟ କ୍ରମରେ ବ୍ୟତିକ୍ରମ ଘଟେଇ ଏଇଠି ଉଲ୍ଲେଖ କରିବା ଉଚିତ ହେବ ଯେ, ୧୯୯୧ ରେ ସ୍ୱରାଜ୍ୟ ସଂଗମର ଢାଁଚାରେ କେତେକ ବ୍ୟାପକ ପରିବର୍ତ୍ତନ କରାଗଲା । ତା'ର ନାମକୁ ବଦଳାଇ 'ଲୋକ ସ୍ୱରାଜ୍ୟ ସଂଘ' କରାହେଲା । ଯାହାଦ୍ୱାରା ତାହା ଅଧିକ ସହଜବୋଧ୍ୟ ହେଲା । ଗ୍ରାମସ୍ତରଯାଏ ତାର ସଂଗଠନ ବିସ୍ତୃତ ହେବ ବୋଲି ଓ ସେଥିରେ ପ୍ରାଥମିକ ଓ ସକ୍ରିୟ ଏ ଦୁଇ ପ୍ରକାରର ସଦସ୍ୟ ବହୁ ସଂଖ୍ୟାରେ ରହିବାର ଓ ସଂଗ୍ରହ କରାଯିବାର ସ୍ଥିର ହେଲା । ତେବେ ତା'ର ତିନୋଟି ମୌଳିକ ନୀତି ଅକ୍ଷୁର୍ଣ୍ଣ ରଖାଯାଇଛି । ଏହାର ରାଷ୍ଟ୍ର ଓ ରାଜ୍ୟ ସଂଗଠନର କର୍ମକର୍ତ୍ତା ଓ ସଦସ୍ୟମାନେ ନିଜେ ନିର୍ବାଚନରେ ଛିଡ଼ାହେବେ ନାହିଁ, ପ୍ରାର୍ଥୀ ମତଦାତା ପରିଷଦ ବାଛିବ ଓ ନିର୍ବାଚନ ଇସ୍ତାହାର ମଧ୍ୟ ସେହିମାନଙ୍କର ହେବ । ଏବେ ଏହାକୁ ବ୍ୟାପକ ଓ ସକ୍ରିୟ କରିବାକୁ ବିଶେଷ ଉଦ୍ୟମ ଆରମ୍ଭ ହେଉଛି ।

# ତମରି ହାତର ବେଦନାର ଦାନ

ସେ ଦିନ ଅଗଷ୍ଟ ୨୧, ୧୯୮୩ ମସିହା, ରାତି ପ୍ରାୟ ଆଠଟାବେଳେ ଆମେ ଖାଇ ବସିଛୁ, ହଠାତ୍ ପାପା ଆସି ଦରଜା ପାଖରେ ଛିଡ଼ା ହେଇଗଲା । ପାପା ତିନୁ ବିଭୂତିଙ୍କର ପୁଅ । ଭଲ ନାଁ ଥିଲା ଅସୀମ । ଦାଦା ନାମକରଣ କରିଥିଲା 'ବେନ୍ ବେଲ୍ଲା' – ଆଲଜିରିୟାର ବିପ୍ଳବୀ ନେତାଙ୍କର ନାଁ ଅନୁସାରେ । ପାପା କଲେଜକୁ ସେଇମାତ୍ର ଯାଇଥାଏ । ଅତି ମଧୁର ସ୍ୱଭାବ । ଗୀତ ଗାଇବାକୁ ଭଲ ପାଏ । ଭୂପେନ ହଜାରିକାଂକର "ଓ ଗଙ୍ଗା ବଇଛ କେନ" – ଅତି ଚମତ୍କାର ଗାଏ । ସେବା କାର୍ଯ୍ୟ କରିବାରେ ଖୁବ୍ ମନ, ପାଠ ପଢ଼ାରେ ସବୁବେଳେ ଆଗୁଆ ।

ପାପାକୁ ହଠାତ୍ ଦେଖି ସୁମିତ୍ରା ପଚାରିଲେ – "କିରେ ତୁ ଏତେବେଳେ କୋଉଠୁ ଆସିଲୁ ?" ସେ ଜଣେଇଲା ଯେ, ତା'ର ବାପା ଆଜି ବିମାନରେ ଦିଲ୍ଲୀ ଗଲେ । ସେ ସାଙ୍ଗରେ ଆସିଥିଲା ଛାଡ଼ିବାକୁ । ଅନୁଗୁଳରୁ ଗୋଟାଏ ଭଡ଼ା ଜିପ୍ ଆସିଥିଲା । ବର୍ତ୍ତମାନ ଫେରିଯାଉଛି, ସେଇଥିରେ ଫେରିଯିବ । ଖାଇବାକୁ ମନାକଲା ଓ ଚାଲିଗଲା । ତା'ପର ଦିନ ସାଢ଼େ ଏଗାରଟା ବେଳକୁ ଭୁବନେଶ୍ୱରରୁ ବେବୀ ବ୍ୟସ୍ତ ହେଇ ଆସି କହିଲା ଯେ, ପାପା ଦିନ ନଅଟା ସୁଦ୍ଧା ଅନୁଗୁଳରେ ପହଞ୍ଚିନାହିଁ । ଖୋଜା ଖୋଜି ଆରମ୍ଭ ହେଲା । କଟକ ଓ ଢେଙ୍କାନାଳ ଥାନାମାନଙ୍କୁ ଫୋନ୍ କଲୁ । ସେମାନେ କିଛି ଖବର କହି ପାରିଲେ ନାହିଁ । ଘୋର ଉଦ୍‌ବେଗ ଭିତରେ ରହିଥାଉ । ଏହା ଭିତରେ ଦିନ ଦୁଇଟା ବେଳକୁ ଅନୁଗୁଳରୁ ଜଣେ ଆସି ପହଞ୍ଚିଲେ ଓ ଖବର ଦେଲେ ଯେ, ସେଠା ବସ୍‌ଷ୍ଟାଣ୍ଡରୁ ଖୋଜଖବର ନେବାରୁ ଜଣାଯାଇଛି ଯେ, ନିର୍ଗୁଣ୍ଡି ଷ୍ଟେସନ ପାଖରେ ଏକ ଦୁର୍ଘଟଣାରେ ଏକ ଜିପ୍ ଭାଙ୍ଗିଛି ଲୋକ ମରିଛନ୍ତି ।

ତା'ପରେ ଜଣାଗଲା ଯେ, ରାତି ଦଶଟା ପରେ ଏଇ ଜିପ୍ ଦ୍ରୁତ ଗତିରେ ଯାଉଥିବାବେଳେ ଅନ୍ଧକାରରେ ଠିଆ ହୋଇଥିବା ଏକ ଟ୍ରକ୍ ପଛରେ ବାଡ଼େଇ ହେଇଯିବାରୁ ପାପା, ଡ୍ରାଇଭର ଓ ଆଉ ଜଣେ ଆରୋହୀ ସାଂଘାତିକ ଭାବରେ ଆହତ ହୋଇ ରାସ୍ତାରେ ପଡ଼ିଥିଲେ । ବାଲେଶ୍ୱର ଆଡୁ ଆସୁଥିବା ଜଣେ ଭଦ୍ରଲୋକ ଶ୍ରୀ ରବି କାନୁନ୍‌ଗୋ ସେମାନଙ୍କୁ ଉଠେଇ ଆଣି କଟକ ବଡ଼ ଡାକ୍ତରଖାନାରେ ପହଞ୍ଚାଇଥିଲେ । ଡାକ୍ତରଖାନାରୁ ଜଣାଗଲା ଯେ, ତିନି ଜଣଯାକ ପ୍ରାଣ ହରାଇଛନ୍ତି । ଏ ଖବର ପାଇବାପରେ ଆମ ସମସ୍ତଙ୍କର ଅବସ୍ଥା ବର୍ଣ୍ଣନା କରିବା ପାଇଁ ମୁଁ ଭାଷା ପାଉନାହିଁ । ଏ କ'ଣ ହେଲା ? ବିଭୂତି ସେତେବେଳେ ଦିଲ୍ଲୀରେ । ତାଙ୍କୁ ଖବର ଦେବାପାଇଁ ପୁଲିସ ବେତାରଠାରୁ ଆରମ୍ଭକରି ଅନ୍ୟ ସବୁ ପ୍ରକାର ଚେଷ୍ଟା କରାଯାଇ ଶେଷକୁ ତାଙ୍କ ସହିତ ତହିଁ ଆରଦିନ ସକାଳୁ ଯୋଗାଯୋଗ ହେଲା ଓ ସେ ତୁରନ୍ତ ବିମାନ ଭୁବନେଶ୍ୱର ଆସିଲେ ।

ମୃତ୍ୟୁ ସହିତ ସାମନା ସାମନି ଅନେକଥର ହେଇଛି, ମାତ୍ର ଏଭଳି ଅତି ଆପଣାର ମଣିଷର ଅକାଳ ମୃତ୍ୟୁର ସାମନା ପୂର୍ବରୁ କେବଳ କାଲୁର ଆତ୍ମହତ୍ୟା ବେଳେ କରିବାକୁ ପଡ଼ିଥିଲା । ମୋର ସାନ ଭାଇ ବିଜି ଅଢ଼େଇ ବର୍ଷରେ ଚାଲିଯିବା ବେଳକୁ ମୋର ବୟସ ସାତ ।

ସେ ଧକ୍‌କାଟା ସେତେବେଳେ ଅଚେତନ ମନକୁ ଠେଲି ହୋଇଯାଇଥିଲା । ପରେ ତା'ର ବେଦନା ସ୍ମୃତି ମନକୁ ଅନେକଥର ଆକୁଳ କରିଛି । ମାତ୍ର ଏ ଧକ୍‌କା ତ ହାତୁଡ଼ି ପାହାର ପରି ଛାତିରେ ବାଜିଲା । ଡିନ୍ନୁ, ବିଭୂତି, ଦାଦା, ଖୁଡ଼ୀଙ୍କ ମୁହଁକୁ ଚାହିଁ ହେଉ ନଥାଏ । ଆତ୍ମୀୟସ୍ୱଜନ, ବାଲ୍ୟବନ୍ଧୁ, ପରିଚିତ ଅପରିଚିତ ଶୁଭେଚ୍ଛୁ ସମସ୍ତେ ଆସିଲେ । ସମସ୍ତଙ୍କର ସ୍ନେହ ସହାନୁଭୂତି ଅଜାଡ଼ି ହୋଇ ପଡ଼ିଲା । ମାତ୍ର ସନ୍ତାନହରା ମା' ବାପାଙ୍କର ଯନ୍ତ୍ରଣା କିଏ ଲାଘବ କରିବ ? ରବୀନ୍ଦ୍ରନାଥଙ୍କର ଏକ କବିତା ମନେପଡ଼ିଲା । ସନ୍ତାନହରା ମା'ର ଅବସ୍ଥା ସେଥିରେ ସେ ବର୍ଣ୍ଣନା କରିଛନ୍ତି । ସେଥିରେ ସେ ଲେଖିଛନ୍ତି ଯେ, ମନ୍ଦିରରେ ଦେବତା ତ ନାହିଁ ଏକ ମାଙ୍କଡ଼ ବସି ଖଡେଇ ହେଉଛି । ସେଠୁ କି ସାନ୍ତ୍ୱନା ମିଳିବ ?

ମାତ୍ର କିଏ ଜାଣିଥିଲା ଯେ, ଆହୁରି ଏକ ଧକ୍‌କା ଅଳ୍ପ ଦିନରେ ପୁଣି ଆସିବ ? ଦୁଇ ମାସ ପୂରିନଥାଏ, ଅକ୍ଟୋବର ସତର ତାରିଖ । କଟକରେ ଦଶହରା ପରେ ଦେବୀ ଭସାଣୀ,ପୁରୀ ଘାଟରେ ଗହଳି । ଦୋକାନ ବଜାର ବସିଛି, ଗୋଟିକ ପରେ ଗୋଟିଏ ମେଢ଼ ବିସର୍ଜନ ପାଇଁ ଆସୁଛି । ଓପରଓଳି ପାଞ୍ଚଟା ହେବ । ଆମର ନାତି, ଝିଅର ପୁଅ, ଓ୍ୱିନିକୁ ନେଇ ଯାତ୍ରା ଦେଖିଯିବା କଥା ହେଲା । ସୁମିତ୍ରା କେମିତି ବିଷର୍ଣ୍ଣ ଥା'ନ୍ତି । ତାଙ୍କ ମନରେ କିଛି ଛାଇ ପଡ଼ିଥାଏ କି ? ଏକରକମ ବାଧ୍ୟହୋଇ ସାଙ୍ଗରେ ଗଲେ । ଦେବୀ ଦେଖି ଓ କଣ୍ଢେଇ ପ୍ରଭୃତି କିଣି ଫେରିଲୁ ।

ରାତି ସାଢ଼େ ଏଗାରଟା । ପାଖରେ ଥିବା ଟେବୁଲ ଉପରେ ଫୋନ୍‌ର ଘଣ୍ଟି ବାଜିଲା । ନିଦ ଭାଙ୍ଗିଲା । ବିରକ୍ତ ହୋଇ ଉଠି ରିସିଭର ଉଠେଇଲି । ସେ ମୁଣ୍ଡରୁ ଅପରେଟର କହିଲେ – "ଆମେରିକାରୁ କଲ୍ ଆସିଛି, ନିଅନ୍ତୁ, କଥା କୁହନ୍ତୁ ।" ଆରତିର ସ୍ୱର ଶୁଣାଗଲା ।"ବା, ସେ ଆଉ ନାହିଁ ।" ତା'ପରେ ସେ କାନ୍ଦରେ ଭାଙ୍ଗିପଡ଼ିଲା । ଆଉ ଜଣେ କିଏ ଭଦ୍ରଲୋକ ଫୋନ୍ ନେଇ ବଙ୍ଗଳାରେ କଥା କହିଲେ । ଭଲ ସଂଯୋଗ ହୋଇନଥାଏ । କଥା ଅସ୍ପଷ୍ଟ ଶୁଣାଯାଉଥାଏ । 'ଏକ୍‌ସିଡେଣ୍ଟ' ଶବ୍ଦଟା ଦୁଇତିନିଥର ଶୁଣାଗଲା । କାନ୍ଦ ଓ 'ଏକ୍‌ସିଡେଣ୍ଟ' । ନାନାର କ'ଣ ହେଲା ? ନା, ତା' ପୁଅର ? ଅନେକ ଚେଷ୍ଟା କରି ଆମେରିକାରେ ଥିବା ସର୍ବୋଦୟ କର୍ମୀ ଅନାଦି ନାୟକଙ୍କୁ ଫୋନ୍‌ରେ ପାଇଲୁ । ସେ ଖବର ବୁଝି ପୁଣି ଫୋନ୍‌ରେ ଜଣେଇଲେ ଯେ, ଅସ୍ପଷ୍ଟ ଫୋନ୍‌ବାର୍ତ୍ତାରୁ ଯା ଅନୁମାନ କରିଥିଲୁ ତାହା ଠିକ୍ । ନାନା (କବୀର) ଏକ ମୋଟର ଦୁର୍ଘଟଣାରେ ସେଠାରେ ସତର ତାରିଖ ସକାଳ ପ୍ରାୟ ସାତଟାବେଳେ ପ୍ରାଣ ହରାଇଛି । ଏଠି ସେତେବେଳକୁ ସଂଧ୍ୟା ସାଢ଼େ ପାଞ୍ଚ, ଛଅ ଆମେ ଦେବୀ ଭସାଣୀ ଦେଖିଯିବା ବେଳ ।

କବୀର ବୈଦ୍ୟୁତିକ ଯନ୍ତ୍ରବିଦ୍ୟା ଅଧ୍ୟୟନ କରି ଭୋପାଳରେ ଭାରତ ହେଭୀ ଇଲେକ୍ଟ୍ରିକାଲସ୍ (BHEL) କାରଖାନାରେ କାମ କରୁଥିଲା । ସେଠୁ ସେ ଯୋଗାଡ଼ଯନ୍ତ୍ର କରି ଆମେରିକା ଗଲା ଉଚ୍ଚତର ଶିକ୍ଷା ପାଇଁ । ୧୯୭୯ ଶୀତଦିନ ଦିଲ୍ଲୀ ବିମାନଘାଟୀରେ ତାକୁ ବିଦାୟ ଦେଲୁ । ସେଇ ତାହା ସହିତ ଶେଷ ଦେଖା । ସେଠି ବୋହୂ ଆରତି ପଦାର୍ଥ ବିଜ୍ଞାନରେ ଡକ୍ଟରେଟ୍ କରିବାରେ ଲାଗିଲା । କବୀର ତା'ର ପାଠ ସାରି ଏକ ଚାକିରୀରେ ପଶିଲା । ସେ ବିଷୟରେ

ସେ ଲେଖିଥିଲା ଯେ, ସେ ବହୁରାଷ୍ଟ୍ରୀୟ କମ୍ପାନୀରେ ଚାକିରୀ କରିବା ଚାହେଁ ନାହିଁ । ତେଣୁ ଏକ ଛୋଟକାଟିଆ କମ୍ପାନୀରେ କାମ ନେଇଛି । ସେଠି ସୌରଶକ୍ତି ଉପରେ ଗବେଷଣା ହେଉଛି ଯାହା ବହୁତ ମହତ୍ତ୍ୱପୂର୍ଣ୍ଣ । କିଏ ଜାଣିଥିଲା ଯେ, ତା'ର ସବୁ ସୁନେଲି ସ୍ୱପ୍ନ, ଆମର ସବୁ ଆଶାଭରସା ମୁହୂର୍ତ୍ତରେ ଚୂର୍ଣ୍ଣ ହେଇଯିବ ?

ଗୋଟାଏ ପରେ ଗୋଟାଏ ଆଘାତ । ଏଥର ଆଘାତଟା ଆହୁରି ଅଧିକ ପ୍ରଚଣ୍ଡ, ଅଧିକ ସିଧାସଳଖ । ଚାରିଆଡ଼େ ଯେମିତି ଜାଣି ସବୁ ଆଲୁଅ ଲିଭିଗଲା । ଏକ ସର୍ବଗ୍ରାସୀ ଅନ୍ଧକାର ମାଡ଼ିଆସିଲା । ମାତ୍ର କାହିଁ ? ଏତେ ବଡ଼ ପାହାର ସହି ତ ମୁଁ ବଞ୍ଚି ରହିଛି ? ଛାତି ଫାଟି ଯାଇନାହିଁ ? ବେଙ୍ଗମାମୁଁଙ୍କ ବଡ଼ ପୁଅ ଗଜି ଅକାଳରେ ଚାଲିଯାଇଥିଲା । ଦାଦା ଖୁଡ଼ୀ ଓ ଆମ ସମସ୍ତଙ୍କୁ ଦଗା ଦେଇ କାଲୁ ଚାଲିଯାଇଥିଲା । ଟୁଂଖୁମାମୁଁଙ୍କ ପୁଅ ଇତା ଓ ତା'ର ସ୍ତ୍ରୀ ଏକାଠି ଆତ୍ମହତ୍ୟା କରିଥିଲେ । କେତେ ବର୍ଷ ତଳେ ଗୁଜରାଟର ବିଶିଷ୍ଟ ଖଦୀକର୍ମୀ ରତିଭାଇ ଗୋନ୍ଦିଆଙ୍କର ପୁଅ ମରିଯାଇଥିଲେ । ପୁଣି ଅଳ୍ପଦିନ ତଳେ ବିଶିଷ୍ଟ ସମ୍ବାଦପତ୍ର ମାଲିକ ଓ ସାଧାରଣ ସେବୀ ରାମନାଥ ଗୋଏଙ୍କାଙ୍କ ପୁଅ ବି । ଏବେ ପାପା ଯାଇଥିଲା, ତିନୁ, ବିଭୂତିଙ୍କୁ କାଙ୍ଗାଳ କରିଦେଇ । ମୁଁ ଭାବୁଥିଲି ଏମାନେ କିପରି ଏଡ଼େ ବଡ଼ ବଡ଼ ଆଘାତମାନ ସହିପାରିଛନ୍ତି । ଏବେ ଆମ ଉପରେ ବି ସେହି ଭୟଙ୍କର ଆଘାତ ଆସି ପଡ଼ିଲା । ଦେଖିଲି ମଣିଷ ଜୀବନ ବହୁତ ଟାଣ । ବହୁତ ଦାଉଧକ୍କା ସହି ମଧ୍ୟ ତିଷ୍ଠି ରହିପାରେ ।

ଅନେକ ଲୋକ ସାନ୍ତ୍ୱନା ଦେବାକୁ, ସଂଖୋଳିବାକୁ ଆସିଲେ, ତହିଁଆରଦିନ ସକାଳେ ମାନନୀୟ ରାଧାନାଥ ବାବୁ ଆସିଲେ । ବୋଉ ତାଙ୍କୁ ବିକଳ ହେଇ ପଚାରିଲା, "କୁହନ୍ତୁ ! ଆମେ କି ପାପ କରିଛୁ, କାହାର କ'ଣ କ୍ଷତି କରିଛୁ ଯେ, ଆମକୁ ବାରମ୍ବାର ଏ ଦଣ୍ଡ ଭଗବାନ ଦେଉଛନ୍ତି ।" ରାଧାନାଥ ବାବୁ କ'ଣ ଉତ୍ତର ଦେବେ ? କିଏ କ'ଣ ଉତ୍ତର ଦେବେ ? କ'ଣ ଭଗବାନଙ୍କର ଦଣ୍ଡ ଦେବାର ରୀତି ଏୟା ? କିଏ କେତେ ସାନ୍ତ୍ୱନା ଦେଲେ । କେତେ କହିଲେ, "ଏସବୁ ଈଶ୍ୱରଙ୍କ ଇଚ୍ଛା । ମନଟାଣ କରି , ଛାତିକୁ ପଥରକରି ସହିଯାଅ ।" "ଯେ ଗଲାଣି ତାହାଠାରୁ ମନ କାଢ଼ିନିଅ । ସେ କେବେ ଥିଲା ବୋଲି ଭୁଲିଯାଅ ।"

କ'ଣ ଈଶ୍ୱରଙ୍କର କାରବାର ଏମିତି ? ଦୁନିଆରେ ଶୋଷଣ, ଦାରିଦ୍ର୍ୟ, ଅନାହାର, ମୃତ୍ୟୁ, ଯୁଦ୍ଧର ଧ୍ୱଂସର ତାଣ୍ଡବ ଏସବୁ ଈଶ୍ୱରଙ୍କର ଲୀଳା, ତାଙ୍କରି ଇଚ୍ଛାରେ ହେଉଛି ବୋଲି ପିଲାଦିନୁ ଶୁଣି ଆସିଥିଲି ଓ ଏଭଳି ଈଶ୍ୱରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲି । ସମାଜବାଦୀ ହେଇ ସମାଜକୁ ଦୁଃଖଯାତନା ଓ ବିଷମତାର କବଳରୁ ମୁକ୍ତ କରିବା ପାଇଁ ବିପ୍ଳବ କରିବାକୁ ଅଣ୍ଟା ଭିଡ଼ିଥିଲି । ବିପ୍ଳବର ସେ ସଙ୍କଳ୍ପ ପୂରାହେଇନାହିଁ । ଗାନ୍ଧୀଜୀ ବତେଇଥିବା ବାଟରେ ଗୋଡ଼ ବଢ଼େଇ ସେ ବିପ୍ଳବର ସଙ୍କଳ୍ପ ହୁଗୁଳା ହେଇ ନାହିଁ । ଅଧିକ ଦୃଢ଼ ହେଇଛି । ଲକ୍ଷ୍ୟ ଆହୁରି ସ୍ପଷ୍ଟ ହେଇଛି । ମାର୍ଗ ଅଧିକ ଆଲୋକିତ ହେଇଛି । କଳାହାଣ୍ଡି ଅନାହାର ମୃତ୍ୟୁ, ହିଟ୍‌ଲରର ହୁକୁମ୍‌ରେ ନିହତ ଲକ୍ଷ ଲକ୍ଷ ଇହୁଦୀ, ଜିପ୍‌ସୀ ଓ ଅନ୍ୟମାନେ, ଜାଲିଆନାୱାଲା

ବାଗର ଶହିଦ, ଶହୀଦ, ଶହୀଦ ଲକ୍ଷ୍ମଣ ନାୟକ ଓ ବାଜି ରାଉତ ଆଦି ସମସ୍ତଙ୍କର ମୃତ୍ୟୁ ଈଶ୍ୱରଙ୍କର ବିଧାନ ? ଛୁଆ ବୋଉର ଟିକି ପୁଅଟି ଦାରିଦ୍ର୍ୟ ଯୋଗୁଁ ଚିକିତ୍ସାର ଅଭାବରେ ମରିବ ଏ କ'ଣ ଈଶ୍ୱରଙ୍କର ବିଧାନ ? ଏ ଯୁକ୍ତିକି ନମାନି କରି ହିଁ ମୁଁ ଜୀବନର ଅର୍ଥ କିଛିଟା ଖୋଜି ପାଇଲି । ତାହାକୁ ମୁଁ ଛାଡ଼ି ଦେବାକୁ ପ୍ରସ୍ତୁତ ନୁହେଁ ।

ଅବଶ୍ୟ ଜୀବନ ସହିତ ମୃତ୍ୟୁ ଅଙ୍ଗାଅଙ୍ଗି ଭାବରେ ଛନ୍ଦି ହୋଇ ରହିଛି । ସୃଷ୍ଟିର ବିକାଶ ପାଇଁ, ନୂଆ ନୂଆ ସର୍ଜନାର ସମ୍ଭାବନାକୁ ମୁକ୍ତ କରିବା ପାଇଁ, ପୁରୁଣା ଝଡ଼ିଯିବା ଆବଶ୍ୟକ ହୁଏ । ଶୁଖିଲା ପତ୍ର ଝଡ଼ିଯାଏ, ନୂଆ ପତ୍ର କଅଁଳି ଅରଣ୍ୟକୁ ନବ ଶ୍ୟାମଳିମାରେ ଭରିଦିଏ । ଫୁଲ ମଉଳି ଝଡ଼ିଯାଏ ପୁଣି ନୂଆ ହୋଇ ଫୁଟେ । ଯଦି ପୁରୁଣାକୁ ବାତିଲ କରି ଦେବାର ଏ ବିଧାନ ନଥାନ୍ତା ତେବେ ଏ ପୃଥିବୀ ଉପରେ ଏବେ ବି ଡାଇନୋସରମାନଙ୍କର ରାଜତ୍ୱ ଥା'ନ୍ତା । ମଣିଷ ସୃଷ୍ଟିର ବାଟ ହିଁ ଫିଟି ନଥା'ନ୍ତା । ନାହିଁ; ନାହିଁ ଆହୁରି ପଛକୁ ଯାଇ ଜୀବନ ପ୍ୟାରାମିସିୟମ୍ ବା ଟ୍ରାଇଲୋବାଇଟ୍ ସ୍ତରରେ ଅଟକି ରହିଥା'ନ୍ତା ।

ମାତ୍ର ପ୍ରକୃତିର ବିଧାନର ଯେ ମୃତ୍ୟୁ, ଖାସ୍ କରି ମଣିଷ କ୍ଷେତ୍ରରେ, ସେ ହେଲା ବ୍ୟକ୍ତି ତା'ର ଅନ୍ତରନିହିତ ସମ୍ଭାବନାକୁ ପୂର୍ଣ୍ଣ ମାତ୍ରାରେ ପ୍ରକଟ କରିସାରି, ମାନବ ସମାଜକୁ, ସୃଷ୍ଟିକୁ ତା'ର ଯାହା ଅବଦାନ ହେବାର ହୋଇସାରି ତାହାପରେ ସେହି ପୂର୍ଣ୍ଣ ପ୍ରାପ୍ତିର ଏକ ଶେଷ ସୋପାନରୂପେ ଏ ଦେହକୁ ଛାଡ଼ିଯିବ । ଈଶ ଉପନିଶଦର ବାଣୀ "କରି କରମ ଏହି ମତେ, ଇଚ୍ଛା ଆୟୁଷ ବର୍ଷ ଶତେ ।" ଏହାର ସଙ୍କେତ ଦିଏ । ମାତ୍ର ଫୁଲ ନ ଫୁଟୁଣୁ କଢ଼ରୁ ଝଡ଼ିପଡ଼ିବା, ମଣିଷ ଅକାଳରେ ଚାଲିପଡ଼ିବା ସ୍ୱାଭାବିକ ନୁହେଁ । ମଣିଷ ଜୀବନର ଏହି ପ୍ରକାରର ନିଷ୍ଫଳତା, ଅସାର୍ଥକତା, ବିରୋଧରେ ସଂଗ୍ରାମ କରି ହିଁ ମଣିଷ ଜାତି ଆଗେଇ ଚାଲିଛି । ସବୁ ମୃତ୍ୟୁ, ଅପମୃତ୍ୟୁ ଓ ଅକାଳ ମୃତ୍ୟୁକୁ ଈଶ୍ୱରେଚ୍ଛା ବୋଲି ମାନନେଇ ଏ ସଂଗ୍ରାମରୁ ଅପସରି ଯାଇ ହେବ ନାହିଁ ।

ତେବେ ମୃତ୍ୟୁ ଏକ ଘଟଣା ଯାହାର ଗତିପଥ ଆଉ ଲେଉଟେଇ ହେବନାହିଁ । ଯାହା ଘଟିଗଲା ତାହା ଯେତେ ଅବାଞ୍ଛନୀୟ ଓ ପୀଡ଼ାଦାୟକ ହେଲେ ବି ତାହା ଘଟି ସାରିଛି । ତାକୁ ଆଉ ଲେଉଟାଇବା ସମ୍ଭବ ନୁହେଁ, ତାକୁ ନେଇ ବଞ୍ଚିବାକୁ ହେବ । କେମିତି ବଞ୍ଚିବ ? ଆମେ ପ୍ରକୃତରେ କେହି ପୂରା ବଞ୍ଚିନାହୁଁ । ଯେ ଗଲା ସେ ତ ଗଲା, ମାତ୍ର ଆମ ଚାରିପାଖରେ ଯେସବୁ ବଞ୍ଚିଛନ୍ତି, ଯିଏ ବି ଆମର ଅତି ନିକଟରେ ପ୍ରିୟଜନ, ସେ ସମସ୍ତଙ୍କୁ କ'ଣ ଆମେ ପୂରା ଚିହ୍ନିଛୁ ? ପୂରା ଭଲ ପାଉଛୁ ? ଭଲ ପାଇବା ସହିତ ବେଦନା, ଆଘାତ, ଓତପ୍ରୋତଭାବେ ମିଶି ରହିଛି । କାହାରିକୁ ଭଲ ପାଇଲେ ସେ ପ୍ରିୟଜନର ଦୁଃଖ, କଷ୍ଟ, ଭଲପାଇବା ଲୋକକୁ ମଧ୍ୟ ବାଧେ । ପ୍ରିୟଜନର ବାକ୍ୟ ବା କାର୍ଯ୍ୟରେ ଥିବା ରୁକ୍ଷତା, ଚିନ୍ତାହୀନତା ବା ଉପେକ୍ଷା ମଧ୍ୟ ହୃଦୟକୁ ଆହତ କରେ । ସେଥିପାଇଁ ଆମେ ଅଧିକାଂଶ ଲୋକ ପ୍ରକୃତରେ ଆମର ଛାତିକୁ ପଥର କରିଦେଉ, ଆମର କୋମଳବୃତ୍ତି ଉପରେ ଏକ ଖୋଳପା, ବର୍ମ, ଗଢ଼ିଦେଉ । କାହାର ବେଶି ମୋଟା ତ କାହାର କମ୍, ମାତ୍ର ଏକ ଖୋଳପା ପ୍ରାୟ ସମସ୍ତଙ୍କ ହୃଦୟ ଉପରେ ଥାଏ । ହସ

କାନ୍ଦ ଏ ଦୁଇଟା ହିଁ, ପ୍ରକୃତିର କୁହ ବା ଭଗବାନଙ୍କର କୁହ, ମଣିଷକୁ ସବୁଠାରୁ ବଡ଼ ଦାନ । ଅନ୍ୟସହିତ ଏକାଠି ହସି ପାରିବାରେ ଓ ପୁଣି ଅନ୍ୟ ସାଙ୍ଗରେ କାନ୍ଦି ପାରିବାରେ ମଣିଷର ମଣିଷପଣିଆ, ତାର ଚରମ ଅଭିବ୍ୟକ୍ତି, ପରମ ସାର୍ଥକତା । କୁନ୍ତୀ କୁଆଡ଼େ ଈଶ୍ୱରଙ୍କୁ ବର ମାଗିଥିଲେ ଯେ, ତାଙ୍କୁ ଯେମିତି ବରାବର ଦୁଃଖ ସହିବାକୁ ମିଳେ । ଯାହାଦ୍ୱାରା ସେ ସବୁବେଳେ ଈଶ୍ୱରଙ୍କୁ ସ୍ମରଣ କରିପାରିବେ । ରବୀନ୍ଦ୍ରନାଥ ଗାଇଛନ୍ତି – "ତୋମାର ହାତେର ବେଦନାର ଦାନ ଏଡ଼ାୟେ ଚାହିନା ମୁକତି, ଦୁଃଖ ହବେ ମୋର ମଥାର ଭୂଷଣ ସାଥେ ଯଦି ଦାଓ ଭକତି ।" ଅନେକ ଭକ୍ତ ଏହିପରି ଚାହିଁଛନ୍ତି । ପ୍ରକୃତରେ ସୃଷ୍ଟିରେ ଦୁଃଖର ଅଭାବ ନାହିଁ । ସେ ସବୁ ଦୁଃଖର ମୂଳ ଖୋଜି ତା'ର ନିବାରଣ ହିଁ ଗାନ୍ଧୀଜୀଙ୍କ ଭଳି ମହାପୁରୁଷଙ୍କର ଜୀବନର ସାଧନା ଥିଲା । 'ପ୍ରତି ଆଖିରୁ ପ୍ରତି ଲୁହର ବିନ୍ଦୁ ପୋଛିବା ମୋର ଜୀବନର ଆକାଂକ୍ଷା' ବୋଲି ସେ କହୁଥିଲେ । ସେଥିପାଇଁ ଦୁଃଖ ଦିଅ ବୋଲି ପ୍ରାର୍ଥନା କରିବାର କିଛି ଅର୍ଥ ନାହିଁ । ସେମାନେ ଯାହା କହିବାକୁ ଚାହୁଁଥିଲେ ତାହା ହେଉଛି ଆମକୁ ଦୁଃଖ ଅନୁଭବ କରିବାର ଶକ୍ତି ଦିଅ ।

ବିଖ୍ୟାତ ଫରାସୀ ସାହିତ୍ୟିକ ଓ ଦାର୍ଶନିକ ଜ୍ୟାଁ ପଲ୍ ସାର୍ତ୍ରେ (Jean Paul Sartre) ଲେଖିଛନ୍ତି : "ଆଜି ମଣିଷର ସ୍ଥିତି ଯାହା ଅଛି ଓ ଯେପରି ହେବାକୁ ମୁଁ ଚାହେଁ ସେଥି ଭିତରେ ବହୁତ ବଡ଼ ପାର୍ଥକ୍ୟ ରହିଛି । ସେଥିଯୋଗୁଁ ମୁଁ ବଡ଼ ବେଦନା (ଆଙ୍ଗୁଇଶ୍, Anguish) ଅନୁଭବ କରେ । ମାତ୍ର ମୁଁ ସେ ବେଦନାରୁ ନିଜକୁ ରକ୍ଷା କରିବାକୁ ଚାହେଁ ନାହିଁ । କାରଣ ସେଇଥିରୁ ହିଁ ସୃଷ୍ଟିଶୀଳତାର ଜନ୍ମ ହୁଏ ।"

ଦୁନିଆ ଯେ ଦୁଃଖ ଓ ବେଦନାରେ ପୂରି ରହିଛି ତାହା ଅନୁଭବ କରିବାର ଶକ୍ତି ହିଁ ମଣିଷର ସବୁଠାରୁ ବଡ଼ ସମ୍ପଦ । ଏହାକୁ ଆମେ ଯେଉଁ ଖୋଳପା ଦ୍ୱାରା ଆବୃତ୍ତ କରି ରଖିଥାଉ ତାକୁ ଭାଙ୍ଗି ବେଦନାର ସ୍ପର୍ଶ ପାଇଁ ହୃଦୟକୁ ମୁକ୍ତ ନ କଲେ ପ୍ରେମର ଝରଣାର ସନ୍ଧାନ ମିଳିବ ନାହିଁ, ଆମେ ପୂରା ଭଲ ପାଇ ପାରିବା ନାହିଁ । ମୁଁ ଅନୁଭୂତିରୁ ଉପଲବ୍ଧି କରିଛି ଯେ, ଭଲ ପାଇ ପାରିବାରେ, ନିଜର ପ୍ରେମର ପରିସରକୁ ଅଧିକରୁ ଅଧିକ ବ୍ୟାପ୍ତ କରିବାରେ ହିଁ ଜୀବନର ସାର୍ଥକତା । ଏଇଥିରେ ହିଁ ସୃଜନୀ ଶକ୍ତିର ଉତ୍ସ ରହିଛି । ବିପ୍ଳବୀର ପ୍ରେରଣାର ସ୍ରୋତ ଏଇ ମାନବ ପ୍ରେମରେ । କବିର, ଶିଳ୍ପୀର ମଧ୍ୟ ।

ରବୀନ୍ଦ୍ରନାଥ ଏହିପରି ପ୍ରେମିକକୁ ଲକ୍ଷ୍ୟକରି ଗାଇଛନ୍ତି, "ଏଇ ଅକୂଳ ସଂସାରେ, ଦୁଃଖ ଆଘାତ ତୋମାର ପ୍ରାଣେ ବୀଣା ଝଙ୍କାରେ ।" ଦୁଃଖର ଆଘାତରେ ମ୍ରିୟମାଣ ନ ହୋଇ ସେ ଆଘାତକୁ ପ୍ରାଣର ବୀଣାରେ ନବସର୍ଜନାର ସଙ୍ଗୀତ ଝଙ୍କାର ତୋଳିବା ପାଇଁ ବ୍ୟବହାର କରିବାର ଶକ୍ତି ଅର୍ଜନ କଲେ ଯାଇ ଆମେ ପୂରା ବଞ୍ଚି ଶିଖି ପାରିବା ।

ପ୍ରିୟଜନ ବିୟୋଗର ଦୁଃଖର ଆଘାତ ଆମ ହୃଦୟର ରକ୍ଷାକବଚକୁ ଭେଦି ଆମର ମର୍ମସ୍ଥଳରେ ଆଘାତ କରେ । ଏ ଆଘାତରୁ ରକ୍ଷା ପାଇବାପାଇଁ ଛାତିକୁ ଆହୁରି ପଥର ନ କରି ଏ କବଚରୁ ନିଜକୁ ପୂରାପୂରି ମୁକ୍ତ କରିବା ପାଇଁ ଆଘାତକୁ ବ୍ୟବହାର କରିବାକୁ ହେବ ।

ସେଥିପାଇଁ ଦୁଃଖକୁ ଭୁଲିବାକୁ ହେବ ନାହିଁ । ତାକୁ ଚିତ୍ତରେ ଜଗେଇ ରଖି ତାର ବେଦନା ସହିତ ବଞ୍ଚିରହିବାକୁ ହେବ । ଏ ଦୁନିଆରେ ଦୁଃଖର ସୀମା ନାହିଁ । ଛାତିକୁ ପଥରର ଜଡ଼ତାରୁ ମୁକ୍ତ କଲେ ସେ ସବୁର ଆଘାତ ଆମ ହୃଦୟରେ ବାଜିବ ଓ ସେଥିରେ ଯେଉଁ ଝଙ୍କାର ଉଠିବ ତାହା ଆମକୁ ସୃଷ୍ଟିର ଦୁଃଖରୁ ମୁକ୍ତ କରିବାକୁ ପ୍ରେରଣା ଦେବ: ସୀମାବଦ୍ଧ କ୍ଷେତ୍ରରେ, ଯେମିତି ଆମେରିକାର ମା'ମାନେ ମାତାଲ ଅବସ୍ଥାରେ ଗାଡ଼ି ଚଳେଇବା ବନ୍ଦ କରିବା ପାଇଁ ଏକ ସମିତି ଗଢ଼ି କାମ କରୁଛନ୍ତି, ବା ବ୍ୟାପକ ବିପ୍ଳବ ପାଇଁ, ଯେମିତି ଗାନ୍ଧୀଜୀ ବା ଜୟପ୍ରକାଶଜୀ କରୁଥିଲେ ।

ଏ ସୃଷ୍ଟିରେ ଏକ ପ୍ରେମର ଶକ୍ତି କାମ କରୁଛି । ସୃଷ୍ଟିର ଜଡ଼ ଶକ୍ତିର ଲୀଳା ତ ଆମେ ଅହରହ ଦେଖୁଛୁ । ସୂର୍ଯ୍ୟ, ନକ୍ଷତ୍ର ଓ ନୀହାରିକାରେ ଅକଳ୍ପନୀୟ ତେଜୋମୟ ଅଗ୍ନିକୁଣ୍ଡ ଜଳୁଛି, ପୃଥିବୀର ଗର୍ଭରେ ମଧ । ଆଗ୍ନେୟଗିରିରୁ ତାର ଉଦ୍‌ଗୀରଣ କେତେବେଳେ ପମ୍ପିଆଇ ଓ ହରକୁଲିନିୟମ ଭଳି ସହରକୁ ଜାଳି ଦେଉଛି ତ କେତେବେଳେ ଭୟାବହ ଭୂମିକମ୍ପରୂପେ ଗୋଟାଏ ଦେଶରେ ଗୋଟାଏ ଗୋଟାଏ ଫାଳକୁ ଧ୍ୱଂସ କରି ଦେଉଛି । ଜଡ଼ ପ୍ରକୃତିର ନିୟମରେ ବର୍ଷା, ବନ୍ୟା, ମରୁଡ଼ି ଆସୁଛି । ମଣିଷର ସୁଖଦୁଃଖ ପ୍ରତି ସେ ସବୁ ଭିତରେ କିଛି ପରବାୟ ଥିବାର ଦେଖାଯାଉ ନାହିଁ ।

ଅଥଚ ଏହି ତଥାକଥିତ ଜଡ଼ ପ୍ରକୃତିର ତାଣ୍ଡବ ନୃତ୍ୟ ଯେତିକି ସତ୍ୟ, ପ୍ରେମର ଅକ୍ଷୟ ସ୍ରୋତର ଅସ୍ତିତ୍ୱ ସେତିକି ସତ୍ୟ । ପମ୍ପିଆଇର ଧ୍ୱଂସ ସ୍ତୂପ ଭିତରୁ ପାଉଁଶ ଭିତରେ ପୋତି ହେଇ ପଥର ପାଲଟି ଯାଇଥିବା ମୃତଦେହସବୁ ମିଳିଛି । ସେଥିରୁ ଅଛି ଶିଶୁକୁ ବକ୍ଷରେ ଜାବୁଡ଼ିଧରି ରକ୍ଷା କରିବାକୁ ଚେଷ୍ଟା କରୁଥିବା ମା'ର ଦେହ । ପ୍ରଳୟଙ୍କରୀ ବାତ୍ୟା ଯୋଗୁଁ ଘଟୁଥିବା ସମୁଦ୍ର ପ୍ଳାବନରେ ବୁଡ଼ିଯାଉଥିବା ମା' ଶିଶୁକୁ ପାଣି ଉପରକୁ ଟେକି ଧରି ରକ୍ଷାକରିବାର ଶେଷ ଚେଷ୍ଟା କରୁଛି । ସୃଷ୍ଟିର ପ୍ରଚଣ୍ଡ ଜଡ଼ ଶକ୍ତି ବିରୋଧରେ ଏହା ଏକ କ୍ଷୁଦ୍ର, ଅକିଂଚିତ୍‌କର ବିଦ୍ରୋହ ପରି ମନେହେବ । ମାତ୍ର ଏ ବିଦ୍ରୋହ ସତ୍ୟ । ଜଡ଼ ଶକ୍ତିର ତାଣ୍ଡବ ଓ ପ୍ରେମର ଏ କ୍ଷୀଣ ଧାରା ଉଭୟର ଉତ୍ସ ନିଶ୍ଚୟ ଗୋଟାଏ ସ୍ଥାନରେ । ମାତ୍ର ଏ ଦୁଇର ସମନ୍ୱୟ କିପରି ହେବ ତାହା କେହି ଆଜିଯାଏ ଜାଣିପାରି ନାହାନ୍ତି । ପଦାର୍ଥବିଜ୍ଞାନର ଚାରୋଟି ଶକ୍ତିର ସମନ୍ୱୟ କରୁଥିବା ନିୟମର ଆବିଷ୍କାର ଯେତେ କଷ୍ଟସାଧ୍ୟ ଏ ପରସ୍ପର ବିରୋଧୀ ଦେଖାଯାଉଥିବା ଶକ୍ତିର ସମନ୍ୱୟର ଦର୍ଶନ ଲାଭ ତାହାଠାରୁ ଅନେକ ଗୁଣରେ ଦୁରୂହ ।

ଦୁଃଖବେଳେ ଏଇ ପ୍ରେମର ସ୍ରୋତର ଅନୁଭୂତି ପ୍ରଖର ହୁଏ । ନିକଟର ଓ ଦୂରର କେତେ ଜଣା ଅଜଣା ଲୋକଙ୍କର ସ୍ନେହବୋଳା ସହାନୁଭୂତିର ସ୍ପର୍ଶ ମଣିଷ ପାଏ । ଏଇ ଅନୁଭୂତି ହିଁ ହୁଏ ତ ମଣିଷକୁ ଦୁଃଖ ସହିବାର ବଳ ଦିଏ । ନାନା ତ ଗଲା । ବିଦେଶରେ ନୂଆ ଜାଗାରେ ସାନ ପିଲାଟିକୁ ନେଇ ଆରତି ଏକ ହେଇଗଲା, ମାତ୍ର ମୁହୂର୍ତ୍ତକ ପାଇଁ । ସେଠି ନାନାର ସାନ ମାଉସୀ ଓ ମଉସା ତ କିଛି ଦୂରରେ ଥିଲେ । ମାତ୍ର ସେ ସ୍ଥାନରେ ଭାରତୀୟ, ଆମେରିକାନ୍, ପାକିସ୍ତାନୀ, ମିଶରୀୟ କେତେ ବନ୍ଧୁ ଧାଇଁ ଆସିଲେ ତାକୁ ସାନ୍ତ୍ୱନା ଦେବାପାଇଁ ତାର ଭାର

ଲାଘବ କରିବା ପାଇଁ । ଆମେ ଏ ପାରିରେ ପୃଥିବୀର ଗୋଲେଇର ବିପରୀତ ମୁଣ୍ଡରେ ଅସହାୟ ହେଇ ବସିରହିଲୁ । ତୁରନ୍ତ ଧାଇଁଯିବାର ଉପାୟ ନାହିଁ । ମାତ୍ର କେତେ ନା କେତେ ସ୍ନେହବୋଳା ହାତ ସେମାନଙ୍କୁ କୋଳକୁ ଟାଣିନେଲା । ସେମାନଙ୍କ ପାଇଁ ଆମର ଦୁଷ୍ଚିନ୍ତା ରହିଲା ନାହିଁ ।

## କେତେ ଅଜଣାକୁ ଜଣେଇଲ ତୁମେ

କିଛିଦିନ ପରେ ବୋହୂ ଆରତି ଓ ନାତି ଶାଶା କଟକ ଆସିଲେ । ସେମାନଙ୍କ ସାଥିରେ ସୁମିତ୍ରା ଓ ମୁଁ ଆମେରିକା ଗଲୁ । ଆରତି ସେଠି ଇଣ୍ଡିଆନା ରାଜ୍ୟରେ ସାଉଥ୍ ବେଣ୍ଡଠାରେ ଥିବା ନୋତର ଦାମ୍ ବିଶ୍ୱବିଦ୍ୟାଳୟରେ ପଦାର୍ଥବିଜ୍ଞାନରେ ଡକ୍ଟରେଟ୍ ପାଇଁ ଅଧ୍ୟୟନ କରୁଥାଏ । ସେଠି ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କ ପାଇଁ ରହିବା ଘର, କ୍ୱାଟରର ବ୍ୟବସ୍ଥା ନାହିଁ । ମାତ୍ର ବିବାହିତ ଛାତ୍ରଛାତ୍ରୀଙ୍କ ପାଇଁ ଅଛି । ସେହିପରି ଏକ ସାନ ଘରେ ଆରତି ଥାଏ ଓ ଆମେ ସେଇଠି ରହିଲୁ । ସେଠି ଅଠରଟି କୋଠାରେ ଏହିଭଳି ଶହେ ଆଠଟି ବସାଘର ଥାଏ । ଏହି ସାନ ବସ୍ତିଟି ବିଶ୍ୱବିଦ୍ୟାଳୟ ଗ୍ରାମ ନାମରେ ପରିଚିତ । ଏସବୁ ଘର ଛାତ୍ରଛାତ୍ରୀମାନଙ୍କୁ ରିଆତି ଭଡ଼ାରେ ମିଳେ । ଆରତି ତାର ଥେସିସ୍ ଲେଖିବାକୁ ପ୍ରସ୍ତୁତ ହେଉଥାଏ । ନାତି ଶାଶାକୁ ସମ୍ଭାଳିବା ଓ ଘରକରଣାରେ ସାହାଯ୍ୟ ଆମର କାମ ହେଇଥାଏ । ଆମେ ପହଞ୍ଚିବାବେଳକୁ ଘୋର ଶୀତ । ବରଫ ପଡ଼ି ଚାରିଆଡ଼ ଧଳା ।ଆମେ ଗରମ ଦେଶର ଲୋକ । ଶୀତକୁ ଡରିବାର କଥା । ମାତ୍ର ଶୀତଟା ମୋର ସହ୍ୟ ହେବା ସଙ୍ଗେ ସଙ୍ଗେ ମଜା ବି ଲାଗିଲା । ଯଥେଷ୍ଟ ଗରମ ଲୁଗା ପିନ୍ଧି ବାହାରକୁ ବାହାରିଲେ କିଛି ଅସୁବିଧା ହୁଏ ନାହିଁ । ଶାଶା ଓ ତା'ର ସାଙ୍ଗମାନେ ବରଫରେ ଖେଳନ୍ତି । ବରଫର ଦୁର୍ଗ, ମଣିଷ ମୂର୍ତ୍ତି ଆଦି ତିଆରି କରନ୍ତି । ତାଙ୍କ ସାଙ୍ଗରେ ମୁଁ ଯୋଗଦିଏ । ବରଫର ଗୋଳା ତିଆରି କରି ପରସ୍ପରକୁ ଫିଙ୍ଗାଫିଙ୍ଗି ହୁଅନ୍ତି । ପୁଣି ଏପ୍ରିଲ ୧୧ ତାରିଖରେ ଆରତିର ଗୋଟିଏ ପୁଅ ହେଲା । ତା'ର ନାଁ ହେଲା ତଥାଗତ । ସେ ବର୍ଷକର ହେବାଯାଏ ଆମେ ସେଠି ରହିବା କଥା ଆଗରୁ ଥିଲା । ତା'ର ତତ୍ତ୍ୱାବଧାନ ପ୍ରଧାନ କାମ ହେଇଗଲା ।

ଆମେରିକାରେ ତ ପହଞ୍ଚିଲୁ । ମାତ୍ର ପ୍ରାୟ ମାସେଯାଏ କୌଣସି ଆମେରିକାନ୍ ସାଙ୍ଗରେ ପରିଚୟ ହେଲା ନାହିଁ । ଜର୍ଜ ଓ୍ୱଲୋବୀ ଓ ଚାର୍ଲି ଓ୍ୱାକର୍ ପୁରୁଣା ବନ୍ଧୁ । ମାତ୍ର ସେମାନେ ଥା'ନ୍ତି ଆଠ ଶହ ମାଇଲ ଦୂରରେ । ସେଠି ବିଶ୍ୱବିଦ୍ୟାଳୟରେ କୋଡ଼ିଏ ଜଣେ ସରିକି ଭାରତୀୟ ଅଧ୍ୟାପକ ଓ ଭାରତୀୟ ଉପମହାଦେଶର ଅନେକ ଛାତ୍ର ଥା'ନ୍ତି । ସେମାନେ ସମସ୍ତେ ଆମେରିକାନ୍ ସହକର୍ମୀ ଓ ସତୀର୍ଥମାନଙ୍କ ସହିତ ପ୍ରତିଦିନ ଘଷାଘଷି ହେଲେ ବି ସାମାଜିକ ଜୀବନରେ ସେମାନେ ନିଜର ଅଲଗା ବୃତ୍ତରେ ଚଳପ୍ରଚଳ ହେଉଥା'ନ୍ତି । ଭାରତ, ପାକିସ୍ତାନ ଓ ବଙ୍ଗଳାଦେଶରୁ ଆସିଥିବା ଲୋକେ ସେଠି ପରସ୍ପରକୁ ସମଗୋତ୍ରୀୟ ବିଚାରୁଥିବାର ଦେଖିଲି । ସେମାନଙ୍କ ଉପରେ ଏସବୁ ଦେଶ ଭିତରେ ପରସ୍ପର କନ୍ଦଳର ବିଶେଷ ଛାପ ପଡ଼ିଥିବାର ଦେଖିଲି ନାହିଁ । ଏସିଆରୁ ଆସିଥିବା ଲୋକେ ନିଜକୁ ଅନ୍ୟମାନଙ୍କଠାରୁ ଅଲଗା ରଖି ଚଳନ୍ତି ବୋଲି ଅଭିଯୋଗ ଶୁଣିଲି ।

ମାତ୍ର ଏହା ପୃଥିବୀର ସବୁ ଜାତିର ଲୋକଙ୍କ ପ୍ରତି ପ୍ରଯୁଜ୍ୟ । ଭାରତରେ ରହୁଥିବା ୟୁରୋପୀୟ ଓ ଆମେରିକୀୟ ଲୋକଙ୍କର ସାମାଜିକ ବୃତ୍ତ ଅଲଗା ନା ନାହିଁ ?

ସେଠି ପହଞ୍ଚି ମୋର ଗୋଟିଏ ବିଚିତ୍ର ଓ ସୁଖକର ଅନୁଭୂତି ହେଲା । ମୁଁ ମୋର ଅଭ୍ୟାସ ଅନୁସାରେ ପ୍ରଥମ ଦିନ ଉପରଓଳି ବୁଲି ବାହାରି 'ବିଶ୍ୱବିଦ୍ୟାଳୟ ଗ୍ରାମ' ଚାରିପଟେ ଘେର ପକେଇଲି । ସେତେବେଳେ ବାଟରେ କେତେଜଣ ସେ ଦେଶୀ ଲୋକ ଭେଟ ହେଲେ ଓ ମତେ ଦେଖି ପ୍ରତ୍ୟେକ 'ହାଏ' କହି ଅଭିବାଦନ ଜଣେଇଲେ । ମୁଁ ବି 'ହାଏ' କହି ପ୍ରତିଅଭିବାଦନ ଜଣେଇଲି । ମୁଁ ବିଚାରିଲି ଯେ, ଏମାନେ ବୋଧହୁଏ ଆରତିକୁ ଚିହ୍ନନ୍ତି, ଆମେ ଆସିବା ଖବର ପାଇଛନ୍ତି ଓ ତେଣୁ ମତେ ଅଭିବାଦନ ଜଣାଉଛନ୍ତି । ମାତ୍ର କେଇ ଦିନ ପରେ ମୁଁ ଯେତେବେଳେ ଦୂରକୁ ବୁଲିଗଲି ସେଠି ବି ବାଟଚଲା ଲୋକ ମତେ 'ହାଏ' ବା 'ହେଲୋ' କହିଲେ । ସେମାନେ ଆରତିକୁ ଚିହ୍ନିଥିବାର କୌଣସି ସମ୍ଭାବନା ନଥିଲା । ସେଠୁ ମୁଁ ପଚାରି ବୁଝିଲି ଯେ, ବାଟରେ ଘାଟରେ ଚିହ୍ନା ଅଚିହ୍ନା ସମସ୍ତଙ୍କୁ ଏହିପରି ଅଭିବାଦନ ଜଣାଇବା ଏଠାର ରୀତି । ଏଇଟା ମତେ ଭାରି ଭଲ ଲାଗିଲା । ମଣିଷର ମଣିଷ ପ୍ରତି ଏକ ଶୁଭ ସମ୍ପର୍କର ଏଇଟା ଏକ ସଙ୍କେତ । ତେବେ ବଡ଼ ବଡ଼ ସହରମାନଙ୍କରେ ଏ ରୀତି ଚଳେ ନାହିଁ । ସେଠି ତ ମଣିଷ ଯେ ଯାହା କାମରେ ବା ଅକାମରେ ଅତି ବ୍ୟସ୍ତ ହେଇ ଧାଇଁଥା'ନ୍ତି । 'ହାଏ' କହିବାକୁ ଫୁରସତ କାହିଁ ? କର୍ମବ୍ୟସ୍ତ ଗହଳି ଭିତରେ କେତେ ଲୋକଙ୍କୁ ବା କହିବ ? କେବଳ ସାନ ସାନ ବସ୍ତିରେ ଏ ଚଳଣି ଦେଖାଯାଏ ।

ସେଠି ଆରତିର ଅଭିଭାବକଙ୍କ ଭିତରେ ଡା : ସମୀର ବୋଷ ଓ ତାଙ୍କର ସ୍ତ୍ରୀ ସୁଦେଶ ପ୍ରଧାନ ଥିଲେ । ସେମାନେ ତାକୁ ଏକାବେଳକେ ନିଜ ଝିଅପରି ଦେଖୁଥା'ନ୍ତି । ଏହାଛଡ଼ା କ୍ଲଡ଼ିଆ ନାମକ ଜଣେ ଆମେରିକାନ୍ ଝିଅ ସେହି ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ କରୁଥାଏ । ସେ ଆରତିର ଅତି ଘନିଷ୍ଠ ବନ୍ଧୁ । ସେଠି ତ ଗାଡ଼ି ନହେଲେ ଚଳିବା ଅସମ୍ଭବ ଓ ଆରତିର ଗାଡ଼ି ନଥାଏ । କ୍ଲଡ଼ିଆ ତାକୁ ଅକୁଣ୍ଠ ଚିତ୍ତରେ ଆପଣା ଗାଡ଼ିରେ ଦୋକାନ ବଜାର ବା ଅନ୍ୟତ୍ର ନେବାଆଣିବା କରେ । ଏହା ଛଡ଼ା ଡଃ ସୁଭାଷ ବସୁ ଓ ତାଙ୍କ ସ୍ତ୍ରୀ ମଞ୍ଜୁ, ଡଃ ଉମେଶ ଗର୍ଗ ଓ ଅନିତା, ଡ: ଅଶୋକ ମଜୁମ୍‌ଦାର ଓ ଗୁନା, ଡ: ରମେଶ ମେହରା ଓ ସୁଶୀଲା, ଡ: ତ୍ରିପାଠୀ ଓ ପୂନମ୍, ଶ୍ରୀକାନ୍ତ ଅବସ୍ଥି ଓ ଅଦିତି, ଡ: ନୃପେନ୍ ବିଶ୍ୱାସ ଓ ଲିଲୋ ପ୍ରଭୃତି ତା'ର ଶୁଭେଚ୍ଛୁ ଓ ବନ୍ଧୁରୂପେ ତାକୁ ଓ ଆମକୁ ସର୍ବଦା ସାହାଯ୍ୟ କରିବାକୁ ଉଦ୍‌ଗ୍ରୀବ ଥା'ନ୍ତି ।

ପ୍ରଥମ ଯେଉଁ ଆମେରିକୀୟଙ୍କ ସହିତ ନିକଟ ପରିଚୟ ହେଲା ସେ ହେଲେ ଫାଦର୍ ଡେଭିଡ୍ ବରେଲ । ସେଠାର ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ । ସେ ଅତି ଅମାୟିକ ସାଧୁ ପ୍ରକୃତିର ବ୍ରହ୍ମଚାରୀ, ତାଙ୍କର ପାଣ୍ଡିତ୍ୟ ଅଗାଧ । ତାଙ୍କର ଆଧ୍ୟାତ୍ମିକତା ଭରା ସଂସ୍ପର୍ଶ ଘୋର ଦୁଃଖବେଳେ ଆରତିକୁ ବହୁତ ସାନ୍ତ୍ୱନା ଓ ବଳ ଦେଇଥିଲା ।

ଆରତିଙ୍କୁ କହିବାରୁ ସେ ବିଶ୍ୱବିଦ୍ୟାଳୟର କେତେକ ଅଧ୍ୟାପକଙ୍କ ସାଙ୍ଗରେ ମୋର ପରିଚୟ କରେଇ ଦେଲା । ସେମାନଙ୍କ ଭିତରେ ପଦାର୍ଥବିଜ୍ଞାନର ମୁଖ୍ୟ ଅଧ୍ୟାପକ ଡଃ ମ୍ୟାକ୍‌ଗ୍ଲିନ୍ ଓ ଅର୍ଥନୀତିର ଅଧ୍ୟାପକ ଡଃ ଡେନିସ୍ ଗୁଲେ ପ୍ରଧାନ । କ୍ରମେ କ୍ରମେ ଅନେକ ଆମେରିକୀୟଙ୍କ ସହିତ ପରିଚୟ ହେଲା । ଏକ ବଡ଼ ସୁଯୋଗ ମିଳିଲା ସେ ବର୍ଷରେ ମଇ ମାସରେ ହେଉଥିବା ସର୍ବ - ଆମେରିକୀୟ ଅହିଂସା ସମ୍ମିଳନୀରେ । ଆମେରିକାରେ, ଓ ୟୁରୋପରେ ମଧ୍ୟ, ବହୁ ସଂଖ୍ୟକ ସାନ ବଡ଼ ଶାନ୍ତିବାଦୀ ଗୋଷ୍ଠୀ ଅଛନ୍ତି । ସେମାନଙ୍କର ଆଭିମୁଖ୍ୟ ଭିନ୍ନ ଭିନ୍ନ, ମାତ୍ର ଗୋଟାଏ ସର୍ବସାମାନ୍ୟ ଉପାଦାନ ସେମାନଙ୍କର ବିଶ୍ୱାସରେ ରହିଛି । ତାହା ହେଲା ଶାନ୍ତି ବା ଅହିଂସା ପ୍ରତି ଆସ୍ଥା । କେତେକ ଗୋଷ୍ଠୀ ବିବେକବାନ ଯୁଦ୍ଧବିରୋଧୀ । ସେମାନେ ଆପଣାର ବିବେକର ଡାକରାକୁ ମାନି କୌଣସି ଯୁଦ୍ଧରେ ଯୋଗଦିଅନ୍ତି ନାହିଁ । କେତେକ ଏହି ବିରୋଧକୁ ଆହୁରି ଆଗେଇ ନେଇ ସରକାରଙ୍କୁ ଟିକସ ଦିଅନ୍ତି ନାହିଁ । କେତେକ ଦେଶ ଦେଶର ନାଗରିକଙ୍କ ଭିତରେ ସଦ୍‌ଭାବ ବଢ଼ାଇବା ପାଇଁ କାମ କରନ୍ତି । କେତେକ ବିବାଦ ଓ ସଂଘର୍ଷର ପରିସ୍ଥିତିରେ ଶାନ୍ତି ସ୍ଥାପନର ଉଦ୍ୟମ କରନ୍ତି । ମନମୁଖୀ ଶାସନର ଶିକାର ଦେଶମାନଙ୍କରୁ ପଳେଇ ଆସୁଥିବା ଶରଣାର୍ଥୀଙ୍କୁ ଆଶ୍ରୟ ଦିଆଯିବା ଆଉ ଏକ କାମ । ସମାଜରେ ଶାନ୍ତି ଆଣିବାକୁ ହେଲେ, ଯୁଦ୍ଧ ଲୋପ କରିବାକୁ ହେଲେ, ହିଂସା ଓ ଯୁଦ୍ଧର ଚେର ଯେ ସମାଜର ରଚନା ଭିତରେ ରହିଛି ତାକୁ ଉପାଡ଼ିବାକୁ ହେବ । ଗାନ୍ଧିଜୀଙ୍କର ଏ ଦୃଷ୍ଟିକୁ ଗ୍ରହଣ କରି ନୂଆ ଶାନ୍ତିପୂର୍ଣ୍ଣ ସମାଜର ମୂଳଦୁଆ ରୂପେ ଗୋଷ୍ଠୀସମାଜ ଗଢ଼ିବା ଉଦ୍ୟମରେ କେତେକ ଲାଗିଛନ୍ତି । ଏବେ ଏ ଗାନ୍ଧୀ ବିଚାରର ପ୍ରଭାବ ବ୍ୟାପକ ହେଉଛି ଓ ପ୍ରାୟ ପ୍ରତ୍ୟେକ ଗୋଷ୍ଠୀ ଆପଣା ଆପଣାର ସୀମିତ କାର୍ଯ୍ୟକ୍ଷେତ୍ରରୁ ବାହାରି ବ୍ୟାପକ ଦୃଷ୍ଟି ନେଇ କାମ କରିବାର ଆବଶ୍ୟକତା ଉପଲବ୍ଧି କରୁଛନ୍ତି ଓ ଅହିଂସାରେ ବିଶ୍ୱାସୀ ସମସ୍ତଙ୍କୁ ଏକାଠିକରି ଏକ ବିଶାଳ ଶକ୍ତି ଗଢ଼ିତୋଳିବାର ଆବଶ୍ୟକତା ମଧ୍ୟ ।

ଏହି ଲକ୍ଷ୍ୟ ନେଇ ଦକ୍ଷିଣ ଡାକୋଟା ରାଜ୍ୟର ବ୍ଲାକ୍ ହିଲ୍ ବା କୃଷ୍ଣ ଗିରି ନାମକ ସ୍ଥାନରେ ଆଠଦିନ ଧରି ସମ୍ମିଳନୀ ଚାଲିଥିଲା । ଏହି ସ୍ଥାନଟି ବଣ ଓ ପାହାଡ଼ଘେରା, ଅତି ରମଣୀୟ । ସେଥିରେ ସାରା ଦେଶରୁ ଚାରିଶହ ସରିକି ପ୍ରତିନିଧି ଯୋଗ ଦେଇଥିଲେ । ଭାରତରୁ ନାରାୟଣ ଦେସାଈ ନିମନ୍ତ୍ରିତ ହେଇ ଆସିଥିଲେ ଓ ମୁଁ ମଧ୍ୟ ଯୋଗ ଦେବାର ସୁଯୋଗ ପାଇଥିଲି । ଏଠି ସମ୍ମିଳନୀର ପୂର୍ଣ୍ଣ ଅଧିବେଶନ ଛଡ଼ା ଅନେକଗୁଡ଼ିଏ ସାନ ସାନ ଗୋଷ୍ଠୀରେ ବିଭିନ୍ନ ବିଷୟର ଆଲୋଚନା ହେଉଥିଲା ଓ ଭାବର ଆଦାନ ପ୍ରଦାନ ଓ ଘନିଷ୍ଠ ପରିଚୟ ପାଇଁ ଭଲ ସୁଯୋଗ ମିଳୁଥିଲା ।

ଏ ସମ୍ମିଳନୀରେ ମୁଁ ଗୋଟାଏ କଥା ଲକ୍ଷ୍ୟ କଲି । ସେଠାରେ ଶାନ୍ତିବାଦୀ ଓ ଅହିଂସାବାଦୀ ଓ ଭାରତରେ ଗାନ୍ଧୀପନ୍ଥୀମାନେ ଏକା ଜାତର ଲୋକ । ଏକା ପ୍ରକାରର ମୌଳିକ ଆଦର୍ଶ ନେଇ ସେମାନେ ଓ ଆମେ ଉଭୟେ ବାଟ ଚାଲୁଛୁ । ମାତ୍ର ଉଭୟଙ୍କ ଭିତରେ ଗୋଟାଏ ବଡ଼ ପାର୍ଥକ୍ୟ ଲକ୍ଷ୍ୟ କଲି ଯେ, ସେମାନଙ୍କର ଆତ୍ମପ୍ରତ୍ୟୟ ଅଧିକ । ସେମାନେ ବାଟ ଚାଲିବାର ବଳ ନିଜର

ଅନ୍ତରାତ୍ମାରୁ ଅଧିକ ପରିମାଣରେ ପାନ୍ତି । ଆମ ଦେଶରେ ଆମର ନେତୃତ୍ୱ ଉପରେ ନିର୍ଭରଶୀଳତା ଅଧିକ । ଗାନ୍ଧୀଜୀ ତ ନାହାନ୍ତି, ଜୟପ୍ରକାଶ ଓ ବିନୋବା ବି ତ ଚାଲିଗଲେ । କିଏ ଆମକୁ ବାଟ ଦେଖାଇବ ? ଆମ ସାଙ୍ଗରେ ଆଉ କିଏ ଅଛି ନା ନାହିଁ ? ପଛରେ କିଏ ଆସୁଛି କି ନାହିଁ ? ଏସବୁ ଚିନ୍ତା ଆମର ଅଧିକାଂଶଙ୍କ ମନରେ ସର୍ବୋପରି ଥାଏ । ମାତ୍ର ସେଠି ଏ ନିର୍ଭରଶୀଳତା ଅନେକ କମ୍ ଥିବାର ଦେଖିଲି । କେହି କୌଣସି ବାଟ ଧରିବାପାଇଁ ନିଜ ଅନ୍ତରାତ୍ମାରୁ ପ୍ରେରଣା ବା ସମର୍ଥନ ପାଇଲା ତ ଆଗକୁ ବା ପଛକୁ ନ ଚାହିଁ ସେ ବାଟରେ ଚାଲିବ । "ଯଦି ତୋର ଡାକ ଶୁନେ କେଉ ନା ଆସେ ତବେ ଏକଲା ଚଲୋରେ ।" ଏହି ବାଣୀ ଏମାନଙ୍କର ଚରିତ୍ରରେ ବେଶି ଭେଦିଥିବାର ମନେହେଲା ।

ଏମାନଙ୍କର ଆଲୋଚନାରେ ଲକ୍ଷ୍ୟକଲି ଯେ, ଏମାନେ ନିଜର ଅନୁଭୂତିର ଆଲୋଚନା ଅନେକ ବେଶି କରନ୍ତି । ଅହିଂସା ବା ସତ୍ୟ ବା ସମତା ବା ଅନ୍ୟ କୌଣସି ନୀତି ଅନୁସାରେଆଚରଣ କରିବାକୁ ଯାଇ କିଏ କ'ଣ କଲା, କି ପ୍ରକାରର ଅଭିଜ୍ଞତା ଲାଭ କଲା, କି ସମସ୍ୟାର ସମ୍ମୁଖୀନ ହେଲା, ସେଥିରୁକି ନୂଆ ଅନ୍ତର୍ଦୃଷ୍ଟି ପାଇଲା, ଏସବୁ ସେମାନଙ୍କର ଆଲୋଚନାର ଭିତ୍ତି ହୋଇଥାଏ । ଆମେ ସାଧାରଣତଃ ଆପଣାର ଅଭିଜ୍ଞତାର ଆଲୋଚନା ବହୁତ କମ୍ କରୁ । ଗାନ୍ଧୀ ଯା କହିଛନ୍ତି, ବିନୋବା ବା ଜେ.ପି. ଏ ବାଟ ବତେଇଛନ୍ତି, ସେ ବାଟ ଏହି ପ୍ରକାରର, ଏହି ଧରଣର ଆଲୋଚନା ଆମର ବେଶି ହୁଏ ।

ମାର୍ଭ କ୍ୟାମେରର୍ ଜଣେ ପଶୁପାଳକ । ଦୁଇ ହଜାର ଏକର ଜମି । ମେଣ୍ଢା ପ୍ରଭୃତି ପାଳନ୍ତି । ତାଙ୍କ ଜମିକୁ ଲାଗି ଆମେରିକାର ଏକ ବିରାଟ ସାମରିକ ବିମାନ ଘାଟି । ସେଠି ପରମାଣୁ ବୋମା କାଣ୍ଡି ହୋଇ ରହିଛି ଓ ବୋମାବର୍ଷୀ ବିମାନ ବାହିନୀ ସେ ସବୁ ବୋମା ନେଇ ସେଠୁ ଯାଇ ଚବିଶ ଘଣ୍ଟା ସୋଭିଏତ୍ ଦେଶ ସୀମାପାଖରେ ପଇଁତରା ମାରୁଛନ୍ତି । ଯୁଦ୍ଧ ଲାଗିଲେ କାଳ ବିଳମ୍ବ ନ କରି ସେ ଦେଶର ଭିତରକୁ ଯାଇ ବର୍ଷଣ କରିବେ । ଆମେ ସେ ସ୍ଥାନକୁ ଯାଇଥିଲୁ । ମାର୍ଭ ଜଣେ ଶାନ୍ତିବାଦୀ, ସେ କିପରି ଯୁଦ୍ଧ ବିରୋଧୀ ହେଲେ ତାର ବର୍ଣ୍ଣନା ଆମକୁ ଶୁଣାଇଲେ । ସେ କହିଲେ, "ମୁଁ ଦିନେ ସକାଳ ନଅଟାବେଳେ ହେବ ବିଲରେ କାମ କରୁଥିଲି । ଏତିକିବେଳେ ମୁଣ୍ଡ ଉପର ଦେଇ ଅସଂଖ୍ୟ ଯୁଦ୍ଧ ବିମାନ ଉତ୍ତର-ପଶ୍ଚିମ ଦିଗକୁ ଉଡ଼ିଗଲେ । ଏତେ ବିମାନ ଏଠି ଥିବ ବୋଲି ମୋର ଧାରଣା ନ ଥିଲା । ଭାବିଲି, କ'ଣ ଯୁଦ୍ଧ ଲାଗିଗଲା ? କ'ଣ ହେବ ? ମୋର ପିଲାମାନଙ୍କ କଥା ମନେ ପଡ଼ିଲା । ହେଇ ସେଠା ସ୍କୁଲକୁ ସାନ ଦି'ଟା ଯାଇଛନ୍ତି । ହେଇ ସେଆଡ଼େ କଲେଜରେ ଆଉ ଦୁଇ ଝିଅ ପଢୁଛନ୍ତି । ବଡ଼ ଝିଅ, ଜ୍ୱାଇଁ ଓ ସାନ ନାତିଟି ସେ ପାଖ ର୍‍ୟାପିଡ୍ ସିଟିରେ ଅଛନ୍ତି । ସେମାନଙ୍କର କ'ଣ ହେବ ? ଏଇ ମାର୍ଚ୍ଚ ମାସ । ମିଠା ପବନ ଘାସର ସୁଗନ୍ଧ ବହି ଆଣୁଛି । ଚଢ଼େଇସବୁ ଶୀତଦିନେ ପଳେଇଥିଲେ, ଏବେ ଫେରିଲେଣି ଓ ରାବଦେଇ ଜାଣି କହୁଛନ୍ତି, "ହେଇ ଆମେ ଫେରି ଆସିଲୁ ।" ମେଣ୍ଢାଛୁଆସବୁ

ଫୁଟୁରୁ ଫୁଟୁରୁ ତେଉଁଛନ୍ତି । **ସବୁ ଧ୍ୱଂସ ହେଇଯିବ** ? ଏତେ ସୁନ୍ଦର ପୃଥିବୀକୁ ବିଧ୍ୱସ୍ତ କରିବାର ଅଧିକାର ସେମାନଙ୍କୁ କିଏ ଦେଲା ? ସେଇ ଦିନ ମୁଁ ସ୍ଥିର କଲି ଯେ, ଏ ଦୁନିଆରୁ ଯୁଦ୍ଧ ଲୋପ କରିବାକୁ ହେବ ଓ ମୁଁ ସେଥିପାଇଁ କାମ କରିବି ।"

ଦକ୍ଷିଣ ଡାକୋଟା ତୃଣଭୂମିର ରାଜ୍ୟ । ଦିଗନ୍ତ ଯାଏ ଉଚ୍ଚାନିଚା ଲହଡ଼ି ଖେଳୁଥିବା ଘାସ ଜମି ବ୍ୟାପିରହିଛି । ଗଛ କୋଉଠି କେମିତି ଦୁଇଚାରିଟା । ଜନବସତି ପରସ୍ପରଠାରୁ ମାଇଲ ମାଇଲ ଦୂର । ଆମେ ଜମିର ସରହଦ ପାଖରେ । ମାର୍ଭିର ଘର ପ୍ରାୟ ତିନିପା ମାଇଲ୍ ଦୂରେ ଦିଶୁଛି । ମୁଣ୍ଡଉପରେ ଅସୀମ ଆକାଶ । ଏ ବିରାଟ ଶୂନ୍ୟତା ମଝିରେ ଆମେ ପଚାଶ ଲୋକ କେତେ କ୍ଷୁଦ୍ର, କେତେ ଅକିଂଚିତ୍କର ! ଆଉ ତେଣେ ଆମେରିକା ସରକାରର ଲକ୍ଷ କୋଟି ଡଲାର ବ୍ୟୟରେ ଗଢ଼ା ଯୁଦ୍ଧଯନ୍ତ୍ର । ପୃଥିବୀର ଅନ୍ୟସବୁ ସରକାରମାନଙ୍କର ବି । ଏଇ ପରିବେଶରେ ଛିଡ଼ା ହେଇ ଜଣେ ମଣିଷ କହୁଛି ଯେ, ପୃଥିବୀରୁ ଯୁଦ୍ଧ ଲୋପ କରିବ ! ଏହିପରି ଆତ୍ମପ୍ରତ୍ୟୟ ହିଁ ମଣିଷକୁ ଅସମ୍ଭବ ଦିଶୁଥିବା ବଡ଼ ବଡ଼ ଲକ୍ଷ୍ୟ ହାସଲ କରିବାର ଶକ୍ତି ଦିଏ । ମାର୍ଭିଙ୍କଠାରୁ ତାଙ୍କର ଅନେକ ଅନୁଭୂତି ଶୁଣିବାକୁ ମିଳିଲା । ସେ କହିଲେ ଯେ, ସେ ତାଙ୍କ ପିଲାମାନଙ୍କୁ ଅହିଂସା ବାଟରେ ଚାଲିବା ପାଇଁ ପ୍ରେରଣା ଦେଇଛନ୍ତି । ଅର୍ଥାତ୍ ସେମାନେ ମାରପିଟ୍‌ରେ ଲିପ୍ତ ହେବେ ନାହିଁ । ବିଶ୍ୱଶାନ୍ତିରେ ଆସ୍ଥାବାନ ହେବେ । ଇତ୍ୟାଦି । ପ୍ରଥମ ପ୍ରଥମ ସାଇପଡ଼ିଶାର ଲୋକେ ସେମାନଙ୍କୁ ଟାପରା କରୁଥିଲେ । ଏବେ ତିନି ଚାରି ବର୍ଷ ପରେ ଲୋକେ ସେମାନଙ୍କୁ ସମ୍ମାନ ଦୃଷ୍ଟିରେ ଦେଖୁଛନ୍ତି । ଏଇଟା ଗୋଟାଏ ବିଜୟ । ମୋର ପିଲାଦିନ କଥା ମନେପଡ଼ିଲା । ମତେ ସାଙ୍ଗ ପିଲାମାନେ 'ଗାନ୍ଧୀ' ବୋଲି ଡାକୁଥିଲେ । ସେଥିରେ ଚିଡ଼େଇବା ଭାବ ବି ଥିଲା । ମାତ୍ର ପରେ ତାହା ବଦଳି ଗଲା ।

ଏହାପରେ ମିଶିଗାନ୍, ଓହାଇଓ, ଓକ୍ଲାହୋମା, ଆଇଓଆ ଓ ପେନ୍‌ସିଲ୍‌ଭାନିଆ ରାଜ୍ୟମାନଙ୍କୁ ଯାଇ ବିଭିନ୍ନ ଅହିଂସାବାଦୀ ଗୋଷ୍ଠୀମାନଙ୍କ ସହିତ ମିଶିବାର ସୁଯୋଗ ମିଳିଲା । ଏଠାରେ ବିଭିନ୍ନ ଗୋଷ୍ଠୀଙ୍କ ପକ୍ଷରୁ କିପରି ଅବିରାମ ପରମାଣୁ ଅସ୍ତ୍ର ବିରୋଧୀ ଓ ଅନ୍ୟପ୍ରକାରର ସତ୍ୟାଗ୍ରହ ବିଭିନ୍ନ ସ୍ଥାନରେ ଚାଲିଛି ସେସବୁ ମଧ୍ୟ ଜାଣିବାକୁ ମିଳିଲା । ଏଠାରେ ଶାନ୍ତିବାଦୀ ବନ୍ଧୁମାନଙ୍କର ଆତ୍ମପ୍ରତ୍ୟୟ, ବିଶ୍ୱାତ୍ମବୋଧ ଓ ମାନବପ୍ରେମର ପରିଚୟ ପାଇ ମୁଗ୍ଧ ହେଲି ।

ଏହାପରେ ଆମର ଦ୍ୱିତୀୟ ଥର ଆମେରିକା ଗସ୍ତ ବେଳେ, ୧୯୮୭ ରେ, ଦ୍ୱିତୀୟ ଅହିଂସା ସମ୍ମିଳନୀ ସେଇ ଦକ୍ଷିଣ ଡାକୋଟାରେ ମାର୍ଭି କ୍ୟାମରରଙ୍କ ଜମି ଉପରେ ହେଇଥିଲା । ସେଥିରେ ବି ନାରାୟଣ ଓ ମୁଁ ଯୋଗ ଦେଇଥିଲୁ । ଏଥର ଅନେକ ପରିଚୟ ଓ ବନ୍ଧୁତାକୁ ଉଝାଳିବାର ସୁଯୋଗ ମିଳିଲା ଓ ନୂଆ ପରିଚିତ ଓ ବନ୍ଧୁତା ବି ହେଲା । ସାରା ଦେଶର ଅହିଂସାବାଦୀ ସଙ୍ଗଠନମାନଙ୍କୁ ଏକ ସୂତ୍ରରେ ବାନ୍ଧିବା ଦିଗରେ ଏ ସମ୍ମିଳନୀ ଆଉ ପାଦେ ଆଗେଇଲା ।

# ବିଧ୍ୱଂସକ ଖାଉଟି ସଭ୍ୟତା

ଯେକୌଣସି ସଂସ୍କୃତିର ଦୁଇଟା ମୁଣ୍ଡ ଥାଏ । ମଣିଷ ଭିତରେ ଅହରହ ସଂକୀର୍ଣ୍ଣତା ବିରୋଧରେ ବ୍ୟାପକତାର, ସଂକୀର୍ଣ୍ଣ ସ୍ୱାର୍ଥ ସହିତ ତ୍ୟାଗର,ରକ୍ଷଣଶୀଳତା ସହିତ ନବସର୍ଜନାର ପ୍ରେରଣାର, ଆତ୍ମସଙ୍କୋଚ ସହିତ ବିଶ୍ୱାତ୍ମବୋଧର, ସତ୍ୟ ସହିତ ମିଥ୍ୟାର, ପ୍ରେମ ସହିତ ଦ୍ୱେଷର, ଭୟ ସହିତ ଅଭୟର ସଂଘର୍ଷ ଚାଲିଛି । ପ୍ରତ୍ୟେକ ସଭ୍ୟତା ଓ ସଂସ୍କୃତିକୁ ଏହି ସଂଘର୍ଷ ରୂପ ଦେଇଛି ଓ ଅବିରାମ ଦେଉଛି । ତେଣୁ ପ୍ରତ୍ୟେକ ସଭ୍ୟତାର ଗୋଟିଏ ମୁଣ୍ଡରେ ତା'ର ଉଦାରଭାବ, ତାର ସତ୍ୟାନୁସନ୍ଧିତ୍ସା, କଳାସୃଷ୍ଟି, ବଡ଼ବଡ଼ ମାନବ ସମୂହକୁ ଏକତ୍ର ଓ ଏକାତ୍ମ କରିବାରେ ସଫଳତା ସାଙ୍ଗକୁ ଅନ୍ୟ ମୁଣ୍ଡରେ ତା'ର ଅହମିକା, ସଂକୀର୍ଣ୍ଣତା, ବର୍ଣ୍ଣବିଦ୍ୱେଷ, ଶୋଷଣ ପ୍ରବୃତ୍ତି ଆଦି ରହିଥାଏ । ଆମ ହିନ୍ଦୁ ସଂସ୍କୃତିରେ ବି ଅସ୍ପୃଶ୍ୟତା, ଜାତିଭେଦ, ନାରୀଜାତି ପ୍ରତି ଅବମାନନା ଆଦି ରୂପରେ ଏ ଅନ୍ଧାର ପାଖଟା ରହିଛି ।

ପ୍ରତ୍ୟେକ ସଂସ୍କୃତିର ଉଦାର ଦିଗର ପ୍ରତିନିଧିତ୍ୱ କରୁଥିବା ଦାର୍ଶନିକ, ବୈଜ୍ଞାନିକ, ଚିନ୍ତକ, ମାନବସେବୀ ଆଦି ଥାଇ ସଂସ୍କୃତିକୁ ଆଗେଇ ନେବାକୁ ଚେଷ୍ଟା କରୁଥିବାବେଳକୁ ଅନ୍ୟ ପକ୍ଷରେ ବିପରୀତ ପ୍ରକାରର ଲୋକ ଥା'ନ୍ତି । ଆମେରିକୀୟ ସଭ୍ୟତା ଓ ସଂସ୍କୃତିର ଅନ୍ଧାର ଦିଗରେ ମାଡ଼ ସାରା ପୃଥିବୀ ଭୋଗ କରୁଛି । ଆମେରିକୀୟ ସାମ୍ରାଜ୍ୟବାଦ ଆଜି ଦୁନିଆର ଦରିଦ୍ର ଦେଶମାନଙ୍କ ପ୍ରତି ସବୁଠାରୁ ବଡ଼ ଅଭିଶାପ ହେଇଛି । ଏହାର ଦାମ୍ଭିକତାର ପ୍ରତିନିଧି ପରମାଣୁ ବୋମା ଧରି ବସି ବିଶ୍ୱକୁ ଆତଙ୍କିତ କରୁଛନ୍ତି । ମାତ୍ର ଏହାର ସୌମ୍ୟ ଦିଗଟା, ଦକ୍ଷିଣ ମୁଖ, କମ୍ ପ୍ରକଟ । ଅଥଚ ଏହି ଉଦାର ଦିଗଟାରେ ହିଁ ଯେ କୌଣସି ସଭ୍ୟତା ବା ସଂସ୍କୃତିର ପ୍ରାଣଶକ୍ତି ଥାଏ । ଏହି ଉଦାର ଦିଗରେ ପ୍ରତିନିଧିତ୍ୱ କରୁଥିବା ଗୋଷ୍ଠୀମାନେ ହିଁ ଆପଣା ସଂସ୍କୃତିକୁ ନବ କଳେବର ଦେବାପାଇଁ ଅବିରତ ପ୍ରାଣପାତ ଉଦ୍ୟମ କରୁଥା'ନ୍ତି । ଏହିମାନଙ୍କ ଉଦ୍ୟମରେ ହିଁ ପ୍ରତ୍ୟେକ ସଂସ୍କୃତିର ଅନ୍ଧାର ଦିଗଟା ଆଲୋକିତ ହୁଏ । ସଂସ୍କୃତି ଆପଣା କଳୁଷରୁ ମୁକ୍ତ ହୁଏ ଓ ଏକ ବିଶ୍ୱ ସଂସ୍କୃତିର ଅଭ୍ୟୁଦୟରେ ଆପଣାର ଅଞ୍ଜଳି ଅର୍ପଣ କରେ । ଆମେରିକାର ଶାନ୍ତିବାଦୀମାନେ ତା'ର ଏହି ଉଦାର ବିଭାବର ଏକ ଅଂଶ । ଆମେରିକାକୁ ଯାଇ ଏମାନଙ୍କ ସହିତ ପରିଚିତ ହେବାଦ୍ୱାରା ମୁଁ ଜାଣି ଆମେରିକାର ଜାଗ୍ରତ ଆତ୍ମାର ପରିଚିତ ପାଇ ଧନ୍ୟ ହେଲି ।

ପାଶ୍ଚାତ୍ୟ ସଭ୍ୟତାକୁ ଭୋଗବାଦୀ ବୋଲି କୁହାଯାଏ ଓ ଭୋଗବାଦକୁ ନିନ୍ଦନୀୟ ମନେକରାଯାଏ । ମାତ୍ର ଏ ଭୋଗବାଦ ଶବ୍ଦଟା ଗୋଳମାଳିଆ ବୋଲି ମୋର ଧାରଣା । ଜୀବନକୁ ଉପଭୋଗ କରିବାଟାକୁ ମୁଁ ମନ୍ଦ ବୋଲି ଭାବେ ନାହିଁ । ବାବାଜିଆ ତ୍ୟାଗରେ ମୋର ଆସ୍ଥା ନାହିଁ । ରବୀନ୍ଦ୍ରନାଥଙ୍କ ଭାଷାରେ ବି "ଏଇ ବସୁଧାର, ମୃତ୍ତିକାର ପାତ୍ର ଖାନି ଭରି ବାରମ୍ବାର, ତୋମାର ଅମୃତ ଢାଲିଦିବେ ଅବିରତ, ନାନା ବର୍ଣ୍ଣଗନ୍ଧମୟ ।" ପ୍ରକୃତରେ ଏଇ ନାନା ବର୍ଣ୍ଣ ଗନ୍ଧମୟ ଦାନକୁ ଆସ୍ୱାଦନ କରିବା ମଣିଷ ଜନ୍ମର ଅନ୍ୟତମ ସାର୍ଥକତା ବୋଲି ମୁଁ ଭାବେ । ମାତ୍ର ଆଧୁନିକ ପୁଞ୍ଜିବାଦୀ ଯାନ୍ତ୍ରିକ ସଭ୍ୟତାରେ ଯାହା ଘଟୁଛି ସେଥିରେ ପ୍ରକୃତିର ଦାନର ଆସ୍ୱାଦନ

ଯେତେ ନାହିଁ, ତାହାଠାରୁ ଭୋଗ୍ୟ ବସ୍ତୁର ପ୍ରାଚୁର୍ଯ୍ୟ ଆବଶ୍ୟକତାଠାରୁ ବହୁଗୁଣରେ ଅଧିକ ରହିଛି । ବୃହତ୍ ଯନ୍ତ୍ରଶିଳ୍ପ ଓ ଆକାଶଚୁମ୍ବୀ ଧନସଂଗ୍ରହର ଆକାଂକ୍ଷା ଉପରେ ପ୍ରତିଷ୍ଠିତ ଅର୍ଥନୀତିର ପରିଣାମ ହେଉଛି ଯେ ଭୋଗ୍ୟବସ୍ତୁର ଉତ୍ପାଦନ ଓ କାଟତି ବା ରାବର ବଢ଼ି ନ ଚାଲିଲେ ସାରା ବ୍ୟବସ୍ଥାଟା ଫେଲ ମାରିଯିବ । ଏବେ ଭୋଗ୍ୟବସ୍ତୁର ଉତ୍ପାଦନ ପୋଷଉ ନାହିଁ । ସେଥିପାଇଁ ମାରଣାସ୍ତ୍ରର ଉତ୍ପାଦନ ଓ ବିକ୍ରି ଆମେରିକା ଓ ଅନେକ ୟୁରୋପୀୟ ଦେଶମାନଙ୍କର ଅର୍ଥନୀତିର ମେରୁଦଣ୍ଡ ହେଇଛି ।

ଏହାର ଆରପଟଟା ହେଲା ଜିନିଷ ଫିଙ୍ଗିଦେବା । ଏଠି କୌଣସି ଜିନିଷ ଟିକିଏ ବିଗିଡ଼ିଗଲେ ତାହା ଫିଙ୍ଗି ଦେବାହିଁ ରୀତି । ଯେତେ ଭଲ ଭଲ ଆସବାବ ଓ ଅନ୍ୟ ଉପକରଣ ଅଳିଆ ଡବାରେ ଫିଙ୍ଗି ଦିଆଯାଇ ଥିବାର ଆମେ ଦେଖିଲୁ ତାହା ଦେଖି ଆମର ଦେହ ସହିଲା ନାହିଁ । ଏହାଛଡ଼ା ଯେତେ କାଗଜ ଡବା, ଆଲୁମିନିୟମ୍ ପତର, କାଚ ବୋତଲ, ପ୍ଲାଷ୍ଟିକ୍ ଡବା ଆଦି ପ୍ରତିଦିନ ଫିଙ୍ଗା ହେଉଛି ତାହା ନେଇ କୋଉଠି ପୋତିବେ ବୋଲି କେତେଙ୍କ ଜନବହୁଳ ରାଜ୍ୟରେ ଭାବେଣି ପଡ଼ିଲାଣି । ଏହାଛଡ଼ା ଏହାଦ୍ୱାରା ପ୍ରାକୃତିକ ସମ୍ପଦର ଯେ ବିରାଟ ଅପଚୟ ହେଉଛି ତାହା ବି ଅତି ସାଂଘାତିକ ।

ଏସବୁ ଅତି ପ୍ରାଚୁର୍ଯ୍ୟର ସଂସ୍କୃତିକୁ ଉପଭୋକ୍ତାବାଦ–କନ୍‌ଜ୍ୟୁମେରିଜିମ୍ କୁହାଯାଉଛି । ତାହା ଭୋଗବାଦ ଅପେକ୍ଷା ଅଧିକ ଉପଯୁକ୍ତ ସଂଜ୍ଞା । ସୁଖର ଓ ଆଶାର କଥା ଯେ, ଏ ଅପଚୟ ବିଷୟରେ ସଚେତନତା ଏବେ ସୃଷ୍ଟି ହେଇଛି ଓ ଏହାର ପ୍ରତିକାର ପାଇଁ କିଛି କିଛି ଉଦ୍ୟମ ଆରମ୍ଭ ହେଇଛି ।

ଏ ଉପଭୋକ୍ତାବାଦରେ ପ୍ରକୃତ ଉପଭୋଗ ପ୍ରକୃତରେ ବେଶି ନାହିଁ । କୌଣସି ବିଷୟକୁ ଗଭୀରଭାବରେ ଆସ୍ୱାଦନ କରିବାର ବୃତ୍ତି କମ୍ ହେଇଯାଉଛି ବୋଲି ମନେ ହୁଏ । ଟିଭି କ୍ରମାଗତ ଚାଲିଥିବ ଓ ସଙ୍ଗୀତ କାନରେ ବାଜୁଥିବ । ମାତ୍ର ଏକାଗ୍ର ହେଇ ସେ ସଙ୍ଗୀତ ଉପଭୋଗ କରିବାର ବୃତ୍ତି କମ୍ । ଘର ଭିତରେ ସଜେଇବା ପାଇଁ ବିଶେଷ ବ୍ୟକ୍ତି ଓ କମ୍ପାନୀ ଅଛନ୍ତି । କୌଣସି ନାମଜାଦା ଗୃହସଜ୍ଜା ଶିଳ୍ପୀଙ୍କ ଦ୍ୱାରା ଘର ସଜେଇବାରେ ଆପଣାର ଆଭିଜାତ୍ୟ ଓ ବୈଭବର ହିଁ ସ୍ଥୂଳ ବିଜ୍ଞାପନ ଥାଏ । ମାତ୍ର ରୁଚିବୋଧର ଉତ୍କର୍ଷ ଥାଏ ବୋଲି କହିହେବ ନାହିଁ । ଆଗେ ମୋଟର ଗାଡ଼ି ଦୁଇ ତିନିବର୍ଷ ଚଢ଼ି ଫିଙ୍ଗି ଦେବାର ରୀତି ଥିଲା । ଏବେ ଦାମ୍ ଚଢ଼ିଯିବାରୁ ପୁରୁଣା ଗାଡ଼ି ବିକ୍ରି ହେବାର ଦେଖାଯାଉଛି ।

ମାତ୍ର ଏହାର ଅନ୍ଧାର ପାଖଟା ଭାରତରୁ ଆସିଥିବା ଲୋକଙ୍କ ଆଖିରେ କମ୍ ପଡ଼େ ବୋଲି ମନେ ହେଲା । ସେମାନେ ଉପରର ଚାକଚକ୍ୟରେ ମୋହିତ ହେଇଯାନ୍ତି । ଏଠି ଦାରିଦ୍ର୍ୟ ଊଣା ନାହିଁ । ୨୦–୨୫ ଲକ୍ଷ ଲୋକଙ୍କର ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ । ସେମାନେ ରାସ୍ତାରେ ରହନ୍ତି । ଶୀତଦିନେ ବଡ଼ ବଡ଼ କୋଠାର ଗରମ ଚେମଣୀ ପାଖରେ ଗୁଞ୍ଜି ହେଇ ଶୀତ ନିବାରଣର ଚେଷ୍ଟା କରନ୍ତି । କେଉଁଠି କେଉଁଠି ନଗରପାଳିକା ସେମାନଙ୍କୁ ଶୀତଦିନେ ଶସ୍ତା ହୋଟେଲରେ ରଖିବା ବ୍ୟବସ୍ଥା କରେ । ଗୀର୍ଜାମାନଙ୍କରେ ବି କେତେକଙ୍କୁ ଆଶ୍ରୟ

ମିଳେ । ଏହାର ଚାରି ପାଞ୍ଚ ଗୁଣ ଲୋକ ପେଟପୁରା ଖାଇବାକୁ ପାନ୍ତି ନାହିଁ । ବିଶେଷକରି ଶୀତଦିନେ ଦାତବ୍ୟ ସଂସ୍ଥା ଓ ଧର୍ମାନୁଷ୍ଠାନମାନେ ଅନ୍ନଛତ୍ର ଖୋଲି ଖାଇବାକୁ ଦିଅନ୍ତି । ତେବେ ଆମେରିକାର ବୈଭବର ସର୍ବାଧିକ ଶିକାର ଦକ୍ଷିଣ ଓ ମଧ୍ୟ ଆମେରିକାରେ । ସେଇଠି ଆମେରିକାର ପୁଞ୍ଜିବାଦର ଶୋଷଣର ଶିକାର ହୋଇଥିବା ଲୋକେ ଅନାହାରରେ ବି ମରନ୍ତି ।

ତେବେ ମତେ ଦେଖି ଭଲ ଲାଗିଲା ଯେ, ଏଠା ଲୋକଙ୍କର ପ୍ରକୃତିକୁ ଉପଭୋଗ କରିବାର ବୃତ୍ତି ଉପଭୋକ୍ତାବାଦର ତାଡ଼ନାରେ ଜଣା ହେଉଥିଲେ ବି ଅଛି । ଲୋକେ ବଣ, ଜଙ୍ଗଲ, ମରୁଭୂମିରେ ଯାଇ ବୁଲିବାକୁ, ସେସବୁ ଜାଗାରେ ତମ୍ବୁ ପକେଇ ଛୁଟି କଟାଇବାକୁ ଭଲପାନ୍ତି । ନଦୀ ସମୁଦ୍ରରେ ଡଙ୍ଗା ବାହାନ୍ତି । ସମୁଦ୍ରରେ ବୁଡ଼ି ତା' ତଳେ ଥିବା ଜୀବଜନ୍ତୁ, ଉଦ୍‌ଭିଦର ସମାରୋହ ଉପଭୋଗ କରନ୍ତି । ମଜା ପାଇବାପାଇଁ ଉଡ଼ାଜାହାଜରୁ ଆକାଶ ଛତା ଧରି ଡିଆଁନ୍ତି । କାନ୍ଥ ଭଳିଆ ଛିଡ଼ା ପାହାଡ଼ କାନ୍ଥରେ ଚଢ଼ିବାର ପରାକ୍ରମ ଦେଖାନ୍ତି । ଗୋଡ଼ରେ ସ୍କୀ ବାନ୍ଧି ଉଚ୍ଚ ପାହାଡ଼ ଉପରୁ ଷାଠିଏ ସତୁରୀ ମାଇଲ ବେଗରେ ତଳକୁ ଖସନ୍ତି । ଏସବୁଥିରେ ବିପଦର ଆଶଙ୍କା ଥାଏ । ପ୍ରତିବର୍ଷ ଏଭଳି ଖେଳରେ କିଛି କିଛି ପ୍ରାଣ ହରାନ୍ତି ମଧ୍ୟ । ତେବେ ବିପଦର ଆସ୍ୱାଦ ବି ଜୀବନକୁ ଗଭୀର ଭାବରେ ଉପଭୋଗ କରିବାର ଏକ ଉପାଦାନ । ଏମାନେ ଆମଭଳି ଜୀବନକୁ ସାଗୁପତ୍ରରେ ବାନ୍ଧି ଚଳନ୍ତି ନାହିଁ । ଏହି ପ୍ରାଣପ୍ରାଚୁର୍ଯ୍ୟ ଓ ନିର୍ଭୟତା ମଧ୍ୟ ଏମାନଙ୍କର ଏକ ମସ୍ତବଡ଼ ସମ୍ପଦ । ଏହାରି ପ୍ରେରଣାରେ କେତେ ଯୁବକ ଯୁବତୀ ଯାଇ ଗରିଲା, ସଂପାଙ୍କି, ମାରଣା ତିମି ପ୍ରଭୃତି ହିଂସ୍ର ବୋଲାଉଥିବା ପ୍ରାଣୀମାନଙ୍କ ମେଳରେ ନିର୍ଭୟରେ ରହି ସେମାନଙ୍କର ଜୀବନ ଅଧ୍ୟୟନ କରିଛନ୍ତି ।

ସେଠି ସାନ ପିଲାଙ୍କୁ ଚୋରି କରି ନେବା ଘଟଣା ବର୍ଷକୁ ପାଞ୍ଚ ସାତ ହଜାର ଘଟେ । ଏହାନେଇ ଆମେ ଥିବାବେଳେ ଖୁବ୍ ଚହଳ ପଡ଼ିଥିଲା । କାଗଜମାନଙ୍କରେ ଖୁବ୍ ଲେଖାଲେଖି ହେଉଥିଲା । ସାନପିଲା ଅଚିହ୍ନା ଲୋକ ସାଙ୍ଗରେ ଯିବେ ନାହିଁ । ଅଚିହ୍ନା ଲୋକ ଯାଚିଲେ ଖାଦ୍ୟ ନେବେନାହିଁ । ଏହିପରି ସବୁ ସାବଧାନ ରହିବାକୁ ପିଲାଙ୍କୁ ଶିଖାଇବା କଥା ଉଠିଲା । ଆମ ଦେଶ ହେଲେ ତ କାମଟା ଖୁବ୍ ସହଜ ହେଇଥା'ନ୍ତା । "ଇଲୋ ରାସ୍ତାକୁ ଯିବୁ ନାହିଁଟି । ବାୟା ଅଛି ଧରିନେବ ।" ମାତ୍ର ଏଠି ଏହାର ଚିକିନିଖି ଆଲୋଚନା ଚାଲିଲା ଯେ, ପିଲାଙ୍କୁ କିପରି ଡରୁଆ ନ କରି ସାବଧାନୀ କରିବାକୁ ହେବ । ବାପା, ମା, ପିଲାଙ୍କୁ ଏକଥା କହିବାବେଳେ ନିଜେ କିପରି କୌଣସି ଆତଙ୍କ ବା ଭୟର ଭାବ ନ ଦେଖେଇବେ ଇତ୍ୟାଦି ।

ଆମେ ଥିବାବେଳେ ସେଠି ରାଷ୍ଟ୍ରପତି ନିର୍ବାଚନ ହେଲା । ରୋନାଲ୍ଡ୍ ରେଗାନ୍ ଦ୍ୱିତୀୟ ଥର ନିର୍ବାଚିତ ହେଲେ । ଏ ନିର୍ବାଚନରେ ସେଠାର ଗଣତନ୍ତ୍ରର ବଳିଷ୍ଠତା ଓ ଦୁର୍ବଳତା ଉଭୟର ଦର୍ଶନ ମିଳିଲା । କେଉଁ ଦଳରୁ କିଏ ପ୍ରାର୍ଥୀ ହେବ ତାହା ନେଇ ଆଗେ ସାରା ଦେଶରେ ପ୍ରଚାର ଓ ଆଲୋଚନା ଚାଲିଲା । କେଉଁ ଦଳର କିଏ ନେତା ତାହା ଆମ ଦେଶପରି ପୂର୍ବରୁ ନିଶ୍ଚିତ ନୁହେଁ । ଉଭୟ ଦଳ ପକ୍ଷରୁ ଏକପ୍ରକାର ଗଣଭୋଟ ହେଇ ସେ ଦଳର ପ୍ରାର୍ଥୀ ବଛା ହୁଅନ୍ତି । ରିପବ୍ଲିକାନ୍ ଦଳରୁ ରେଗାନ୍ ଦ୍ୱିତୀୟଥର ଛିଡ଼ା ହେବା ସ୍ଥିର ହେବାରୁ ଏଭଳି ଭୋଟ ହେଲା ନାହିଁ । ମାତ୍ର ଡେମୋକ୍ରାଟିକ୍ ଦଳର ହେଲା ।

ପ୍ରାର୍ଥୀମାନେ ଦଳ ଭିତରେ ବଛାବଛି ବେଳେ, ରାଷ୍ଟ୍ରପତି ନିର୍ବାଚନ ବେଳେ ମଧ୍ୟ, ଏକାଠି ଦୂରଦର୍ଶନରେ ଏକା ମଞ୍ଚରେ ଉପସ୍ଥିତ ହୋଇ ନିଜ କଥା କହିଲେ ଓ ଏକ ପ୍ରଶ୍ନକର୍ତ୍ତା ମଣ୍ଡଳୀର ନାନା ପ୍ରକାରର ଅଡୁଆ ମଡୁଆ ପ୍ରଶ୍ନର ଜବାବ ଦେବାକୁ ବାଧ୍ୟ ହେଲେ । ପ୍ରାର୍ଥୀଙ୍କର ବ୍ୟକ୍ତିଗତ ଓ ସାଧାରଣ ଜୀବନର ସର୍ବସାଧାରଣରେ ଏପରି ଖୋଳତାଡ଼ ଆମ ଦେଶରେ ନାହିଁ । ଏଠା ସରକାରୀ ତଥ୍ୟ ଜାଣିବାର ସର୍ବସାଧାରଣଙ୍କର ଅଧିକାର ଏକ ମହତ୍ତ୍ୱପୂର୍ଣ୍ଣ ଅଧିକାର । ଏଠା ସରକାର ଅନେକ କଥା ଲୁଚେଇବା ଚେଷ୍ଟା କରନ୍ତି । ମିଛ କଥା ଯଥେଷ୍ଟ କହନ୍ତି, ମାତ୍ର ଧରାପଡ଼ିଯିବାର ଅଶଙ୍କା ଆମ ଦେଶଠାରୁ ଅନେକ ଗୁଣ ବେଶି । ସେଥିପାଇଁ କିଛିଟା ଶଙ୍କିକରି ଚଳିବାକୁ ହୁଏ ।

ସେ ଦେଶର ଲୋକଙ୍କର ସରକାର ସହିତ ସମ୍ବନ୍ଧ ବିଷୟରେ ଏକ ବିଚିତ୍ର ତଥ୍ୟ ଜାଣିବାକୁ ମିଳିଲା । ଥରେ ନୋଟରଡାମ୍ ବିଶ୍ୱବିଦ୍ୟାଳୟର ତିନିଜଣ ଅଧ୍ୟାପକଙ୍କ ସାଙ୍ଗରେ ସେ ଦେଶରେ ହିଂସା ଓ ନରହତ୍ୟାର ପ୍ରାଦୁର୍ଭାବ ନେଇ ଆଲୋଚନା ହେଉଥିଲା । ଏହି ସମସ୍ୟା ଏତେ ଦୂର ଉତ୍କଟ ହେଉଛି ଯେ, ସଭ୍ୟ ସୁସଂସ୍କୃତ ନ୍ୟୁୟର୍କର ବର୍ଷକୁ ନରହତ୍ୟା ହାର ଅଶାନ୍ତ ଓ ଉପଦ୍ରୁତ ପଞ୍ଜାବ ବା କାଶ୍ମୀରଠାରୁ ବି ଅଧିକ । ଏହାର ଏକ ପ୍ରଧାନ କାରଣ ସେ ଦେଶରେ ବନ୍ଧୁକ ଅତି ସହଜରେ ମିଳିପାରିବାଟା ବୋଲି ଅଧ୍ୟାପକମାନେ କହିଲେ । ପାଞ୍ଚ ଡବା ସିଗ୍ରେଟ କିଣିବା ପରି କେହି ସେଠି ପାଞ୍ଚଟା ବନ୍ଧୁକ କିଣିବାକୁ ଚାହିଁଲେ କେହି ପଚାରିବାକୁ ନାହିଁ ଯେ କାହିଁକି କିଣୁଛ ବୋଲି ।

ଏହାର କାରଣ ଅଧ୍ୟାପକମାନେ କହିଲେ ଯେ, ଆମେରିକା ବ୍ରିଟିଶ କବଳରୁ ସ୍ୱାଧୀନ ହେବା ପରେ ନୂଆ ସ୍ୱାଧୀନ ସରକାର ଗଢ଼ା ହେବାବେଳେ ବିଚାର ପଡ଼ିଲା ଯେ, ଗୋଟାଏ ଅତ୍ୟାଚାରୀ ସରକାର କବଳରୁ ତ ମୁକ୍ତ ହେଲୁ । ଏବେ ଯେଉଁ ସରକାର ଗଢୁଛୁ ସେ ବି ମନମୁଖୀ ହେଇଯିବ ତ କ'ଣ କରାଯିବ ? ବିଚାର କରି ସ୍ଥିର ହେଲା ଯେ, ସରକାର ଅତ୍ୟାଚାରୀ ହେଲେ ତାକୁ ଜବତ କରିବା ପାଇଁ ଲୋକଙ୍କ ହାତରେ ଅସ୍ତ୍ର ରହିବ ଓ ତେଣୁ ଅସ୍ତ୍ର ଅବାଧରେ ସମସ୍ତଙ୍କୁ ମିଳିପାରିବା ବ୍ୟବସ୍ଥା ହେଲା ।

ଏକଥା ଶୁଣି ମୋର ବିସ୍ମୟର ସୀମା ରହିଲା ନାହିଁ । ଆମ ଦେଶରେ ଆମେ ସରକାରକୁ ମା' ବାପ ବୋଲି ମଣିବାକୁ ଅଭ୍ୟସ୍ତ, ଯଦିଓ ସ୍ୱାଧୀନ ଭାରତର ସମ୍ବିଧାନରେ ଦେଶର ଜନସାଧାରଣ ସବୁ କ୍ଷମତାର ଉତ୍ସ ଓ ସରକାରର ଉପରେ,ମାତ୍ର ଆମେରିକାରେ ଜନସାଧାରଣଙ୍କର ସାର୍ବଭୌମତାରେ ବିଶ୍ୱାସ ଦେଶର ଶିରାପ୍ରଶିରାରେ ଭେଦି ଯାଇଛି ଓ ସେଥିପାଇଁ ଲୋକେ ସରକାରକୁ ମା' ବାପ ବୋଲି ଭାବନ୍ତି ନାହିଁ । ଏଇଟା ଏଠା ଗଣତନ୍ତ୍ରର ଏକ ମସ୍ତବଡ଼ ଶକ୍ତିର ଉତ୍ସ ।

ସେଠାର ଦୁର୍ବଳତା ହେଲା ଯେ ବିଭିନ୍ନ ରାଜନୀତିକ ଓ ଆର୍ଥିକ ସମସ୍ୟା ବିଷୟରେ ସାଧାରଣ ଲୋକଙ୍କର ସ୍ପୃହା ଓ ସଚେତନତା ବେଶି ନୁହେଁ । ଆମ ଦେଶର ଲୋକଙ୍କ ଜଡତାର ସମାଲୋଚନା ଓ ବିଲାତ ଆମେରିକାର ପ୍ରଶଂସା ଶୁଣି ଶୁଣି ଧାରଣା ହେଉଥିଲା ଯେ, ସେଠିକା ଲୋକ ଆମଠାରୁ କାହିଁରେ କ'ଣ ଆଗୁଆ ହେଇଥିବେ । ମାତ୍ର ତାହା ନ ହେଇଥିବାର ଦେଖି

କେତେଟା ଆଶ୍ୱସ୍ତ ହେଲି । ଏ ବାବଦରେ ଆମ ଦେଶ ଓ ସେ ଦେଶର ସାଧାରଣ ଲୋକଙ୍କ ଭିତରେ ଫରକ ଉଣେଇଶ ବିଶ୍ । ଶସ୍ତା ଦୁଆର ପ୍ରଭାବ ଆମ ଦେଶପରି ସେଠି ଜୋରଦାର୍ । ଖଜଣା ଟିକସ ବଢ଼ାଇବେ ନାହିଁ ବୋଲି ଏକ ଅବାସ୍ତବ ଦୁଆ ଦେଇ ରେଗାନ୍ ସାହେବ ପ୍ରବଳ ସମର୍ଥନ ପାଇ ଜିତିଗଲେ ।

ଏହାଛଡ଼ା କୁସଂସ୍କାର ଓ ଅନ୍ଧବିଶ୍ୱାସର ପ୍ରଭାବ ଜଣା ନୁହେଁ । ଉଦାହରଣ ସ୍ୱରୂପ ଦୁଇଟା ରାଜ୍ୟରେ ବିଦ୍ୟାଳୟମାନଙ୍କରେ ଡାରଉ୍ଇନଙ୍କ ବିବର୍ତ୍ତନବାଦ ପଢ଼ାଇବା ମନା ହେଉଥିଲା, କାରଣ ତାହା ବାଇବେଲ୍‌ର ସୃଷ୍ଟିତତ୍ତ୍ୱ ସହିତ ଖାପଖାଏ ନାହିଁ । ଚନ୍ଦ୍ରରେ ମଣିଷ ପହଞ୍ଚିବା କଥା ମିଥ୍ୟା ପ୍ରଚାର, ଏକଥା ବିଶ୍ୱାସ କରିବା ଲୋକ ବି ପ୍ରଚୁର ଅଛନ୍ତି । ପୃଥିବୀଟା ପେଣ୍ଡୁଭଳି ଗୋଲ ନୁହେଁ, ଥାଳି ଭଳି ଚଟକା, ଏହା ବିଶ୍ୱାସ କରୁଥିବା ଲୋକଙ୍କର ଏକ ସଂଘ ଅଛି ଓ କୋଟି କୋଟି ଟଙ୍କାର ପାଣ୍ଠି ବି, ଏକଥା ପ୍ରଚାର ପାଇଁ ।

ଆମେରିକା ବିଷୟରେ ଆହୁରି ଅନେକ କିଛି ଲେଖାଯାଇପାରେ । ପ୍ରଥମ ଥର ସେଠାରେ ଥିବାବେଳେ ଭିଜିଲ ପତ୍ରିକାରେ କେତେଗୁଡ଼ିଏ ପ୍ରବନ୍ଧ ଚିଠି ଆକାରରେ ଲେଖିଥିଲି । ବାଲୁତ ସଂଘର ପିଲାମାନଙ୍କୁ ମଧ୍ୟ ମାସିକିଆ ଚିଠି ଲେଖିଥିଲି । ଏ ଓଡ଼ିଆ ଚିଠି ଗୁଡ଼ିକ ଆମେରିକାର କଥା ନାଁରେ ପ୍ରକାଶିତ ହୋଇଛି । ବର୍ଷେ ଦେଢ଼ ବର୍ଷରେ ଗୋଟାଏ ଦେଶକୁ ଜାଣିବା ଅସମ୍ଭବ କଥା । ଭାରତରେ ପଚସ୍ତରୀ ବର୍ଷ ରହି ମଧ୍ୟ ମୁଁ ମୋ ଦେଶକୁ କେତେ ଚିହ୍ନି ପାରିଛି ? ତେବେ ଜାଣିବାର ସର୍ବୋତ୍ତମ ବାଟ ସେ ଦେଶର ମଣିଷଙ୍କୁ ଜାଣିବା । ସେଠି ଥିବା ଭିତରେ ମୋର ପ୍ରାକୃତିକ, ଐତିହାସିକ ଆଦି ଦର୍ଶନୀୟ ସ୍ଥାନ ଦେଖିବାର ଆଗ୍ରହ ବିଶେଷ ନ ଥିଲା । ଲୋକଙ୍କ ସହିତ ମିଶିବାର ଓ ଲୋକଙ୍କୁ ଜାଣିବାର ଆକାଂକ୍ଷା ବେଶି ଥିଲା । ଆମେରିକାରେ ଥିବାବେଳେ ଯେ ଅନେକ ନୂଆ ଲୋକଙ୍କ ସହିତ ପରିଚୟ ଓ ବନ୍ଧୁତା ହେଲା ଏଇଟା ହିଁ ଦୁଃଖ ଭିତରୁ ଉପୁଜିଥିବା ଏ ଯାତ୍ରାର ସବୁଠାରୁ ବଡ଼ ଲାଭ ।

ୟୁରୋପ ଓ ଆମେରିକା ବୁଲିବା ପରେ ମୋର ଦୃଢ଼ ଧାରଣା ହୋଇଛି ଯେ, ପୃଥିବୀର ସବୁ ମଣିଷ ସମାନ । ମୂଳତଃ ସମସ୍ତଙ୍କ ଭିତରେ ଭଲପଣିଆ ଅଛି । ସମସ୍ତେ ଅନ୍ୟ ମଣିଷକୁ ସଦ୍‌ଭାବର ଦୃଷ୍ଟିରେ ଦେଖନ୍ତି । ସମସ୍ତଙ୍କ ଭିତରେ ଦୋଷଦୁର୍ବଳତା ବି ପ୍ରାୟ ଏକା ପ୍ରକାରର । ତେବେ ଗୋଟାଏ ଗୋଟାଏ ସମାଜ ବ୍ୟବସ୍ଥା, ଅର୍ଥନୀତି, ଧର୍ମବିଶ୍ୱାସ ବା ରାଜନୀତିକ ଦର୍ଶନର ପାଲରେ ପଡ଼ି ମଣିଷମାନଙ୍କର ସାମୂହିକ ଆଚରଣରେ, ଅମୁକ ଦେଶ, ଅମୁକ ଧର୍ମ ବା ଅମୁକ ମତବାଦର ଲୋକ ହିସାବରେ, ପାର୍ଥକ୍ୟ ବଢ଼ିଯିବାର ଦେଖାଯାଏ । ଅବିଶ୍ୱାସ, ବିରୋଧ ଓ ସଂଘର୍ଷ ସେତେବେଳେ ଗୋଷ୍ଠୀ ଗୋଷ୍ଠୀ ଭିତରେ ସମ୍ପର୍କର ମୁଖ୍ୟ ଉପାଦାନ ହୋଇଯାଏ ।

ଆମେରିକାରେ ଥିବା ଭିତରେ ମୁଁ ଗାନ୍ଧୀଜୀଙ୍କ ଉପରେ ଏକ ବହି ଲେଖା ଆରମ୍ଭ କରି ଶେଷକଲି । ଏହାର ପ୍ରେରଣା ଦେଲେ ମୋର ପିଉସି ପୁଅ ଭାଇ ଡଃ ଜିତେନ୍ଦ୍ରନାଥ ମହାନ୍ତି । ସେତେବେଳେ ସେ ଓକ୍‌ଲାହୋମା ବିଶ୍ୱବିଦ୍ୟାଳୟରେ ଦର୍ଶନଶାସ୍ତ୍ରର ଅଧ୍ୟାପକ ଥିଲେ । ବୋଧହୁଏ ମୋର ମାନସିକ ଅବସ୍ଥା ଅନୁଧ୍ୟାନ କରି ମତେ ସେ କୌଣସି ଏକ କାମରେ ଲଗେଇ ମୋର

ମନକୁ ଅନ୍ୟ ଆଡ଼େ ନେବାକୁ ଚାହୁଁଥିଲେ । ସେଥିପାଇଁ ସେ ଗାନ୍ଧୀଜୀଙ୍କ ଉପରେ ଏକ ବହି ଲେଖାର ପ୍ରସ୍ତାବ ଦେଲେ । ମୁଁ ମାନିନେଲେ । ବିଷୟଟା ମୋର ମନ ଲାଖି ଥିଲା । ଏ ବିଷୟରେ ଅନେକ କଥା ପୂର୍ବରୁ ଚିନ୍ତା କରିଥିଲି । ଭାବିଥିଲି ଅଳ୍ପ ଦିନରେ ସାରିଦେବି । ମାତ୍ର ଆରମ୍ଭ କରି ଦେଖିଲି ଯେ, ବିଷୟଟା ପ୍ରତି ନ୍ୟାୟ କରିବାକୁ ହେଲେ ଆହୁରି ଅନେକ କିଛି ଜାଣିବାକୁ ଓ ବୁଝିବାକୁ ହେବ । ଭାଗ୍ୟକୁ ହାତ ପାହାନ୍ତାରେ ଥିଲା ନୋରଡାମ୍ ବିଶ୍ୱବିଦ୍ୟାଳୟର ବିଶାଳ ପୁସ୍ତକାଗାର - ୧୫ ଲକ୍ଷ ବହି । ୧୫ ମହଲା କୋଠା । ସେଥିରେ ଅବାଧ ପ୍ରବେଶ ଅଧିକାର । ଇଂରେଜୀରେ ଗାନ୍ଧୀଜୀଙ୍କର ସମଗ୍ର ଗ୍ରନ୍ଥାବଳୀ ଓ ତାଙ୍କ ବିଷୟରେ ଅନ୍ୟାନ୍ୟ ବହି ଅନେକ ସେଠି ଥିଲା । ତା'ଛଡ଼ା ଆନ୍ତଃପୁସ୍ତକାଗାର ବହି ଉଧାର ବ୍ୟବସ୍ଥାର ଅନୁସାରେ ସେଠି ନଥିବା ବହି ଅନ୍ୟ ପୁସ୍ତକାଗାରରୁ ମଗେଇ ହେଉଥିଲା । ଏସବୁ ସୁବିଧା ଯୋଗୁଁ ବହି ଲେଖା ସହଜ ହେଲା । ତଥାପି ମତେ ଦିନକୁ ଛଅ ସାତ ଘଣ୍ଟା କରି ବର୍ଷେ ଖଣ୍ଡେ ପରିଶ୍ରମ କରିବାକୁ ପଡ଼ିଥିଲା । ବହିର ନାଁ ଦେଲି 'ଏକ୍ସପ୍ଲୋରିଂ ଗାନ୍ଧୀ' ବା 'ଗାନ୍ଧୀ ଅନୁସନ୍ଧାନ' । ଗାନ୍ଧୀଜୀଙ୍କ ବିଷୟରେ ଜାଣିବା ପାଇଁ ଚେଷ୍ଟାକରି ମୁଁ କେତେଦୂର ପହଞ୍ଚି ପାରିଛି ତାରି ବିବରଣୀ ଜାଣି ଏ ବହିରେ ଅଛି । ଏ ବହିଖଣ୍ଡ ପରେ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ ଛାପିଛନ୍ତି ।

ଦାଦାର ମୃତ୍ୟୁ ସମାଚାର ସେଇଠି ମିଳିଲା । ସେ ଏତେ ଦୂର ଅସୁସ୍ଥ ଥିଲା ବୋଲି ଆମେ ଜାଣି ନ ଥିଲୁ । କେହି ବି ଭାବି ନ ଥିଲେ । ଧାଇଁ ଯିବାପାଇଁ ମନ ଡାକିଲେ ମଧ୍ୟ ତାହା ବ୍ୟାବହାରିକ ନ ଥିଲା । ଛଟପଟ ହେଇ ରହିଲୁ । ଦାଦାର ସ୍ମୃତିରେ ସେଠାର କମ୍ୟୁନିଟି ହଲ୍ ବା ସାଧାରଣ ସଭାଗୃହରେ ଏକ ପ୍ରାର୍ଥନା ସଭାର ଆୟୋଜନ ହେଇଥିଲା । ଭାରତୀୟମାନଙ୍କ ଛଡ଼ା ଆମେରିକୀୟ ବନ୍ଧୁ ବି ଅନେକ ଯୋଗଦେଇଥିଲେ ।

ଆମେରିକାରେ ଆମେ ପ୍ରଥମଥର ଚଉଦ ମାସ ରହିଲୁ । ତାହା ପରେ ସେଠିକି ଆଉ ଦୁଇଥର ଯିବା ହେଲାଣି । ମୁଁ ତିନିଥର ଯାକର ଯାତ୍ରା ପରେ ଲେଖୁଛି । ତେଣୁ ଏଥିରେ ତିନିଥର ଯାକ ଅନୁଭୂତି ମିଶିମାଖି ଯାଇଛି ।

## ମନୋମନ୍ଥନର ବେଳ

ଆମେ ଆମେରିକାରେ ଥିବାବେଳେ ଅମୃତସରର ସ୍ୱର୍ଣ୍ଣମନ୍ଦିରରୁ ସନ୍ତ୍ରାସବାଦୀମାନଙ୍କୁ ବାହାର କରିବା ପାଇଁ 'ଅପରେଶନ୍ ବ୍ଲୁ ଷ୍ଟାର' ନାମକ ସାମରିକ କାର୍ଯ୍ୟାନୁଷ୍ଠାନ ଇନ୍ଦିରାଜୀ କରାଇଲେ । ସ୍ୱର୍ଣ୍ଣମନ୍ଦିର ଛଡ଼ା ପଞ୍ଜାବର ଅନ୍ୟ ଅଧିକାଂଶ ଗୁରୁଦ୍ୱାରମାନଙ୍କ ଉପରେ ବି ଚଢ଼ଉ କରାହେଲା । ଏଥିରେ ଶିଖମାନଙ୍କ ସହିତ ବର୍ବରୋଚିତ ବ୍ୟବହାର କରାଗଲା । ବିଶିଷ୍ଟ ପର୍ଯ୍ୟବେକ୍ଷକମାନଙ୍କର ସମାଲୋଚନା ଶୁଣିବାକୁ ମିଳିଲା ଯେ, ଏ କାର୍ଯ୍ୟାନୁଷ୍ଠାନରେ ଆବଶ୍ୟକତାଠାରୁ ବହି ତେର ବେଶି ବଳପ୍ରୟୋଗ କରାଗଲା । ପରେ ଦେଶକୁ ଫେରି ଏ ସମାଲୋଚନାର ଯଥାର୍ଥତା ଉପଲବ୍ଧି କଲି । ଏଥିରେ କେବଳ ସନ୍ତ୍ରାସବାଦ ଦମନ ଯାଏ କଥା ନଥିଲା । ସାରା ଦେଶରେ ଏକ ନାଟକୀୟ ପ୍ରଭାବ ପକାଇବା ଓ ଆଗାମୀ ନିର୍ବାଚନକୁ

ଆଖିଆଗରେ ରଖି ହିନ୍ଦୁ ରାଷ୍ଟ୍ରୀୟତାର ଭାବନାରୁ ଲାଭ ଉଠେଇବା ମଧ୍ୟ ଏହାର ଉଦ୍ଦେଶ୍ୟ ଥିଲା । ଇନ୍ଦିରାଜୀଙ୍କ ହତ୍ୟା ଅନ୍ତେ ରାଜୀବ ଗାନ୍ଧୀ ଯେତେବେଳେ ସାଧାରଣ ନିର୍ବାଚନ କରାଇଲେ ସେତେବେଳେ ସେ ଏହି ହାୱା ଦ୍ୱାରା ପୂର୍ଣ୍ଣମାତ୍ରାରେ ଲାଭବାନ ହେଲେ । ଶିଖ୍‌ମାନେ ବିଚ୍ଛିନ୍ନବାଦୀ, ଦେଶକୁ ଖଣ୍ଡ ବିଖଣ୍ଡ କରିବାକୁ ଚାହୁଁଥିଲେ, ମୁଁ ଦେଶର ଅଖଣ୍ଡତା ରକ୍ଷା କରିଦେଲି । ଏହାହିଁ ଦେଖାଇବା ଇନ୍ଦିରାଜୀଙ୍କର ଉଦ୍ଦେଶ୍ୟ ଥିଲା । ମାତ୍ର ଏହାଦ୍ୱାରା ଶିଖମାନଙ୍କ ବିରୋଧରେ ସାରା ଦେଶରେ ଅବିଶ୍ୱାସର ମଞ୍ଜି ବୁଣି ଦେଶର ଏକାତ୍ମକତାକୁ ପ୍ରଚଣ୍ଡ ଆଘାତ ଦେଲେ, ଯେଉଁଥିରୁ ଦେଶ ଏ ଯାଏ ଉଧୁରି ପାରିନାହିଁ ।

ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବାପରେ ପ୍ରଥମେ ଯେପରିଭାବରେ କଥାବାର୍ତ୍ତା କଲେ ଓ ପଞ୍ଜାବ, ଆସାମ ଓ ମିଜୋରାମରେ ଶାନ୍ତି ସ୍ଥାପନ ପାଇଁ ଯେଉଁସବୁ ଉଦ୍ୟମ କଲେ ଓ ବିଭିନ୍ନ ଚୁକ୍ତି ବା ରାଜିନାମା ସେସବୁ ରାଜ୍ୟର ଆନ୍ଦୋଳନକାରୀଙ୍କ ସହିତ କଲେ ସେଥିରୁ ମନେହେଲା ଯେ, ସେ ଇନ୍ଦିରାଜୀଙ୍କର ଭେଦନୀତିର ମାର୍ଗରେ ଚାଲିବାକୁ ଚାହାନ୍ତି ନାହିଁ ଓ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ମୋଟାମୋଟି ସମ୍ମାନ ଦେବାକୁ ଚାହାନ୍ତି । ବମ୍ବେଠାରେ ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସର ଶତବାର୍ଷିକୀ କଂଗ୍ରେସ (ଇ) ଅବୈଧ ଭାବରେ ପାଳନ କଲା । ଅବୈଧ, କାରଣ କଂଗ୍ରେସ (ଇ) ସ୍ୱାଧୀନତା ଆନ୍ଦୋଳନ ଯୁଗର ଭାରତୀୟ ରାଷ୍ଟ୍ରୀୟ କଂଗ୍ରେସ ନୁହେଁ । ତେବେ ସେଠି ରାଜୀବ ଗାନ୍ଧୀ ଯେଉଁ ଭାଷଣ ଦେଲେ ସେଥିରେ କଂଗ୍ରେସ (ଇ) ଭିତରେ କ୍ଷମତାର ଦଲାଲୀ କରୁଥିବା ଓ ଅନ୍ୟ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀଙ୍କ ବିରୋଧରେ କେତେକ କଥା କହିଲେ ଯାହା ଅନେକଙ୍କୁ ଭଲ ଲାଗିଲା । ଦଳର କର୍ମକର୍ତ୍ତା ନିର୍ବାଚନ ମଧ୍ୟ ଶୀଘ୍ର କରାଇବାର ପ୍ରତିଶ୍ରୁତି ଦେଲେ ।

ମାତ୍ର ଅଳ୍ପ ଦିନରେ ଦେଖାଗଲା ଯେ, ସେ ତାଙ୍କର ମା'ଙ୍କର ପଦାଙ୍କ ଅନୁସରଣ କରି ଚାଲିଛନ୍ତି । ରାଜୀବ ଲଂଗୋୱାଲ ରାଜିନାମା ଏକ ଠକାମୀରେ ପରିଣତ ହେଲା । ଶିଖ ନେତୃତ୍ୱ ଭିତରେ ଭେଦ ସୃଷ୍ଟି କରିବା ତା'ର ଉଦ୍ଦେଶ୍ୟ ଥିଲା ବୋଲି ମନେହେଲା । ଆସାମ ରାଜିନାମାର ବିଭିନ୍ନ ସର୍ତ୍ତ ପୂରଣ କରିବାରେ ବି ଅନିଚ୍ଛା ବା ଉଦାସୀନତା ଦେଖାଗଲା । କେବଳ ମିଜୋରାମରେ ଯଥାର୍ଥ କଥାଏ ଶାନ୍ତି ଫେରିଲା ।

ଏହାପରେ ପଞ୍ଜାବରେ ପୁଣି ଦଳଗତ ସ୍ୱାର୍ଥସିଦ୍ଧିକୁ ପ୍ରାଧାନ୍ୟ ଦିଆଯାଇ ସମସ୍ୟାକୁ ଅଧିକ ଜଟିଳ କରାହେଲା । ହରିୟାଣା ବିଧାନସଭା ନିର୍ବାଚନରେ ହିନ୍ଦୁ ଭୋଟକୁ ପ୍ରଭାବିତ କରିବା ଆଶାରେ ବରନାଲା ମନ୍ତ୍ରୀମଣ୍ଡଳକୁ ଭାଙ୍ଗିଦିଆଗଲା ଓ ଚଣ୍ଡୀଗଡ଼, କେନାଲ ପାଣି ଆଦି ସମସ୍ୟା ବିଷୟରେ ରାଜୀବ-ଲଂଗୋୱାଲ ରାଜିନାମାର ସର୍ତ୍ତସବୁକୁ କାର୍ଯ୍ୟକାରୀ କରାହେଲା ନାହିଁ । ଫଳରେ ରାଜ୍ୟରେ ଅସନ୍ତୋଷ ଓ ସଂନ୍ତ୍ରାସବାଦ ବଢ଼ିଲା । ଶ୍ରୀଲଙ୍କାରେ ଇନ୍ଦିରା ଗାନ୍ଧୀ ସରକାର ତ ତାମିଲ ସନ୍ତ୍ରାସବାଦୀ ଦଳ ଏଲ.ଟି.ଟି.ଇ. -Liberation Tigers of Tamil Eelam (ତାମିଲ ସ୍ୱାଧୀନ ରାଜ୍ୟର ମୁକ୍ତି ବ୍ୟାଘ୍ର) ସଙ୍ଗଠନକୁ ଗୋପନରେ ତାଲିମ ଦେଉଥିଲେ ଓ ଅସ୍ତ୍ରଶସ୍ତ୍ର ଯୋଗାଉଥିଲେ । ରାଜୀବ ଗାନ୍ଧୀ ସେଠାର ରାଷ୍ଟ୍ରପତି ଜୟବର୍ଦ୍ଧନେଙ୍କ ସହିତ ଏକ ରାଜିନାମା କରି ସେଠାକୁ ସୈନ୍ୟ ପଠେଇ ଶ୍ରୀଲଙ୍କାର ଉତ୍ତରପୂର୍ବ ଅଞ୍ଚଳରେ ପ୍ରଭାବ ବିସ୍ତାରର

ଏକ ଅପଚେଷ୍ଟା କଲେ । ଏଲ୍.ଟି.ଟି.ଇ. ରାଜିନାମାର ବିରୋଧ କରିବାରୁ ତାହା ସହିତ ଭାରତୀୟ ସେନା ଏକ ଅବାଞ୍ଛିତ ଯୁଦ୍ଧରେ ଜଡ଼ିତ ହେଇପଡ଼ିଲା ।

ସଂସଦରୁ ଓ କଂଗ୍ରେସ (ଇ) ଶାସିତ ରାଜ୍ୟମାନଙ୍କରେ ବିଧାନ ସଭାମାନଙ୍କରୁ ଗଣତାନ୍ତ୍ରିକ ଆଚରଣବିଧି କ୍ରମେ ସଂପୂର୍ଣ୍ଣ ଲୋପ ପାଇଲା । ପୁଲିସ୍ ଅତ୍ୟାଚାର ସର୍ବତ୍ର ବଢ଼ିଚାଲିଲା ଓ ତାହା ସାଙ୍ଗକୁ ଦୁର୍ନୀତି । ଦମନ ଆଇନ ତ ତାଙ୍କ ମା' ଯଥେଷ୍ଟ ଗଢ଼ି ଦେଇ ଯାଇଥିଲେ । ଏବେ ପଞ୍ଜାବର ବାହାନା ଦେଖେଇ ସଂବିଧାନର ୫୯କ ସଂଶୋଧନ କରାଇ ପୁଣି ଜରୁରୀକାଳୀନ ଶାସନ ଜାରି ହେଲେ ଲୋକଙ୍କର ବଞ୍ଚିବାର ଅଧିକାର ଚାଲିଯିବା କଥା ସମ୍ବିଧାନରେ ଦାଖଲ କରାହେଲା । ଶାହାବାନୁ ଘଟଣା ନେଇ ଛାଡ଼ପତ୍ର ପାଇଥିବା ମୁସଲମାନ ମହିଳାଙ୍କର ଖୋରାକପୋଷାକ ଦାବୀର ଅଧିକାର ଅପହରଣ କରାହେଲା ।

ଏସବୁ ଭିତରେ ବୋଫର୍ସ କମାଣ ଓ ପଶ୍ଚିମ ଜର୍ମାନୀରୁ ବୁଡ଼ାଜାହାଜ କିଣା ବ୍ୟାପାରରେ ଲାଞ୍ଚ ନିଆଯିବାର ଗୁପ୍ତ ତଥ୍ୟ ସ୍ୱୀଡ଼େନ୍‌ର ରେଡ଼ିଓ ଓ ସେଠାର ତଥା ଭାରତର କେତେକ ଖବରକାଗଜମାନଙ୍କ ଅଧ୍ୟବସାୟ ଫଳରେ ସର୍ବସାଧାରଣଙ୍କ ଗୋଚରକୁ ଆସିଲା । ତାହାକୁ ନେଇ ଦେଶରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହେବାରୁ ରାଜୀବ ସରକାର ତାକୁ ଚପେଇ ଦେବା ପାଇଁ ଆପ୍ରାଣ ଚେଷ୍ଟା ଚଳାଇଲେ । ଏଥି ଭିତରେ ଖବରକାଗଜମାନଙ୍କର କଣ୍ଠରୋଧ ପାଇଁ ଏକ ଆଇନ ପ୍ରଣୟନର ଚେଷ୍ଟା ଚାଲିଲା । ମାତ୍ର କଂଗ୍ରେସ (ଇ) ର ସମର୍ଥକ କାଗଜମାନେ ବି ତାହାର ଜୋର୍ ବିରୋଧ କରିବାରୁ ତାହା ହେଇ ପାରିଲା ନାହିଁ ।

ଦେଶର ପରିସ୍ଥିତି ଏହିଭଳି ଉତ୍କଟରୁ ଉତ୍କଟତର ହେବାକୁ ଲାଗିଥିବାବେଳେ ମୁଁ ଏକ ତୀବ୍ର ମାନସିକ ଯନ୍ତ୍ରଣା ଓ ଅସନ୍ତୋଷ ଭିତର ଦେଇ ଗତି କରୁଥାଏ । ମୁଁ ଅନୁଭବ କରୁଥାଏ ଯେ, ଦେଶଟାକୁ ଦିନକୁ ଦିନ ରସାତଳକୁ ନିଆଯାଉଛି । ଅଥଚ ତାର ସକ୍ଷମ ବିରୋଧ କରିବା ପାଇଁ ଆବଶ୍ୟକ ନୈତିକ ଶକ୍ତିର ଅଭାବ ହେଉଛି । ନୈତିକ ଶକ୍ତି ରହିଛି, ମାତ୍ର ତାହା ଜନସାଧାରଣଙ୍କୁ ପ୍ରଭାବିତ କରି ପାରିବା ଢଙ୍ଗରେ ସଙ୍ଗଠିତ ଭାବରେ ଆତ୍ମପ୍ରକାଶ କରିପାରୁ ନାହିଁ । ମୋ ଦୃଷ୍ଟିରେ କଂଗ୍ରେସ (ଇ) ଶାସନର ପ୍ରାଦୁର୍ଭାବ ଦ୍ୱାରା ଦେଶର ଯାହାକିଛି କ୍ଷତି ହେଇଥିଲା ତାହା ମୂଳତଃ ଆଧ୍ୟାତ୍ମିକ । ୧୯୩୦ରେ ଜାନୁୟାରୀ ୨୬ ଦିନ ଦେଶ ଗ୍ରହଣ କରିଥିବା ସ୍ୱାଧୀନତାର ସଂକଳ୍ପ ଗାନ୍ଧୀଜୀ ନିଜେ ଠିକା କରିଥିଲେ । ବ୍ରିଟିଶ ଶାସନ ଭାରତର କି କି କ୍ଷତି କରିଛି ତାହା ସେଥିରେ ବର୍ଣ୍ଣନା କରିବାକୁ ଯାଇ ସେଥିରେ ଗାନ୍ଧୀଜୀ ଦର୍ଶାଇଥିଲେ ଯେ, ସେ ଶାସନ ଭାରତର ଆଧ୍ୟାତ୍ମିକ ସର୍ବନାଶ କରିଛି, ଭାରତବାସୀଙ୍କୁ ବାଧ୍ୟତାମୂଳକ ଭାବରେ ନିରସ୍ତ୍ର କରିଦେଇ ସେମାନଙ୍କୁ ନିର୍ବୀର୍ଯ୍ୟ କରିଦେବା ଦ୍ୱାରା ।

ଗାନ୍ଧୀଜୀଙ୍କ ଦୃଷ୍ଟିରୁ ଆଧ୍ୟାତ୍ମିକତାର ମୂଳଦୁଆ ହେଲା ନିର୍ଭୟତା, ଶୂରତା । ସେ ମେଣ୍ଢା ଅବସ୍ଥାରେ ଥିବା ଭାରତବାସୀଙ୍କୁ ସିଂହ କରିବାକୁ ଚାହୁଁଥିଲେ । ଆଉ ଏବେ ପୁଣି ଲୋକଙ୍କୁ ମେଣ୍ଢା ବନେଇବାର ଉଦ୍ୟମ ଚାଲିଛି । ଲୋକେ ସବୁପ୍ରକାରର ମିଥ୍ୟା, ପ୍ରବଞ୍ଚନା, ଅତ୍ୟାଚାର ଆଦିକୁ ମୁଣ୍ଡପାତି ସହିନେବାକୁ ଅଭ୍ୟସ୍ତ ହେଇ ଯାଉଛନ୍ତି । ଏକ ପ୍ରକାରର ସୁବିଧାବାଦ ସର୍ବତ୍ର

ବ୍ୟାପିବାରେ ଲାଗିଛି । ଏପରିକି ସର୍ବୋଦୟ ଆନ୍ଦୋଳନ ଭିତରେ ମଧ୍ୟ ଏହା କାମ କରୁଛି । ଥରେ ବିନୋବାଜୀଙ୍କର ଜଣେ ପଟ୍ଟଶିଷ୍ୟ ବାଳବିଜୟ ଏକ ଆଲୋଚନା ପ୍ରସଙ୍ଗରେ ଯୁକ୍ତିକଲେ ଯେ, ସରକାର କଂଗ୍ରେସ (ଇ) ତ ଲୋକଙ୍କଠାରୁ ଅଧିକ ସଂଖ୍ୟାରେ ଭୋଟ ପାଇ ନିର୍ବାଚିତ ହୋଇଛି । ତେଣୁ ତାର କାର୍ଯ୍ୟକଳାପର ଆମେ ସମାଲୋଚନା କରିବା ଅସଙ୍ଗତ । ଅର୍ଥାତ୍ ଲୋକେ ତାକୁ ସବୁପ୍ରକାରର ଦୁର୍ନୀତି, ଅତ୍ୟାଚାର ଓ ଗଣତନ୍ତ୍ର ବିରୋଧ କାମ କରିବାକୁ ଭୋଟ ଦେଇଥିଲେ ।

ଏ ପରିସ୍ଥିତିରେ ମୌଖିକ ପ୍ରତିବାଦ ଯଥେଷ୍ଟ ନୁହେଁ । ନିର୍ବାଚନ ସେତେବେଳକୁ ଅନେକ ଦୂର । ଏକ ନୀତିଭ୍ରଷ୍ଟ ସରକାରକୁ କ୍ଷମତାରୁ ହଟାଇବା ପାଇଁ ସତ୍ୟାଗ୍ରହ କରିବା ନୀତିମାନ ଲୋକଙ୍କର କର୍ତ୍ତବ୍ୟ ଓ ଭାରତରେ ଏହାର ଆବଶ୍ୟକତା ପଡ଼ିବ ବୋଲି ଗାନ୍ଧୀଜୀ ୧୯୨୦ରେ କହିଥିଲେ । ମାତ୍ର ତାହା କରିବା ପାଇଁ ଆବଶ୍ୟକ ନେତୃତ୍ୱ ତ ଗଢ଼ିଉଠିବା ଆବଶ୍ୟକ । ସେଥିପାଇଁ ମୋ ମୁଣ୍ଡରେ ଏକ ବିଚାର ପଶିଲା ଯେ, ସାରା ଭାରତରେ ପଚାଶ ବା ଶହେ ଲୋକ ଏକା ସାଙ୍ଗରେ ଦୀର୍ଘ ସମୟଧରି, ଧରନ୍ତୁ ସାତଦିନ, ଉପବାସ କରନ୍ତୁ । ଏହା ସେମାନଙ୍କର ଦୃଢ଼ ସଂକଳ୍ପ ଶକ୍ତିର ପରିଚୟ ଦେବ ଓ ସାରା ଦେଶର ଦୃଷ୍ଟି ମଧ୍ୟ ଆକର୍ଷଣ କରିବ । ମାତ୍ର ମୋର ଏ ବିଚାରଟା ସବୁ ସାଥୀମାନଙ୍କର ମନକୁ ପାଇଲା ନାହିଁ ।

ଇତିମଧ୍ୟରେ କଳାହାଣ୍ଡିରେ ଅନାହାର ମୃତ୍ୟୁର ସମାଚାର ମିଳିଲା । ବିରଜା ରାୟ ଯାଇ ବହୁତ ପରିଶ୍ରମ କରି, ସେଠୁ ଏ ବାବଦରେ ତଥ୍ୟ ସଂଗ୍ରହ କରି ଆଣିଲେ । ସର୍ବୋଦୟ ରିଲିଫ୍ ପାଣ୍ଠି ପକ୍ଷରୁ ମଣିବେନ୍ ନାଣାବଟୀ ଓ ଅକ୍ସଫାମ୍ ଆର୍ଥିକ ସାହାଯ୍ୟ ଦେଲେ । ଏହି ସମୟରେ ମୋର ମନରେ ଥିବା ଉପବାସ କଥାଟା ଉଙ୍କିମାରିଲା । କଳାହାଣ୍ଡିରେ ଅନାହାର ମୃତ୍ୟୁ ପ୍ରକୃତିର ପରିହାସ ଯୋଗୁଁ ନୁହେଁ । ଏହା ମନୁଷ୍ୟକୃତ । ଯେଉଁ ଅନ୍ୟାୟ ଓ ଶୋଷଣମୂଳକ ସାମାଜିକ ଓ ବିଶେଷକରି ଆର୍ଥିକ ବ୍ୟବସ୍ଥା ଏ ଦେଶରେ ଚାଲିଛି, ଦୁର୍ଭିକ୍ଷ ଓ ଅନାହାର ମୃତ୍ୟୁ ତାହାରି ପରିଣାମ । ମରୁଡ଼ି ଏକ ଉପଲକ୍ଷ୍ୟ ମାତ୍ର । ଲୋକଙ୍କ ହାତରୁ କୃଷିର ପରିପୂରକ ଧନ୍ଦାସବୁ କାଢ଼ି ନିଆଯାଇଛି, କୃଷିଜାତ ଦ୍ରବ୍ୟର ଉଚିତ ମୂଲ୍ୟ ସେମାନଙ୍କୁ ଦିଆ ହେଉନାହିଁ ଓ ଅପ୍ରତ୍ୟକ୍ଷ କର, ନିଶାଦ୍ରବ୍ୟ ଆଦି ନାନା ଅନ୍ୟ ଉପାୟରେ ସେମାନଙ୍କୁ ଶୋଷଣ କରି ଏପରି ଅବସ୍ଥାରେ ପକାହେଉଛି ଯେ, ଗୋଟାଏ ମରୁଡ଼ି ସହିବା ଭଳି ଖାଦ୍ୟ ଭଣ୍ଡାର, ସଂଚୟ ବା ଆୟର ପନ୍ଥା ସେମାନଙ୍କ ପାଖରେ ଆଉ ବାକି ରହିଯାଉ ନାହିଁ ।

ଅନେକ ଚିନ୍ତା କରି ମୁଁ ସ୍ଥିରକଲି ଯେ, ଏହି ପରିସ୍ଥିତି ପ୍ରତି ଦୃଷ୍ଟି ଆକର୍ଷଣ ପାଇଁ ଓ ତାହାର ପ୍ରତିକାର ପାଇଁ ଆତ୍ମଶକ୍ତି ସଂଚୟ କରିବା ପାଇଁ ମୁଁ ତିନିଦିନ ଉପବାସ କରିବି । ସାତଦିନ କରିବା କଥା ମନରେ ଉଠିଥିଲା ମାତ୍ର ସାହସ ପାଇଲା ନାହିଁ । ଅକ୍ଟୋବର ୨ ତାରିଖ ୧୯୮୫ ଗାନ୍ଧୀ ଜୟନ୍ତୀ ଦିନ ଉପବାସ ଆରମ୍ଭ ହେଲା । ମୋର ବିବୃତି ଖବରକାଗଜମାନଙ୍କରେ ଆଗରୁ ବାହାରିଥିଲା । ତେଣୁ ଉପବାସ ବେଶ ଦୃଷ୍ଟି ଆକର୍ଷଣ କଲା । ଅନେକ ବନ୍ଧୁ ଓ ଗୁରୁଜନ ଆସି ସଦିଚ୍ଛା ଓ ଆଶୀର୍ବାଦ ଜଣେଇ ଗଲେ । ଗୁରୁଜନମାନଙ୍କ ଭିତରେ ରାଧାନାଥ

ବାବୁ (ସମାଜ) ସର୍ବପ୍ରଧାନ । ଅନେକ ପୁରୁଣା ସ୍ୱାଧୀନତା ସଂଗ୍ରାମୀ ସାଥୀ ମଧ୍ୟ ଆସି ମୋ ସହିତ ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା କଲେ । ବିରୋଧୀ ଦଳମାନଙ୍କର କର୍ମୀମାନେ ବି ଅନେକ ଆସି କହିଲେ ସେ, ଆଗକୁ କୌଣସି କାର୍ଯ୍ୟକ୍ରମ ଗ୍ରହଣ କରାଗଲେ ସେମାନେ ସେଥିରେ ସହଯୋଗ କରିବେ । ତେବେ ଆମର ସଙ୍ଗଠନ ଶକ୍ତିର ଦୁର୍ବଳତା ଯୋଗୁଁ ଏ ଭାବନାର ତରଙ୍ଗକୁ ପୂରାପୂରି କାମରେ ଲଗେଇ ହେଲା ନାହିଁ ।

କଳାହାଣ୍ଡିରେ ସେଇ ସମୟଠାରୁ ୧୯୮୯ ଆରମ୍ଭଯାଏ ଲଗାତର ତ୍ରାଣକାର୍ଯ୍ୟ ଚାଲିଲା । ସର୍ବୋଦୟ ରିଲିଫ୍ କମିଟିର ମୁଣ୍ଡଧାରୀ ତାର ସଂପାଦକ କ୍ଷେତ୍ରବାସୀ ପତି ଥିଲେ । ଜରୁରୀକାଳୀନ ଶାସନବେଳେ ସେ କଲିକତା ବମ୍ବେ ପ୍ରଭୃତିରେ ଲୁଚି ରହି ଶାସନର ବିରୋଧୀ ପ୍ରଚାର ସଙ୍ଗଠିତ କରିବାରେ ଆଖିଦୁରୁଶିଆ କାମ କରିଥିଲେ । ମାତ୍ର ତାଙ୍କର ହଠାତ୍ ମସ୍ତିଷ୍କରେ ରକ୍ତସ୍ରାବ ହେଇ ୧୯୮୯ ଡିସେମ୍ବର ୧୭ ତାରିଖରେ ମୃତ୍ୟୁ ହେଇଗଲା । ତାହାପରେ ବିଶିଷ୍ଟ ନକ୍ସଲପନ୍ଥୀ ନେତା ରବିଦାସ ଓ ଉତ୍ସାହୀ ଯୁବକର୍ମୀ ପ୍ରହ୍ଲାଦ ସିଂହ ମୁଖ୍ୟ ଦାୟିତ୍ୱ ନେଇ କାମ ଚଳାଇଲେ । ଅକ୍ସଫାମ୍ ଓ ବମ୍ବେ ଉପନଗର ପାଣ୍ଠିର ସାହାଯ୍ୟ ବରାବର ମିଳିଲା । ସେଠି ମୁଖ୍ୟତଃ ଲୋକଙ୍କୁ କାମ ଯୋଗାଇବା ସାଙ୍ଗେ ସାଙ୍ଗେ ଜଳ ଯୋଗାଣର ସ୍ଥାୟୀ ବ୍ୟବସ୍ଥା କରିବା ଦୃଷ୍ଟିରୁ ବନ୍ଧ, ଜଳାଶୟ, କୂଅ ଆଦି ନିର୍ମାଣ ଉପରେ ଖାସ୍ ଦୃଷ୍ଟି ଦିଆଗଲା । କଳାହାଣ୍ଡିର ଦୁରବସ୍ଥା ସାରା ଦେଶର ଗୋଚରକୁ ଆଣିବା ଦିଗରେ କେତେକ ସମ୍ବାଦପତ୍ର ଓ ସାମ୍ବାଦିକ ମଧ୍ୟ ବିଶେଷ ତତ୍ପର ହେଲେ । ଫଳରେ ଦେଶର ଦୃଷ୍ଟି କଳାହାଣ୍ଡି ଉପରେ ବିଶେଷ ଭାବରେ ପଡ଼ିଲା । ପ୍ରଧାନ ମନ୍ତ୍ରୀ ରାଜୀବ ଗାନ୍ଧୀ କଳାହାଣ୍ଡି ଗସ୍ତରେ ଦୁଇଥର ଆସିଲେ । ରାଜ୍ୟ ସରକାର ଅନାହାର ମୃତ୍ୟୁର ଅଭିଯୋଗକୁ ସଂପୂର୍ଣ୍ଣ ଭାବରେ ଅସ୍ୱୀକାର କଲେ । ଏକ ସମୟରେ ସେତେବେଳର ମୁଖ୍ୟମନ୍ତ୍ରୀ ଜାନକୀବାବୁ ଯାଇ ସେଠି ବକ୍ତୃତା ଦେଇ ବୁଝାଇଲେ ଯେ, ବମ୍ବେ, ଦିଲ୍ଲୀ ବା କଲିକତାର ସାଧାରଣ ଲୋକଙ୍କ ଅପେକ୍ଷା କଳାହାଣ୍ଡିର ଲୋକ ବେଶି ଖରାପ ଅବସ୍ଥାରେ ନାହାନ୍ତି ଏବଂ ଏ ଜିଲ୍ଲାରେ ଅନାହାର ମୃତ୍ୟୁ ଘଟୁଛି ବୋଲି କହିବା ଏ ଜିଲ୍ଲାର ଲୋକଙ୍କ ପ୍ରତି ଅପମାନ । ତଥାପି ରାଜ୍ୟ ସରକାର ଏ ଜିଲ୍ଲା ପାଇଁ ଋଣ ଓ ଅନ୍ୟାନ୍ୟ ଯୋଜନା ବାବଦରେ ପୂର୍ବାପେକ୍ଷା ବେଶ୍ କିଛି ଅଧିକ ପାଣ୍ଠି ମଞ୍ଜୁର କରିବାକୁ ବାଧ୍ୟ ହେଲେ । ମାତ୍ର ସେଥିରୁ ଅଳ୍ପକିଛି ଲୋକଙ୍କ ପାଖରେ ପହଞ୍ଚିଲା, ଏକ ବେଶ ବଡ଼ ଅଂଶ ଭୂତ ଖାଇଲେ ଓ ବେଶ୍ କିଛି ଟଙ୍କା ଜନତା ସରକାର ୧୯୯୦ ରେ କ୍ଷମତାକୁ ଆସିବା ବେଳକୁ ଖର୍ଚ୍ଚ ନ ହେଇପାରି ପଡ଼ି ରହିଥିଲା ।

୧୯୮୭ ରେ ସର୍ବ ସେବା ସଂଘ ଓ ଅନ୍ୟ ସଂସ୍ଥାମାନେ ମିଶି ପଞ୍ଜାବରେ ଏକ ମାସିକିଆ ଅଭିଯାନ ଚଳାଇ ଲୋକମାନଙ୍କ ପାଖରେ ଶାନ୍ତି ଓ ସଦ୍‌ଭାବର ବାର୍ତ୍ତା ପହଞ୍ଚାଇବାକୁ ସ୍ଥିରକଲେ । ଠାକୁରଦାସ ବଙ୍ଗଙ୍କର ନେତୃତ୍ୱରେ ଶହେ ଜଣ ସର୍ବୋଦୟ କର୍ମୀ ସାରା ଭାରତରୁ ପଞ୍ଜାବ ଗଲେ । ଏଥିରେ ମୁଁ ଯୋଗ ଦେଇ ନଥିଲି । ମୋର ମନେ ହେଉଥିଲା ଯେ, ସେଠି କେହି ଯାଇ ଆସ୍ଥାନ ଜମେଇ ବସି ଦୀର୍ଘକାଳୀନ ଯୋଜନା ନେଇ କାମକରି ହିଂସା ବିରୋଧୀ ଜନଶକ୍ତି ଗଢ଼ିତୋଳିବାର ଉଦ୍ୟମ କରିବା ଚାହିଁ । ମାସକର ଜନ ସଂପର୍କରୁ ବହୁତ କିଛି ଆଶାଜନକ

ଅଭିଜ୍ଞତା ମିଳିଲା । ଏହାର ପରବର୍ତ୍ତୀ ଦୀର୍ଘକାଳୀନ କାମର କଥା ମଧ୍ୟ ହେଲା ଓ ମୁଁ ସେଥିପାଇଁ ସମୟ ଦେବାକୁ ପ୍ରସ୍ତୁତି ଜଣାଇଲି । ମାତ୍ର ସେହିପରି କାମ ହୋଇ ପାରିଲା ନାହିଁ ।

୧୯୮୮ରେ ପଞ୍ଜାବ ସମସ୍ୟା ଓ ବୋଫୋର୍ସ ଦୁର୍ନୀତିର ପ୍ରତିକାର ଦାବି କରି ଦିଲ୍ଲୀଠାରେ ଦୁଇଦିନ ୧୪୪ ଭଙ୍ଗକରି ଆଇନ ଅମାନ୍ୟ କରାଯିବାର ସ୍ଥିର ହେଲା । ଏଥିରେ ସର୍ବ ସେବା ସଂଘର ମୁଖ୍ୟ ବ୍ୟକ୍ତିମାନେ ତଥା ଜନତନ୍ତ୍ର ସମାଜ, ସଂପୂର୍ଣ୍ଣ କ୍ରାନ୍ତି ମଞ୍ଚ ଆଦି ସଂସ୍ଥାମାନେ ଉଦ୍ୟୋକ୍ତା ଥିଲେ । ଜାନୁଆରୀ ୨୯ ଓ ୩୦ ଏଥିପାଇଁ ଦିନ ସ୍ଥିରହେଲା । ପ୍ରଥମ ଦିନ ଇଣ୍ଡିଆ ଗେଟ୍‌ଠାରେ ସମସ୍ତେ ଏକତ୍ର ହୋଇ ରାଜପଥ ଦେଇ ଯାଇ  ବୋଟ କ୍ଲବ୍ ମଇଦାନରେ ୧୪୪ ଥିବା ଅଞ୍ଚଳରେ ପହଞ୍ଚିବାବେଳକୁ ପୁଲିସ ଆଗକୁ ଯିବାରେ ବାଧା ଦେଲେ । ତାହା ନ ମାନିବାରୁ ସତ୍ୟାଗ୍ରହୀମାନଙ୍କୁ ସମସ୍ତଙ୍କୁ ଗିରଫ କରାଗଲା ଓ ଥାନାରେ ନେଇ ସାରାଦିନ ବସେଇ ରଖି ସନ୍ଧ୍ୟାରେ ଛାଡ଼ି ଦିଆଗଲା । ମଝିରେ କେତେବେଳେ ଜଣେ ମ୍ୟାଜିଷ୍ଟ୍ରେଟ୍ ଆସି ଆମ ସମସ୍ତଙ୍କୁ କୋର୍ଟ ଉଠିବା ଯାଏ କାରାଦଣ୍ଡର ହୁକୁମ ଦେଇ ଚାଲିଯାଇଥିଲେ । ଦ୍ୱିତୀୟ ଦିନ ବି ସେୟା ହେଲା, କେବଳ ଶୋଭାଯାତ୍ରା ଆଉ ଟିକିଏ ଦୂରରୁ, ଇଣ୍ଡିଆନ୍ ଏକ୍ସପ୍ରେସ୍  ଭବନ ପାଖରୁ ବାହାରିଲା । ଏ ସତ୍ୟାଗ୍ରହରେ ଓଡ଼ିଶାରୁ ସୁମିତ୍ରା, ମୁଁ ବିରଜା ରାୟ,କସ୍ତୁରୀ ନାୟକ, ଗୋପାଳ ବାବୁ, ଶିବ ଜେନା ଆଦି ସାତ ଆଠଜଣ ଯୋଗ ଦେଇଥିଲୁ । ବିଶିଷ୍ଟ ଲୋକଙ୍କ ଭିତରେ କୁଲଦୀପ ନାୟର, ରାଜେନ୍ଦ୍ର ସଚ୍ଚାର, ଭି.ଏମ୍.ତାରକୁଣ୍ଡେ, ଅବସରପ୍ରାପ୍ତ ସେନାଧ୍ୟକ୍ଷ ଜେନେରାଲ ଅମରିକ ସିଂହ, ସିଦ୍ଧରାଜ ଢଡ୍‌ଢ଼ା, ଠାକୁରଦାସ ବଙ୍ଗ ପ୍ରଭୃତି ଥିଲେ । ମୋଟ ଦେଢଶହ ସିରିକି ସତ୍ୟାଗ୍ରହୀ ଯୋଗ ଦେଇଥିଲେ ।

ଦିଲ୍ଲୀରେ ଏଭଳି ଆଇନ ଅମାନ୍ୟ ଅହରହ ହୁଏ ଓ ସେସବୁ ସହିତ କାରବାର କରିବାର ଟେକ୍‌ନିକ୍ ସେଠା ପୁଲିସ୍ ଆୟତ୍ତ କରିସାରିଛି । ତେଣୁ ଏଭଳି ଦିନିକିଆ ସତ୍ୟାଗ୍ରହର କିଛି ଆଶୁ ଫଳ ମିଳିବ ବୋଲି ମୁଁ ଆଶା କରି ନଥିଲି ।

ମୋର ପ୍ରସ୍ତାବ ଥିଲା ଯେ, ଏଭଳି ପ୍ରଦର୍ଶନ ଓ ଆବଶ୍ୟକ ହେଲେ ଆଇନ ଅମାନ୍ୟ ସାରା ଦେଶରେ ଗାଁ ସ୍ତର ପର୍ଯ୍ୟନ୍ତ କରାଯାଉ, ମାତ୍ର ତାହା ହୋଇପାରିଲା ନାହିଁ । କେବଳ ଓଡ଼ିଶାରେ କଟକରେ ଏକ ବିକ୍ଷୋଭ ପ୍ରଦର୍ଶନ ପଞ୍ଜାବରେ ସମାଧାନ ଓ ବୋଫର୍ସର ପ୍ରତିକାର ଦାବି କରି କରାହୋଇଥିଲା । ମୁଁ ଦେଖିଲି ଯେ, କେତେକ ସାଥୀ ଆଶା କରୁଥିଲେ ଯେ, ଏତେଜଣ ବିଶିଷ୍ଟ ଲୋକଙ୍କ ଦ୍ୱାରା କରାଯାଇଥିବା ଆଇନ୍ ଅମାନ୍ୟର ପ୍ରଭାବ ସରକାର ଉପରେ ଅବଶ୍ୟ କିଛି ପଡ଼ିବ ଓ ତାହା ନ ହେବାରୁ ସେମାନେ ସତ୍ୟାଗ୍ରହର ଶକ୍ତି ବିଷୟରେ ସଂଦିହାନ ହୋଇ ପଡ଼ିଥିଲେ । ଆମକୁ ଯେଉଁ ସବୁ ଶକ୍ତି ବିରୋଧରେ ଲଢ଼ିବାକୁ ହେଉଛି ଓ ହେବ ତାହା ଏତେ ନରମ ବୋଲି ସେମାନେ ଭାବୁଥିବାର ଦେଖି ମତେ ଆଶ୍ଚର୍ଯ୍ୟ ଲାଗିଲା ।

## ରଚନାତ୍ମକ କାମର ଗତିବିଧି

ସର୍ବୋଦୟର ଲକ୍ଷ୍ୟ ହାସଲପାଇଁ ଆନ୍ଦୋଳନ ଓ  ନିଦା ରଚନାତ୍ମକ କାମ ଉଭୟ ଆବଶ୍ୟକ । ଗାନ୍ଧୀଜୀଙ୍କ ଅମଳରୁ ତ ଅନେକ ଗୁଡ଼ିଏ  ରଚନାତ୍ମକ କାମର ସଂସ୍ଥା ଦେଶରେ ,

ଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଅନେକ ନୂଆ ସଂସ୍ଥା ଗଢ଼ିଉଠିଲା । ସ୍ୱାଧୀନ ଭାରତର କେନ୍ଦ୍ର ଓ ରାଜ୍ୟ ସରକାରମାନେ ଗାନ୍ଧୀଜୀଙ୍କ କଥା ବୁଝିଥାନ୍ତୁ ବା ନାହିଁ ଗାନ୍ଧୀଜୀଙ୍କ ପ୍ରତି ଭକ୍ତି ଭାବ, ଅନ୍ତତଃ ଉପରୁ ଦେଖିବାକୁ, ତ ପୋଷଣ କରୁଥିଲେ । ତାହାଠାରୁ ବଡ଼ କଥା ତାଙ୍କର ନାଁ ଭୋଟ୍ ବୈତରଣୀ ପାରି ହେବାର ଗୋରୁଲାଙ୍ଗୁଡ଼ ଥିଲା । ସେଥିପାଇଁ ସେମାନେ ସବୁ ରଚନାତ୍ମକ ସଂସ୍ଥାମାନଙ୍କୁ ଆର୍ଥିକ ସହାୟତା ମଧ୍ୟ ଦେଉଥିଲେ । ଭୂଦାନ-ଗ୍ରାମଦାନ ଆନ୍ଦୋଳନ ବେଳେ ଭୂଦାନ ଜମିର ଗ୍ରହୀତାମାନଙ୍କୁ ଥଇଥାନ କରାଇବା ପାଇଁ ଓ ଗ୍ରାମଦାନ ଗାଁମାନଙ୍କର ପୁନଃନିର୍ମାଣ ପାଇଁ ସରକାରମାନଙ୍କଠାରୁ ଆର୍ଥିକ ସାହାଯ୍ୟ ମିଳୁଥିଲା ।

ମୁଁ ପୂର୍ବରୁ ଲେଖିଛି ଯେ, ବିନୋବାଜୀ ଗୋଟିଏ କଥାପ୍ରତି ଦୃଷ୍ଟି ଆକର୍ଷଣ କଲେ ଯେ, ରଚନାତ୍ମକ ସଂସ୍ଥା ଓ ଆଶ୍ରମସବୁ ମଠବାଡ଼ିରେ ପରିଣତ ହେଇ ଯାଉଛନ୍ତି । ଜନସାଧାରଣଙ୍କ ଓ ସେମାନଙ୍କର ସମସ୍ୟା ସହିତ ସେମାନଙ୍କର କୌଣସି ସଂପର୍କ ରହୁନାହିଁ । ସଂସ୍ଥା ଚଳିବା ପାଇଁ ଲୋକଙ୍କ ପାଖକୁ ଚାନ୍ଦା ବି ମାଗିବାକୁ ଯିବାକୁ ପଡୁନାହିଁ । ସରକାରଠାରୁ ମିଳିଯାଉଛି ବା କେତେକ ସଂସ୍ଥାର ଗଚ୍ଛିତ ପାଣ୍ଠିରୁ ସୁଧ ମିଳୁଛି । ବିନୋବାଜୀ କର୍ମୀମାନଙ୍କୁ ସଂସ୍ଥାରୁ ବାହାରିଆସି ଲୋକଙ୍କ ଭିତରେ କାମ କରିବାକୁ ଡାକରା ଦେଲେ ଓ ବହୁ କର୍ମୀ ଆସିଲେ ମଧ୍ୟ । ମାତ୍ର କ୍ରମେ ବିନୋବାଜୀ କର୍ମୀ ଗୋଷ୍ଠୀକୁ କେବଳମାତ୍ର ଏକ ପ୍ରଚାରକ ଦଳଭାବେ ବର୍ଣ୍ଣନା କଲେ ଯେଉଁମାନେ କେବଳ ବୁଲି ବୁଲି ସର୍ବୋଦୟର ବାର୍ତ୍ତା ପ୍ରଚାର କରିବେ । ମାତ୍ର ରଚନାତ୍ମକ କାମର ଆବଶ୍ୟକତା ବି ରହିଲା ଓ ଭୂଦାନ- ଗ୍ରାମଦାନ ଆନ୍ଦୋଳନର ପରିପୂରକ ଭାବରେ ମଧ୍ୟ ଅନେକ ନୂଆ ସଂସ୍ଥା ଗଢ଼ିଉଠିଲା ।

ଏହି ସମୟରେ ସାହାଯ୍ୟର ଆଉ ଏକ ସ୍ରୋତ ଫିଟିଲା । ବିଦେଶୀ ଦାତବ୍ୟ ସଂସ୍ଥାମାନଙ୍କଠାରୁ ସାହାଯ୍ୟ । ବିହାର ଦୁର୍ଭିକ୍ଷବେଳେ (୧୯୬୭) ଏହିଭଳି ଅନେକ ସଂସ୍ଥା ବିପୁଳ ପରିମାଣରେ ଆର୍ଥିକ ଓ ଅନ୍ୟ ସାହାଯ୍ୟ ଯୋଗେଇଥିଲେ ।

୧୯୭୭ ଆଡ଼କୁ ସର୍ବୋଦୟର ବୃତ୍ତ ଭିତରେ ଏ ପ୍ରକାରର ବିଦେଶୀ ସାହାଯ୍ୟ ନେବାର ଔଚିତ୍ୟ ନେଇ ଏକ ବିତର୍କ ପ୍ରବଳ ହେଲା । କେତେକଙ୍କର ମତ ଥିଲା ଯେ, ଏସବୁ ବିଦେଶୀ ସାହାଯ୍ୟ ଦେଶରେ ପ୍ରଭାବ ବିସ୍ତାର କରିବାପାଇଁ ପାଶ୍ଚାତ୍ୟ ପୁଞ୍ଜିବାଦୀ, ସାମ୍ରାଜ୍ୟବାଦୀ ଦେଶମାନଙ୍କର ଏକ ଷଡ଼ଯନ୍ତ୍ର । ଏ ସାହାଯ୍ୟ ନେଲେ ସେମାନଙ୍କର ଚକ୍ରାନ୍ତର ହାତବାରସୀ ହେବାକୁ ହେବ । ଅନ୍ୟ ମତ ଥିଲା ଯେ, ଏଭଳି କୌଣସି ଆଶଂକା କରିବାର କାରଣ ନାହିଁ । ତେଣୁ ସାହାଯ୍ୟ ନେବାରେ ଆପତ୍ତି ହେବା ଉଚିତ ନୁହେଁ । ମୋର ମତ ଏହି ଦ୍ୱିତୀୟ ପ୍ରକାରର ଥିଲା ଓ ମୁଁ ଜୋର ଦେଇ ତାହା ପ୍ରତିପାଦନ କରୁଥିଲି ।

ବୃହତ୍ ଶକ୍ତିମାନେ ଯେ ଭାରତରେ ସେମାନଙ୍କର ପ୍ରଭାବ ବିସ୍ତାର ପାଇଁ କରୁଥିବା ନାନା ଚେଷ୍ଟା ଭିତରେ ବିଭିନ୍ନ ପ୍ରକାରର ରାଜନୀତିକ ଦଳ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଟଙ୍କାପଇସା ଦେଇ କାମରେ ଲଗେଇବାକୁ ମଧ୍ୟ ଚେଷ୍ଟା କରୁଥିଲେ ଏଥିରେ ସଂଦେହ ନାହିଁ । ସୋଭିଏତ୍ ଦେଶ କମ୍ୟୁନିଷ୍ଟ ଦଳକୁ ସାହାଯ୍ୟ କରୁଥିଲା । ତାର ଗୋଟିଏ ପନ୍ଥା ଥିଲା ବିକ୍ରିପାଇଁ

ସେମାନଙ୍କୁ ବହି ଯୋଗାଇବା । ଏସବୁ ବହିର ବିକ୍ରିଲବ୍ଧ ଧନ ଦଳର ପାଣ୍ଠିକୁ ଯାଏ । ସାହାଯ୍ୟର ଅନ୍ୟ ଗୁପ୍ତ ପନ୍ଥା ବି ହୁଏତ ଥିଲା । ଏହାର ମୁକାବିଲା ପାଇଁ ଆମେରିକାର ଗୁପ୍ତଚର ସଂସ୍ଥା ସି.ଆଇ.ଏ. ମଧ୍ୟ ନାନା ପ୍ରକାରର କମ୍ୟୁନିଷ୍ଟ ବିରୋଧୀ ସଙ୍ଗଠନକୁ ଗୋପନରେ ଆର୍ଥିକ ସାହାଯ୍ୟ ଦେଉଥିଲା । ଅନେକ ସମୟରେ ଏ ସାହାଯ୍ୟ ଏଭଳି ଅପ୍ରତ୍ୟକ୍ଷ ସୂତ୍ରରୁ ଆସୁଥିଲା ଯେ, ତାହା ସି.ଆଇ.ଏ.ର ପଇସା ବୋଲି ଜଣାପଡୁ ଥିଲା । ୧୯୬୦-୭୦ ଯୁଗରେ କ୍ୱେଷ୍ଟ (Quest) ବୋଲି ଏକ ଉଚ୍ଚକୋଟୀର ଇଂରେଜୀ ତ୍ରୈମାସିକ ପତ୍ରିକା କଲିକତାରୁ ବାହାରୁଥିଲା । ଖୁବ୍ ଖ୍ୟାତନାମା ବୁଦ୍ଧିଜୀବୀମାନେ ତାହା ସହିତ ସଂପୃକ୍ତ ଥିଲେ । ପରେ ଜଣାଗଲା ଯେ, ତାକୁ ଆର୍ଥିକ ସାହାଯ୍ୟ ସି.ଆଇ.ଏ. ଦ୍ୱାରା ଏକ ବେନାମୀ ସଂସ୍ଥା ଜରିଆରେ ଦିଆହେଉଥିଲା । ୧୯୭୨ ବା ୭୩ରେ ଜୟପ୍ରକାଶଜୀ ପ୍ୟାରିସ୍‌ରେ ଏକ ସମ୍ମିଳନୀକୁ ନିମନ୍ତ୍ରିତ ହୋଇଥିଲେ ଓ ତାଙ୍କ ପାଇଁ ବିମାନ ଟିକଟ ମଧ୍ୟ ଉଦ୍ୟୋକ୍ତାମାନେ ପଠେଇ ଦେଇଥିଲେ । ମାତ୍ର ସେ ଯେତେବେଳେ ଜାଣିପାରିଲେ ଯେ, ଏହି ଉଦ୍ୟମ ପଛରେ ସି.ଆଇ.ଏ.ର ଆର୍ଥିକ ସାହାଯ୍ୟ ରହିଛି, ସେତେବେଳେ ସେ ଉକ୍ତ ସମ୍ମିଳନୀରେ ଯୋଗଦେବାକୁ ମନାକରିଦେଲେ ।

ଫୋର୍ଡ଼ ଫାଉଣ୍ଡେସନ୍, ରକେଫେଲର ଫାଉଣ୍ଡସନ୍ ଆଦି କେତେକ ଧନାଢ଼୍ୟ ଆମେରିକାନ୍ ସଂସ୍ଥା ମଧ୍ୟ ବିଦେଶରେ ବୈଜ୍ଞାନିକ ଗବେଷଣାଠାରୁ ଆରମ୍ଭକରି ସମାଜ ସେବାଯାଏ ଅନେକ ପ୍ରକାରର କାମପାଇଁ ମୁକ୍ତ ହସ୍ତରେ ସାହାଯ୍ୟ ଦିଅନ୍ତି । ଏମାନଙ୍କର ସାହାଯ୍ୟ ପଛରେ ଜାଣତରେ ବା ଅଜାଣତରେ ପୁଞ୍ଜିବାଦର ଆଦର୍ଶକୁ ଦୃଢ଼ କରିବାର ମନୋଭାବ ଥାଏ, ମାତ୍ର ଅକ୍ସଫାମ୍, ୱାର ଅନ୍ ୱାଂଟ, ଲୁଥରାନ୍ ଚର୍ଚ୍ଚ ପ୍ରଭୃତି ସର୍ବୋଦୟ ଲୋକଙ୍କର ସମଗୋତ୍ରିୟ ଲୋକଙ୍କଦ୍ୱାରା ଗଢ଼ା ସଂସ୍ଥା । ସେମାନେ ସାଧାରଣ ଲୋକଙ୍କଠାରୁ ଚାନ୍ଦା ସଂଗ୍ରହ କରି ପାଣ୍ଠି ଗଢ଼ନ୍ତି । କୌଣସି ଗୀର୍ଜାର ଯଜମାନମାନେ ବା ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଗୋଟିଏ ଓଳି ଉପାସ ରହି ସେ ପଇସା ଏଭଳି ସଂସ୍ଥାଙ୍କର ପାଣ୍ଠିକୁ ଦିଅନ୍ତି । ଆମେ ଯେତେବେଳେ ସଂବିଭାଗ ବା ବାଣ୍ଟିଖାଇବା କଥା କରୁଛୁ ଓ ଜୟ ଜଗତ୍‌ର ଦୁଆ ଦେଉଛୁ, ସେତେବେଳେ ବିଦେଶରେ ଥିବା ବନ୍ଧୁମାନଙ୍କର ସମବଣ୍ଟନ ଉଦ୍ୟମରେ ଭାଗୀ ନ ହେବା କାହିଁକି ? ଏହି ଥିଲା ମୋର ଯୁକ୍ତି ।

ମାତ୍ର କ୍ରମେ ମୁଁ ଏ ପ୍ରଶ୍ନର ଆଉ ଗୋଟିଏ ଦିଗ ଦେଖିବାକୁ ପାଇଲି । ଖାସ୍ କରି ଇନ୍ଦିରାଜୀ ୧୯୮୦ ରେ ପୁଣି କ୍ଷମତାକୁ ଫେରିବା ପରେ । ଓଡ଼ିଶାରେ କାମ କରୁଥିବା ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଗଢ଼ିତୋଳିବା ପାଇଁ ବାହାରର ସାହାଯ୍ୟ ନେବା ଆବଶ୍ୟକ ବୋଲି ଆମେସବୁ ଅନୁଭବ କଲୁ । ଆନ୍ଦୋଳନ ଓ ରଚନାତ୍ମକ କାମପାଇଁ ଜନ ସାଧାରଣଙ୍କର ସାହାଯ୍ୟ ଉପରେ ନିର୍ଭର କରିବାର ଅପରିହାର୍ଯ୍ୟତାରେ ମୁଁ ବିଶ୍ୱାସ କରୁଥାଏ । ମାତ୍ର ଆମେ ବିଚାରିଲୁ ଯେ, କୌଣସି ସଂସ୍ଥାକୁ ଚାଲୁ କରିବା ପାଇଁ କିଛି ସାହାଯ୍ୟ ବାହାରୁ ମିଳିଗଲେ ତାପରେ ସଂସ୍ଥାର କର୍ମୀମାନେ ଲୋକଙ୍କଠାରୁ ସାହାଯ୍ୟ ସଂଗ୍ରହ କରି ନିଶ୍ଚିନ୍ତ ହେଇ କାମ କରିପାରିବେ । ନଳକୂପର ପମ୍ପକୁ ଚାଲୁକରିବାକୁ ସେଥିରେ ଯେମିତି ବେଳେବେଳେ ପାଣି ଢାଳିବାକୁ ହୁଏ ଏ ସେହିପରି ବୋଲି ଧୀରେନ୍‌ଭାଇ କହୁଥିଲେ । ତେଣୁ ୧୯୭୮ରେ ଓଡ଼ିଶା ସ୍ୱେଚ୍ଛାସେବୀ ସଂସ୍ଥା ସଂଘ

Consortium of Voluntary Agencies of Orissa ନାଁରେ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କର ଏକ ମହାସଂଘ ଗଢ଼ାଗଲା । ଉଦ୍ଦେଶ୍ୟ ହେଲା ଯେ, ଏ ସଂଘ ଏହାର ସଦସ୍ୟ ହେଉଥିବା ସଂସ୍ଥାମାନଙ୍କୁ ବିଭିନ୍ନ ସୂତ୍ରରୁ ସାହାଯ୍ୟ ସଂଗ୍ରହ କରାଇଦେବ ।

ମାତ୍ର ସଂସ୍ଥାର କାମ ଠିକ୍ ରୂପେ ଚାଲୁ ହେଉହେଉ କଂଗ୍ରେସ (ଇ) ପୁଣି କ୍ଷମତାକୁ ଆସିଗଲା । ଫଳରେ ଦେଖାଗଲା ଯେ, ଅନେକ ସଂସ୍ଥା ଆମକୁ କରଛଡ଼ା ଦେବା ଆରମ୍ଭ କଲେ । ଏକ ସ୍ୱେଚ୍ଛାସେବୀ ସଂସ୍ଥାର ମୁଖ୍ୟ କର୍ମକର୍ତ୍ତା ମୋର ଖୁବ୍ ଜଣାଶୁଣା, ପୁତ୍ରସ୍ଥାନୀୟ ବ୍ୟକ୍ତି । ସେ ମତେ ଥରେ ତାଙ୍କର କର୍ମକ୍ଷେତ୍ରରେ ଏକ ଶିବିର ପାଇଁ ଡାକିଲେ । ମୁଁ ଯାଇ ପହଞ୍ଚିଲି ଓ ମତେ ଶିବର ସ୍ଥାନକୁ ନିଆହେଲା । ମୁଁ ଯିବାର କେତେ ଘଣ୍ଟା ଭିତରେ ପୁଲିସର ସି.ଆଇ.ଡ଼ି. ଲୋକ ଯାଇ ସେଠି ପହଞ୍ଚି ପଚରାଉଚରା ଆରମ୍ଭ କଲେ ଯେ ମନମୋହନ ଚୌଧୁରୀ ଏଠିକି କାହିଁକି ଆସିଛନ୍ତି ? ତାଙ୍କୁ କିଏ ଡାକିଛନ୍ତି ଇତ୍ୟାଦି । ତା'ପରଦିନ ଶିବିର ସାରି ତ ମୁଁ ଫେରିଲି ମାତ୍ର ସେହିଦିନୁ ସେ ମୁଖ୍ୟକର୍ମୀ ଆଉ ମୋର ଛାଇ ମାଡ଼ି ନାହାନ୍ତି ।

କୋରାପୁଟ ଗୋପାଳବାଡ଼ିରେ ୧୯୮୫ରେ ଏକ ରଚନାତ୍ମକ କର୍ମୀ ସମ୍ମିଳନୀର ଆୟୋଜନ ହେଇଥିଲା । ସେଠାକୁ ଅନେକ ଗୁଡ଼ିଏ ସଂସ୍ଥାର ପ୍ରତିନିଧି ଆସିଥିଲେ । ଶେଷକୁ ଯେତେବେଳେ ସମ୍ମିଳନୀର ନିର୍ଣ୍ଣୟ ଉପରେ ପ୍ରସ୍ତାବ ଲେଖା ହେବା ବେଳ ଆସିଲା ସେତେବେଳକୁ ପ୍ରସ୍ତାବରେ ସର୍ବୋଦୟ ଶବ୍ଦ ରହିବା ବିରୋଧରେ ଅନେକଙ୍କ ପକ୍ଷରୁ ଘୋର ଆପତ୍ତି ହେଲା । ସେତେବେଳକୁ କୁଡ଼ାଲ ଆୟୋଗ ଯୋର୍‌ସୋର୍‌ରେ କାମରେ ଲାଗିଲାଣି ।

ଜୟପ୍ରକାଶଜୀ ୧୯୭୭ ରେ ଲୋକ ସମିତିର ଡାକରା ଦେବାପରେ ଅଖିଳ ଭାରତୀୟ ଖ୍ୟାତିସଂପନ୍ନ ଆଉ ଜଣେ କର୍ମୀ ତାଙ୍କ କର୍ମକ୍ଷେତ୍ରରେ ଚାରିଶହ ଗାଁରେ ଲୋକ ସମିତି ଗଢ଼ା ହେଇ କାମକରୁଛି ବୋଲି ବରାବାର କହିଲେ ଓ ନିୟମିତ କାର୍ଯ୍ୟ ବିବରଣୀ ମଧ୍ୟ ପଠାଇଲେ । ମାତ୍ର ୧୯୮୦ ରେ ଯେମିତି କଂଗ୍ରେସ (ଇ) କ୍ଷମତାକୁ ଆସିଛି ସେମିତି ଦେଖାଗଲା ଯେ, ଲୋକସମିତି ସବୁ ରାତାରାତି ଗ୍ରାମସମିତି ହେଇଯାଇଛି । ଲୋକସମିତି କୁଆଡ଼େ ଗଲା ବୋଲି ପଚାରି ଚିଠି ଦେଲେ ବି ଉତ୍ତର ମିଳିଲା ନାହିଁ ।

କେଉଁଝର ଜିଲ୍ଲାରେ ଅକ୍ସଫାମ୍ ୧୯୭୫ରେ ଏକ ପ୍ରକଳ୍ପ ନେଇ କାମ କରୁଥିଲା । ଜରୁରୀକାଳୀନ ଶାସନ ଜାରୀହେବା ପରେ ରାଜ୍ୟ ସରକାର ଉକ୍ତ ସଂସ୍ଥାକୁ ସେଠା କାମର ଦାୟିତ୍ୱ ସେଠା ଜିଲ୍ଲାପାଳଙ୍କୁ ହସ୍ତାନ୍ତରିତ କରି ସେଠୁ ଚବିଶ ଘଣ୍ଟା ଭିତରେ ବାହାରି ଯିବାକୁ କହିଥିଲେ ଓ ତାକୁ ତାହା କରିବାକୁ ହେଇଥିଲା । ବିଦେଶୀ ଦାତବ୍ୟ ଓ ସେବା ସଂସ୍ଥାମାନେ ଏ ଦେଶରେ ଭାରତ ସରକାରଙ୍କର ଅନୁଗ୍ରହରେ ରହି କାମ କରିଥା'ନ୍ତି । ଇନ୍ଦିରାଜୀଙ୍କ ଅମଳରେ ଏମାନଙ୍କ ଉପରେ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର କଡ଼ା କଟକଣା ରଖାଯାଇଥିଲା ଓ ସେଭଳି ଆଇନ ମଧ୍ୟ ଗଢ଼ା ହେଇଥିଲା । ସେ ଆଇନ ଏବେ ବି ବଳବତ୍ତର ରହିଛି । ଉପରୋକ୍ତ ସଂସ୍ଥାମାନେ ଓ ସେମାନଙ୍କଠାରୁ ସାହାଯ୍ୟ ପାଉଥିବା ସଂସ୍ଥାମାନଙ୍କର ଟିକିନିଖି ବିବରଣୀ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟରେ ରହେ । ବିଦେଶୀ ସାହାଯ୍ୟ ନେବାକୁ ହେଲେ ସ୍ୱେଚ୍ଛାସେବୀ ସଂସ୍ଥାକୁ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟରେ

ଏକ ଅନୁମତି ଓ ପ୍ରମାଣପତ୍ର ନେବାକୁ ହୁଏ । ମନ୍ତ୍ରଣାଳୟ ଅର୍ଥାତ୍ ସରକାର ଇଚ୍ଛା କଲେ ଏହା ରଦ୍ଦ କରିଦେଇପାରନ୍ତି । ଏହା ନ ମିଳୁଣୁ ମଧ୍ୟ କୌଣସି ସଂସ୍ଥାକୁ କଳା ଖାତାରେ ତାଲିକାଭୁକ୍ତ କରିଦେଇପାରନ୍ତି । ସର୍ବ ସେବା ସଂଘ ପ୍ରକୃତି ଅନେକ ସଂସ୍ଥାମାନଙ୍କର ଏଭଳି କଳାଖାତାରେ ନାଁ ଚଢ଼ିଥିଲା । ଯଦିଓ ସର୍ବ ସେବା ସଂଘ କେବେହେଲେ ବିଦେଶୀ ସାହାଯ୍ୟ ଚାହିଁ ନାହିଁ ।

ଏହିସବୁ ଯୋଗୁଁ ବିଦେଶୀ ଦାତବ୍ୟ ସଂସ୍ଥା ଓ ସେମାନଙ୍କଠାରୁ ସାହଯ୍ୟ ନେଉଥିବା ସ୍ୱଦେଶୀ ସେବା ସଂସ୍ଥାମାନେ ସନ୍ତ୍ରସ୍ତ ହେଇ ଚଳୁଥିବାର ଦେଖାଗଲା । ବିଦେଶୀ ସଂସ୍ଥାମାନଙ୍କର ସେତେ ବେଶି ଭୟ ନଥିଲା । କାରଣ ସରକାର ଖୁବ୍ ହେଲେ ସେମାନଙ୍କୁ ଏ ଦେଶରେ କାମ କରିବାକୁ ମନା କରିଦେବ । ମାତ୍ର ସ୍ୱଦେଶୀ ସଂସ୍ଥାମାନଙ୍କ ପିଛା କୁଡ଼ାଲ ଆୟୋଗ ଲଗେଇଦେବା ଠାରୁ ଆରମ୍ଭ କରି ମିଛ ମକଦ୍ଦମାରେ ପକେଇବା ଓ ଅନ୍ୟ ଅନେକ ପ୍ରକାରରେ ହଇରାଣ ସରକାର କରିବାର ଭୟ ଥିଲା । ଯଦିଓ ସଂସ୍ଥାମାନେ ଦୃଢ଼ ମନୋଭାବ ଧରିଥିଲେ ସରକାର ଏଭଳି ବେଶିକିଛି କରିପାରି ନଥା'ନ୍ତି । କୁଡ଼ାଲ ଆୟୋଗ ପାଲରେ ପଡ଼ିଥିବା ସବୁ ସଂସ୍ଥା ଅକ୍ଷତ ଶରୀରରେ ସେଥିରୁ ବର୍ତ୍ତି ବଞ୍ଚି ରହିଲେ । ତଥାପି ଭୟର ଏକ ହାୱା ଅନେକଙ୍କ ଭିତରେ ବ୍ୟାପିଗଲା । ପ୍ରଧାନ ଭୟ ହେଲା ଯେ, ଆର୍ଥିକ ସାହାଯ୍ୟ ବନ୍ଦ ହେଇଯିବ । କେବଳ ବିଦେଶୀ ସାହାଯ୍ୟ ନୁହେଁ ସରକାରୀ ସାହାଯ୍ୟ ବନ୍ଦ ହେବା ସହିତ ଏ ଭୟ ଅଧିକ ମାତ୍ରାରେ ଜଡ଼ିତ ରହିଲା । ଖଦୀ ଗ୍ରାମୋଦ୍ୟୋଗ ଆୟୋଗରୁ ସାହାଯ୍ୟ ନେଉଥିବା ଖଦୀ ସଂସ୍ଥାମାନେ ବିଶେଷ ଭାବରେ ଏଭଳି ତ୍ରାସର ଶିକାର ହେଲେ । ଓଡ଼ିଶାରେ ଉତ୍କଳ ଖଦୀ ମଣ୍ଡଳ ଏକ ପୁରୁଣା ସଂସ୍ଥା । ବାପା, ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ପ୍ରଭୃତି ଏହାର ସ୍ଥାପନା କରିଥିଲେ । ଏହାର ପରିଚାଳକ ମଣ୍ଡଳୀ ଜୟପ୍ରକାଶଜୀଙ୍କର ସମର୍ଥକ ଥିବାରୁ ଖଦୀ ଗ୍ରାମୋଦ୍ୟୋଗ ଆୟୋଗ ଏହାର ପରିଚାଳନା ଆପଣା ହାତକୁ ଓ ଏହାକୁ ସଂପୂର୍ଣ୍ଣ ବିଧ୍ୱସ୍ତ କରିଦେଲେ । ଏହି ପଦାର୍ଥପାଠ ଅନ୍ୟ ଅନେକ ସଂସ୍ଥାଙ୍କ ପ୍ରତି ବ୍ୟର୍ଥ ହେଇ ନଥିଲା । ୧୯୮୯ରେ କଂଗ୍ରେସ(ଇ) ର ରାଜତ୍ୱ ଯାଇ ଜନତା ଦଳ କେନ୍ଦ୍ରରେ କ୍ଷମତାକୁ ଆସିବାରୁ ଓ ଖଦୀ ଗ୍ରାମୋଦ୍ୟୋଗ ଆୟୋଗର ନୂଆ ଅଧ୍ୟକ୍ଷ ଓ ସଦସ୍ୟ ନିଯୁକ୍ତ ହେବାରୁ ଖଦୀ ମଣ୍ଡଳର ପରିଚାଳନା ପୁଣି ସଂସ୍ଥା ହାତକୁ ଆସିଲା ।

ଏହିସବୁ କାରଣରୁ କଂଗ୍ରେସ (ଇ) ର ମୌରୀରାୟ ଶାସନବେଳେ ସରକାରୀ ଓ ବିଦେଶୀ ସାହାଯ୍ୟ ନେଇ ଆପଣାର ଆତ୍ମସମ୍ମାନ ଓ ନିର୍ଭୀକତା ବଜାୟ ରଖିବା ଅସମ୍ଭବ ପ୍ରାୟ ହେଇ ପଡ଼ିଥିଲା । ସେଥିପାଇଁ ମୁଁ ଏ ନିର୍ଣ୍ଣୟରେ ପହଞ୍ଚିଲି ଯେ, ଏଭଳି ସାହାଯ୍ୟକୁ ପରିହାର କରି ସଂସ୍ଥାମାନେ ଚଳିବା ଉଚିତ । ମାତ୍ର ଅନେକ କର୍ମୀ ଓ ସଂସ୍ଥା ସେଭଳି କରିବାକୁ ପ୍ରସ୍ତୁତ ନଥିଲେ ।

ଏହାର ଆଉ ଏକ ପରିଣାମ ହେଲା ଯେ, ସଂସ୍ଥାମାନେ ଗାନ୍ଧୀଜୀ, ଜୟପ୍ରକାଶ ବା ବିନୋବାଜୀ ବା ଏପରିକି ନିଜର ଚିନ୍ତାଧାରା ଅନୁସାରେ କାମ ନ କରି ଦିଲ୍ଲୀ ବା ଅନ୍ୟତ୍ର ପ୍ରସ୍ତୁତ ହେଉଥିବା ଯୋଜନାକୁ କାର୍ଯ୍ୟକାରୀ କରିବାରେ ଲାଗିଲେ । ଅନ୍ୟପ୍ରକାର ଚିନ୍ତା ବା କାର୍ଯ୍ୟ କରିବାକୁ ସେମାନଙ୍କର ଫୁରସତ କମ ରହିଲା । ସରକାରୀ ସାହଯ୍ୟ କ୍ଷେତ୍ରରେ ସଂପୂର୍ଣ୍ଣଭାବେ ଏହା ହିଁ ହେଲା । ବିଦେଶୀ ସଂସ୍ଥା କ୍ଷେତ୍ରରେ ତ କିଛି ନିଜସ୍ୱ ଯୋଜନାର ସ୍ୱାଧୀନତା ରହିଥିଲା ।

ବର୍ତ୍ତମାନ ସାରା ପୃଥିବୀରେ ଗରିବ ଦେଶମାନଙ୍କରେ ଯେଉଁ ବିକାଶର ଆଦର୍ଶରେ ସରକାରୀ ଯୋଜନା ପ୍ରଣୟନ ଓ କାର୍ଯ୍ୟାନ୍ୱୟନ ଚାଲିଛି ତାହା ପଛରେ ପୁଞ୍ଜିବାଦୀ ଶୋଷଣମୂଳକ ଅର୍ଥ ବ୍ୟବସ୍ଥାକୁ କାଏମ୍ ରଖି ତାହାରି ଚଉହଦୀ ଭିତରେ ଦୁଃଖୀଦରିଦ୍ରଙ୍କର ଦୁଃଖ କିଛିଟା ଲାଘବ କରିବ, ସେମାନଙ୍କୁ ଟିକିଏ ମିଠା ଚଟେଇଦେଇ ବିଦ୍ରୋହରୁ ନିବୃତ୍ତ କରିବାର ବିଚାର ହିଁ ମୁଖ୍ୟତଃ ରହିଛି । ଆମ ଦେଶରେ ଏହି ନଗ୍ନ ପୁଞ୍ଜିବାଦ ଉପରେ ସମାଜବାଦର ଜାମା ପିନ୍ଧେଇ ଦିଆଯାଇଛି, ମାତ୍ର ତାର ଚରିତ୍ର ବଦଳି ନାହିଁ । ବିକାଶ କାର୍ଯ୍ୟକ୍ରମସବୁ ଏହି ଧାରାରେ ଚାଲିବା ସଙ୍ଗେ ସଙ୍ଗେ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ସେ ଘଣାରେ ଯୋଚିବାର ଉଦ୍ୟମ ବି ସାରା ପୃଥିବୀରେ ଚାଲିଛି । ଏ ଦେଶରେ ବି । ଇନ୍ଦିରାଜୀ ୧୯୭୫-୭୭ ଭିତରେ ଓ ଏହା ପରେ ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ପଙ୍ଗୁ କରିଦେବା ଚେଷ୍ଟାରେ ଥିଲେ । କାରଣ ଏକଛତ୍ର ଶାସନ ବାଟରେ ଯେ କୌଣସି ସ୍ୱାୟତ୍ତ ସଂଗଠନ ଏକ ସମ୍ଭାବିତ କଣ୍ଟା । ସମସ୍ତଙ୍କୁ ହଠାତ୍ ଧ୍ୱଂସ କରିବା ସମ୍ଭବ ନ ଥିଲା, ତେଣୁ ଅଧିକ ସ୍ୱାଧୀନଚେତା ସଂସ୍ଥାମାନଙ୍କୁ ଜବତ କରିବା ଓ ଅନ୍ୟମାନଙ୍କୁ ଭୟଭୀତ କରି ବଶ କରିବା ଚେଷ୍ଟାରେ ସେ ଥିଲେ ।

ରାଜୀବଜୀଙ୍କ ଅମଳରେ ଆଉ ଏକ ଫିକର ବାହାରିଲା – ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କୁ ଟଙ୍କାର ଲୋଭ ଦେଖେଇ ବଶ କରିବାର । ସପ୍ତମ ଯୋଜନାରେ ୮୦୦ କୋଟି ସରିକି ଟଙ୍କା ରଖାହେଲା ସ୍ୱେଚ୍ଛାସେବୀ ସଂସ୍ଥାମାନଙ୍କ ମାରଫତ୍‌ରେ ଖର୍ଚ୍ଚ କରାଯିବା ପାଇଁ । ଏ ଟଙ୍କା ଲୋଭରେ ସ୍ୱେଚ୍ଛାସେବୀ ସଂସ୍ଥାମାନେ 'ଶାନ୍ତଶିଷ୍ଟ' ରହି ସରକାରଙ୍କୁ ଅସନ୍ତୁଷ୍ଟ ନ କରି କାମ କରିବା ପାଇଁ ପ୍ରେରିତ ହେଲେ । ଦେଶରେ ଏଭଳି ସଂସ୍ଥାର ଛତୁ ଫୁଟିଗଲା । ଲାଭ ଶାସକ ଦଳକୁ ମିଳିବ ବୋଲି ଆଶା କରାଗଲା ।

ଏ ସବୁର ଆଉ ଏକ ବଡ଼ ଦୁଷ୍ପରିଣାମ ହେଲା ଯେ, ସଂସ୍ଥାମାନଙ୍କର ଲୋକଙ୍କ ସହିତ ସମ୍ପର୍କ ବଦଳିଗଲା । ସେମାନେ ଲୋକଙ୍କୁ ନେତୃତ୍ୱ ଦେବା ପରିବର୍ତ୍ତେ, ବିପଦବେଳେ ତାଙ୍କ ସାଙ୍ଗରେ କାନ୍ଧମିଳେଇ ଛିଡ଼ାହେବା ପରିବର୍ତ୍ତେ, ସେମାନଙ୍କ ଭିତରେ ଆତ୍ମବିଶ୍ୱାସ ଓ ଆତ୍ମନିର୍ଭରଶୀଳତା ବଢ଼ାଇବା ପରିବର୍ତ୍ତେ ଭିକାରୀ ମନୋଭାବ ବଢ଼େଇବାରେ ହିଁ ସାହାଯ୍ୟ କରୁଛନ୍ତି । ଏମାନଙ୍କ ପାଖରେ ବହୁତ ପଇସା ଅଛି ବିଚାରି ଲୋକ ସେମାନଙ୍କ ପାଖକୁ ଆସୁଛନ୍ତି । ଏମାନେ ବି ଲୋକଙ୍କ ପାଖକୁ ଆର୍ଥିକ ସାହାଯ୍ୟ ମାଗିବା ପାଇଁ ଯାଉ ନାହାନ୍ତି କି ଲୋକେ ବି ଦେଉନାହାନ୍ତି । ଓଲଟା ଲୋକେ ଭାବୁଛନ୍ତି ଏମାନଙ୍କ ପାଖରେ ତ ବହୁତ ପଇସା । ଆମେ ଦେବୁ କ'ଣ, ଆମେ କେମିତି କିଛି ପାଇବୁ ସେଇଟା ଆଗ ।

ଗାନ୍ଧୀଜୀ ରଚନାତ୍ମକ କାମକୁ ନୂଆ ସମାଜର ମୂଳଦୁଆ ପକାଇବାର ଏକ ବୈପ୍ଳବିକ କାମ ରୂପେ କଳ୍ପନା କରିଥିଲେ । ଖଦୀ ଗ୍ରାମୋଦ୍ୟୋଗ ଦ୍ୱାରା ନୂଆ ଅର୍ଥନୀତିର ମୂଳଦୁଆ, ମୌଳିକ ଶିକ୍ଷାଦ୍ୱାରା ନୂଆ ଶିକ୍ଷା ଓ ସଂସ୍କୃତିର, ହରିଜନ ସେବା ଓ ନାରୀ ଜାଗରଣ ଦ୍ୱାରା ସାମ୍ୟମୂଳକ ସମାଜର ଇତ୍ୟାଦି । ଏକ ଗଣତାନ୍ତ୍ରିକ ରାଷ୍ଟ୍ର ମଧ୍ୟ ଏସବୁ ଆଦର୍ଶ ଜଣା ଅଧିକେ ଗ୍ରହଣ କରିବାର କଥା, କରିବା ଉଚିତ ଓ କରିଥାଏ । ସେ ଅବସ୍ଥାରେ ଏସବୁ କାମ ପାଇଁ

ସରକାରୀ ସାହାଯ୍ୟ ନେବାରେ ନୀତି ଦୃଷ୍ଟିରୁ କୌଣସି ବାଧା ନାହିଁ, ମାତ୍ର ନିଜ ଆଦର୍ଶ ଓ ଆସ୍ଥାନରେ ଦୃଢ଼ ରହି ମିଳୁଥିବା ସାହାଯ୍ୟ ନେବା ଓ ସାହାଯ୍ୟ ଆଶାରେ ନିଜର ଆଦର୍ଶକୁ କ୍ଷୁଣ୍ଣ କରି ସରକାରର, ବିଶେଷ କରି ଦୁର୍ନୀତିଗ୍ରସ୍ତ ଓ ଗଣତନ୍ତ୍ର ବିରୋଧୀ ସରକାରର, ଆଶ୍ରିତ ହୋଇଯିବା ଭିତରେ ଆକାଶ ପାତାଳ ପ୍ରଭେଦ । ରଚନାତ୍ମକ କାମ ପାଇଁ ଏକ ଦୃଢ଼ ମେରୁଦଣ୍ଡ ଥିବା କର୍ମୀଗୋଷ୍ଠୀ ଲୋଡ଼ା ଯେ ପାଣିରେ ମାଛ ରହିବା ପରି ସମାଜଜୀବନରେ ଓତପ୍ରୋତ ହେଇ ରହିବ ଓ ସିଧାସଳଖ ସମାଜରୁ ଆହାର୍ଯ୍ୟ ଓ ପୁଷ୍ଟି ସଂଗ୍ରହ କରିବ । ସରକାରୀ ଓ ବିଦେଶୀ ସାହାଯ୍ୟ ଆଦି ଏଥିରେ ବାଧକ ହେଉଛି ।

ଚିଲିର (ଦକ୍ଷିଣ ଆମେରିକା) ଜଣେ ଅହିଂସାବାଦୀ ବନ୍ଧୁ ଫର୍ଣ୍ଣାଣ୍ଡୋ ଆଲିଆଗା ରୋହାସଙ୍କ ସହିତ କଥାବାର୍ତ୍ତା ହେଉଥିଲି । ସେଠି ଅଳ୍ପଦିନ ତଳଯାଏ ପ୍ରବଳ ଅତ୍ୟାଚାରୀ ପିନୋଶେଙ୍କ ଶାସନ ଚାଲିଥିଲା । ହଜାର ହଜାର ଲୋକଙ୍କୁ ପିନୋଶେ ମରେଇଥିଲା । ଅସଂଖ୍ୟ ଲୋକଙ୍କୁ ବନ୍ଦୀ କରାଯାଇ ସେମାନଙ୍କୁ ନାନା ପ୍ରକାରର ଯନ୍ତ୍ରଣା ଦିଆଯାଇଥିଲା ଅହିଂସାରେ ଆସ୍ଥାବାନ 'ଶାନ୍ତି ଓ ନ୍ୟାୟ' ଆନ୍ଦୋଳନର କର୍ମୀମାସେ ବି ଏଭଳି ଉତ୍ପୀଡ଼ନରୁ ଚାଡ଼ ପାଉନଥିଲେ । ଆଲିଆଗା -ରୋହାସ୍ ଉପରୋକ୍ତ ଆନ୍ଦୋଳନର ଜଣେ ମୁଖ୍ୟ ନେତା । ସେ କହିଲେ ଯେ, ତାଙ୍କର ସଂଗଠନରେ ଚାରି ହଜାର ଉପରେ ସୁସଂଗଠିତ କର୍ମୀ ଅଛନ୍ତି ଓ ସେମାନଙ୍କୁ ଯେଉଁ ତାଲିମ ଦିଆଯାଏ, ସେଥିରେ ଉତ୍ପୀଡ଼ନ ସହିବାର ତାଲିମ ବି ଅନ୍ତର୍ଭୁକ୍ତ । ନ ହେଲେ ତ ସେମାନେ ଭାଙ୍ଗି ପଡ଼ିବେ ଓ ଆନ୍ଦୋଳନରୁ ଓହରିଯିବେ । ଚିଲିର ଲୋକ ସଂଖ୍ୟା ଏକ କୋଟି ତିରିଶ ଲକ୍ଷ ହେବ । କେରଳର ଅଧାରୁ କମ୍ । ସେଠି ୪ ହଜାର ଉପରେ ଅହିଂସାରେ ବିଶ୍ୱାସୀ କର୍ମୀ ରହିବା ସାମାନ୍ୟ କଥା ନୁହେଁ ।

ପଶ୍ଚିମବଙ୍ଗରେ କଂଗ୍ରେସ (ଇ) ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥଶଙ୍କର ରାୟ ଇନ୍ଦିରାଜୀଙ୍କ ଇଙ୍ଗିତରେ ୧୯୬୯-୭୦ରେ ମାର୍କ୍ସବାଦୀ କମ୍ୟୁନିଷ୍ଟ ଦଳର ଅନ୍ୟୁନ ନଅ ଶହ କର୍ମୀଙ୍କୁ ନାନା ଉପାୟରେ ହତ୍ୟା କରାଇଥିଲେ । ମାତ୍ର ତାହା ସତ୍ତ୍ୱେ ଯେ ଦଳ ସେ କେବଳ ତିଷ୍ଠି ରହିଛି ତାହା ନୁହେଁ, ସେ ରାଜ୍ୟରେ ନିର୍ବାଚନରେ କ୍ଷମତା ମଧ୍ୟ ଦଖଲ କରି ବାରବର୍ଷ ହେଲା ଶାସନ ଚଳାଉଛି ।

କମ୍ୟୁନିଷ୍ଟ ଦଳର ଆଦର୍ଶ ସହିତ ମୁଁ ଏକମତ ନୁହେଁ । ମାତ୍ର କଥା ହେଉଛି ଯେ, ଏକ ବୈପ୍ଳବିକ ପରିବର୍ତ୍ତନ ପାଇଁ ଏହିପରି ପ୍ରାଣପାତ କରିବାର ପ୍ରସ୍ତୁତି ବିନା କାମ ହୁଏ ନାହିଁ । ଗାନ୍ଧୀଜୀ ସ୍ୱାଧୀନତା ଆନ୍ଦୋଳନ ବେଳେ ସତ୍ୟାଗ୍ରହୀଙ୍କଠାରୁ ଏହା ହିଁ ଆଶା କରୁଥିଲେ । ସର୍ବୋଦୟ ସମାଜ ଗଢ଼ିବା ପାଇଁ ଯେଉଁସବୁ ଶକ୍ତି ସହିତ ଅହିଂସ ସଂଗ୍ରାମ କରିବାକୁ ହେବ ସେସବୁ ସିଦ୍ଧାର୍ଥଶଙ୍କର ବା ପିନୋଶେଙ୍କ ପରି ହିଁ । ମାତ୍ର କେମିତି ଏକ ଭ୍ରାନ୍ତ ଧାରଣା ସୃଷ୍ଟି ହେଇଛି ଯେ, ଅହିଂସା ଆନ୍ଦୋଳନ ବେଶ ନିଜର ଚମଡ଼ା ବଞ୍ଚେଇ ଚଳେଇ ହେବ । ୧୯୩୪ରେ ଗାନ୍ଧୀଜୀଙ୍କର ଓଡ଼ିଶାରେ ହରିଜନ ପଦଯାତ୍ରାବେଳର ଏକ ଘଟଣା ମନେପଡୁଛି । ଭଦ୍ରଖରେ ଗାନ୍ଧୀଜୀଙ୍କର ଶେଷ ରହଣୀରେ କଲିକତାରୁ କେତେକ କଂଗ୍ରେସକର୍ମୀ ତାଙ୍କୁ ଭେଟିବାକୁ ଆସିଥା'ନ୍ତି । ଗାନ୍ଧୀଜୀ ଅଳ୍ପଦିନ ଆଗରୁ ଆଇନ ଅମାନ୍ୟ ଆନ୍ଦୋଳନ ମୁଲତବୀ କରିଦେଇ ସମସ୍ତ ସତ୍ୟାଗ୍ରହୀଙ୍କୁ ଗାଁକୁ ଯାଇ ରଚନାତ୍ମକ କାମରେ ଲାଗିପଡ଼ିବାକୁ କହିଥା'ନ୍ତି । ଏ ବଙ୍ଗାଳୀ ବନ୍ଧୁମାନଙ୍କର ପ୍ରଶ୍ନ ଥାଏ

ଯେ, ଗାଁରେ ବସି ସୂତା କାଟିଲେ, ରାସ୍ତା ଝାଡୁଦେଲେ ବା ନିଶାନିବାରଣ କଲେ ବ୍ରିଟିଶ୍ ସାମ୍ରାଜ୍ୟ କିପରି ହଟିବ ?

ଉତ୍ତରରେ ଗାନ୍ଧୀଜୀ ଏକ ଉପାଖ୍ୟାନ ଶୁଣାଇଲେ । ଏକ ସିଂହୀ ପେଟରେ ଛୁଆ ଥା'ନ୍ତି । ତାକୁ ଏକ ଶିକାରୀ ଗୋଡ଼ାଇବାବେଳେ ସେ ପଳାଇ ଯାଉ ଯାଉ ଗୋଟିଏ ଛୁଆ ଖସିପଡ଼ିଲା । ଏକ ମେଣ୍ଢାଦଳ ସେଠି ଚରୁଥିଲେ । ସେଥିରେ ସେ ଛୁଆ ମିଶି ମେଣ୍ଢାମାନଙ୍କଠାରୁ ଦୁଧ ପିଇ ବଡ଼ ହେଲା । ସେ ନିଜକୁ ମେଣ୍ଢା ବୋଲି ବିଚାରେ । ବିଲୁଆ କୁକୁର ଗୋଡ଼ାଇଲେ ଦୌଡ଼ି ପଳାଏ ।

ଦିନେ ଏକ ସିଂହ ସେଠିକି ଆସି ଯାକୁ ଦେଖି ଆଶ୍ଚର୍ଯ୍ୟ ମଣିଲା । ଏଇଟା ସିଂହ ହୋଇ କଣ ମେଣ୍ଢା ପରି ହେଉଛି ? ସେ ଯାଇ ତା'ର କାନ ଧରି ତାକୁ ପାଣି ପାଖକୁ ନେଇ ତା'ର ଚାଇ ଦେଖାଇ କହିଲା, "ହେଇ ଦେଖ, ମୁଁ ଯେ ତୁ ସେ । ତୁ ମେଣ୍ଢାଙ୍କ ପରି ହେଉଛୁ ?" ସେଠୁ ସେ ଦୁହେଁଯାକ ସିଂହ କୁଦାମାରି ବଣକୁ ଚାଲିଗଲେ ।

ଏ ଉପାଖ୍ୟାନ କହିସାରି ଗାନ୍ଧୀଜୀ କହିଲେ, "ଏ ଦେଶର ଜନସାଧାରଣ ସିଂହ । ମାତ୍ର ସେମାନଙ୍କୁ ବୁଝେଇ ଦିଆହେଇଛି ଯେ, ସେମାନେ ମେଣ୍ଢା । ତମେ ଯାଇ ଗାଁରେ ବସି ସିଂହପରି ଚଳିବ । ତା'ହେଲେ ତମକୁ ଦେଖି ଲୋକେ ବି ନିଜର ପ୍ରକୃତ ସ୍ୱରୂପ ଚିହ୍ନିବେ । ତା'ପରେ ବ୍ରିଟିଶ୍ ସାମ୍ରାଜ୍ୟକୁ ହଟେଇବାକୁ ଆଉ ଅଧିକ ବେଳ ଲାଗିବ ନାହିଁ ।"

ରଚନାତ୍ମକ କାମର ଏ ମର୍ମକୁ ଆମେ ପ୍ରାୟ ସମସ୍ତେ ଭୁଲିଯାଇଛୁ । ସ୍ୱାଧୀନତା ପରେ ବି, ସବୁଦିନେ, ମଣିଷ ସମାଜର ସର୍ବତ୍ର ଓ ଆମ ଦେଶରେ ବି, ନିର୍ଭୀକତା ସବୁଗୁଣର ମୂଳଦୁଆ ହୋଇ ରହିବ । ଇନ୍ଦିରାଜୀଙ୍କର ରାଜୁତିବେଳେ ଏହା ସମସ୍ତେ ହାଡ଼େହାଡ଼େ ଅନୁଭବ କଲୁ । ଏବେ ସେ ଯୁଗ ସରିଥିଲେ ବି ସମାଜ ବଦଳିବା ଓ ସେଥିରୁ ଶୋଷଣ, ଅତ୍ୟାଚାର ଓ ବିଷମତା ଲୋପ ଏବେ ବି ବାକି ଅଛି । ସେଥିପାଇଁ ନିର୍ଭୀକତାର ଆବଶ୍ୟକତା ଏବେ ବି ସର୍ବପ୍ରଥମରେ ।

## ଆଜିର ପରିସ୍ଥିତି

ଏହା ପରେ ଅବସ୍ଥା ଅତି ଦ୍ରୁତ ଗତିରେ ବଦଳି ଚାଲିଲା । ରାଜୀବ ଗାନ୍ଧୀଙ୍କ ସହିତ ମତଭେଦ ହେବାରୁ ବିଶ୍ୱନାଥ ପ୍ରତାପ ସିଂହ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ଜନ ମୋର୍ଚ୍ଚା ଗଢ଼ିଲେ । ସେ ଯେଉଁ ଦୁର୍ନୀତିର ଅନୁସନ୍ଧାନର ପ୍ରଶ୍ନ ନେଇ ଅଲଗା ହେଲେ ଓ ତାଙ୍କର ଆଭିମୁଖ୍ୟରେ ରାଜନୀତିରେ ନୈତିକତାର ଆବଶ୍ୟକତା ଉପରେ ଯେପରି ଜୋର୍ ଦେଲେ ସେଥିରେ ତାଙ୍କୁ ବିପୁଳ ଜନସମର୍ଥନ ମିଳିଲା । ଏହା ଦେଖି ଖୁସି ଲାଗିଲା ଯେ,ଭାରତର ଜନସାଧାରଣଙ୍କ ଭିତରେ ଏବେ ବି ନୀତିମତା ପ୍ରତି ଆକର୍ଷଣ ରହିଛି । ଧୂର୍ତ୍ତତାବାଦ ସାରା ଦେଶକୁ ଗ୍ରାସ କରିନାହିଁ । ଜନମୋର୍ଚ୍ଚା ପ୍ରଥମେ କଂଗ୍ରେସ (ଇ) ଭିତରେ ଥିଲା, ପରେ ସେଥିରୁ ମଧ୍ୟ ବିଶ୍ୱନାଥ ପ୍ରତାପ ସିଂହ ଓ ତାଙ୍କର ସାଥୀମାନେ ବାହାରିଆସି ବିରୋଧୀ ଦଳମାନଙ୍କ ସହିତ ସଂଶ୍ଲିଷ୍ଟ ହେଲେ ।

ବିଶ୍ୱନାଥ ପ୍ରତାପଙ୍କର ଅଭ୍ୟୁଦୟରେ ସାରା ଦେଶରେ ଯେମିତି ଏକ ଚାଞ୍ଚଲ୍ୟ ସୃଷ୍ଟି ହେଲା ସେମିତି ସର୍ବୋଦୟର ସାଥୀମାନଙ୍କ ଭିତରୁ ମଧ୍ୟ କେତେକ ତାଙ୍କଠାରେ ଏକ ନୂଆ ଆଶାର କିରଣ ଦେଖିବାକୁ ପାଇଲେ । ଆଚାର୍ଯ୍ୟ ରାମମୂର୍ତ୍ତି ତ ଜନ ମୋର୍ଚ୍ଚାରେ ଯାଇ ଯୋଗ ହିଁ ଦେଇଦେଲେ । ସେମାନେ ତାଙ୍କୁ ଏକ ଜନଆନ୍ଦୋଳନ ଗଢ଼ି ତୋଳିବାର ବିପୁଳ ସଂଭାବନା ଦେଖାଗଲା । ମାତ୍ର ପ୍ରଥମରେ ମୁଁ ଏସବୁ ପରିଣତିରେ ବିଶେଷ ଉତ୍ସାହ ଅନୁଭବ କରିନଥିଲି ।

ବିରୋଧୀ ଦଳମାନେ ଏକତ୍ରିତ ହୋଇ ନିର୍ବାଚନ ଲଢ଼ିବା କଥା ରାଷ୍ଟ୍ରୀୟ ସ୍ତରରେ ଉଠିବାର ବହୁ ପୂର୍ବରୁ ଓଡ଼ିଶାରେ ଆମେ ସବୁ ସର୍ବୋଦୟ ମଣ୍ଡଳର ଆନୁକୂଲ୍ୟରେ ବିଭିନ୍ନ ଉପଲକ୍ଷ୍ୟରେ ବିରୋଧୀ ଦଳମାନଙ୍କୁ ଏକାଠି କରିବା ଆରମ୍ଭ କରିଥିଲୁ । ମାତ୍ର ସେମାନେ ଏକାଠି ହୋଇ ନିର୍ବାଚନ ଲଢ଼ିବା ଓ ସେ ଦିଗରେ ସେମାନଙ୍କୁ ସାହାଯ୍ୟ କରିବା କଥା ପ୍ରଥମେ ମୋ ମନକୁ ଛୁଇଁ ନଥାଏ । ଜେ.ପି. ଯେମିତି କରିଥିଲେ ସେମିତି ନିର୍ଦ୍ଦଳୀୟ ନେତୃତ୍ୱରେ ଏକ ଜନଆନ୍ଦୋଳନ କିପରି ଗଢ଼ିତୋଳିହେବ ତାରି କଳ୍ପନା ମୋ ମନରେ ଖେଳୁଥାଏ । ସେଥିରେ ଦିଲ୍ଲୀରେ ପଞ୍ଜାବ ଓ ବୋଫର୍ସ ନେଇ ଯେଉଁ ଦୁଇଦିନିଆ ସତ୍ୟାଗ୍ରହ ହେଲା ତାହାକୁ ସାରାଦେଶରେ ଗାଁ ଗାଁ ଯାଏ ପ୍ରସାରିତ କରିବାର ପରାମର୍ଶ ମୁଁ ଦେଇଥିଲି । ତାହାର ବିରୋଧ ନହେଲେ ମଧ୍ୟ ତାହା କାର୍ଯ୍ୟକାରୀ କରିବାରେ ବିଶେଷ ଉତ୍ସାହ ଦେଖାଗଲା ନାହିଁ । ୫୯ କ ସମ୍ବିଧାନ ସଂଶୋଧନର ବିରୋଧ କରିବା ପାଇଁ କଟକ ଟାଉନ ହଲରେ ଏକ ସଭାର ଆୟୋଜନ ହୋଇଥିଲା । ସେଥିରେ ହରିବାବୁ (ଅବସର ପ୍ରାପ୍ତ ବିଚାରପତି ହରିହର ମହାପାତ୍ର) ପ୍ରଥମେ ଏକଥା ଉଠେଇଲେ ଯେ, ବର୍ତ୍ତମାନର ଶାସନ ଅସହ୍ୟ ହେଲାଣି ଓ ତାକୁ ହଟେଇବା ପାଇଁ ବିରୋଧୀ ଦଳମାନେ ଏକାଠି ହେବା ଚାହି । ସେତେବେଳେ ବି ମୁଁ ତାଙ୍କ କଥାର ଗୁରୁତ୍ୱ ଉପଲବ୍ଧି କରି ନ ଥିଲି । ଅସଲ କଥା ମୁଁ କଂଗ୍ରେସ (ଇ) ଶାସନର ବିରୋଧ କରିବାରେ ପୂରାମାତ୍ରାରେ ଆଗୁଆ ଥିଲେ ମଧ୍ୟ ବିରୋଧୀ ଦଳମାନଙ୍କର ଚରିତ୍ର ଓ ଭୂମିକା ବିଷୟରେ ସନ୍ଦିହାନ ଥିଲି । ରାଜୀବ ସରକାର ଯେ ସାଧାରଣ ନିର୍ବାଚନ କରାଇବ ସେ ବିଷୟରେ ମୋର ଘୋର ସନ୍ଦେହ ଥିଲା । ମୁଁ ଅନୁମାନ କରୁଥିଲି ଯେ, କୌଣସି ନା କୌଣସି ବାହାନା ଦେଖାଇ ରାଜୀବ ଗାନ୍ଧୀ ସାଧାରଣ ନିର୍ବାଚନକୁ ନିର୍ଦ୍ଦିଷ୍ଟ ବା ଅନିର୍ଦ୍ଦିଷ୍ଟ କାଳପାଇଁ ମୁଲତବୀ କରିଦେବେ । ସର୍ବ ସେବା ସଂଘରେ ମଧ୍ୟ ମୁଁ ମୋର ଏହି ମତ ଉପସ୍ଥାପିତ କରି ସୂଚନା ଦେଇଥିଲି ଯେ, ସେପରି ପରିସ୍ଥିତିରେ ସରକାରର ଏଭଳି ପଦକ୍ଷେପ ବିରୋଧରେ ସତ୍ୟାଗ୍ରହ କରିବା ଅପରିହାର୍ଯ୍ୟ କର୍ତ୍ତବ୍ୟ ହେବ ଓ ସେଥିପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ ।

ଅସଲ କଥା ଏକଛତ୍ରବାଦ ପ୍ରତିଷ୍ଠା କରିବା ବାବଦରେ କଂଗ୍ରେସ (ଇ) ର ଶକ୍ତି ଓ ମନୋବଳର କଳନାରେ ମୋର ଭୁଲ ହୋଇଥିଲା । ତାହା ମୁଁ ବାସ୍ତବିକ ଯେତେ ତାହାଠାରୁ ଅଧିକ ଭାବିଥିଲି । ଏହାର ଅର୍ଥ ନୁହେଁ ଯେ, କଂଗ୍ରେସ (ଇ) ଏକଛତ୍ରବାଦ ଆଡ଼କୁ ଆଗେଇନଥିଲେ । ମାତ୍ର ସେ ଲକ୍ଷ୍ୟ ହାସଲ ପାଇଁ ତା'ର ଶକ୍ତି ଓ ମନୋବଳ ଯଥେଷ୍ଟ ନଥିଲା । ଇନ୍ଦିରାଜୀଙ୍କଠାରୁ ରାଜୀବଜୀ ବହୁତ କମ୍ ଚତୁର ଓ ଦକ୍ଷ ଥିଲେ । ଏହାଛଡ଼ା ବିରୋଧୀ ଦଳମାନେ

ମେଣ୍ଟ ଆଡ଼କୁ ଆଗେଇଲେ । ସେମାନେ ନିଜ ନିଜର ନିର୍ବାଚନ ଇସ୍ତାହାରମାନଙ୍କରେ ଯେଉଁସବୁ ଲକ୍ଷ୍ୟ ଘୋଷଣା କଲେ ସେଥିରେ ବହୁତ ସାମ୍ୟ ଥିଲା । ବାମପନ୍ଥୀ ମାର୍କ୍ସବାଦୀ କମ୍ୟୁନିଷ୍ଟ ଦଳ ଓ ଭାରତୀୟ ଜନତା ଦଳ ବାମପନ୍ଥୀ ଓ ଦକ୍ଷିଣପନ୍ଥୀ ରୂପେ ଚିତ୍ରିତ ହେଇ ବିପରୀତ ମୁଖରେ ଗତି କରିବାକୁ ଚାହାନ୍ତି ବୋଲି କୁହାଯାଉ ଥିଲେ ବି ସେମାନଙ୍କର ଇସ୍ତାହାରମାନଙ୍କରେ ଗୁରୁତ୍ୱପୂର୍ଣ୍ଣ ରାଜନୀତିକ ଓ ଆର୍ଥନୀତିକ ପ୍ରଶ୍ନ ଉପରେ ବିସ୍ମୟଜନକ ସାମ୍ୟ ଥିଲା । ଅସଲ କଥା ରାଜନୀତିରେ ପରମ୍ପରାଗତ ବାମଦକ୍ଷିଣ ଭେଦ ନିରର୍ଥକ ହେଇଯାଇଛି । ଯେଉଁସବୁ ପ୍ରଶ୍ନକୁ ଭିତ୍ତି କରି ସେସବୁ ଭେଦ ସୃଷ୍ଟି ହେଇଥିଲା ସେ ସବୁକୁ ଦେଖିବାର ଢଙ୍ଗ ବଦଳି ଯାଇଛି, ଏହା ତାର ପ୍ରମାଣ ।

ଏସବୁ ଇସ୍ତାହାରରେ ସର୍ବୋଦୟ ଆନ୍ଦୋଳନ ସ୍ୱାଗତଯୋଗ୍ୟ ହେବା ଭଳି ଅଧିକାଂଶ କଥା ଥିଲା । ମାତ୍ର ୧୯୭୭ ଭଳି ଏବେ ମଧ୍ୟ ମୁଁ କେବେ ଭାବୁନଥିଲି ଯେ,ବିରୋଧୀ ଦଳର ସରକାର ଆସିଲେ ଆମ ପେଁକାଳୀ ବଜେଇ ଦେବେ । ଗଣତନ୍ତ୍ରର ରାଜନୀତି ଓ ସଂସ୍ଥାମାନଙ୍କୁ ଯେ ମୋଡ଼ିମୋଡ଼ି ବିକୃତ କରିଦିଆଯାଇଛି ସେତକ ମୋଟାମୋଟି ସଜାଡ଼ି ଦେଇ ପାରିବେ ଓ ତାହା ଏକ ବଡ଼ ଅବଦାନ ହେବ ବୋଲି ମୁଁ ଭାବୁଥିଲି । ମୋର ବିଶ୍ୱାସ ଯେ, ନୂଆ ସରକାରର ଚରିତ୍ର ପୁରୁଣାଠାରୁ ଖୁବ୍ ବେଶି ଭିନ୍ନ ନ ହେଲେ ବି ସରକାର ବଦଳିବାଟା ହିଁ ଗଣତନ୍ତ୍ରକୁ ଦୃଢ଼ କରିଥାଏ ।

ନିର୍ବାଚନରେ କ'ଣ କରାଯିବ ଏକଥା ନେଇ ସର୍ବୋଦୟ ଆନ୍ଦୋଳନରେ ବହୁତ ବିତର୍କ ଚାଲିଥିଲା । ଚୁପ୍‌ଚାପ୍ ରହିବା ନା କେବଳ ଭଲ ଲୋକଙ୍କୁ ଭୋଟ ଦେବାପାଇଁ ସାଧାରଣ ଭାବରେ କହିବା, କାହାରି ସପକ୍ଷ ବିପକ୍ଷରେ କହିବା ନାହିଁ, ନା ସିଧାସଳଖ କଂଗ୍ରେସ (ଇ) ହଟାଓ କଥା କହିବା, ଏହା ନେଇ ପ୍ରବଳ ମତଭେଦ ଥିଲା । ନୀରବ ରହିବା ପକ୍ଷରେ ଥିବା ବନ୍ଧୁମାନେ ଅତି ଅଳ୍ପ ସଂଖ୍ୟାରେ ଥିଲେ ବି ସେମାନଙ୍କର ମତ ସମ୍ମାନ ଦିଆଯାଇ ଏକ ସର୍ବସମ୍ମତ ପନ୍ଥା ଖୋଜା ହେଲା । ଶେଷକୁ ହେଲା ଯେ, ଲୋକସେବକମାନେ ନିଜର ନିଷ୍ଠାସମୂହ ପ୍ରତି ଦୃଢ଼ ରହି ନିଜ ନିଜର ବିବେକ ଅନୁସାରେ କାମ କରିବେ ।

ସର୍ବପ୍ରଥମ ଉତ୍କଳ ସର୍ବୋଦୟ ମଣ୍ଡଳ "କଂଗ୍ରେସ (ଇ) ହଟାଓ" ପ୍ରସ୍ତାବ ଗ୍ରହଣ କଲା । ଏଥିରେ କୁହାଗଲା ଯେ, ଗ୍ରାମସ୍ୱରାଜ ଆମମାନଙ୍କର ଲକ୍ଷ୍ୟ ଭାବରେ ରହିଛି ଓ ସେଥିପାଇଁ କାମ କରିବାକୁ ହେବ । ମାତ୍ର ଗ୍ରାମସ୍ୱରାଜ୍ୟ ଆଡ଼କୁ ଆଗେଇବା ବାଟରେ ବର୍ତ୍ତମାନର ଗଣତନ୍ତ୍ର ବିରୋଧୀ ଓ ଲୋକହିତ ବିରୋଧୀ ସରକାରକୁ ହଟେଇବା ଏକ ଅପରିହାର୍ଯ୍ୟ ସୋପାନ ଓ ତେଣୁ ସେ ଦିଗରେ ବିରୋଧୀ ଦଳମାନଙ୍କୁ ସମର୍ଥନ ଜଣାଇବାକୁ ହେବ । ଏହାଛଡ଼ା ଏଥିରେ ଏକଥା ଥିଲା ଯେ, କେତେକ ମୌଳିକ ପରିବର୍ତ୍ତନର ମହତ୍ତ୍ୱ ବିଷୟରେ, ଯଥା କ୍ଷମତାର ବିକେନ୍ଦ୍ରୀକରଣ, ଗ୍ରାମ ଅର୍ଥନୀତିକୁ ସବଳ କରିବା, ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଉପରେ କଟକଣା, ପ୍ରଚାର ମାଧ୍ୟମମାନଙ୍କୁ ସ୍ୱାୟତ୍ତତା ଦେବା, ବିଚାର ବିଭାଗର ସ୍ୱାଧୀନତା ଦୃଢ଼ କରିବା ଆଦିର ମହତ୍ତ୍ୱ ବିଷୟରେ ଜନସାଧାରଣଙ୍କୁ ସଚେତନ କରିବା ନିର୍ବାଚନ ପ୍ରଚାରର ଏକ ଅଙ୍ଗ ହେବ । କାରଣ ଆମେ ବିଚାରୁଥିଲୁ ଯେ, ଏସବୁ ଭିତରୁ ଅନେକ କଥା କରିବେ ବୋଲି ବିରୋଧୀ ଦଳମାନେ

ପ୍ରତିଶ୍ରୁତି ଦେଇଥିଲେ ବି ଜନମତର ଚାପ ଯେତିକି ପ୍ରବଳ ହେବ ସେତିକି ପରିଣାମରେ ସେସବୁ ପ୍ରତିଶ୍ରୁତି କାର୍ଯ୍ୟକାରୀ ହେବାର ସମ୍ଭାବନା ବଢ଼ିବ । ଏସବୁ ପ୍ରଶ୍ନ ବିଷୟରେ ଜନଚେତନା ସୃଷ୍ଟି କରିବା ବି ଏକ ଜରୁରୀ କାମ ବୋଲି ଆମେ ସମସ୍ତେ ଅନୁଭବ କଲୁ । ଏହାପରେ ଓଡ଼ିଶା ଦେଖାଦେଖି ବିହାର, ଉତ୍ତରପ୍ରଦେଶ ଓ ମହାରାଷ୍ଟ୍ରରେ ରାଜ୍ୟ ସର୍ବୋଦୟ ମଣ୍ଡଳମାନେ ମଧ୍ୟ ଉପରୋକ୍ତ ମର୍ମରେ ପ୍ରସ୍ତାବ କଲେ । ଏଥର ନିର୍ବାଚନରେ ମୁଁ ରାଜୀବ ଗାନ୍ଧୀଙ୍କ ବିରୋଧରେ ଛିଡ଼ା ହେଇଥିବା ରାଜମୋହନ ଗାନ୍ଧୀଙ୍କୁ ସାହାଯ୍ୟ କରିବାପାଇଁ ଶିବପ୍ରସାଦ ଜେନାଙ୍କ ସହିତ ଆମେଠି ନିର୍ବାଚନ ମଣ୍ଡଳୀକୁ ଗଲି । ସେଠି ଜାଲ ଭୋଟ ଓ ଗୁଣ୍ଡାମୀ ସାହାଯ୍ୟରେ ରାଜମୋହନଙ୍କୁ ପରାସ୍ତ କରାଗଲା । ମାତ୍ର ପ୍ରକୃତରେ ତାଙ୍କର ସେଠି ନୈତିକ ବିଜୟ ହିଁ ହେଲା । କଂଗ୍ରେସ (ଇ) ର ହାରିବା ବା ବିରୋଧୀ ଦଳମାନଙ୍କର ଜିତିବା ଅପେକ୍ଷା ଏ ନିର୍ବାଚନର ସବୁଠାରୁ ବଡ଼ ଘଟଣା ହେଲା ମାତ୍ର ଅଳ୍ପ ହେଲେ ବି ଜନଶକ୍ତିର ଅଭିବ୍ୟକ୍ତି । ନିର୍ବାଚନରେ ଟଙ୍କାପଇସା, ଠେଙ୍ଗାବାଡ଼ି, ମିଥ୍ୟା ପ୍ରତିଶ୍ରୁତି ଆଦି ବଳରେ ଭୋଟ ହାସଲ କରିବାର ଚେଷ୍ଟା ବରାବର କରାଯାଏ ଓ ଗଣତନ୍ତ୍ରକୁ ଏହିରୂପେ ଭ୍ରଷ୍ଟ କରାଯାଏ ଏହା ବରାବର ଆମେ ଦେଖିଆସୁଛୁ । ମାତ୍ର ୧୯୬୭ରେ ଯେପରି ସେହିପରି ପୁଣି ୧୯୮୯ରେ ଟଙ୍କା ବା ଠେଙ୍ଗାବଳ କାମ କଲାନାହିଁ । ମନଭୁଲାଣିଆ ପ୍ରଚାର ବିଶେଷ କାମ ଦେଲା ନାହିଁ । ଅଧିକାଂଶ ଲୋକ ଯାହା ଉଚିତ ମନେକଲେ ତାହା କଲେ । ପୁଣି କ'ଣ କରିବା ଉଚିତ ତାହା ନିର୍ଣ୍ଣୟ କରିବାରେ କେବଳ ଜାତି ବା ଗୋଷ୍ଠୀଗତ ପ୍ରଶ୍ନ ବା ଆଞ୍ଚଳିକ ସ୍ୱାର୍ଥ ଅପେକ୍ଷା, ବା ତାହା ସହିତ, ସେମାନେ ଯେଉଁଟାକୁ ବୃହତ୍ତର ପ୍ରଶ୍ନ ବୋଲି ବିଚାରିଲେ ଅଧିକସଂଖ୍ୟକ ନାଗରିକ ଭୋଟ ଦେବା ବେଳେ ସେ କଥା ବିଚାରକୁ ନେଲେ । ଭାରତବାସୀଙ୍କର ଏ ରାଜନୀତିକ ପରିପକ୍ୱତା ଏକ ଅତି ମୂଲ୍ୟବାନ ସଂପଦ । ଏହାକୁ ପାଣ୍ଠି କରି ଏକ ନୂଆ ଭବିଷ୍ୟତ ଆଡ଼କୁ ଆମକୁ ଆଗେଇବାକୁ ହେବ ।

ମୁଁ ଓ ଅନ୍ୟ କେତେକ ମୁଖ୍ୟ ସାଥୀ ଅତିମାତ୍ରାରେ ରାଜନୀତିକ ହେଇ ଗଲୁଣି ବୋଲି ଅନ୍ୟ କେତେକ ସାଥୀ ଅଭିଯୋଗ କରନ୍ତି । ଆମେ ରଚନାତ୍ମକ କାମ ପ୍ରତି ଦୃଷ୍ଟି ଦେଉନାହୁଁ ବା କରୁନାହୁଁ ବୋଲି ସେମାନେ ବିଚାରନ୍ତି । ପ୍ରକୃତରେ କ'ଣ ଆମକୁ ରାଜନୀତିର ନିଶା ଘୋଟିଗଲା ? ଏ କଥା ଅନେକ ଥର ଭାବି ଦେଖିଛି । ସେଥିରେ ସନ୍ଦେହ ନାହିଁ ଯେ, ଏଭଳି ବନ୍ଧୁ ସାଥୀ ଅଛନ୍ତି ଯେଉଁମାନେ କୌଣସି ନା କୌଣସି ନିର୍ଦ୍ଦିଷ୍ଟ କ୍ଷେତ୍ର ବାଛି ନେଇ ବହୁତ ମୂଲ୍ୟବାନ କାମ କରୁଛନ୍ତି । ମୋ'ଠାରୁ ଶହେ ଗୁଣରେ ବେଶୀ । ଏସବୁ କାମ ଅମୂଲ୍ୟ । ନୂଆ ସମାଜ ଗଢ଼ିବାରେ ସାହାଯ୍ୟ କରିବା ଭଳି ବହୁତ କିଛି ନୂଆ ତଥ୍ୟ ଓ ଉପାଦାନ ଏ କାମରୁ ମିଳୁଛି । ଜୀବନର ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ସମସ୍ୟାକୁ ହାତକୁ ନେଇ ସେ ସବୁର ସମାଧାନର ବାଟ ଖୋଜିବାକୁ ହେବ । ଏହା ବିନା ସମାଜ ଆଗେଇ ପାରିବ ନାହିଁ । ଏକ ରାଜନୀତିକ ବିପ୍ଳବ ହୋଇ କ୍ଷମତା ହସ୍ତାନ୍ତର ହେଇଗଲେ ତେଣିକି ସବୁ ପରିବର୍ତ୍ତନ କ୍ଷମତା ବଳରେ ହେଇଯିବ, ଏ ଧାରଣା ବେକାର ସାବ୍ୟସ୍ତ ହେଇ ସାରିଲାଣି । ମାତ୍ର କ୍ଷମତାର ସଂପର୍କ ବି ବଦଳିବା ଦରକାର । ସମାଜରେ ବାସ କରୁଥିବା ବିଭିନ୍ନ ଶ୍ରେଣୀ ଓ ଗୋଷ୍ଠୀର ପରସ୍ପର ସମ୍ବନ୍ଧ

ଆଜି ଯାହା ରହିଛି ତାହାକୁ ନ ବଦଳାଇ ସମାଜ ବଦଳାଇ ହେବ ନାହିଁ । ସମାଜର ରାଜନୀତିକ ଢାଞ୍ଚାକୁ ମଧ୍ୟ ବଦଳାଇବାକୁ ହେବ । ସେଥିରେ ହାତ ନ ଦେଇ ତାହାକୁ ବଦଳାଇ ହେବ ନାହିଁ । ଗାନ୍ଧୀଜୀଙ୍କ ସମେତ ଅନେକେ ଏଭଳି ଏକ ବିଶ୍ୱାସ ସମାଜର ସ୍ୱପ୍ନ ଦେଖିଛନ୍ତି ଯେଉଁଥିରେ ଶାସନର ହିଁ ଆବଶ୍ୟକତା ରହିବ ନାହିଁ ବା ଏତେ କାମ ରହିବ ଯେ ତାହା ନଥିବାପରି । ମହାଭାରତରେ କହିବା ପରି, 'ସ୍ୱଭାବେନ ତୁ ଧର୍ମଜ୍ଞାଃ, ତେ ରକ୍ଷଂତି ପରସ୍ପରମ୍" ସେ ସମାଜର ଲୋକେ ସ୍ୱଭାବତଃ ଏତେ ନୀତିମାନ ହୋଇଥିବେ ଯେ ପରସ୍ପରକୁ ରକ୍ଷା କରି ଚଳିବେ । ଏହି ଆଦର୍ଶରେ ପହଞ୍ଚିବାକୁ ହେଲେ ଶାସନ ସଂସ୍ଥାକୁ କ୍ରମଶଃ ସଂକୁଚିତ କରିବାକୁ ହେବ । ସେଥିପାଇଁ ମଧ୍ୟ ତାହା ଲୋକଙ୍କ ଆୟତ୍ତକୁ ଆସିବା ଆବଶ୍ୟକ ।

ଏହାର ଓଲଟା ଆଜି ଶାସନ ମଣିଷର ଛାତି ଉପରେ ମାଡ଼ି ବସିଛି । ଦିନକୁ ଦିନ ମଣିଷ ଜୀବନରେ ତା'ର ଅନୁପ୍ରବେଶ ବଢ଼ି ଚାଲିଛି । ଯେଉଁମାନେ ଦିନେ ଶାସନ ସଂସ୍ଥା ଲୁପ୍ତ ହୋଇଯିବାର ସ୍ୱପ୍ନ ଦେଖିଥିଲେ ସେମାନଙ୍କ ଭିତରୁ ଲେନିନ୍ ଜଣେ । ମାତ୍ର ଏ ଲକ୍ଷ୍ୟରେ ପହଞ୍ଚିବା ପାଇଁ ସେ ଯେଉଁ ବାଟ ଧରିଲେ ତାହା ହେଲା ପ୍ରଥମ ଶାସନକୁ ସର୍ବଶକ୍ତିମାନେ କରି ନୂଆ ସମାଜର ବାଟରେ ଥିବା ସମସ୍ତ ବାଧା ବିରୋଧକୁ ଧ୍ୱଂସ କରିଦେଇ ତାହାପରେ ଶାସନ ମଉଳିଯିବା ପାଇଁ ପରିସ୍ଥିତି ସୃଷ୍ଟି କରିବା । ମାତ୍ର ତାହା ହେଲା ନାହିଁ । ତାଙ୍କ ବାଟରେ ଯାଇ ଗଢ଼ା ଯାଇଥିବା ଶାସନ ସବୁ ଲୋକଙ୍କ ଛାତି ଉପରେ ଆହୁରି ଭୟଙ୍କର ଭାବରେ ମାଡ଼ିବସିଲା । ଏବେତାହା ଭିତରେ ଏକ ଓଲଟପାଲଟ ପାଞ୍ଚ ବର୍ଷ ହେଲା ସୋଭିଏତ୍ ଦେଶରେ ଆରମ୍ଭ ହୋଇ ପୂର୍ବ ୟୁରୋପକୁ ବ୍ୟାପୀ ସେଠାରେ କମ୍ୟୁନିଷ୍ଟ ଶାସିତ ଦେଶମାନଙ୍କରେ ଚରମ ଓଲଟପାଲଟ ହୋଇ ଛଅଟା ଦେଶର କମ୍ୟୁନିଷ୍ଟ ଶାସନ ଭୁଷୁଡ଼ି ପଡ଼ିଛି । ଏହାପରେ ସୋଭିଏତ୍ ସଂଘ ବି ଲୋପ ପାଇଯାଇଛି । ଶାନ୍ତିପୂର୍ଣ୍ଣ ଜନଶକ୍ତିର ଏ ପ୍ରବଳ ଅଭିବ୍ୟକ୍ତିର ଐତିହାସିକ ଗୁରୁତ୍ୱ ଓ ତାତ୍ପର୍ଯ୍ୟ ଆମ ଦେଶର କମ୍ ଲୋକ ଉପଲବ୍ଧ କରିଥିବା ଭଳି ମନେହୁଏ । ଗତ ଆଠ ଦଶଂଧି ହେଲା ପୃଥିବୀରେ ସମାଜ ବିପ୍ଳବର ବଜାର ମାର୍କ୍ସବାଦ ଏକବାଟିଆ କରି ରଖିଥିଲା । ପୃଥିବୀର ଏକ-ତୃତୀୟାଂଶ ଲୋକ ତା'ର ଶାସନର ଛତ୍ରଛାୟା ତଳେ ବାସ କରୁଥିଲେ । ଏବେ ତା'ର ସୁନେଲି ମାୟାଜାଲ ଛିନ୍ନ ହୋଇଗଲା । ଏଇଟା ପୁଞ୍ଜିବାଦର ବିଜୟ ହେଲା ବୋଲି ପୁଞ୍ଜିବାଦର ପୂଜାରୀମାନେ ଉଲ୍ଲସିତ ହେଉଛନ୍ତି । ସେସବୁ ଦେଶର ଲୋକେ ହ୍ୟାମ୍‌ବର୍ଗର୍ ଖାଇବାକୁ, କୋକାକୋଲା ପିଇବାକୁ, ପ୍ୟାରିସ୍ ଭେନିସ୍‌ର ବିଳାସମୟ ଚାକଚକ୍ୟ ଆସ୍ୱାଦନ କରିବାକୁ ଯିବାରେ ବାଧା ପାଉଥିଲେ ବୋଲି କମ୍ୟୁନିଷ୍ଟ ଶାସନକୁ ତଡ଼ିଲେ ବୋଲି କେତେକ ପର୍ଯ୍ୟବେକ୍ଷକ କହୁଛନ୍ତି । କ'ଣ ହ୍ୟାମ୍‌ବର୍ଗର, କୋକାକୋଲା ବା ପ୍ୟାରିସ୍‌ର ଭିସା ପାଇଁ ଲୋକେ ଜୀବନ ବିପନ୍ନ କରି ବିଦ୍ରୋହ କଲେ ? ଜୀବନ ଦେଲେ ମଧ୍ୟ ?

ଆଉ କେତେକ କହୁଛନ୍ତି ଆଦର୍ଶବାଦର ଯୁଗ ଶେଷହୋଇଗଲା । ଆଉ ଆଦର୍ଶବାଦ ଚଳିବ ନାହିଁ । ପ୍ରାଗ୍‌ମାଟିଜିମ୍‌ର ବା କାମଚଳା ନୀତିବାଦର ଯୁଗ ଆସିଲା । ମାତ୍ର ଏହା ମଧ୍ୟ ଏକ ଭ୍ରାଂତ ବିଶ୍ଳେଷଣ । କମ୍ୟୁନିଷ୍ଟ ମତବାଦର ପତନ କେବଳ ପ୍ରମାଣ କରେ ଯେ, ଉନବିଂଶ

ଶତାବ୍ଦୀରେ ୟୁରୋପରେ ଯେଉଁ ପ୍ରକାରର ଜୀବନଦୃଷ୍ଟିକୁ ଭିତ୍ତିକରି ଯେଉଁସବୁ ଆଦର୍ଶବାଦର ଉଦୟ ହୋଇଥିଲା ସେ ସବୁର ବିଲୟ ହେଉଛି । ଏସବୁ ମତବାଦ, କମ୍ୟୁନିଷ୍ଟ,ଅଣକମ୍ୟୁନିଷ୍ଟ, ପୁଞ୍ଜିବାଦୀ, ସମାଜବାଦୀ ଆଦି ସମସ୍ତଙ୍କର ମୂଳରେ ମଣିଷର ଆର୍ଥିକ ଜୀବନ, ତା'ର ଆର୍ଥିକ ଲାଭକ୍ଷତି ଓ ଆଶା ଆକାଂକ୍ଷାକୁ ହିଁ ମଣିଷର ଅସ୍ତିତ୍ୱର ସାରସର୍ବସ୍ୱ କରି ଧରାହୋଇଛି । ପୂରା ମଣିଷ ଉପରେ ସେ ସବୁର ନଜର ପଡ଼ିନାହିଁ, ପୃଥିବୀର ଭୋକଉପାସ ଓ ଅନାହାର ମୃତ୍ୟୁର ତାଡ଼ନା, ପରମାଣୁ ଯୁଦ୍ଧର ବିଭୀଷିକା ଓ ଭ୍ରାନ୍ତ ବିକାଶ ଯୋଗୁଁ ସାରା ପୃଥିବୀର ଜୀବସୃଷ୍ଟି, ମଣିଷସମେତ, ଲୁପ୍ତ ହେବାର ଆଶଂକା ରୂପୀ ତ୍ରିବିଧ ଆତଙ୍କରୁ ରକ୍ଷା ପାଇବା ପାଇଁ ହେଲେ ନୂଆ ଆଦର୍ଶର ଅବଲମ୍ବନ ଲୋଡ଼ା ଓ ମଣିଷଜାତି ତାହା ଖୋଜିବାରେ ଲାଗିଛି । ମଣିଷ ଓ ଇତିହାସର ତ୍ରୁଟିପୂର୍ଣ୍ଣ ଅବଧାରଣା ଉପରେ ପ୍ରତିଷ୍ଠିତ ଆଦର୍ଶବାଦ ଓହରିଯାଇ ପୂର୍ଣ୍ଣତର ଆଦର୍ଶ ପାଇଁ ବାଟ ଛାଡ଼ିଦେଉଛି । ଆଜିର ଦୁନିଆରେ ଯେଉଁମାନେ ପୂର୍ଣ୍ଣତର ଦୃଷ୍ଟିନେଇ ମଣିଷ ଜାତି ପାଇଁ ଆଦର୍ଶର ଆଲୋକ ଢାଳିଦେଇ ଯାଇଛନ୍ତି ସେମାନଙ୍କ ଭିତରେ ଗାନ୍ଧୀଜୀଙ୍କର ସ୍ଥାନ ପ୍ରଥମ ପଂକ୍ତିରେ । ଆଜି ପୃଥିବୀର ଯେଉଁଠି ଦେଖନ୍ତୁ ଗାନ୍ଧୀଜୀଙ୍କ କଥା ସବୁଠେଇଁ ପଡ଼ିଛି । ବେଜିଂର ଚୀନା ଛାତ୍ରଛାତ୍ରୀ ଗାନ୍ଧୀଜୀଙ୍କ ଚିନ୍ତାଧାରାକୁ ଧରି ତିଏନ୍‌ଆନ୍‌ମିନ୍ ଚୌକରେ ବିକ୍ଷୋଭ କରି ପ୍ରାଣ ଦେଲେ ତ ବ୍ରାଜିଲ୍‌ରେ ଅହିଂସାପନ୍ଥୀମାନେ ଗାନ୍ଧୀ ବିଚାରରେ ଉଦ୍‌ବୁଦ୍ଧ ହୋଇ ନୂଆ ସାମ୍ୟଯୋଗୀ ଗ୍ରାମଗୋଷ୍ଠୀ ଗଢ଼ିବାରେ ଲାଗିଛନ୍ତି । ଆମେରିକାରେ ଅହରହ ପରମାଣୁ ଅସ୍ତ୍ର ବିରୋଧରେ ସତ୍ୟାଗ୍ରହ କରିବାରେ ଗାନ୍ଧୀଜୀଙ୍କଠାରୁ ପ୍ରେରଣା ନେଇ ଶାନ୍ତିବାଦୀମାନେ ଲାଗିଛନ୍ତି । ଜର୍ମାନୀରେ ଗାନ୍ଧୀଜୀଙ୍କଠାରୁ ମଧ୍ୟ ପ୍ରେରଣା ନେଇଥିବା ଶାନ୍ତିବାଦୀ ସବୁଜ ଦଳ ରାଜନୀତିକ କ୍ଷେତ୍ରରେ ନିଜର ସ୍ଥାନ କରିନେଇଛି ।

ଭାରତରେ, ପୃଥିବୀର ଅନ୍ୟତ୍ର ମଧ୍ୟ, ଆଜିର ଜ୍ୱଳନ୍ତ ସମସ୍ୟା ସବୁର ମୁକାବିଲା କରିବାକୁ ପରମ୍ପରାଗତ ରାଜନୀତିକ ମତବାଦ ଓ ଦଳସବୁ ଅକ୍ଷମ ହୋଇ ପଡୁଛନ୍ତି । ଉଦାହରଣ ସ୍ୱରୂପ, ଭାରତରେ ଏଭଳି କୌଣସି ରାଜନୀତିକ ଦଳ ବା ନେତା ନାହାନ୍ତି ଯାହାଙ୍କର ଆଜିର ଦୁନିଆର ଶିକ୍ଷା ସମସ୍ୟା ବିଷୟରେ କୌଣସି ଅଧ୍ୟୟନ, ଅନୁଭବ ଓ ଧାରଣା ଅଛି । ମଣିଷ ସମାଜକୁ ବଞ୍ଚେଇବାକୁ ହେଲେ ଦୁନିଆରେ ସର୍ବତ୍ର ଚାଲୁଥିବା ଶିଳ୍ପ କାରଖାନା ଢାଞ୍ଚାରେ ଗଢ଼ା ଶିକ୍ଷା ଅନୁଷ୍ଠାନ ଓ ପ୍ରଣାଳୀରେ ଆମୂଳଚୂଳ ପରିବର୍ତ୍ତନ ଲୋଡ଼ା, ଏହା କେତେଜଣ ରାଜନୀତିକ ନେତାଙ୍କର ଚିନ୍ତାକୁ ଆସିଛି ? ପରମାଣୁ ବୋମା ଓ ଯୁଦ୍ଧର ଭୟଙ୍କରତା କିଏ ଉପଲବ୍ଧି କରିଛି ? ଭାରତର ପ୍ରତ୍ୟେକ ରାଜନୀତିକ ଦଳ ଓ ନେତା ଭାରତ ପରମାଣୁ ବୋମା ତିଆରି କରିବା ସପକ୍ଷରେ, କେବଳ ଜର୍ଜ ଫର୍ଣ୍ଣାଣ୍ଡିସ୍, ଜଣେ ଛଡ଼ା । ଆଧୁନିକ ବିକାଶର ପ୍ରକ୍ରିୟା ଯେ ପୃଥିବୀର ସାରା ଜଳ ସ୍ଥଳ ଆକାଶକୁ ମନୁଷ୍ୟର ବାସର ଅନୁପଯୋଗୀ କରି ଚାଲିଛି, ସାରା ପ୍ରାକୃତିକ ସମ୍ପଦକୁ ବେପରୱା ଭାବରେ ବରବାଦ କରି ଚାଲିଛି ଏ ବିଷୟରେ କେତେଜଣ ସଚେତନ ? ବିଚରା ମେନକା ଗାନ୍ଧୀ ଟିକିଏ ଯାହା କରିବାକୁ ଚେଷ୍ଟା କରୁଥିଲେ ତାକୁ ଦାବି ଦିଆହେଲା । ଏକ ସଂପୂର୍ଣ୍ଣରୂପେ ନୂତନ ଧରଣର ପ୍ରଯୁକ୍ତି ବିଦ୍ୟା, ଯନ୍ତ୍ର ଓ କଳକବ୍‌ଜା, ମାନବ

ସଭ୍ୟତାକୁ ବଞ୍ଚେଇବା ପାଇଁ ଅତ୍ୟାବଶ୍ୟକ, ଏହା କେତେଜଣ ବୁଝିଛନ୍ତି, ଏସବୁ ନେଇ ଭାରତରେ ଓ ଅନ୍ୟତ୍ର ଆନ୍ଦୋଳନମାନ ଚାଲିଛି । ସେଥିରୁ ନୂତନ ଜ୍ଞାନ, ଅଭିଜ୍ଞତା ଓ ନେତୃତ୍ୱର ଉଦ୍‌ଭବ ହେଉଛି । ଏଥିରୁ ନୂଆ ରାଜନୀତିକ ଶକ୍ତିର ମଧ୍ୟ ଅଭ୍ୟୁଦୟ ହେବ । ତା' ପାଇଁ ବାଟ ତିଆରି କରିବାକୁ ହେବ ।

ଏହିଭଳି ଏକ ନୂତନ ଜୀବନ ଓ ନୂତନ ସମ୍ଭାବନାଦ୍ୱାରା ସ୍ପନ୍ଦିତ ଓ ଆକୁଳିତ ଏକ ଦୁନିଆରେ ଯେ ମୁଁ ପରିବର୍ତ୍ତନର ମହୋତ୍ସବରେ ଭାଗୀହେବାକୁ, ସେଥିରୁ ଅନେକ କିଛି ନେବାକୁ ଓ ଅଳ୍ପ କିଛି ଦେବାକୁ ମଧ୍ୟ ବଞ୍ଚି ରହିଛି ଏଇଟା ମୋର ପରମ ଭାଗ୍ୟ ।

## ଶେଷ କଥା

(ଶେଷ ନାହିଁ ଯେ, ଶେଷ କଥା କେ ବଲବେ - ରବୀନ୍ଦ୍ରନାଥ)

ବିଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ସତ୍ୟଜିତ୍ ରାୟଙ୍କର ବାପା ବଙ୍ଗଳାର ଖ୍ୟାତନାମା ଶିଶୁ ସାହିତ୍ୟିକ ସ୍ୱର୍ଗତ ସୁକୁମାରର ରାୟଙ୍କର ଏକ ହସ କବିତା ଅଛି 'କିଂଭୂତ୍' । ଗୋଟିଏ ଜନ୍ତୁ ଥିଲା ଯେ ନିଜ ଚେହେରା ବିଷୟରେ ସର୍ବଦା ଖୁଁତଖୁଁତ୍ ହୁଏ । ତା'ର କାହିଁକି ହାତୀ ପରି ଶୁଣ୍ଢ ନାହିଁ । କଙ୍ଗାରୁ ପରି ଲମ୍ବା ଲମ୍ବା ଗୋଡ଼ ନାହିଁ । ସିଂହ ପରି କେଶର ନାହିଁ । କାକାତୁଆ ପରି ରଙ୍ଗୀନ ଡେଣା ନାହିଁ । ଗୋଧିପରି କୋଟିକମ ଲାଞ୍ଜ ନାହିଁ... ତ ଦିନେ ସେ ଯାହା ଚାହୁଁଥିଲା ତାହା ସବୁ ତାକୁ ମିଳିଗଲା । ତା'ପରେ ସେ ମହା ଚିନ୍ତାରେ ପଡ଼ିଲା । ହାତୀ କ'ଣ କେବେ ଆକାଶରେ ଡେଣା ମେଲି ଉଡ଼େ ? କଦଳୀ ଗଛ ଖାଇଲେ କଙ୍ଗାରୁଟା କ'ଣ ବଞ୍ଚେ ? ବୁଢ଼ା ହାତୀଟା ଉଡୁଛି ବୋଲି ଯଦି ଲୋକେ ଗାଳି ଦିଅନ୍ତି ? ଯଦି ପିଲାଏ ଧୁଅ ଧୁଅ କରି ତାଳି ମାରନ୍ତି ? ଯଦି ତାକୁ ପଚାରନ୍ତି, ତୁ କିଏରେ ? ତୋର ନାମ ଧାମ କ'ଣ ? ତେବେ ସେ କ'ଣ କରିବ ?

ମୁଁ ବେଳେବେଳେ ଭାବେ, ମୁଁ ସେମିତି ଗୋଟିଏ କିଂଭୂତ ଜୀବ କି ? ତମେ କ'ଣ କର ବା ଆପଣ କ'ଣ କରନ୍ତି ବୋଲି କେହି ପଚାରିଲେ ମୁଁ ସେତେବେଳେ ବଡ଼ ଅଡୁଆରେ ପଡ଼େ । ମୁଁ କିଏ ? ମୁଁ ଜଣେ ସ୍ୱାଧୀନତା ସଂଗ୍ରାମୀ ବୋଲି କହିଦେଲେ ବେଳେବେଳେ କାମ ଚଳିଯାଏ । କିନ୍ତୁ ସ୍ୱାଧୀନତା ସଂଗ୍ରାମ ତ ତେୟାଳିଶ ବର୍ଷ ହେଲା ସରିଲାଣି । ପାସ୍‌ପୋର୍ଟ କରାଇବା ବେଳେ ଧନ୍ଦା ଲେଖାଇବାକୁ ପଡ଼ିଲା । ଲେଖି ଦେଲି ସମାଜ ସେବକ । ମାତ୍ର ଆମେରିକାରେ ଯାଇ ଦେଖିଲି ସେଠି ସମାଜ ସେବକ ବା ସୋସିଆଲ୍ ୱାର୍କର ଭିନ୍ନ କିସମର ଲୋକ । ସେମାନେସବୁ ଗୋଟାଏ ଶ୍ରେଣୀର ସରକାରୀ କର୍ମଚାରୀ । ମୁଁ ଜଣେ ସର୍ବୋଦୟ କର୍ମୀ ବୋଲି କୁହାଯାଇପାରେ । ମାତ୍ର ସର୍ବୋଦୟ କର୍ମୀ କ'ଣ ପିଲାଙ୍କ ପାଇଁ ନାଟକ ଲେଖନ୍ତି, ନାଟକରେ ମୁଛଦାଢ଼ି ଲଗେଇ ଅଭିନୟ କରନ୍ତି ? ଜଣେ ବିଶିଷ୍ଟ ସର୍ବୋଦୟ କର୍ମୀ ଓ ମୋର କାରବାର ଦେଖି ମହାବ୍ୟସ୍ତ ହେଲେ । ଗଲା, ସର୍ବୋଦୟର ସୁନାମ ପାଣିରେ ପଡ଼ିଗଲା । ଫେର୍ ଲୋକେ ପଚାରନ୍ତି ଆପଣ ସର୍ବୋଦୟ ବାଲା ତ ରାଜନୀତିରେ କାହିଁକି ମୁଣ୍ଡ ପୂରାଉଛନ୍ତି ?

ଯଦି ବୁଝାଇଲି ଯେ, ସର୍ବୋଦୟବାଲା ହେଲେ ରାଜନୀତିକ ବ୍ୟାପାରରେ ମୁଣ୍ଡ ଖେଳେଇବାକୁ ହୁଏ, ତେବେ ପ୍ରଶ୍ନ ହେବ, ତା' ହେଲେ ନିର୍ବାଚନରେ ଛିଡ଼ା ହେଉ ନାହାନ୍ତି କାହିଁକି ? ମନ୍ତ୍ରୀ ହେଉ ନାହାନ୍ତି କାହିଁକି ? ଆଉ ବିନୋବାଙ୍କ ଚେଲାମାନେ ଅଛନ୍ତି ଯେ ମୋ ନାଁ ସର୍ବୋଦୟ ତାଲିକାରୁ କାଟି ହିଁ ଦେଇଛନ୍ତି ।

ମୁଁ ଚାରି ପାଞ୍ଚଖଣ୍ଡ ବହି ଲେଖିଛି ସତ, କିନ୍ତୁ ମୁଁ କ'ଣ ଲେଖକ ଶ୍ରେଣୀରେ ଗୃହୀତ ହେବାର ଯୋଗ୍ୟ ? ଲେଖକ ହେଲେ ତ ପଢ଼ାଶୁଣା କରିବାକୁ ବି ହୁଏ । ଲେଖକ ବୋଲି ପରିଚୟ ଦେଲେ କିଏ ଯଦି ପଚାରି ବସିବ, ଆପଣ ଅସିତ କବିଙ୍କ ଦ୍ୱାରା କରାଯାଇଥିବା ଭଞ୍ଜ କାବ୍ୟର ସମୀକ୍ଷା ପଢ଼ିଛନ୍ତି ? କିମ୍ବା ଡବ୍ଲୁ, ବି. ଏଟ୍‌ସଙ୍କର କବିତା ? ତାହାହେଲେ ତ ମୁଁ ଚିତ୍‌ପଟାଙ୍ଗ । ମୋର ମୂଳ ତାଲିମ କୋଡ଼ି କୋଦାଳ ଚଳେଇବାରେ । କଲମ ମୁଁ ସେମିତି ଚଳାଏ । ଜଣେ ବିଶିଷ୍ଟ ଅଧ୍ୟାପକ ଥରେ କହିଥିଲେ ଯେ, ସର୍ବୋଦୟବାଲାଙ୍କର ଏକମାତ୍ର କଲ୍‌ଚର୍ ହେଲା ଏଗ୍ରିକଲ୍‌ଚର, ସମ୍ଭବତଃ ମତେ ଲକ୍ଷ୍ୟକରି । ଆରେ ବାବା ମୁଁ ଯଦି ତାଙ୍କ ହାବୁଡ଼ରେ ପଡ଼ିବି ଓ ସେ ଶୁଣିବେ ଯେ, ମୁଁ ବିଜ୍ଞାନ ବିଷୟରେ ବି ଖଣ୍ଡେ ବହି ଲେଖିପକେଇଛି ଓ ସେ ମତେ କଟମଟ କରି ଚାହିଁ ପଚାରିବେ - "ପାସ୍ ସାର୍ଟିଫିକେଟ୍ ବାହାର କର । କୋଉ ଇୟରଯାଏ ବିଜ୍ଞାନ ପଢ଼ିଛ ?" ତେବେ ମୁଁ କ'ଣ କରିବି ? କୋଉ ବାଟେ ପଳେଇବି ? ଏ ଦୁନିଆରେ ବାଡ଼ ବୁଜାହେଇ ଅନେକଗୁଡ଼ାଏ ହତା ତିଆରି ହେଇଛି । ପ୍ରତ୍ୟେକ ବ୍ୟକ୍ତି ଗୋଟାଏ ଗୋଟାଏ ହତା ଭିତରେ ରହିବ । ଏ ହତାରୁ ସେ ହତା ଭିତରକୁ ବିନା ପାସପୋର୍ଟ-ଭିସାରେ ଯାଇପାରିବ ନାହିଁ । ମୁଁ ଦେଶରୂପକ ହତା କଥା କହୁନାହିଁ, ଭେକ, ଧନ୍ଦା ବା ବିଦ୍ୟା ଅନୁସାରେ ଗଢ଼ା ହତା କଥା କହୁଛି । ଏ ହତାଟା ରାଜନୀତିବାଲାଙ୍କର, ସେ ପାଖଟା ବାମପନ୍ଥୀଙ୍କ ପାଇଁ ଓ ଏଇ ପାଖଟା ଦକ୍ଷିଣପନ୍ଥୀଙ୍କ ପାଇଁ । ହେଇ, ସେ ହତାଟା ଗାନ୍ଧୀବାଲାଙ୍କର । ଏ ହତାଟା ଅର୍ଥନୀତିଜ୍ଞଙ୍କ ପାଇଁ, ଏଇଟା କମ୍ପାନୀ ଡାଇରେକ୍ଟର, ଏଇଟା ଷ୍ଟେନୋଟାଇପିଷ୍ଟଙ୍କର । ପୂର୍ବକାଳରେ ସମାଜଟା ଗୋଟାଏ ଆଲମାରୀ ଭଳି ସଜାହୋଇଥିଲା । ସବାଉପର ଥାକରେ ବ୍ରାହ୍ମଣ, ସେଥିରେ ପୁଣି ବାଁ ପାଖକୁ ପ୍ରଥମରେ ଶାସନୀ ବ୍ରାହ୍ମଣ ତ ଡାହାଣପାଖ ଶେଷ ମୁଣ୍ଡକୁ ସାରୁଆ ବ୍ରାହ୍ମଣ । ତାହା ତଳ ଥାକରେ ସେହିପରି କ୍ଷତ୍ରିୟ-ଖଣ୍ଡାୟତ । ଏହିପରି ତଳକୁତଳ ଅନେକ ଥାକ । ଏ ଥାକମାନଙ୍କରେ କିଏ କେଉଁଠି ରହିବ ତାହା ଜନ୍ମଅନୁସାରେ ସ୍ଥିରହେଉଥିଲା । ଏ ପୁରୁଣା ବ୍ୟବସ୍ଥା ଏବେ ଭାଙ୍ଗି ଭାଙ୍ଗି ଯାଉଛି । ନୂଆ ବ୍ୟବସ୍ଥାରେ କିଏ କେଉଁ ହତାରେ ରହିବ ତାହା ସ୍ଥିରହୁଏ, ଭେକ, ପରୀକ୍ଷା ପାସ୍, ଚାକିରୀ, ଦରମା ଆଦି ବଳରେ । ମୁଁ ତ କେତେ ପ୍ରକାରର ହତାରେ ବିନା ପାସ୍‌ପୋର୍ଟ ଭିସାରେ ଗଳିଯାଇଛି । କାହାରି ପାଖରେ ଧରା ନପଡ଼ି ଖସିଆସିଛି ବା ସେସବୁ ହତାରେ ରହୁଥିବା ସଦାଶୟ ବ୍ୟକ୍ତିମାନେ ମୋର ଅନୁପ୍ରବେଶ ପ୍ରତି ନଜର ଦେଇନାହାନ୍ତି ବା କ୍ଷମା କରିଛନ୍ତି । ଏଇଟା ମୋର ସଦ୍‌ଭାଗ୍ୟର କଥା । ଶାସ୍ତ୍ରକାରମାନେ ବହୁତ ଗଭୀର ଚିନ୍ତାକରି ଏ ହତା ବିଭାଗକୁ ଖୁବ୍ ଉଚ୍ଚ ସ୍ଥାନ ଦେଇଛନ୍ତି । ଗୀତାରେ ଖୋଦ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପରାମର୍ଶ ଦେଇଛନ୍ତି, "ଅର୍ଜୁନ ! ତୁମେ ଗୋଟିଏ ବ୍ୟବସାୟାତ୍ମିକା ବୁଦ୍ଧି ଧର । ଯେଉଁମାନଙ୍କର ବ୍ୟବସାୟାତ୍ମିକା ବୁଦ୍ଧି ନାହିଁ, ସେମାନଙ୍କର ବୁଦ୍ଧିର

ଅନନ୍ତ ଶାଖାପ୍ରଶାଖା ।" ମୁଁ ତ ତେବେ ଏହି ପ୍ରକାରର ଅବ୍ୟବସାୟୀ । ମୋର ମୋକ୍ଷର ବାଟ ବନ୍ଦ । ବ୍ୟବସାୟ କଥାରୁ ମନେପଡ଼ିଥିଲା ମୁଁ ଥରେ ଖଦୀ ଗ୍ରାମୋଦ୍ୟୋଗ ଆୟୋଗର ସଦସ୍ୟ ହେଇଥିଲି । ସେତେବେଳେ ଆୟୋଗର ତିନି ଚାରିଶହ କୋଟି ଟଙ୍କାର କାରବାର । ମୁଁ ଜାଣି ଏକ ବଡ଼ କମ୍ପାନୀର ଡାଇରେକ୍ଟର ହେଲି । ମାତ୍ର ଲୋକଙ୍କର ପରତେ ଗଲେ ତ ! ଥରେ ଉଡାଜାହାଜରେ କେଉଁଠୁ କୋଉଁଠିକି ଯାଇଥିଲି ! ମୋ ପାଖରେ ବସିଥିବା ଜଣେ ଫିଟ୍‌ଫାଟ୍ ସୁଟ୍‌ପିନ୍ଧା ଭଦ୍ରଲୋକ ମତେ ପଚାରିଲେ "ଆପଣ କ'ଣ କରନ୍ତି ? ମୁଁ ଖଦୀ ଗ୍ରାମୋଦ୍ୟୋଗ ଆୟୋଗର ସଦସ୍ୟ ହେଇଥିବା କଥା କହିଲି । ଆୟୋଗ କ'ଣ କରେରୁ ତିନି ଚାରି ଶହ କୋଟି ଟଙ୍କାର କାରବାରର କଥା ଉଠିଲା । ମୋ ରୂପ ଭେକ ଦେଖି ଭଦ୍ରଲୋକଙ୍କର ବୋଧହୁଏ କଥାଟା ମନକୁ ପାଇଲା ନାହିଁ । 'ହୁଁ' ବୋଲି କହି ଚୁପ୍ ରହିଲେ ।

ତେବେ ଶ୍ରୀକୃଷ୍ଣଙ୍କର ପରାମର୍ଶ ଅମାନ୍ୟ କରିବାପାଇଁ ମୁଁ ବଳ ପାଇଲି କବିଗୁରୁ ରବୀନ୍ଦ୍ରନାଥ ଶାନ୍ତିନିକେତନର ଜଣେ ନବାଗତ ଛାତ୍ର ସୟଦ୍ ମୁଜ୍‌ତାବା ଆଲୀଙ୍କୁ ଦେଇଥିବା ପରାମର୍ଶରୁ । ଆଲୀଙ୍କୁ ଯେତେବେଳେ ତାଙ୍କ ପାଠ ବିଷୟରେ ଗୁରୁଦେବ କ'ଣ ପଚାରିଲେ ସେ ଅତି ବାଧ୍ୟ ଛାତ୍ର ପରି କ'ଣ ଗୋଟାଏ ବିଷୟକୁ ଅଧ୍ୟବସାୟ ସହକାରେ ଅଧ୍ୟୟନ କରିବାକୁ ଚାହାନ୍ତି ବୋଲି ଉତ୍ତର ଦେଇଥିଲେ । ଉତ୍ତରରେ ରବିନ୍ଦ୍ରନାଥ ହସି କରି ଯାହା କହିଲେ ତା'ର ସାରମର୍ମ ହେଲା ଯେ, ସଂସାରୀ ବ୍ୟକ୍ତିମାନଙ୍କର ପରାମର୍ଶରେ ପଡ଼ି ଗୋଟାଏ ବିଷୟକୁ ଗଣ୍ଡିକରି ଅନ୍ୟସବୁ ବିଷୟପ୍ରତି ଆଖି କାନ ବୁଜିଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।

ରବିନ୍ଦ୍ରନାଥଙ୍କଠାରୁ ହେମତ୍ ପାଇ ମୋର କିମ୍ଭୂତ ହେବାର ଭୟଟା ଛାଡ଼ିଯାଇଛି । ମୁଁ ଯେ ଅନ୍ୟମାନଙ୍କୁ ଈର୍ଷା କରିଥାଏ ଓ ସେଇଥିଯୋଗୁଁ ମୁଁ ସବୁ ହେବାକୁ ଚାହୁଁଛି କେବଳ ତାହା ନୁହେଁ । ମୋର ନିଜ ଭିତରୁ ମୁଁ ସେ ସବୁର ତାଗିଦା ପାଇଛି । ଅବଶ୍ୟ ମୋର ଯେ ଈର୍ଷା ନାହିଁ ନୁହେଁ । ମୋର ବାଲ୍ୟବନ୍ଧୁ ଖୋକନ୍ ଓ ତା'ର ସ୍ତ୍ରୀ ବଢ଼ ବଢ଼ିବେଳେ କାଠଯୋଡ଼ି ନଦୀ ପହଁରି ପାରିହେଇଗଲେ । ମୁଁ କୂଳରୁ ଖଣ୍ଡେ ହାତରୁ ବେଶି ଦୂରକୁ ଭରଷି ଯାଇପାରି ନାହିଁ । ମୋର ଘୋର ଈର୍ଷା ହେଲା । ମାତ୍ର ମୁଁ ଅନ୍ୟ ଧନ୍ଦାରେ ଲାଗିଯିବାରୁ ସେ କଥାଟା ଆଉ ମନରେ ରହିଲା ନାହିଁ । ଆମ ଘରେ ଦୁଇଜଣ ଭଣଜା, ଏକ ଭାଣିଜୀ ଜ୍ୱାଇଁ ଓ ବୋହୂ ପଦାର୍ଥବିଜ୍ଞାନରେ ଡକ୍ଟରେଟ୍ ଯାଏ ଯିବାର ଦେଖି ମୋର ମନେ ହେଲା ସେମାନେ ମତେ ଏକାବେଳକେ ଟପିଯିବେ ? ସେଠୁ ପଢ଼ାପଢ଼ିକରି ଖଣ୍ଡେ ବହି ପଦାର୍ଥବିଜ୍ଞାନ ଉପରେ ଲେଖିପକେଇଲି, ମୋର ବିଦ୍ୟାର ପ୍ରମାଣ ଦେବାପାଇଁ । ପିଲାମାନେ ତେଣିକି ମତେ ସମୀହ କରି ଚଳିଲେ । ରାଧାନାଥବାବୁ ଅଣାନବେ ବର୍ଷ ବୟସରେ ହାପ୍ ପ୍ୟାଣ୍ଟ୍ ପିନ୍ଧି ଅଣ୍ଟାଏ ପାଣିରେ ପଶି ବନ୍ୟାଗ୍ରସ୍ତ ଗାଁକୁ ଯିବାର ଦେଖି ମୋର କିଛି କମ୍ ଈର୍ଷା ହେଲାନାହିଁ ।

ଏମିତି ଈର୍ଷାର ଅନେକ ଘଟଣା ମନେପକେଇଲେ ମିଳିବ । ତେବେ ଆମ ଦେଶରେ ଈର୍ଷାକୁ ଚରିତାର୍ଥ କରିବାର ଏକ ବହୁଳ ଭାବରେ ଅନୁସୃତ ପନ୍ଥାହେଲା ଆଗେଇ ଯାଉଥିବା ଲୋକକୁ ପଛରୁ ଧରି ଟାଣିବା । ମୁଁ କେବେ ସେମିତି କରିଥିବାର ମନେପଡୁନାହିଁ ।

ମୁଁ ଯଦି ଏତେ ପ୍ରକାର ଧନ୍ଦାରେ ହାତ ନଦେଇ ମୋର ଅନ୍ୟ ବନ୍ଧୁମାନଙ୍କ ପରି ପାଠପଢ଼ି ଦୋପଟି କଲେକ୍ଟରଟିଏ ହେଇ ବଡ଼ ପାହ୍ୟାକୁ ଉଠି, ହୁଏତ ସ୍ୱାଧୀନ ଭାରତରେ ରାଜ୍ୟପାଳଟିଏ ହେଇ ଅବସର ନେଇଥା'ନ୍ତି, ବା ଅପାଠୁଆ ଭାବରେ ଜେଲ ଖଟିବା ପରେ ମନ୍ତ୍ରୀଟିଏ ହେଇଥା'ନ୍ତି, ତେବେ ମୋର ପରିଚୟଟା ଖୁବ୍ ସ୍ପଷ୍ଟ ଅକ୍ଷରରେ ଲେଖା ହୋଇପାରିଥା'ନ୍ତା । କାହାରିକୁ ବୁଝିବାରେ ଅସୁବିଧା ହେଇ ନଥା'ନ୍ତା । ମାତ୍ର ମୁଁ କିଏ ବୋଲି ଲୋକେ ସିନା ଧନ୍ଦି ନ ହେଇ ବୁଝିଯାଇଥାନ୍ତେ, କିନ୍ତୁ କିଏ ବୋଲି ମୋର ନିଜେ ଜାଣିବାରେ ଘୋର ଅସୁବିଧା ହେଇଥାନ୍ତା ।

ମୁଁ ଯେତେବେଳେ ଗୋଟାଏ ସମୟରେ ଛବିଅଙ୍କା ଆରମ୍ଭ କଲି ଦିନେ ଗୋପୀନାଥଦାଦା ଆସି ଛବି ଦେଖିଲେ ଓ ମନ୍ତବ୍ୟ କଲେ, "ଇଏ ଏକ ଆତ୍ମଆବିଷ୍କାର ।" ଏକଦମ୍ ଠିକ୍ କଥା । ନିଜକୁ ଚିହ୍ନିବାକୁ ହେଲେ ଏକ ଆବିଷ୍କାରର ଅଭିଯାନ ଲୋଡ଼ା । ଏଇଟା କଲମ୍ବସଙ୍କର ଭାରତ ଆବିଷ୍କାର ଅଭିଯାନ (ଯାହା କରିବାକୁଯାଇ ସେ ଆମେରିକାରେ ପହଞ୍ଚିଲେ) ବା ଟେନ୍‌ଜିଂ ଓ ହିଲାରୀଙ୍କ ଏଭରେଷ୍ଟ ଆରୋହଣଠାରୁ କମ୍ ମୁସ୍କିଲ୍ ଓ କମ୍ ଉତ୍ତେଜନାପୂର୍ଣ୍ଣ ନୁହେଁ । ମୋ ଦେହଁ ତ ପିଲାଦିନୁ ନାନା ଲେବେଲ୍ ମରାହେଇଥିଲା । ଜଣେ ଗୁରୁଜନ ମତେ ଥରେ ଆକଟକରି କହିଥିଲେ, "ତୁମେ କରଣ ଘର ପିଲା । ବେକରେ ମାଳି ପିନ୍ଧୁନାହଁ ?" ସାଧବୀଧାଈ କହୁଥିଲା, "ବାବୁ ମୋର ପାଠ ପଢ଼ିବ, ହାକିମ ହବ, ଗାଡ଼ି ଚଢ଼ିବ ।" ଶଙ୍କରାଚାର୍ଯ୍ୟଙ୍କ ମତ ପଢ଼ିଲି । 'ମୁଁ କିଏ' ନା 'ତୁ ବ୍ରହ୍ମ ।' ଆରେ ବାବା ଦୁନିଆଯାକଟାତ ବ୍ରହ୍ମ । ସେଥିରେ ମୁଁ ବି ସେୟା, ଅତି ଉତ୍ତମ କଥା । ଏ ସୃଷ୍ଟି ଯୋଉ ଉପାଦାନରେ ଗଢ଼ା ମୁଁ ବି ସେଇଥିରେ ଗଢ଼ାହେଇଛି । ସୃଷ୍ଟିର ଉପାଦାନ ଯଦି ଏଲିମେଣ୍ଟାରୀ ପାର୍ଟିକ୍ଲସ୍- ପ୍ରାଥମିକ ପରମାଣୁପୁଞ୍ଜ – ତେବେ ମୁଁ ବି ସେଇଥିରେ ଗଢ଼ା । ସୃଷ୍ଟିଟା ପ୍ରକୃତି ଓ ପୁରୁଷର ଲୀଳା ତ ମୁଁ ବି ସେୟା । କିନ୍ତୁ ଏମିତିରେ ଗୋଟାଏ ଲେବଲ୍ ସିନା ମରାହେଇଗଲା, ମାତ୍ର ମତେ ଜ୍ୱର ହେଲେ କି ଔଷଧ ଓ ପଥ୍ୟ ଦିଆଯିବ, ମତେ କଲେକ୍ଟରୀ ଅଫିସ କିରାଣୀ ଲାଞ୍ଚ ମାଗିଲେ ମୁଁ କ'ଣ କରିବି ? ଚନ୍ଦ୍ର କାହିଁକି ବଢୁଛି, ଛିଡୁଛି ବୋଲି ମନରେ ପ୍ରଶ୍ନ ଉଠିଲେ କ'ଣ କରିବି, ଏମିତି ହଜାର ହଜାର ପ୍ରଶ୍ନର ଉତ୍ତର ତ ଖୋଜିବାକୁ ହେବ ।

ସବୁ ପ୍ରଶ୍ନର ଉତ୍ତର ପାଇଁ ବାହାର ସୃଷ୍ଟିରେ ଖୋଜାଖୋଜି- ଯେତେ ଲୋଡ଼ା ନିଜ ଭିତରର ସୃଷ୍ଟିର ବି ଖୋଳତାଡ଼୍ ସେତିକି ଆବଶ୍ୟକ । ମତେ ଆଖି, କାନ, ନାକ ଆଦି ସବୁ ଇନ୍ଦ୍ରିୟ ଦେଇ ଗଢ଼ା ହେଇଛି । ମୁଁ କେତେ କଥା ଦେଖୁଛି, ଶୁଣୁଛି, ଛୁଉଁଛି, ଚାଖୁଛି, ଶୁଙ୍ଘୁଛି । ଭଲିଭଲିକା ରୂପ, ରଙ୍ଗ, ସ୍ୱାଦ, ଗନ୍ଧ ମତେ ଆକ୍ରାନ୍ତ କରୁଛି । କୋଉଟା ସୁଖ ଲାଗୁଛି, କୋଉଟା ଅସୁଖ । ଏ ସୃଷ୍ଟି ସାଙ୍ଗରେ ମୋର ଏମିତି ଅହରଣ ଦେଣନେଣ ଚାଲିଛି । ଏ ଅବସ୍ଥାରେ ଯଦି ମତେ କୁହାଯିବ ଯେ ତୁ ଆଖି କାନ ବନ୍ଦକରି ବସି ଧ୍ୟାନକର, ଏଗୁଡ଼ାକ ସବୁ ମାୟା, ତେବେ ମୁଁ ମାନିବି କାହିଁକି ? ସୃଷ୍ଟି ଭିତରେ ମତେ ବଞ୍ଚିବାକୁ ହେଲେ ତାକୁ ଜାଣିବାକୁ ହେବ ଆଉ ମୁଁ କିଏ, କ'ଣ ଓ ସୃଷ୍ଟି ସହିତ ମୋର କ'ଣ ସମ୍ବନ୍ଧ- ତାହା ଜାଣିଲେ ସିନା ମୁଁ ତା' ଭିତରେ ବଞ୍ଚିପାରିବି ?

ତେଣୁ ସୃଷ୍ଟି ଆବିଷ୍କାର ଓ ଆତ୍ମଆବିଷ୍କାର ମୋ ପାଇଁ ଗୋଟାଏ ଟଙ୍କାର ଦୁଇପିଠି ଭଳି । ସେଥିପାଇଁ କୌଣସି ଆଲମାରୀ ବା ଖୁଆଡ଼ରେ ନିଜକୁ ବନ୍ଦ ହେବାକୁ ନଦେଇ ମୁଁ ମହା ଫୂର୍ତ୍ତିରେ ଦୋହରି ଆବିଷ୍କାରରେ ମାତିଛି । ମୋ ଭିତରୁ ଯେତେ ପ୍ରକାରର ପ୍ରେରଣା ଉଠିଛି ଓ ଉଠୁଛି ତା'ର ଖିଅ ଧରି ମୁଁ ସୃଷ୍ଟିକୁ ଚିହ୍ନୁଛି, ନିଜକୁ ଚିହ୍ନୁଛି, ଉଭୟଙ୍କ ଭିତରେ ସମ୍ବନ୍ଧକୁ ଚିହ୍ନୁଛି । ମୋର ଯେଉଁ ଭଳିକିଭଳିକିା ରୂପ ଏହାଦ୍ୱାରା ପ୍ରକଟ ହେଉଛି ସେ ଗୁଡ଼ାକ 'କିଂଭୂତ'ର ମାଗିଆଣିଲା ଶୁଣ୍ଢ, ଡେଣା, ଲାଞ୍ଜ, ଗୋନ ପରି ନୁହେଁ । ସେଗୁଡ଼ାକ ମୋ ଆଖିରେ ମୋର ନିଜର ଏକ ଅଖଣ୍ଡ ଚିତ୍ରକୁ ସ୍ପଷ୍ଟ କରିବାରେ ସାହାଯ୍ୟ କରିଛି । ଏବେ ବି ଏ ଚିତ୍ର ପୂରା ଫୁଟିଉଠିନାହିଁ, ଗୋଟାଏ ମୋଟାମୋଟି ଢାଞ୍ଚା ଦେଖାଯାଉଛି । ତେଣୁ ଏ ଆବିଷ୍କାରର ଅଭିଯାନ ଶେଷ ମୁହୂର୍ତ୍ତଯାଏ ଚାଲୁରହିଛି ।

ଏ ସୃଷ୍ଟି ମୋର ସଂପର୍କ ତିନି ପ୍ରକାରର । ମୁଁ ବୌଦ୍ଧିକ ଜ୍ଞାନଦ୍ୱାରା ତା'ର ରୂପ ଓ ଗତିବିଧି ବୁଝୁଛି । ସୃଷ୍ଟିର ବିଭିନ୍ନ ବସ୍ତୁ ସହିତ ଭଲ ଲାଗିବା ବା ମନ୍ଦ ଲାଗିବା, ଆନନ୍ଦ, ସ୍ନେହ, ପ୍ରେମ, ଭୟ, ଘୃଣା, ଦ୍ୱେଷ ଆଦିର ସମ୍ବନ୍ଧ ଯୋଡୁଛି ଓ ପୁଣି ନିଜର କର୍ମଦ୍ୱାରା ସୃଷ୍ଟି ଉପରେ ପ୍ରଭାବ ପକାଉଛି । ତାକୁ ଅର୍ଥାତ୍ ତାହାର ଅନ୍ତର୍ଭୁକ୍ତ ସମାଜ ଓ ସମାଜର ଅନ୍ତର୍ଭୁକ୍ତ ବ୍ୟକ୍ତିମାନଙ୍କୁ ପ୍ରଭାବିତ କରୁଛି, ବଦଳାଇବା ଚେଷ୍ଟା କରୁଛି, ବଦଳାଉଛି । ମୋର ଦିନକୁ ଦିନ ଧାରଣା ଦୃଢ଼ ହେଉଛି ଯେ, ଏ ତିନି ପ୍ରକାରର ସଂପର୍କ ଭିତରେ ସାମଞ୍ଜସ୍ୟ, ସମନ୍ୱୟ ଲୋଡ଼ା, ତାହା ନ ହେଲେ ମୁଁ ବା ମଣିଷଜାତି କେହି ବଞ୍ଚିପାରିବୁ ନାହିଁ । ଆମେ ଅଧିକ ସକ୍ଷମ କ୍ଷେପଣାସ୍ତ୍ର ନିର୍ମାଣ ପାଇଁ ଆବଶ୍ୟକ ଜ୍ଞାନ ସଂଗ୍ରହ ପାଇଁ ଶହଶହ କୋଟି ଟଙ୍କା ଖର୍ଚ୍ଚ କରୁଛୁ । ମାତ୍ର ସାମ୍ପ୍ରଦାୟିକ ସଦ୍‌ଭାବ ବଢ଼ାଇବା ନିମନ୍ତେ ଆବଶ୍ୟକ ଗବେଷଣା ପାଇଁ ତା'ର ହଜାରେ ଭାଗରୁ ଭାଗେ ବି ଖର୍ଚ୍ଚ କରୁନାହୁଁ । ଆମ ସାହିରେ କେହି ମଣିଷ ମାରିଲେ ଆମକୁ ଅତ୍ୟନ୍ତ ଅସୁଖ ଲାଗୁଛି । ଅଥଚ ପାକିସ୍ତାନ ସାଙ୍ଗରେ ଯୁଦ୍ଧ ହେଲେ ସେଠା ମଣିଷଙ୍କୁ ମାରିବାପାଇଁ ଆମେ ସୁଖୀ ହେଇ ସୈନ୍ୟମାନଙ୍କୁ ପଠେଇବୁ । ସେଥିପାଇଁ ଚାନ୍ଦା ଦେବୁ । ଆମେ ଆମ ପିଲାଙ୍କୁ ସୁସ୍ଥ, ସବଳ ଓ ସୁଖୀ କରିବା ପାଇଁ ପ୍ରାଣପାତ ଉଦ୍ୟମ କରୁଛୁ, ଅଥଚ ପୃଥିବୀର ବାୟୁମଣ୍ଡଳରେ ଓଜୋନ୍ ସ୍ତରକୁ ନଷ୍ଟ କରିବାଭଳି କାମ ବି କରୁଛୁ ଓ ତାହାଦ୍ୱାରା ପୃଥିବୀକୁ ଜୀବ ଓ ମନୁଷ୍ୟର ବାସର ଅଯୋଗ୍ୟ କରୁଛୁ । ଏହିପରି ହଜାର ହଜାର ଉଦାହରଣ ଦିଆଯାଇପାରିବ ।

ଆମ ପୁରୁଣା ଶାସ୍ତ୍ରମାନଙ୍କରେ ଜ୍ଞାନ, ଭକ୍ତି ଓ କର୍ମଯୋଗ କଥା କୁହାଯାଇଛି । ସାଧକମାନେ ଏ ଯୋଗର ସାଧନା କରନ୍ତି ଓ ଜଣେ ଗୋଟାକର ସାଧନ କଲେ ବହୁତ ହେଲା ବୋଲି ମନେକରାଯାଏ । ଥରେ ମୋରାରଜୀ ଦେଶାଇ ବିନୋବାଜୀଙ୍କ ବିଷୟରେ ମନ୍ତବ୍ୟ କରିଥିଲେ ଯେ, ସେ ଜ୍ଞାନ ଓ କର୍ମ ଦୁଇ ଯୋଗର ସାଧନା ଏକାଠି କରିବାକୁ ଯାଇ, ଦୁଇ ଘୋଡ଼ାରେ ଗୋଡ଼ଦେଇ, ବିନୋବା କୋଉ କୂଳର ହେଲେ ନାହିଁ । ମାତ୍ର ମୋର ଧାରଣା ଭିନ୍ନ ପ୍ରକାରର । ମତେ ଓ ପ୍ରତ୍ୟେକ ମଣିଷକୁ ବଞ୍ଚିରହିବାପାଇଁ ପ୍ରତିଦିନ ସୃଷ୍ଟି ସାଙ୍ଗରେ ଜ୍ଞାନ, ଭାବନା ଓ କର୍ମ ଏ ତିନି ବାଟରେ ସଂପର୍କ ରଖିବାକୁ ହେଉଛି ଓ ଆଜି ଦୁନିଆଯାକର ସବୁ

ଲୋକଙ୍କର ଜ୍ଞାନ, ଭାବନା ଓ କର୍ମ ଏପରି ଅଡୁଆମଡୁଆ ପରସ୍ପର ବିରୋଧୀ ଓ ଅଧାପନ୍ତରିଆ ହୋଇ ରହିଛି ଯେ, ସୃଷ୍ଟି ନାଶର ଆଶଂକା ଉତ୍ପନ୍ନ ହେଲାଣି ।

ପ୍ରାଚୀନ କାଳରେ ଧର୍ମ ଶାସ୍ତ୍ର ଓ ଆଧୁନିକ କାଳରେ ସମାଜବାଦ, ସାମ୍ୟବାଦ ଆଦି ଭଳି ବିଭିନ୍ନ ସାମାଜିକ ଆଦର୍ଶବାଦ ସାଧାରଣ ମଣିଷକୁ ଗୋଟିଏ ସୁସଙ୍ଗତ ଜୀବନ ଦର୍ଶନ ଓ ଆଚରଣବିଧି ଯୋଗାଇବା ଚେଷ୍ଟା କରୁଥିଲେ । ଏବେ ସେସବୁ ଅଚଳ ହେବା ଉପରେ । ତେଣୁ ନୂଆ ଅନୁସନ୍ଧାନ ଲୋଡ଼ା ।' ସୃଷ୍ଟି ସହିତ ଆମର ତିନିପ୍ରକାରର ନେଣଦେଣରେ ପୂର୍ଣତା, ସାମଞ୍ଜସ୍ୟ ଓ ସମନ୍ୱୟ ଆଣିବା ପାଇଁ ପ୍ରତ୍ୟେକ ମଣିଷକୁ ଉଦ୍ୟମ କରିବାକୁ ହେବ । ଜଣେ ସାଧାରଣ ମଣିଷ ହିସାବରେ ଏଇ ଉଦ୍ୟମ ମୁଁ କରୁଛି । ଏ କଥା ମୁଁ ବି ନିଜେ ପ୍ରଥମରୁ ଜାଣିନଥିଲି । ଅନେକ ବର୍ଷ ପରେ ଏକଥା ଧୀରେ ଧୀରେ ମୋ ଆଗରେ ସ୍ପଷ୍ଟ ହେଉଛି ଯେ, ମୁଁ କିଏ କ'ଣ କରୁଛି, କୁଆଡ଼େ ଯାଉଛି ।

ଅଜଣାକୁ ଜାଣିବାର ଏଇ ଅଭିଯାନରେ ଦୁଃଖ, ସୁଖ, ଆଶା, ନିରାଶା, ବିୟୋଗ, ମିଳନର ଧକ୍‌କା ମୋର ନାହାକୁ ବାରମ୍ବାର ଟଳମଳ କରିଛି । ମୁଁ ଯେତେ ଆଘାତ ଓ ଦୁଃଖ ପାଇଛି ତାହା କେହି ମୋର ଘୋର ଶତ୍ରୁ ବି ପାଉ ବୋଲି ମନରେ ପାଞ୍ଚିବି ନାହିଁ । ମାତ୍ର ଏସବୁ ଯୋଗୁଁ ମୁଁ ଜୀବନ ପ୍ରତି ବିତୃଷ୍ଣ ହୋଇନାହିଁ । ଜୀବନର ସ୍ୱାଦକୁ ଅଧିକ ଗଭୀର ଓ ନିବିଡ଼ ଭାବରେ ଅନୁଭବ କରୁଛି । କ୍ରମେ ମୁଁ ଉପଲବ୍ଧି କରିଛି ଯେ,ଏ ଜୀବନଟା କେବଳ ମୋ ନିଜ ପାଇଁ ନୁହେଁ । ବିଶ୍ୱଶକ୍ତିର କେତେ ସହସ୍ର କୋଟି ବର୍ଷର ସୃଷ୍ଟି ଲୀଳାର ଏକ ଅନନ୍ୟ ପରିଣତି ଏଇ ମଣିଷ ଜାତି ଓ ତାହା ଭିତରେ ମୋ ଭଳିଆ ଗୋଟି ଗୋଟିକିଆ ବ୍ୟକ୍ତି । ଆମେ ପ୍ରତ୍ୟେକେ ଏଇ ସୃଷ୍ଟିକର୍ମର ଗୋଟିଏ ଗୋଟିଏ ଉପକରଣ । ସେହି ବିଶ୍ୱବ୍ୟାପୀ ସୃଜନୀ ଶକ୍ତି ସହିତ ଏକ ଯୋଗସୂତ୍ର ଆମ ପ୍ରତ୍ୟେକ ଭିତରେ ଅଛି, ବିଦ୍ୟୁତ ଉତ୍‌ପାଦନ କେନ୍ଦ୍ରକୁ ପ୍ରତି ଘର ସ କାରଖାନାକୁ ତାର ଲାଗିଥିବା ପରି । ଆମେ ତାକୁ ଚିହ୍ନି ବ୍ୟବହାରକରି ଶିଖିଲେ ବିଶ୍ୱ ସୃଜନୀ ଶକ୍ତି କେନ୍ଦ୍ରରୁ ଶକ୍ତି ଆହରଣ କରିପାରିବା । ମାତ୍ର ଆମ ଭିତରୁ ଅଧିକାଂଶଙ୍କର ଅବସ୍ଥା ଓଡ଼ିଶାର ସେହି ବଡ଼ ଜମିଦାରଙ୍କ ପରି ଯେ ଥରେ ହାଇଦ୍ରାବାଦର ନିଜାମଙ୍କର ଅତିଥି ହୋଇଥିଲେ । ସେଠାରେ ଅତ୍ୟାଧୁନିକ ଅତିଥି ଭବନରେ ସେ ବା ତାଙ୍କ କର୍ମଚାରୀମାନେ ଆଲୁଅ ଓ ପଙ୍ଖାର ସ୍ୱିଚ୍ କୋଉଠି ଖୋଜି ପାଇଲେ ନାହିଁ । କାହାରିକୁ ପଚାରିବାକୁ ଲାଜମାଡ଼ିଲା । ସାଙ୍ଗରେ ଥିବା ଲଣ୍ଠନଟିଏ ଜାଳି ରାତିଯାକ କାରବାର ହେଲେ । ସୃଷ୍ଟିକର୍ମର ଏହି ମହାଯଜ୍ଞ ଓ ମହୋତ୍ସବରେ ଆମର ପ୍ରତ୍ୟେକର ଭୂମିକା କ'ଣ ତାହା ନିଜେ ନିଜେ ଆବିଷ୍କାର କରି ତାହା ଗ୍ରହଣ କରିବାକୁ ହେବ । ମୋର ଜୀବନରେ ଏହି ଚେଷ୍ଟା ଚାଲିଛି ।

ମୋର ଜୀବନରେ ମୁଁ କେତେ ସଫଳତା ହାସଲ କରିଛି ? କିଛି ନୁହେଁ କହିଲେ ଚଳେ । ଅନେକ କାମରେ ହାତ ଦେଇଛି । କାମକୁ ଖେଳପରି ଖେଳିଛି । ସେ ସବୁଥିରୁ ଯେତିକି ଆନନ୍ଦ ପାଇଛି ସେତିକି ସାର । ଯେତେ ଲୋକଙ୍କଠାରୁ ଯେତେ ସ୍ନେହ ମମତା ପାଇଛି, ତାହା ହିଁ ମୋର ଜୀବନର ପାଥେୟ । ମନେପଡ଼େ ଥରେ ଜୟପ୍ରକାଶଜୀ ମତେ

କହିଥିଲେ, "ତମେ ସବୁ ଭାରତରେ ସାମାଜିକ ବିପ୍ଳବ କରିବ । ମୁଁ କେବଳ ଲୋକନୀତିର ପ୍ରତିଷ୍ଠା କରି ଦେଇଯାଇ ପାରିବି ବୋଲି ଆଶା କରୁଛି ।" କାହିଁ ସେ ବିପ୍ଳବ ଆଉ କେତେ ଦୂରେ ଅଛି ? ତାକୁ ଆଗେଇ ଆଣିବାରେ ମୋର ସାହାଯ୍ୟ କେତେ ଅକିଞ୍ଚିତ୍କର ? ତଥାପି ମୋର ଜୀବନଟା ବିଫଳ ହେଲା ବୋଲି ତ ମୁଁ ଅନୁଭବ କରୁନାହିଁ ? ମୋ ମନରେ ଘୋର ଅସନ୍ତୋଷ ଅଛି, ମାତ୍ର ନିଷ୍ଫଳତାବୋଧ ଓ ନିରାଶା ନାହିଁ । ମୋର ବିଶ୍ୱାସ ଯେ, ଜୀବନର ଅସଲ ସଫଳତା ରହିଛି ଆପଣାକୁ ବିଶ୍ୱଶକ୍ତିର ଅଧିକରୁ ଅଧିକ କୁଶଳ ଆୟୁଧ କରିବାରେ । ଏଥିରେ ଯେତିକି ସାଫଲ୍ୟ ମିଳିବ, ବାହାରର ସଫଳତା ମଧ୍ୟ ସେହି ଅନୁପାତରେ ମିଳିବ । ମୋ ନିଜଠାରେ ଶାଣ ହେବାର ମୋର ପ୍ରୟାସ ଯେତେଦିନ ଚାଲିଥିବ ସେତେଦିନ ଯାଏ ନିଷ୍ଫଳତାବୋଧର ପ୍ରଶ୍ନହିଁ ନାହିଁ । ଈଶୋପନିଷଦ କହିଛି – "କରି କରମ ଏହିମତେ, ଇଚ୍ଛ ଆୟୁଷ ବର୍ଷ ଶତେ ।" ଗାନ୍ଧିଜୀ 'ଶତବର୍ଷର'ର ଅର୍ଥ କୋଉ ପଣ୍ଡିତଙ୍କଠାରୁ ବୁଝିଥିଲେ ଶହେ କୋଡ଼ିଏ ବୋଲି । ଜୀବନ ପ୍ରତି ମୋର ବିରାଗ ଆସିନାହିଁ । ଶହେ କୋଡ଼ିଏ ବର୍ଷ ବଞ୍ଚିବାକୁ ମୁଁ ମୋର ଲକ୍ଷ୍ୟ କରିନେଇଛି । ମାତ୍ର ରବୀନ୍ଦ୍ରନାଥଙ୍କର ଏକ ପୂଜା ଗୀତର ସେଇ ପଦକ ମୋ ମନରେ କେମିତି ଲେଖିଯାଇଛି :

"ଜୀବନକେ ତୋର ଭରେ ହିତେ
ମରଣ ଆଘାତ ପେତେଇ ହବେ,
ଏଇ କଥାଟାଇ ଧରେ ରାଖିସ୍
ମୁକ୍ତିତୋରେ ପେତେଇ ହବେ ।"

ସତ୍ୟ ପାଇଁ, ମାନବ ଜାତିର ମୁକ୍ତିରେ ସାହାଯ୍ୟ କରିବା ପାଇଁ, ଯଦି କେବେ ମରଣ ଆଘାତର ସାମନା କରିବାକୁ ହୁଏ, ତେବେ ତାହା ବି ମୋ ପାଇଁ ଜୀବନର ଏକ ଚରମ ଆସ୍ୱାଦନ, ତା'ର ପରିପୂର୍ଣ୍ଣତା ହେବ । ■

# ପରିଶିଷ୍ଟ

ଏହି ଆତ୍ମକଥନ ୧୯୭୫-୭୬ରେ ଅଟକ ବନ୍ଦୀ ଥିଲାବେଳେ ଆରମ୍ଭ ହୋଇଥିଲା ଓ ୧୯୯୦ ମସିହା ଯାକେ ଆଗେଇ ନିଆ ହୋଇଥିଲା । ତା'ପରେ ୧୦ ବର୍ଷ ବିତିଗଲାଣି । ପ୍ରକାଶକ ଓ କେତେକ ବନ୍ଧୁ ଚାହୁଁଛନ୍ତି ଯେ, ଏହାକୁ ଏବେ ପର୍ଯ୍ୟନ୍ତ ଆଗେଇ ନିଆଯାଉ । ଆତ୍ମକଥା ଥରେ ଛପା ସରିଲେ ସେଥିରେ ନୂଆ କଥା ଯୋଡ଼ିବାର ବିଧି ନାହିଁ । ତଥାପି ମୁଁ ବନ୍ଧୁମାନଙ୍କର ଅନୁରୋଧ ରକ୍ଷା କରି ଯାହା ବକ୍ତବ୍ୟ ଦ୍ୱିତୀୟ ସଂସ୍କରଣର ପରିଶିଷ୍ଟ ରୂପେ ଲେଖି ପକାଉଛି ।

୧୯୯୦ ରେ ଆମେ ସର୍ବୋଦୟବାଲା 'କଂଗ୍ରେସ ହଟାଓ'ରେ ଲାଗିଥିଲୁ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରତି ଆମର ଅନେକଙ୍କର ବହୁତ ଆସ୍ଥା ଥିଲା । ମାତ୍ର ସେ ତାଙ୍କ ପ୍ରତି ଥିବା ସମସ୍ତ ସଦ୍‌ଭାବନାକୁ ଭଣ୍ଡୁର କରିଦେଲେ । ତା'ପରେ କଂଗ୍ରେସ ପୁଣି କ୍ଷମତାକୁ ଆସିଲା । ନିର୍ବାଚନ ପ୍ରଚାର ସମୟରେ ରାଜୀବ ଗାନ୍ଧୀଙ୍କ ହତ୍ୟା ପରେ ନରସିଂହ ରାଓ ପ୍ରଧାନମନ୍ତ୍ରୀ ହେଲେ ।

ଏସବୁ ଚାଲିଥିଲା ବେଳେ ସର୍ବୋଦୟର ରାଜନୀତିକ ଆଭିମୁଖ୍ୟ ସ୍ପଷ୍ଟତର ହୋଇ ଚାଲିଥିଲା । ଏହା ପୂର୍ବରୁ ୧୯୯୧ ରେ ଶ୍ରୀ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ଥିଲାବେଳେ ଭାରତବର୍ଷର ଦୁର୍ବଳତାର ଓର ଉଣ୍ଡି ଆମେରିକାର ସାମ୍ରାଜ୍ୟବାଦ ଭାରତବର୍ଷ ଉପରେ ଆର୍ଥନୀତିକ ଆକ୍ରମଣ କରିଦେଲା । ଏକ ଖାତକ ଦେଶ ହିସାବରେ ଭାରତବର୍ଷର ଆଉ କୌଣସି ପତିଆରା ନାହିଁ ବୋଲି ସାରା ପୃଥିବୀରେ ପ୍ରଚାର କରାଇ ତାର ଗଚ୍ଛିତ ସୁନା ବିକିବାକୁ ଓ ବନ୍ଧା ପକାଇବାକୁ ବାଧ କରାହେଲା । ଏହା ସାଙ୍ଗକୁ ଭାରତବର୍ଷରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଅବାଧ ପ୍ରବେଶ ପାଇଁ ରାସ୍ତା ଖୋଲି ଦେବାକୁ କେନ୍ଦ୍ର ସରକାରକୁ ବାଧ କଲେ ଓ ଟଙ୍କା ମୂଲ୍ୟ କମାଇବାକୁ ମଧ ବାଧ କଲେ । ଏହାପରେ ଦଶବର୍ଷ ଭିତରେ ଆମେରିକାନ୍ ସାମ୍ରାଜ୍ୟବାଦ ଓ ତା'ର ଛୋଟ ଅଂଶୀଦାର ଇଉରୋପୀୟ ସଂଘର ସାମ୍ରାଜ୍ୟବାଦ କ୍ରମେ କ୍ରମେ ଭାରତବର୍ଷକୁ ଦଖଲ କରିଲେଣି । ଭାରତର ଶାସନ ମଧ ଏବେ ଆମେରିକାର ଇଙ୍ଗିତରେ ଚାଲିଛି । ଭାରତ ସରକାରଙ୍କ ବାର୍ଷିକ ବଜେଟ୍ ମଧ ବିଶ୍ୱବ୍ୟାଙ୍କ୍ ଆଦିଙ୍କ ଦ୍ୱାରା ମଞ୍ଜୁର ନହେଲେ ସଂସଦରେ ଉପସ୍ଥାପିତ ହୋଇ ପାରୁନାହିଁ । ପ୍ରତିଦିନ କାଗଜ ଖୋଲିଲେ ଭାରତର ଅର୍ଥବ୍ୟବସ୍ଥାର କୌଣସି ନା କୌଣସି ବିଭାଗ ବହୁରାଷ୍ଟ୍ରୀୟମାନଙ୍କୁ ସମର୍ପି ଦିଆଯିବାର ଖବର ଦେଖିବାକୁ ମିଳିବ । ଇଂରେଜ ସରକାର ଦୁଇଶହ ବର୍ଷରେ ଆମକୁ ଯେତେ ଗୋଲାମ କରିପାରି ନଥିଲା, ଏହି ଦଶବର୍ଷରେ ଆମେରିକାନ୍ ସାମ୍ରାଜ୍ୟବାଦ ତାହାଠାରୁ ଅଧିକ ଗୋଲାମ କରିପାରିଛି ।

ଏହି ବାହ୍ୟ ଆକ୍ରମଣ ସାଙ୍ଗକୁ ଏକ ଆଭ୍ୟନ୍ତରୀଣ ସଂକଟ ମଧ ସୃଷ୍ଟି ହେଉଛି । ଉତ୍କଟ ସାମ୍ପ୍ରଦାୟିକତାବାଦୀ ଗୋଷ୍ଠୀ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ତାର ନାନା ଶାଖାପ୍ରଶାଖା ଓ ରାଜନୀତିକ ମଞ୍ଚ ଭାରତୀୟ ଜନତା ପାର୍ଟି ନାନା କୌଶଳ କରି କେନ୍ଦ୍ରରେ ଓ କେତେକ ରାଜ୍ୟରେ କ୍ଷମତା

ଦଖଲ କରିଛନ୍ତି । ଏ ଦଶବର୍ଷ ଭିତରେ ଏମାନଙ୍କର ଭାରତ ଅଭିଯାନର କାହାଣୀ ଦୀର୍ଘ ଓ ବିଚିତ୍ର । ମୁସଲମାନଙ୍କୁ ଭାରତୀୟ କରିସାରିବା ପରେ ସେମାନେ ଖ୍ରୀଷ୍ଟାନମାନଙ୍କୁ ଆକ୍ରମଣ କରିବାରେ ଲାଗିଛନ୍ତି । ଗ୍ରାହାମ୍ ଷ୍ଟେନ୍‌ସ ଓ ତାଙ୍କର ଦୁଇ ସୁକୁମାର ପୁଅଙ୍କୁ ଓଡ଼ିଶାର ମନୋହରପୁର ନିକଟରେ ଜୀଅନ୍ତା ପୋଡ଼ି ମାରିବାର ମର୍ମନ୍ତୁଦ ଘଟଣା ଏହି ଆକ୍ରମଣର ସବୁଠାରୁ ବଡ଼ ନମୁନା । ଏବେ ସେମାନେ ଭାରତର ସମ୍ବିଧାନରେ ସଂଶୋଧନ କରି ହିନ୍ଦୁତ୍ୱବାଦୀ ଏକଛତ୍ର ଶାସନ ପାଇଁ ବାଟ ଖୋଳିବା ଉଦ୍ୟମରେ ଲାଗିଛନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଭାରତର ଅର୍ଥବ୍ୟବସ୍ଥା ବିକି ଦେବା କାମ ଏମାନେ କଂଗ୍ରେସ ଅପେକ୍ଷା ଅଧିକ ଦ୍ରୁତ ଗତିରେ କରି ଚାଲିଛନ୍ତି । ଆମେରିକାକୁ ଭାଜପାର ଶାସନ ବେଶ୍ ସୁହାଉଛି । ସଂଘ ପରିବାରର ନୀତି କାର୍ଯ୍ୟକାରୀ ହେଲେ ଭାରତ ଆହୁରି ଖଣ୍ଡଖଣ୍ଡ ହୋଇଯିବ, ସୋଭିଏତ ସଂଘ ହେବା ପରି । ସେତେବେଳେ ସାମ୍ରାଜ୍ୟବାଦୀମାନେ ଏସବୁ ଟୁକୁରାକୁ ଗ୍ରାସ କରିବା ସହଜ ହେବ । ଗରିବ ଦେଶମାନଙ୍କରେ ଆମେରିକା ଏକଛତ୍ର ଶାସନ ପସନ୍ଦ କରେ । ତେଣୁ ଭାଜପାର ହିନ୍ଦୁରାଷ୍ଟ୍ର ତାର କାମରେ ଆସିବ । ଏହି ରୂପେ ଭାରତର ବାହ୍ୟ ସଙ୍କଟ ଓ ଆଭ୍ୟନ୍ତରୀଣ ସଙ୍କଟ, ଆମେରିକା ଗୋଲାମ ରାଷ୍ଟ୍ର ରୂପେ କାମ କରୁଛି । ଭାରତ ଶାସନ ୱାସିଙ୍ଗଟନ୍‌ରୁ ଆସୁଥିବା ହୁକୁମ ଉପରେ ଚାଲିଛି । ଆମେରିକାର ସେତେବେଳର ରାଷ୍ଟ୍ରପତି କ୍ଲିଣ୍ଟନ୍‌ଙ୍କର ଭାରତ-ଗସ୍ତ ବେଳେ ଯେପରି ଖୋସାମତିଆ ସ୍ୱାଗତ କରାଗଲା, ସେପରି ଇଂରେଜମାନଙ୍କ ଅମଳରେ ସେମାନଙ୍କୁ ମଧ୍ୟ କରାଯାଉନଥିଲା । ଏବେ ଆମେରିକା ରାଷ୍ଟ୍ରୀୟ ସୁରକ୍ଷା ବ୍ୟବସ୍ଥା (NMD) ର ପୃଥିବୀର ସମସ୍ତ ରାଷ୍ଟ୍ର ବିରୋଧ କରୁଥିବା ବେଳେ ଏକମାତ୍ର ଭାରତ ତାର ସ୍ୱାଗତ କରିଛି ।

ମୁସଲମାନମାନଙ୍କୁ ଭୟଭୀତ କରି ସାରିଲା ପରେ ସେମାନଙ୍କର ଭୋଟ ହାସଲ କରି ଆସନ୍ତା ସାଧାରଣ ନିର୍ବାଚନରେ ଭାରତୀୟ ଜନତା ପାର୍ଟି ଏକକ ସଂଖ୍ୟାଗରିଷ୍ଠତା ହାସଲ କରିବା ମତଲବରେ ଅଛି । ସେଥିପାଇଁ ତାଙ୍କର ନୂଆ ସଭାପତି ବଙ୍ଗାରୁ ଲକ୍ଷ୍ମଣ ମୁସଲମାନମାନଙ୍କୁ ସୁହାଇଲା ଭଳି କଥା କହି ଚାଲିଛନ୍ତି । ରମ୍‌ଜାନ୍ ପର୍ବରେ କାଶ୍ମୀରରେ ଅସ୍ତ୍ରବିରତି ମୁସଲମାନମାନଙ୍କ ପ୍ରତି ଭାରତୀୟ ଜନତା ପାର୍ଟିର ଶୁଭେଚ୍ଛାର ନିଦର୍ଶନ ରୂପେ ଘୋଷଣା କରାଯାଇଛି । ଏହି ତଥାକଥିତ ଅସ୍ତ୍ରବିରତି ଯାହା ପ୍ରାୟ ଛଅମାସ ଖଣ୍ଡେ ଚାଲିଲା, ତାହାକୁ ୨୦୦୧ ମସିହାର ସବୁଠାରୁ ବଡ଼ ପରିହାସ ବୋଲି କହିବାକୁ ହେବ । ଏହାଠାରୁ ବଡ଼ ପରିହାସଜନକ ଘଟଣା ପରେ ଘଟିପାରେ । ସଂଘର୍ଷରେତ ଦୁଇ ପକ୍ଷ ସେଥିପାଇଁ ରାଜି ନ ହୋଇ ଏକତରଫା ଯୁଦ୍ଧ ବିରତି ଘୋଷଣା କରାଯିବା ଇତିହାସରେ କେବେ ଦେଖାଯାଇନାହିଁ । କେବଳ ରୁଷ ବିପ୍ଳବ ଚାଲିଥିଲା ବେଳେ ତାର ଅନ୍ୟତମ ନେତା ଟ୍ରଟ୍‌ସ୍କି ଚାହିଁଥିଲେ ଯେ, ରୁଷିଆକୁ ଆକ୍ରମଣ କରୁଥିବା ପାଶ୍ଚାତ୍ୟ ସୈନ୍ୟ ବାହିନୀର ସାମନା ରୁଷିଆର ନିରସ୍ତ୍ର କୃଷକ ଶ୍ରମିକ ସ୍ତ୍ରୀ ପୁରୁଷ କରିବେ । ଆକ୍ରମଣକାରୀ ସେନ୍ୟାଙ୍କୁ କହିବେ ଯେ, ଆମେ ଏକ ନୂଆ ସମାଜ ଗଢ଼ିବା ପାଇଁ ବିପ୍ଳବ କରିଛୁ । ତମେମାନେ ଆମକୁ ବାଧା ଦିଅ ନାହିଁ ।

ଏହିପରି ପୋଲାଣ୍ଡରେ ୱାଲେସାଙ୍କ ନେତୃତ୍ୱରେ ଗଣ ବିପ୍ଳବକୁ ଦମନ କରିବା ପାଇଁ ସୋଭିଏତ୍ ସଂଘର ଟ୍ୟାଙ୍କ ବାହିନୀ ଆସିଥିଲେ । ବିପ୍ଳବର ଉନ୍ମାଦନାରେ ମଉ ସାଧାରଣ ସ୍ତ୍ରୀ-ପୁରୁଷ ସେସବ୍ ଟ୍ୟାଙ୍କ ଉପରେ ଚଢ଼ିଯାଇ ଟ୍ୟାଙ୍କରେ ଥିବା ଅଫିସର ଓ ସୈନିକମାନଙ୍କୁ ଫେରିଯିବାକୁ ନିବେଦନ କରିଥିଲେ ଓ ଟ୍ୟାଙ୍କ ବାହିନୀ ଆଉ ଅଗ୍ରସର ହୋଇନଥିଲା । ଫିଲିପାଇନ୍ ଦ୍ୱୀପପୁଞ୍ଜରେ ଅତ୍ୟାଚାରୀ ଓ ଦୁର୍ନୀତିଗ୍ରସ୍ତ ଶାସକ ଫର୍ଡ଼ିନାଣ୍ଡୋ ମାର୍କୋସଙ୍କ ବିରୋଧରେ ଯେତେବେଳେ ଗଣ ବିଦ୍ରୋହ ହେଲା, ସେତେବେଳେ ମଧ୍ୟ ବିଦ୍ରୋହକୁ ଦମନ କରିବା ପାଇଁ ପଠାଯାଇଥିବା ଟ୍ୟାଙ୍କ ଓ ସୈନ୍ୟ ବାହିନୀଙ୍କୁ ବିଦ୍ରୋହୀ ଜନତା ଏହିପରି ଭାବରେ ନିରସ୍ତ୍ର କରିଥିଲେ ।

ବୈପ୍ଳବିକ ପରିସ୍ଥିତିରେ ଆକ୍ରମଣକାରୀଙ୍କର ନିଃଶସ୍ତ୍ର ପ୍ରତିରୋଧ ଘଟିଥାଏ । ମାତ୍ର କାଶ୍ମୀରରେ ଯେ ଅସ୍ତ୍ର ବିରତି ହେଲା, ତାହା ତ ଏପରି ନୁହେଁ । ଭାରତର ସୁରକ୍ଷା ବାହିନୀ ମନଇଚ୍ଛା ହତ୍ୟାକାଣ୍ଡ ଘଟାଇ ଚାଲିଥିଲେ । ହିଂସାବାଦୀ ହେବାର କୌଣସି ପ୍ରମାଣ ନଥାଇ ଯୁବକମାନଙ୍କୁ ଘରୁ ଟାଣି ଆଣି ବା ରାସ୍ତାରୁ ଧରିନେଇ ଗୁଳିକରି ମାରୁଥିଲେ । ଅନ୍ୟ ପକ୍ଷରେ ବିଚ୍ଛିନ୍ନତାବାଦୀ ଦଳମାନଙ୍କର ହିଂସାକାଣ୍ଡ ଅବ୍ୟାହତ ରହିଥିଲା । ଏ ଉଭୟ ପକ୍ଷର ହିଂସା ଏବେ ବି ଅବ୍ୟାହତ ରହିଛି । ଏଥିରେ ଭାରତର ଏକତରଫା ଅସ୍ତ୍ରବିରତି ଘୋଷଣା ଏକ ବିରାଟ ପରିହାସ ଛଡ଼ା ଆଉ କ'ଣ ହୋଇପାରେ ?

ଭାରତ-ପାକ୍ ଶିଖର ବାର୍ତ୍ତା ବିଫଳ ହେବା ଖବର ପୁରୁଣା ହେଇ ସାରିଲାଣି । ଉଭୟ ଭାରତ ଓ ପାକିସ୍ତାନ ଆମେରିକାର କଣ୍ଢେଇ ନାଚର ଖେଳନା । ଆମେରିକା ଯେମିତି ଡୋରି ଟାଣିବ, ଏମାନେ ସେମିତି ନାଚିବେ । ଆମେରିକା ଇଙ୍ଗିତରେ ବରିଷ୍ଠ ନେତା ଶ୍ରୀ କେ.ସି. ପନ୍ଥଙ୍କୁ କାଶ୍ମୀରର ଉଗ୍ରପନ୍ଥୀଙ୍କ ସହ କଥାବାର୍ତ୍ତା କରିବା ପାଇଁ ଭାରତ ସରକାର ନିଯୁକ୍ତ କଲେ । ତାହା ହଠାତ୍ ରଦ୍ଦ କରାଯାଇ ଉଗ୍ରପନ୍ଥୀମାନଙ୍କୁ ଅବାଞ୍ଛିତ କରିଦିଆ ହେଲା ଓ ଶିଖର କଥାବାର୍ତ୍ତା ଆରମ୍ଭ ହେଲା ।

ଶ୍ରୀ ବାଜପେୟୀ ଓ ଜେନେରାଲ ମୁଶାରଫ ଉଭୟ ନେତାଙ୍କ ଚରିତ୍ର କିଛି ଉପାଦେୟ ନୁହେଁ । ଶ୍ରୀ ବାଜପେୟୀଙ୍କ ଦଳ ଉଗ୍ର ସାଂପ୍ରଦାୟିକବାଦୀ । ଭାରତ ହିନ୍ଦୁଙ୍କ ଦେଶ ଓ ମୁସଲମାନ ତଥା ଖ୍ରୀଷ୍ଟାନ ଭଳି ଅଣହିନ୍ଦୁ ଏ ଦେଶରେ ରହି ପାରିବେ ନାହିଁ, ତେଣୁ ସେମାନଙ୍କୁ ମାରିକାଟି ସଫା କରିବା ଓ ଦେଶରୁ ତଡ଼ିବା ଉଦ୍ୟମ ସଂଘ ପରିବାର ପକ୍ଷରୁ ପାଞ୍ଚ ଭିତରେ ଭିତରେ କରି ଚାଲିଛନ୍ତି । ସଂବିଧାନ ସମୀକ୍ଷା ଆୟୋଗ ଏହାର ଏକ ଉଦାହରଣ । ହିନ୍ଦୁରାଷ୍ଟ୍ର ରୂପେ ଏକ ଏକଛତ୍ର ଶାସନ ଭାରତ ଉପରେ ଲଦିବାର ଷଡ଼ଯନ୍ତ୍ର ସେମାନେ କରିଚାଲିଛନ୍ତି । ପାକିସ୍ତାନ ସହିତ ଶତ୍ରୁତା ସେମାନେ କାଏମ ରଖିବାକୁ ଚାହାନ୍ତି । କାରଣ ସେମାନେ ଦେଖାଇବାକୁ ଚାହାନ୍ତି ଯେ, ଭାରତୀୟ ମୁସଲମାନଙ୍କର ଅନୁରକ୍ତି ପାକିସ୍ତାନ ପ୍ରତି, ଭାରତ ପ୍ରତି ନୁହେଁ । ଏବଂ ସର୍ବୋପରି ସେମାନେ ଗାନ୍ଧୀଜୀଙ୍କ ହତ୍ୟାକାରୀଙ୍କୁ ପ୍ରଶଂସା କରନ୍ତି ।

ଅପର ପକ୍ଷରେ ଜେନେରାଲ ମୁଶାରଫ ଏକଛତ୍ରବାଦୀ, ଆପଣାକୁ ପାକିସ୍ତାନର ରାଷ୍ଟ୍ରପତି ଘୋଷଣା କରି ଦେଶର ସର୍ବମୟ କର୍ତ୍ତା ହୋଇଛନ୍ତି ଓ ସେ ଦେଶରେ ଯାହା କିଛି ସଂସଦ ଓ ପ୍ରାଦେଶିକ ବିଧାନ ସଭା ଥିଲା, ସେସବୁକୁ ଭାଙ୍ଗିଦେଇ ଗଣତନ୍ତ୍ରର ତଣ୍ଟି ଚିପି ଦେଇଛନ୍ତି । ଭାରତ ସରକାର ଯେତେବେଳେ କାଶ୍ମୀର କଥା ଆଲୋଚନା କରିବାକୁ ରାଜି ହେଲେ ନାହିଁ ଓ ଅପର ପକ୍ଷରେ କାଶ୍ମୀରକୁ ପାକିସ୍ତାନ ଆଡୁ ଆସୁଥିବା ବିଚ୍ଛିନ୍ନତାବାଦୀ ଉଗ୍ରପନ୍ଥୀଙ୍କୁ ରୋକିବା ପାଇଁ ମୁଶାରଫଙ୍କଠାରେ ଦାବି କଲେ, ସେତେବେଳେ ମୁଶାରଫ ଜବାବ ଦେଲେ ଯେ, କାଶ୍ମୀର ସମସ୍ୟାର କିଛି ଗୋଟାଏ ସମାଧାନ ବାହାର ନ କଲେ ବିଚ୍ଛିନ୍ନତାବାଦୀ ଓ ହିଂସାବାଦୀମାନଙ୍କୁ ରୋକିବା ସମ୍ଭବ ହେବ ନାହିଁ । ତାଙ୍କର ଏହି ଯୁକ୍ତିରେ କିଛିଟା ତଥ୍ୟ ଅଛି ।

ଭାରତ ପାକିସ୍ତାନ ଉଭୟ ପରମାଣୁ ଅସ୍ତ୍ରରେ ସଜ୍ଜିତ ହୋଇଛନ୍ତି । ଅପର ପକ୍ଷରୁ ଆକ୍ରମଣର ସମ୍ଭାବନାକୁ ପ୍ରତିହତ କରିବା ପାଇଁ ପରମାଣୁ ଅସ୍ତ୍ର ଆବଶ୍ୟକ ବୋଲି ଉଭୟ ଯୁକ୍ତି କରୁଛନ୍ତି । ଯଦି ପାକିସ୍ତାନ ଦିଲ୍ଲୀ ଉପରେ ପରମାଣୁ ବୋମା ପକାଏ, ତେବେ ତାର ପ୍ରଳୟଙ୍କରୀ ତେଜସ୍କ୍ରିୟତା ପାକିସ୍ତାନର ସୀମା ଭିତରକୁ ଶହେ ମାଇଲ ଖଣ୍ଡେଯାଏ ପ୍ରଭାବ ପକାଇବ ଓ କେତେ ହଜାର ବର୍ଗ ମାଇଲ ଅଂଚଳରେ ଧ୍ୱଂସ ଓ ମୃତ୍ୟୁର ତାଣ୍ଡବ ଘଟାଇବ । ସେହିପରି ଭାରତ ଯଦି କରାଚୀ ବା ଇସଲାମାବାଦ ଉପରେ ବୋମା ପକାଏ, ତେବେ ପାକିସ୍ତାନ ସୀମାକୁ ଲାଗିଥିବା ଭାରତର କେତେ ହଜାର ବର୍ଗ ମାଇଲ ଅଂଚଳ ଧ୍ୱସ୍ତବିଧ୍ୱସ୍ତ ହେବ । ମନେ ରଖିବାକୁ ହେବ ଯେ, ଚେରନୋବିଲ୍ ପରମାଣୁ ଶକ୍ତି ଉତ୍ପାଦନ କେନ୍ଦ୍ରରେ ଦୁର୍ଘଟଣାର ତେଜସ୍କ୍ରିୟ ପ୍ରଭାବ ଫ୍ରାନ୍ସ ଓ ଇଂଲଣ୍ଡ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଏସବୁ ତଥ୍ୟ କଣ ଉଭୟ ଦେଶର ଶାସକ ଓ ନୀତିନିର୍ଦ୍ଧାରକମାନଙ୍କୁ ଜଣାନାହିଁ ? ନା ଜାଣି ମଧ୍ୟ ସେମାନେ ଭୟତା ବିଦ୍ୱେଷର ଆବେଶର ଏଭଳି ଶିକାର ହୋଇଛନ୍ତି ଯେ, ଜାଣି ମଧ୍ୟ ନଜାଣିଲା ପରି ରହିଛନ୍ତି ? ସେ ଯାହା ହେଉ, ଉଭୟ ଦେଶର ପରମାଣୁ ଅସ୍ତ୍ର ସଂଚୟର କାର୍ଯ୍ୟକ୍ରମ ଚାଲୁ ରହିବା ନିଶ୍ଚିତ । ଦୁର୍ନୀତିଗ୍ରସ୍ତ ନେତା, କର୍ମଚାରୀ ଓ ଠିକାଦାରମାନେ ଏଥିରୁ ପଇସା ମାରିବାର ସୁଯୋଗ ପାଉଛନ୍ତି ଓ ପାଇବେ ତଥା ଆମେରିକା, ଫ୍ରାନ୍ସ ଓ ଇଂଲଣ୍ଡ ଭଳି ପରମାଣୁ ଶକ୍ତିସଂପନ୍ନ ରାଷ୍ଟ୍ରମାନେ ଏମାନଙ୍କୁ ଉପକରଣ ଓ ପ୍ରଯୁକ୍ତି ବିଦ୍ୟା ବିକି ଭଲ ଦି ପଇସା କମେଇବେ ।

ନିକଟ ଅତୀତରେ ଆଗ୍ରା ଶିଖର ବାର୍ତ୍ତା ବିଫଳ ହେବା ପରେ ଭାରତ ପକ୍ଷରୁ ପାକିସ୍ତାନ ବିରୋଧରେ ଉଗ୍ର ପ୍ରଚାର ଚାଲିଛି ଓ କାଶ୍ମୀରରେ ପୁଲିସ ଓ ସେନାବାହିନୀର ହଣାକଟା ପ୍ରବଳ ଭାବରେ ବଢ଼ିଛି । ତେଣେ ମୁଶାରଫ ମଧ୍ୟ କାଶ୍ମୀର ବିଷୟରେ ଭାରତର ଅନମନୀୟ ମନୋଭାବର ନିନ୍ଦା କରି ଶିଖର ବାର୍ତ୍ତାର ବିଫଳତା ପାଇଁ ଭାରତକୁ ଦାୟୀ କରୁଛନ୍ତି । ଏହା ସାଙ୍ଗେ ସାଙ୍ଗେ ଆପଣା ଗୋସେଇଁ ଆମେରିକା ଓ ଦୁନିଆକୁ ସେମାନେ ବୁଝାଇବା ପାଇଁ ଏ କଥା କହି ଚାଲିଛନ୍ତି ଯେ ଅପରପକ୍ଷ ଯେତେ ଦୁଷ୍ଟ ହେଲେ ବି ଆମେ ଶାନ୍ତି ପାଇଁ ବ୍ୟାକୁଳ ଓ ସେଥିପାଇଁ ଉଦ୍ୟମ କରି ଚାଲିବୁ ।

ବାବରୀ ମସ୍‌ଜିଦ୍ ଭଙ୍ଗା ଘଟଣା ମଧ୍ୟ ପୁରୁଣା ହେଲାଣି । ବହୁକାଳ ବନ୍ଦ ଥିବା ମସ୍‌ଜିଦ୍‌କୁ ଲୋକପ୍ରିୟତା ହାସଲ ଉଦ୍ଦେଶ୍ୟରେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିଲାବେଳେ ଖୋଲାଇଲେ । ଯେତେବେଳେ କରସେବକମାନେ ମସଜିଦ୍ ଭାଙ୍ଗିବା ଆରମ୍ଭ କଲେ, ସେତେବେଳେ ହିନ୍ଦୁତ୍ୱବାଦୀମାନଙ୍କୁ ଖୁସି ରଖିବା ଉଦ୍ଦେଶ୍ୟରେ ସେତେବେଳର ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓ ମସ୍‌ଜିଦ୍‌ର ଅଧକିଲୋମିଟର ମଧ୍ୟରେ ମୃତୟନ ଥିବା ସୁରକ୍ଷା ବାହିନୀକୁ ବାଧା ଦେବା ପାଇଁ ନିର୍ଦ୍ଦେଶ ଦେଲେ ନାହିଁ ।ଏବେ ଲିବରହାନ୍‌ସ ଆୟୋଗ ଏହି ମସ୍‌ଜିଦ୍ ଭଙ୍ଗ ଘଟଣାର ତଦନ୍ତ କରୁଛନ୍ତି ଓ ହାଇକୋର୍ଟରେ ଏକ ମକଦ୍ଦମା ବିଚାରାଧୀନ ରହିଛି । ବିଶ୍ୱହିନ୍ଦୁ ପରିଷଦ, ବଜରଙ୍ଗ ଦଳ, ଶିବସେନା ଆଦି ଧମକ ଦେଉଛନ୍ତି ଯେ ଅମୁକ ତାରିଖ ଦିନ ମନ୍ଦିର ନିର୍ମାଣ ଆରମ୍ଭ ହେବ । ଉଲ୍ଲେଖଯୋଗ୍ୟ ଯେ, ରାଜସ୍ଥାନରେ ମନ୍ଦିରର ଅଂଶ ସବୁ ମାର୍ବଲ ପଥରରେ ତିଆଁରି ଚାଲିଛି, ତାହା ଏକାଠି କରି ଅଳ୍ପ ସମୟରେ ଯୋଡ଼ିଦେଲେ ହେବ । ହାଇକୋର୍ଟର ରାୟ ଯାହା ହେଉ ଓ ଲିବରହାନ୍‌ସ ଆୟୋଗ ଯାହା ରିପୋର୍ଟ ଦେଉ, ମନ୍ଦିର ତିଆରି ଅବଶ୍ୟ ହେବ ବୋଲି ଧମକ ଦିଆଯାଉଛି । ପ୍ରଧାନମନ୍ତ୍ରୀ ଶ୍ରୀ ବାଜପେୟୀ ସେମାନଙ୍କୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଉଛନ୍ତି । ଏହା ମଧ୍ୟ ଏକ ସଲାକୁଣ୍ଡି । ଏଥିରେ ବାଜପେୟୀଙ୍କର ଧୈର୍ଯ୍ୟ ଓ ବିଚକ୍ଷଣତାର ପ୍ରଚାର ହେଉଛି । ଏଥିରେ ସନ୍ଦେହ ନାହିଁ ଯେ, ବାଜପେୟୀ ସରକାର ମନ୍ଦିର ତିଆରିରେ ତାଙ୍କର ସାଥୀ ସଙ୍ଗଠନମାନଙ୍କୁ କେବେହେଁ ବାଧା ଦେବେ ନାହିଁ । ବରଂ ଭିତିର ସାହାଯ୍ୟ କରିବେ ।

ସେମାନେ କାଶୀ ବିଶ୍ୱନାଥ ମନ୍ଦିର ହତାରେ ଥିବା ମସ୍‌ଜିଦ୍ ଓ ମଥୁରାରେ ଥିବା ଆଉ ଏକ ମସ୍‌ଜିଦ୍‌କୁ ଭାଙ୍ଗି ମନ୍ଦିର ନିର୍ମାଣ କରିବା ପାଇଁ ମଧ୍ୟ ଘୋଷଣା କରିଛନ୍ତି । ସଂଘ ପରିବାରର ଏସବୁ ଦୌରାତ୍ମ୍ୟ ଭାରତବାସୀଙ୍କ ପ୍ରତି ଏକ ଗୁରୁତର ଚ୍ୟାଲେଞ୍ଜ। ସେମାନେ ଯଦି ଏହାକୁ ରୋକିବା ପାଇଁ କଟିବଦ୍ଧ ନ ହୁଅନ୍ତି, ତେବେ ସମ୍ପ୍ରଦାୟବାଦୀମାନେ ଏ ଦେଶକୁ ଛାରଖାର କରିଦେବେ । ତେଣେ ବିଶ୍ୱହିନ୍ଦୁ ପରିଷଦ, ବଜରଙ୍ଗ ଦଳ ପ୍ରଭୃତି ବାବରୀ ମସଜିଦ୍ ସ୍ଥାନରେ ରାମମନ୍ଦିର ଗଢ଼ିବା ପାଇଁ ଜିଦ୍ ଧରିଛନ୍ତି । ଏଣେ ପ୍ରଧାନମନ୍ତ୍ରୀ ଏହା ବିଷୟରେ କହୁଛନ୍ତି । ଏହା କେବଳ ସଲାକୁଣ୍ଡି ଏବଂ ବାଜପେୟୀଙ୍କ ଭାବମୂର୍ତ୍ତି ଉଜ୍ଜ୍ୱଳ କରିବା ପାଇଁ ଉଦ୍ଦିଷ୍ଟ ।

ଏ ସବୁ ଚାଲିଥିଲା ବେଳେ ସର୍ବୋଦୟ ଆନ୍ଦୋଳନର ରାଜନୀତିକ ଆଭିମୁଖ୍ୟ ଅଧିକ ଦୃଢ଼ ହୋଇଚାଲିଛି । ଭାରତର ସମସ୍ତ ମୁଖ୍ୟ ରାଜନୀତିକ ଦଳ ଜନଦ୍ରୋହୀ, ସ୍ୱାର୍ଥପର, ଦୁର୍ନୀତି କଳଙ୍କିତ ଓ ବିଦେଶୀ ସାମ୍ରାଜ୍ୟବାଦୀଙ୍କର ଆନୁଗତ୍ୟ ସ୍ୱୀକାର କରିବାବାଲା ହୋଇଗଲେଣି । ବାମପନ୍ଥୀ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ଓ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ସୋଭିଏତ ସଂଘ ଭାଙ୍ଗିଗଲାପରେ ହତୋତ୍ସାହ ହୋଇ ଭାରତରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ରାଜତ୍ୱକୁ ଆଉ ଏଡ଼େଇ ହେବ ନାହିଁ ଭାବି ସେମାନଙ୍କର ଶରଣ ପଶିଲେଣି । ସେଥିପାଇଁ ସର୍ବ ସେବା ସଂଘ ଏହି ନିର୍ଣ୍ଣୟରେ ପହଞ୍ଚିଛି ଯେ ସବୁ ଦଳକୁ ହଟାଇ ଖଟିଖିଆ ଦରିଦ୍ର ଅତ୍ୟାଚାରିତ ଜନସାଧାରଣଙ୍କର ପ୍ରକୃତ ପ୍ରତିନିଧିଙ୍କୁ ଶାସନ ଗାଦିରେ ବସାଇବାକୁ ହେବ । କ୍ଷମତାର

ବି [illegible] ଗାଁ ସ୍ତର ପର୍ଯ୍ୟନ୍ତ କରିବାକୁ ହେବ, ଯେପରିକି ଗ୍ରାମସଭା ଗାଁର ସରକାର ରୂପେ କାମ କରିବ । ଭୋଟରମାନେ ନିଜେ ଆପଣା ପ୍ରାର୍ଥୀ ବାଛି ନିର୍ବାଚନରେ ଛିଡ଼ା କରାଇବାର ପ୍ରୟୋଗ ମହାରାଷ୍ଟ୍ରର ୱାର୍ଦ୍ଧା ଓ ଓଡ଼ିଶାର ବରଗଡ଼ ନିର୍ବାଚନ ମଣ୍ଡଳୀମାନଙ୍କରେ ଏଥିମଧ୍ୟରେ କରାଯାଇଛି । ଉଭୟ ସ୍ଥାନରେ ଲୋକପ୍ରାର୍ଥୀ ହାରିଛନ୍ତି । କିନ୍ତୁ ଏ ପ୍ରୟୋଗରୁ ଯେଉଁ ଅଭିଜ୍ଞତା ମିଳିଲା, ସେଥିରେ ସମସ୍ତଙ୍କର ଉତ୍ସାହ ଓ ସାହସ ବଢ଼ିଛି । ଏବେ ଗ୍ରାମସ୍ୱରାଜ୍ୟରେ ଲକ୍ଷ୍ୟ ଧରି ସମସ୍ତେ ସର୍ବୋଦୟ ସଂସ୍ଥା ଓ କର୍ମୀମାନେ ଏକ ଦେଶବ୍ୟାପୀ ଆନ୍ଦୋଳନ ଆରମ୍ଭ କରିଛନ୍ତି । ଗାଁମାନେ ଗ୍ରାମସ୍ୱରାଜ୍ୟର ସଂକଳ୍ପ କରି ତା କାର୍ଯ୍ୟକାରୀ କରିବାର ଉଦ୍ୟମ କରୁଛନ୍ତି । ଠାକୁ ଠା ଦଶ-କୋଡ଼ିଏ ବା ପଚିଶ-ପଚାଶ ଖଣ୍ଡ ଗାଁର ସଘନ କ୍ଷେତ୍ର ଗଢ଼ିଉଠିଛି । ଆମ ଓଡ଼ିଶାରେ ମଧ୍ୟ ଏହିପରି ଚାରିପାଞ୍ଚୋଟି ସଘନ କ୍ଷେତ୍ର ରହିଛି । ଏମାନେ ନିଜ ଗାଁର ଶାସନ ନିଜେ ଚଳାଇବା, ପ୍ରତ୍ୟେକ ସକ୍ଷମ ବ୍ୟକ୍ତିକୁ କାମ ଯୋଗାଇବା, ନିଶାନିବାରଣ, ସାମ୍ପ୍ରଦାୟିକ ସଦ୍‌ଭାବ ଆଦି ଲକ୍ଷ୍ୟ ସବୁ ସାଧନ କରିବା ପାଇଁ ଉଦ୍ୟମ କରୁଛନ୍ତି ।

ଇତି ମଧ୍ୟରେ ୧୯୯୯ ଅକ୍ଟୋବର ମାସର ପ୍ରଚଣ୍ଡ ମହାବାତ୍ୟା ଓଡ଼ିଶାର ଉପକୂଳକୁ ଛାରଖାର କରିଦେଲା । ସବୁ ସର୍ବୋଦୟ କର୍ମୀ ସେବା, ସାହାଯ୍ୟ ଓ ପୁନର୍ନିର୍ମାଣ କାମରେ ଲାଗି ପଡ଼ିଲେ । ଅପ୍ରତ୍ୟାଶିତ ଭାବରେ ଦେଶ ବିଦେଶରୁ ସାହାଯ୍ୟ ପ୍ରଭୂତ ପରିମାଣରେ ଆସିଲା । ଏହି ମହାଶ୍ମଶାନ ଭିତରେ ପୁଣି ନବ ସର୍ଜନା କାମରେ ସର୍ବୋଦୟ କର୍ମୀମାନେ ଲାଗିଛନ୍ତି । ସେଠି ମଧ୍ୟ ଗ୍ରାମସ୍ୱରାଜ୍ୟର ମୂଳଦୁଆ ଗଢ଼ି ତୋଳିବାର ଚେଷ୍ଟା ଚାଲିଛି ।

ଇତି ମଧ୍ୟରେ ପାରିବାରିକ କ୍ଷେତ୍ରରେ ମଧ୍ୟ ଦୁଃଖ ଓ ଆନନ୍ଦର ଜୁଆର ଚାଲିଛି । ମୋର ଆପଣାର ଖୁଡ଼ୀ ମାଳତୀ ଦେବୀ, ଯାହାଙ୍କୁ ଏହି ଆତ୍ମକଥା ଉତ୍ସର୍ଗ କରାଯାଇଥିଲା, ସେ ଇତି ମଧ୍ୟରେ ଆମକୁ ଛାଡ଼ି ଚାଲିଯାଇଛନ୍ତି । ଏଣେ ଖୁଡ଼ୀ ବଂଚି ଥାଉ ଥାଉ ତାଙ୍କ ନାତୁଣୀ କଳ୍ପନାର ବିବାହ ତାମିଲନାଡୁର ପ୍ରତିଭାବାନ୍ ସର୍ବୋଦୟ କର୍ମୀ ଶ୍ରୀ ଏଲ୍.ରାଜାଙ୍କ ସହିତ ହେଲା । ଆମ ପରିବାରର ବୈବାହିକ ସମ୍ପର୍କ ଏହା ପୂର୍ବରୁ ଆସାମ, ବଙ୍ଗଳା, ଗୁଜରାଟ, ମହାରାଷ୍ଟ୍ର, ତାମିଲନାଡୁ ଓ ଉତ୍ତର ପ୍ରଦେଶ ସହିତ ସ୍ଥାପିତ ହୋଇଥିଲା । ଏବେ ତାମିଲନାଡୁ ସହିତ ଆଉ ଏକ ସମ୍ପର୍କ ସ୍ଥାପିତ ହେଲା ।

ଇତି ମଧ୍ୟରେ ଆଶ୍ରମ ବିଧି ଅନୁସାରେ ବ୍ରାହ୍ମଣ ପୁରୋହିତ ପ୍ରଭୃତିଙ୍କୁ ପରିହାର କରି ଦୁଇଟି ବାହାଘର କଟକ ଗୁଣନିଧି ଭବନରେ ହୋଇଗଲା । ଗୋଟିଏରେ ଇନ୍ଦୁମତୀ ସାହୁ ରମାକାନ୍ତ ମଣ୍ଡଳଙ୍କୁ ଓ ଅନ୍ୟଟିରେ ସୁଦେଷ୍ଣା ଦେବୀ ମୂରଲୀଧର ମୁନିଆଙ୍କୁ ବାହା ହେଲେ । ଏ ସବୁଥିରେ କନ୍ୟାଦାନ ହେଲା ନାହିଁ । କାକାସାହେବ କାଲେଲକରଙ୍କ ପ୍ରବର୍ତ୍ତିତ ସମାଶ୍ରୟ ପଦ୍ଧତିରେ ବର ଓ କନ୍ୟା ପରସ୍ପରକୁ ସାଥୀ ଭାବରେ ଗ୍ରହଣ କଲେ । ଦେଖାଯାଏ ଯେ, ସାଧାରଣତଃ ବାହାଘରମାନଙ୍କରେ ବାଣ ରୋଷଣୀ ହିଁ ଆଭିଜାତ୍ୟ ମିଶ୍ରିତ ଆନନ୍ଦର ଉତ୍ସ ରୂପେ ଧରାଯାଏ । ଉତ୍ସବରେ ସମବେତ ବରଯାତ୍ରୀ, ଅତିଥି ଓ କନ୍ୟାପକ୍ଷର ଲୋକେ ଏ ବିଷୟରେ ଭକୁଆ ହୋଇ

ରହିଥାନ୍ତି । ତେଣୁ କେତେକ ବାହାଘରେ ତ ଆମେ କେତେଜଣ ନାଚଗୀତର ଆସର ଜମେଇଲୁ । ବାରଣାସୀରେ ଆମର ବୋହୂର ଝିଆରୀର ବାହାଘରେ ତ ମୋର ସମୁଦୁଣୀ ଓ ମୁଁ ଦୁଇ ବୁଢ଼ାବୁଢ଼ୀ ନାଚଗୀତର ଧାରା ବୁହାଇଲୁ ।

କେତେଜଣ ଉତ୍ସାହୀ ଯୁବକ ସାମ୍ବାଦିକ ରାଜନେତା ଓ ଉଚ୍ଚପଦସ୍ଥ କର୍ମଚାରୀଙ୍କ ଭିତରେ କିପରି ଦୁର୍ନୀତି ବ୍ୟାପିଛି ତାହା ପଦାରେ ପକାଇବା ପାଇଁ ଏକ କୌଶଳ ପାଞ୍ଚିଲେ । ଏକ କାଳ୍ପନିକ ଅସ୍ତ୍ର ବ୍ୟବସାୟୀ କମ୍ପାନୀ ଭାରତକୁ ଅସ୍ତ୍ର ବିକିବାକୁ ଚାହେଁ ବୋଲି ସେମାନେ ବଙ୍ଗାରୁ ଲକ୍ଷ୍ମଣ, ଜୟା ଜେଟ୍ଲୀ ଓ ସୈନ୍ୟ ବିଭାଗର କେତେକ ସାମରିକ ଅଫିସର ଓ ବେସାମରିକ କର୍ମଚାରୀଙ୍କୁ ଡାକିଲେ ଯେ, ସେମାନେ ଏହି ଅସ୍ତ୍ର ବିକ୍ରିରେ ସାହାଯ୍ୟ କରି ପାରିବେ । ଏ ବ୍ୟକ୍ତିମାନଙ୍କୁ ଏକ ହୋଟେଲରେ ଏକାଠି କରାଗଲା ଓ ସେମାନଙ୍କର କଥାବାର୍ତ୍ତା ଓ କାର୍ଯ୍ୟକ୍ରମ ଏକ ଭିଡ଼ିଓ କ୍ୟାମେରା ଦ୍ୱାରା ରେକର୍ଡ଼ ଚ୍ୟାନେଲ୍‌ରେ ପ୍ରସାରିତ କରାଗଲା । ଲକ୍ଷ ଲକ୍ଷ ଲୋକ ଘରେ ବସି ଦେଖିଲେ ଯେ ବଙ୍ଗାରୁ ଲକ୍ଷ୍ମଣ ଏକ ଲକ୍ଷ ଟଙ୍କା ନେଉଛନ୍ତି ଓ ମତେ ଏହା ଡଲାର ଆକାରରେ ଦିଅ ବୋଲି ଅନୁରୋଧ କରୁଛନ୍ତି । ସମତା ଦଳର ସଂପାଦିକା ଜୟା ଜେଟ୍ଲୀ ଦୁଇ ଲକ୍ଷ ଟଙ୍କା ହାତପାତି ନେଉଛନ୍ତି । ଅନ୍ୟାନ୍ୟ ସାମରିକ ଓ ବେସାମରିକ ଉଚ୍ଚପଦାଧିକାରୀମାନେ ମଧ୍ୟ ସେହିପରି ଲାଞ୍ଚ ଅଧିକ ଟଙ୍କା ନେଉଛନ୍ତି । ଏହା ଏତେଦୂର ବାସ୍ତବ ଘଟଣା ଯେ, ଏହାପରେ ବଙ୍ଗାରୁ ଲକ୍ଷ୍ମଣ ଓ ଜୟା ଜେଟ୍ଲୀ ସେମାନଙ୍କର ପଦବୀରୁ ଇସ୍ତଫା ଦେବାକୁ ବାଧ୍ୟ ହେଲେ । କେତେଜଣ ସାମରିକ ଅଫିସରଙ୍କ ବିରୋଧରେ ଅକାଟ୍ୟ ପ୍ରମାଣ ଯୋଗୁଁ ସେମାନଙ୍କ ପ୍ରତି ଶାସ୍ତିମୂଳକ କାର୍ଯ୍ୟାନୁଷ୍ଠାନ କରାଗଲା ଓ ଦେଶରକ୍ଷା ମନ୍ତ୍ରୀ ଜର୍ଜ ଫର୍ଣ୍ଣାଣ୍ଡିଜ୍ ଇସ୍ତଫା ଦେବାକୁ ବାଧ୍ୟ ହେଲେ ।

ବିରୋଧୀ ଦଳମାନେ ସଂସଦରେ ଦାବୀ କଲେ ଯେ, ଏହି ଲାଞ୍ଚନେବା ବ୍ୟକ୍ତିମାନଙ୍କ ବିରୋଧରେ ଫୌଜଦାରୀ ମକଦ୍ଦମା କରାଯାଉ । ଏହି ଦାବୀ ନେଇ ସେମାନେ ସଂସଦକୁ ଅଚଳ କରିଦେଲେ । ବର୍ତ୍ତମାନ ସରକାରଙ୍କ ପକ୍ଷରୁ ଏହାର ତଦନ୍ତ ପାଇଁ ଜଣିକିଆ ଜଜ୍‌କୁ ନେଇ ଏକ ଆୟୋଗ ନିଯୁକ୍ତ କରାଯାଇଛି । ସରକାରପକ୍ଷ ଲୋକଙ୍କୁ ବୁଝାଇବାକୁ ଚାହାନ୍ତି ଯେ, ଏହା ଭାଜପା ସରକାରରେ ଅସ୍ଥିରତା ଘଟାଇବା ପାଇଁ ଏକ ଷଡ଼ଯନ୍ତ୍ର । ଏହା ଷଡ଼ଯନ୍ତ୍ର ହେଉଥାଉ ବା ସାମ୍ବାଦିକମାନଙ୍କର ଚାଲ ହେଉଥାଉ, ଶାସନର ସର୍ବୋଚ୍ଚସ୍ତରରେ ଲାଞ୍ଚ ଦେବା ନେବା ଘଟଣାର ଅକାଟ୍ୟ ପ୍ରମାଣତ ରହିଛି । ତାକୁ କିପରି ଉଡ଼ାଇ ଦେଇ ହେବ ?

ଦାଦା (ନବକୃଷ୍ଣ ଚୌଧୁରୀ), ଶଙ୍କରରାଓ ଦେଓ, ଜୟପ୍ରକାଶ ନାରାୟଣ, ଦାଦା ଧର୍ମାଧିକାରୀ ପ୍ରଭୃତି ବିଶିଷ୍ଟ ସର୍ବୋଦୟ ସେବକମାନେ ଗାନ୍ଧୀ ବିଚାର ସହିତ ସମାଜ ବିଜ୍ଞାନୀମାନଙ୍କର ଯୋଗସୂତ୍ର ସ୍ଥାପନ କରି ଉଭୟକୁ ସମୃଦ୍ଧ କରିବା ପାଇଁ ବାରାଣାସୀ ଠାରେ ଷାଠିଏ ଦଶକରେ ଗାନ୍ଧୀ ବିଦ୍ୟା ସଂସ୍ଥାନ ନାମକ ସମାଜ ବିଜ୍ଞାନ ଗବେଷଣା ସଂସ୍ଥା ସ୍ଥାପନ କରିଥିଲେ । ତାର କାମ ଚଳାଇବା ପାଇଁ କେନ୍ଦ୍ର ସରକାରଙ୍କର ସମାଜ ବିଜ୍ଞାନ ଗବେଷଣା

ସଂସ୍ଥା ଓ ଉତ୍ତର ପ୍ରଦେଶ ସରକାରଙ୍କ ଠାରୁ କିଛି ଅନୁଦାନ ମିଳୁଥିଲା । ଭା.ଜ.ପା ମେଣ୍ଟ କେନ୍ଦ୍ର କ୍ଷମତାକୁ ଆସିବା ପରେ ଏହି ସଂସ୍ଥାକୁ ଦଖଲ କରିବା ବା ଧ୍ୱଂସ କରିବା ଉଦ୍ଦେଶ୍ୟରେ ନାନା ଉପାୟରେ ଚେଷ୍ଟା କରି ଆସୁଛନ୍ତି । ଏବେ ଏହାର ଶେଷ ପର୍ଯ୍ୟାୟରେ ସରକାରୀ ସୂତ୍ରରୁ ମିଳୁଥିବା ସମସ୍ତ ଅନୁଦାନ ବନ୍ଦ କରିଦିଆଯାଇଛି ।

ଏହି ପରିସ୍ଥିତିରେ ମୁଁ ଗାନ୍ଧୀ ବିଦ୍ୟା ସଂସ୍ଥାନର ସଭାପତି ନିର୍ବାଚିତ ହୋଇଛି । ଏବେ ବନ୍ଦ ହୋଇଥିବା ପୂର୍ବର ସରକାରୀ ସାହାଯ୍ୟର ବିକଳ୍ପ ରୂପେ ଓ ଆଗକୁ ସବୁଦିନ ପାଇଁ ସରକାରୀ ସାହାଯ୍ୟ ଉପରେ ନିର୍ଭରଶୀଳତା ଲୋପ କରିବା ପାଇଁ ପାଣ୍ଠି ସଂଗ୍ରହ ଉଦ୍ୟମ ଆରମ୍ଭ ହୋଇଛି । ସେଥିରେ ଆଶାଜନକ ସଫଳତା ମଧ୍ୟ ମିଳୁଛି ।

ଏହା ଭିତରେ ବିଭିନ୍ନ ସମସ୍ୟା ନେଇ ଓଡ଼ିଶାରେ ଜନ ଆନ୍ଦୋଳନମାନ ଚାଲିଥିଲା ଓ ଚାଲିଛି । ନିଶାନିବାରଣ, ଗନ୍ଧମାର୍ଦ୍ଦନ ପର୍ବତରୁ ବାଲକୋ କଂପାନୀ ଦ୍ୱାରା ବକ୍ସାଇଟ୍ ଖୋଳାର ବିରୋଧ, ରାୟଗଡ଼ା ଜିଲ୍ଲାର କାଶୀପୁରଠାରେ ଦୁଇଟି ବିଦେଶୀ କମ୍ପାନୀଙ୍କ ଦ୍ୱାରା ଆଲୁମିନା କାରଖାନା ସ୍ଥାପନା ବିରୋଧ, ବାଲିଆପାଳରେ କ୍ଷେପଣାସ୍ତ୍ର ଘାଟିର ସ୍ଥାପନାର ବିରୋଧ, ଗଞ୍ଜାମର ଗୋପାଳପୁରରେ ଇସ୍ପାତ କାରଖାନାର, ଚିଲିକା ଉପକୂଳରେ ଟାଟା କମ୍ପାନୀର ଚିଙ୍ଗୁଡ଼ି ଚାଷର ବିରୋଧ ଆଦି ଆନ୍ଦୋଳନର ଉଦ୍‌ଭବ ଓଡ଼ିଶାରେ ହୋଇଛି । ସେ ସବୁ ମଧ୍ୟରୁ ବାଲିଆପାଳ ଓ ଗନ୍ଧମାର୍ଦ୍ଦନ ଆନ୍ଦୋଳନ ପୂର୍ଣ୍ଣମାତ୍ରାରେ ସଫଳ ହୋଇଛି । ଗୋପାଳପୁର ଓ ଚିଲିକା ଆନ୍ଦୋଳନ ଗୋଟାଏ ଅର୍ଥରେ ସଫଳ ହୋଇଥିଲେ ମଧ୍ୟ ଏଥିରେ ପରେ କେତେକ ଜଟିଳତା ସୃଷ୍ଟି ହୋଇଛି । କାଶୀପୁର ଆନ୍ଦୋଳନ ଓ ସେହିପରି କେତେକ ଛୋଟବଡ଼ ଆନ୍ଦୋଳନ ଚାଲୁ ରହିଛି । ଏ ସବୁ ମଧ୍ୟ କାଳକ୍ରମେ ପୂର୍ଣ୍ଣ ସଫଳତା ଲାଭ କରିବା ନିଶ୍ଚିତ । ଓଡ଼ିଶାବାସୀ ପରାକ୍ରମୀ ଯୋଦ୍ଧା । ସେମାନେ ଚଣ୍ଡାଶୋକକୁ ପାଣି ପିଆଇ ଧର୍ମାଶୋକରେ ପରିଣତ କରିଥିଲେ । ଦେଖାଯାଉଛି ଯେ ଓଡ଼ିଆଙ୍କର ସେ ପରାକ୍ରମ ଏବେ ବି କିଛି ବାକି ରହିଛି ।

ଏହିପରି ନାନା ଘାତ ପ୍ରତିଘାତ ଭିତରେ ମୁଁ ଜୀବନ ତରୀ ବାହି ଚାଲିଛି । ମୋର ବଞ୍ଚି ରହିବାର ଆନନ୍ଦ ତିଳେମାତ୍ରେ ଊଣା ହୋଇନାହିଁ, ବରଂ ବଢ଼ି ଚାଲିଛି । ସକାଳ ସନ୍ଧ୍ୟା ଚଢ଼େଇଙ୍କର ରାବ ଓ ଫୁଲର ମହକ ମୋର ମନକୁ କିଣି ନେଉଛି । ରାତିରେ ଗ୍ରହ, ନକ୍ଷତ୍ର, ନୀହାରିକାମାନେ ମୋତେ ଆଖିଠାରି ଡାକୁଛନ୍ତି, ଦୂରବିନ୍ ଦେଇ ସେମାନଙ୍କୁ ଦେଖି ବିଶ୍ୱ ସୃଷ୍ଟିର ରହସ୍ୟର ସ୍ୱାଦ ପାଇବା ପାଇଁ । ବିଜ୍ଞାନର ବିଭିନ୍ନ ଶାଖାର ନୂଆନୂଆ ଜ୍ଞାନ ଅର୍ଜନ କରି ମୋର ଚିନ୍ତାଧାରାକୁ ସମୃଦ୍ଧ କରିବା ପାଇଁ ମୁଁ ବହିସବୁ ସଂଗ୍ରହ କରି ଜମା କରିଛି । ସେ ସବୁ ପଢ଼ିବା ପାଇଁ ବେଳ ଅଣ୍ଟୁ ନାହିଁ । ପୁଣି ଅନ୍ୟାୟ ଅନୀତି ବିରୋଧରେ କଲମକୁ କମାଣ ପରାଏ ଧରିବାର ସନ୍ତୋଷ ରହିଛି । ଦେଶ ବିଦେଶର ନୂଆ ନୂଆ ଲୋକଙ୍କ ସହିତ ସଂପର୍କ ହେଉଛି ଓ ବନ୍ଧୁତା ଗଢ଼ି ଉଠୁଛି । ଏହିସବୁ ମୋ ପ୍ରତି ପ୍ରକୃତି ବା ସୃଷ୍ଟିକର୍ତ୍ତାଙ୍କର ଆଶୀର୍ବାଦ ।





ମାତାମହ : ଗୋପାଳବଲ୍ଲଭ ଦାସ



ମାତାମହୀ : ବସନ୍ତ କୁମାରୀ ଦେବୀ



ଆଣ୍ଡ୍ରୁଜ୍‌ଙ୍କ ସ୍ୱହସ୍ତ ସ୍ୱାକ୍ଷରିତ ପ୍ରତିକୃତି



ମନମୋହନ ଓ ଅନ୍ନପୂର୍ଣ୍ଣା : ମହୁମାଛି ପାଳନ (ବରୀ ସେବାଘର, ୧୯୩୮)



ବାମରୁ : ଗୁଣନିଧି ମହାନ୍ତି, ଗୋପବନ୍ଧୁ ଚୌଧୁରୀ, ମ୍ୟାନ୍‌ସ ଫଲ୍ଟ
(ବରୀ, ୧୯୪୦)

## ବିବାହ-ବାସରେ

ଲେଖକଙ୍କ ବିବାହ ଉପଲକ୍ଷେ : ୧୯୪୭



ଛିଡ଼ା ହୋଇଛନ୍ତି : ମାଳତୀ ଦେବୀ, ଉତ୍ତରା, ଲେଖକ ମନମୋହନ, ଲେଖକଙ୍କ ପତ୍ନୀ ସୁମିତ୍ରା ଏବଂ ନବବାବୁ

ବସିଛନ୍ତି : ରମା ଦେବୀ, କୃଷ୍ଣା, ଗୋପବାବୁ ଏବଂ ବିନାୟକ



ଶାଶୁ ଓ ଶ୍ୱଶୁର

## ତିନି ପିଢ଼ି



ବାମରୁ ଭଉଣୀ ଅନ୍ନପୂର୍ଣ୍ଣ, ପିଉସୀ ବସନ୍ତ କୁମାରୀ, କନ୍ୟା ମାଧବୀ



ପିତାମହୀଙ୍କ ସହ ସେଦିନର କିଶୋର ମନମୋହନ



ମଙ୍ଗଳା ଦେବୀ

**ପଶ୍ଚିମ ବର୍ଲିନ୍‌ରେ ଏକ ଦୂରଦର୍ଶନ କାର୍ଯ୍ୟକ୍ରମରେ : ୧୯୭୦**



ବାମରୁ : ମାରିଏଣ୍ଟା ପେଇଡ୍‌ସ୍, ଡଃ ଜିତେନ୍ଦ୍ର ନାଥ ମହାନ୍ତି ଏବଂ ମନମୋହନ ଚୌଧୁରୀ



ତୁମରି ହାତର ବେଦନାର ଦାନ : ପୁତ୍ର କବୀର



ବାମରୁ : ନିତ୍ୟାନନ୍ଦ କାନୁନ୍‌ଗୋ ଓ ନବକୃଷ୍ଣ ଚୌଧୁରୀ

## ତିନି ଭଗ୍ନୀପତି



ବାମରୁ : ଶରଚ ଚନ୍ଦ୍ର ମହାରଣା, ନାରାୟଣ ଦେଶାଇ, ବିଭୂତିଭୂଷଣ ମହାନ୍ତି

## ବିନୋବା ପଦଯାତ୍ରା : ୧୯୫୫, ପୂର୍ବ ଯାଜପୁର



ବାମରୁ ଗୋପବନ୍ଧୁ ଚୌଧୁରୀ, ମନମୋହନ, ସୁମିତ୍ରା, ରମା ଦେବୀ ଓ ବିନୋବାଜୀ



ବିନୋବା ପଦଯାତ୍ରା : କୋରାପୁଟ : ୧୯୫୫



ଏକ ସାଧାରଣ ସମାବେଶରେ ବାପା ଗୋପବନ୍ଧୁ



କଟକରେ ଆଚାର୍ଯ୍ୟ ପ୍ରଫୁଲଚନ୍ଦ୍ର ରାୟ : ୧୯୨୭



ପୁରୀରେ କବି ରବୀନ୍ଦ୍ରନାଥ : ୧୯୩୮

## ଓଡ଼ିଶାରେ ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା : ୧୯୩୪, ଇନ୍ଦୁପୁର



ଗାନ୍ଧିଜୀଙ୍କ ଡାହାଣରେ ଅନ୍ନପୂର୍ଣ୍ଣା ଓ ବାଆଁରେ ସୁଶୀଳା ଦେବୀ

## ଗାନ୍ଧୀ–ଆରଉଇନ୍ ଚୁକ୍ତି ପରେ...



କାରାମୁକ୍ତ ନେତାମାନଙ୍କର ସ୍ୱାଗତ ଶୋଭାଯାତ୍ରା : ମାର୍ଚ୍ଚ ୧୯୩୧, କଟକ



ଓଡ଼ିଶାର ପ୍ରଥମ ଲବଣ ସତ୍ୟାଗ୍ରହ ଦଳରେ କଟକରୁ ଯାତ୍ରାରମ୍ଭ : ୬ ଏପ୍ରିଲ, ୧୯୩୦

## ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଲବଣ ଆଇନ ଭଙ୍ଗ : ୧୯୩୦



ରମା ଦେବୀ ଚୂଲୀ ଲଗାଉଛନ୍ତି, ପାଖରେ ମାଳତୀ ଦେବୀ ଓ କିରଣବାଳା ସେନ୍



କଟକରେ ଅଫିମ ଦୋକାନରେ ପିକେଟିଂ କରୁଥିବା ବାନରସେନାଙ୍କ ଉପରେ
ପୁଲିସ ଜୁଲମ୍ : ୧୯୩୦

କାଠ
ଖୋଦେଇ





'କଳାକୃତିରୁ କଣିକାଏ' ପର୍ଯ୍ୟାୟରେ ଏ ସମସ୍ତ ଚିତ୍ର ଓ କାଠଖୋଦେଇ ଶ୍ରୀ ଚୌଧୁରୀଙ୍କ ନିଜସ୍ୱ ଶିଳ୍ପୀ ମାନସର ଅଳ୍ପ କେତୋଟି ଅଭିବ୍ୟକ୍ତି ମାତ୍ର।



କାଠ ଖୋଦେଇ